

୮ମ ଭାଗ, ବୈଶାଖ ୧୩୧୧ । ୧ମ ସଂଖ୍ୟା

# ଉତ୍କଳ-ସାହିତ୍ୟ ।

ମାସିକପତ୍ର ଓ ସମାଲୋଚନ ।

—:o:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—:o:—



THE UTKAL SAHITYA PRESS.
CUTTACK.
1904.



ଅଗ୍ରିମ ମୂଲ୍ୟ ଡାକମାସୁଲ ସମେତ ଟ ୨ ୲ ଏହି ସଂଖ୍ୟାର ମୂଲ୍ୟ ଟ ୦ ୯

## ସୂଚୀ ।



---




ଡାକ୍ତର ମେଜର ସାହେବଙ୍କର ବିଶ୍ୱବିଖ୍ୟାତ ସେହି

# ଇଲେକ୍ଟ୍ରୋ-ସାଲସା ।

ଚିକିତ୍ସାଜଗତରେ ସର୍ବୋଚ୍ଚ ସ୍ଥାନ ଅଧିକାର କରୁଅଛି ।

ରକ୍ତ ମାନବ ଦେହର ଜୀବନୀଶକ୍ତି । ତାଡ଼ିତଶକ୍ତି ଜୀବନୀଶକ୍ତିର ମୂଳ । ପ୍ରତିଦିନ ନାନାପ୍ରକାରରେ ବିଶେଷତଃ ଆହାର ବିହାରରେ, ଅଭ୍ୟାସର ଅନାଗ୍ରହରେ, ନିଶ୍ୱାସ ପ୍ରଶ୍ୱାସରେ ମାନବଦେହରେ ବିଷ ପ୍ରବେଶ କରୁଥାଏ । ଏହି ବିଷ କ୍ରମେ କ୍ରମେ ରକ୍ତ ସହିତ ମିଶ୍ରିତ ହୋଇ ଦେହାଭ୍ୟନ୍ତରସ୍ଥ ତାଡ଼ିତଶକ୍ତି ହ୍ରାସ କରେ ଏବଂ ପରିଣାମରେ ସାଧାରଣତଃ ଶୁକ୍ର ଓ ଶୋଣିତ ସମ୍ବନ୍ଧୀୟ ପୀଡ଼ା ଉତ୍ପନ୍ନ ହୁଏ । ଯେଉଁ ଔଷଧ ଏହି ରକ୍ତଦୁଷ୍ଟିର ବିଷ ଦୂରୀଭୂତ କରି ହ୍ରାସପ୍ରାପ୍ତ ବୈଦ୍ୟୁତିକ ଶକ୍ତିର ସାମଞ୍ଜସ୍ୟ ସମ୍ପୂର୍ଣ୍ଣରୂପ ରକ୍ଷା କରିପାରେ, ସେହି ପ୍ରକୃତ ଔଷଧ; ଏହି—

"ଇଲେକ୍ଟ୍ରୋ-ସାଲସା" ତାହାର ଏକମାତ୍ର ଆଦର୍ଶ ।

---

ଏହା କଣ ? ଚିକିତ୍ସା-ବିଜ୍ଞାନ-ସମ୍ମତ ଶୁକ୍ର ଓ ଶୋଣିତର ଦୋଷ-ସଂଶୋଧକ ଏବଂ ତାଡ଼ିତଶକ୍ତିପ୍ରବର୍ତ୍ତକ କେତୋଟି ଦୁଷ୍ପ୍ରାପ୍ୟ କାର୍ଯ୍ୟକାରୀ ଉଦ୍ଭିଜ୍ଜରୁ—
ନିଉ ୟର୍କ ନଗରବାସୀ ଖ୍ୟାତନାମା ଡାକ୍ତର :—
ଜେମସ ମେଜର ଏମ. ଏ. ଏମ. ଡି

ମହୋଦୟଙ୍କର ଅନୁଷ୍ଠିତ,—ନୂତନ ରସାୟନିକ ପ୍ରକ୍ରିୟାରେ ବିନିଃସୃତ ନିର୍ଯ୍ୟାସ ।
ମାନବଦେହରେ ଏହାର କ୍ଷମତା ଅସୀମ, ଗୁଣ ଅନନ୍ତ, କ୍ରିୟା ସ୍ଥାୟୀ ।

ଏଥିରେ ଯେ କେତୋଟି କାର୍ଯ୍ୟକାରୀ ଭେଷଜ ପଦାର୍ଥ ଅଛି, ତାହା ଅନ୍ୟ କୌଣସି ଔଷଧରେ ନାହିଁ ଏବଂ ଏହି ଗବେଷଣାଲବ୍ଧ ମହାଗୁଣଶାଳୀ ଦୁଷ୍ପ୍ରାପ୍ୟ ଭେଷଜ ଏହାର ଏରୂପ ଅସାଧାରଣ ଗୁଣାବଳୀର ମୂଳକାରଣ ।

ଏଥିରେ କେଉଁ କେଉଁ ରୋଗ ଆରୋଗ୍ୟ ହୁଏ ? ସର୍ବପ୍ରକାର କାରଣଜାତ ଶୁକ୍ର ଓ ଶୋଣିତର ବିକୃତି, ସ୍ନାୟବିକ ଦୌର୍ବଲ୍ୟ, ଦେହର ବିଭିନ୍ନ ଯନ୍ତ୍ରର କ୍ରିୟା-ଘଟିତ କ୍ଷୀଣତା, ଶୁକ୍ରମେହ, ଶୁକ୍ର ତାରଲ୍ୟ, ନୂତନ ପୁରାତନ ମେହ, ପ୍ରମେହ, ସପ୍ନରେ ଧାତୁ ନିର୍ଗମ, ଅନିଚ୍ଛାରେ ବା ଅଳ୍ପ ଉତ୍ତେଜନାରେ ଶୁକ୍ରକ୍ଷରଣ, ସମ୍ପୂର୍ଣ୍ଣ ବା ଆଂଶିକ ପୁରୁଷତ୍ୱହୀନ, ପ୍ରସ୍ରାବରେ ଯନ୍ତ୍ରଣା, ଲୁଗାରେ ଦାଗଲଗା,

ଡକ୍ଟର ମେଜର ସାହେବଙ୍କର

# ହେୟାର ଲାଇନ

କେଶର ପରିପୋଷଣ, ପରିବର୍ଦ୍ଧନ ଓ ଶ୍ରୀସମ୍ପାଦନକାରୀ ସୁଗନ୍ଧି କେଶତୈଳ ।




କେତୋଟି ଔଷଧଗୁଣାନ୍ୱିତ ମଧ୍ୟ ପ୍ରସ୍ଫୁଟିତ, ସୁଗନ୍ଧଯୁକ୍ତ, ଅନାଘ୍ରାତ, ପୁଷ୍ପର ସାର, ବୈଜ୍ଞାନିକ ପ୍ରଣାଳୀରେ ଏକତ୍ରିତ କରି ବହୁବିଧ କେଶପୋଷକ ତୈଳର ସଂଯୋଗରେ ଏହି କେଶ ତୈଳ ପ୍ରସ୍ତୁତ ହୋଇଅଛି । ଆପଣ ଏହା ଲଗାଇବାକୁ ଆରମ୍ଭ କରନ୍ତୁ, ଅପୂର୍ବ ସୌରଭରେ ଗୃହଅଙ୍ଗନ ମହକି ପଡ଼ିବ । ମସ୍ତିଷ୍କ ସୁଶୀତଳ ହେବ । ନିକଟସ୍ଥ ଲୋକେ ମନୋହର ସୁଗନ୍ଧରେ ମୁଗ୍ଧ ହେବେ । ଆପଣଙ୍କର ମନେ ହେବ ଯେପରି ପ୍ରସ୍ଫୁଟିତ ଫୁଲ-ବଗିଚାକୁ ଆସିଅଛୁ ।

"ହେୟାର-ଲାଇନ" ଲଗାଇ କେଶ ବିନ୍ୟାସ କଲେ ୨୪ ଘଣ୍ଟା ପର୍ଯ୍ୟନ୍ତ ଗନ୍ଧ ସମ ଭାବରେ ଥାଏ । ସ୍ନାନ ପରେ ଦେହରେ ଯେତେ ପବନ ଲାଗେ, ହେୟାର-ଲାଇନର ଗନ୍ଧ ସେତେ ବାହାରୁ ଥାଏ, ଯେପରି ସୌରଭର ଭଣ୍ଡାର ଖୋଲିଦିଏ । ଅତି ମୂଲ୍ୟବାନ୍ ଅତର ଓ ବିଦେଶୀୟ ସୁବାସିତ ତୈଳ ପ୍ରଭୃତି ଏହାର ସୌରଭ ଓ ଗୁଣ ନିକଟରେ ପରାସ୍ତ ।

"ହେୟାର-ଲାଇନର" ରଙ୍ଗ ଅତି ମନୋହର, ସ୍ୱଭାବତଃ ଉଜ୍ଜ୍ୱଳ ଓ ସ୍ୱଚ୍ଛ । ଏଥି ନିମନ୍ତେ କେଶରେ ଅଠା ଧରେ ନାହିଁ ।

"ହେୟାର-ଲାଇନ" କେବଳ ସୌଖୀନ ଜିନିଷ ନୁହେ, ମୁଣ୍ଡବଥା, ମୁଣ୍ଡବୁଲା, ହିଷ୍ଟିରିଆ ପ୍ରଭୃତି ଶିରଃରୋଗର ମହୌଷଧ । ହସ୍ତ ପଦର ଜ୍ୱାଳା, ଗାତ୍ରଦାହ, ଛାତି ଧଡ଼ପଡ଼ହେବା, ପ୍ରାଣର ଅକୁଳଭାବ, ସ୍ନାୟୁ ଦୌର୍ବଲ୍ୟ, ଘୂରିପଡ଼ିବା ପ୍ରାୟ ବୋଧହେବା, ଅନିଦ୍ରା, ବିଶୃଙ୍ଖଲ୍ୟ ପ୍ରଭୃତି ଉପସର୍ଗ ଦୂରୀକରଣରେ ଏହା ତୁଲ୍ୟ ଗୁଣସମ୍ପନ୍ନ ଔଷଧ ଆଉ ନାହିଁ ।

"ହେୟାର-ଲାଇନ" ବ୍ୟବହାରଦ୍ୱାରା କେଶ ଉପୁଡ଼ିବା ବନ୍ଦ ହୁଏ, କେଶର ମୂଳ ଶକ୍ତ ହୁଏ, କେଶ ପ୍ରଚୁର ପରିମାଣରେ ବଢ଼େ ଏବଂ କଳା ଓ ଚିକ୍କଣ ହୁଏ, ମସ୍ତିଷ୍କ ଥଣ୍ଡା ରହେ । ଅନେକ ଦିନ ବ୍ୟବହାର କଲେ ଟାଙ୍ଗରା ରୋଗ ନଷ୍ଟ ହୁଏ, ମୁଣ୍ଡରେ ରୂପୀ ପ୍ରଭୃତି ନଷ୍ଟ ହୁଏ; କେଶ ଘନ, କୋମଳ ଓ ସୁଦୃଶ୍ୟ ହୁଏ, ଦେହର ଦୁର୍ଗନ୍ଧ ଦୂର ହୁଏ, ଚର୍ମ କୋମଳ ଓ କାନ୍ତିଯୁକ୍ତ ହୁଏ, ମନର ସ୍ଥୈର୍ଯ୍ୟ ଧୈର୍ଯ୍ୟ ବଢ଼େ, ସ୍ମୃତିଶକ୍ତି ବୃଦ୍ଧି ହୁଏ ।

ମୂଲ୍ୟ ପ୍ରତି ବଡ଼ ଶିଶି ଟ ୧ ୯; ୩, ୬, ୯ ଶିଶି କ୍ରମାନ୍ୱୟରେ ଟ ୫ ।, ଟ ୧୦ ।, ଟ ୨୦ ୯; ପ୍ୟାକିଂ ଓ ଡାକମାସୁଲ ସ୍ୱତନ୍ତ୍ର ।

ପ୍ରାପ୍ତିସ୍ଥାନ—ଡକ୍ଟର, ମେଜର ଏଣ୍ଡ କୋଂ
ହେଡ୍ ଅଫିସ,—୯ ନମ୍ବର ୱେଲିଂଟନ ଷ୍ଟ୍ରିଟ, କଲିକତା ।

# ଉତ୍କଳ-ସାହିତ୍ୟ ।

ଅଷ୍ଟମ ଭାଗ ।



## ଆତ୍ମକଥା ।

ବର୍ଷ ପରେ ବର୍ଷ କି ବେଗରେ ଚାଲି ଯାଉଅଛି, ଆଉ ଆମ୍ଭେମାନେ କି ଭାବରେ ଜୀବନଟା କଟାଉଅଛୁଁ, ଥରେ ସ୍ଥିର ଚିତ୍ତରେ ଭାବିଲେ ହୃଦୟ ମନ ସ୍ତମ୍ଭିତ ହୋଇଯାଏ । ମନୁଷ୍ୟ ଅବସ୍ଥାର ଦାସ ହୋଇ କେବଳ ଖାଇ ପିଇ ଆମୋଦ ଆହ୍ଲାଦରେ ଦୁଇ ଦିନ କଟାଇ ଚାଲିଯିବାକୁ ଏ ସଂସାରକୁ ଆସି ନାହିଁ । ଏହା ଜୀବନର ଗୋଟାଏ ବିଭାଗ ମାତ୍ର । ଏହା ଅପେକ୍ଷା ଉଚ୍ଚତର —ମହତ୍ତର—ସ୍ଥିରତର ବିଭାଗ ଅଛି । ସେ ବିଭାଗ ଅଛି ବୋଲି ପୂର୍ବୋକ୍ତ ବିଭାଗର ପ୍ରୟୋଜନୀୟତା ଅଛି ଏବଂ ଜୀବନର ଗୋଟାଏ ଗୁରୁତ୍ୱ ଅଛି । ମନୁଷ୍ୟ ସେହିଠି ନ ଧରିବାଯାଏ ତାହାର ସମସ୍ତ ଚେଷ୍ଟା, ଉଦ୍ୟମ, ସାଧନା ପଶୁତ୍ୱର ଛଳନାମାତ୍ର । ସେହିଠି ଆଉ କିଛି ନୁହେ—ତାହା ବିକାଶପ୍ରବଣତା । ଏହି ବିକାଶଶୀଳତା ଜଗତର ରହସ୍ୟ, ଏହାହିଁ ଜୀବନର ସମସ୍ୟା । ଯେଉଁ ବ୍ୟକ୍ତି ବା ଜାତି ଏହି ରହସ୍ୟ ଯେତିକି ଭେଦ କରିଅଛି, ଏ ସମସ୍ୟା ଭିତରେ ଯେତିକି ପ୍ରବେଶ କରିଅଛି, ତାହାର ଯଥାର୍ଥ ଉନ୍ନତି ସେତିକି ସମ୍ଭବ । ବ୍ୟକ୍ତିଗତ ବା ଜାତୀୟ ଜୀବନର ସର୍ବବିଧ ବ୍ୟାପାରକୁ ଏହି ଆଲୋକରେ ନ ଦେଖିଲେ ବ୍ୟକ୍ତିତ୍ୱର ମୂଲ୍ୟ କିଛି ନାହିଁ—ଜାତିର ଆକାଶକୁସୁମ ଛଡ଼ା ଆଉ କିଛି ନୁହେ । ଲକ୍ଷ ସ୍ଥିର ନ କରି ଯେ ଯାତ୍ରା, ତାହା ବାତୁଳର କ୍ରୀଡ଼ା ମାତ୍ର । କଠୋର ଆତ୍ମପରୀକ୍ଷାଦ୍ୱାରା ଜୀବନର କାର୍ଯ୍ୟଗୁଡ଼ିକର ଉଦ୍ଦେଶ୍ୟ ଓ ଗତି ସ୍ଥିର କରି ନେବା ପ୍ରତ୍ୟେକ ବ୍ୟକ୍ତିପକ୍ଷରେ ଏକାନ୍ତ କର୍ତ୍ତବ୍ୟ । ବ୍ୟକ୍ତିଗତ ଅନୁଭୂତି ଜାତୀୟ ଜୀବନରେ ପ୍ରତିଫଳିତ ହୋଇ ଜାତିକୁ ଲକ୍ଷପଥରେ ଅଗ୍ରସର କରିଦିଏ । ପକ୍ଷାନ୍ତରେ ଜାତି ବ୍ୟକ୍ତିର ଆଶ୍ରୟଭୂମି—ଶିକ୍ଷାକ୍ଷେତ୍ର । ଉଭୟ ଅନ୍ୟୋନ୍ୟସାପେକ୍ଷ—ଉଭୟର ସୀମା ନିର୍ଦ୍ଦେଶ କରିବା ଦୁଃସାଧ୍ୟ, ଅଥଚ ବ୍ୟକ୍ତି ବ୍ୟକ୍ତି, ଜାତି ଜାତି । ପୁଣି ସାର୍ବଭୌମ ପୂର୍ଣ୍ଣ ଆଦର୍ଶ ସହିତ ଜାତୀୟ ଜୀବନର ମିଳନ ସଂସ୍ଥାପିତ ନ ହେଲେ ତାହାର ମୂଲ୍ୟ କିଛି ରହେ ନାହିଁ । ଏ କୋଟିର ସମ୍ବନ୍ଧ ଯେଉଁମାନେ ଉପଲବ୍ଧି କରି ପାରିଅଛନ୍ତି, ସେହିମାନେ ଏହା ପୂର୍ଣ୍ଣାଙ୍ଗ ଉନ୍ନତିର ଅଧିକାରୀ । ଆଦର୍ଶ ନାନାଭାବରେ ନାନାସ୍ଥାନରେ କ୍ରମଶଃ ଜନସମାଜରେ ଅଭିବ୍ୟକ୍ତ ହେଉଅଛି ଏବଂ ମାନବଜୀବନର ସକଳ ବିଭାଗକୁ ଧୀରେ ଧୀରେ ପ୍ରଭାବିତ କରୁଅଛି । ବିଭିନ୍ନ ଯୁଗରେ ବିଭିନ୍ନ ଜାତି ମଧ୍ୟରେ ଅଭିବ୍ୟକ୍ତ ବିଶେଷତ୍ୱଗୁଡ଼ିକ ଏକ ସାଧାରଣ ଭୂମି ଉପରେ ସମ୍ମିଳିତ ହୋଇ ଯୁଗୋଚିତ ନବ ଆଦର୍ଶର ସୃଷ୍ଟି କରୁଅଛି । ଏହାକୁ ଯେ ଅବଜ୍ଞା କରେ—ସମ୍ମୁଖରେ ପାଇ ପୂଜା ଗ୍ରହଣ କରିବାକୁ ବିମୁଖ ହୁଏ, ସେ ଅତି ଦୀନ, କୃପାପାତ୍ର ! ଲକ୍ଷଶୂନ୍ୟ କାର୍ଯ୍ୟ ଆଦର୍ଶବିହୀନ ଜୀବନ ଏ ସଂସାରରେ ଅତି ହେୟ ପଦାର୍ଥ ।

ଏହି ଆଦର୍ଶର କ୍ଷୀଣ ଆଭାସ ମାତ୍ର ପ୍ରାଣରେ ଧାରଣ କରି 'ଉତ୍କଳ ସାହିତ୍ୟ' ଏହି ଉତ୍କଳ ଖଣ୍ଡରେ ଜନ୍ମଗ୍ରହଣ କରିଅଛି ଏବଂ ବିଗତ ୭ ବର୍ଷ

କାଳ କ୍ଷୀଣ କଣ୍ଠରେ ନାନା ଭାବରେ ଏହି ଆଦର୍ଶର ମହିମା ଘୋଷଣା କରିବାକୁ ଯତ୍ନବାନ୍ ହୋଇଅଛି । ଅତୀତ ପ୍ରତି 'ଉତ୍କଳ ସାହିତ୍ୟ' କୌଣସି କାଳେ ଉଦାସୀନ ଅଶ୍ରଦ୍ଧାନ ହୋଇ ନାହିଁ, ହେବ ନାହିଁ ଅତୀତହିଁ ଭବିଷ୍ୟତର ଭିତ୍ତିଭୂମି—ତାହାର ଉପରେ ଭବିଷ୍ୟତ ଜାତୀୟ ମନ୍ଦିର ନିର୍ମିତ ହେବ । ମାତ୍ର ଭବିଷ୍ୟତ ଲକ୍ଷ୍ୟସ୍ଥଳରେ ଏବଂ ବର୍ତ୍ତମାନ କାର୍ଯ୍ୟକ୍ଷେତ୍ରରେ ଏହାର ସ୍ଥିର ଦୃଷ୍ଟି ରହିଅଛି । କେବଳ ବସି ବସି ଅତୀତ ଗଣନା କରିବା—ପୂର୍ବ ଗୌରବ ସ୍ମରଣ କରି ଉଚ୍ଛ୍ୱାସରେ ବାତୁଳ ବିହ୍ୱଳ କାଳକ୍ଷେପ କରିବା ଶକ୍ତି ଓ ସମୟର ଅପବ୍ୟୟ ମାତ୍ର । ପକ୍ଷାନ୍ତରରେ ଶୂନ୍ୟରେ କାଳ୍ପନିକ ଜାତୀୟ ମଞ୍ଚ ନିର୍ମାଣ କରି ତାହାର ମୋହରେ ଉଲ୍ଲସିତ ହେବା ଏବଂ ତାହା ଦେଖିବାପାଇଁ ଜଗଦ୍‌ବାସୀଙ୍କୁ ଅହ୍ୱାନ କରିବା ବାତୁଳତା ଛଡ଼ା ଆଉ କିଛି ନୁହେ । ଏହା ଦେଖୁ ଦେଖୁ ଶୂନ୍ୟରେ ମିଳେଇ ଯାଏ । ଫଳ କେବଳ ଚିତ୍ତରେ ଅବସାଦ, ବାହାରେ ଲାଞ୍ଛନା ! 'ଉତ୍କଳ ସାହିତ୍ୟ' ଏ ଉଭୟର ବିରୋଧୀ । ସୁନିର୍ଦ୍ଦିଷ୍ଟ ପ୍ରଣାଳୀବଦ୍ଧ ସୁଶୃଙ୍ଖଳ କାର୍ଯ୍ୟ ଛଡ଼ା ଜାତୀୟ ଜୀବନ ଗଠିତ ହୋଇ ନ ପାରେ । ୭ ବର୍ଷ ଆମ୍ଭେମାନେ ଏହି ନୀତି ଅନୁସରଣ କରି କାର୍ଯ୍ୟ କରି ଆସିଲୁଁ । ମାତ୍ର ଶକ୍ତିର ଅଭାବରୁ ହେଉ ବା ଅବସ୍ଥାର ପ୍ରତିକୂଳାଚରଣରୁ ହେଉ ଆମ୍ଭମାନଙ୍କ ଗତି ପଦେ ପଦେ ପ୍ରତିହତ ହୋଇଅଛି—ଯେଉଁ ଆଶା ଆକାଂକ୍ଷା ହୃଦୟରେ ଧାରଣ କରି କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରିଥିଲୁଁ, ତାହାର ବିଫଳତା ବାରମ୍ବାର ହୃଦୟଙ୍ଗମ କରି ହୃଦୟ ମନ ଭଗ୍ନ ହୋଇ ଯାଉଅଛି ।

ଆମ୍ଭେମାନେ ଜାଣୁ ସାହିତ୍ୟ ଲକ୍ଷ୍ୟ ନୁହେ—ଲକ୍ଷ୍ୟ ବ୍ୟକ୍ତିଗତ ଓ ଜାତୀୟ ଜୀବନ ଏବଂ ଉଭୟ ସ୍ଥଳରେ ସାର୍ବଭୌମ ଆଦର୍ଶର ଅନୁସରଣ । ସାହିତ୍ୟ କେବଳ ସେ ଲକ୍ଷ୍ୟସାଧନରେ ସହାୟ ମାତ୍ର । ଏହି ହିସାବରେ ଜାତୀୟ ସାହିତ୍ୟର ସ୍ଥାନ ସକଳ ଉନ୍ନତ ଜାତି ମଧ୍ୟରେ ଅତି ଉଚ୍ଚ । ଏହି ହେତୁରୁ ଉନ୍ନତ ଜାତୀୟ ସାହିତ୍ୟ ସଂଗଠନ ଜାତିର ଉନ୍ନତମନା ବ୍ୟକ୍ତିମାନଙ୍କର ଗୋଟିଏ ପ୍ରଧାନ କର୍ତ୍ତବ୍ୟ ମଧ୍ୟରେ ପରିଗଣିତ ହୋଇଥାଏ । ଅର୍ଥାତ୍ ସାହିତ୍ୟର ଅବସ୍ଥା ଏପରି ହେବା ଉଚିତ ଯଦ୍ଦ୍ୱାରା ଯାହା ସୁନ୍ଦର, ଯାହା ସୁନୀତ, ଯାହା ପବିତ୍ର ସେଗୁଡ଼ିକ ପୂର୍ଣ୍ଣଭାବରେ ଓ ସମୁଚିତ ରୂପେ ବ୍ୟକ୍ତ ହୋଇ ପାରିବ ଏବଂ ଜନସାଧାରଣଙ୍କ ପ୍ରାଣକୁ ସ୍ପର୍ଶ କରି ପାରିବ । ଉତ୍କଳରେ ସେପ୍ରକାର ସାହିତ୍ୟଗଠନର ସ୍ପୃହା କାହିଁ ? ସେଥିପାଇଁ ସମୁଚିତ ଶ୍ରମ ଓ ଉତ୍ସାହ କାହିଁ ? ଏହା ଦିନକେ କିଛି ଗୋଟାଏ ଅଦ୍ଭୁତ ପଦାର୍ଥ ଗଢ଼ି ହୋଇଯାନ୍ତା—ସର୍ବାଙ୍ଗସୁନ୍ଦର ସାହିତ୍ୟଟାଏ ବାହାରି ପଡ଼ନ୍ତା, ଏପରି ଅସଙ୍ଗତ ଆଶା ଆମ୍ଭେମାନେ କଦାପି ପୋଷଣ କରି ନାହୁଁ । ମାତ୍ର ଆଦର୍ଶର କ୍ରମୋନ୍ନତି କାହିଁ ? ସମୁଚିତ ଧାରଣା ବା କାହିଁ ? ପାଠକ ସାଧାରଣଙ୍କର ସୂକ୍ଷ୍ମଦୃଷ୍ଟି ଓ ବିଚାରନୈପୁଣ୍ୟ କାହିଁ ? ପାଠକ ବା ଯଥେଷ୍ଟ କାହାନ୍ତି ? 'ଧୂଆ ମୂଳା ଅଧୂଆ ମୂଳା'ର ପ୍ରଭେଦ କେତେଜଣ ବୁଝି ପାରିଲେଣି ? ଯେତିକି ଦିନ ଯାଉଅଛି, ସେତିକି ଆମ୍ଭମାନଙ୍କର ଆଶା ଭରସା କ୍ରମେ କ୍ଷୀଣତର ହୋଇ ଆସୁଅଛି । ୭ ବର୍ଷ ମଧ୍ୟରୁ ଅଧିକାଂଶ ସମୟ କାର୍ଯ୍ୟର ଶୃଙ୍ଖଳା କରୁ କରୁ ଅତିବାହିତ ହୋଇଗଲା—ଏପର୍ଯ୍ୟନ୍ତ ତାହାର କିଛି ହେଲା ନାହିଁ । ଅବଶିଷ୍ଟ କାଳ ମାଟିଗୋଡ଼ ବାଛିବାରେ କାଟିଗଲା—ଆଜି ମଧ୍ୟ ସେହି କାର୍ଯ୍ୟ ସାରି ହୋଇଅଛି । ଏହାର ଫଳ କଣ ହୋଇଅଛି, କିଛି ହେବ କି ନାହିଁ, କହି ନ ପାରୁଁ ।

ଉତ୍କଳଖଣ୍ଡରେ ବର୍ତ୍ତମାନ ନବ ଜାତୀୟତାର ଆବିର୍ଭାବ ଘୋଷିତ ହୋଇଅଛି । ଜାତୀୟ ଯଜ୍ଞର ହୋତା ଉଦ୍‌ଗାତାଗଣ ପୁରାତନର ଅନ୍ତ୍ୟେଷ୍ଟିକ୍ରିୟା ଓ ନୂତନର ଜନ୍ମୋତ୍ସବ ସମ୍ପାଦନ କରି ଆସିଥାନ୍ତି । ନବ ଶିଶୁ ସୂତିକାଗାରରେ ଧାତ୍ରୀକୋଳରେ ବର୍ଦ୍ଧିତ ହେଉଅଛି । ଏହାର ପ୍ରଭାବରେ

ଦିନେ ଉତ୍କଳ ଖଣ୍ଡ ଉଦ୍ଭାସିତ ହେବ, ସମସ୍ତେ ଏହି ଆଶା ହୃଦୟରେ ପୋଷଣ କରିଅଛନ୍ତି । କାରଣ ଜନ୍ମଦାତା ଓ ପ୍ରତିପାଳକଗଣ ସମସ୍ତେ ଉଚ୍ଚ ଶ୍ରେଣୀର ବ୍ୟକ୍ତି, ସମସ୍ତେ ଦେଶର ଜଣେ ଜଣେ ଭାଗ୍ୟବିଧାତା କହିଲେ ଚଳେ । କୌଣସି ଉଦ୍‌ଗାତାଙ୍କ ମୁଖରୁ ଶୁଣିଅଛୁଁ—ସାହିତ୍ୟ ଜାତୀୟ ଜୀବନର ମୃତସଞ୍ଜୀବନ ମନ୍ତ୍ର । ନବ ରାଜ୍ୟର ନବ ସାହିତ୍ୟ ଅବଶ୍ୟ ଅଚିରେ ଆବିର୍ଭୂତ ହେବ । ଈଶ୍ୱର କରନ୍ତୁ, ସେ ଦିନ ଶୀଘ୍ର ଆସୁ, ସମସ୍ତେ ଦେଖି ଶୁଣି ନୟନ ମନ ସାର୍ଥକ କରନ୍ତୁ । ମୁହଁରେ ଯେ ଯେତେ ଆସ୍ଫାଳନ କରନ୍ତୁ, ଦେଶୀୟ ସାହିତ୍ୟପ୍ରତି ଅରୁଚି ଉତ୍କଳୀୟମାନଙ୍କର ସାଧାରଣ ଲକ୍ଷଣ । ସମ୍ଭବତଃ ନବ ସାହିତ୍ୟର ଆଗମନ ପ୍ରତୀକ୍ଷାରେ ଉତ୍କଳସନ୍ତାନଗଣ ଅଧୀର ହୋଇ ପଡ଼ିଅଛନ୍ତି, ତେଣୁ ପୁରାତନ ନିର୍ଜୀବ ବସ୍ତୁ ପ୍ରତି ସେମାନଙ୍କର ଅପେକ୍ଷାକୃତ ଅଧିକ ବିତୃଷ୍ଣା ଜନ୍ମିଅଛି ।

ସେ ଯାହା ହେଉ ଆଜି 'ଉତ୍କଳ ସାହିତ୍ୟ' ସେହି ନମ୍ର ସୋପାନରେ ପଡ଼ି ରହି କେବଳ ସ୍ୱଳ୍ପସଂଖ୍ୟକ ଅନୁରାଗୀ ଓ ହିତୈଷୀ ବନ୍ଧୁଙ୍କ ସହାୟତାରେ ନିଜର କ୍ଷୁଦ୍ର କର୍ତ୍ତବ୍ୟ ସମ୍ପାଦନ କରି ଆପଣାକୁ କୃତାର୍ଥ ମଣିବ । ଆମ୍ଭେମାନେ ସେହି ମାଟିଘୋଡ଼ା ଖାଟୁବାରେ ଜୀବନର ଅବଶିଷ୍ଟ ସମୟ ଅତିବାହିତ କରିବାପାଇଁ ହୃଦୟକୁ ପ୍ରସ୍ତୁତ କରୁଅଛୁଁ । ମାତ୍ର ଆମ୍ଭମାନଙ୍କ ଅବଲମ୍ବିତ ନୀତି ଚିରଦିନ ଅକ୍ଷୁଣ୍ଣ ରହିଥିବ କୌଣସି ପ୍ରକାର ସଙ୍କୀର୍ଣ୍ଣତା ବା ବକ୍ର ନୀତି 'ଉତ୍କଳସାହିତ୍ୟ'ର ସୀମା ସ୍ପର୍ଶ କରିବ ନାହିଁ । ଏଣିକି ବର୍ଷାରମ୍ଭରେ ଆତ୍ମକଥା ଲେଖିବାର ରୀତି ପରିତ୍ୟାଗ କଲୁଁ । ତାହାର ପ୍ରୟୋଜନୀୟତା କିଛି ବୁଝି ପାରୁ ନାହୁଁ ।



## କବି ହରିକୃଷ୍ଣ ।

### ( ଏକାଦଶୀମାହାତ୍ମ୍ୟ-ଅନୁବାଦକ )

ପାରଳାର ଓଡ଼ିଆ କବିମାନଙ୍କ ମଧ୍ୟରେ ଏକାଦଶୀମାହାତ୍ମ୍ୟ ଅନୁବାଦକ ହରିକୃଷ୍ଣ ସର୍ବ-ପ୍ରାଚୀନ କବି । ଏ ଜାତିରେ ଚିତ୍ରକର । ଏହାଙ୍କ ପିତାଙ୍କ ନାମ ଫକୀର ମହାରଣା ଓ ମାତାଙ୍କ ନାମ ଲୀଳାବତୀ । ହରିକୃଷ୍ଣଙ୍କ ବଂଶଲତା ଏହି :—




ହରିକୃଷ୍ଣ ପାରଳା ରାଜଭବନରେ ପ୍ରଧାନ ଚିତ୍ରକର ଥିଲେ । ପାରଳାର ଶ୍ରୀଜଗନ୍ନାଥ ଓ ଲିଉରି ଶ୍ରୀଗୋପୀନାଥଙ୍କ ଚିତ୍ର କରିବା ଏହାଙ୍କର ପ୍ରଧାନ କାର୍ଯ୍ୟ ଥିଲା । ଉତ୍ସବାଦି ସମୟରେ ରାଜ-ବାଟୀର ସମସ୍ତ ଚିତ୍ର କାର୍ଯ୍ୟ ମଧ୍ୟ ଏ କରୁଥିଲେ । ଏଥିଲାଗି ପାରଳାର ତତ୍କାଳୀନ ରାଜା ଏହାଙ୍କୁ ମହାପାତ୍ର ଉପାଧି ଓ ଲକ୍ଷ୍ମୀପୁର ନାମକ ଖଣ୍ଡିଏ ଗ୍ରାମ ପ୍ରଦାନ କରିଥିଲେ । ଲିଉରି ପାରଳା-ଖେମୁଣ୍ଡିଠାରୁ ଦଶ କ୍ରୋଶ ଦୂରରେ ସ୍ଥିତ ଗୋଟିଏ ପଲ୍ଲିଗ୍ରାମ । ଲିଉରିଗୋପୀନାଥ ପାରଳାଖେମୁଣ୍ଡି ତାଲୁକାର ଏକ ପ୍ରଧାନ ଦେବତା । ଏହିଠାରେ ପ୍ରତିବର୍ଷ ଦୋଳୋତ୍ସବ ହୁଏ । ସମସ୍ତ ସମୟରେ ପାରଳାର ରାଜା ପରିବାରଙ୍କ ସହିତ ଗୋପୀ-ନାଥଙ୍କ ଦର୍ଶନାର୍ଥେ ଏଠାକୁ ବିଜେ କରନ୍ତି । ଏହି ଗୋପୀନାଥ ମୂର୍ତ୍ତିଙ୍କୁ ହରିକୃଷ୍ଣ ସ୍ୱହସ୍ତରେ ଗଠନ କରିଥିବାର ଲୋକେ କହନ୍ତି । ହରିକୃଷ୍ଣ

ଅବସ୍ଥାପନ୍ନ ନ ଥିଲେ; ତଥାପି ଅର୍ଥ ସଂଗ୍ରହାଭିଳାଷ ତାହାଙ୍କୁ ସ୍ପର୍ଶ କରି ପାରି ନ ଥିଲା । କୁଟୁମ୍ବ ପରିପୋଷଣାର୍ଥେ ଯେତିକି ଆବଶ୍ୟକ ସେତିକରେ ସେ ସନ୍ତୁଷ୍ଟ ହେଉଥିଲେ । ଗୋପୀନାଥଙ୍କ ଗଠନ ଉପଲକ୍ଷରେ ହରିକୃଷ୍ଣ ଖଣ୍ଡିଏ ଗ୍ରାମ ପୁରସ୍କାର-ସ୍ୱରୂପ ପ୍ରାପ୍ତ ହୋଇଥିଲେ । ଯେତେବେଳେ ଶ୍ରୀ ଗୋପୀନାଥ ଓ ଜଗନ୍ନାଥଙ୍କୁ ଚିତ୍ର କରିବା ସକାଶେ ଆଉ ଖଣ୍ଡିଏ ଗ୍ରାମ ପାଇଲେ, ସେତେବେଳେ ପ୍ରଥମୋକ୍ତ ଗ୍ରାମ ଖଣ୍ଡିକ ଫେରାଇ ଦେଇଥିଲେ । ଏହା କେତେଦୂର ସତ୍ୟ ଆମ୍ଭେ କହି ନ ପାରୁଁ; କିନ୍ତୁ ହରିକୃଷ୍ଣଙ୍କ ବଂଶଧରମାନେ ଏହି କଥା କହନ୍ତି । ହରିକୃଷ୍ଣ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ନିଜ ବୃତ୍ତି ପ୍ରତି ଲକ୍ଷ ରଖି ସୁଦ୍ଧା ପାରମାର୍ଥିକ ଚିନ୍ତାରେ ଅନେକ କାଳ ଅତିବାହିତ କରୁଥିଲେ । ଏହାଙ୍କ ପ୍ରଗାଢ଼ ଦେବଭକ୍ତି ବିଷୟରେ ଗୋଟିଏ କିଂବଦନ୍ତୀ ପ୍ରଚଳିତ ଅଛି: ଲକ୍ଷ୍ମୀ ଗୋପୀନାଥ-ମୂର୍ତ୍ତି ଗଠନ କରୁ କରୁ ଏହାଙ୍କ ଗୋଡ଼ରେ ଶସ୍ତ୍ର ବାଜି ଗୋଡ଼ ଫୁଟିଗଲା । ନାନାପ୍ରକାର ଔଷଧ ଲେପନ କଲେ ମଧ୍ୟ କୌଣସିପ୍ରକାର ଉପଶମ ଲାଭ କରି ପାରିଲେ ନାହିଁ । ଦିନେ ମନସ୍ତାପରେ ଶଯ୍ୟାରେ ଶୋଇଥିଲେ, ସ୍ୱପ୍ନରେ କେହି ଜଣେ ଦେଖା ଦେଇ କହିଲେ—"ଭକ୍ତିରସ-ପ୍ରଧାନ କୌଣସି କବିତା ଯଦି ରଚନା କରିବୁ ତେବେ ତୋ ଗୋଡ଼ ଭଲ ହୋଇ ଯିବ" । ଏହି ସ୍ୱପ୍ନାଦେଶ ପାଇ ହରିକୃଷ୍ଣ ପ୍ରାତଃକାଳରୁ ଉଠି ଓଡ଼ିଆ ବର୍ଣ୍ଣମାଳାର ନିୟମାନୁସାରେ କ ଠାରୁ କ୍ଷ ପର୍ଯ୍ୟନ୍ତ ଚଉତିରିଶଟି ଜଣାଣ ରଚନା କରିବାକୁ କୃତ-ସଙ୍କଳ୍ପ ହେଲେ । ଯେଉଁ ଦିନ ରଚନା ଶେଷ ହେଲା ସେହି ଦିନ ହରିକୃଷ୍ଣ ଆରୋଗ୍ୟଲାଭ କଲେ । ହରିକୃଷ୍ଣ ସଂସ୍କୃତ ପଢ଼ିଥିଲେ । ଏହା ତାହାଙ୍କ ଏକାଦଶୀମାହାତ୍ମ୍ୟ ଓ ଅନ୍ୟାନ୍ୟ କବିତାରୁ ଜଣାଯାଏ । ମୂଳ ସଂସ୍କୃତ ଏକାଦଶୀ-ମାହାତ୍ମ୍ୟ ସହିତ ଏହାଙ୍କ ଅନୁବାଦ ତୁଳନା କରି ଦେଖନ୍ତୁ:—

ଶ୍ଲୋକ ।

କଥୟିଷ୍ୟାମି ରାଜେନ୍ଦ୍ର ଭବତଃ ସ୍ନେହକାରଣାତ୍ ।
ନ ତଥା ତୁଷ୍ଟିମେ ରାଜନ୍ କ୍ରତୁଭିଶ୍ଚାପ୍ତଦକ୍ଷିଣୈଃ ॥
ଯଥାମାତୁଷ୍ଟିକାୟାତି ଏକାଦଶ୍ୟା ବ୍ରତେନ ବୈ ।
ତସ୍ମାତ୍ସର୍ବପ୍ରୟତ୍ନେନ କର୍ତ୍ତବ୍ୟା ହରିବାସରଃ ॥

ଗୀତ ।

କହନ୍ତି କମଳାର ବର ।
ଶୁଣ ହେ ନୃପତିଶେଖର ॥
ଯାହା ପୁଚ୍ଛିଲ ଶ୍ରଦ୍ଧା ଚିତ୍ତେ ।
ମୋ ବସ୍ତୁ ସ୍ନେହ ଏସ୍ତୁ ବ୍ରତେ ॥
ଏ ମହା ଏକାଦଶୀ ପୁଣ୍ୟେ ।
ଯେମନ୍ତ ସନ୍ତୋଷ ମୋ ମନେ ॥
ଏ ବ୍ରତ କଲା ଯେତେ କର୍ମ ।
ଅନେକ ଯହିଁ ତପ ଧର୍ମ ॥
ଏଥେ ସନ୍ତୋଷ ମୋର ନାହିଁ ।
ଶ୍ରୀ ଏକାଦଶୀ ପ୍ରାପ୍ୟ ହୋଇ ॥
ଏ ମୋର ପ୍ରିୟ ଏକାଦଶୀ ।
ସକଳ ସୁଖ ପୁଣ୍ୟରାଶି ।
ଯତ୍ନେ ଯେ କରଇ ଏ ବ୍ରତ ।
ସେ ପ୍ରାଣୀ ମୋର ଆତ୍ମାହିତ ॥

ଶ୍ଲୋକ ।

ତଥାପ୍ୟେକାପି ଚୈକସ୍ୟା ଶୃଣୁ ରାଜନ୍ କଥାନକଂ ।
ଅତଃପରଂ ପ୍ରବକ୍ଷ୍ୟାମି ପୌଷସ୍ୟ କୃଷ୍ଣପକ୍ଷିକାଂ ।
ଲୋକାନାଂଚ ହିତାର୍ଥାୟ କଥୟାମି ବିଧିଂ ତଥା ।
ପୌଷସ୍ୟ କୃଷ୍ଣପକ୍ଷେ ବୈ ସଫଳାନାମନାମତଃ ॥

ଗୀତ ।

ତଥାପି ଶୁଣ ମହୀପତି ।
ଏକାଗ୍ର ଭାବେ ଦେଇ ମତି ॥
ଏକେକ ବ୍ରତର ଲକ୍ଷଣ ।
କହିବା କରି ପୁଣ ପୁଣ ।
ଯେ ପୁଷ୍ୟକୃଷ୍ଣ ଏକାଦଶୀ ।
ଅର୍ଥଦାୟିନୀ ପୁଣ୍ୟରାଶି ॥
ସଫଳା ନାମଟି ଏହାର ।
ଏଅନ୍ତେ ଶୁଣ ନୃପବର ।

ଏହାର ବର୍ଣ୍ଣନା ଯେତେ ।
କହିବା ଲୋକଙ୍କର ହିତେ ।

ଶ୍ଳୋକ ।

ନାଗାନାଂ ଚ ଯଥା ଶେଷଃ ପକ୍ଷିଣାଂ ଗରୁଡ଼ୋ ଯଥା ।
ଦେବାନାଂଚ ଯଥା କୃଷ୍ଣୋ ଦ୍ୱିପଦାଂ ବ୍ରାହ୍ମଣୋ ଯଥା ।
ବ୍ରତାନାଂଚ ତଥା ରାଜନ୍ ଏକାଦଶୀ ବିଶିଷ୍ୟତେ ॥

ଗୀତ ।

ନାଗଙ୍କ ମଧ୍ୟେ ଶେଷ ବଡ଼ ।
ପକ୍ଷିଙ୍କ ଶ୍ରେଷ୍ଠ ଗରୁଡ ॥
ଦେବଙ୍କ ଶ୍ରେଷ୍ଠ କୃଷ୍ଣ ଯେହ୍ନେ ।
ମାନବେ ଶ୍ରେଷ୍ଠ ଯେ ବ୍ରାହ୍ମଣେ ॥
ତେମନ୍ତ ବ୍ରତଙ୍କ ବିଶିଷ୍ଟ ।
ଶ୍ରୀ ଏକାଦଶୀ ବ୍ରତ ଶ୍ରେଷ୍ଠ ॥

ଶ୍ଳୋକ ।

ନାରିକେଳ ଫଳୈଶ୍ଚୈବ ତଥୈବ ବୀଜପୂରକୈଃ ।
ଜମ୍ବୀରୈର୍ଦାଡ଼ିମୈଶ୍ଚୈବ ତଥା ପୂଗଫଲୈସ୍ତଥା ।
ଲବଙ୍ଗୈର୍ବିବିଧୈଶ୍ଚୈବ ତଥାମ୍ରୈର୍ବିବିଧୈଃଫଳୈଃ
ପୂଜୟେଦ୍ଦେବଦେବେଶଂ ଧୂପଦୀପୈସ୍ତଥୈବଚ ॥

ଗୀତ ।

ଲବଙ୍ଗ ଆଦି ବାସ ଦ୍ରବ୍ୟ ।
ଯତନେ ଏହା ସମ୍ପାଦିବ ॥
ଜମ୍ବୀର ନାରିକେଳ ଆମ୍ବ ।
ଗୁଆ କମଳା ଡାଳି ଜାମ୍ବ ।
ଟଭା ନାରଙ୍ଗ ଯେ ଡାଳିମ୍ବ ।
ଏ ଆଦି ଯେତେକ ମିଳିବ ॥
ମୋତେ କରିବ ସମର୍ପଣ ।
ମଣ୍ଡଳେ କରି ସଂସ୍ଥାପନ ॥
ଶ୍ରୀ ନାରାୟଣଙ୍କୁ ଅର୍ଘ୍ୟ ।
ଷୋଡ଼ଶ ଉପଚାର ବିଧି ॥

ଉଦ୍ଧୃତ ପଦ୍ୟଗୁଡ଼ିକ ଅବିକଳ ଅନୁବାଦ ନ ହେଲେ ମଧ୍ୟ ସଂସ୍କୃତଭାଷାରେ କବିଙ୍କର କେତେଦୂର ଦଖଲ ଥିଲା ଏହାଦ୍ୱାରା ସହଜରେ ଅବଧାରିତ ହୁଏ । ହରିକୃଷ୍ଣ ଜଣେ ଶ୍ରମଶୀଳ ବ୍ୟକ୍ତି ଥିଲେ । ରାଜକାର୍ଯ୍ୟ, ଦେବକାର୍ଯ୍ୟ ଓ ନିଜର ବୃତ୍ତି ନିର୍ବାହ କଲାବାଦ ଯେଉଁ ଅବସର ପ୍ରାପ୍ତ ହେଉଥିଲେ ତାହା ପାରମାର୍ଥିକ କ୍ରିୟା ଓ କବିତା ରଚନାରେ ବିନିଯୋଗ କରୁଥିଲେ । ହରିକୃଷ୍ଣ ଅନେକଠାରେ ଆପଣାକୁ କବି ବୋଲି ପରିଚୟ ଦେଉଅଛନ୍ତି । ଏହାଙ୍କୁ ଏହି ଉପାଧି କିଏ ଦେଇଥିଲା ଜାଣିବା କଷ୍ଟସାଧ୍ୟ । କିନ୍ତୁ ତାହାଙ୍କର ଅନେକ ତାମ୍ରପତ୍ର ରାଜା ଗଜପତି ନାରାୟଣ ଦେବଙ୍କ ନାମରେ ଉତ୍କୀର୍ଣ୍ଣ ହୋଇଥିବାର ଦେଖି ଅନୁମାନ ହୁଏ ଗଜପତି ଦେବ ଏହାଙ୍କୁ ଏହି ଉପାଧିରେ ଭୂଷିତ କରିଥିଲେ ।

ହରିକୃଷ୍ଣ କେଉଁ ସମୟରେ ଜନ୍ମ ଗ୍ରହଣ କରିଥିଲେ ଜଣା ନାହିଁ । ଏହାଙ୍କ ଗ୍ରନ୍ଥରେ ମଧ୍ୟ ଏବିଷୟରେ କୌଣସିଠାରେ କିଛି ଲେଖା ନାହିଁ । କିନ୍ତୁ ୧୮୬୨ ଖ୍ରୀଷ୍ଟାବ୍ଦରେ ଲକ୍ଷ୍ମୀପୁର ଗ୍ରାମର ଚିରସ୍ଥାୟୀ ବନ୍ଦୋବସ୍ତ କରଯାଇ ଯେଉଁ ସନନ୍ଦ ପ୍ରଦତ୍ତ ହୋଇଥିଲା, ତହିଁରେ ଏତିକି ଲିପିବଦ୍ଧ ହୋଇଅଛିଃ—"ପାରଳାଖେମୁଣ୍ଡିର ଜଗନ୍ନାଥ ମୂର୍ତ୍ତିଙ୍କୁ ଚନ୍ଦ୍ର କରିବା ସକାଶେ ପାରଳାଖେମୁଣ୍ଡିର ରାଜା ଗଜପତି ନାରାୟଣ ଦେବ ହରିକୃଷ୍ଣଙ୍କୁ ଏହି ଲକ୍ଷ୍ମୀପୁର ଗ୍ରାମ ପ୍ରଦାନ କରିଥିଲେ । ହରିକୃଷ୍ଣଙ୍କ ବଂଶଧରମାନେ କହନ୍ତି ଏହି ଗ୍ରାମଦେଇ ପ୍ରାୟ ୧୦୦ ବର୍ଷ ହୋଇଥିବ । କିନ୍ତୁ କେତେକ ପ୍ରାଚୀନ ରେକର୍ଡ ପରୀକ୍ଷା କରି ଆମ୍ଭେ (ଇନାମ କମିଶନର) ଦେଖି ପାଉଅଛୁଁ ପ୍ରାୟ ୧୭୦ ବର୍ଷ ତଳେ ଏହି ଲକ୍ଷ୍ମୀପୁର ହରିକୃଷ୍ଣଙ୍କୁ ପ୍ରଦତ୍ତ ହୋଇଅଛି ।" ହରିକୃଷ୍ଣଙ୍କ ବଂଶଧରମାନଙ୍କ ଗଣନା ଯଦି ସତ୍ୟ ହୋଇଥାଏ ତେବେ ହରିକୃଷ୍ଣ ୧୭୬୨ ଖ୍ରୀଷ୍ଟାବ୍ଦରେ (୧୮୬୨-୧୦୦) ଲକ୍ଷ୍ମୀପୁର ପ୍ରାପ୍ତ ହୋଇଥିବେ । କିମ୍ବା ଇନାମ କମିଶନରଙ୍କ ଗଣନା ଯଦି ସତ୍ୟ ହୋଇଥାଏ, ତେବେ ଗଜପତି ନାରାୟଣ ଦେବ ୧୭୦୨ ଖ୍ରୀଷ୍ଟାବ୍ଦରେ (୧୮୬୨—୧୭୦) ହରିକୃଷ୍ଣଙ୍କୁ ଲକ୍ଷ୍ମୀପୁର ଦେଇଥିବେ । ହରିକୃଷ୍ଣଙ୍କ କାର୍ଯ୍ୟପ୍ରଣାଳୀ ଦେଖି ଏହି ଗ୍ରାମ ପୁରସ୍କାର ଦିଆଯାଇଥିବ, ଏଥିରେ

ସନ୍ଦେହ ନାହିଁ । କିନ୍ତୁ ପୁରସ୍କାରଯୋଗ୍ୟ ପ୍ରମାଣଦ୍ୱାରା ପ୍ରାପ୍ତ ହେଲା ସଉକ ହରିକୃଷ୍ଣଙ୍କ ବୟଃକ୍ରମ ୪୦ ରୁ ଊଣା ହୋଇ ନ ଥିବ । ତାହାହେଲେ ହରିକୃଷ୍ଣ ତାହାଙ୍କ ବଂଶଧରମାନଙ୍କ ଗଣନାନୁସାରେ ୧୭୨୨ ଖ୍ରୀଷ୍ଟାବ୍ଦରେ ନଭୁବା ଇନାମ କମିଶନରଙ୍କ ଗଣନାନୁସାରେ ୧୭୭୨ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବେ ।

ଏକାଦଶୀମାହାତ୍ମ୍ୟ ଓ ଗୋପୀନାଥଜଣାଣ ପ୍ରଭୃତି ହରିକୃଷ୍ଣ ଅନେକ ଚଉପଦୀ ଓ ଛାନ୍ଦବଣ ରଚନା କରିଅଛନ୍ତି । 'ରସାର୍ଣ୍ଣବ' ନାମରେ ଖଣ୍ଡିଏ ଗ୍ରନ୍ଥ ଏ ରଚନା କରିଥିବାର କେହି କେହି କହନ୍ତି, କିନ୍ତୁ ଏହା ଆମ୍ଭେ ଦେଖି ନାହୁଁ ।

ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ।

---

## ମିଆଁ ସାହେବଙ୍କ ରୋଜନାମଚା । (୨)

ମୁସଲମାନ ସମ୍ପ୍ରଦାୟ ପ୍ରଧାନ ଦୁଇ ଭାଗରେ ବିଭକ୍ତ:—ସିଆ ଓ ସୁନ୍ନୀ । ଏହି ସମ୍ପ୍ରଦାୟମାନଙ୍କ ମଧ୍ୟରେ ଅନେକ ଉପସମ୍ପ୍ରଦାୟ ଅଛି । ଉଭୟ ସମ୍ପ୍ରଦାୟର ମୂଳ ଧର୍ମଶାସ୍ତ୍ର 'କୋରାନ୍' ଅଟେ । କିନ୍ତୁ ଅନ୍ୟାନ୍ୟ କେତେକ ବିଷୟରେ ସେମାନଙ୍କର ମତଭେଦ ଥିବାରୁ ସେମାନେ ଅନେକ ସମ୍ପ୍ରଦାୟରେ ବିଭକ୍ତ ହୋଇଅଛନ୍ତି ।

ସିଆମାନେ ୧ କୋରାନ, ୨ ମହମ୍ମଦଙ୍କ ପ୍ରଦତ୍ତ ମୌଖିକ ଉପଦେଶରାଜିକୁ ଆପଣାର ପଥପ୍ରଦର୍ଶକ ବୋଲି ମାନନ୍ତି । କିନ୍ତୁ ସୁନ୍ନିମାନେ ୧ କୋରାନ୍, ୨ ମହମ୍ମଦଙ୍କ ପ୍ରଦତ୍ତ ମୌଖିକ ଆଦେଶ, ୩ ପଣ୍ଡିତମାନଙ୍କ ମତ ଓ ଟୀକା, ୪ ଯୁକ୍ତିଯୁକ୍ତ ସିଦ୍ଧାନ୍ତ ଏ ଚାରି ଅନୁସାରେ ଚଳନ୍ତି । କୋରାନ୍‌ରେ ଯେଉଁ ବିଷୟ ସ୍ପଷ୍ଟ ଲେଖା ଅଛି ସେଥିରେ କାହାର ମତଭେଦ ହେବାର ସମ୍ଭାବନା ନାହିଁ, କିନ୍ତୁ କୋରାନବହିର୍ଭୂତ କଥା ପଡ଼ିଲେ ଭିନ୍ନ ସମ୍ପ୍ରଦାୟଙ୍କର ପଥପ୍ରଦର୍ଶକ ଭିନ୍ନ ହୋଇ ଆସୁଅଛି । ପ୍ରଥମେ କୋରାନ ଲିପିବଦ୍ଧ ହୋଇ ଥିଲା, କିନ୍ତୁ ମହମ୍ମଦଙ୍କ ଉପଦେଶଗୁଡ଼ିକ ପଣ୍ଡିତମାନଙ୍କ ମୁଖରେ ପୁରୁଷାନୁକ୍ରମେ ଚଳି ଆସୁଥିଲା । କ୍ରମଶଃ ତହିଁରେ କେତେଗୁଡ଼ିଏ ବାଜେ କଥା ମିଶିଗଲା ଓ ଅବଶେଷରେ ସେଗୁଡ଼ିକ ଲିପିବଦ୍ଧ ହେଲା । ସେଗୁଡ଼ିକ ଲିପିବଦ୍ଧ ହୋଇ ମୁସଲମାନମାନଙ୍କର ନିକଟରେ ସ୍ୱରୂପ ହୋଇଅଛି । ତହିଁ ମଧ୍ୟରେ 'ହେଦାୟା' 'ଦରଲ-ମୁକ୍ତାର' ସର୍ବପ୍ରଧାନ । ସମ୍ପତ୍ତି ବିଭାଗ ବିଷୟରେ 'ସିରଜାୟା' ପ୍ରଧାନ ଧର୍ମପୁସ୍ତକ ଅଟେ । ମୁସଲମାନ-ମାନଙ୍କ ବ୍ୟବହାର (ଆଇନ) ସମ୍ବନ୍ଧରେ ଖଣ୍ଡିଏ ପ୍ରଧାନ ନଜିର ପୁସ୍ତକ ଅଛି । ତାହାର ନାମ 'ଫତ୍ୱା ଅଲମଗିର' । ସେଥିରେ ଆଇନ ସମ୍ବନ୍ଧରେ କେତେକ ପ୍ରଧାନ କାଜୀ ଓ ମୌଲବୀଙ୍କର ଉପଦେଶ ଏବଂ ନିଷ୍ପତ୍ତି ହୋଇଥିବା ଅନେକ ମକଦ୍ଦମାର ବିବରଣ ଲିପିବଦ୍ଧ ହୋଇଅଛି । ମୋଗଲସମ୍ରାଟ ଆଉରଙ୍ଗଜେବ କେତେକ ସୁପଣ୍ଡିତ ମୌଲବୀମାନଙ୍କ ଦ୍ୱାରା ଏ ପୁସ୍ତକ ସଙ୍କଳନ କରାଇଥିଲେ । ଭାରତୀୟ ମୁସଲମାନ ସମ୍ପ୍ରଦାୟର ଏହି ପୁସ୍ତକ 'Authorised Edition of Law Report' କହିଲେ ଚଳେ ।

ସୁନ୍ନିମାନେ ୪ ଉପସମ୍ପ୍ରଦାୟରେ ବିଭକ୍ତ । ଭାରତୀୟ ମୁସଲମାନମାନେ ଅଧିକାଂଶ ସ୍ଥଳରେ ହନାଫି ଉପସମ୍ପ୍ରଦାୟଭୁକ୍ତ । ସିଆମାନଙ୍କର ଅନେକ ଉପସମ୍ପ୍ରଦାୟ ଅଛି । ମୁସଲମାନଙ୍କ ଉପ-ସମ୍ପ୍ରଦାୟର ସଂଖ୍ୟା ୭୩ ପର୍ଯ୍ୟନ୍ତ ଥିବାର ମିଆଁ ସାହେବଙ୍କ ବାପା କହୁଥିଲେ ।

ପ୍ରତ୍ୟେକ ସମ୍ପ୍ରଦାୟ ଓ ଉପସମ୍ପ୍ରଦାୟର ବିଧାନ (ଆଇନ) ସ୍ୱତନ୍ତ୍ର । ଏକ ସମ୍ପ୍ରଦାୟଭୁକ୍ତ ମୁସଲମାନ ଅନ୍ୟ ସମ୍ପ୍ରଦାୟରେ ଦୀକ୍ଷିତ ହେଲେ ନୂତନ ଅବଲମ୍ବିତ ସମ୍ପ୍ରଦାୟର ବିଧାନ ଅନୁଯାୟୀ ସେ

ଚଳିବାକୁ ବାଧ ହୁଅନ୍ତି । ତାଙ୍କର ଧର୍ମର ବିଭାଗ ନୂତନ ସମ୍ପ୍ରଦାୟର ନିୟମର ବଶବର୍ତ୍ତୀ ହୁଏ ।

ମୁସଲମାନଙ୍କ ସମ୍ପତ୍ତିବିଭାଗର ନିୟମ ମିଅଁ-ସାହେବ ପରେ ଆମ୍ଭମାନଙ୍କୁ କହିବେ ବୋଲି ପ୍ରତିଶ୍ରୁତ ହୋଇଅଛନ୍ତି । ନୂଆ ନୂଆ ସେ ନିୟମ-ଗୁଡିକ ବୁଝିବାକୁ ଅଡୁଆ ଲାଗିବବୋଲି ଆମ୍ଭ-ମାନଙ୍କୁ ପୂର୍ବରୁ ଭୟ ଦେଖାଇଅଛନ୍ତି ।

ବିବାହ ।

ହିନ୍ଦୁମାନଙ୍କ ମଧ୍ୟରେ ବିବାହ ଧର୍ମବନ୍ଧନ ଅଟେ । ହିନ୍ଦୁ ସ୍ତ୍ରୀ ଓ ସ୍ୱାମୀ ମଧ୍ୟରେ ସମ୍ପର୍କର ମୂଳଭିତ୍ତି ଧର୍ମ, କିନ୍ତୁ ମୁସଲମାନଙ୍କ ବିବାହ ଗୋଟିଏ ସାମାଜିକ ବନ୍ଧନ ବା ଚୁକ୍ତି ମାତ୍ର । ଏହି ବନ୍ଧନ ଅକ୍ଳେଶରେ ଛିନ୍ନ କରଯାଇ ପାରେ । ବିବାହ ସମୟରେ ସାଧାରଣତଃ କୋରାଣର କେତେକ ଶ୍ଳୋକ ଆବୃତ୍ତି ହୁଏ, କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ଅଂଶ ବୋଲିଯିବାର ବିଧାନ ନାହିଁ । ବିବାହରେ ଉଲ୍ଲିଖିତ କେତେକ ସର୍ତ୍ତ ଅବଶ୍ୟ ପାଳନୀୟ:—ଏକ ପକ୍ଷର ପ୍ରସ୍ତାବ, ଅନ୍ୟ ପକ୍ଷର ଉକ୍ତ ପ୍ରସ୍ତାବ ସମର୍ଥନ ଏବଂ ପ୍ରସ୍ତାବ ସମର୍ଥନ ସମୟରେ କେତେକ ଜଣ ସାକ୍ଷିଙ୍କ ଉପସ୍ଥିତି । ପକ୍ଷମାନେ ସାବାଳକ ହୋଇଥିଲେ ପ୍ରସ୍ତାବ ଓ ସମର୍ଥନ ସେମାନେ ନିଜେ ନିଜେ କରିବେ, କିନ୍ତୁ ଯେଉଁଠାରେ ପକ୍ଷମାନେ ନାବାଳକ, ସେଠାରେ ସେମାନଙ୍କର ଉପଯୁକ୍ତ ଅଭିଭାବକମାନେ ନା-ବାଳକଙ୍କ ପକ୍ଷରୁ ପ୍ରସ୍ତାବ ଓ ସମର୍ଥନ କରିପାରନ୍ତି । ବିବାହ ସମ୍ବନ୍ଧରେ କେତେ ଗୋଟି ନିଷେଧାତ୍ମକ ନିୟମ ଅଛି । ୧. ନିଜର ରକ୍ଷିତା ଦାସୀକୁ ପୁରୁଷ ବିବାହ କରି ପାରିବ ନାହିଁ । ୨. ଗୋଟିଏ ସ୍ୱାଧୀନା ସ୍ତ୍ରୀକୁ ବିବାହ କରି ତାହା ସଙ୍ଗେ ବିବାହବନ୍ଧନ ବିଦ୍ୟମାନ ଥାଉଁ ଥାଉଁ ପର ଅନ୍ୟ ଜଣଙ୍କର ରକ୍ଷିତା ଦାସୀକୁ ବିବାହ କରି ପାରିବ ନାହିଁ । ୩. ନିଷିଦ୍ଧ ରକ୍ତସମ୍ପର୍କୀୟା ସ୍ତ୍ରୀକୁ ପୁରୁଷ ବିବାହ କରି ପାରିବେ ନାହିଁ । ୪. ପରସ୍ପର ମଧ୍ୟରେ ନିଷିଦ୍ଧ ରକ୍ତସମ୍ପର୍କୀୟା ଦୁଇଟି ସ୍ତ୍ରୀଙ୍କୁ ଏକକାଳୀନ ଜଣେ ପୁରୁଷ ବିବାହ କରି ପାରିବେ ନାହିଁ । ୫. ଯେଉଁ ପୁରୁଷଙ୍କର ୪ ଟି ସ୍ତ୍ରୀ ବିଦ୍ୟମାନ, ସେ ୫ମ ସ୍ତ୍ରୀ ଗ୍ରହଣ କରି ପାରିବେ ନାହିଁ ।

ସ୍ତ୍ରୀ ବୟଃପ୍ରାପ୍ତା ହେଲେ ଅଭିଭାବକଙ୍କ ବିନା-ଅନୁମତିରେ ସ୍ୱେଚ୍ଛାକ୍ରମେ ପତି ବରଣ କରିପାରନ୍ତି । ଯେଉଁଠାରେ ଅଭିଭାବକ ବୟଃପ୍ରାପ୍ତା କନ୍ୟା ପ୍ରଦାନ କରନ୍ତି, ସେଠାରେ କନ୍ୟାର ଅଙ୍ଗୀକାର ଏକାନ୍ତ ଆବଶ୍ୟକ । ଯେବେ କନ୍ୟା ବା ବର ବୟଃପ୍ରାପ୍ତ ନ ହେଉଣୁ ପିତା ବା ପିତାମହଙ୍କ ଛଡ଼ା ଅନ୍ୟ ଅଭିଭାବକ ଉକ୍ତ ବର ବା କନ୍ୟାକୁ ପ୍ରଦାନ କରିଥାନ୍ତି ବୟଃପ୍ରାପ୍ତ ହେଲାରୁ ଉକ୍ତ ବର ବା କନ୍ୟା ଉକ୍ତ ବିବାହକୁ ଅଗ୍ରାହ୍ୟ କରିପାରନ୍ତି । ବିବାହ ସମୟରେ ବର କହିବେ 'ମୁଁ ତାହାଙ୍କୁ ବିବାହ କଲି' । କନ୍ୟା ଉତ୍ତର ଦେବେ 'ମୁଁ ଗ୍ରହଣ କଲି' । ଏକ ସମୟରେ ଏବଂ ଏକ ସ୍ଥାନରେ ଏ ପ୍ରସ୍ତାବ ଏବଂ ସମର୍ଥନ ହେବାର ଆବଶ୍ୟକ । ଏହା ନ ହେଲେ ବିବାହ ଅସିଦ୍ଧ ହେବ ।

ମୁସଲମାନ ପୁରୁଷ ଏକେଶ୍ୱରବାଦୀ ସମ୍ପ୍ରଦାୟ-ଭୁକ୍ତା ସ୍ତ୍ରୀକୁ ( ଯଥା ଇହୁଦୀ, ଖ୍ରୀଷ୍ଟିୟାନ, ) ବିବାହ କରି ପାରିବେ, କିନ୍ତୁ ଅନେକେଶ୍ୱରବାଦୀ, ପ୍ରତିମାପୂଜକ ଅଗ୍ନିପୂଜକ ସମ୍ପ୍ରଦାୟର ସ୍ତ୍ରୀ ଅବୈଧ ନିଷିଦ୍ଧ । ଉକ୍ତ ଧର୍ମମଣ୍ଡଳୀଭୁକ୍ତା ସ୍ତ୍ରୀ ଯେବେ ମୁସଲମାନ ଧର୍ମ ଗ୍ରହଣ କରନ୍ତି ତାହା ହେଲେ ବିବାହରେ କୌଣସି ଆପତ୍ତି ନାହିଁ ।

ବିବାହ ସମୟରେ ଅନ୍ତତଃ ୨ ଜଣ ପୁରୁଷ ସାକ୍ଷୀ ଏକାନ୍ତ ଆବଶ୍ୟକ । ବିବାହ ନିମନ୍ତେ ନିଷିଦ୍ଧସମ୍ପର୍କୀୟା ସ୍ତ୍ରୀ ରକ୍ତସମ୍ପର୍କ ଅନୁସାରେ ଆପଣାର କିମ୍ବା ଆପଣା ସ୍ତ୍ରୀର ମାତା, ପିତାମହୀ, ଭଉଣୀ, ଆପଣାର କିମ୍ବା ପିତା ମାତାଙ୍କର ଖୁଡ଼ି, ମାଇଁ, ପିଉସୀ, ମାଉସୀ, ଭାଇର ବା ଭଉଣୀର ଝିଅ, ଶାଶୁ, ସ୍ତ୍ରୀର ଝିଅ ବା ନାତୁଣୀ, ପୁଅ କିମ୍ବା ନାତିର ସ୍ତ୍ରୀ ଅଟନ୍ତି । ପାଳନସମ୍ପର୍କ ଅନୁସାରେ ଉପରୋକ୍ତସ୍ଥାନୀୟା ସ୍ତ୍ରୀମାନଙ୍କୁ ବିବାହ କରିବା

ନିଷିଦ୍ଧ । ଅର୍ଥାତ୍ ଯେ ଆପଣାକୁ ସ୍ତନ୍ୟ ପାନ କରାଇଅଛନ୍ତି ପାଳନ ସମ୍ବନ୍ଧରେ ତାଙ୍କୁ ମାତା ବୋଲି ଗଣିଲେ ଏବଂ ତାଙ୍କ ସ୍ୱାମୀଙ୍କୁ ପିତା ଗଣିଲେ ସେମାନଙ୍କ ସହିତ ଯେଉଁ ସ୍ତ୍ରୀମାନଙ୍କର ଉପରୋକ୍ତମତେ ସମ୍ବନ୍ଧ ଅଛି ସେ ସ୍ତ୍ରୀମାନଙ୍କୁ କୌଣସି ପୁରୁଷ ବିବାହ କରି ପାରିବେ ନାହିଁ ।

ବିବାହ ପରେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ନିମ୍ନଲିଖିତ ବାଧ୍ୟବାଧକତା ସମ୍ବନ୍ଧ ଜନ୍ମେ:—

୧ । ଅନ୍ୟ ସ୍ଥାନକୁ ଯିବା କିମ୍ବା ବାହାରକୁ ବାହାରିବାରେ ସ୍ତ୍ରୀଙ୍କୁ ସ୍ୱାମୀଙ୍କ ଆଜ୍ଞା ଅନୁସାରେ ଚଳିବାକୁ ହେବ ।

୨ । ସ୍ୱାମୀ ସ୍ତ୍ରୀଙ୍କୁ ଯୌତୁକ ଦେବେ ଏବଂ ଭୋଜନ ଓ ବସ୍ତ୍ରାଦି ଦେବେ ।

୩ । ଉଭୟଙ୍କର ନିଷିଦ୍ଧସମ୍ପର୍କୀୟ ଆତ୍ମୀୟ ଅନ୍ୟୋନ୍ୟଙ୍କର ନିଷିଦ୍ଧସମ୍ପର୍କୀୟ ହେବେ । ସ୍ୱାମୀଙ୍କ ନିଷିଦ୍ଧସମ୍ପର୍କୀୟ ଆତ୍ମୀୟଙ୍କୁ ସ୍ତ୍ରୀ କିମ୍ବା ସ୍ତ୍ରୀଙ୍କ ନିଷିଦ୍ଧ-ସମ୍ପର୍କୀୟା ଆତ୍ମୀୟାଙ୍କୁ ସ୍ୱାମୀ ବିବାହ କରି ପାରିବେ ନାହିଁ ।

୪ । ବିଧି ଅନୁସାରେ ପରସ୍ପର ପରସ୍ପରଙ୍କ ସମ୍ପତ୍ତିରେ ଉତ୍ତରାଧିକାରୀ ହେବେ ।

୫ । ସ୍ତ୍ରୀ ସ୍ୱାମୀଙ୍କ ସହିତ ଏକ ଶଯ୍ୟାରେ ଶୟନ କରିବେ ।

୬ । ସ୍ତ୍ରୀ ଦୁଷ୍ଟା ବା ଅବିନୀତା ହେଲେ ସ୍ୱାମୀ ତାହାଙ୍କୁ ଶାସନ କରିବେ । ଅପ୍ରାପ୍ତବୟସ୍କା ସ୍ତ୍ରୀଙ୍କୁ ଭରଣପୋଷଣ କରିବାନିମନ୍ତେ ସ୍ୱାମୀ ବାଧ୍ୟ ନୁହନ୍ତି ।

କନ୍ୟା ବିବାହବେଳେ ଉପସ୍ଥିତ ହୋଇ ନ ପାରିଲେ, ପ୍ରତିନିଧି ବା ଓକିଲଙ୍କଦ୍ୱାରା ବିବାହ କାର୍ଯ୍ୟ ଯଥାନିୟମରେ ସମ୍ପନ୍ନ ହୋଇ ପାରେ ।

ସାମୟିକ ବିବାହ—କେତେକ ସିଆଙ୍କ ମଧ୍ୟରେ କିଛିଦିନପାଇଁ ବିବାହ-ବନ୍ଧନ ସ୍ଥାପିତ ହୋଇ ପାରେ । ଉକ୍ତପ୍ରକାର ବନ୍ଧନ ମିଆଦ ସମୟ ଗତ ହେଲେ କିମ୍ବା ଉଭୟ ପକ୍ଷର ଇଚ୍ଛାରେ ଯେତେ ବେଳେ ଇଚ୍ଛା ସେତେବେଳେ ଛେଦନ କରାଯାଇ ପାରେ । କିନ୍ତୁ ବିବାହୋତ୍ପନ୍ନ ସନ୍ତାନମାନେ ପିତୃସମ୍ପତ୍ତିରେ ଅଧିକାରୀ ହୋଇ ପାରିବେ ।

ଯୌତୁକକୁ 'ଦେନ୍ ମେହେର' ବୋଲାଯାଏ । ଯୌତୁକ ବିନା ବିବାହ ହୋଇ ନ ପାରେ । ପ୍ରତ୍ୟେକ ବିବାହରେ ସ୍ୱାମୀ ସ୍ତ୍ରୀଙ୍କୁ ଅବଶ୍ୟ କିଛି ଯୌତୁକ ଦେବେ । ବିବାହ ସମୟରେ ଯୌତୁକର ଚୁକ୍ତି ହୋଇ ନ ଥିଲେ ମଧ୍ୟ ସ୍ତ୍ରୀ ସ୍ୱାମୀଙ୍କଠାରୁ ନିର୍ଦ୍ଦିଷ୍ଟ ମେହେର ପାଇବାର ଅଧିକାରିଣୀ ଅଟନ୍ତି । ମଦ୍ୟ ଓ ଶୂକର ଛଡ଼ା ଅନ୍ୟ ସମସ୍ତ ସମ୍ପତ୍ତି ଯୌତୁକରୂପେ ପ୍ରଦତ୍ତ ହୋଇ ପାରେ । ଯୌତୁକର ନ୍ୟୂନ ସୀମା ଏକଟଙ୍କା, ଉଚ୍ଚ ସୀମା ନିର୍ଣ୍ଣୀତ ନାହିଁ । ମେହେର ଦୁଇ ପ୍ରକାର :— ୧ ନଗଦ, ୨ କାଲ । ନଗଦ ଯୌତୁକ ବିବାହ ସମୟରେ ଦେୟ । କାଲ ଯୌତୁକ ସ୍ୱାମୀଙ୍କ ଅନ୍ତେ କିମ୍ବା ବିବାହ ବନ୍ଧନ ଛିନ୍ନ ହେବା ସମୟରେ ଦେବାକୁ ହୁଏ । ସାଧାରଣତଃ ଯୌତୁକର ଏକ ଅଂଶ ନଗଦ ଓ ଏକ ଅଂଶ ପରେ ଦେୟ ବୋଲି ବିବାହ ସମୟରେ ନିର୍ଦ୍ଦିଷ୍ଟ ହୁଏ । ବିବାହ ପରେ ସ୍ୱାମି ସ୍ତ୍ରୀଙ୍କରି ସହବାସ ହେଲେ ଏବଂ ସ୍ୱାମୀଙ୍କ ମୃତ୍ୟୁ ପରେ ତାହାଙ୍କ ଦେୟ ଯୌତୁକ ତାଙ୍କର ଋଣରୂପେ ପରିଗଣିତ ହୁଏ । ସ୍ତ୍ରୀର ଉକ୍ତ ପ୍ରାପ୍ୟ ନିମନ୍ତେ ସ୍ୱାମୀଙ୍କ ସମ୍ପତ୍ତି ଦାୟୀ ରହେ । ଯୌତୁକର ନଗଦ ଅଂଶ ସ୍ୱାମୀ ନ ଦେବା ପର୍ଯ୍ୟନ୍ତ ସ୍ତ୍ରୀ ସ୍ୱାମୀଙ୍କ ସଙ୍ଗେ ସହବାସ କରିବାକୁ ବାଧ୍ୟ ନୁହନ୍ତି, କିମ୍ବା ସ୍ୱାମୀଙ୍କ ନାମରେ ନାଲିସ କରି ପାରନ୍ତି । କିନ୍ତୁ ଯୌତୁକର ପଶ୍ଚାଦ୍ଦେୟ ଅଂଶରେ ସ୍ୱାମୀଙ୍କ ମୃତ୍ୟୁ କିମ୍ବା ବିବାହ-ବନ୍ଧନ ଛେଦନ ପୂର୍ବରୁ ସ୍ତ୍ରୀଙ୍କର ଅଧିକାର ନାହିଁ ।

ମୁସଲମାନ ସ୍ୱାମୀ ଅନ୍ୟ ଧର୍ମ ଗ୍ରହଣ କଲେ ପ୍ରାକ୍-ସମ୍ବନ୍ଧ ଛିନ୍ନ ହୁଏ । ସ୍ୱାମୀ ଓ ସ୍ତ୍ରୀ ଉଭୟେ ଧର୍ମାନ୍ତର ଗ୍ରହଣ କଲେ ପୂର୍ବ ବିବାହବନ୍ଧନ ଅଚ୍ଛିନ୍ନ ରହେ । ଅନ୍ୟ ଧର୍ମଭୁକ୍ତ ସ୍ୱାମୀ ମୁସଲମାନ ଧର୍ମ ଗ୍ରହଣ କଲେ ପୂର୍ବର ବିବାହବନ୍ଧନ ଅଚ୍ଛିନ୍ନ ରହେ— ଅନ୍ୟ ଧର୍ମଭୁକ୍ତା ସ୍ତ୍ରୀ ମୁସଲମାନ ଧର୍ମ

ଗ୍ରହଣ କଲେ, ଯଦି ସ୍ୱାମୀ ମୁସଲମାନ ଧର୍ମ ଗ୍ରହଣ ନ କରନ୍ତି ତାହାହେଲେ ବିବାହ-ବନ୍ଧନ ଛିନ୍ନ ହୁଏ ।

ବିବାହ-ବନ୍ଧନ ଛେଦ ବା ଛାଡ଼ପତ୍ର ପ୍ରଥା— ଉଭୟ ପକ୍ଷଙ୍କର ବିବାହ-ବନ୍ଧନ ଛେଦ କରିବାର ଅଧିକାର ଅଛି । ସ୍ୱାମୀ କିମ୍ବା ସ୍ତ୍ରୀ କିମ୍ବା ଉଭୟେ ବିଚାରକଙ୍କ ନିକଟରେ ଉପଯୁକ୍ତ କାରଣ ( ଯଥା କ୍ଳୀବତ୍ୱ, ଅପାରଗତା, ନଷ୍ଟଭତା, ସଙ୍ଗତ୍ୟାଗ ଇତ୍ୟାଦି ) ଦର୍ଶାଇ ବିବାହ-ବନ୍ଧନ ଛେଦନ ନିମନ୍ତେ ଆବେଦନ କରି ପାରନ୍ତି । ସ୍ୱାମୀ ସ୍ତ୍ରୀଙ୍କୁ ତ୍ୟାଗ କରିବା ପ୍ରଥାକୁ ତଲାକ୍ ବୋଲାଯାଏ । ତଲାକ୍ ଅତି ଘୃଣିତ କାର୍ଯ୍ୟ ବୋଲି ମହମ୍ମଦ କହି ଯାଇଅଛନ୍ତି ।

ସ୍ୱାମୀ ସ୍ତ୍ରୀଙ୍କ ସମ୍ମୁଖରେ 'ତଲାକ୍' ବାକ୍ୟ ଉଚ୍ଚାରଣ କରି ୩ ମାସ ପର୍ଯ୍ୟନ୍ତ ସ୍ତ୍ରୀଙ୍କ ସହବାସ କରିବେ ନାହିଁ ଓ ୩ ମାସ ଅତୀତ ହେଲାରୁ ବିବାହ-ବନ୍ଧନ ଛିନ୍ନ ହେବ । ଏହି ୩ ମାସ ନ ପୂରୁଣୁ ସ୍ୱାମୀ ସ୍ତ୍ରୀଙ୍କୁ ପୁନର୍ବାର ଗ୍ରହଣ କରି ପାରନ୍ତି । କିନ୍ତୁ ୩ ମାସ ପୂର୍ଣ୍ଣ ହେଲାରୁ ସ୍ୱାମୀ ଯଦି ତଲାକଦିଆ ସ୍ତ୍ରୀଙ୍କୁ ପୁନର୍ବାର ଗ୍ରହଣ କରିବାକୁ ଇଚ୍ଛା କରନ୍ତି ତାହାହେଲେ ଉକ୍ତ ସ୍ତ୍ରୀ ପ୍ରଥମେ ଅନ୍ୟ ଜଣକୁ ବିବାହ କରିବେ ଏବଂ ୨ୟ ସ୍ୱାମୀ ତାଙ୍କୁ ଛାଡ଼ପତ୍ର ଦେବେ । ତତ୍ପରେ ପୁନର୍ବାର ପ୍ରଥମ ସ୍ୱାମିଙ୍କୁ ବିବାହ କଲେ ପୁନର୍ମିଳନ ହେବ ।

କ୍ରମଶଃ

ଶ୍ରୀ ଦୁର୍ମୁଖ ଶର୍ମା



## ଯାବଗପୁର । (୨)

ଯାତ୍ରା ପର୍ବ, ତୀର୍ଥ ବ୍ରତ, ଷଠୀ ଚଉଠୀ, ପୂଜା ଅର୍ଚ୍ଚନା, ରୀତି ନୀତି—ଏହି ସବୁ ମାନବଜାତିର ଧର୍ମ ଓ ଜାତୀୟତାର ପରିଚୟ ଦିଏ । ଏହାର ପ୍ରଭେଦରେ ବ୍ରାହ୍ମଣର ଶାଖା, ମତ ଓ ଧର୍ମର ପ୍ରଭେଦ—ପଞ୍ଚଗୌଡ଼, ପଞ୍ଚଦ୍ରାବିଡ଼, ଦ୍ୱୈତ ଅଦ୍ୱୈତ, ବିଶିଷ୍ଟାଦ୍ୱୈତ, ବୈଦିକ, ସ୍ମାର୍ତ୍ତ, ଲୌକିକ ଇତ୍ୟାଦି । ଏହି ବ୍ରତନିୟମନିଷ୍ଠାଗୁଡ଼ିକୁ ନେଇ ଉତ୍କଳ ଓ ଅନ୍ଧ୍ରମାନଙ୍କ ସାମଞ୍ଜସ୍ୟ ଓ ତାରତମ୍ୟ ଦେଖାଯାଇ ପାରେ । ଉଭୟ ଜାତିଙ୍କର ଗଣନା-ପ୍ରଣାଳୀ ଚାନ୍ଦ୍ରମାନ ହେଲେ ସୁଦ୍ଧା ଅନ୍ଧ୍ର-ଦ୍ରାବିଡ଼ମାନେ ଶୁକ୍ଳ ପ୍ରତିପଦ୍‌ଠାରୁ ମାସ ଗଣନାରମ୍ଭ କରନ୍ତି । ଉତ୍କଳୀୟମାନଙ୍କର କୃଷ୍ଣ ପ୍ରତିପଦ୍ ମାସର ପ୍ରଥମ ଦିବସ । ଦାକ୍ଷିଣାତ୍ୟମାନଙ୍କ ପ୍ରଧାନ ଅର୍ଚ୍ଚିତ ଦେବତା—ଶ୍ରୀ କୂର୍ମଂରେ କୂର୍ମନାଥ ସ୍ୱାମୀ, ଭଦ୍ରାଚଳଂରେ ଶ୍ରୀ ରାମଚନ୍ଦ୍ର ସ୍ୱାମୀ, ସିଂହାଚଳଂରେ ସିଂହାଦ୍ରିଅପ୍ପନ୍, ତିରୁପତିରେ, ବେଙ୍କଟେଶ୍ୱର ସ୍ୱାମୀ, ଶ୍ରୀରଙ୍ଗଂରେ ରଙ୍ଗନାୟକୁଲୁ ସ୍ୱାମୀ, ଅହୋବଲଂରେ ନୃସିଂହ ସ୍ୱାମୀ, ତିରୁତ୍ତଣିରେ ସୁବ୍ରହ୍ମଣ୍ୟେଶ୍ୱରଂ, କୋଟିପଲ୍ଲିରେ ସୋମେଶ୍ୱରଂ, କାଞ୍ଚୀରେ ବରଦରାଜ ସ୍ୱାମୀ, ଅନକାପଲ୍ଲିରେ ନୂକାଲମ୍ମା । ଏହି ପ୍ରଦେଶରେ ସାଧାରଣତଃ ରାମ-ନବମୀ, ଶିବରାତ୍ରି ଓ ବୈକୁଣ୍ଠ ଏକାଦଶୀ ପ୍ରଧାନ ପର୍ବ, ଏବଂ ନାନାସ୍ଥାନରେ "ଅମ୍ମୋରୁ ପାଣ୍ଡୁଗା"ର ଅଭାବ ନାହିଁ । କୌଣସି କୌଣସି ସ୍ଥାନରେ ବେଣୁଗୋପାଳ ସ୍ୱାମୀଙ୍କ ପ୍ରତିଷ୍ଠା ଥିଲେହେଁ ସାଧାରଣତଃ ଦ୍ୱାପର ଯୁଗର ଶ୍ରୀକୃଷ୍ଣାବତାରର ଏବଂ କଳି ଅବତାର ଜଗନ୍ନାଥଙ୍କର ପର୍ବାଦିବିଧି-ପାଳନ ଅତ୍ୟନ୍ତ ବିରଳ । ଉତ୍କଳ ଅଞ୍ଚଳରେ ଶିବପାର୍ବତୀ, ସୀତାରାମ, ଲକ୍ଷ୍ମୀନାରାୟଣାଦି ଦେବଦେବୀଙ୍କ ଅର୍ଚ୍ଚନା ଉତ୍ସବ ଯଥେଷ୍ଟ ପରିମାଣରେ ଥିଲେହେଁ ଜଗନ୍ନାଥ ଓ ରାଧାକୃଷ୍ଣଙ୍କ ପ୍ରତିମା, ପ୍ରତିଷ୍ଠା, ଅର୍ଚ୍ଚନା ଓ ତତ୍ସମ୍ବନ୍ଧୀୟ ପର୍ବାଦି ବିଧି ବିଶେଷ ପାଳିତ ହୁଏ ।

ସାଧାରଣତଃ ଅମାବସ୍ୟା ଓ ସଂକ୍ରାନ୍ତି ହିନ୍ଦୁମାନଙ୍କର ପିତ୍ରାର୍ଚ୍ଚନାର ଦିନ। ଉତ୍କଳୀୟମାନଙ୍କ ପକ୍ଷରେ ବିଶେଷତଃ ଅମାବସ୍ୟା ଯେରୂପ ପିତୃଶ୍ରାଦ୍ଧର ଦିନ, ଅନ୍ଧ୍ର ଓ ଦ୍ରାବିଡ଼ମାନଙ୍କ ପକ୍ଷରେ ସଂକ୍ରମଣ ତଦ୍ରୂପ।

ସାଧାରଣପାଳନୀୟ କତିପୟ ଉତ୍ସବ ଦିନ ନିମ୍ନରେ ପ୍ରଦତ୍ତ ହେଲା।

| ଅନ୍ଧ୍ର, ଦ୍ରାବିଡ଼ | ଉତ୍କଳ ଗୌଡ଼। |
|---|---|
| ମକର ସଂକ୍ରମଣ | ମାର୍ଗଶିର ଗୁରୁବାର।<br>ସମ୍ବର ଦଶମୀ।<br>କୁମାରପୂର୍ଣ୍ଣିମା।<br>ମହାଲକ୍ଷ୍ମୀ।<br>ଶ୍ରାବଣ ପୂର୍ଣ୍ଣିମା।<br>ସାବିତ୍ରୀ ଅମାବସ୍ୟା |
| ସମ୍ବତ୍ସର | ଦୋଳପୂର୍ଣ୍ଣିମା |
| ଆବର୍ତ୍ତି ସଂକ୍ରମଣ (କର୍କଟ) | ... ... ... |
| ଦୀପାବଳୀ ଅମାବସ୍ୟା | ଦୀପାବଳୀ ଅମାବସ୍ୟା |
| ବିଜୟାଦଶମୀ (ଦଶହରା) | ଦଶହରା। |
| କାର୍ତ୍ତିକପୂର୍ଣ୍ଣିମା | କାର୍ତ୍ତିକପୂର୍ଣ୍ଣିମା। |
| ନାଗଚତୁର୍ଥୀ (ସୁବ୍ରହ୍ମଣ୍ୟେଶ୍ୱର ପୂଜା) | ନାଗଚତୁର୍ଥୀ। |
| ବିନାୟକଚତୁର୍ଥୀ | ବିନାୟକଚତୁର୍ଥୀ। |

ଅନ୍ଧ୍ରମାନଙ୍କ ଉତ୍ସବ ପର୍ବାଦିମାନଙ୍କରେ ମକର ସଂକ୍ରାନ୍ତି (ଯେଦା ପାଣ୍ଡୁଗା) ପର୍ବଶ୍ରେଷ୍ଠ ଓ ପ୍ରାୟ ସର୍ବତ୍ର ପାଳିତ। ଏ ଦିନ ଉତ୍କଳ ପ୍ରଦେଶରେ ଲୋକେ ( ବିଶେଷତଃ ବୈଷ୍ଣବ ଲୋକେ ) ପ୍ରାତଃସ୍ନାନ କରି ମକରଚାଉଳ ପ୍ରସ୍ତୁତ କରି ଦେବପୂଜା କରିଥାନ୍ତି। ଏ ପର୍ବରେ ଉତ୍କଳ ଦେଶରେ ସାଧାରଣତଃ ଏତିକି ମାତ୍ର ପାଳିତ ହୁଏ। ଉତ୍କଳୀୟମାନଙ୍କର ସାବିତ୍ରୀ ଅମାବସ୍ୟା, ମାର୍ଗଶିର ଗୁରୁବାର, ସମ୍ବରଦଶମୀ, ମହାଲକ୍ଷ୍ମୀ, କୁମାରପୂର୍ଣ୍ଣିମା—ଏହି ସକଳ ପର୍ବଦିନଗୁଡ଼ିକ ଅନ୍ଧ୍ରମାନଙ୍କ ଏହି ମକର ସଂକ୍ରମଣ ସହିତ ସମାନ ହେବ। ମଲୟାଳୀମାନଙ୍କ ବ୍ୟତୀତ ଦାକ୍ଷିଣାତ୍ୟ ପ୍ରତ୍ୟେକ ଦ୍ରାବିଡ଼ ଶାଖା ଭାରି ଆଡ଼ମ୍ବର ଓ ସମାରୋହପୂର୍ବକ ଏହି ମକରସଂକ୍ରମଣ ପର୍ବ ପାଳନ କରିଥାନ୍ତି। ଏହି ପର୍ବକୁ "ପୋଂଗାଲ" କହନ୍ତି। ଏହା ତିନିଦିନବ୍ୟାପୀ। ପ୍ରଥମ ଦିନ "ଭୋଗୀ"; ଦ୍ୱିତୀୟ ଦିନ "ପାଣ୍ଡୁଗା" (ବଡ଼ପର୍ବ); ଶେଷଦିନ "କାନୁ"। ଦାକ୍ଷିଣାତ୍ୟର ଶୋଭା, ଆଡ଼ମ୍ବର, ଗୌରବ, ମର୍ଯ୍ୟାଦା, ଘଟା ଠାଟ ଦେଖିବାକୁ ହେଲେ "ପୋଂଗାଲ" ତିନି ଦିନରେ ଦେଖାଯିବ। ପୋଂଗାଲ ଆସିବାକୁ ପ୍ରାୟ ୧୫ଦିନ ଥିବ, ପ୍ରତ୍ୟେକ ଗ୍ରାମରେ ଘରେ ଘରେ ଲିପାପୋଛା, ଧୁଆଧୋଇ, ସଜାସଜି, ଆରମ୍ଭ ହୁଏ। ଆବାଳବୃଦ୍ଧବନିତା ସମସ୍ତେ ସେ ସାହି କାର୍ଯ୍ୟରେ ବ୍ୟସ୍ତ। ଝିଅ ଜୋଇଁମାନଙ୍କୁ ପର୍ବୋପଲକ୍ଷେ ଡାକି ଆଣିଥାନ୍ତି। ପର୍ବଦିନ ସକାଶେ ଯଥାଶକ୍ତି ନୂତନ ବସ୍ତ୍ର ନୂତନ ଅଳଙ୍କାର ଆଗୁ ଯୋଗାଡ଼ ରଖନ୍ତି ଏବଂ ଭୋଜ ସାମଗ୍ରୀର ବନ୍ଦୋବସ୍ତ କରିଥାନ୍ତି। "ଭୋଗୀ" ପୂର୍ବଦିନ ରାତି ଶେଷଭାଗରେ ପ୍ରତ୍ୟେକ ସାହିରେ ଭିନ୍ନ ଭିନ୍ନ ସ୍ଥାନରେ କାଠପତ୍ର ସଂଗ୍ରହ କରି ଗଦା ଗଦା କରି ନିଆଁ ଲଗାନ୍ତି। ସେହିଦିନ ରାତିରେ ଗୃହସ୍ଥମାନଙ୍କୁ ସତର୍କ ରହିବାକୁ ହୁଏ। ଯେହେତୁ ବାଳକଗଣ ଓ କ୍ରୀଡ଼ାସକ୍ତ ଯୁବକବୃନ୍ଦ ଦଳବଦ୍ଧ ହୋଇ ନାନାସ୍ଥାନରେ ବୁଲି କାଠପତ୍ର ଚୋରିକରି ସଂଗ୍ରହ କରନ୍ତି। ସମୟ ସମୟରେ ଗୃହସ୍ଥ ବାଡ଼ି ଘରୁ କବାଟ କାଢ଼ି ନେଇଯାନ୍ତି। ଉତ୍କଳଦେଶରେ ଯାହାକୁ "ଲଙ୍କାପୋଡ଼ି" କହନ୍ତି, ତାହା ଏ ଦେଶରେ "ଭୋଗୀ"। ଭୋଗୀ ଦିନ ପ୍ରାୟ ସମସ୍ତେ ତୈଳାଦି ବ୍ୟବହାରପୂର୍ବକ ପ୍ରାତଃକାଳରେ ସ୍ନାନ କରନ୍ତି। ଉତ୍କଳୀୟମାନଙ୍କର ସଂକ୍ରାନ୍ତି ଦିନ ତୈଳ ଗ୍ରହଣ ନିଷେଧ। ଉତ୍କଳ ଓ ଅନ୍ଧ୍ରମାନଙ୍କ ମଧ୍ୟରେ ଆହାରଗତ ବିଶେଷ ପ୍ରଭେଦ ପରିଲକ୍ଷିତ ହୁଏ। ଅନ୍ଧ୍ରମାନଙ୍କର ମିଷ୍ଟଦ୍ରବ୍ୟ ଭୋଜନ ଅତ୍ୟନ୍ତ ବିରଳ। ଏମାନଙ୍କର ପିଷ୍ଟକାଦି ସବୁ ଲୁଣ ମରିଚରେ ପୂର୍ଣ୍ଣ ଏବଂ ସାଧାରଣତଃ ତୈଳପକ୍ୱ।

ଦାକ୍ଷିଣାତ୍ୟମାନଙ୍କ ଅମ୍ଳ-ରସପ୍ରିୟ । ଉତ୍କଳୀୟ-ମାନଙ୍କର ଯେପରି ଡାଲି ପ୍ରଧାନ, ଆନ୍ଧ୍ରମାନଙ୍କର ତଦ୍ରୂପ ତେନ୍ତୁଳି ପ୍ରଧାନ । । ଏମାନେ ସର୍ବ-ପ୍ରଥମେ ବର୍ଷକୁ ଚଳିବାଭଳି ତେନ୍ତୁଳି କିଣି ଜାଗିଲ ରଖନ୍ତି । ଗୁଡ଼ ତେଲ ଲୁଣ ମରିଚ ଏମାନଙ୍କ ପକ୍ଷରେ ଭୋଜନର ପ୍ରଧାନ ସହକାରୀ ସାମଗ୍ରୀ । ଆନ୍ଧ୍ର ଦ୍ରାବିଡ଼ାଦି ବ୍ରାହ୍ମଣମାନଙ୍କର କିଛି ବେଶି ପରିମାଣରେ ଘୃତ ବ୍ୟବହାର ଥିଲେହେଁ ଦାକ୍ଷିଣାତ୍ୟମାନଙ୍କର ସାଧାରଣ ଭୋଜନ ସାମଗ୍ରୀ ଅପେକ୍ଷାକୃତ ଅଧିକ ଶସ୍ତା । "ପେଦା ପାଣ୍ଡୁଗା" ଅର୍ଥାତ୍ ମକରସଂକ୍ରମଣ ଦିନ ଏମାନେ ଉତ୍କଳୀୟ-ମାନଙ୍କ ମହାଳୟା ପରି ଅବ୍ରାହ୍ମଣଚଣ୍ଡାଳ ପିତୃଶ୍ରାଦ୍ଧ କରନ୍ତି । ଏ ଦେଶର ଶୂଦ୍ରମାନଙ୍କର ଶ୍ରାଦ୍ଧବିଧାନର ଏକ ବୈଲକ୍ଷଣ୍ୟ ଅଛି । ଏମାନେ ନାନାରୂପ ଖାଦ୍ୟ ସାମଗ୍ରୀରୁ କିଛି ନେଇ ଆପଣା ଘର ଚାଳ ଉପରେ ପିଣ୍ଡସ୍ୱରୂପ ରଖି ଦେଇ କିଛି ଦୂରରେ ଠିଆ ହୁଅନ୍ତି । ଯେବେ କାକ ଆସି ତାହା ଖାଏ, ତେବେ ପିତୃଲୋକେ ସନ୍ତୁଷ୍ଟ ହେବାର ପରିଚୟ ମିଳେ । ମାତ୍ର କାକ ଆସି ତାହା ଖାଇବାରେ ବିଳମ୍ବ ଘଟିଲେ "ପିତୃ-ଗଣ କ୍ରୁଦ୍ଧ ହୋଇ ଅମ୍ଭମାନଙ୍କ ଦେୟ ଗ୍ରହଣ କରୁ ନାହାନ୍ତି" ବୋଲି ସାଷ୍ଟାଙ୍ଗ ପ୍ରଣାମ କରିଥାନ୍ତି । ଭାତ ଫିଙ୍ଗିଲେ କାଉ ଅଭାବ କି ? କେତେ କ୍ଷଣ ପରେ କାଉ ଆସି ଖାଇ ଗଲେ ପିତୃଲୋକେ ଗୃହର ଶୁଣି ତୃପ୍ତ ହେଲେ ବୋଲି ଭାବି ଫେରି ଯାନ୍ତି । ଏହି ଗୃହୋପରି ପ୍ରଦତ୍ତ ପିଣ୍ଡ ଉତ୍କଳୀୟମାନଙ୍କ କାକବଳିର ବିକାର ମାତ୍ର । ଉତ୍କଳ ପ୍ରଦେଶରେ କୁମାରପୂର୍ଣ୍ଣିମା ଦିନ ବାଳକବାଳିକାଗଣ ନୂତନ ବସ୍ତ୍ର ପରିଧାନ ପୂର୍ବକ ଦ୍ୟୂତାଦି କ୍ରୀଡ଼ାରେ ମାତନ୍ତି । ମକର ସଂକ୍ରାନ୍ତି ଦିନ ତେଲଙ୍ଗୀ ଅଞ୍ଚଳରେ ବାଳକ ବାଳିକା ଯୁବକ ଯୁବତୀ ନୂତନ ବସ୍ତ୍ର ପିନ୍ଧି ପାଶ, ଜକସ, ଗଞ୍ଜପାଦ ଖେଳରେ ଚିତ୍ତବିନୋଦନ କରନ୍ତି । ଆନ୍ଧ୍ର ବ୍ରାହ୍ମଣସ୍ତ୍ରୀମାନଙ୍କର ଜନାନା ବା ଘରଣୀ ନାମ ନାହିଁ । ଏମାନେ ଅତି ନୂତନ ବା ମୂଲ୍ୟବାନ୍ ପରିଚ୍ଛଦ ପିନ୍ଧି ନାନା ଅଳଙ୍କାରବିଭୂଷିତା ହୋଇ ସାହି ସାହି ଘର ଘର ଦଳ ଦଳ ହୋଇ ଅନାବୃତ ସହିତ ପରିଭ୍ରମଣ କରୁଥିବେ । ଆଜି ଶୂଦ୍ରମାନଙ୍କର ନୂତନ ବସ୍ତ୍ର ପରିଧାନ ଅପରିହାର୍ଯ୍ୟ କହିଲେ ଚଳେ । କେତେ ଗରିବ ହେଲେ ପୁରୁଣା ଖଣ୍ଡିଏ ନୂଆ ଲୁଗା କରିଥିବ । ଆଜି ଯେରୂପ ଆମୋଦ ପ୍ରମୋଦର ଦିନ, ତଦ୍ରୂପ ଦାନ ଧର୍ମ କର୍ମର ଦିନ । ପ୍ରତ୍ୟେକ ଗୃହୀ ବ୍ରାହ୍ମଣ କୌଣସି ବ୍ରାହ୍ମଣକୁ ଡାକି ଘରେ ଭୋଜନ ଦେବେ । ଭିକ୍ଷୁକଙ୍କ ସଂଖ୍ୟା କମ ନାହିଁ । ଏମାନଙ୍କ ଗହଳରେ ଘରେ ଅନୁକ୍ଷଣ ଚହଳ ପଡ଼ି ଯାଉଥିବ । ତେଲଙ୍ଗିମାନଙ୍କ ମଧ୍ୟରେ "ଦାସିରୁ" ନାମକ ଏକ ଭିକ୍ଷୋପଜୀବୀ ଦଳ ଅଛନ୍ତି । ଏମାନେ ସଙ୍ଗତିସମ୍ପନ୍ନ ଥିଲେହେଁ ଭିକ୍ଷାର୍ଥେ ଦିନମାନ ଦ୍ୱାର ଦ୍ୱାର ବୁଲୁଥାନ୍ତି । ଏମାନଙ୍କୁ ପ୍ରଶ୍ରୟ ଦେବାଦ୍ୱାରା ସମାଜରେ ଆଳସ୍ୟ ବର୍ଦ୍ଧନ କରିବାକୁ ହୁଏ । ଉତ୍କଳ ଅପେକ୍ଷା ଆନ୍ଧ୍ର-ମାନଙ୍କ ମଧ୍ୟରେ ପୁରୋହିତ-ଅଭ୍ୟାଗତ ଓ ଜାତୀୟ ଘୃଣା ବେଶି ଲକ୍ଷିତ ହୁଏ । ବ୍ରାହ୍ମଣମାନେ ସହଜରେ ଆତିଥ୍ୟ ପାଇଥାନ୍ତି, କିନ୍ତୁ ଶୂଦ୍ରାଦି ନୀଚ ଜାତି ଆତିଥ୍ୟପାତ୍ର ବିବେଚିତ ହୁଅନ୍ତି ନାହିଁ । ଆମ୍ଭ ଘର ଅଗଦ୍ୱାରେ ଜଣେ ଆନ୍ଧ୍ର ବ୍ରାହ୍ମଣ ବାସ କରନ୍ତି । ଏହି ନୈଷ୍ଠିକ ମହାଶୟ ଅନେକ ଧନ ବ୍ୟୟ କରି ବହ୍ୱାଡ଼ମ୍ବର ସହିତ "ସତ୍ୟନାରାୟଣ ବ୍ରତ" ପାଳନ କରିଥାନ୍ତି । ଏହି ଦିନ ସାହିପଡ଼ିଶା ବନ୍ଧୁମାନଙ୍କୁ ଭୋଜନ ଦିଅନ୍ତି । ପୂର୍ଣ୍ଣୋଦର ଧନୀ ବ୍ରାହ୍ମଣମାନଙ୍କୁ ଅନୁରୋଧ ପୂର୍ବକ ଭୋଜ ଦିଅନ୍ତି । ଦ୍ୱାରସ୍ଥ କ୍ଷୁଧାର୍ତ୍ତ ଗରିବ ପ୍ରାଣୀଙ୍କୁ ତିରସ୍କାର କରି କହନ୍ତି, "ତୋର କି ଜାତି ? ହାଡ଼ି ବା ଦଣ୍ଡାସୀ ହୋଇଥିବୁ, ଦ୍ୱାର ପାହାଚ ଉପରେ ଆସି ଠିଆ ହେଲୁଣି । ଯା, ଦୂର ଯା, ତତେ କିଛି ଦେବାକୁ ଏବେ ସମୟ ନାହିଁ । ଆମ୍ଭେମାନେ ମାଡ଼ିଲେ ଅଛୁଁ ( ଅର୍ଥାତ୍ ଶୁଚି ବସ୍ତ୍ର ପରିଧାନ କରିଅଛୁଁ ), ଏତେବେଳେ ତୋ ଛୁଆଁ

ମାରିବାକୁ ମନା ।" ଏହି କୁତ୍ସିତ ଜାତୀୟତା ଓ ଅଯଥା ଧର୍ମନିଷ୍ଠା ଭାରତୀୟ ସକଳ ହିନ୍ଦୁ ସମାଜ ଓ ସମ୍ପ୍ରଦାୟକୁ କଳଙ୍କିତ କରି ଦେଉଅଛି । ମୋହର ଜଣେକ ଅମ୍ବୀୟ ବନ୍ଧୁଙ୍କୁ ମୁଁ ଦେଖିଅଛି । ସେ ମହାଶୟ ନିତ୍ୟ ଗୋପୂଜା ନ କଲେ ଭୋଜନ କରନ୍ତି ନାହିଁ; ଆପଣା ଗାଈକୁ ହେଉ ବା ଅନ୍ୟ କାହାର ଗାଈକୁ ହେଉ ନିତ୍ୟ ଭୋଜନ ପୂର୍ବେ ଫୁଲ ଚନ୍ଦନ ତୁଳସୀ ଦେଇ ସେବା କରି କଣ୍ଠ ଗୃହିଲ ଖୁଅନ୍ତି । ମାତ୍ର ଯେବେ ଆପଣା ଗାଈ ସକାଶେ ରକ୍ଷିତ ଘାସ ଅନ୍ୟ କୌଣସି ଗାଈ ଖାଇଯାଏ, ତେବେ ଗୋପୂଜା ବିଧାନ ଏକାବେଳକେ ପାସୋରି ପକାଇ ତାହାକୁ ନିଷ୍ଠୁର ନିର୍ଦ୍ଦୟ ଭାବରେ ପ୍ରହାର କରିଥାନ୍ତି ।

"ପାଣ୍ଡୁଗା" ପର୍ବର ତୃତୀୟ ଦିନ "କାନୁ"; ଅଜ ସମସ୍ତ ଜାତୀୟ ଲୋକଙ୍କୁ ମାଂସ ଖାଇବାକୁ ହୁଏ । ବ୍ରାହ୍ମଣମାନେ ମାଂସ ପରିବର୍ତ୍ତରେ ବଗରେ ପ୍ରସ୍ତୁତ ପିଷ୍ଟକାଦି ଭୋଜନ କରିଥାନ୍ତି । ଶୂଦ୍ରାଦି ଜାତିମାନେ ଅଜ ଏଠାରେ ପ୍ରାୟ ୫୦୦ ମେଣ୍ଢା ଛେଳି ବଧ କରିଥାନ୍ତି । ଉତ୍କଳ ଦେଶରେ କେବଳ କୌଣସି କୌଣସି ପର୍ବ ଦିନରେ ଗ୍ରାମଦେବୀ ବା ଠାକୁରାଣୀଙ୍କ ପୂଜା ସକାଶେ ପଶୁବଳି ଦିଆଯାଇଥାଏ । ଅନ୍ୟ ସମୟରେ ଖାଦ୍ୟାର୍ଥେ ବନ୍ୟ ମୃଗ ବ୍ୟତୀତ ଗ୍ରାମ୍ୟ ଛାଗଳ ବଧ ନିଷେଧ । ଏହି ଅଞ୍ଚଳରେ ଯେ ଯାହାର ସେ ଆପଣା ଘରେ ଗୋଟିଏ ଛେଳି ବା ମେଣ୍ଢା ବଧ କରି ପକାନ୍ତି । ପୁଣି ମାଂସ ବିକ୍ରୟ କରି ମୂଳଧନ ବାହାର କରିଥାନ୍ତି । ଅମିଷଭୋଜୀ ଲୋକେ ଏହି ପର୍ବରେ କୁକ୍କୁଟ ପାଦରେ ଶସ୍ତ୍ର ବାନ୍ଧି ଦେଇ ସେମାନଙ୍କୁ ଯୁଦ୍ଧରେ ଲଗାନ୍ତି, କ୍ରୁଦ୍ଧ କୁକ୍କୁଟଗୁଡ଼ିକ କ୍ଷତ ବିକ୍ଷତ ହୋଇ କାତର ଭାବରେ ଇତସ୍ତତ ଛଟପଟ ହେଉଥିବାର ଦେଖି ଦର୍ଶକବୃନ୍ଦ କ୍ରୂର ଆମୋଦ ଉପଭୋଗ କରିଥାନ୍ତି ।

ଦକ୍ଷିଣାଞ୍ଚଳରେ ଶାକ୍ତ ସଂଖ୍ୟା ଅତ୍ୟନ୍ତ ଊଣା ଥିବାର ବୋଧ ହୁଏ । ଉତ୍କଳୀୟ ବ୍ରାହ୍ମଣମାନଙ୍କର ଘରେ ଘରେ ଦେବୀପୂଜା । ଅନ୍ଧ୍ରମାନଙ୍କ ମଧ୍ୟରେ ସତ୍‌ଶୂଦ୍ରମାନେ ସୁଦ୍ଧା ସୁରାସେବୀ । ସୁରାସେବନ ନିନ୍ଦିତ ନାହିଁ । ଉତ୍କଳୀୟମାନଙ୍କ ମଧ୍ୟରେ ଚଣ୍ଡାଳ ଓ ନିହାତି ନୀଚ ଜାତି ବ୍ୟତୀତ ଅନ୍ୟ କାହାର ପକ୍ଷରେ ସୁରାର ସ୍ପର୍ଶ ସୁଦ୍ଧା ଜାତି ନାଶ କରେ । ପାଶ୍ଚାତ୍ୟ ସଭ୍ୟତା ପ୍ରସାଦରୁ ଇଂରାଜୀ ଶିକ୍ଷିତମାନେ ପ୍ରାୟ ସୁରାସେବନରେ ଦୀକ୍ଷିତ ହୋଇଥାନ୍ତି ଏବଂ ନିରାମିଷଭୋଜୀ ତମା ବ୍ରାହ୍ମଣେ ସୁଦ୍ଧା ମାଦକ ଦ୍ରବ୍ୟର ଗୃଷଣାସ୍ୱରୂପ ମତ୍ସ୍ୟ ମାଂସ ଭୋଜନ କରିଥାନ୍ତି । ଉତ୍କଳରେ ନାପିତମାନଙ୍କ ସାମାଜିକ ଅବସ୍ଥା ଯେରୂପ, ଦାକ୍ଷିଣାତ୍ୟରେ ରଜକମାନଙ୍କର ତଦ୍ରୂପ । ଅମ୍ଭ ଦେଶରେ ଭଣ୍ଡାରୀମାନେ ଘରୁଆ ଚାକର । ଏ ଦେଶରେ ମଦ୍ୟପାୟୀ ଧୋବାମାନେ ଗୃହାଭ୍ୟନ୍ତରରେ ନାନା ପ୍ରକାର କାର୍ଯ୍ୟ କରନ୍ତି । ଏମାନଙ୍କ ସ୍ପର୍ଶ ନିଷିଦ୍ଧ ନୁହେ । ତେଲୁଗୁ ଭଣ୍ଡାରୀମାନଙ୍କର ମଦ୍ୟପାନ ନିଷେଧ ନାହିଁ ।

ବଙ୍ଗ ଉତ୍କଳ ଦେଶରେ ଚୈତନ୍ୟଦେବ ଈଶ୍ୱରାବତାର ସ୍ୱରୂପ ଗୃହୀତ । ତେଲଙ୍ଗୀ ଦେଶରେ ଚୈତନ୍ୟ ଧର୍ମ ଆଦୌ ବୁଝନ୍ତି ନାହିଁ । ଚୈତନ୍ୟ ମତାବଲମ୍ବୀ ବୈଷ୍ଣବମାନଙ୍କ ମେଳା ଓ କରତାଳଯୁକ୍ତ ସଂକୀର୍ତ୍ତନ ନାହିଁ । ଉତ୍କଳ ପ୍ରଦେଶରେ ଗ୍ରାମେ ଗ୍ରାମେ ଭାଗବତ ଅଖଡ଼ା ପ୍ରତିଷ୍ଠିତ, ତହିଁରେ ସାଧାରଣତଃ ରାଧାକୃଷ୍ଣ ଲୀଳା କୀର୍ତ୍ତନ ହୁଏ । ଏ ଦେଶରେ ଭାଗବତଚର୍ଚ୍ଚା ପରିବର୍ତ୍ତେ ପ୍ରତି ଗ୍ରାମରେ ରାମଭଜନାଳୟ ପ୍ରତିଷ୍ଠିତ । ଏହି ଦେବାଳୟରେ ବିଶେଷରେ ଶୂଦ୍ରାଦି ଜାତିମାନଙ୍କର ଯୋଗଦାନ । ବଙ୍ଗ ଉତ୍କଳରେ ସର୍ବସାଧାରଣ ପ୍ରାୟ ଚୈତନ୍ୟମତାବଲମ୍ବୀ, ଦାକ୍ଷିଣାତ୍ୟ ପ୍ରଦେଶରେ ରାମାନୁଜ ଦଳଭୁକ୍ତ ।

ଉତ୍କଳର ତାଳମୃଦଙ୍ଗଯୁକ୍ତ ସଂକୀର୍ତ୍ତନ ଏ ଦେଶରେ ନାହିଁ, ତାହା ପରିବର୍ତ୍ତେ ଏଠାରେ ନାନା ସ୍ଥାନରେ ଗିନିମର୍ଦ୍ଦଳାଦି ବାଦ୍ୟ ସହିତ ସଙ୍ଗୀତ ଦଳ ଗଠିତ ହୋଇଥାଏ, ଏମାନଙ୍କର ସଙ୍ଗୀତରେ ବିଶେଷତଃ ସ୍ତ୍ରୀଭକ୍ତି ପ୍ରବଳ ।

ଉତ୍କଳ ଦେଶରେ ବହୁକୀର୍ତ୍ତନବହୁଳ ସଙ୍ଗୀତ ନୈଷ୍ଠିକମଣ୍ଡଳୀରେ ଏକ ପ୍ରକାର ଦୂଷିତ । କିନ୍ତୁ ଏ ଦେଶରେ ଶୃଙ୍ଗାରରସପୂର୍ଣ୍ଣ ଗୀତ ସର୍ବଦା ଆଦରଣୀୟ । ଅସ୍ମମାନଙ୍କ ମଧ୍ୟରେ ବ୍ରାହ୍ମଣାଦି ଉଚ୍ଚ ସମାଜର ଗୃହିଣୀମାନଙ୍କର ବାରବନିତା ସମ୍ପର୍କ ସମ୍ପୂର୍ଣ୍ଣ ଭାବରେ ଦୂଷଣୀୟ ବିବେଚିତ ହୁଏ ନାହିଁ । ବେଶ୍ୟାମାନେ ଅତି ସାଧାରଣ ଗୃହୀର ଗୃହାଭ୍ୟନ୍ତରରେ ପ୍ରବେଶ କରି ଗୃହିଣୀମାନଙ୍କ ସହିତ ମିଳି ମିଶି ସ୍ୱଚ୍ଛନ୍ଦରେ କଥୋପକଥନ କରିଥାନ୍ତି । ଅନ୍ଧ୍ର ବ୍ରାହ୍ମଣମହିଳାମାନେ ଭୋଗବିଳାସିନୀ । ଶ୍ରୀବୈଷ୍ଣବ ନାମରେ ଏକ ଦଳ ବୈଷ୍ଣବ ବ୍ରାହ୍ମଣ ଅଛନ୍ତି । ଏମାନଙ୍କର ବ୍ରାହ୍ମଣ ଆଖ୍ୟା ନାହିଁ, ଏମାନେ "ବୈଷ୍ଣବ" ବୋଲି ସୁପରିଚିତ । ଶ୍ରୀବୈଷ୍ଣବ ଜାତିର ପୁରୁଷମାନେ ରନ୍ଧାବଢ଼ା କରନ୍ତି ଏବଂ ବିଳାସିନୀ ସ୍ତ୍ରୀମାନଙ୍କ ସେବା ଶୁଶ୍ରୂଷାରେ ଅନୁରକ୍ତ ଥାନ୍ତି । ଉତ୍କଳର ନବ ବଧୂ ରାତି ନ ପାହୁଣୁ ଗୃହକାର୍ଯ୍ୟରେ ବ୍ୟସ୍ତ ଏବଂ ତାଙ୍କୁ ଶାଶୁ ନଣନ୍ଦଙ୍କ ସେବା କରି ହାଡ଼ଭଙ୍ଗା କାମ କରିବାକୁ ପଡ଼େ । କିନ୍ତୁ ଅନ୍ଧ୍ର ରମଣୀଗଣ ପାନ ଖାଇ ଫୁଲ ଲଗାଇ ଖେଳ କୌତୁକରେ କାଳଯାପନ କରନ୍ତି । ଗୃହକର୍ମ ଭାର ସବୁ ବିଧବା ନଣନ୍ଦ ଅଥବା ବୁଢ଼ୀ ଶାଶୁ ଉପରେ ନ୍ୟସ୍ତ । ଅନ୍ଧ୍ର ଦ୍ରାବିଡ଼ ବ୍ରାହ୍ମଣମାନଙ୍କ ମଧ୍ୟରେ କନ୍ୟାଶୁଳ୍କ ଅତ୍ୟନ୍ତ ପୀଡ଼ାଜନକ । ସଂସାର କାରବାର ସୁଚାରୁରୂପେ ଚଳାଇବାକୁ ହେଲେ "ନିୟୋଗୀ" ବ୍ରାହ୍ମଣ ପକ୍ଷରେ ଏଫ୍. ଏ. ବି. ଏ. ପାସ୍ କରିବା ଦୁଇ ତିନି ପୁଅ ପ୍ରଭୃତି ଅବଶ୍ୟକ ଏବଂ ବୈଦିକ ବ୍ରାହ୍ମଣ ପକ୍ଷରେ ଦୁଇ ତିନି ହଜାର ପ୍ରୟୋଜନ । ଗୋଟିଏ ଗୋଟିଏ ପୁତ୍ରୀ ପାଞ୍ଚଶଠାରୁ ଏକ ହଜାର ପର୍ଯ୍ୟନ୍ତ ମୂଲ୍ୟରେ ବିକା ଯିବେ । ଇଂରାଜମହିଳାଙ୍କ ପରି ଏହି ବ୍ରାହ୍ମଣରମଣୀମାନେ ଯଥେଷ୍ଟ ସ୍ୱାଧୀନତା ପାଇ ଥାନ୍ତି । କିନ୍ତୁ ଏହି ସ୍ୱାଧୀନତାର କାରଣ ଭିନ୍ନ । ସ୍ତ୍ରୀକି ସ୍ୱାଧୀନତା ନ ଦେଲେ, ତାହା ପ୍ରତି ସ୍ୱର କଟକଣା କଲେ ତାହେଲେ ସେହି ସ୍ତ୍ରୀ ପିତ୍ରାଳୟକୁ ପଳାୟନ କରି ପାରେ ବା ଜନାନା-କାରାବାସ ସହି ନ ପାରି ଅକାଳମୃତ୍ୟୁ ଲଭି ପାରେ ! ତାହାହେଲେ ପୁଣି ପର ଦ୍ୱାର ବିକ ଭିକ୍ଷା ଯାଚନା କରି ପାଞ୍ଚ ସାତ ଶହ ଟଙ୍କା ସଂଗ୍ରହ କରି ବିବାହ କରିବା ଭାରି ଦୁଷ୍କର ।

ଅସ୍ମମାନଙ୍କର "ମାଡ" ( ଶୁଦ୍ଧବସ୍ତ୍ର ) ବ୍ୟବହାରର ଅଧିକ ପ୍ରଚଳନ କେବଳ ଭୋଜନ ବେଳେ । ଭେଟେବେଳେ ଏମାନେ ଏକାବେଳକେ ସୁବ୍ରହ୍ମଣ୍ୟ ପାଲଟି ଯାନ୍ତି । ଅନ୍ୟ ବେଳେ ଶୂଦ୍ରାଚରଣ କଲେ ସୁଦ୍ଧା ସେଥିରେ ଆପତ୍ତି ନାହିଁ । ବହିର୍ଦେଶ ଗଲାବେଳେ ପୃଥକ୍ ବସ୍ତ୍ର ପରିଧାନର ବିଶେଷ ପ୍ରୟୋଜନ ନାହିଁ । କିନ୍ତୁ ଉତ୍କଳଦେଶରେ ପୋଖରୀପାଣି ଗଲାବେଳେ ଗାମୁଛା ପାଲଟିବାକୁ ହୁଏ ଏବଂ ନିଷ୍ଠାର ଆଧିକ୍ୟକ୍ରମେ ଅଣ୍ଟାପାଣି କରିବାକୁ ପଡ଼େ । ଏ ଦେଶରେ ତାଳେ ପାଣିରେ ତିନି ପାଞ୍ଚ ବ୍ୟକ୍ତି ଶୌଚକ୍ରିୟା ସାଙ୍ଗ କରିପାରନ୍ତି । ଏମାନଙ୍କ ନିତ୍ୟାଚାର-ପଦ୍ଧତିରେ ହାତମାଟି କରିବା ନିୟମର ଉଲ୍ଲେଖ ନ ଥିବା ପରି ବୋଧ ହୁଏ; କିନ୍ତୁ ଏହି ନିୟମ ପାଳନର ପରାକାଷ୍ଠା ଉତ୍କଳୀୟମାନଙ୍କ ନିକଟରେ ଦେଖା ଯାଏ । ନାମ ମାତ୍ର ୨୧ଥର ହାତରେ ମାଟି ଘଷନ୍ତି । ମାତ୍ର ଏପରି ଦିନ ୨୧ ଥର ମାଟି ଲଗାଇଲେହେଁ ହାତରୁ ଦୁର୍ଗନ୍ଧ ଦୂରୀକୃତ ହେବାର ଦୁଷ୍କର । ଅମ୍ଭ ଦେଶର ସ୍ତ୍ରୀମାନେ ପୋଖରୀପାଣି ବସିଥିବା ବେଳେ ପରସ୍ପର ପାଖେ ପାଖେ ବସି କଥୋପକଥନ କରିଥାନ୍ତି । ଦିନ ରାତି ଅଟେ ନାହିଁ, ସବୁବେଳେ ତାଙ୍କୁ ପରି ରହୁଥିବେ । ତଥାପି ସେହି କ୍ଷଣକ ନୀରବ ହୋଇ ପାରନ୍ତି ନାହିଁ । କିନ୍ତୁ ଏ ଦେଶରେ ପୁରୁଷମାନେ ମଧ୍ୟ ଚାଲି ଭଣ୍ଡା (ହିଙ୍କା ?) ପରି ପାଖେ ପାଖେ ବସି କଥା ବାର୍ତ୍ତା କରୁଥାନ୍ତି । ଅଣୁ ମାତ୍ର ଲଜ୍ଜା ମାଡ଼େ ନାହିଁ ।

ଅନ୍ଧ୍ର ଉତ୍କଳ ଉଭୟଙ୍କ ମଧ୍ୟରେ ଦ୍ୱିବିଧ ସ୍ୱଜନର

ପ୍ରଚଳନ ଅଛି :—ଶିରଃସ୍ନାନ ଓ କଣ୍ଠସ୍ନାନ । ସାଧାରଣତଃ ଉତ୍କଳୀୟମାନେ ତୈଳପ୍ରିୟ, ପୁଣି ଅନ୍ଧ୍ରମାନେ ଉଷ୍ଣୋଦକପ୍ରିୟ । ଉତ୍କଳୀୟମାନଙ୍କର "ତୈଳସ୍ନାନ କି ସ୍ନାନ, ଘୃତସ୍ନାନ କି ଭୋଜନ" ପ୍ରବାଦ ଅଛି । ଏମାନେ ତେଲ ନ ଲଗାଇଲେ ଗାଧୋଇବେ ନାହିଁ। ଆଜି କାଲି ଶିକ୍ଷିତ ବ୍ୟକ୍ତିଙ୍କ କଥା ଛାଡ଼ି, ସେମାନେ ସାଧାରଣରୁ ବାହାର । ଇଂରେଜୀ ସଭ୍ୟତା ଏମାନଙ୍କୁ ତୈଳ ପରିବର୍ତ୍ତରେ ସାବୁନ୍ ବ୍ୟବହାର ଶିଖାଇ ଦେଇ ଅଛି । ତେଲଙ୍ଗା ଲୋକେ ସାଧାରଣତଃ ଗରମ ପାଣି ନ ହେଲେ ମୁଣ୍ଡ ଧୁଅନ୍ତି ନାହିଁ, ତେଲଙ୍ଗାମାନେ ଟେକା ଉଷ୍ମ ପାଣିରେ ସନ୍ତୁଷ୍ଟ ।

ନାନା ବିଭାଗ ସାମାଜିକ କାର୍ଯ୍ୟକଳାପ, ପ୍ରଣାଳୀ ଏବଂ ଶୃଙ୍ଖଳାର ପରିଚୟ ଦିଏ । ଭିନ୍ନ ଧର୍ମ, ଭିନ୍ନ ଆଚାର, ଭିନ୍ନ ଜୀବନ ହେତୁ ଭିନ୍ନ ଭିନ୍ନ ଜାତିର ଗଠନ, ସୁତରାଂ ଜାତିପ୍ରଣାଳୀରୁ ଜାତୀୟତାର ମଧ୍ୟ ପରିଚୟ ମିଳେ । ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ପ୍ରଭୃତି ଜାତିରୁ ଆଜି କାଲି କର୍ମଭେଦରେ ସହସ୍ରସଂଖ୍ୟକ ଜାତିର ଅବତାରଣା । ଭାରତବର୍ଷର ଭିନ୍ନ ଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ଜାତିର ସୃଷ୍ଟି । ବଙ୍ଗର "କାୟସ୍ଥ" ଉତ୍କଳର "କରଣ" ଦାକ୍ଷିଣାତ୍ୟରେ ଦେଖାଯାନ୍ତି ନାହିଁ । ଗଞ୍ଜାମ ନିକଟବର୍ତ୍ତୀ ତେଲୁଗୁ ପ୍ରଦେଶମାନଙ୍କରେ "ସୃଷ୍ଟିକରଣ" ବା "ଶ୍ରିଷ୍ଟିକରଣ" ନାମରେ ଏକ କରଣ ଜାତି ଅଛନ୍ତି । ଏମାନଙ୍କ ଘରେ ସ୍ତ୍ରୀମାନେ ସମୟ ସମୟରେ ଏକପ୍ରକାର ଅପଭ୍ରଷ୍ଟ ଓଡ଼ିଆ ଭାଷା ବ୍ୟବହାର କରିଥାନ୍ତି । ଏମାନଙ୍କ ମଧ୍ୟରେ ଯୁବତୀ-ବିବାହ ପ୍ରଥା ନାହିଁ । ବୋଧହୁଏ, ଏମାନେ ଉତ୍କଳୀୟ ଶିଷ୍ଟିକରଣମାନଙ୍କର ପୂର୍ବପୁରୁଷ ହୋଇଥିବେ ଏବଂ କାଳକ୍ରମେ ତୈଲଙ୍ଗୀ ସଂସ୍ରବ ଯୋଗୁଁ ତେଲୁଗୁ ଭାଷା ବ୍ୟବହାର ଓ ଦାକ୍ଷିଣାତ୍ୟ ରୀତି ନୀତି ଅନୁକରଣ କରିଥିବେ । ଉତ୍କଳୀୟ-ମାନଙ୍କର "ଗୁଡ଼ିଆ" ନତୁବା ତାହା ପରିବର୍ତ୍ତରେ ଅନ୍ୟ କୌଣସି ଜାତି ହେଉ ଅନ୍ଧ୍ର ଦ୍ରାବିଡ଼ାଦି ଦାକ୍ଷିଣାତ୍ୟ ଜାତିରେ ସୃଷ୍ଟ ହେବା ଜଣା ଯାଉ ନାହିଁ । ଉତ୍କଳର ନାନାସ୍ଥାନୀୟ ଶିଳ୍ପକାରଗଣ ଅନ୍ଧ୍ରମାନଙ୍କର ଏକମାତ୍ର ବିଶାଳ "କଂସାଳି" ଜାତିର ଅନ୍ତର୍ଭୁକ୍ତ । ବଢ଼େଇ, କମାର, ଲୋହର, ପଥୁରିଆ, ତେହ୍କାର, ଟଉର, କଂସାରି, ସୁନାରି, ବଣିଆ,—ସମସ୍ତେ ଏ ଦେଶରେ "କଂସାଳି" ଆଖ୍ୟାରେ ବିଦିତ । ଉତ୍କଳୀୟ ଶିଳ୍ପକାରମାନଙ୍କର ଯେଉଁ ସାମାଜିକ, ସାମ୍ପ୍ରଦାୟିକ ଭେଦାଭେଦ ପରିଲକ୍ଷିତ ହୁଏ, ତାହା ଦାକ୍ଷିଣାତ୍ୟ "କଂସାଳି" ମଧ୍ୟରେ ଅତ୍ୟନ୍ତ ବିରଳ ।

ସଂସାରର ଏହା ଗୋଟିଏ ଅଟଳ ନିୟମ—ବିନାଶକାଲେ ବିପରୀତ ବୁଦ୍ଧି । ଆଜି କାଲି ବୈଶ୍ୟ ଶୂଦ୍ରାଦି ଜାତିମାନେ ଭ୍ରଷ୍ଟ ବ୍ରାହ୍ମଣଙ୍କ ଭୂଷିତ ଅବଲମ୍ବନପୂର୍ବକ ଆପଣାର ଅଧୋଗତି ସାଧନ କରୁଅଛନ୍ତି । ଯେଉଁ ବୈଶ୍ୟ ଶୂଦ୍ରମାନଙ୍କର ଯୁବତୀବିବାହ ପ୍ରଥା ଥିଲା, ଆଜି ସେମାନେ "ଦେଖାଶିଖା ଗୌଡ଼ିଆ"ନ୍ୟାୟ ବୈଧବ୍ୟତାପ-ବିଦଗ୍ଧ ବ୍ରାହ୍ମଣସମାଜରୁ ବାଲବିବାହରୂପ ଜଘନ୍ୟ ରୀତି ଶିକ୍ଷା କରିଅଛନ୍ତି । ଧର୍ମଭୀରୁ ସରଳାନ୍ତଃକରଣ ବ୍ରାହ୍ମଣମାନେ ଆପଣା ବ୍ରହ୍ମତ୍ୱର ନିଃସାରତା ବୁଝି ପାରି ସଂସ୍କୃତଧର୍ମାବଲମ୍ବନ ଚେଷ୍ଟା କରୁଥିବାବେଳେ ଏପ୍ରଦେଶର "କଂସାଳି"ମାନେ ଏକ ନୂତନ ବ୍ରାହ୍ମଣ ଜାତିର ସୃଷ୍ଟି କରି ଆପଣାକୁ "ବିଶ୍ୱବ୍ରାହ୍ମଣ"ବୋଲି ପରିଚୟ ଦେଉଅଛନ୍ତି ଏବଂ ଏପ୍ରଦେଶର "ସୃଷ୍ଟିକରଣ"ମାନେ ସମୟସମୟରେ ଆପଣାକୁ ଗୌଡ଼ ବ୍ରାହ୍ମଣ ବୋଲି ପରିଚୟ ଦେବାକୁ ଯତ୍ନ କରୁଅଛନ୍ତି । ପ୍ରଳୟ ନ ହେଲେ ନୂତନ ସୃଷ୍ଟିର ଅବତାରଣା ହୋଇ ନ ପାରେ; ଭଙ୍ଗା ଘରକୁ ସମ୍ପୂର୍ଣ୍ଣରୂପେ ଭାଙ୍ଗି ନ ଦେଲେ ତାହା ସ୍ଥାନରେ ନୂତନ ଗୃହ ନିର୍ମାଣ କରାଯାଇ ନ ପାରେ । କାଳର କୁଟିଳ ଗତିରେ ଅପଭ୍ରଷ୍ଟ ରୀତି ସକଳ କ୍ରମଶଃ ଅପସାରିତ ହେବ—ଏହି ଭାବ ଆଶା ଉଦାସୀନ ହୃଦୟକୁ ଆଶ୍ୱାସନା ଦିଏ । କିନ୍ତୁ ବ୍ୟକ୍ତିଗତ ଔଦାସୀନ୍ୟ କଦାପି ମାନବୋଚିତ କାର୍ଯ୍ୟ ନୁହେଁ ।

ଶ୍ରୀ ଶ୍ରୀବତ୍ସ ପଣ୍ଡା ।

## 'ଆମାଦେର ଜ୍ୟୋତିଷୀ ଓ ଜ୍ୟୋତିଷ ।'

ପରମଭକ୍ତିଭାଜନ ଅଧ୍ୟାପକ ଶ୍ରୀଯୁକ୍ତ ଯୋଗେଶଚନ୍ଦ୍ର ରାୟ ଏମ. ଏ., ଏଫ. ଆର. ଏସ. ବଙ୍ଗ ଭାଷାରେ 'ଆମାଦେର ଜ୍ୟୋତିଷୀ ଓ ଜ୍ୟୋତିଷ' ନାମରେ ଖଣ୍ଡିଏ ଅତ୍ୟନ୍ତ ଗମ୍ଭୀର ଗବେଷଣାପୂର୍ଣ୍ଣ ଉପାଦେୟ ଗ୍ରନ୍ଥ ଲେଖିଅଛନ୍ତି । ତାହାର ପ୍ରଥମ ଭାଗ ପ୍ରକାଶିତ ହୋଇଅଛି । ବେନ୍ଦୁଝରାଧିପତି ଶ୍ରୀମନ୍ମହାରାଜ ଧନୁର୍ଜୟ ନାରାୟଣ ଭଞ୍ଜ ଦେବ ମହୋଦୟଙ୍କ ନାମରେ ଏହି ଗ୍ରନ୍ଥ ଖଣ୍ଡିକ ଉତ୍ସୃଷ୍ଟ । ଅଧ୍ୟାପକ ମହାଶୟ ଉତ୍କଳ ଭାଷାରେ ଏହାକୁ ପ୍ରକାଶ କରିବା ନିମନ୍ତେ ସର୍ବ ପ୍ରଥମେ ଇଚ୍ଛା କରିଥିଲେ, କିନ୍ତୁ ନାନା ଅସୁବିଧାବଶତଃ ତାହା କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ, ଏହା ମୁଁ ତାହାଙ୍କ ମୁଖରୁ ଶୁଣିଅଛି । ବଙ୍ଗ ଭାଷାରେ ପ୍ରକାଶିତ ହୋଇ ଥିଲେ ସୁଦ୍ଧା ସୁଶିକ୍ଷିତ ଉତ୍କଳୀୟମାନଙ୍କ ପକ୍ଷରେ ଏହା ସମ୍ପୂର୍ଣ୍ଣ ବୋଧଗମ୍ୟ ଏବଂ ଆଶା କରେଁ ଶିକ୍ଷିତ ଉତ୍କଳୀୟମାନେ ଏଡ଼େ ବଡ଼ ଉପାଦେୟ ପୁସ୍ତକ ଖଣ୍ଡିକ ଥରେ ଆମୂଳ ପାଠ ନ କରି ରହି ପାରିବେ ନାହିଁ । ଅଧ୍ୟାପକ ମହାଶୟଙ୍କ କାର୍ଯ୍ୟକ୍ଷେତ୍ର ଉତ୍କଳଭୂମି ଏବଂ ଉତ୍ତ୍ରଦ ଭାଷାଙ୍କର ଯେ ଅକୃତ୍ରିମ ଅନୁରାଗ ଅଛି ଏହା କାହାରିକି କହିଦେବାକୁ ହେବ ନାହିଁ । ମହାମହୋପାଧ୍ୟାୟ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ସିଂହ ସାମନ୍ତ ଆଜି ଏହି ମହାତ୍ମାଙ୍କ ଲାଗି ସମଗ୍ର ସଭ୍ୟ ଜଗତରେ ସୁପରିଚିତ, ନଚେତ୍ ଅରଣ୍ୟମୟ ପ୍ରଦେଶସ୍ଥ ଏପରି ଗୋଟିଏ ସମୁଜ୍ଜ୍ୱଳ ରତ୍ନ ଚିର କାଳ ଲୋକଲୋଚନରୁ ଅନ୍ତରାଳରେ ରହିଥାନ୍ତା ।

ମୋ ପରି କ୍ଷୁଦ୍ରବୁଦ୍ଧି ଲୋକ ଏହି ପୁସ୍ତକର ସମାଲୋଚକ ହେବା ଯେ ବିଡ଼ମ୍ବନା ମାତ୍ର, ଏହା ବଡ଼ ଆଶ୍ଚର୍ଯ୍ୟର ବିଷୟ ନୁହେ; ସମଗ୍ର ଭାରତବର୍ଷରେ ଏହାର ପ୍ରକୃତ ସମାଲୋଚକ ୪ । ୫ ଜଣରୁ ଅଧିକ ନାହାନ୍ତି, ଏହାହିଁ ବଡ଼ ଚିନ୍ତ ବିଷୟ । ଅତଏବ ସମାଲୋଚନା କାର୍ଯ୍ୟରୁ ବିରତ ହୋଇ କେବଳ ଗ୍ରନ୍ଥ ଖଣ୍ଡିକର ବିଷୟ ସ୍ଥୂଳ ବିବରଣ ଏଠାରେ ପ୍ରଦାନ କଲି । ଆଶା କରେଁ ଏତଦ୍ଦ୍ୱାରା ଆକୃଷ୍ଟ ହୋଇ ଉତ୍କଳୀୟ କୃତବିଦ୍ୟ ଲୋକମାନେ ଗ୍ରନ୍ଥ ଖଣ୍ଡିକ ଆମୂଳ ପାଠ କରିବେ, ତାହା ହେଲେ ଗ୍ରନ୍ଥକାରଙ୍କର ସ୍ୱଦେଶାନୁରାଗ ଓ ପ୍ରକୃତ ବିଦ୍ୟାବତ୍ତା ସମ୍ବନ୍ଧରେ ଯଥେଷ୍ଟ ଆଭାସ ମିଳିବ ଏବଂ ପାଠକମାନଙ୍କ ହୃଦୟରେ ଜ୍ଞାନ ସଙ୍ଗେ ସଙ୍ଗେ ସତ୍ୟନିଷ୍ଠା ଓ ସ୍ୱଦେଶାନୁରାଗ ବଦ୍ଧମୂଳ ହେବ ।

'ଆମାଦେର ଜ୍ୟୋତିଷୀ ଓ ଜ୍ୟୋତିଷ' ଅସ୍ମଦେଶୀୟ ଜ୍ୟୋତିର୍ବିଦ୍ ଓ ଜ୍ୟୋତିର୍ବିଦ୍ୟାର ଖଣ୍ଡିଏ ଇତିହାସ ଗ୍ରନ୍ଥ । ଇଂରେଜୀରେ ଏହାକୁ 'History of Hindu Astroromy and Astronomers' କହା ଯାଇ ପାରେ । ଏହାର ପ୍ରଥମ ଭାଗର ପ୍ରଥମ ଖଣ୍ଡରେ ଆର୍ଯ୍ୟ ଜ୍ୟୋତିଷିମାନଙ୍କର (ଫଳତଃ ଜ୍ୟୋତିଷର) ବିବରଣ ପ୍ରଦତ୍ତ ହୋଇଅଛି ।

ବେଦମଧ୍ୟସ୍ଥ ଜ୍ୟୋତିଷ (ଖ୍ରୀଃ ପୂଃ ୪୫୦୦ ଠାରୁ ଖ୍ରୀଃ ପୂଃ ୧୬୦୦ ବର୍ଷ ପର୍ଯ୍ୟନ୍ତ)—ବେଦରେ ଯେତେ ପରିମାଣରେ ଜ୍ୟୋତିଷ ଅଛି ତାହାର ଜ୍ୟୋତିଷୀ କିଏ ତାହା ଜାଣିବାର ଉପାୟ ନାହିଁ, ଅବଶ୍ୟ ଆର୍ଯ୍ୟ ଋଷିମାନେ ତାହାର ଜ୍ୟୋତିଷୀ ଥିଲେ । ସୁତରାଂ ଜ୍ୟୋତିଷିମାନଙ୍କ ସମ୍ବନ୍ଧରେ ଗ୍ରନ୍ଥକାର ମହାଶୟ ଭଗବାନ୍ ଗର୍ଗୋକ୍ତ ଶ୍ଲୋକ ମାତ୍ର ଉଦ୍ଧାର କରି ସନ୍ତୁଷ୍ଟ ହୋଇଅଛନ୍ତିଃ—

ସ୍ୱୟଂ ସ୍ୱୟମ୍ଭୁନା ସୃଷ୍ଟଂ ଚକ୍ଷୁର୍ଭୂତଂ ଦ୍ୱିଜନ୍ମନାଂ
ବେଦାଙ୍ଗ ଜ୍ୟୋତିଷଂ ବ୍ରହ୍ମପରଂ ଯଜ୍ଞହିତାବହଂ ।

ଗ୍ରନ୍ଥକାର ମହାଶୟ ଗ୍ରନ୍ଥର ଉପକ୍ରମରେ ଲେଖିଅଛନ୍ତି 'କୃତି ବୁଝିବାକୁ ଗଲେ କର୍ତ୍ତାର ଇତିହାସ ଅବଗତ ହେବା ଆବଶ୍ୟକ । କିନ୍ତୁ କର୍ତ୍ତାକୃତରେ ବିଦ୍ୟମାନ, ଏ ବାକ୍ୟ ଏ ଦେଶରେ ଯେତେ

ସତ୍ୟ, ଅନ୍ୟ ଦେଶରେ ସେପରି ନୁହେଁ । ସୁତରାଂ ବେଦମଧ୍ୟସ୍ଥ ଜ୍ୟୋତିଷ ବିଷୟରେ ଲେଖିଲା ବେଳେ ସେ କୃତିର ପରିଚୟ ପ୍ରଦାନ କରିବା-ଦ୍ୱାରା ଲେଖକ ତାଙ୍କର ପରିଚୟ ଦେଉଅଛନ୍ତି । ବୈଦିକ ଋଷିମାନଙ୍କର ଜ୍ୟୋତିର୍ଜ୍ଞାନର କ୍ରମବିକାଶ ପ୍ରଦର୍ଶନ କରିବାକୁ ଯାଇ ସେ ସେମାନଙ୍କର ଜ୍ୟୋତିର୍ଜ୍ଞାନ ସମ୍ବନ୍ଧରେ ନିମ୍ନଲିଖିତ ସପ୍ରମାଣ ସତ୍ୟଗୁଡ଼ିକରେ ଉପନୀତ ହୋଇଅଛନ୍ତି :—

( ୧ ) ବୈଦିକ ଋଷିମାନେ ଅନେକଗୁଡ଼ିଏ ଋକ୍ଷ ( ତାରା ବା ନକ୍ଷତ୍ର ) ଚିହ୍ନୁଥିଲେ, ଯଥା:— ସପ୍ତର୍ଷି, ମୃଗଶିର, ମୃଗବ୍ୟାଧ ପ୍ରଭୃତି ଏବଂ ଚନ୍ଦ୍ର ଋକ୍ଷମଣ୍ଡଳ ନିକଟ ଦେଇ ଗମନ କରୁଥିବାର ଜାଣିଥିଲେ ।

( ୨ ) ଅବିଶ୍ରାନ୍ତ ରଶ୍ମି ଚନ୍ଦ୍ରମଣ୍ଡଳକୁ ତେଜଃ ପ୍ରଦାନ କରେ ଏହା ମଧ୍ୟ ସେମାନଙ୍କୁ ଜଣାଥିଲା ।

( ୩ ) ଯେଉଁ ଦିନ ଚନ୍ଦ୍ର ଏକାବେଳକେ ଅଦୃଶ୍ୟ ହୁଅନ୍ତି ତାହାକୁ 'ଅମାବସ୍ୟା' ଏବଂ ଯେଉଁ ଦିନ ପୂର୍ଣ୍ଣାକାରରେ ଦୃଶ୍ୟ ହୁଅନ୍ତି ତାହାକୁ ଋଷିମାନେ 'ପୂର୍ଣ୍ଣିମା' ନାମ ଦେଇଥିଲେ ।

( ୪ ) ଅମାବସ୍ୟାଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ୩୦ ଥର ସୂର୍ଯ୍ୟୋଦୟ ହୁଏ, ସୁତରାଂ ୩୦ ଦିନରେ ଏକ ମାସ ଗଣୁଥିଲେ ।

( ୫ ) ସୂର୍ଯ୍ୟର ଉଦୟ କାଳ ଏବଂ ଅସ୍ତ କାଳରେ ଏକ ନକ୍ଷତ୍ର ପ୍ରତିଦିନ ଦେଖା ନ ଯିବାରୁ ସେମାନେ ସ୍ଥିର କରିଥିଲେ ଯେ ସୂର୍ଯ୍ୟ ଚନ୍ଦ୍ରପରି ନକ୍ଷତ୍ରମାନଙ୍କ ମଧ୍ୟ ଦେଇ ଗମନ କରୁଅଛନ୍ତି ।

( ୬ ) ସେମାନେ ଜାଣିଥିଲେ ଯେ ଚନ୍ଦ୍ରର ନକ୍ଷତ୍ରମାନଙ୍କ ମଧ୍ୟ ଦେଇ ବୁଲି ଆସିବାକୁ ସୂର୍ଯ୍ୟର ଯେତେ ସମୟ ଲାଗୁଅଛି ତହିଁରେ ୧୨ ମାସ ହେଲା; ଅତଏବ ୩୬୦ ଦିନରେ ଏକ ବର୍ଷ ।

( ୭ ) ସେମାନେ ଦେଖିଥିଲେ ଯେ ବର୍ଷର ଆରମ୍ଭରେ କୌଣସି ନକ୍ଷତ୍ରଠାରୁ ରବି ଶଶୀ ଗମନ କଲେ ବର୍ଷଶେଷ ବା ୩୬୦ ଦିନରେ ସେମାନେ ସେଠାରେ ପୁନର୍ବାର ଏକତ୍ର ହେଉ ନାହାନ୍ତି । ପାଞ୍ଚ ୩୬୦ ଦିନରେ ଏକ ମାସ ଅଧିକ ହେଉଅଛି; ଏହି ଅଧିକ ମାସ ବା 'ଅଧିମାସ' ୫ ବର୍ଷ ଅନ୍ତର ତ୍ୟାଗ ନ କଲେ ଋତୁର ଏକତା ରହୁ ନାହିଁ; ସୁତରାଂ ସେମାନେ ୫ ବର୍ଷ ଅନ୍ତର ଏକ 'ଅଧିମାସ' କଳ୍ପନା କରୁଥିଲେ ।

( ୮ ) ବୈଦିକ ଋଷିମାନେ ପୃଥିବୀର ପରିମାଣ ସମ୍ବନ୍ଧରେ କିଛି ସ୍ଥିର କରିଥିବାର ସମ୍ଭାବନା; କାରଣ ଋକ୍ ବେଦର ୧ମ: ୧୨୩ ସୂ: ରେ ଥିବା 'ପ୍ରତି ଦିନ ସେମାନେ ( ଉଷାମାନେ ) ବରୁଣର ( ସୂର୍ଯ୍ୟର ) ଅବସ୍ଥିତ ସ୍ଥାନଠାରୁ ତ୍ରିଂଶ ଯୋଜନ ଅଗ୍ରେ ଅବସ୍ଥିତ ହୁଅନ୍ତି' ଏପରି କାହିଁକି ଲେଖା ଅଛି ?

( ୯ ) ପୃଥିବୀର ଗୋଲତ୍ୱ ସ୍ୱୀକାର ନ କଲେ ସୂର୍ଯ୍ୟର ଆଗରୁ ଉଷାର ଉଦୟ ବୋଲିବାର ତାତ୍ପର୍ଯ୍ୟ ରହୁ ନାହିଁ; ବୋଧହୁଏ ସେମାନେ ତାହାର ଗୋଲତ୍ୱ ମଧ୍ୟ କଳ୍ପନା କରିଥିଲେ ।

ଅଧ୍ୟାପକ ମହାଶୟ ଆଧୁନିକ ବେଦଜ୍ଞ-ମାନଙ୍କର ମଧ୍ୟ ମତ ପ୍ରଦାନ କରିଅଛନ୍ତି । 'ସାମଶ୍ରମୀ ମହାଶୟ ଅନେକଗୁଡ଼ିଏ ଋକର ବ୍ୟାଖ୍ୟାଦ୍ୱାରା ପୃଥିବୀର ଚଳତ୍ୱ, ସୌରଜଗତର କେନ୍ଦ୍ରସ୍ୱରୂପ ପୃଥିବୀର ସ୍ଥିତି, ରବି ଶଶୀ ଭିନ୍ନ ଅପର ୫ ଗୋଟି ଗ୍ରହର ଗତି ପ୍ରଭୃତି ଅନେକ ବିଷୟ ବ୍ୟକ୍ତ କରିଅଛନ୍ତି ।' ତିଲକ ମହାଶୟଙ୍କ ମତରେ "ଅଗ୍ନିମନ୍ଦିର ଋଷିମାନେ ଯନ୍ତ୍ରଦ୍ୱାରା ସୂର୍ଯ୍ୟ ଗ୍ରହଣ ଜାଣିଥିଲେ ।" ଅଧ୍ୟାପକ ଲଡ୍‌ବିକ୍ କହନ୍ତି, "ସୂର୍ଯ୍ୟପଥ ଏବଂ ବିଷୁବଦ୍ ବୃତ୍ତର ପରସ୍ପର ଅବନତି ଏବଂ ପୃଥିବୀର ମେରୁଦଣ୍ଡ ବିଷୟ ଋକ୍‌ବେଦରେ ଲିଖିତ ଅଛି ।" •

ଏହା ତ ଗଲା ବେଦମଧ୍ୟସ୍ଥ ଜ୍ୟୋତିଷର କଥା । ଖ୍ରୀଷ୍ଟଜନ୍ମର ଅନ୍ତତଃ ୪୦୦୦ ବର୍ଷ ପୂର୍ବେ ଅର୍ଥାତ୍ ଯେଉଁ ସମୟରେ ମୃଗଶିର ନକ୍ଷତ୍ରରେ ବାସନ୍ତ ବିଷୁବଦ୍ ଦିନ ହେଉଥିଲା, ସେତେ-ବେଳେ ବୈଦିକ ଋଷିମାନଙ୍କର ଯେପରି ଜ୍ୟୋତିଷରେ ଜ୍ଞାନ ଥିଲା ତାହା ଋକ୍‌ବେଦରେ ନିହିତ ଅଛି ।

ଛଦନକ୍ତର ଅଧ୍ୟାପକ ମହାଶୟ ବୈଦିକ ବ୍ରାହ୍ମଣମାନଙ୍କରେ ପ୍ରବେଶ କରିଅଛନ୍ତି । ସେ ଲେଖିଅଛନ୍ତି, "ଋକ୍‌ବେଦର ଅନ୍ତର୍ଗତ ଐତରେୟ ଏବଂ ଶୁକ୍ଳ ଯଜୁଃର ଅନ୍ତର୍ଗତ ଶତପଥ ବ୍ରାହ୍ମଣରେ ଅନେକ ଜ୍ୟୋତିଷତତ୍ତ୍ୱ ଉପାଖ୍ୟାନାକାର ଧାରଣ କରିଅଛି ।" ଐତରେୟ ବ୍ରାହ୍ମଣରୁ ଗୋଟିଏ ଉପାଖ୍ୟାନର ଅବତାରଣା କରି ସେ ତାହାର ବ୍ୟାଖ୍ୟା ଯେପରି କରିଅଛନ୍ତି ତାହା ଏଠାରେ ଉଦ୍ଧୃତ କରି ଯାଉଅଛି :—

ଉପାଖ୍ୟାନ—"ଏକଦା ପ୍ରଜାପତି ସ୍ୱୀୟ କନ୍ୟା ଉଷାପ୍ରତି ଆସକ୍ତ ହେବାରୁ ଦେବତାମାନେ ନିଜର ଘୋରତମ ଅଂଶ ଏକତ୍ର କରି ଭୂତଭାବନଙ୍କୁ ସୃଷ୍ଟି କଲେ । ସେହି ଭୂତଭାବନ ପ୍ରଜାପତିଙ୍କର ଅଙ୍ଗକୁ ଶରବିଦ୍ଧ କରି ଆକାଶକୁ ଗମନ କଲେ । କେହେ ତାହାଙ୍କୁ 'ମୃଗ' ଓ 'ମୃଗବ୍ୟାଧ' କହନ୍ତି । ପ୍ରଜାପତି ଦୁହିତା ରୋହିତ ନାମକ ମୃଗରେ ରୂପାନ୍ତର ହେଲେ । ଆକାଶରେ ତାହା ରୋହିଣୀ ନକ୍ଷତ୍ର ହେଲା ।"

ବ୍ୟାଖ୍ୟା—"ଏହି ବ୍ରାହ୍ମଣରେ ପୁନଃ ପୁନଃ ଉକ୍ତ ହୋଇଅଛି ଯେ ପ୍ରଜାପତି, ଯଜ୍ଞ ଓ ସମ୍ବତ୍ସର ଏକପଦାର୍ଥ । ସମସ୍ତ ସମ୍ବତ୍ସର ବ୍ୟାପି ସନ୍ନିର୍ବାହିତ ହେଉଥିଲା ବୋଲି ଯଜ୍ଞର ନାମାନ୍ତର 'ସମ୍ବତ୍ସର' । ପୁନଶ୍ଚ ଯଜ୍ଞ ନ କଲେ ପ୍ରଜାସୃଷ୍ଟି ହୁଏ ନାହିଁ, ଏହିହେତୁରୁ ପ୍ରଜାପତି 'ଯଜ୍ଞ' । ପ୍ରଜାପତିର କନ୍ୟା ଯେ ରୋହିଣୀ ନକ୍ଷତ୍ର ତାହା ଲବ୍ଧାଂଶରୁ ଜଣାଯାଏ । ତେବେ କେଉଁ ସମୟରେ ପ୍ରଜାପତି ବା ବତ୍ସର ରୋହିଣୀ ନକ୍ଷତ୍ରରେ ଆରମ୍ଭ ହେଉଥିଲା ? ପ୍ରଜାପତି କାହିଁକି ସ୍ୱୀୟ କନ୍ୟାରେ ଉପଗତ ହେଉଥିଲେ? ତେତେବେଳେ ବାସନ୍ତ ବିଷୁବଦ୍ ଦିନଠାରୁ ବର୍ଷାରମ୍ଭ ଗଣିତ ହେଉଥିଲା । ମୃଗଶିରା ନକ୍ଷତ୍ରରେ ବର୍ଷାରମ୍ଭ ହୁଏ ବୋଲି ଋଷିମାନେ ବେଦରୁ ଜାଣିଥିଲେ । ବ୍ରାହ୍ମଣର ଋଷିମାନେ ଦେଖି ଚମକିତ ହେଲେ ଯେ 'ବିଷୁବନ୍ ପୂର୍ବପରି ମୃଗଶିରା ନକ୍ଷତ୍ରରେ ନାହିଁ । ରୋହିଣୀକୁ ଚାଲି ଆସିଅଛି । ସେ କାଳରେ ଅୟନଚଳନ ବା ବିଷୁବର ପଶ୍ଚିମଗତି ଅଜ୍ଞାତ ଥିଲା । ଏହି ହେତୁରୁ ବିଷୁବନ୍‌ର ଏପରି ସ୍ଥାନପରିବର୍ତ୍ତନ ଋଷିମାନଙ୍କ ନିକଟରେ ପ୍ରଜାପତିର "ଅକୃତ" (ଯାହା ପୂର୍ବେ ହୋଇ ନାହିଁ) ବୋଲି ବୋଧ ହେଲା । ଅର୍ଥାତ୍ ବିଷୁବନ୍‌ର ପଶ୍ଚାଦ୍‌ଗତି ଏହି ଉପାଖ୍ୟାନରେ ବିବୃତ ହୋଇଅଛି ।'

ଗ୍ରନ୍ଥକାର ମହାଶୟ ଉପାଖ୍ୟାନମାନଙ୍କର ବ୍ୟାଖ୍ୟା ଯେପରି କରିଅଛନ୍ତି, ତାହା ଉପରୋକ୍ତ ନମୁନାରୁ ଉତ୍ତମରୂପେ ବୁଝାପଡିବ । ତତ୍ସମ୍ବନ୍ଧରେ ଅଧିକ ଲେଖିବା ଅନାବଶ୍ୟକ । ସେ ବ୍ରାହ୍ମଣମାନଙ୍କରୁ ଆର୍ଯ୍ୟମାନଙ୍କର ଜ୍ୟୋତିର୍ଜ୍ଞାନ ସମ୍ବନ୍ଧରେ ନିମ୍ନଲିଖିତ ସତ୍ୟଗୁଡିକରେ ଉପନୀତ ହୋଇଅଛନ୍ତି :—

(୧) ପୃଥିବୀର ଚଳତ୍ୱ ଏବଂ ସୂର୍ଯ୍ୟର ସ୍ଥିରତ୍ୱ ପ୍ରତିପାଦନ କରିବା ସପକ୍ଷରେ ଐତରେୟ ବ୍ରାହ୍ମଣରୁ ଉକ୍ତି ମିଳିଲେହେଁ ବେଦ କିମ୍ବା ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କରେ ତାହା ସ୍ୱୀକୃତ ହୋଇ ନାହିଁ ।

(୨) ରବି ଶଶୀ ଭିନ୍ନ ଅନ୍ୟ ୫ ଗ୍ରହ ବ୍ରାହ୍ମଣ ରଚନା ସମୟକୁ ଆବିଷ୍କୃତ ହୋଇଥିଲେ ।

(୩) ତୈତ୍ତିରୀୟ ସଂହିତାରେ ୨୭ ଗୋଟି ନକ୍ଷତ୍ରର ନାମ ଲିଖିତ ଅଛି ଏବଂ ପ୍ରତ୍ୟେକ ନକ୍ଷତ୍ରର ଅଧିପତିର ନାମମଧ୍ୟ ପ୍ରଦତ୍ତ ହୋଇଅଛି ।

ଯେଉଁ ସମୟରେ କୃତ୍ତିକା ନକ୍ଷତ୍ରରେ ପ୍ରଥମ ବାସନ୍ତ ବିଷୁବଦ୍‌ଦିନ ହେଉଥିଲା ତୈତ୍ତିରୀୟ ବ୍ରାହ୍ମଣ ସେହି ସମୟରେ ରଚିତ । ଅତଏବ ଗ୍ରନ୍ଥକାରଙ୍କ ମତରେ ଖ୍ରୀ: ପୂ: ୨୨ଶ ଶତାବ୍ଦିରେ, ଇଉରୋପୀୟ ପଣ୍ଡିତମାନଙ୍କ ମତରେ ଖ୍ରୀ: ପୂ: ୧୩ଶ ଶତାବ୍ଦିରେ ଆର୍ଯ୍ୟମାନଙ୍କର ଜ୍ୟୋତିର୍ଜ୍ଞାନ କିପରି ଥିଲା ତାହା ଉଲ୍ଲିଖିତ ବିବରଣରୁ ଜଣା ଯାଉଅଛି ।

ତଦନନ୍ତର ଗ୍ରନ୍ଥକାର ମହାଶୟ ବେଦାଙ୍ଗ-ରଚନାକାଳରେ ଅର୍ଥାତ୍ ଖ୍ରୀ: ପୂ: ୧୨ଶ ଶତାବ୍ଦିରେ ଆର୍ଯ୍ୟମାନଙ୍କର ଜ୍ୟୋତିର୍ଜ୍ଞାନ କେତେ ଥିଲା, ତାହା ପରୀକ୍ଷା କରିବାକୁ ଯାଇଅଛନ୍ତି । ବେଦାଙ୍ଗ ଜ୍ୟୋତିଃସିଦ୍ଧାନ୍ତ ନୁହେ, ଯଜ୍ଞ-ସମ୍ପାଦନର କାଳନିର୍ଣ୍ଣୟ କରିବା ଏହାର ଉଦ୍ଦେଶ୍ୟ, ତଥାପି ତହିଁରୁ ଜ୍ୟୋତିଷର ଯେ କେତେଗୋଟି ସତ୍ୟ ଜଣାଯାଏ ତାହା ଏହି:—

(୧) ସେତେବେଳେ ଘଟୀଯନ୍ତ୍ରାଦିଦ୍ୱାରା କାଳ ପରିମିତ ହେଉଥିଲା ।

(୨) ଅହୋରାତ୍ର ୩୦ ମୁହୂର୍ତ୍ତରେ ବିଭକ୍ତ ହେଉଥିଲା ।

(୩) ରବ୍ୟାଦିର ଗତି ଓ ସ୍ଥିତି ଜାଣିବା ଲାଗି ଏକପ୍ରକାର ଯନ୍ତ୍ର ଆବିଷ୍କୃତ ହୋଇଥିଲା ।

ଅଧ୍ୟାପକ ମହାଶୟ ଲେଖିଅଛନ୍ତି, “ଯେବେ ସେ ସମୟର ( ବେଦାଙ୍ଗ-ରଚନା ସମୟର ) ଜ୍ୟୋତିର୍ଜ୍ଞାନପରିଚୟ ପାଇବାକୁ ଇଚ୍ଛା ହୁଏ ତେବେ ‘ବ୍ରହ୍ମସିଦ୍ଧାନ୍ତ’ ପାଠ କରିବା ଆବଶ୍ୟକ । ଦୁଃଖର ବିଷୟ ପ୍ରାଚୀନ ବ୍ରହ୍ମସିଦ୍ଧାନ୍ତ ଲୁପ୍ତ ହୋଇଅଛି” । ସୁତରାଂ ବରାହମିହିର ପୁରାତନ ବ୍ରହ୍ମସିଦ୍ଧାନ୍ତରୁ ସାର ସଙ୍କଳନ କରି ନିଜର ‘ପଞ୍ଚସିଦ୍ଧାନ୍ତିକା’ ନାମକ କରଣରେ ଯାହା ଲେଖିଅଛନ୍ତି ତାହା ସମାଲୋଚିତ ପୁସ୍ତକରୁ ନିମ୍ନରେ ଦିଆଗଲା:—

୧ । ୫ ବର୍ଷରେ ରବି ଶଶିର ୧ ଯୁଗ, ୩୦ ମାସରେ ୧ ଅଧିମାସ ଏବଂ ୬୨ ଦିନରେ ୧ ଅହମ (କ୍ଷୟତିଥି) ହୁଏ ।

୨ । ଶକାବ୍ଦ ସଂଖ୍ୟାରୁ ୨ ବାଦ୍ ଦେଇ ବାକି ଯାହା ରହିଲା ତାହାକୁ ୫ ଦ୍ୱାରା ହରଣ କର । ଯାହା ଅବଶିଷ୍ଟ ରହିବ ତାହାର ଅହର୍ଗଣ (ଦିନସଂଖ୍ୟା) କରିବ । ମାଘ ଶୁକ୍ଳ ପ୍ରତିପଦ୍‌ଠାରୁ ଦିନ ଗଣନା କରିବ । ସୂର୍ଯ୍ୟୋଦୟଠାରୁ ଦିନ ହୁଏ ।

(୩) ଯେତେ ଅହର୍ଗଣ ହେବ, ତାହା ସହିତ ତାହାର ୬୧ ଭାଗ ଯୋଗ କଲେ ତିଥିସଂଖ୍ୟା ହୁଏ । ଅହର୍ଗଣକୁ ୯ ଦ୍ୱାରା ଗୁଣି ୧୨୨ ଦ୍ୱାରା ଭାଗ କଲେ ରବିର ନକ୍ଷତ୍ର ହୁଏ । ଅହର୍ଗଣକୁ ୭ ଦ୍ୱାରା ଗୁଣ ଏବଂ ୬୧୦ ଦ୍ୱାରା ଭାଗ କଲେ ଯାହା ଲବ୍ଧ ହୁଏ ତାହା ଅହର୍ଗଣରୁ ହୀନ କଲେ ଚନ୍ଦ୍ରର ନକ୍ଷତ୍ର ଜଣା ଯାଏ । ଧନିଷ୍ଠାଠାରୁ ନକ୍ଷତ୍ର ଗଣନା କରିବ ।

(୪) ମାସର ପୂର୍ବାର୍ଦ୍ଧରେ ପର୍ବ (ପୂର୍ଣ୍ଣିମା ଓ ଅମାବସ୍ୟା) ଜାଣିବାକୁ ହେଲେ, ପୂର୍ବୋକ୍ତ ପ୍ରକାରେ ଆନୀତ ତିଥି ଶୁକ୍ଳପକ୍ଷୀୟ ବୋଲି ଜାଣିବ; ମାସର ଅପରାର୍ଦ୍ଧ ହେଲେ କୃଷ୍ଣତିଥି ବୋଲି ଜାଣିବ । ଅହର୍ଗଣକୁ ୧୨ ଦ୍ୱାରା ଗୁଣି ଏବଂ ୩୦୫ ଦ୍ୱାରା ଭାଗ କରି ଯେ ଲବ୍ଧ ଫଳ ହୁଏ, ତାହା ଯୁଗାରମ୍ଭଠାରୁ ଗତ ବ୍ୟତୀପାତ ଯୋଗ ହୁଏ ।

(୫) ସୂର୍ଯ୍ୟର ଉତ୍ତରାୟଣ କାଳରୁ ଯେତେ ଦିନ ଗତ ହୋଇଅଛି ଏବଂ ଦକ୍ଷିଣାୟନ କାଳରୁ ଯେତେ ଦିନ ଅବଶିଷ୍ଟ ଅଛି, ସେହି ଦିନସଂଖ୍ୟା ସହିତ ୭୩୨ ଯୋଗ କରିବ । ଯୋଗଫଳକୁ ୨ ଦ୍ୱାରା ଗୁଣି ଏବଂ ୬୧ ଦ୍ୱାରା ଭାଗ କରି ଯେ ଫଳ ଲବ୍ଧ ହେବ, ତହିଁରୁ ୧୨ ହୀନ କଲେ ଦିବାମାନ ମୁହୂର୍ତ୍ତ ହେବ ।

ଅଧ୍ୟାପକ ମହାଶୟ ଏହି ସମସ୍ତ ବିଷୟରେ ନାନାପ୍ରକାର ସମାଲୋଚନା କରିଅଛନ୍ତି । ଶେଷରେ “କେଉଁ ସମୟଠାରୁ ବର୍ଷାରମ୍ଭ ଗଣିତ ହେଉଥିଲା ?” ଏହି ପ୍ରଶ୍ନ ଉତ୍ଥାପିତ କରି ତାହାର କିପ୍ରକାର ସମାଧାନ କରିଅଛନ୍ତି, ଦେଖନ୍ତୁ:—

“ବର୍ଷ ଶବ୍ଦର ଏକ ଅର୍ଥ—ବର୍ଷଣ ବା ବୃଷ୍ଟି । ବର୍ଷାକାଳଠାରୁ ଅର୍ଥାତ୍ ରବିର ଉତ୍ତରାୟଣାନ୍ତ ଦିନରୁ ବହୁକାଳରେ ବର୍ଷ ଗଣିତ ହେଉଥିଲା । ଋକ୍ ବେଦର ସ୍ଥାନେ ସ୍ଥାନେ ଅଛି, ‘ଶତହେମନ୍ତ ଆୟୁଃ ଦିଅ’—ଅର୍ଥ ଶତବର୍ଷର ଆୟୁଃ । ତେବେ ହେମନ୍ତ ଶବ୍ଦ ବତ୍ସରକୁ ବୁଝାଉଥିଲା । ସମ୍ଭବତଃ

କାଳରେ ଦକ୍ଷିଣାୟନାନ୍ତର ପରଦିନଠାରୁ ବର୍ଷ ଗଣିତ ହେଉଥିଲା । ପୈତାମହ ସିଦ୍ଧାନ୍ତରେ (ବ୍ରହ୍ମ ସିଦ୍ଧାନ୍ତରେ) ମଧ୍ୟ ତାହାହିଁ ଅଛି । ଦକ୍ଷିଣାୟନାନ୍ତଠାରୁ ଉତ୍ତରାୟଣାନ୍ତ ପର୍ଯ୍ୟନ୍ତ ଦେବକାଳ । ଋକ୍‌ବେଦରେ ଏହା ଦେବଯାନ ନାମରେ ପ୍ରସିଦ୍ଧ । ଉତ୍ତରାୟଣ ଶେଷ କରି ଦକ୍ଷିଣ ଦିଗରେ ସୂର୍ଯ୍ୟର ଗତି ଯେତେଦିନ ଥାଏ, ତାହା ଦକ୍ଷିଣାୟନ କାଳ । ଏହାର ନାମ ପିତୃଯାନ । କାଳକ୍ରମେ ଦେବଯାନ ବା ଉତ୍ତରାୟଣ କାଳ ପୁଣ୍ୟକାଳ ବୋଲି ପ୍ରସିଦ୍ଧ ହେଲା ।

କିନ୍ତୁ କୌଣସି ଅୟନାନ୍ତ ଦିନଠାରୁ ବର୍ଷ ଗଣିତ ହେଲେ ବିଷୁବନ୍ ବର୍ଷର ମଧ୍ୟଦିନ ହୁଏ ନାହିଁ । ଏପରି ହେଲେ ବିଷୁବନ୍‌ର ଏକ ଦିଗରେ ୩ ମାସ ଅନ୍ୟ ଦିଗରେ ୯ ମାସ ରହେ । ଏହି ହେତୁରୁ ତିଳକ ମହାଶୟ କହନ୍ତି ପ୍ରାଚୀନ ବୈଦିକ ସମୟରେ ବିଷୁବନ୍‌ଠାରୁ ବର୍ଷ ଗଣିତ ହେଉଥିଲା । ଅନ୍ୟର ମଧ୍ୟ ଗୋଟିଏ କଥା ଅଛି । ପୂର୍ବକାଳରେ ବସନ୍ତ ପ୍ରଥମ ଋତୁ ଥିଲା । ଶତପଥ ବ୍ରାହ୍ମଣରେ ବସନ୍ତ, ଗ୍ରୀଷ୍ମ, ବର୍ଷାକୁ ଦେବଋତୁ ଏବଂ ଶରତ୍, ହେମନ୍ତ, ଶିଶିରକୁ ପିତୃଋତୁ ବୋଲାଯାଇଅଛି । ଏହିପରି, ଦେବ ଓ ପିତୃ ବା ଯମ ନକ୍ଷତ୍ର ଅଛି । ଅତଏବ ବସନ୍ତ ବିଷୁବଦ୍ ଦିନଠାରୁ ୬ ମାସ ଉତ୍ତର ଉତ୍ତରାୟଣ ଏବଂ ଶରତ୍ ବିଷୁବଦ୍ ଦିନଠାରୁ ୬ ମାସ ଉତ୍ତର ଦକ୍ଷିଣାୟନ ଗଣ୍ୟ ହେଉଥିଲା । କାଳକ୍ରମେ ଏହାର ଅନ୍ୟଥା ହୋଇ ଦକ୍ଷିଣାୟନାନ୍ତ ଦିନରୁ ଉତ୍ତରାୟଣ ଗଣନା ପ୍ରଚଳିତ ହୋଇଅଛି । ଅନ୍ୟର ମଧ୍ୟ ପୁଣି ବସନ୍ତ ବିଷୁବଦ୍ ଦିନଠାରୁ ବର୍ଷଗଣନା ଚଳୁଅଛି ।

ପୂର୍ବ କାଳରେ ୫ ସୌର ବର୍ଷରେ ଏକଯୁଗ ଗଣିତ ହେଉଥିଲା । ବେଦାଙ୍ଗ ଜ୍ୟୋତିଷରେ ଏବଂ ପିତାମହ ସିଦ୍ଧାନ୍ତରେ ତାହାର ପ୍ରୟୋଗ ଦେଖାଯାଇଅଛି । ପରବର୍ତ୍ତୀ କାଳରେ ମଧ୍ୟ ସେହି ଗଣନା ଅପ୍ରଚଳିତ ହେଲା ନାହିଁ । ପଞ୍ଚବର୍ଷାତ୍ମକ ଯୁଗ ସହିତ ବୃହସ୍ପତିର ଭଗଣଭୋଗକାଳ ଯୁକ୍ତ ହୋଇ ବାର୍ହସ୍ପତ୍ୟାବ୍ଦର ସୂଚନା ହୋଇଅଛି । ଏହାର କାର୍ତ୍ତିକାଦି ବର୍ଷ ଗଣନା ଦେଖିଲେ ବୁଝାଯାଏ ଯେ ଯେତେବେଳେ କୃତ୍ତିକାରେ ବିଷୁବନ୍ ହୋଇଥିଲା, ସେତେବେଳେ ଏହି ଅବ୍ଦ ପ୍ରଚଳିତ ହୋଇଥିଲା ।"

ବେଦମଧ୍ୟସ୍ଥ ଜ୍ୟୋତିଷର ଉପସଂହାର ସ୍ଥଳରେ ଗ୍ରନ୍ଥକାର ମହାଶୟ ଲେଖିଅଛନ୍ତି "ଏହି ଅନ୍ଧତମସାଚ୍ଛନ୍ନ ଦୁଷ୍ପ୍ରବେଶ୍ୟ ଅତୀତ କାଳର ଆର୍ଯ୍ୟ ଜ୍ଞାନଗରିମା ପ୍ରକଟିତ କରିବା ଆମ୍ଭମାନଙ୍କର ସାଧ୍ୟ ନୁହେ । ବୈଦିକ ଗ୍ରନ୍ଥର ସମ୍ୟକ୍ ବିଚାର ଏବଂ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନଦ୍ୱାରା ବର୍ତ୍ତମାନ ମଧ୍ୟ ଅନେକ ବିଷୟ ଆବିଷ୍କୃତ ହୋଇ ପାରେ । ଯାହାହେଉ ଏହି ପ୍ରସ୍ତାବରେ ଆମ୍ଭେମାନେ ଜ୍ୟୋତିଷ ଭିନ୍ନ ଜ୍ୟୋତିଷୀ ପାଇ ନାହୁଁ । ଆର୍ଯ୍ୟ ଋଷିମାନେହିଁ ଜ୍ୟୋତିଷୀ ଥିଲେ ।"

କ୍ରମଶଃ ।

ଶ୍ରୀ ମଧୁସୂଦନ ଦାଶ ।



## ଓଡ଼ିଆ ଭାଷାର ମୂଳ । (୨)

ଉପରେ ଓଡ଼ିଆ ଭାଷାର ମୂଳ ସମ୍ବନ୍ଧରେ ଐତିହାସିକ ପ୍ରମାଣମାନ ଲିଖିତ ହେଲା । ବର୍ତ୍ତମାନ ଶବ୍ଦଗତ ସାଦୃଶ୍ୟ ଦେଖାଇ ତାହାର ପ୍ରତ୍ୟକ୍ଷ ପ୍ରମାଣ ଦିଆ ଯାଉଅଛି । ପ୍ରଥମେ ସଂସ୍କୃତରୁ ପ୍ରାକୃତ ବାଟେ ଓଡ଼ିଆ ଭାଷା କିପରି ସୃଷ୍ଟି ହୋଇଅଛି, ତାହାର ଦୃଷ୍ଟାନ୍ତ ଦିଆଯିବ । ଦୃଷ୍ଟାନ୍ତ ଦେଖାଇବା ପୂର୍ବେ ପାଠକମାନଙ୍କ ପ୍ରତି ଲେଖକଙ୍କର ବକ୍ତବ୍ୟ ଏହି ଯେ, ସେମାନେ

ସ୍ମରଣ ରଖିଥିବେ ଯେଉଁଠି ପ୍ରାକୃତ ବା ମୂଳ ଭାଷାର ସର୍ବବ୍ୟାପୀ ନିୟମ ଆମ୍ଭମାନଙ୍କ ଭାଷାରେ ଅଂଶବ୍ୟାପୀ ହୋଇଅଛି ଏବଂ ଯେଉଁଠି ଆଂଶିକ ନିୟମ ଏଥିରେ ସର୍ବତ୍ର ବ୍ୟବହୃତ ହୋଇଅଛି । ଓଡ଼ିଆ ଭାଷାରେ ସଂସ୍କୃତ ଭାଷାର ପ୍ରଭାବ ବୃଦ୍ଧିପ୍ରାପ୍ତ ହୋଇଥିବାରୁ ସେପରି ଘଟିଅଛି । ନିମ୍ନରେ କେତୋଟି ପ୍ରୟୋଜନୀୟ ସୂତ୍ରସହ ଉଦାହରଣମାନ ପ୍ରଦତ୍ତ ହେଲା ।

ସୂତ୍ର—କ ଗ ଚ ଜ ତ ଦ ପ ଯ ବାଂ ପ୍ରାୟୋ ଲୁକ୍ । ଅର୍ଥାତ୍ ସଂସ୍କୃତର କ, ଗ, ଚ, ତ, ଦ, ପ, ବ ଓ ଯ ସ୍ଥାନରେ ପ୍ରାକୃତରେ 'ଅ' ଏବଂ ସେଥିରୁ ଓଡ଼ିଆରେ 'ଅ' ହୋଇଅଛି । ଓଡ଼ିଆରେ ପଦାନ୍ତସ୍ଥିତ 'ଅ' ଗୁଡ଼ିକ ସନ୍ନିହିତ ବର୍ଣ୍ଣ ସହିତ ଯୁକ୍ତ ହୋଇଥାଏ । ଯଥା:—

| ସଂସ୍କୃତ | ପ୍ରାକୃତ | ଓଡ଼ିଆ |
|---|---|---|
| କୁମ୍ଭକାର | କୁମ୍ଭଅରେ, କୁମ୍ଭରେ | କୁମ୍ଭାର |
| ଦେବକୁଳଂ | ଦେଉଳଂ | ଦେଉଳ |
| କର୍ଣ୍ଣିକାରଃ | କଣିଆରେ | କନଅର |
| ମଲ୍ଲିକା | ମଲ୍ଲିଆ | ମଲ୍ଲି |
| ଶୃଗାଲ | ସିଅଲ, ସିୟାଲୋ | ଶିୟାଳ |
| ନଗରଂ | ଣଅରଂ | ନଅର |
| ଭଗିନୀ | ଭଇଣୀ | ଭଉଣୀ |
| ସେଚନକଂ | ସେଅଣଅଂ | ସେଣା |
| ବାତୁଲଃ | ବାଉଳୋ | ବାଉଳା |
| ହସତି | ହସଇ | ହସଇ |
| ମାତୃସ୍ୱସୃ | ମାଉସିଆ | ମାଉସୀ |
| ନଦୀ | ନଇ | ନଈ |
| ପଦାତିକଃ | ପାଇକ୍କୋ | ପାଇକ |
| କପିତ୍ଥଃ | କଇତ୍ଥୋ | କଇଥ |
| ପିପାସା | ପିଆସା | ପିୟାସ |
| ପାନୀୟଂ | ପାଣିଅଂ | ପାଣି |
| ଖଳପୃଂ | ଖଳଅଂ | ଖଳା |
| ଜୀବତି | ଜୀଅଇ | ଜୀଅଇ, ଜୀଏ |
| ପାରାବତଃ | ପାରାଓ | ପାରା |

| ସଂସ୍କୃତ | ପ୍ରାକୃତ | ଓଡ଼ିଆ |
|---|---|---|
| ଚକ୍ରବାକଃ | ଚକ୍କାଓ | ଚକୁଆ |
| ଦେବରଃ | ଦିଅରେ | ଦିଅର |
| ପ୍ରକୋଷ୍ଠଃ | ପଉଟ୍ଠୋ | ପଉଠ, ପୌଠ |

ଇତ୍ୟାଦି ।

'ପ୍ରାକୃତେ ଭିନ୍ନବର୍ଗୀୟାନାଂ ସଂଯୋଗୋ ନ ଭବତି' ଅର୍ଥାତ୍ ପ୍ରାକୃତରେ ସଂଯୁକ୍ତ ବର୍ଣ୍ଣଦ୍ୱୟ ମଧ୍ୟରୁ ଗୋଟିକର ଦ୍ୱିତ୍ୱ ହୁଏ । 'ଅନାଦୌ ସ୍ଥିତାନାଂ ଶେଷାଣାଂ ଦ୍ୱିତ୍ୱଂ ।' ଓଡ଼ିଆରେ ଏହିପରି ଦ୍ୱିତ୍ୱପ୍ରାପ୍ତ ବର୍ଣ୍ଣର ଉଚ୍ଚାରଣ ଟିକିଏ ହ୍ରସ୍ୱ ହୋଇଅଛି ।

| ସଂସ୍କୃତ | ପ୍ରାକୃତ | ଓଡ଼ିଆ |
|---|---|---|
| ପର୍ଯ୍ୟଙ୍କଃ | ପଲ୍ଲଙ୍କୋ | ପଲଙ୍କ |
| ମୌକ୍ତିକଂ | ମୋତ୍ତିଅଂ | ମୋତି |
| ବଲ୍କଲଂ | ବକ୍କଲଂ | ବକଳ |
| ଅଗ୍ର | ଅଗ୍ଗ | ଅଗ ଓ ଆଗ |
| ଚକ୍ରଂ | ଚକ୍କଂ | ଚକ |
| ସପ୍ତପର୍ଣ୍ଣଃ | ଛତ୍ତିବଣୋ | ଛତିଅନା |
| ଭକ୍ତଂ | ଭତ୍ତଂ | ଭାତ |
| ମୁଦ୍ଗରଃ | ମୁଗ୍ଗରେ | ମୁଗୁର |
| ପ୍ରସ୍ତରଃ | ପତ୍ଥରେ | ପଥର |
| ପଂକ୍ତିଃ | ପଂତ୍ତୀ | ପନ୍ତି |
| ମୁଷ୍ଟିଃ | ମୁଟ୍ଠୀ | ମୁଠି |
| ଗର୍ତ୍ତଂ | ଗତ୍ତଂ, ଗଡ୍ଡଂ | ଗାତ, ଗାଡ଼ |

ହ୍ରସ୍ୱାତ୍ ଥ୍ୟଶ୍ଚତ୍ସପ୍ସାମନିଶ୍ଚଲେ ଛଃ— ଅର୍ଥାତ୍ ଥ୍ୟ, ଶ୍ଚ, ତ୍ସ, ପ୍ସ ପ୍ରଭୃତି ସ୍ଥଳରେ ପ୍ରାକୃତରେ 'ଚ୍ଛ' ଏବଂ ସେଥିରୁ ଆମ୍ଭମାନଙ୍କ ଭାଷାରେ 'ଛ' ହେଲା । ଯଥା:—

| ସ | ପ୍ରା | ଓ |
|---|---|---|
| ମିଥ୍ୟା | ମିଚ୍ଛା | ମିଛ |
| ମତ୍ସ୍ୟଃ | ମଚ୍ଛୋ | ମାଛ |
| ବୃଶ୍ଚିକଃ | ବିଚ୍ଛୁଓ | ବିଛା |
| ପଶ୍ଚାତ୍ | ପଚ୍ଛା, ପଚ୍ଛଇ | ପଛ, ପଛେ |
| ଉତ୍ସବଃ | ଉଚ୍ଛବୋ | ଉଚ୍ଛବ |

ପ୍ରାକୃତରେ ଖ, ଘ, ଥ, ଧ ଓ ଭ ସ୍ଥାନରେ 'ହ' ହୋଇଅଛି । ଖ ଘ ଥ ଧ ଭାଂ ହଃ । ଯଥାः—

| ସଂ | ପ୍ରା | ଓ |
|---|---|---|
| ମୁଖଂ | ମୁହଂ | ମୁହଁ |
| ସଖୀ | ସହୀ | ସହୀ |
| ଲଘୁକଂ | ହଲୁଅଂ | ହାଲୁକା |
| ନାଥଃ | ଣାହୋ | ନାହା |
| ତଥଂ | ତହଂ | ତାହିଁକ ? |
| ସାଧୁଃ | ସହୂ | ସାହୁ |
| ଦଧି | ଦହି | ଦହି |
| ବଧିରଃ | ବହିରୋ | ବହିର |
| ଶୋଭତେ | ସୋହଇ | ଶୋହେ |
| ଭବତି | ହୋଇ | ହୁଅଇ, ହୁଏ |

ଟୋଡଃ । ଠୋଢଃ । ଅର୍ଥାତ୍ ସଂସ୍କୃତର ଟ ଓ ଠ ବର୍ଣ୍ଣ ସ୍ଥାନରେ ପ୍ରାକୃତରେ ଡ ଓ ଢ ହୁଏ ଏବଂ ତାହା ଅମ୍ଭମାନଙ୍କ ଭାଷାରେ ରହିଅଛି ।

| ସଂ | ପ୍ରା | ଓ |
|---|---|---|
| ପୁଟକଂ | ପୁଡ଼ଅଂ | ପୁଡ଼ା |
| ଘଟିକା | ଘଡଆ | ଘଡ |
| କୁଟଃ | କୁଡ଼ୋ | କୁଡ଼ |
| କୁଠାରଃ | କୁଢ଼ାରୋ | କୁର୍‌ହାଡ |
| ପୀଠଂ | ପୀଢ଼ଂ | ପୀଢ଼ା |

ପ୍ରାକୃତ ଭାଷାରେ 'ଋ' ସ୍ଥାନରେ କେଉଁଠି ଅ, କେଉଁଠି ଇ ଏବଂ କେଉଁଠି ଉ ହୋଇଅଛି । ଋତୋଽତ୍ । ଇତ୍ କୃପାଦୌ । ଉଦୃତ୍ୱାଦୌ । ଯଥାः—

| ସଂ | ପ୍ରା | ଓ |
|---|---|---|
| ମୃତ୍ତିକା | ମଟ୍ଟିଆ | ମାଟି |
| ଘୃଷ୍ଟଂ | ଘଟ୍ଠଂ | ଘଟା |
| ବୃଦ୍ଧିଃ | ବଡ୍ଢୀ | ବଢ଼ି |
| ନୃତ୍ୟଂ | ଣଚ୍ଚ | ନାଚ |
| ଘୃତଂ | ଘିଅଂ ବା ଘଅଂ | ଘିଅ |
| ଶୃଙ୍ଗଂ | ସିଂଗଂ | ଶିଙ୍ଗ |

| ସଂସ୍କୃତ | ପ୍ରାକୃତ | ଓଡ଼ିଆ |
|---|---|---|
| ଧୃଷ୍ଟଃ | ଧିଟ୍ଠୋ | ଧିଟ |
| ଭ୍ରାତୃଜାୟା | ଭାଉଜାଅ | ଭାଉଜ |
| ପିତୃଷ୍ୱସା | ପିଉସିଆ | ପିଉସୀ |
| ବୃଦ୍ଧଃ | ବୁଡ୍ଢୋ | ବୁଢ଼ା |

ଓତ୍ ସଂଯୋଗେ । ଇତ ଏଦ୍‌ବା । ଏହି ସୂତ୍ରର ମର୍ମ ଏହି ଯେ ପ୍ରାକୃତ ଭାଷାରେ ସଂଯୁକ୍ତ ବର୍ଣ୍ଣ ପରେ ଥିଲେ ପଦାଦ୍ୟସ୍ଥ ଉ ଏବଂ ଇ ଠାରେ ଓ ଏବଂ ଏ ହୁଏ । ଉଦାହରଣ ଯଥାः—

| ସଂ | ପ୍ରା | ଓ |
|---|---|---|
| ପୁସ୍ତକଂ, ପୁସ୍ତିକା | ପୋତ୍ଥଅଂ, ପୋତ୍ଥିଆ | ପୋଥି |
| ଗୁଚ୍ଛଂ | ଗୋଚ୍ଛଂ | ଗୋଛ |
| ବିଲ୍ୱଃ | ବେଲ୍ଲୋ | ବେଲ |

ଇତ୍ୟାଦି ।

ଉକ୍ତ ଭାଷାରେ ସଂଯୁକ୍ତ ବର୍ଣ୍ଣ ପରେ ଥିଲେ ସଂସ୍କୃତ ଦୀର୍ଘ ସ୍ୱରର ଯଥାଦର୍ଶନ ହ୍ରସ୍ୱ ହୋଇଥାଏ । ହ୍ରସ୍ୱ ସଂଯୋଗେ । ଯଥା;—

| ସଂ | ପ୍ରା | ଓ |
|---|---|---|
| ଆମ୍ରଂ | ଅମ୍ବଂ | ଆମ୍ବ |
| ତାମ୍ରଂ | ତମ୍ବଂ | ତମ୍ବା |
| ମହୋତ୍ସବଃ | ମହୂସବୋ, ମହୂଚ୍ଛବୋ | ମହୋଛବ, ମହୋତ୍ସ |
| ରୌପ୍ୟଂ | ରୋପ୍ପଂ ବା ରୁପ୍ପଂ | ରୁପା |
| ଚୂର୍ଣ୍ଣଂ | ଚୁଣ୍ଣଂ | ଚୁନ |
| ମାର୍ଜାରଃ | ମଞ୍ଜାରୋ | ମଞ୍ଜାରୀ |

ପ୍ରାକୃତର ଯେଉଁ ଅଂଶ ଉଲ୍ଲିଖିତ ନିୟମାବଳୀର ଅଧୀନ ନୁହେ, ତନ୍ମଧ୍ୟରୁ କେତେକ ନିମ୍ନରେ ଲିଖିତ ହେଲା ।

| ସଂ | ପ୍ରା | ଓ |
|---|---|---|
| ଚାମରଂ | ଚମରଂ | ଚଅଁର |
| କର୍କଟକଃ | କକ୍କଡ଼ଓ | କଙ୍କଡ଼ା |
| କ୍ରି | କଣି | କିଣ |
| ଧୂପଃ | ଧୂଅ | ଧୂଆ |

| ସଂସ୍କୃତ | ପ୍ରାକୃତ | ଓଡ଼ିଆ |
|---|---|---|
| କଟ୍‌ଫଲଂ | କାଫଲଂ | କାଫଲ |
| ଶିଥିଳଂ | ସଢ଼ିଲଂ | ଢିଲା |
| ଗୁଡୂଚୀ | ଗଳୋଇ | ଗଳେଇ, ଗଳଅ |
| ସପ୍ତଦଶ | ସତ୍ତରହ | ସତର |
| ଦ୍ୱାଦଶ | ବାରହ | ବାର |
| ସପ୍ତତିଃ | ସତ୍ତରି | ସତୁରି |
| ପ୍ରତିହାର | ପଡ଼ିହାର | ପଡ଼ିଆର |
| ଉପାଧ୍ୟାୟଃ | ଓଝ୍‌ଝାଓ | ଓଝା |
| ମଳିନଂ | ମଇଲଂ | ମଇଳା |
| ମଧ୍ୟମଃ | ମଜ୍‌ଝିମୋ | ମଝିଆଁ |
| ଏତାବତ୍ | ଏବଡ୍ଡ | ଏଡ଼େ |
| ପର୍ଯ୍ୟାଣଂ | ପଲ୍ଲାଣଂ | ପଲାଣ |
| ପତ୍ତନଂ | ପଟ୍ଟଣଂ | ପାଟଣା |
| ନପ୍ତା | ଣତ୍ତୁ | ନାତି |
| ଜିହ୍ୱା | ଜିବ୍ଭା | ଜିଭ |
| ଗୃହଂ | ଘରଂ | ଘର |
| ଦ୍ୱିଚତ୍ୱାରିଂଶତ୍ | ବେଆଳିସା | ବୟାଳିଶ |
| ତ୍ରୟୋବିଂଶତିଃ | ତେବୀସ | ତେଇଶ |
| ଆତ୍ମା | ଅପ୍ପଣୋ | ଆପଣ |
| କିୟତ୍ | କେବଡ୍ଡ | କେବଡ |
| ଦ୍ୱାରଂ | ଦୁଆରଂ | ଦୁଆର |
| ଶଯ୍ୟା | ସେଜ୍ଜା | ଶେଜ |
| ଶ୍ମଶାନଂ | ମସାଣଂ | ମଶାଣି |
| ସଦ୍ୟଃ | ସଜ୍ଜୋ | ସଜ |
| ଶୁକ୍ତିଃ | ସିପ୍ପୀ | ସିପ |
| ହୃଦୟଂ | ହିଅଅଂ, ହଲ୍ଲଢଂ | ହିୟା, ହାଲଢ |
| ବୃନ୍ତଂ | ବେଣ୍ଟଂ | ବେଣ୍ଟ |
| ଲବଣଂ | ଲୋଣଂ | ଲୁଣ |
| ଯାବତ୍ | ଜାବ, ଜା | ଯାଏ |
| ଏତାବତ୍ | ଏତ୍ତିଅଂ, ଏଢକଂ | ଏତେ, ଏଢକ |
| ପ୍ରଥମଃ | ପୁଢ଼ମୋ | ପୋଢ଼ୁଆଁ |
| ପର୍ଯ୍ୟସ୍ତଂ | ପଲ୍ଲଟ୍ଟଂ | ପାଲଟ |
| ନମ୍ରଃ | ଲମ୍ବୋ | ଲମ୍ବ |

| ସଂସ୍କୃତ | ପ୍ରାକୃତ | ଓଡ଼ିଆ |
|---|---|---|
| ନଗରଂ | ଣଗରଂ | ନଗର |
| ଚତୁର୍ଥୀ | ଚଉଟ୍ଠୀ | ଚଉଠୀ |
| ଅଳାବୁ | ଲାଉ | ଲାଉ |
| ତ୍ରୟସ୍ତ୍ରିଂଶତ୍ | ତେତ୍ତିସ୍ | ତେତିଶ |
| ହରିଦ୍ରା | ହଲଦ୍ଦୀ | ହଳଦୀ |
| ହରୀତକୀ | ହରଡ୍ଡଈ | ହରଡ଼ା ଇତ୍ୟାଦି । |

## ଧାତୁ ।

—o—

| | | |
|---|---|---|
| ଶ୍ରୁ | ସୁଣ | ଶୁଣ |
| କ୍ରୀ | କିଣ | କିଣ |
| ଭୂ | ହୁ, ହୋ | ହୋ ବା ହେ |
| କୃ | କର | କର |
| ଗୈ | ଗା | ଗା |
| ଦୃଶ | ଦେକ୍ଖ | ଦେଖ |
| ଗ୍ରହ | ଗେଣ୍ହ ଘେତ୍ତୁ, | ଘେନ, ଘେତୁ |
| ବୃଧ୍ | ବଡ୍ଢ | ବଢ଼ |
| ଧାବ | ଧା | ଧା |
| ସ୍ମୃ | ସୁମର | ସୁମର |
| ଜାଗୃ | ଜଗ୍ଗ | ଜଗ, ଜାଗ |
| ଘଟ ଓ ଗଠ | ଗଢ଼ | ଗଢ଼ |
| ନୃତ୍ | ନଚ୍ଚ | ନାଚ |
| ମୃଦ୍ | ମଲ; ମଡ୍ଡ | ମଲ ଓ ମଡ଼ |
| ଉତ୍ + ପଦ | ଉପଜ୍ଜ | ଉପୁଜ |
| ଜ୍ଞା | ଜାଣ | ଜାଣ |
| ଅସ | ଅଚ୍ଛ | ଅଛ |
| ବଦ | ବୋଲ୍ଲ | ବୋଲ |
| ଦା | ଦେ (ଶୌର ?) | ଦେ |
| ଖାଦ୍ | ଖା | ଖା |

ଇତ୍ୟାଦି ।

## ସର୍ବନାମ ।

| ପ୍ରାକୃତ | ଓଡ଼ିଆ |
|---|---|
| ସବ୍ବୋ | ସବୁ |
| ଜୋ | ଯେ |

| ପ୍ରାକୃତ | ଓଡ଼ିଆ |
|---|---|
| ସୋ | ସେ |
| ତୁମଂ | ତୁମେ |
| ତୁହ, ତୁଂ | ତୁହି, ତୁ |
| ତୁହ୍ମେ | ତୁମ୍ଭେ |
| ଅହ୍ମେ | ଆମ୍ଭେ |
| ତା | ତା, ତାହା |
| ମି | ମୁ |

| ଅପଭ୍ରଂଶ | ଓଡ଼ିଆ |
|---|---|
| କାବ | କବ |
| ତା | ତାହା |
| କବଣ | କଅଣ, କେବଣ ଏବଂ କେହ୍ଣ |

ଏଥିରେ 'ଚିତ୍' ପ୍ରତ୍ୟୟ ଯୋଗ ହେତୁ 'କୌଣସି' ହୋଇଅଛି ।

ଏହି, ଏକ୍ଷ, ଏହା ପ୍ରଭୃତି ଶୌରସେନୀ ପ୍ରାକୃତରୁ ଆଗତ । 'ପ୍ରାକୃତେ ବିଭକ୍ତି-ବ୍ୟବହାରସ୍ୟ ନିୟମୋ ନାସ୍ତି' ଅର୍ଥାତ୍ କେଉଁଠି ପ୍ରଥମାରେ ଦ୍ୱିତୀୟା,ପଞ୍ଚମୀର ତୃତୀୟା ଏବଂ ସପ୍ତମୀର ଦ୍ୱିତୀୟା ହୋଇଥାଏ । ଅମ୍ଭମାନଙ୍କ ଭାଷାରେ ଏହି ତଥା ଅନୁସରଣ କଲେ ସର୍ବନାମ ପଦଗୁଡିକର ମୌଳିକତା ସୁସ୍ପଷ୍ଟ ଜଣା ପଡ଼େ ।

ଅବ୍ୟୟ ।

| ପ୍ରାକୃତ | ଓଡ଼ିଆ |
|---|---|
| ପୁଣୁ | ପୁଣି |
| ପଚ୍ଛଇ | ପଛେ |
| ରେ, ଅରେ, ହରେ | ରେ,ଅରେ ହଇରେ |
| ଉ | ଉ |
| କଇ | କରେ |
| ହଂହ | ହଂ (ନିଶ୍ଚୟ) |
| ଛଂ | ଛ |
| ଅପ୍ପା-ସ | ଆପେ |
| ଵ | ଵ |
| ମାତ୍ତିଛଂ | ମାତ୍ର |

| ଅପଭ୍ରଂଶ | ଓଡ଼ିଆ |
|---|---|
| କେମ | କଅଁମ |
| ଇହିଁ | ତାହୁଁ |
| ନାହିଁ | ନାହିଁ |
| ପ୍ରାଇ | ପର |
| ପର | ପରେ |
| ଵଣୁ | ବନ୍, ଇତ୍ୟାଦି |

କ୍ରମଶଃ

ଶ୍ରୀ ମୃତ୍ୟୁଞ୍ଜୟ ରଥ ।

---

## ପତ୍ର ।



ଝାଡ଼ସୁଗୁଡ଼ା
ବସନ୍ତପୂର୍ଣ୍ଣିମା

ପ୍ରିୟ ସ୍ୱାମୀ ସାହେବ,

ଦୁଇଦିନ ତଳେ ଚଟକରେ ଦେଖିଥିଲ, ଅଜର ଠିକଣା ଦେଖି ଚମକ ପଡ଼ିବ ନାହିଁ, ରେଳ ପ୍ରସାଦରୁ ମାସକ ବାଟ ଦକ୍ଷିଣରେ ଉଡ଼ି ଆସିଛି, ତୃତୀୟାର ମନ୍ଦପବନ ଘୋଡ଼ା ଏହାକୁ ଲାଗେ ନାହିଁ । ଏ ସ୍ଥାନଟି ମଧ୍ୟପ୍ରଦେଶର ଅନ୍ତର୍ଗତ ହେଲେହେଁ ମଧ୍ୟପ୍ରଦେଶ, ଖାସ ନାଗପୁର ଓ ଓଡ଼ିଶାର ତିନି ମହଲର ସନ୍ଧିସ୍ଥଳରେ ସ୍ଥିତ । ଏହା ଏକ ଅତି କ୍ଷୁଦ୍ର ବାଣିଜ୍ୟପ୍ରଧାନ ସ୍ଥାନ, ପ୍ରୟୋଜନୀୟ ଜିନିଷପତ୍ର ମିଳେ । ଏଠାରୁ ସମ୍ବଲପୁରକୁ ଶାଖାରେଳ ଯାଇଅଛି, ଏହିବାଟେ ନାଗପୁର ଓ ବୋମ୍ବାଇ ଯିବାକୁ ହୁଏ । ଏଠାରେ

ସଲବ୍ରଦର ତୋପଖାନାର ଉଲସଫାଇ କାରଖାନା, ଅବୈତନିକ ମେଜିଷ୍ଟ୍ରର କଚେରୀ, ତାରଅଫିସ, ଡାକଘର ପ୍ରଭୃତି ସଭ୍ୟତାନୁମୋଦିତ ପ୍ରାୟ ସମସ୍ତ କାର୍ଯ୍ୟାଳୟ ଅଛି, ସବୁ ଜାତିର ଲୋକେ ଅଛନ୍ତି, ବାଟ ଘାଟ ଧୂଳିମୟ ହେଲେହେଁ ଘନବସତି ନ ଥିବାରୁ ଗୃହଆଡ଼େ ବିଲ, ବାଡ଼, ପଦା ଥିବାରୁ ବାୟୁ ନିର୍ମଳ, ଜଳର ଅଭାବ ନାହିଁ, ମୋଟରେ ସ୍ଥାନଟି ଶୁଷ୍କ ଓ ସ୍ୱାସ୍ଥ୍ୟକର ।

ରଥ ଦେଖିବା କଦଳ ବିକିବା ନ୍ୟାୟରେ ମୋହର ଦେଶଭ୍ରମଣଟା ହୋଇଗଲା । ଓଡ଼ିଶା କରଦମହାଲର ଅନ୍ତର୍ଗତ ନରସିଂହପୁରର ଶ୍ରୀ ରାଜା ସାହେବଙ୍କ ସହିତ ଛୋଟନାଗପୁର ଫିଉଡେ-ଟର ଚିଫ ଶ୍ରୀ ଗାଙ୍ଗପୁର ରାଜାସାହେବଙ୍କ କନିଷ୍ଠା ଜେମାଙ୍କ ଶୁଭ ପରିଣୟ ଉପଲକ୍ଷରେ ଏଆଡ଼େ ବାହାର ଆସିଲି । ଫିଉଡେଟରି ଓ ଟ୍ରିବୁଟରି ମଧ୍ୟରେ ପ୍ରଭେଦ କଣ, ତାହା ଆଜି ଲେଖିବାର ଆବଶ୍ୟକ ନାହିଁ । ସାମନ୍ତ ହାସେ, ଅଗ୍ର୍ଯ୍ୟ ହାବେଲି ଶାସ୍ତ୍ରସିନ୍ଧୁ ମନ୍ଥନ କରି ତାହା ପଦାରେ ପକାଇ ଦେଉଅଛନ୍ତି । ହିନ୍ଦୁ ପ୍ରଧାନ ସମସ୍ତ ସ୍ଥାନ-ପରି ଓଡ଼ିଶାରେ ଜାତିଭେଦ ଅସ୍ଥିମଜ୍ଜାଗତ, ଆଦାନପ୍ରଦାନ-ସୀମା ଅତି ସଂକୀର୍ଣ୍ଣ, କିନ୍ତୁ ଓଡ଼ିଶାର ରାଜାମାନେ ଦାୟରେ ପଡ଼ି ଏ ବିଷୟରେ ଉଦାର । ଓଡ଼ିଶାର ବ୍ରାହ୍ମଣମାନଙ୍କର ବୈବାହିକ ବେଢ଼ ଅତି ସଂକୀର୍ଣ୍ଣ, କାଳପ୍ରଭାବରେ ଏହା ଟିକିଏ ପ୍ରସାରିତ ହେଉଅଛି । ତାହାହେଲେ ସୁଦ୍ଧା ପୁରୀ ଅଞ୍ଚଳରେ ବ୍ରାହ୍ମଣମାନେ ନିତାନ୍ତ ଦାୟରେ ନ ପଡ଼ିଲେ ବା ଭଲରୂପେ ଦୁଇ ପଇସା ଲାଭର ଆଶା ନ ଥିଲେ, କଟକ ଅଞ୍ଚଳରେ ଆଦାନପ୍ରଦାନ କରିବେ ନାହିଁ, ପୁଣି କଟକଜିଲ୍ଲାର ମହାନଦୀର ଦକ୍ଷିଣଭାଗର ବ୍ରାହ୍ମଣ-ମାନେ ଉତ୍ତରଭାଗରେ ବନ୍ଧୁ ବାନ୍ଧିବାକୁ ଊଣା ମନେ କରନ୍ତି । ଯାଜପୁର ସହିତ କଟକର ଯୌନ ସମ୍ବନ୍ଧ ନାହିଁ କହିଲେ ହେଲା, ଏବେ ଧରିବନ୍ଧା ନ ଥିଲେହେଁ କରଣମାନେ ମଧ୍ୟ ଏଥିରୁ ଛାଡ଼ ନୁହନ୍ତି । କେବଳ ରାଜାମାନେ ବେଶି ଖୋଜା-ଖୋଜି କରନ୍ତି ନାହିଁ, ରାଜବଂଶୀୟ ଓ ଓଡ଼ିଆ ହେଲେ ହେଲା; ଓଡ଼ିଶାର ଅଧିକାଂଶ ରାଜା ଗଞ୍ଜାମ ସହିତ ବହୁକାଳରୁ ବନ୍ଧୁ ବାନ୍ଧୁଥିଲେ । ଭିନ୍ନ ଭିନ୍ନ ଶାସନାଧୀନ ହେଲେହେଁ ଓଡ଼ିଶା ଓ ଗଞ୍ଜାମର ଆଚାର ବ୍ୟବହାର ପ୍ରାୟ ଏକ, କ୍ରିୟା କର୍ମରେ ଓଡ଼ିଶାରେ ଗଞ୍ଜାମ ବହରମପୁର ଦକ୍ଷିଣୀ ଲୁଗା ବିଶେଷଭାବରେ ପ୍ରଚଳିତ; ରାଜ ପରିବାର-ମାନଙ୍କରେ ଦକ୍ଷିଣୀ ବେଶଭୂଷା ବେଶି ଆଦୃତ; ଆମୋଦ ପ୍ରମୋଦରେ ଦକ୍ଷିଣୀ ନାଟର ବେଶି ବାହାର । ଏଣିକି ମଧ୍ୟପ୍ରଦେଶ ଓ ଛୋଟନାଗପୁର ସହିତ ଓଡ଼ିଶାର ସମ୍ପର୍କ କ୍ରମଶଃ ବଢ଼ୁଛି, ଏପରି ବ୍ୟାପକ ଯୌନସମ୍ବନ୍ଧ ଓଡ଼ିଶାର କୌଣସି ସମ୍ପ୍ରଦାୟରେ ନାହିଁ । ମତଭେଦ ଥିଲେହେଁ ଓଡ଼ିଶାର ଗଡ଼ଜାତ ଓ କିଲ୍ଲାଜାତ ରାଜାମାନେ ଆପଣାକୁ କ୍ଷତ୍ରିୟ ବୋଲି ପରିଚୟ ଦିଅନ୍ତି । ଜଣେ ଭଦ୍ରବ୍ୟକ୍ତି ନୂଆଗଡ଼ର ସ୍ୱନାମଖ୍ୟାତ ରାଜା ସ୍ୱର୍ଗୀୟ ଲଡୁକେଶ୍ୱର ମାନଧାତାଙ୍କୁ ତାଙ୍କ ଜାତିକଥା ପଚାରିଥିଲେ, ରହସ୍ୟପ୍ରିୟ ରାଜା ମହୋଦୟ ତତ୍‌କ୍ଷଣାତ୍ ଉତ୍ତର ଦେଲେ, ଆମ୍ଭ ଜାତି 'ଛଡ଼କାହାଳ' ଅର୍ଥାତ୍ ଯେ ରାଜା ତାଙ୍କର ଛଡ଼କାହାଳ ଅଛି, ଯାହାର ଛଡ଼କାହାଳ ଅଛି, ତାହା ସହିତ ଆମ୍ଭେମାନେ ଆଦାନପ୍ରଦାନ କରିବାକୁ ପ୍ରସ୍ତୁତ, ଜାତି ଯେନ ବାରବର୍ଣ୍ଣର ନାହିଁ ।

ମୁଁ ଏହା ମଧ୍ୟରେ ମାନ୍ଦ୍ରାଜର ଗଞ୍ଜାମ, ବଙ୍ଗର ଛୋଟନାଗପୁର, ମଧ୍ୟପ୍ରଦେଶର ସମ୍ବଲପୁର ସବୁ ଛୁଇଁ ଆସିଛି । ଦେଶମିଶ୍ରଣ, ଦେଶବିଭାଗ ଆନ୍ଦୋଳନ ଅଲ୍ପବିସ୍ତର ସର୍ବତ୍ର ଲାଗିଛି; କିନ୍ତୁ ଗଞ୍ଜାମ ଓ କଟକରେ ସବୁଠାରୁ ବେଶି, ସାମନ୍ତେ ଠିକ କହନ୍ତି ପ୍ରାକୃତିକ ଓଡ଼ିଶାର ଗଞ୍ଜାମ ମସ୍ତକ, କଟକ ହୃଦୟ । ସମଗ୍ର 'ଓଡ଼ିଆଭାଷୀ ପ୍ରଦେଶ ଏକ ହୋଇ ବଙ୍ଗର ଅନ୍ତର୍ଗତ ହେଉ' ଏହାହିଁ ଓଡ଼ିଆଙ୍କର ଇଚ୍ଛା, ଏହା ସ୍ୱାଭାବିକ ମତ,

ଯାହା ସ୍ୱାଭାବିକ ତାହା ଦୃଢ଼ । ଜୀବନସଂଗ୍ରାମ ଦଶ ଭାଇଙ୍କୁ ଦଶ ଆଡ଼କୁ ଜୀବିକା ଅନ୍ୱେଷଣରେ ପଠାଉଅଛି, କିନ୍ତୁ ସମସ୍ତେ ଏକ କୁଡ଼ିଆରେ ଏକ ଚୁଲିତଳେ ପଡ଼ି ରହିଲେ ଯେଉଁ ସୁଖଶାନ୍ତି ପାଆନ୍ତି, ତାହା ରାଜପ୍ରାସାଦରେ ରହିଲେ ପାଇବେ କି ? ମା ବାପଙ୍କର ଇଚ୍ଛା ସବୁ ପୁଏ ଏକାଠି ରହନ୍ତୁ; ରାଜା ମାବାପ, ତାଙ୍କର ସବୁପୁଅଙ୍କୁ ଏକାଠି ରଖିବାର ଇଚ୍ଛା ପ୍ରବଳ ହୋଇଅଛି । 'ସମସ୍ତ ଓଡ଼ିଆଭାଷୀ ପ୍ରଦେଶ ଏକ ହୋଇ ବଙ୍ଗର ଅନ୍ତର୍ଗତ ହେଉ' ଏହାହିଁ ଓଡ଼ିଆଙ୍କର ସରଳ ସହଜ ମତ, ପବନର ତାଡ଼ନାରେ ଦୋଲୁଥାନ୍ତି ଏକୂଳ ସେକୂଳକୁ ଅଡ଼ିକି ଗଲାପରି, କେହି କେହି ସ୍ୱାର୍ଥପରଙ୍କ ଯୁକ୍ତିତର୍କ-ତାଡ଼ନାରେ ଏଣେ ତେଣେ କେବଳ ଅଡ଼ିକି ଯାଉଛନ୍ତି ! ଦୁର୍ବଳତା ନ ଥିଲେ, ଦୃଢ଼ତା ଥିଲେ ଭିନ୍ନ ମତ ହୁଅନ୍ତା ନାହିଁ । ଯେ ଯାହା କହନ୍ତୁ, ପବନର ତାଡ଼ନାରେ ପଦ୍ମ ଇତସ୍ତତଃ ହେଲେହେଁ, ତାହାର ଗଛଡ଼ବାମାନଙ୍କେ ସ୍ୱସ୍ଥାନରେ ରହେ; ବିଭିନ୍ନ ମତର ଘାତପ୍ରତିଘାତ ଚାଲିଗଲେ 'ସମସ୍ତ ଓଡ଼ିଆଭାଷୀ ପ୍ରଦେଶ ଏକ ହୋଇ ବଙ୍ଗର ଅନ୍ତର୍ଭୁକ୍ତ ହେଉ' ଏହି ମତହିଁ ପ୍ରବଳ ରହିବ । ଦେଶମିଶ୍ରଣ ନ ହେଲେ ଭାଷାର ଉନ୍ନତି ଅସମ୍ଭବ; ଏକଛତ୍ରର ଅଧୀନ ନ ହେଲେ ଏକଭାବ ହୋଇ ପାରିବ ନାହିଁ, ଭାବମିଳନର ସୁବିଧା ହେବ ନାହିଁ । ଭାବ ଯେମିତି ସେମିତି ଭାଷା, ପ୍ରାକୃତ ଓଡ଼ିଆର ଭିନ୍ନ ଭିନ୍ନ ସ୍ଥାନର ଭାଷା ଭିନ୍ନ ଭିନ୍ନ ପ୍ରକାର, ଯେଉଁଠାରେ ଯାହାର ଆଧିପତ୍ୟ ବେଶି, ସେଠାରେ ତାହାର ରୂପ ବେଶି ଅନୁଭୂତ । ଏକ ନଦୀର ପାଣି ଖଣ୍ଡ ଖଣ୍ଡ ହୋଇ ବନ୍ଧା ହୋଇ ଠାଏ ନିର୍ମଳ, ଠାଏ ଗୋଳିଆ, ଠାଏ ହାହୁଆ, ଠାଏ ଗନ୍ଧିଆ ହୋଇଅଛି । ବାଧା ନ ଥିଲେ ସବୁ ଏକ ହୋଇଥାନ୍ତା । ପଙ୍କ ଯେତେ ଥାଉ ପଛକେ ବଡ଼ ପୋଖରୀର ପାଣି ନିର୍ମଳ, ଶୀତଳ । ଭାଇ ଭାଇର କଥା ବୁଝି ପାରିବ ନାହିଁ, ସ୍ୱାମୀ ସ୍ତ୍ରୀର କଥା ବୁଝି ପାରିବ ନାହିଁ, ଏହାଠାରୁ ବଳି ଅଉ ବିଡ଼ମ୍ବନା କଣ ? ମୁଁ ଜଣେ ଖାଣ୍ଟି ଓଡ଼ିଆ, ମୋପକ୍ଷରେ ଛୋଟନାଗପୁରର ସାଧାରଣ ବ୍ୟବହୃତ ଭାଷା ନିତାନ୍ତ ଦୁର୍ବୋଧ । ଅନ୍ୟର ମଜା ଦେଖନ୍ତୁ, ସେମାନେ କଟକ, ପୁରୀ, ଗଡ଼ଜାତ ଅଞ୍ଚଳର କଥିତ ଭାଷା ବୁଝି ନ ପାରି କହିଲେ, ଏମାନେ କଣ କହି, ଏହାଙ୍କ କଥା କିଛି ବୁଝି ହେଉ ନାହିଁ, କି ଏମାନେ ଆମ୍ଭ କଥା ବୁଝି ପାରୁ ନାହାନ୍ତି । ରାଜପରିବାରଙ୍କ କଥିତ ଭାଷା ଅନେକାଂଶରେ ଦୋଷବର୍ଜିତ, ଲିଖିତ ଭାଷା ସଂସ୍କୃତବହୁଳ, ମୋଟରେ ରାଜପରିବାରରେ ବ୍ୟବହୃତ ଭାଷା ଓଡ଼ିଶାର ଓଡ଼ିଆ ଓ ଛୋଟ-ନାଗପୁରର ଓଡ଼ିଆର ମଝିମଝିଆ; ରାଜପରିବାରଙ୍କ ଲିଖିତ ଭାଷା, ଦେଶପ୍ରଚଳିତ ସାଧାରଣ ଭାଷା ଓ ଶବ୍ଦର ନମୁନା ଦେଲି, ଏଥିରୁ ବୁଝିବ କଥାଟା କଣ ! ରାଜା ଓଡ଼ିଆ, ପ୍ରଜା ଓଡ଼ିଆ; କିନ୍ତୁ ଅଦାଲତର ଭାଷା ହିନ୍ଦି, ଅକ୍ଷର କାଏଥି; ପୁଣି ବଙ୍ଗର ଅନ୍ତର୍ଗତ ଓ ନିକଟସ୍ଥ ହୋଇ ଭାଷାଟି ଓଡ଼ିଆ, ହିନ୍ଦି, ବେହାରୀ ଓ ବଙ୍ଗଳାର ପାଞ୍ଚ ତରକାରୀ ! ପାଞ୍ଚ ତରକାରୀ ଭଲ ସିଝିଲେ ସୁଆଦ ଲାଗେ, କିନ୍ତୁ ଏ ପାଞ୍ଚ ତରକାରୀ ଦରସିଝା, ଖଣ୍ଡ-ଖଣ୍ଡିଆ, ଦୁଷ୍ପାଚ୍ୟ, ଅଜୀର୍ଣ୍ଣକର ଓ ରୋଗମୂଳକ । ଭାତହାଣ୍ଡିରୁ ଗୋଟାଏ ଚିପିଲେ ହେଲା—ଛୋଟ-ନାଗପୁରର ରାଜକୀୟ ଲିଖିତ ଭାଷା ସାଧାରଣତଃ ଏହିପରି—'ଅତ୍ରସ୍ଥଳେ ଅସ୍ମଦାଦିଙ୍କ ଶ୍ରୀଅଙ୍ଗର ସମସ୍ତ କୁଶଳ ମଙ୍ଗଳରେ ସର୍ବତୋଭାବେ ବିଦ୍ୟମାନ ରହିଅଛି, ତତ୍ରସ୍ଥ ଭବଦାଦିଙ୍କ କୁଶଳ-ମଙ୍ଗଳ ପତ୍ରାଙ୍କିତଦ୍ୱାରା ଲେଖିବା ହେଉଥିବେ । ଅତଃପର ବୃତ୍ତାନ୍ତ ଏମନ୍ତ ଯେ, ବର୍ତ୍ତମାନ ଲେଖିବାର ଅଭିମତ ଏହି ଯେ ଅମ୍ଭ ପୂର୍ବ ପତ୍ରର ସିଦ୍ଧାନ୍ତ ଉତ୍ତର ପଠାଇବା ହେବେ ।'

ସାଧାରଣ ଭାଷା ବୁଝିବା କଷ୍ଟ, ଯାହା ବୁଝିଲି, ସେଥିରୁ ଯାହା ,ପଦେ ଅଧେ ମନେ ରହିଲା, ତାହାର ନମୁନା ମାତ୍ର ଦେଲି ।

ଆଗଲି ଘାସ୍ତୁ, ପଛଲି ଘାସ୍ତୁ=ଆଗରେ ଥରେ, ପଛରେ ଥରେ

ଚଟି ମାରି ମାରି କରି ଅଣିଲେ=ଗୋଟାଏ ଗୋଟାଏ ଚଟି ହୋଇଁ, ଅର୍ଥାତ୍ ସବୁ ଚଟିରେ ନ ରହି ଅଣିଲେ ।

ଘଉଁ=ଗଲୁ ।

ଘସିଆମାନଙ୍କୁ ପଗ୍ଗରି ପଚାରୁ=ଘାସିମାନଙ୍କୁ ପଚାରନ୍ତୁ

ହେଲେ ଚଲାମୁ=କହଲା ମୁଁ ଯିବ ।

କେହି ବୋହୁଛୁ=ବୋହୂ କାହିଁ ।

ଛକ ଦେବାକୁ ପାଣି=ପାଣି ଛପି ଦଅ ।

କେହି ଖରମ୍ ପଚର=ପଣ ଛୁଣ୍ଡାଇବ କି କାହିଁ ।

ଗୃହୁଛୁ=ଗେହାଉଛୁ

ପାଣ ପୁନା ଖାଉଛୁ=ପାନ ଖାଉଛୁ ।

କୁଦକୁଦ ଥ=ଦୌଡ଼ ଥ

ଯୁଇ=ନିଆଁ

ତଗ=ପାଖ

ମୁଣ୍ଡା=ପୋଖରୀ

ଡବା=ହାଣ୍ଡି । ଇତ୍ୟାଦି

ଗାଙ୍ଗପୁର ରାଜ୍ୟଟି ଅଢେଇ ହଜାର ବର୍ଗମାଇଲ, ରାଜ୍ୟର ନାନା ତତ୍ତ୍ୱ ସଂଗ୍ରହ କରିବାକୁ ମନ ବଳାଇଥିଲି, କିନ୍ତୁ ଶ୍ରୀଯୁକ୍ତ ସାମନ୍ତରାୟ ସାହେବ ପୂର୍ବରୁ ତାହା ସଂଗ୍ରହ କରି ଭ୍ରମ କାଗଜରେ ଛପାଇ ଦେଇଥିବାରୁ ବାମନ ହୋଇ ଚନ୍ଦ୍ର ଧରିବା ପ୍ରୟାସରୁ କ୍ଷାନ୍ତ ହେଲି । ଯେଉଁ ଅଦ୍ରେଃ ଶୃଙ୍ଗ ବିସ୍ତୀର୍ଣ୍ଣ, ଏପରି କି ଦିଗ୍‌ବଳୟବ୍ୟାପୀ ପ୍ରାନ୍ତର, ଜନବସତି ଅତି ବିରଳ । ରାଜ୍ୟର ଜମାବନ୍ଦି ବନ୍ଦୋବସ୍ତ ଏପର୍ଯ୍ୟନ୍ତ ହୋଇ ନାହିଁ, ହେବାର ଚେଷ୍ଟା ହେଉଅଛି, ଗଭର୍ଣ୍ଣମେଣ୍ଟଙ୍କ ସହିତ ଚିଠି ପତ୍ର ଚଳୁଅଛି । ବେଠି ଓ ମାଗଣ ପ୍ରଥା ବହୁଳ ପ୍ରଚଳିତ । ଇବ ନଦୀ କୂଳରେ ସୁଅଡ଼ିହ ବା ସୁନ୍ଦରଗଡ଼ନାମକ ସ୍ଥାନରେ ବର୍ତ୍ତମାନ ରାଜନଗର ଅବସ୍ଥିତ, ପୂର୍ବରେ ଏଠାରେ ନ ଥିଲା, ହୋଇଏ ପଚିଶ ବର୍ଷ ହେଲା ରାଜପରିବାର ପୂର୍ବସ୍ଥାନ ତ୍ୟାଗ କରି ଏଠାକୁ ଆସିଅଛନ୍ତି । ଇବ ସମ୍ବଲପୁର ନିକଟରେ ମହାନଦୀରେ ମିଶିଛି, ଏହା ଶଯ୍ୟାରେ ହୀରା ଓ ସ୍ୱର୍ଣ୍ଣରେଣୁ ମିଳେ, ଜଣେ ସାହେବ ଗାଙ୍ଗପୁର ଇଲାକାର ଇବରୁ ସ୍ୱର୍ଣ୍ଣରେଣୁ ସଂଗ୍ରହ କରିବାପାଇଁ ପରୀକ୍ଷାସ୍ୱରୂପ ଦୁଇ ବର୍ଷ ନିମିତ୍ତ ଇଜାରା ପାଇଅଛନ୍ତି, ସଫଳକାମ ହେଲେ ଅବଶ୍ୟ ଚିରସ୍ଥାୟୀ ବନ୍ଦୋବସ୍ତ କରି ନେବେ, ଇବ ଗୃହ ଯିବ, ଘୋଳଟା ରହି ଯିବ । ଶୁଣିଲି, ପ୍ରତିବେଶୀ ଯଶପୁର ରାଜା ଏହି ସ୍ୱର୍ଣ୍ଣରେଣୁ ସଂଗ୍ରହରୁ ବାର୍ଷିକ ପାଞ୍ଚଶ ଟଙ୍କା ମାସୁଲ ପାନ୍ତି । ରାଜ୍ୟରେ ଅଭ୍ର, ପଥରଚୂନ, କୋଇଲା ଓ ଲୁହା ଅଛି । ଲୁହାର କାରବାର ସାମାନ୍ୟରେ ଚଳେ; ଅନ୍ୟାନ୍ୟ ରତ୍ନରାଜି ରତ୍ନଗର୍ଭାଙ୍କ ଗର୍ଭରେ ନିହିତ । ଏକ ସାହେବ କମ୍ପାନୀ ପଥର ଚୂନର ଇଜାରା ନେଇଛନ୍ତି । ଭଲ ପଟ୍ଟାପଥର ମିଳେ । କାଠ କାରବାର ରାଜା ସାହେବଙ୍କର ଏକଚେଟିଆ, ତାହାଦ୍ୱାରା ପଣେ ଭଲ ଲାଭ ହୁଏ । ଇବର ଜଳ ସ୍ୱାସ୍ଥ୍ୟକର, ମୋଟରେ ଛୋଟନାଗପୁର ଜଳବାୟୁ ସ୍ୱାସ୍ଥ୍ୟକର, ବିଦେଶୀ ଅଧିବାସିମାନେ କହନ୍ତି, ଗାଙ୍ଗପୁରରେ ରହି ସେମାନେ ଆଧିବ୍ୟାଧିରୁ ତ୍ରାହି ପାଇଅଛନ୍ତି, ମ୍ୟାଲେରିୟାପ୍ରପୀଡ଼ିତ ଲୋକେ ଏଠାରେ ରହି ସୁସ୍ଥକାୟ ହୁଅନ୍ତି, ଖାଦ୍ୟଦ୍ରବ୍ୟ ସୁଲଭ, ଭଲ ଚାଉଳ ମିଳେ, ବିଲାତି ବାଇଗଣ ପ୍ରଚୁର, ଘିଅ ଦୁଧ ମଧ୍ୟ ଶସ୍ତା । ଲୋକେ କେବଳ ଧାନ ବୁଣି ଦେବା କାଟି ନେବା ଜାଣନ୍ତି, ଭୂମିର ଉତ୍କର୍ଷ ସାଧନ ଓ କୃଷିପ୍ରଣାଳୀ ସମ୍ପୂର୍ଣ୍ଣ ଅଜଣା, କୃଷିର ଉନ୍ନତି ହେଲେ ଏହା ଶସ୍ୟଶ୍ୟାମଳା ଓ ରତ୍ନପ୍ରସବିନୀ ହେବ । ସାଧାରଣ ଲୋକେ କୃଷ୍ଣକାୟ, ବଳିଷ୍ଠ, ହୃଷ୍ଟପୁଷ୍ଟ; ଦାର୍ଜିଲିଂର ଲୋକେ ବୋଝ ମୁଣ୍ଡାଇବାରେ ଯେପରି ଶ୍ରେଷ୍ଠ, ଏମାନେ ଭାର ବୋହିବାରେ ସେହିପରି ଶ୍ରେଷ୍ଠ ।

ଶ୍ରୀଯୁକ୍ତ ରାଜା ସାହେବ ବନପ୍ତୀ, ବପପ୍ତୀ, ବୁଦ୍ଧିମାନ୍, ଟାଣୁଆ, କର୍ମଣିଆ; ନବ ବୟସରେ ମଧ୍ୟ

ଅଶ୍ୱାରୋହଣପଟୁ । ଶ୍ରୀମାନ୍ ଯୁବରାଜ ଟିକାଏତ ସାହେବ ପରିଶ୍ରମୀ, ମେଧାବୀ, ଶାନ୍ତ, ଶିଷ୍ଟ ଓ ଧର୍ମଭୀରୁ; ଆଶା ହୁଏ, ଭବିଷ୍ୟତରେ ଜଣେ ଆଦର୍ଶ ନରପତି ହେବେ । ପିତା ପୁତ୍ରଙ୍କର ପ୍ରୀତି ଅତି ସୁନ୍ଦର, ଯେଉଁ ରାଜଗୃହମାନଙ୍କରେ ବର୍ଷକରେ ଦିନେ ପିତା ପୁତ୍ରଙ୍କର ସାକ୍ଷାତ ଅସମ୍ଭବ, ଯେଉଁ ରାଜଗୃହରେ ପିତାପୁତ୍ରଙ୍କର ପବିତ୍ର ସମ୍ବନ୍ଧ ଶତ୍ରୁତାରେ ପର୍ଯ୍ୟବସିତ, ସେହି ରାଜ-ଗୃହରେ ସମସ୍ତ ରାଜକାର୍ଯ୍ୟ ଓ ଗାର୍ହସ୍ଥ୍ୟ କର୍ମ ପିତା ପୁତ୍ର ପରାମର୍ଶ କରି କରିବା, କେହି କାହାର ମତକୁ ଉପେକ୍ଷା ନ କରିବା ଅତି ସୁନ୍ଦର ନୁହେ କି ? ରାଜଦ୍ୱାର ଅବାରିତ, ମାତ୍ର ରାଜଦର୍ଶନ ଦୁର୍ଲ୍ଲଭ ବୋଧ ହେଲା ।

ଶ୍ରୀଯୁକ୍ତ କ୍ରାଭେନ ସାହେବ ଏ ଷ୍ଟେଟର ମ୍ୟାନେଜର, ଏ ପୂର୍ବେ ରାଜ୍ୟର ଡେପୁଟୀମାଜିଷ୍ଟ୍ରେଟ ଥିଲେ । କଟକର ପଟାମୁଣ୍ଡେଇର ଜଣେ ଗହିଡ଼ ତିରିଶ ବତିଶ ବର୍ଷ କାଳ ଏ ରାଜ୍ୟର କର୍ଣ୍ଣଧାର ଥିଲା; ତାହା ପରେ ପାଞ୍ଚ ଛ ଜଣ ଦେୱାନ ସ୍ୱଳ୍ପକାଳ ରହି ଯିବା ପରେ, ଶ୍ରୀ·ରାଜା ସାହେବଙ୍କ ଅନୁରୋଧରେ ଗଭର୍ଣ୍ଣମେଣ୍ଟ ଏହାଙ୍କୁ ଏଠାକୁ ପଠାଇ ଅଛନ୍ତି । ସଦାଶୟ ବୋଲି ଏହାଙ୍କର ଖ୍ୟାତି ଅଛି । ଏ କେବଳ ଫୌଜଦାରୀ ଓ ଦେୱାନୀ ବିଭାଗର କାର୍ଯ୍ୟ ନିର୍ବାହ କରନ୍ତି, ରାଜସ୍ୱସଂକ୍ରାନ୍ତ ରାଜାଙ୍କ ହାତରେ, ଟିକାଏତ ସାହେବ ପ୍ରକୃତର କର୍ତ୍ତା ।

ସମ୍ବଲପୁରର ବାବୁ ରାସବିହାରୀ ବହିଦାର ପ୍ରାଇଭେଟ ସେକ୍ରେଟରୀ, ତାଙ୍କ ପଦ ଦେୱାନ । ରାସବିହାରୀ ବାବୁ ବୁଦ୍ଧିମାନ୍ ଯୁବକ, ରାଜାଙ୍କ ବିନା ପରାମର୍ଶରେ କିଛି କରନ୍ତି ନାହିଁ । ସାଂସାରିକ କାର୍ଯ୍ୟର ପର୍ଯ୍ୟବେକ୍ଷଣ ପ୍ରଧାନ କାର୍ଯ୍ୟ ହେଲେହେଁ ରାଜ୍ୟର ମଙ୍ଗଳ ପ୍ରତି ସର୍ବଦା ଦୃଷ୍ଟି ଥାଏ ।

ଡାକ୍ତର ବାବୁ ଚୈତନ୍ୟପ୍ରସାଦ ଦେଙ୍କ ଘର ଭଦ୍ରକରେ, ଏଠାରେ ଦଶ ଏଗାର ବର୍ଷ ହେଲା ଅଛନ୍ତି । ଅଗନ୍ତୁକମାନଙ୍କର ପ୍ରଧାନ କାହିଁକ ଏକମାତ୍ର ସହାୟ, କୃଷିକାର୍ଯ୍ୟ ଓ ଗୋପାଳନ ପ୍ରତି ଏହାଙ୍କର ବିଶେଷ ଆସ୍ଥା ଦେଖା ଗଲା; ଏହାଙ୍କ ବଗିଚାର ବନ୍ଧାକୋବି ଓ ମଟର ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଅଛୁ । ସାଧାରଣ ମଟର ମଞ୍ଜିରୁ କ୍ରମୋନ୍ନତିଦ୍ୱାରା ୫ ବର୍ଷରେ ଭୂଇଁ ବରହୋଲ ପରି ବଡ଼ ବଡ଼ ମଟରଦାନା ଉତ୍ପାଦନ କରୁଅଛନ୍ତି । ଏହାଙ୍କ ସଦୟ ବ୍ୟବହାର ଓ ସାହାଯ୍ୟ ଭୁଲି ହେବ ନାହିଁ ।

ଏ ଅଞ୍ଚଳରେ ବୈବାହିକ ବିଧିରେ ଅନେକ ବିଶେଷତ୍ୱ ଅଛି, ଲଗ୍ନକୁ କେବଳ ମାନନ୍ତି, ଅନ୍ୟ ଗଣା ପୋଛା କିଛି ନାହିଁ । ପାନଛଟା ( ନିର୍ବନ୍ଧ ) ଦିନଠାରୁ ବିବାହର କର୍ମକାଣ୍ଡ ଆରମ୍ଭ ହୁଏ । ପାନଛଟା ବିଧି ବିଶେଷ ସମାରୋହରେ ନିର୍ବାହିତ ହୁଏ, ବିବାହ ଦିନକୁ କେବଳ ଲବଣଗ୍ରମଣୀ ଓ ହାତଗଣ୍ଠି ବାକି ଥାଏ । "ସସ୍ତ୍ରୀକୋ ଧର୍ମ-ମାଚରେତ୍" ପ୍ରକୃତରେ ଏଠାରେ ପ୍ରଚଳିତ, ଆମ୍ଭମାନଙ୍କ ଅଞ୍ଚଳରେ କନ୍ୟାପିତା କନ୍ୟା ଦାନ କରନ୍ତି, କନ୍ୟାମାତାଙ୍କର କର୍ତ୍ତବ୍ୟ ଅଳତା ସିନ୍ଦୂରରେ ଶେଷ ହୁଏ, ଏଣେ କନ୍ୟାପିତା କନ୍ୟାମାତା ଏକତ୍ର ହୋଇ କନ୍ୟା ଦାନ କରନ୍ତି ।

ଉଆସରେ ଗଣ୍ଡା ଗଣ୍ଡା ଦାସୀରକ୍ଷଣରୂପ ଓଡ଼ିଶାର କୁପ୍ରଥା ଏଣେ ନାହିଁ, ଏ କୁପ୍ରଥା ଓଡ଼ିଶାରୁ କେବେ ଯିବ, ଆଦୌ ଯିବ କି ନାହିଁ, ଭଗବାନଙ୍କୁ ଜଣା । ଏମାନଙ୍କ ଦଶା ବିରାଡ଼ି କୁକୁରଙ୍କ ଦଶାଠାରୁ ହୀନ, ଦଣ୍ଡବିଧି ଅଇନର ପ୍ରଭାବ ଏଠାରେ ଅପ୍ରତିହତ । ରାଜଦୃଷ୍ଟି କୌଣସି ଦାସୀ ଉପରେ ପଡ଼ିଲେ, ତାହାଦ୍ୱାରା ରାଜାଙ୍କର ନୈତିକ ଅବନତି ଘଟିଲେ, ତଦ୍ୱାରା ସେ ହିନ୍ଦମା ବା ଦେଇମା ପାଲଟିଲେ, ଅବସ୍ଥାର ପରିବର୍ତ୍ତନ ହୋଇଥାଏ । ସମୟ ସମୟରେ 'ଅଙ୍ଗୁଳ-ପ୍ରବେଶାତ୍ ବାହୁ ପ୍ରବେଶ' ହୋଇ ସାମାନ୍ୟ ଦାସୀ ଉଆସର, ଉଆସର କାହିଁକି ସମସ୍ତ ରାଜ୍ୟର, ହର୍ତ୍ତ୍ରୀ କର୍ତ୍ତ୍ରୀ ହୋଇ ଥାଏ ! ସହଧର୍ମିଣୀ ପାଟରାଣୀ ତାହାର ଦାସୀତ୍ୱ ସ୍ୱୀକାର କରିବା ଉଦାହରଣ

ସରଳ ନୁହେ । ଅଧୁନାତନ ଶିକ୍ଷିତ ରାଜାମାନଙ୍କଠାରୁ ଏହାର ନିରାକରଣ ଆଶା ଦୁରାଶା ମାତ୍ର । ସବୁଠାରେ ଛେ ରାମଚନ୍ଦ୍ରସମ ରାମଚନ୍ଦ୍ର ନାହାନ୍ତି ଯେ ଲୋକେ ନ୍ୟାୟରେ ଆଶା କରିବା । ସାଧାରଣ ଗୃହସ୍ଥ ଘରର ଚାକର ଚାକରାଣୀ ପରି ଏଠାରେ ଦାସ ଦାସୀ ଉତ୍ସବରେ କାର୍ଯ୍ୟ କରି ରାତକୁ ନିଜ ନିଜ ଘରକୁ ଯାନ୍ତି । ଏ ପ୍ରଥା ସର୍ବତ୍ର ଅନୁସୃତ ହେବା ବାଞ୍ଛନୀୟ ।

ଜାତିଭେଦ ବଡ଼ ଶିଥିଳ; ବ୍ରାହ୍ମଣ କ୍ଷତ୍ରିୟାଦି ଉଚ୍ଚ ବର୍ଣ୍ଣମାନେ ଜଳ-ଅସ୍ପର୍ଶ୍ୟ ଜାତିଙ୍କୁ ଅନାୟାସରେ ଛୁଅନ୍ତି, ଯେଉଁ ଧୋବା ଧୋବଣୀ ଆମ୍ଭମାନଙ୍କ ଦ୍ୱାର ଟପନ୍ତି ନାହିଁ, ସେମାନଙ୍କୁ ଉଚ୍ଚ ବର୍ଣ୍ଣ ସହିତ ଏକାସନରେ ପର୍ଯ୍ୟନ୍ତ ବସିବାର ଦେଖିଲି । ମେହେନ୍ତର ମେହେନ୍ତରାଣୀଙ୍କର ଅବାରିତ ଗତିବିଧି ମଧ୍ୟ ଦେଖାଗଲା । ଖାଦ୍ୟର ବାଛବିଚାର ମଧ୍ୟ ନାହିଁ. ଓଡ଼ିଶାର ଗଉଡ଼େ ପ୍ରକାଶ୍ୟରେ ମାଛ ଖାନ୍ତି ନାହିଁ, ଏ ଅଞ୍ଚଳର ଗଉଡ଼େ କୁକ୍କୁଟ ମାଂସ, ମଦ୍ୟ ଅନାୟାସରେ ବ୍ୟବହାର କରନ୍ତି । ମହୁଲି ମଦ ପ୍ରଚୁର ପରିମାଣରେ ବ୍ୟବହୃତ ହୁଏ, ଏଥିରୁ ବହୁପରିମାଣରେ ରାଜସ୍ୱ ଆଦାୟ ହୁଏ, ମହୁଲିଗଛ ଚାରିଆଡ଼େ, ଯେଉଁଆଡ଼େ ଚାହଁ ମହୁଲିଗୋଟା ।

ଯାନ ବାହନର ଦୁର୍ଦ୍ଦଶା କହିଲେ ନ ସରେ; ହାତୀଠାରୁ ଆରମ୍ଭ କରି ଗାଡ଼ି ପର୍ଯ୍ୟନ୍ତ ଯେଉଁ ବାହନ ଧର, ଦୁର୍ଦ୍ଦଶାର ଏକଶେଷ । ବରଂ ଗାଡ଼ି ଭଲ । ହାତୀ ଗଦିରେ ସୋଲ ପରିବର୍ତ୍ତେ ପାଳ ଭର୍ତ୍ତି ହୋଇଥାଏ, ଯେ ଚଢ଼ିଛି ସେ ତାହାର ମଜା ବୁଝିଛି । ପାଲିକି ମିଳେ ନାହିଁ, ଲୋକେ ପାଲିକି କାନ୍ଧେଇ ଜାଣନ୍ତି ନାହିଁ, କେହି ପାଲିକିରେ ଯାଉଥିବାର ଦେଖିଲେ ନ ହସି ରହି ହେବ ନାହିଁ; ସାଧାରଣ ଭାବରେ ପାଲିକି ନ କାନ୍ଧେଇ ପାଲିକିର ଦୁଇ ବାଉଁଶରେ ଦୁଇଟା ବାହୁଙ୍ଗୀ ବାନ୍ଧି ସାଙ୍ଗେ କରି ନେବାପରି ଚାରି ଜଣରେ ବହି ନିଅନ୍ତି । ଖଟିଆର ପ୍ରଚଳନ ଅଛି, ଶୋଇବା ଖଟିଆରେ ଦଉଡ଼ି ବାନ୍ଧି, ଦଉଡ଼ି ଉପରେ ଗୋଟାଏ ବାଉଁଶ ଭର୍ତ୍ତି କରି, ପୁଣି ସେ ବାଉଁଶରେ ବାହୁଙ୍ଗୀ ବାନ୍ଧି, ବୋହି ନେବା ସାଧାରଣ ପ୍ରଥା । ଗାଡ଼ିଗୁଡ଼ିକ ଏକବଳଦିଆ, ପ୍ରଶସ୍ତ, କିନ୍ତୁ ଲମ୍ବ ନାହାନ୍ତି ଛୋଟ, ଉପରେ ଛଲେଇ ବନ୍ଧା, ବର୍ଷାରୁ ରକ୍ଷା ପାଇବା କଷ୍ଟ, ଦୁଇ ପାଖ ମେଲା, ଭଡ଼ା ବେଶି ।

ଶୋଇବାପାଇଁ ପ୍ରାୟ ସମସ୍ତେ ଖଟିଆ ବ୍ୟବହାର କରନ୍ତି, ସବୁ ଖଟିଆ ଲମ୍ବରେ ଉଚିତ ମାପରୁ ହାତେ ସାନ, ବୋଧହୁଏ ଅଣ୍ଟାରୁ ପାଦ ପର୍ଯ୍ୟନ୍ତ ଦେହ ଅଂଶଟାକୁ ଖଟିଆ ଉପରେ ସ୍ଥାନ ଦେବା ଏ ଅଞ୍ଚଳରେ ଅନୁଚିତ ବିବେଚିତ ହୁଏ ।

ସମ୍ବଲପୁର ମଧ୍ୟପ୍ରଦେଶର ଅନ୍ତର୍ଗତ ହେଲେହେଁ, ଓଡ଼ିଶା ସହିତ ଏହାର ଘନିଷ୍ଠ ସମ୍ପର୍କ, ଏକେତ ଏହାର ଅଧିବାସୀ ଓଡ଼ିଆ, ତା ଉପରେ ସମ୍ବଲପୁରୀ ଚାଉଳ ଓ ରବି ଫସଲ ଉପରେ କଟକ ବହୁପରିମାଣରେ ନିର୍ଭର କରେ । ଏତେ ଦୂର ଆସି ସମ୍ବଲପୁର ଦର୍ଶନ-ଲାଳସା ଛାଡ଼ିବା ସହଜ ନୁହେଁ, ସମୟ ଅଭାବରୁ କେବଳ କେତେକ ଘଣ୍ଟାପାଇଁ ସମ୍ବଲପୁର ଯାଇଥିଲି, ସହପାଠୀ ସୁହୃଦ୍‌ବର ସମ୍ବଲପୁର ହାଇ ସ୍କୁଲର ହେଡ୍‌ମାଷ୍ଟର ଦାଶରଥି ବାବୁଙ୍କୁ ପୂର୍ବରୁ ସମ୍ବାଦ ଦେଇଥିଲି । ମୋତେ ପାଇ ଦାଶରଥି ବାବୁ କେତେ ଆନନ୍ଦିତ ହୋଇଥିଲେ, ତାହା ମୁଁ ଜାଣେ ଓ ସେ ଜାଣନ୍ତି । ଅଳ୍ପ ସମୟ ମଧ୍ୟରେ ସମ୍ବଲପୁରର ସମସ୍ତ ଦର୍ଶନୀୟ ସ୍ଥାନ ଦେଖାଇଲେ । ସ୍କୁଲର ସୁପୁତ୍ର ବାବୁ ବାଳମୁକୁନ୍ଦ ବହିଦାର ପ୍ରଭୃତି ମୋପରି ସାମାନ୍ୟ ଲୋକର ଆସିବାକୁ ଚାହିଁ ବସିଥିଲେ, କିନ୍ତୁ ଦେଖାମାତ୍ର ହେଲା, ସମୟାଭାବରୁ ଆଳାପସୁଖରୁ ସମସ୍ତେ ବଞ୍ଚିତ ହେଲୁଁ । ଚନ୍ଦ୍ରମୋହନ ବାବୁଙ୍କୁ ଛାଡ଼ିଲେ ଦାଶରଥି ବାବୁ ଏକମାତ୍ର ଖାଣ୍ଟି ଓଡ଼ିଆ ସରକାରୀ ହାଇ ସ୍କୁଲର ହେଡମାଷ୍ଟର । ଚାହୁଁ ଚାହୁଁ ଦଶ ବର୍ଷ ପୂରି ଏଗାର ବର୍ଷ ହୋଇଗଲା, ଦାଶରଥି

ବାବୁ ଓ ମୁଁ କଲେଜ ଛାଡ଼ି ଏକତ୍ର ଶିକ୍ଷକତା କରୁଥିଲୁଁ; ତାଙ୍କର ସମ୍ବଲପୁର ଆସିବା କାଲି କଥାପରି ବୋଧ ହେଉଅଛି । ଶ୍ରୀଯୁକ୍ତ ମାନନୀୟ ହଲୱାର୍ଡ ସାହେବଙ୍କ କୃପାରୁ ତାଙ୍କର ଅନେକ ଓଡ଼ିଆ ଛାତ୍ର ଉଚ୍ଚପଦାସୀନ ହୋଇଅଛନ୍ତି ।

ସମ୍ବଲପୁରର ଦୃଶ୍ୟ ଅତି ମନୋରମ, ମହାନଦୀର ଗ୍ରୀଷ୍ମକାଳୀନ ଶିଳାବନ୍ଧୁର ଶଯ୍ୟା ଅତି ମନୋହର, ନ ଦେଖିଲେ ସେ ପ୍ରାକୃତିକ ସୌନ୍ଦର୍ଯ୍ୟର ମହତ୍ତ୍ୱ ବୁଝି ହେବ ନାହିଁ । ଆଉ ଏଠାରେ ମହାନଦୀରେ ସ୍ନାନ କରିବା ପରମ ସୁଖକର ଓ ଶାନ୍ତିପ୍ରଦ, ପାଣି ଭିତରେ ସାନ ବଡ଼ ଉଚ୍ଚ ନୀଚ ପଥର ଅଛି, ଯେତେ ଇଚ୍ଛା ସେତେ ପାଣିରେ ବସି ସ୍ୱଚ୍ଛ ଶୀତଳ ଜଳରେ ସ୍ନାନ କରି ପାରିବ । ସହରଟି ବେଶ୍ ପରିଚ୍ଛନ୍ନ, ଉଚ୍ଚ ଭୂମିରୁ ସହର ଓ ଗଡ଼ଖାଡ଼ ଅତି ସୁନ୍ଦର ଦିଶେ । ସ୍ଥାନୀୟ ଲୋକଙ୍କ ଚେଷ୍ଟାରେ ଜୁବିଲିର ସ୍ମାରକସ୍ୱରୂପ ଭିକ୍ଟୋରିଆ ଘାଟ ବନ୍ଧା ହୋଇଅଛି । ଆଉ ଗୋଟିଏ ଟାଉନ ହଲ ମଧ୍ୟ ପ୍ରସ୍ତୁତ ହେଉଅଛି । ସମ୍ବଲପୁରରେ ପଶିବା ମାତ୍ରକେ ଗଞ୍ଜାମର ବହରମପୁର ମନେ ପଡ଼େ, ଏକ ପ୍ରକାର ବାଟ, ସହର ମଧ୍ୟରେ ସ୍ଥାନେ ସ୍ଥାନେ ଉଚ୍ଚ ପଥର, ଏକା ଗୋଟିକିଆ ବଳଦର ଗାଡ଼ି ଓ ଖପରଲି ଘର, ପ୍ରଭେଦ ମଧ୍ୟରେ ବହରମପୁରରେ ନଈ ନାହିଁ, ସମ୍ବଲପୁରରେ ବହରମପୁର ପରି ଅସଂଖ୍ୟ ଛେଳି ନାହାନ୍ତି । ଏକ ଘୋଡ଼ାରେ ଟଣା ଟାଙ୍ଗା ଗାଡ଼ି ପ୍ରଧାନ ଯାନ । ଟାଙ୍ଗା ଏକ ପ୍ରକାର ଆଚ୍ଛାଦନଯୁକ୍ତ ଟମଟମ, ଚାଳକକୁ ଘେନି ପଶ୍ଚାତ ଦିଗକୁ ମୁହଁ କରି ଚାରି ଜଣ ମାତ୍ର ଯୋଡ଼ି ଯୋଡ଼ି ହୋଇ ବସି ପାରିବେ । ଅତ୍ୟନ୍ତ ହୋହଲେ, ମୋଟରେ ଯାନଟି ସୁଖକର ନୁହେ ।

କେତେଗୁଡ଼ିଏ ବିଦ୍ୟାଳୟ ଦେଖିବାର ସୁବିଧା ପାଇଥିଲି, ଛାତ୍ରାବାସ ଓ ସ୍କୁଲର ଉପକରଣ ଓଡ଼ିଶାଠାରୁ ଶହ ଗୁଣରେ ଶ୍ରେଷ୍ଠ । ପରେଟ ( drill ) ଚିତ୍ରବିଦ୍ୟା ( drawing ) ଦ୍ରବ୍ୟଶିକ୍ଷା/ (object lesson) ବିଜ୍ଞାନଶିକ୍ଷା ସମ୍ବନ୍ଧରେ ମଧ୍ୟପ୍ରଦେଶ ଉନ୍ନତ ବଙ୍ଗପ୍ରଦେଶର ଅନେକ ଉପରେ । ଉଚ୍ଚପ୍ରାଥମିକ ବିଦ୍ୟାଳୟରେ ଏ ସବୁର ସାଜ ସରଞ୍ଜାମ ଓ ଶିକ୍ଷାପଦ୍ଧତି ଦେଖିଲେ ବଙ୍ଗପ୍ରଦେଶର ଶିକ୍ଷକ ପ୍ରସ୍ତୁତକାରୀ ନର୍ମାଲ ବିଦ୍ୟାଳୟଗୁଡ଼ିକ ନତମସ୍ତକ ହେବେ । ଓଡ଼ିଶା କଥା ଛାଡ଼, ବଙ୍ଗଦେଶରେ ମଧ୍ୟ ଉଚ୍ଚ ଇଂରାଜୀ ବିଦ୍ୟାଳୟମାନଙ୍କରେ ବିଜ୍ଞାନଶିକ୍ଷା ଯନ୍ତ୍ରସାପେକ୍ଷ ନୁହେ, ଅଧିକାଂଶ ବିଦ୍ୟାଳୟରେ ଯନ୍ତ୍ର ମଧ୍ୟ ନାହିଁ; କିନ୍ତୁ ଏକ ପାଠ୍ୟ ହେଲେହେଁ ମଧ୍ୟପ୍ରଦେଶରେ ଯନ୍ତ୍ର ସାହାଯ୍ୟରେ ଶିକ୍ଷା ଦିଆ ହୁଏ । ସମ୍ବଲପୁର ହାଇ ସ୍କୁଲ ଓ ତତ୍ସଂଲଗ୍ନ ଉଚ୍ଚପ୍ରାଇମେରୀ ବିଦ୍ୟାଳୟର ଦ୍ରବ୍ୟଜ୍ଞାନ ଓ ଚିତ୍ରବିଦ୍ୟାର ଉପକରଣ ଦେଖିଲେ, ତାହା ବିଦ୍ୟାଳୟ ବଦଳରେ ବଡ଼ ଲୋକଙ୍କ ବୈଠକଖାନା ବୋଲି ମନେ ହୁଏ; ଶୁଣିଲି ମଧ୍ୟପ୍ରଦେଶର ପ୍ରାଇମେରୀ ପାଠଶାଳାରେ ସୁଦ୍ଧା ମାନଚିତ୍ର, ଏପରି କି ଭୂଗୋଲକ (globe) ପର୍ଯ୍ୟନ୍ତ ଅଛି । ବଙ୍ଗଦେଶର ଶିକ୍ଷା କଣ୍ଠଗତ ଶିକ୍ଷା, ମଧ୍ୟପ୍ରଦେଶର ଶିକ୍ଷା କାର୍ଯ୍ୟକରୀ ଶିକ୍ଷା । ଏହି ମଧ୍ୟପ୍ରଦେଶର ଅନୁକରଣରେ ବଙ୍ଗ ପ୍ରଦେଶରେ ନବ ଶିକ୍ଷାଦାନପଦ୍ଧତି ପ୍ରଚଳିତ ହେବାର ଆରମ୍ଭ ହୋଇଅଛି; କିନ୍ତୁ ସମ ନ ହେଉଣୁ ସମାପୃଣ, କିଣ୍ଡରଗାର୍ଟନ ଶିକ୍ଷାପ୍ରଣାଳୀ ପ୍ରଚଳିତ ହେଲାଣି, ମାତ୍ର ଶତକଡ଼ା ୯୯ ଜଣ ଶିକ୍ଷକ ସେ ପ୍ରଣାଳୀ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅନଭିଜ୍ଞ, କିପରି କଣ ପଢ଼ାଇବେ ଜାଣନ୍ତି ନାହିଁ, ଉପକରଣର ନାମ ନାହିଁ, ଫଳରେ ଯେଉଁ ଶୁଆପଢ଼ାକୁ ସେହି ଶୁଆପଢ଼ା, ଲାଭ ମଧ୍ୟରେ ପିଲାମାନେ ପଲ୍ଲବଗ୍ରାହୀ ହେବେ—Jack of all trades, master of none.

ଯାହାଙ୍କ ନାମାନୁସାରେ ସମ୍ବଲପୁର ନାମକରଣ ହୋଇଅଛି, ସେହି ସମଲାଇ ଠାକୁରାଣୀଙ୍କ ମନ୍ଦିର, ପୁରାତନ ଦୁର୍ଗ, ଅସ୍ତ୍ରହୀ ଶସ୍ତ୍ରାଗାର ପ୍ରଭୃତିର ଭଗ୍ନାବଶେଷ ଏହାର ଅତୀତ ଗୌରବର ସାକ୍ଷୀ

ହୋଇ ମଳିନବେଶରେ ରହିଅଛି । ମରହଟ୍ଟାମାନେ ଯେଉଁବାଟେ ଅଭେଦ୍ୟ ଦୁର୍ଗରେ ପଶିଥିଲେ ସେ ଦ୍ୱାରର ନିଦର୍ଶନ ଏପର୍ଯ୍ୟନ୍ତ ଅଛି । ଦୁର୍ଗମଧ୍ୟରେ ଅନେକ ଦେବାଳୟ ଥିଲା, ସେ ଗୁଡ଼ିକ ଆଜି ଜରାଜୀର୍ଣ୍ଣ ।

ମହାମନା ଫ୍ରେଜର ସାହେବ ମଧ୍ୟପ୍ରଦେଶର ଚିଫ କମିଶନର ଥିବା ସମୟରେ ଓଡ଼ିଆ ଭାଷାକୁ ପୁନରପି ଅଦାଲତର ଭାଷା କରିଥିଲେ, ତାହା ସ୍ମରଣୀୟ କରିବାପାଇଁ ଫ୍ରେଜର ହଲ ଓ ସାଧାରଣ ପୁସ୍ତକାଳୟ ନିର୍ମିତ ହେଉଅଛି, ସମ୍ପୂର୍ଣ୍ଣ ହେବାକୁ ଅନ୍ତତଃ ଦୁଇ ବର୍ଷ ଲାଗିବ । ଏହି ଫ୍ରେଜର ସାହେବ ବର୍ତ୍ତମାନ ବଙ୍ଗର ଛୋଟଲାଟ, ସମସ୍ତ ଉତ୍କଳଭାଷୀ ପ୍ରଦେଶକୁ ସ୍ୱଶାସନାଧୀନ କରି ଓଡ଼ିଆଙ୍କ ହୃଦୟ ଅଧିକାର କରିବେ କି ? ସମ୍ବଲପୁରବାସିଏ ଓଡ଼ିଶାସହିତ ମିଳିତ ହେବାକୁ ଓ ବଙ୍ଗର ଅନ୍ତର୍ଭୁକ୍ତ ହେବାକୁ ଲାଳାୟିତ; କଳୁଷବାଦଙ୍କ ଦଳ ଏଠାରେ ମଧ୍ୟ ଅଛନ୍ତି, କିନ୍ତୁ ଏମାନଙ୍କ ସଂଖ୍ୟା ଅଳ୍ପ ଓ ଏମାନେ ମଧ୍ୟ ଅନ୍ୟ ପ୍ରରୋଚନା-ପ୍ରଣୋଦିତ ।

ବଙ୍ଗ ଓ ଉତ୍କଳର ସୁପରିଚିତ ସୁଲେଖକ, ସୁଶିକ୍ଷିତ ବିଜୟ ବାବୁ ଏଠାରେ ଜଣେ ପ୍ରତିଭାଶାଳୀ ଉକିଲ । ମଜୁମଦାର ବାବୁ ଓଡ଼ିଶାରେ ଅନେକ ଦିନ ଶିକ୍ଷକତା କରିଥିଲେ, ଶେଷରେ ଉନ୍ନତିର ଆଶା ନ ଦେଖି, ଆଇନ ବ୍ୟବସାୟର ଆଶ୍ରା ନେଲେ । ଏଠାରେ ଭଲ ଘର ଦ୍ୱାର, ଗାଡ଼ି ଘୋଡ଼ା କରି ସୁଖରେ ଅଛନ୍ତି । ଶିକ୍ଷାବିଭାଗରେ ରହିଥିଲେ, ହୁଏତ ସେପରି ଘର ଦ୍ୱାରର ପିଣ୍ଡାକୁ ଉଠିବା ଅସମ୍ଭବ ହୋଇଥାନ୍ତା; ଗାଡ଼ି ଘୋଡ଼ାର ମୂଲ୍ୟ ଯାହା ସେତକ ହୁଏତ ଉପଜୀବନରେ ସଞ୍ଚୟ କରି ପାରି ନ ଥାନ୍ତେ । ଭାରତବର୍ଷରେ ଶିକ୍ଷାର ଅବନତିର ମୂଳ ଏହିଠାରେ । ଉପାଧ୍ୟାୟଙ୍କ ସଂଖ୍ୟା ବଢ଼ିଲେ ବା ପ୍ରାଥମିକ ପାଠଶାଳାର ସଂଖ୍ୟା ବଢ଼ିଲେ ଶିକ୍ଷାର ଉନ୍ନତି ହେଲା ବୋଲି ମନେ କରିବା ଠିକ ନୁହେ; ପ୍ରକୃତ ଶିକ୍ଷିତ କେତେ ଜଣ ? କେଉଁ ପ୍ରଲୋଭନରେ ପ୍ରତିଭାଶାଳୀ ଲୋକେ ଶିକ୍ଷାବିଭାଗକୁ ଆସିବେ ? ଯେଉଁ କେତେ ଜଣ କ୍ଷଣଜନ୍ମା ପୁରୁଷ ଶିକ୍ଷା ବିଭାଗର ଚରମ ସୋପାନକୁ ଉଠି ଯଶ ବିସ୍ତାର କରୁଅଛନ୍ତି, ସେମାନେ ଯେ କୌଣସି ବିଭାଗରେ ପ୍ରବିଷ୍ଟ ହୋଇଥିଲେ ମଧ୍ୟ ସେହିପରି କୃତିତ୍ୱ ଦେଖାଇ ଥାନ୍ତେ । କେବଳ ନାମମାତ୍ର, ଅନ୍ୟ ବିଭାଗରେ ପଶିଲେ ଯେ ଶଏ ପାଇବ, ଏଥିରେ ପଶିଲେ ପଚାଶ ପାଇବା ଦୁସ୍ତର ! ନିୟମ, ଉପନିୟମ ଗଦାକୁ ଗଦା ! ଯାହାରେ ପିଲା ପଢ଼ାଇ ଶାଗ ଭାତର ସଂସ୍ଥାନ କରୁଥିଲେ, ସେଥିରେ ଧୂନ ପଡ଼ିଲାଣି । ଓଡ଼ିଶାର ମରହଟ୍ଟା ଶାସନକର୍ତ୍ତାଙ୍କ ପଦପରି ଶିକ୍ଷାପଦ୍ଧତି ନିତ୍ୟ ପରିବର୍ତ୍ତନଶୀଳ । ଆଜି ଯାହା ଚଳିଲା, କାଲି ତାହା ଲେଉଟିଲା । ଏହିସବୁ କାରଣରୁ ଭାରତବର୍ଷରେ ଯାହାଙ୍କର ପ୍ରତିଭା ଓ ସଂଗତି ଅଛି ଓ ଜାତିନାଶର ଭୟ ନାହିଁ, ସେମାନେ ବିଳାତ ଯାଇ ହାକିମ, ଡାକ୍ତର, ବାରିଷ୍ଟର ପ୍ରଭୃତି ହୋଇ ଆସୁଅଛନ୍ତି, ଯେଉଁମାନେ ତାହା ନ ପାରୁଛନ୍ତି ସେମାନେ ଏଦେଶରେ ହାକିମ, ଓକିଲ, ଡାକ୍ତର ହେବାକୁ ଚେଷ୍ଟା କରୁଅଛନ୍ତି, ତାହା ଯେଉଁମାନେ ନ ପାରୁଛନ୍ତି, ସେମାନେ ଅଫିସ ଅଦାଲତର ନାନା କାର୍ଯ୍ୟରେ ପଶୁଅଛନ୍ତି ବା ଦେଶୀୟ ରାଜନ୍ୟବର୍ଗଙ୍କ ଆଶ୍ରୟ ନେଉଛନ୍ତି, ସେଥିରୁ ଅବଶିଷ୍ଟ ଯେଉଁମାନେ ରହୁଛନ୍ତି ସେମାନଙ୍କ ମଧ୍ୟରୁ ଯେଉଁମାନଙ୍କର ପୁଲିସ ବିଭାଗ ପ୍ରଭୃତିରେ ପ୍ରବିଷ୍ଟ ହେବାକୁ ପ୍ରବୃତ୍ତି ହେଉ ନାହିଁ ସେମାନେ ଶିକ୍ଷାବିଭାଗକୁ ଦୌଡ଼ୁଛନ୍ତି ! କିଛି ନ ଘଟିଲେ ଅବଧାନୀ କର । ଅନେକେ ସାତସମୁଦ୍ର ତେର ନଦୀ ପାରି ହୋଇ ବିଳାତର ବିଶ୍ୱବିଦ୍ୟାଳୟରୁ ଯୋଗ୍ୟତା ସହିତ ଉତ୍ତୀର୍ଣ୍ଣ ହୋଇ ଆସୁଛନ୍ତି, କିନ୍ତୁ ହେଲେ କଣ ହେବ, ଢିଙ୍କି ସ୍ୱର୍ଗକୁ ଗଲେ ମଧ୍ୟ ଧାନ କୁଟିବ, ଏଦେଶକୁ ଫେରି ଆସି ଭଲ କାମ ଟିଏ ପାଉ

ନାହାନ୍ତି, ବଜାରରେ ଯଣ ପ୍ରଭୃତିର ଭିଣା ନାହିଁ, ଏଦେଶରେ ଦେଢ଼ଶ ଟଙ୍କାର ମଜୁରି ମିଳୁ ନାହିଁ । ପ୍ରଫେସରଙ୍କଠାରୁ ଅବଧାନ ପର୍ଯ୍ୟନ୍ତ ଏକ ଦଶା ।

ଉତ୍ପନ୍ନ ଦ୍ରବ୍ୟ ମଧ୍ୟରେ ସମ୍ବଲପୁରୀ ଗୁଡ଼ଳ ସହିତ ଓଡ଼ିଶା ସୁପରିଚିତ; ଏହା ଛଡ଼ା ଜିଲ୍ଲୀ ପଟା ପଥର, ପଥର ବାସନ, କଂସା ବାସନ ଓ ମଠା ମିଳେ । ନିକଟବର୍ତ୍ତୀ ଗଡ଼ଜାତ ମହାଲରୁ ବିଶେଷତଃ ବାମଣ୍ଡାରୁ ବିଶେଷ ପରିମାଣରେ ସ୍ଲିପର ଆମଦାନି ହୁଏ; ଧଳା, କଳା, ନାଲି ପ୍ରଭୃତି ନାନାରଙ୍ଗର ପଥର ମିଳେ, ଏ ଅଞ୍ଚଳରେ ଓ ଛୋଟନାଗପୁରରେ ଲୌହ ଅଭ୍ର ବହୁ ପରିମାଣରେ ଅଛି, ରେଲ ବାଟର ଦୁଇ ପାଖରେ ମୂଲ୍ୟବାନକାଠ ଜଙ୍ଗଲ ପରି ଘନ ଘନ ଦିଶେ । ପରିବା ମଧ୍ୟରେ ଏଠାରେ ଓ ଗାଙ୍ଗପୁରରେ କଳାଇ ବାଇଗଣ ପ୍ରଚୁର ପରିମାଣରେ ମିଳେ ।

ସମ୍ବଲପୁର ଓ ଛୋଟନାଗପୁରର ପ୍ରତି ସହରରେ ଓ ପ୍ରଧାନ ପ୍ରଧାନ ସ୍ଥାନରେ ଅନେକଗୁଡ଼ିଏ ସରାଇ (ପାନ୍ଥଶାଳା) ଅଛି, ଆଗନ୍ତୁକମାନେ ପଇସାଟିଏ ଦେଲେ ସେସବୁରେ ଦିନେ ରହି ପାରନ୍ତି । ଓଡ଼ିଶାରେ ଏହାର ନିତାନ୍ତ ଅଭାବ, ପୁରୀ ଓ ଜଗନ୍ନାଥସଡ଼କର ପାଖ ଧର୍ମଶାଳା ଭିନ୍ନ ବିଦେଶୀ ପଥିକମାନଙ୍କର ରହିବାର କୌଣସି ସୁବିଧା ନାହିଁ, କଟକ ସହରରେ ଗୋଟିଏ ସୁଦ୍ଧା ପାନ୍ଥଶାଳା ନାହିଁ, ବୈଷ୍ଣବ ପ୍ରଭୃତି ଦେବ-ମନ୍ଦିରରେ ରହନ୍ତି, ସେପରି ଦେବମନ୍ଦିର ମଧ୍ୟ ଗୋଟିଏ ବା ଦଶଟିରୁ ବେଶି ନାହିଁ । ବଜାରରେ ସୁବିଧାରେ ରହିବାର ଉପଯୋଗୀ ବସା ମିଳେ ନାହିଁ, କେବଳ ବନ୍ଧୁଦ୍ୱାର କୁଟୁମ୍ବ ଗୃହତଳ ଆଶ୍ରୟ କରିବାକୁ ହୁଏ । ଏ ସମ୍ବନ୍ଧରେ ବଙ୍ଗ ଦେଶର ମଧ୍ୟପ୍ରଦେଶ ଓ ଛୋଟନାଗପୁରକୁ ଅନୁକରଣ କରିବା ବାଞ୍ଛନୀୟ ।

ସମ୍ବଲପୁରରେ ପୂର୍ବେ ସୈନ୍ୟାବାସ ଥିଲା, ବର୍ତ୍ତମାନ ସୈନ୍ୟ ରାୟପୁରରେ ରହୁଛନ୍ତି, ସେମାନଙ୍କ ପୂର୍ବାବାସ ସବୁ ଭାଙ୍ଗି ଗଲାଣି ।

ଗଲି ଆଇଲି, ଯାହା ଦେଖିଲି ଯାହା ଶୁଣିଲି ତାହା କହିଲି ।

ତୁମ୍ଭର ସ୍ନେହାଧୀନ
ଶ୍ରୀ ବାଉଷ୍ଟଡ଼-ମିଶ୍ର ।

---

## ସେତୁବନ୍ଧ ରାମେଶ୍ୱର । (୨)



ଶ୍ରୀ ରାମଚନ୍ଦ୍ରଜୀଙ୍କ ସେତୁ ମାଣ୍ଡାପାମଠାରୁ ଆରମ୍ଭ ହୋଇ ଲଙ୍କା ଦ୍ୱୀପ ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି । ରାମେଶ୍ୱର ଦ୍ୱୀପ ରାମଚନ୍ଦ୍ରଙ୍କ ସେତୁର ମଧ୍ୟବର୍ତ୍ତୀ ଅଂଶ ମାତ୍ର । ମାଣ୍ଡାପାମଠାରୁ ପାମ୍ବାନ୍ ପର୍ଯ୍ୟନ୍ତ ତିନି ମାଇଲ ସେତୁ ପ୍ରସ୍ତରନିର୍ମିତ । ତାହାର କେତେକ ସ୍ଥାନ ଭଗ୍ନ ହୋଇଥିଲେହେଁ ଭଟାବେଳେ ସୁଦୀର୍ଘ ପ୍ରସ୍ତରନିର୍ମିତ ରାସ୍ତା ସ୍ପଷ୍ଟ ଦେଖାଯାଏ । ସେହି ରାସ୍ତାର ମଧ୍ୟଭାଗ ଭାଙ୍ଗି ଦେଇ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଜାହାଜ ଯାତାୟାତର ପଥ ନିର୍ଦ୍ଦିଷ୍ଟ କରି ଦେଇଅଛନ୍ତି । ଏହି ବାଟେ ୟୁରୋପ ଓ ଆମେରିକାର ବାଣିଜ୍ୟ-ତରୀସକଳ କଲିକତା ଯିବା ଆସିବା କରେ । ସମୁଦ୍ରଗର୍ଭରେ ସ୍ଥାନେ ସ୍ଥାନେ ସୁଦୀର୍ଘ ଖାଲଗର୍ତ୍ତ ସବୁ ବସାଇ ଜାହାଜ ଗମନାଗମନର ସୁବିଧା ସକାଶେ ଗଭୀର ଜଳର ସୀମା ନିର୍ଦ୍ଦେଶ କରା ହୋଇଅଛି । ସ୍ଥାନେ ସ୍ଥାନେ ଲୌହପତ୍ରନିର୍ମିତ ନାନାଆକାରର ଚିହ୍ନ-ମାନ ମଧ୍ୟ ପଥ ନିର୍ଦ୍ଦେଶ କରି ଦେଉଅଛି । ପାମ୍ବାନଠାରୁ ଧାନେଶକୋଟୀ ପର୍ଯ୍ୟନ୍ତ ରାମେଶ୍ୱର ଦ୍ୱୀପର ଦୈର୍ଘ୍ୟ ୨୫ ମାଇଲ । ଧାନେଶକୋଟୀହିଁ ଏହି ଦ୍ୱୀପର ପୂର୍ବଦିଗର ଶେଷ ସୀମା । ରାମେଶ୍ୱର

ମନ୍ଦିରଠାରୁ ତାହା ୧୨ ମାଇଲ ଦୂରରେ ଅବସ୍ଥିତ । ଧାନେଶକୋଟୀଠାରୁ ପୁନରପି ପ୍ରସ୍ତର-ନିର୍ମିତ ସେତୁ ଲଙ୍କା ପର୍ଯ୍ୟନ୍ତ ବିସ୍ତୃତ ହୋଇଅଛି । ଏହାର ଦୈର୍ଘ୍ୟ ୧୯ ମାଇଲ ମାତ୍ର । ସୁତରାଂ ମାଣ୍ଡାପାମଠାରୁ ସେତୁପଥରେ ଲଙ୍କା ଦ୍ୱୀପ ୪୨ ମାଇଲ ମାତ୍ର । ଧାନେଶକୋଟୀକୁ ଯିବାର ରାସ୍ତା ବାଲୁକାମୟ । କିନ୍ତୁ ଏହା ହିନ୍ଦୁମାନଙ୍କର ଗୋଟିଏ ବିଶେଷ ତୀର୍ଥ । କାରଣ, ଏହି ସ୍ଥାନରେ ବଙ୍ଗୋପସାଗର ଭାରତ ମହାସମୁଦ୍ର ସଙ୍ଗେ ମିଳିତ ହୋଇଅଛି । ରାମେଶ୍ୱରଠାରୁ ଯାତ୍ରିମାନେ ଏଠାକୁ ଆସି ସ୍ନାନ ଓ ଶ୍ରାଦ୍ଧ ତର୍ପଣାଦି କରଥାନ୍ତି । ମଧ୍ୟପଥରେ ଗନ୍ଧମାଦନ ପର୍ବତ ଦଣ୍ଡାୟମାନ ରହିଅଛି । ରାମାୟଣ-ପାଠକମାନେ ଅବଗତ ଅଛନ୍ତି ଯେ ଇନ୍ଦ୍ରଜିତର ଶକ୍ତିଶେଲରେ ଯେତେବେଳେ ଲକ୍ଷ୍ମଣ ମୂର୍ଚ୍ଛିତ ହୋଇଥିଲେ ସେତେବେଳେ ତାହାଙ୍କର ପୁନର୍ଜୀବନପାଇଁ ହନୁମାନ୍ ଗନ୍ଧମାଦନ ପର୍ବତରୁ ବିଶଲ୍ୟକରଣୀ ଆଣିବାକୁ ପ୍ରେରିତ ହୋଇଥିଲେ । ବିଶଲ୍ୟକରଣୀ ଖୋଜି ନ ପାଇବାରୁ ହନୁମାନ୍ ଏହାବେଳକେ ସମସ୍ତ ପର୍ବତଟା ଉପାଡ଼ି ମୁଣ୍ଡରେ ଘେନି ଆସିଥିଲେ । କେବଳ କି ଏତିକି ମାତ୍ର ? ରାତ୍ରି ପ୍ରଭାତ ହେଉଅଛି ଦେଖି ସୂର୍ଯ୍ୟଦେବଙ୍କୁ ମଧ୍ୟ କାଖରେ ଯାକି ଘେନି ଆସିଥିଲେ । ବୋଧହୁଏ ହନୁମାନ୍ ଯେତେବେଳେ ଗନ୍ଧମାଦନକୁ ଯଥାସ୍ଥାନରେ ରଖି ଆସିବାକୁ ଯାଇଥିଲେ ସେତେବେଳେ ହୁଏତ ତାହାର ଏକଅଂଶ ରାମେଶ୍ୱର ନିକଟରେ ଭାଙ୍ଗି ଯାଇ ପଡ଼ି ଯାଇଥିବ । ଅଥବା ବାନର ବୁଦ୍ଧି ତ, କେଜାଣି ବା ସମସ୍ତ ପର୍ବତଟାକୁ ପଥରେ ପକାଇ ଦେଇ ଫେରି ଚାଲି ଯାଇଥିଲେ । ସେ ଯାହାହେଉ ଏହି ପର୍ବତଦେହରେ ଶ୍ରୀରାମଚନ୍ଦ୍ରଙ୍କ ପଦଚିହ୍ନ ବିଦ୍ୟମାନ ଅଛି । ଶୁଣିଅଛୁଁ, ଏହାର ଉଚ୍ଚ ଶିଖର-ଦେଶରେ ଦଣ୍ଡାୟମାନ ହେଲେ ଲଙ୍କାର ଅସ୍ପଷ୍ଟ ଛାୟା ଚକ୍ଷୁରେ ପଡ଼େ, କିନ୍ତୁ ପରୀକ୍ଷା କରି ଦେଖିବାର ଅବସର ହୋଇ ନାହିଁ । ଧାନେଶକୋଟୀରେ ଗୋଟିଏ ଛତ୍ରମ୍ ଅଛି । ସିଂହଳ ଦ୍ୱୀପନିବାସୀ ମି: ଟି. ରଙ୍ଗାଇଲ୍ଲା ରେଡ଼ି ନାମ୍ ପିଲେ ମହୋଦୟ ଅନେକ ଟଙ୍କା ବ୍ୟୟ କରି ଯାତ୍ରିମାନଙ୍କପାଇଁ ବାଲୁକାମୟ ଭୂମିରେ ଗୋଟିଏ ବିଶ୍ରାମାଗାର ନିର୍ମାଣ କରାଇଥିଲେ । ଦୁଃଖର ବିଷୟ ତାହା ସମୁଦ୍ରସ୍ରୋତରେ ଭାସି ଯାଇଅଛି । ଧାନେଶକୋଟୀଠାରୁ ସେତୁ ଉପରେ ବରାବର ପଦବ୍ରଜରେ ଲଙ୍କା ପର୍ଯ୍ୟନ୍ତ ଯାଇ ହୁଏ । ସେତୁ ସ୍ଥାନେ ସ୍ଥାନେ ଭାଙ୍ଗି ଯାଇଥିବାରୁ ଯାତାୟାତର ଅସୁବିଧା ହୋଇଅଛି । ସେହି ସବୁ ସ୍ଥଳରେ ଜଳର ଗଭୀରତା ଅଧିକ ନ ହେଲେ ମଧ୍ୟ ସ୍ରୋତର ବେଗ ଏତେଅଧିକ ଯେ ପଦବ୍ରଜରେ ଯିବା ଅସମ୍ଭବ । ଲେଉ ହ୍ୟାବଲକ, ଲେଉ ଗର୍ଡ଼ନ ଏବଂ ଷ୍ଟିମର କୋମ୍ପାନୀର ଏଜେଣ୍ଟ ଜାଫନା ନିବାସୀ ମି: ନାଗଲିଙ୍ଗମ୍ ପିଲେ ଥରେ ନୌକା ଯୋଗରେ ଧାନେଶକୋଟୀଠାରୁ ଲଙ୍କା ଯାଇଥିଲେ । ବର୍ତ୍ତମାନ ରାମେଶ୍ୱର ରେଲଓ୍ୱେ ନାମ ଦେଇ ମାଣ୍ଡାପାମଠାରୁ ଲଙ୍କା ପର୍ଯ୍ୟନ୍ତ ବରାବର ସେତୁ ଉପରେ ରେଲ ରାସ୍ତା ନିର୍ମାଣର ପ୍ରସ୍ତାବ ଚାଲିଅଛି । ସାଉଥ ଇଣ୍ଡିଆନ୍ ରେଲଓ୍ୱେର ଏଜେଣ୍ଟ ମେଜର ଶେଲୀ ସେହି ଉଦ୍ଦେଶ୍ୟରେ ଇଣ୍ଡିଆ ଅଫିସ ସଙ୍ଗେ ପରାମର୍ଶ କରିବା ନିମିତ୍ତ ଗତ ମାର୍ଚ୍ଚ ମାସ ୩ ତାରିଖରେ ବିଲାତ ଯାତ୍ରା କରିଅଛନ୍ତି । ଏହି ରେଲ ରାସ୍ତା ନିର୍ମିତ ହେଲେ ଭାରତବର୍ଷରୁ ଲଙ୍କା ଯିବାର ସୁଗମ ହେବ ଏବଂ ସେହି ସମୟରୁ ବୋଧହୁଏ କଳିକାଳର ଅବସାନ ହୋଇ ପୁନର୍ବାର ତ୍ରେତା ଯୁଗ ଫେରି ଆସିବ ।

ରାମେଶ୍ୱର ଦ୍ୱୀପ ପୂର୍ବ ପଶ୍ଚିମରେ ୨୫ ମାଇଲ ଦୀର୍ଘ ଏବଂ ଉତ୍ତର ଦକ୍ଷିଣରେ ହୋଣସିଠାରେ ୩ ମାଇଲରୁ ଅଧିକ ବିସ୍ତୃତ ନୁହେ—ହୋଣସି-ଠାରେ ଅବା ଏକ ମାଇଲରୁ ମଧ୍ୟ କମ । ଏହାର ପଶ୍ଚିମ ପ୍ରାନ୍ତହିଁ ଅଧିକ ପ୍ରଶସ୍ତ ଏବଂ ପୂର୍ବ ଦିଗ କ୍ରମଶଃ ସୂକ୍ଷ୍ମ ହୋଇଅଛି । 'ପାମ୍ବାନ' ତାମିଲ ଶବ୍ଦ,

ଏହାର ଅର୍ଥ ସର୍ପାକୃତ । ଏହି ନାମଟି ଦ୍ୱୀପର ଆକୃତ ପ୍ରକାଶ କରୁଅଛି । ଦ୍ୱୀପଟିରେ ପାଞ୍ଚ ହଜାରରୁ ବେଶି ଲୋକ ନାହାନ୍ତି । ଅଧିବାସୀମାନଙ୍କ ମଧ୍ୟରେ ମନ୍ଦିରସଂପୃକ୍ତ ବ୍ରାହ୍ମଣ ପୁରୋହିତମାନଙ୍କର ସଂଖ୍ୟାହିଁ ସର୍ବାପେକ୍ଷା ଅଧିକ । ଏହା ଛଡ଼ା ଶୂଦ୍ର, ମୁସଲମାନ ଓ କତେକ ରୋମାନକାଥଲିକ ଖ୍ରୀଷ୍ଟିୟାନ ଏହି ଦ୍ୱୀପରେ ବାସ କରନ୍ତି । ରାମେଶ୍ୱର ମନ୍ଦିରର ଅନତିଦୂରରେ ଗ୍ରାମର ବାହାରେ ଗୋଟିଏ ଗିର୍ଜା ଅଛି । ରାମେଶ୍ୱର ଦ୍ୱୀପ ପୂର୍ବକାଳରେ ସିଂହଳଦେଶୀୟ ରାଜାମାନଙ୍କର ଅଧିକୃତ ଥିଲା । ବର୍ତ୍ତମାନ ଏହା ଏବଂ ପାର୍ଶ୍ୱବର୍ତ୍ତୀ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପପୁଞ୍ଜ ମାନ୍ଦ୍ରାଜ ପ୍ରେସିଡେନ୍ସିର ଅନ୍ତର୍ଗତ ରାମନାଦର ରାଜାଙ୍କ ସମ୍ପତ୍ତି । ପାର୍ଶ୍ୱବର୍ତ୍ତୀ ଦ୍ୱୀପମାନଙ୍କରେ ମନୁଷ୍ୟବସତି ନାହିଁ । ରାମେଶ୍ୱରର ଉତ୍ତର ଓ ପୂର୍ବ ଦିଗରେ ବଙ୍ଗୋପସାଗର ବିସ୍ତୃତ । ଭାରତମହାସାଗରର ତରଙ୍ଗମାଳା ଏହାର ଦକ୍ଷିଣ ଦିଗ ବିଧୌତ କରୁଅଛି । ଭାରତମହାସାଗରର ଏହି ଅଂଶକୁ ମାନ୍ନାର ଉପସାଗର କହନ୍ତି । ପଶ୍ଚିମ ଅଢ଼େ ପାମ୍ବାନ ପ୍ରଣାଳୀ । ଦୁଇ ହଜାର ବର୍ଷ ପୂର୍ବେ ପାରସ୍ୟ ଓ ଗ୍ରୀସ ଦେଶର ବଣିକ୍‌ଗଣ ରାମେଶ୍ୱର ମାର୍ଗରେ ଲଙ୍କା ଦ୍ୱୀପକୁ ଗମନାଗମନ କରୁଥିଲେ । ଟିନ୍ନିଭେଲିର ନିକଟରେ କାଲକୋଲାମ୍ ଏବଂ ସିଂହଳର ମାନଟୋଟା ସେମାନଙ୍କର ସର୍ବପ୍ରଧାନ ବାଣିଜ୍ୟ-କେନ୍ଦ୍ର ଥିଲା । ଏମାନଙ୍କର ପଣ୍ୟଦ୍ରବ୍ୟ ମଧ୍ୟରେ ମୟୂରପକ୍ଷୀ, ହସ୍ତିଦନ୍ତ ଏବଂ ନାନାପ୍ରକାର ମସଲା ପ୍ରଧାନ ଥିଲା । ପାରସ୍ୟଦେଶୀୟ ଏକପ୍ରକାର ବୃକ୍ଷ ଅଦ୍ୟାପି ନାନାସ୍ଥାନରେ ବିଦ୍ୟମାନ ଥାଇ ତଦ୍ଦେଶୀୟ ବଣିକ୍‌ମାନଙ୍କର ଆଗମନବାର୍ତ୍ତା ଘୋଷଣା କରୁଅଛି । ପାମ୍ବାନଠାରୁ ରାମେଶ୍ୱର ଯିବାର ସୁପ୍ରଶସ୍ତ ପଥର ପାର୍ଶ୍ୱରେ ସେହି ଜାତୀୟ ଗୋଟିଏ ବୃକ୍ଷ ଦଣ୍ଡାୟମାନ ଅଛି । ଏହି ନାତିଦୀର୍ଘ ବୃକ୍ଷଟିର ମୂଳରୁ ସ୍କନ୍ଧ ପର୍ଯ୍ୟନ୍ତ ଅସ୍ୱାଭାବିକ ମୋଟ ଏବଂ ଦେଖିବାକୁ ଧୂସରବର୍ଣ୍ଣ ପ୍ରସ୍ତରବତ୍ ପ୍ରତୀୟମାନ ହୁଏ । ତାମିଲ ଭାଷାରେ ଏହାକୁ ଯୋଢାମୂଲ କହନ୍ତି । ମାଣ୍ଡାପାମଠାରୁ ଯେଉଁ ଫେରି ଷ୍ଟିମର ପାମ୍ବାନ ଯାତାୟାତ କରେ, ତାହା ବର୍ଷର ଛ ମାସ ଭାରତ ମହାସାଗର ବାଟେ ଓ ଛ ମାସ ବଙ୍ଗୋପସାଗର ବାଟେ ଚଳାଚଳ କରେ । ନଭେମ୍ବରଠାରୁ ଏପ୍ରେଲ ପର୍ଯ୍ୟନ୍ତ ଭାରତ ମହାସାଗର ବେଶ୍ ଶାନ୍ତ ଥାଏ । ସୁତରାଂ ଷ୍ଟିମର ଏହି କେତେକ ମାସ ଏହି ପଥରେ ଚଳେ । ମେ ମାସଠାରୁ ଏହାର ରୁଦ୍ରମୂର୍ତ୍ତି ଆରମ୍ଭ ହୁଏ, ସେତେବେଳେ ବଙ୍ଗୋପସାଗର ପ୍ରଶାନ୍ତ ଭାବ ଧାରଣ କରେ । ସୁତରାଂ ଏହି କେତେକ ମାସ ଷ୍ଟିମରର ଗତି ମଧ୍ୟ ପରିବର୍ତ୍ତିତ ହୋଇଥାଏ । ପାମ୍ବାନଠାରୁ ସପ୍ତାହରେ ଦୁଇ ଥର ଲଙ୍କାଦ୍ୱୀପକୁ ଷ୍ଟିମର ଯାଏ । ଅପରାହ୍ନ ୨ଟା ବେଳେ ରୱାନା ହୋଇ ପରଦିବସ ସକାଳ ୧୦ଟା ସମୟରେ ସିଂହଳରେ ପହଞ୍ଚେ । ଦ୍ୱିତୀୟ ଶ୍ରେଣୀର ଭଡ଼ା ଟ ୧୫ଙ୍କା ଏବଂ ତୃତୀୟ ଶ୍ରେଣୀର ଟ ୭୲ ମାତ୍ର । ଷ୍ଟିମର କୋମ୍ପାନୀର ଏଜେଣ୍ଟ ମିଃ ନାଗଲିଙ୍ଗମ୍ ପିଲେ ଅତିଶୟ ଭଦ୍ରଲୋକ । ସେ ଯାତ୍ରିମାନଙ୍କର ସୁବିଧା ପ୍ରତି ସର୍ବଦା ଦୃଷ୍ଟି ରଖନ୍ତି ।

କ୍ରମଶଃ ।

ଶ୍ରୀ ଅନନ୍ତନାରାୟଣ ସେନ ।



# ସାହିତ୍ୟରେ 'କ୍ଷୁଦ୍ରଗଳ୍ପ' ।

ଉନ୍ନତ ସାହିତ୍ୟସଂସାରରେ 'କ୍ଷୁଦ୍ରଗଳ୍ପ'ର ଆସନ ଉଚ୍ଚ, ଏ କଥା କେହି ଅସ୍ୱୀକାର କରିବେ ନାହିଁ । ନାଟକ, ଉପନ୍ୟାସ, ଓ ଅଧ୍ୟାତ୍ମିକତତ୍ତ୍ୱପୂର୍ଣ୍ଣ ଦାର୍ଶନିକ ପ୍ରବନ୍ଧର ସଙ୍କଳନ ପରି 'କ୍ଷୁଦ୍ରଗଳ୍ପ'ର ରଚନା କଷ୍ଟପ୍ରଦ ନୈପୁଣ୍ୟସାପେକ୍ଷ ଓ କୃତିତ୍ୱର ପରିଚାୟକ । 'କ୍ଷୁଦ୍ରଗଳ୍ପ'କୁ ଅଳୀକ କାହାଣୀ ବୋଲି ହେୟଜ୍ଞାନ କରିବା ନିତାନ୍ତ ଅସଙ୍ଗତ । ଉପନ୍ୟାସ ସହିତ ଏହାକୁ ସମାନ କରିବା ମଧ୍ୟ ଉଚିତ ନୁହେ ।

ମହାକାବ୍ୟ ସହିତ ଚତୁର୍ଦ୍ଦଶପଦୀର ଯେଉଁ ସମ୍ବନ୍ଧ, ଉପନ୍ୟାସ ସହିତ ଏହାର ସେହି ସମ୍ବନ୍ଧ । ଆବେଗପୂର୍ଣ୍ଣ ହୃଦୟର ସାମୟିକ ଗଭୀର ଉଚ୍ଛ୍ୱାସ ଯେପରି କବିତାରେ ପ୍ରତିଫଳିତ ହୋଇଥାଏ, ସେହିପରି ନାନା ବୈଚିତ୍ର୍ୟମୟ ଓ ନାନା ସଂଘାତମୟ ଜୀବନର ଘଣି ଘଣି କ୍ଷୁଦ୍ର କ୍ଷୁଦ୍ର ଘଟଣାମାନଙ୍କର ମନୋହର ଚିତ୍ର 'କ୍ଷୁଦ୍ରଗଳ୍ପ'ର ଅଙ୍ଗୀଭୂତ ଅଟେ ।

ଉପନ୍ୟାସରେ ଯାହା କେତୋଟି ଧାଡ଼ିରେ ସମାପ୍ତ ହୋଇଥାଏ, 'କ୍ଷୁଦ୍ରଗଳ୍ପ'ରେ ତାହା ୫।୭ ପୃଷ୍ଠା ବ୍ୟାପି ରହିଥାଏ । 'କ୍ଷୁଦ୍ରଗଳ୍ପ'କୁ ଉପନ୍ୟାସର ସଂକ୍ଷିପ୍ତସାର ବୋଲି ମନେ କରିବା ଅନୁଚିତ । ବିଭିନ୍ନପ୍ରକାର 'କ୍ଷୁଦ୍ରଗଳ୍ପ' ରଚିତ ହୋଇ ପାରେ, କିନ୍ତୁ ତାହା ସୁଖ-ପାଠ୍ୟ ନୁହେ । ଅନେକଙ୍କର 'କ୍ଷୁଦ୍ରଗଳ୍ପ' କେବଳ 'ଡିଁଥ ଗଛୁ ଗଛ ମାଙ୍କଡ଼'ର ଆକାର ଧାରଣ କରିଥାଏ । କେହି କେହି ମନେ କରନ୍ତି 'କ୍ଷୁଦ୍ର-ଗଳ୍ପ' କେବଳ ଚିତ୍ତରଞ୍ଜନ ଓ ଶ୍ରାନ୍ତିନିବାରଣାର୍ଥ ରଚିତ ହୋଇଥାଏ । ମାତ୍ର ତାହା ଯଥାର୍ଥ ନୁହେ । ପ୍ରକୃଷ୍ଟ ପ୍ରଣାଳୀରେ ରଚିତ ହୋଇଥିଲେ ଏହା ସମୟ ସମୟରେ ମାନବଚରିତ୍ରରେ ଅଦ୍ଭୁତ ପରିବର୍ତ୍ତନ ଘଟାଇ ଦିଏ, ସୁପ୍ତ ପ୍ରାଣରେ ମନ୍ତ୍ରଶକ୍ତି ଭଳି କାର୍ଯ୍ୟ କରେ ଅନ୍ଧକାରରେ ଭ୍ରାନ୍ତ ପଥିକ ମନରେ ଆଶାର ବାଣୀ ଉଦ୍ଦୀପିତ କରି ଦିଏ । କ୍ଷଣକେ ବିଷାଦ, କ୍ଷଣକେ ସୁଖ ଶାନ୍ତିର ଲକ୍ଷଣମାନ ମନୋରାଜ୍ୟରେ ପ୍ରକାଶ କରି ତାହାକୁ ବିଚଳିତ କରି ଦିଏ ।

ଅଡ଼ମ୍ବରପୂର୍ଣ୍ଣ ବର୍ଣ୍ଣନା 'କ୍ଷୁଦ୍ରଗଳ୍ପ'ର ଉପଯୋଗୀ ନୁହେ । ଉପନ୍ୟାସରେ ଯାହା ବିସ୍ତୃତ ବର୍ଣ୍ଣନାସାପେକ୍ଷ, 'କ୍ଷୁଦ୍ରଗଳ୍ପ'ରେ ତାହା କେତୋଟି କଥାରେ ଏପରି ସୁନିପୁଣଭାବରେ ନିବଦ୍ଧ ହେବା ଉଚିତ, ଯାହା ପାଠ କଲେ ଶବ୍ଦ ସଙ୍ଗେ ସଙ୍ଗେ ଯୁଗପତ୍ ନାନାଭାବସଙ୍କୁଳ ହୃଦୟ ହେବ । 'କ୍ଷୁଦ୍ରଗଳ୍ପ'ରେ ଶବ୍ଦବିନ୍ୟାସରେ ମଧ୍ୟ ମହାନୈପୁଣ୍ୟ ପ୍ରକାଶିତ ହେବା ବିଧେୟ । କେତେଗୁଡ଼ିଏ କଥା କେବଳ ଦୁଇଟି ଗୋଟିଏ ଶବ୍ଦରେ ପ୍ରକାଶିତ ହୋଇ ତାହାର ସୌନ୍ଦର୍ଯ୍ୟ ବର୍ଦ୍ଧିତ କରେ ।

ଲେଖକ କେତେବେଳେ ସମ୍ପୂର୍ଣ୍ଣ ଅଜ୍ଞାତ ତୃତୀୟ ପୁରୁଷ ପରି ରହିଥାନ୍ତି, କେତେବେଳେ ବା ଚରିତ୍ର ପୁରୁଷମାନଙ୍କ ମଧ୍ୟରେ ଜଣକର ସ୍ଥାନ ଅଧିକାର କରିଥାନ୍ତି । କଥୋପକଥନଛଳରେ 'କ୍ଷୁଦ୍ରଗଳ୍ପ' ସ୍ଥଳବିଶେଷରେ ରଚିତ ହୋଇଥିବାର ଦେଖାଯାଏ । କିନ୍ତୁ ଏହା ଯେ ସୁନିପୁଣ ଲେଖକର କାର୍ଯ୍ୟ, ଏଥିରେ ସନ୍ଦେହ ନାହିଁ ।

'କ୍ଷୁଦ୍ରଗଳ୍ପ'ରେ ପ୍ରକୃତିର ବର୍ଣ୍ଣନା ଅତି ସଂକ୍ଷିପ୍ତ ହେବା ବାଞ୍ଛନୀୟ । ସାହିତ୍ୟଜଗତରେ ସଂକ୍ଷିପ୍ତତା ଅତି ଆବଶ୍ୟକ, 'କ୍ଷୁଦ୍ରଗଳ୍ପ'ରେ ତାହା ଅତ୍ୟନ୍ତ ଉପାଦେୟ । ବାଜେ କଥା କହି ସ୍ଥାନ ପୂରଣ କରିବା 'କ୍ଷୁଦ୍ରଗଳ୍ପ'ରେ ସର୍ବଥା ଦୂଷଣୀୟ । ଗଳ୍ପଟିକୁ ପୁନଃ ପୁନଃ ଆବୃତ୍ତି କରି ପ୍ରୟୋଜନମତେ ପରିବର୍ତ୍ତନ ଓ ସଂଶୋଧନ କରିବା ବାଞ୍ଛନୀୟ ବୋଲି ବିବେଚିତ ହୋଇଥାଏ । ଅତର୍କିତ ଆରମ୍ଭ ଓ ଆକସ୍ମିକ ପରିସମାପ୍ତି 'କ୍ଷୁଦ୍ରଗଳ୍ପ'ରେ ସୌନ୍ଦର୍ଯ୍ୟର ମାତ୍ରା

ବିଶେଷ ବଢ଼ାଇ ଦିଏ । ସ୍ଥଳରେ ଗଳ୍ପଟି ଏପରି ହେବା ବିଧେୟ ଯେ ପାଠମାତ୍ରକେ ହୃଦୟ ଅପୂର୍ବ ଭାବରସରେ ଆପ୍ଳୁତ ହୋଇଯିବ । ଭାବର ଉଚ୍ଚତା, ଭାଷାର ଲାଳିତ୍ୟ, ରଚନାର ନୈପୁଣ୍ୟର ଏକତ୍ର ସମାବେଶ 'କ୍ଷୁଦ୍ରଗଳ୍ପ'ରେ ରହିବା ଏକାନ୍ତ ଆବଶ୍ୟକ । ଅନ୍ତୁର ମଧ୍ୟ ସାଂସାରିକ ବସ୍ତୁ ବିଷୟର ଅଭିଜ୍ଞତା ଲେଖକଙ୍କର ଥିବା ପ୍ରୟୋଜନୀୟ ।

ପ୍ରକୃତ 'କ୍ଷୁଦ୍ରଗଳ୍ପ'ର ଆଦର୍ଶ ଫରାସିସାହିତ୍ୟରେ ଦୃଷ୍ଟ ହୁଏ । ଇଂରାଜୀ ସାହିତ୍ୟ ମଧ୍ୟ ଏ ବିଷୟରେ ନ୍ୟୂନ ନୁହେ । ବଙ୍ଗସାହିତ୍ୟରେ ଜଣେ ଜଣେ ଖ୍ୟାତନାମା ଲେଖକ ଏ ବିଷୟରେ ହସ୍ତକ୍ଷେପ କରି ସଫଳଯତ୍ନ ହୋଇଅଛନ୍ତି । ବଙ୍ଗୀୟ ମାସିକ ପତ୍ରିକାମାନଙ୍କରେ 'କ୍ଷୁଦ୍ରଗଳ୍ପ'ର ପ୍ରାଚୁର୍ଯ୍ୟ ଲକ୍ଷିତ ହୁଏ । ତନ୍ମଧ୍ୟରୁ ଅନେକ ଉଲ୍ଲାସଯୋଗ୍ୟ ନୁହନ୍ତି । କିନ୍ତୁ ଉତ୍କଳ ସାହିତ୍ୟ, ଅନ୍ୟ ସବୁ ବିଷୟପରି, ଏ ବିଷୟରେ ମଧ୍ୟ ନିତାନ୍ତ ପଶ୍ଚାତ୍ପଦ । କେହି କେହି ଉତ୍କଳସାହିତ୍ୟସେବୀ ଏ ବିଷୟରେ ଅଗ୍ରସର ହେବା ବାଞ୍ଛନୀୟ ।

ଶ୍ରୀ ଚନ୍ଦ୍ରଶେଖର ନନ୍ଦ ।

---

## ଉତ୍କଳ ସାହିତ୍ୟ-ସମାଜ ।

ଆଜକୁ ପ୍ରାୟ ବର୍ଷେ ହେଲା, ଉତ୍କଳ ସାହିତ୍ୟ-ସମାଜ ଓଡ଼ିଶାର ରାଜଧାନୀ ଏହି କଟକ ନଗରୀର ବକ୍ଷସ୍ଥଳରେ ପ୍ରତିଷ୍ଠିତ ହେଲା—୮ ମାସ ଅନ୍ତେ ମହାସମାରୋହରେ ଏହାର ବାର୍ଷିକ ଅଧିବେଶନ-କାର୍ଯ୍ୟ ସମାହିତ ହେଲା— ସମଗ୍ର ଉତ୍କଳଭାଷୀ ପ୍ରଦେଶରୁ ବହୁ ମାନ୍ୟଗଣ୍ୟ ପ୍ରତିନିଧି ଏହି ଅଧିବେଶନରେ ଉପସ୍ଥିତ ହୋଇ ଖୁବ୍ ଅନୁରାଗ ଓ ଉତ୍ସାହର ପରିଚୟ ପ୍ରଦାନ କଲେ— ମନେ ହେଲା, ସାହିତ୍ୟର ଦୁର୍ଦ୍ଦଶା ଅଚିରେ ଦୂର ହେବ —ଉତ୍କଳର ସାହିତ୍ୟରାଜ୍ୟରେ ନବ ଯୁଗର ସୂତ୍ରପାତ ହେବ । ମାତ୍ର ଦେଖୁ ଦେଖୁ ପୁଣି ୮ଟି ମାସ ଅତୀତ ହୋଇଗଲା, ଏପର୍ଯ୍ୟନ୍ତ କାର୍ଯ୍ୟ ସଙ୍ଗେ କିଛି ସମ୍ପର୍କ ଦେଖାଗଲା ନାହିଁ । ଏହାର ସଭ୍ୟ ସଂଖ୍ୟା ଏପର୍ଯ୍ୟନ୍ତ ଦୁଇ ଶତରୁ ଅଧିକ ହୋଇଛି, ୨୫ । ୩୦ ଜଣ ମାନ୍ୟଗଣ୍ୟ ବ୍ୟକ୍ତି ବିଶିଷ୍ଟ ସଭ୍ୟ-ରୂପେ ମନୋନୀତ ହୋଇଅଛନ୍ତି ଏବଂ ୪୦ ଜଣ ଖ୍ୟାତନାମା ଓ ସୁପ୍ରତିଷ୍ଠିତଯଶା ବ୍ୟକ୍ତି ଅଭିଭାବକ ପଦରେ ବରିତ ହୋଇଅଛନ୍ତି । ସଭ୍ୟସଂଖ୍ୟା କ୍ରମଶଃ ବର୍ଦ୍ଧିତ ହେଉଅଛି—ଅଳ୍ପ କାଳ ମଧ୍ୟରେ ପାଞ୍ଚ ସାତ ଶ ହେବା ଖୁବ୍ ସମ୍ଭବ । ଏ ଅବସ୍ଥାରେ ସମାଜର କାର୍ଯ୍ୟ ସୁଚାରୁରୂପେ ଚଳୁ ନାହିଁ କାହିଁକି ? ସୁଚାରୁରୂପେ ଚଳିବା କଥା କଣ, କାର୍ଯ୍ୟ ବା କଣ ହୋଇଅଛି ? କାର୍ଯ୍ୟ ନାମରେ କେବଳ ଥର କେତେକ ବାକ୍ୟବ୍ୟୟ ! ମୂଲ୍ୟ ଥାଉ ବା ନ ଥାଉ, ବାକ୍ୟ ବ୍ୟୟ କରିବାକୁ କେହି କେବେ ପଶ୍ଚାତ୍ପଦ ନୁହନ୍ତି— ହେବେ ନାହିଁ । ବାକ୍ୟ ଯେ ସବୁବେଳେ ଓ ସବୁ ସ୍ଥାନରେ ମୂଲ୍ୟହୀନ, ଏହା ଆମ୍ଭେମାନେ କହୁ ନାହୁଁ —କେବଳ ତାହାର ପଶ୍ଚାଦ୍ଦେଶରେ ଜୀବନ ଥିବା ପ୍ରୟୋଜନ । ନଚେତ୍ ତାହା ଫନୋଗ୍ରାଫ ଯନ୍ତ୍ରପରି କ୍ଷଣିକ ଅବସରବିନୋଦନର ଉପାଦାନ ମାତ୍ର—କୌଣସି କାଳେ ତାହା କିଛି ଫଳ ପ୍ରସବ କରିବ ନାହିଁ । ଫଳ କଥା, କିଛି ଗୋଟାଏ କରିବାକୁ ହେବ, ଏପରି ଗୋଟିଏ ଅସ୍ଫୁଟ ଭାବ ଆମ୍ଭମାନଙ୍କ ମଧ୍ୟରେ ଜନ୍ମିଅଛି ଏବଂ ତାହାର ଚଳଚଳ ଗତି ଅତ୍ରେ ଦୃଷ୍ଟିଗୋଚର ହେଉଅଛି । ମାତ୍ର ଲକ୍ଷର ସୁନିର୍ଦ୍ଦିଷ୍ଟ ଧାରଣା ନାହିଁ ଏବଂ କାର୍ଯ୍ୟପ୍ରଣାଳୀ ସୁନିର୍ଦ୍ଧିଷ୍ଟ ହୋଇ ନାହିଁ । ଏତେକ ହେଲେ ଆମ୍ଭେମାନେ ଧୀରେ ଧୀରେ ଜୀବନପଥରେ ଅଗ୍ରସର ହେବୁ ଏଥିରେ କିଛି ସଂଶୟ ନାହିଁ । ଆମ୍ଭେମାନେ ଆଜ

ସାହିତ୍ୟ-ସମାଜର କାର୍ଯ୍ୟ ସମ୍ପର୍କରେ ଦୁଇ ଚାରି କଥା କହିବାକୁ ମନ ବଳାଉଅଛୁଁ ।

ପ୍ରଥମ କଥା, ଯେଉଁ ଅସ୍ପଷ୍ଟ ଭାବ ଜାଗ୍ରତ ହୋଇଅଛି ତାହା କପରି ସୁସ୍ପଷ୍ଟ ହେବ ଏବଂ ସମଗ୍ର ଜାତିଟା ମଧ୍ୟରେ ପରିବ୍ୟାପ୍ତ ହେବ, ତାହାର ଉପାୟ ବିଧାନ କରିବାକୁ ହେବ । ଏଥିପାଇଁ ସାହିତ୍ୟାନୁରାଗୀ ବ୍ୟକ୍ତିମାନଙ୍କ ମଧ୍ୟରେ ପରସ୍ପର ସମ୍ମିଳନ ଓ ନାନାବିଷୟକ ଆଲୋଚନାର ଗୋଟିଏ କେନ୍ଦ୍ର ସ୍ଥିର ହେବା ବାଞ୍ଛନୀୟ । କଟକ ନଗରୀରେ ସାହିତ୍ୟ-ସମାଜର କାର୍ଯ୍ୟାଳୟ ଏହି କେନ୍ଦ୍ରସ୍ଥଳୀସ୍ୱରୂପ ନିରୂପିତ ହେଉ । ପ୍ରତିଦିନ ପ୍ରୟୋଜନୀୟ କାର୍ଯ୍ୟନିର୍ବାହ ନିମିତ୍ତ ନିରୂପିତ ସମୟରେ ଏହାର ଦ୍ୱାର ଉନ୍ମୁକ୍ତ ରହିବ ଏବଂ ସେହି ସମୟରେ ଯେ ଇଚ୍ଛା କରିବେ ସେଠାରେ ସମ୍ମିଳିତ ହୋଇ ପାରିବେ । ଏପରି ମିଳନ ହେଲେ ଅନିର୍ଦ୍ଦିଷ୍ଟରୂପେ ହେଉ ପଛକେ ନାନା ପ୍ରସଙ୍ଗର ଅବତାରଣା ସ୍ୱତଃ ଉପସ୍ଥିତ ହେବ । ଅନେକ ବିଷୟରେ ଆମ୍ଭେମାନେ ପରସ୍ପରଙ୍କୁ ଜାଣୁ ନାହିଁ —କେତେ କେତେ ଲୋକଙ୍କ ସମ୍ବନ୍ଧରେ ବା ବିଷୟ ସମ୍ବନ୍ଧରେ ଭ୍ରାନ୍ତ ଧାରଣାମାନ ପୋଷଣ କରି ରହିଅଛୁଁ । ଆଳାପ ପ୍ରସଙ୍ଗଦ୍ୱାରା ସେସବୁ ଦୂରୀଭୂତ ହୋଇ ପାରିବ । ଭାବର ଆଦାନପ୍ରଦାନ ଦ୍ୱାରା ପରସ୍ପର ମଧ୍ୟରେ ନୂତନ ଚିନ୍ତାସ୍ରୋତ ପ୍ରବାହିତ ହେବ ଏବଂ କେତେ ନୂତନ କାର୍ଯ୍ୟର ମଧ୍ୟ ସୂତ୍ରପାତ ହେବ । ଚିନ୍ତା ଉଚ୍ଚ ସାହିତ୍ୟର ପ୍ରାଣ—ଆଲୋଚନା ଚିନ୍ତାର ଦ୍ୱାର ଫିଟାଇ ଦିଏ ଏବଂ ତାହାକୁ ସୁମାର୍ଗରେ ଚାଳିତ କରେ ।

ଦ୍ୱିତୀୟ କଥା, ଏହି କାର୍ଯ୍ୟାଳୟରେ ଗୋଟିଏ ପୁସ୍ତକାଳୟ ଓ ପାଠାଗାର ସଂସ୍ଥାପିତ ହେଉ । ପ୍ରାଚୀନ ଓଡ଼ିଆ ଗ୍ରନ୍ଥ ସଂଗ୍ରହ କରିବା ସାହିତ୍ୟ-ସମାଜର କାର୍ଯ୍ୟର ଗୋଟିଏ ଅଙ୍ଗରୂପେ ପୂର୍ବରୁ ନିରୂପିତ ଅଛି । ଆମ୍ଭେମାନେ କହୁଁ, ତାହାର ସୀମା ଆଉ କିଛି ବଢ଼ାଇ ଦିଆ ଯାଉ । ପ୍ରାଚୀନ ଗ୍ରନ୍ଥ ସଙ୍ଗେ ସଙ୍ଗେ ପ୍ରକାଶିତ ଉପଯୁକ୍ତ ଓଡ଼ିଆ ପୁସ୍ତକମାନ ମଧ୍ୟ ଏଠାରେ ରଖାଯାଉ ଏବଂ ଅନ୍ୟାନ୍ୟ ଭାଷାର ଉଚ୍ଚଶ୍ରେଣୀର କେତେଗୁଡ଼ିଏ ପୁସ୍ତକ ଏବଂ ପତ୍ରିକାଦି କ୍ରୟ କରିବାର ବ୍ୟବସ୍ଥା ହେଉ । ଯେ କେହି ଇଚ୍ଛା କଲେ ଏଠାରେ ନିରୂପିତ ସମୟରେ ପୁସ୍ତକାଦି ପାଠ କରି ପାରିବେ ଏବଂ ନିର୍ଦ୍ଦିଷ୍ଟ ପରିମାଣରେ ଅର୍ଥ ଜମା ଦେଲେ ପୁସ୍ତକାଦି ଗୃହକୁ ନେଇ ପାରିବେ ।

ତୃତୀୟ କଥା, ଉତ୍କଳଖଣ୍ଡରେ ନାନାସ୍ଥାନରେ ଯେତେଗୁଡ଼ିଏ ସାହିତ୍ୟିକ ସଭା ସମିତି ଅଛି, ସବୁଗୁଡ଼ିକ ସାହିତ୍ୟସମାଜର ଅଙ୍ଗୀଭୂତ ହେଉ ଏବଂ ଯେଉଁ ସ୍ଥାନମାନଙ୍କରେ ଏପରି ସଭା ସମିତି ନାହିଁ ସେ ସ୍ଥାନମାନଙ୍କରେ ତାହା ସ୍ଥାପନର ବ୍ୟବସ୍ଥା କରାଯାଉ । ପ୍ରାୟ ପ୍ରତି ପ୍ରଧାନ ସ୍ଥାନରେ ସାହିତ୍ୟସମାଜର ସଭ୍ୟ ରହିଅଛନ୍ତି । ସେମାନେ ଯତ୍ନ କଲେ ଏ କାର୍ଯ୍ୟ ସହଜରେ ସମ୍ପନ୍ନ ହୋଇ ପାରିବ । ପ୍ରୟୋଜନ ହେଲେ ଏହି କାର୍ଯ୍ୟସାଧନ ନିମିତ୍ତ ସାହିତ୍ୟସମାଜ ନାନାସ୍ଥାନକୁ ପ୍ରତିନିଧି ପ୍ରେରଣ କରିବାର ବ୍ୟବସ୍ଥା କରନ୍ତୁ । ଆମ୍ଭମାନଙ୍କ ମତରେ ଏପ୍ରକାର ସଭାଗୁଡ଼ିକ ସାଧନକ୍ଷେତ୍ର ସ୍ୱରୂପ ସ୍ଥାପିତ ହେବା ଆବଶ୍ୟକ—ସ୍ଥାନୀୟ ପ୍ରୟୋଜନ ସେମାନେ ସାଧନ କରିବେ; ପ୍ରଶସ୍ତ କାର୍ଯ୍ୟକ୍ଷେତ୍ର ମୂଳସଭା । ଏଥିରେ ବ୍ୟକ୍ତିଗତ ବା ଦଳଗତ ପ୍ରାଧାନ୍ୟ ବା ସ୍ୱାତନ୍ତ୍ର୍ୟ କୌଣସି ପ୍ରକାରେ ସ୍ଥାନ ପାଇବା ବାଞ୍ଛନୀୟ ନୁହେ । ସର୍ବସାଧାରଣଙ୍କ ସ୍ୱାର୍ଥ ଏକସ୍ଥାନରେ କେନ୍ଦ୍ରୀଭୂତ ନ ହେଲେ, ବୃହତ୍ତର ନିକଟରେ କ୍ଷୁଦ୍ରତରକୁ ବିସର୍ଜନ ନ କଲେ ଜାତୀୟ କୌଣସି ବୃହତ୍ ଅନୁଷ୍ଠାନ ସଫଳ ହୋଇ ନ ପାରେ । ସେ ଯାହାହେଉ, ପ୍ରତ୍ୟେକ ଶାଖାସମିତିରେ ପ୍ରଥମୋକ୍ତ ବିଧି ପ୍ରତିପାଳିତ ହେଉ ଏବଂ ସ୍ୱଳ୍ପ ସୀମା ମଧ୍ୟରେ ପୁସ୍ତକାଦି ସଂଗୃହୀତ ହୋଇ ଗୋଟିଏ ପାଠାଗାର ସଂସ୍ଥାପିତ ହେଉ । ପ୍ରୟୋଜନ ହେଲେ କୌଣସି ଦୁଷ୍ପ୍ରାପ୍ୟ ପୁସ୍ତକ କେତେକାଳପାଇଁ ମୂଳସଭାରୁ ଶାଖାସଭାର ବ୍ୟବହାର ପାଇଁ ଦିଆ ଯାଇପାରେ ।

ଚତୁର୍ଥ କଥା, ଉପଯୁକ୍ତ ଓଡ଼ିଆ ପୁସ୍ତକମାନଙ୍କର ଆଦର ଓ ପ୍ରଚାର ବଢ଼ାଇବା ନିମିତ୍ତ ସାହିତ୍ୟସମାଜ ବିହିତ ଉପାୟ ଅବଲମ୍ବନ କରନ୍ତୁ । ଏହା ଅବଶ୍ୟ ବଡ଼ କଠିନ ବ୍ୟାପାର । ଆମ୍ଭମାନଙ୍କ ମତରେ ନବପ୍ରକାଶିତ ପୁସ୍ତକମାନଙ୍କର ନିରପେକ୍ଷ ସମାଲୋଚନାର ଭାର ସାହିତ୍ୟ-ସମାଜ ଗ୍ରହଣ କଲେ ବିଶେଷ ଶୁଭଫଳର ଆଶା କରାଯାଇପାରେ । ଏ ସମ୍ବନ୍ଧରେ ସବିଶେଷ ଆଲୋଚନାର ସ୍ଥଳ ଏ ନୁହେ । ଆମ୍ଭେମାନେ ଦୁଇଟି ଗୋଟିଏ ସଙ୍କେତ ଦେଇ କ୍ଷାନ୍ତ ହେବୁଁ । ଓଡ଼ିଆ ସାହିତ୍ୟର ଗତି ଯେପରି ଚାଲୁଅଛି, ସେଥିରେ ତାହାର 'ମାବାପ' କେହି ଥିଲାପରି ଜଣା ପଡ଼ୁନାହିଁ । ଏଦେଶରେ ଦାନ ସମ୍ବନ୍ଧରେ ଯେପରି ଅବିଚାର, ପ୍ରଶଂସାପକ୍ଷ ସମ୍ବନ୍ଧରେ ମଧ୍ୟ ସେହିପରି ଅବିଚାର । କଷ୍ଟ ସ୍ୱୀକାର କରି ପ୍ରକୃତ ଦୋଷଗୁଣ ବିଚାର କରିବାର ପ୍ରବୃତ୍ତି ନାହିଁ । ବ୍ୟକ୍ତିଗତ ଭାବରେ କେହି କିଛି କହିଲେ ବା କଲେ ତାହାର ଗୁରୁତ୍ୱ ମଧ୍ୟ ସମ୍ୟକ୍‌ରୂପେ ଅନୁଭୂତ ହେଉନାହିଁ । ସାହିତ୍ୟସମାଜ କେତେ ଜଣ ଚିନ୍ତାଶୀଳ ନିରପେକ୍ଷ ବ୍ୟକ୍ତିଙ୍କ ହସ୍ତରେ ସମାଲୋଚନା ଭାର ଅର୍ପଣ କରନ୍ତୁ । ସେମାନେ ଏକପକ୍ଷରେ ତୀବ୍ର ସମାଲୋଚନାଦ୍ୱାରା ସାହିତ୍ୟ-କ୍ଷେତ୍ରରୁ ଆବର୍ଜନା ଦୂର କରିବେ, ଅନ୍ୟ ପକ୍ଷରେ ଉପଯୁକ୍ତ ଲେଖକମାନଙ୍କର ଉତ୍ସାହପ୍ରାପ୍ତିର ପଥ ସୁଗମ କରି ଦେବେ । ଏଥିରେ ଲେଖକ ପାଠକ ଉଭୟ ଶ୍ରେଣୀର ପ୍ରଭୂତ ଉପକାର ସାଧିତ ହେବ । ଆଉ ଗୋଟିଏ କଥା । ବର୍ତ୍ତମାନ ଯେକେତେ ଜଣ ଧନଶାଳୀ ବ୍ୟକ୍ତି ସମୟ ସମୟରେ ଗ୍ରନ୍ଥକାର-ମାନଙ୍କ ପ୍ରତି ଆନୁକୂଲ୍ୟ ପ୍ରକାଶ କରିଥାନ୍ତି, ସେମାନେ ସ୍ୱତନ୍ତ୍ର ଭାବରେ ତାହା ନ କରି ସମାଜ ଉପରେ ସେ ଭାର ନ୍ୟସ୍ତ କରନ୍ତୁ । ତଦ୍ଦ୍ୱାରା ସୁଶୃଙ୍ଖଳ ଭାବରେ ଓ ଯଥାନିୟମରେ କାର୍ଯ୍ୟ ସମ୍ପନ୍ନ ହୋଇ ପାରିବ । ଅବଶ୍ୟ ବିଶେଷ ସ୍ଥଳରେ ବିଶେଷ ବିଧି ପ୍ରଯୁକ୍ତ ହୋଇ ପାରେ । ସେଥିରେ କାହାରି କିଛି ଆପତ୍ତି ନାହିଁ । ଏପ୍ରକାର ଉତ୍ସାହଦାତାଙ୍କ ସଂଖ୍ୟା ବୃଦ୍ଧି କରିବା ପାଇଁ ମଧ୍ୟ ବିଶେଷ ଯତ୍ନର ପ୍ରୟୋଜନ ।

ପଞ୍ଚମ କଥା, ଓଡ଼ିଆ ସାହିତ୍ୟର ଖଣ୍ଡିଏ ପୂର୍ଣ୍ଣାଙ୍ଗ ଇତିହାସ ସଙ୍କଳନ କରିବାର ବ୍ୟବସ୍ଥା କରାଯାଉ । ଏହି କାର୍ଯ୍ୟ ସାଧନ ନିମିତ୍ତ କୌଣସି ସୁଯୋଗ୍ୟ ବ୍ୟକ୍ତିଙ୍କ କର୍ତ୍ତୃତ୍ୱାଧୀନରେ ଜଣେ ଉଦ୍ୟମଶୀଳ ଉତ୍ସାହୀ ଓ ବୁଦ୍ଧିମାନ୍ ଯୁବକଙ୍କୁ ଉପଯୁକ୍ତ ବେତନରେ ନିଯୁକ୍ତ କରିବା ଆବଶ୍ୟକ । ସେ ବ୍ୟକ୍ତି ନାନା ସ୍ଥାନ ଭ୍ରମଣ କରି ପ୍ରୟୋଜନୀୟ ଉପାଦାନମାନ ସଂଗ୍ରହ କରିବେ ଏବଂ ପ୍ରଥମୋକ୍ତ ବ୍ୟକ୍ତିଙ୍କ ସହକାରୀ ସ୍ୱରୂପ କାର୍ଯ୍ୟ କରିବେ । ଏ କାର୍ଯ୍ୟରେ ଜଣେ ଅଧେ ବ୍ୟକ୍ତିଙ୍କ ଉପରେ ସବୁ ଭାର ଲଦି ଦେଇ ନିଶ୍ଚିନ୍ତ ରହିଲେ ଚଳିବ ନାହିଁ । ପ୍ରବୀଣ ସାହିତ୍ୟସେବୀମାନେ ଅବସର-କ୍ରମେ ତାଙ୍କୁ ପରାମର୍ଶ ଦେବେ ଏବଂ ତାଙ୍କର କାର୍ଯ୍ୟ ପର୍ଯ୍ୟବେକ୍ଷଣ କରିବେ । ପୁଣି ବିଭିନ୍ନ ଅଂଶମାନ ସମୟ ସମୟରେ ସାହିତ୍ୟ-ସମାଜର ଅଧିବେଶନରେ ଆଲୋଚିତ ହେଉଥିବ । ଏପରି ହେଲେ ସଙ୍କଳିତ ପୁସ୍ତକ ଖଣ୍ଡି ଯଥାସମ୍ଭବ ଭ୍ରମ-ପ୍ରମାଦଶୂନ୍ୟ ହୋଇ ପାରିବ । ଏପର୍ଯ୍ୟନ୍ତ ଯେଉଁ-ମାନେ ଏ ବିଭାଗରେ ଖଣ୍ଡଶଃ କିଛି କିଛି ସଂଗ୍ରହ କରିଅଛନ୍ତି ବା କରୁଅଛନ୍ତି ସେମାନଙ୍କଠାରୁ ଯଥେଷ୍ଟ ସାହାଯ୍ୟ ପାଇବାର ସମ୍ପୂର୍ଣ୍ଣ ଆଶା କରା ଯାଇ ପାରେ ।

ବସ୍ତୁତଃ, ବିଶୁଦ୍ଧ ଓଡ଼ିଆ ଶବ୍ଦକୋଷ ସଙ୍କଳନ ବିଷୟରେ ସମାଜ ଯେଉଁ ଉପାୟ ଅବଲମ୍ବନ କରିଅଛନ୍ତି, ତାହା ଅଦ୍ୟାବଧି ପ୍ରକାଶିତ କାର୍ଯ୍ୟ-ନିର୍ବାହକ ସମିତିର କାର୍ଯ୍ୟବିବରଣରୁ ପାଠକ-ମାନେ ବୁଝି ପାରିବେ । ତାହା ଉପଯୁକ୍ତ ହୋଇ ଅଛି । ଏ ବିଷୟରେ ବିଭିନ୍ନ ଅଞ୍ଚଳର ଯୋଗ୍ୟ ବ୍ୟକ୍ତିମାନଙ୍କର ସାହାଯ୍ୟ ଲୋଡ଼ିବା ନିତାନ୍ତ ଆବଶ୍ୟକ । ଜାତୀୟ ବିଚ୍ଛିନ୍ନତା ଯୋଗୁଁ ଭାଷାର ସମ୍ପତ୍ତି ମଧ୍ୟ କେତେକ ପରିମାଣରେ ବିଭକ୍ତ

ହୋଇ ଯାଇଅଛି । ପୁଣି ବିଭିନ୍ନ ସ୍ଥାନରେ ନୂତନ ଶବ୍ଦ ମଧ୍ୟ ସଂଗୃହୀତ ହୋଇଅଛି । ସବୁଗୁଡ଼ିକ ଏକତ୍ରାବସ୍ଥିତ ନ ହେବାଯାଏ ଶବ୍ଦକୋଷ ପୂର୍ଣ୍ଣାଙ୍ଗ ହୋଇ ପାରିବ ନାହିଁ । ଏ କାର୍ଯ୍ୟରେ ଉଦ୍‌ଯୋଗିମାନଙ୍କର ବିଶେଷ ନୈପୁଣ୍ୟ ଏବଂ ବହୁ ବ୍ୟକ୍ତିଙ୍କର ସହଯୋଗିତା ନିତାନ୍ତ ଅବଶ୍ୟକ । ସଂଗୃହୀତ ଶବ୍ଦାବଳୀ ସମୟ ସମୟରେ ସମାଜର ଅଧିବେଶନମାନଙ୍କରେ ଆଲୋଚିତ ହେଉଥିଲେ ଭ୍ରମ ପ୍ରମାଦ ଦୂରୀଭୂତ ହେଉଥିବ ଏବଂ ନୂତନ କଥାମାନ ସଂଯୋଜିତ ହେଉଥିବ ।

ଆମ୍ଭେମାନେ ଠିକ୍ ଠିକ୍ ପ୍ରଧାନ କେତୋଟି କଥାର ଉଲ୍ଲେଖ କଲୁଁ । ଏଥିରୁ କୌଣସିଟି ଦିନେ ଅଧେ ବା ବର୍ଷେ ଛ ମାସରେ ସୁସମ୍ପନ୍ନ ହୋଇଯିବ, ଏପରି ମନେ କରିବା ଉଚିତ ନୁହେ । ଏହି ପ୍ରଣାଳୀରେ କାର୍ଯ୍ୟାରମ୍ଭ ହେଲେ କ୍ଷେତ୍ର ପ୍ରସ୍ତୁତ ଓ ପ୍ରସାରିତ ହେବ । ମାସିକ ଅଧିବେଶନ ପାଇଁ ଗୋଟିଏ ପ୍ରବନ୍ଧର ଆୟୋଜନ କରିବା ନିମନ୍ତେ ବର୍ତ୍ତମାନ ଯେପରି ଉଦ୍ବିଗ୍ନ ହେବାକୁ ପଡୁଅଛି, ଆଉ ତାହା ହେବ ନାହିଁ । ଆଲୋଚନାର ଯୋଗ୍ୟ ବହୁ ବିଷୟ ସ୍ୱତଃ ସମ୍ମୁଖରେ ଉପସ୍ଥିତ ହେବ ।

ବର୍ତ୍ତମାନ ଦୁଇଟି ପ୍ରଧାନ ପ୍ରଶ୍ନ ଉତ୍ଥାପିତ ହୋଇପାରେ । ଏ କାର୍ଯ୍ୟଗୁଡ଼ିକ କରିବାକୁ ହେଲେ ଧନବଳ ଓ ଜନବଳ ଉଭୟର ପ୍ରୟୋଜନ । ତାହା ଆସିବ କାହୁଁ ? ଏତେ କାର୍ଯ୍ୟ କରିବ କିଏ ? ଏତେ ଅର୍ଥ ଦେବ କିଏ ? ଆମ୍ଭେମାନେ କହୁଁ, ସବୁ ଆମ୍ଭମାନଙ୍କ ଭିତରେ ଅଛି, କେବଳ ମନଟାକୁ ପ୍ରସ୍ତୁତ କରି ଦୃଢ଼ପ୍ରତିଜ୍ଞ ହୋଇ ଛିଡ଼ା ହେଲେ ହେଲା । ଜନବଳ ସମ୍ବନ୍ଧରେ ବକ୍ତବ୍ୟ ଏହି ଯେ ଯେଉଁମାନେ ଦେଶର ସାହିତ୍ୟସେବକ ବୋଲି ଆତ୍ମପରିଚୟ ଦେଇଅଛନ୍ତି ବା ଦେବାକୁ ଇଚ୍ଛୁକ, ସେମାନେ ଧର୍ମତଃ ନ୍ୟାୟତଃ ଏଥିପାଇଁ ଉପଯୁକ୍ତରୂପେ ଶକ୍ତି ଓ ସମୟ ବ୍ୟୟ କରିବାକୁ ବାଧ୍ୟ । ପାଞ୍ଚଟା କର୍ତ୍ତବ୍ୟ ମଧ୍ୟରେ ଏହା ସେମାନଙ୍କର ଗୋଟିଏ ପ୍ରଧାନ ଦୈନିକ କର୍ତ୍ତବ୍ୟସ୍ୱରୂପ ଗଣ୍ୟ ହେବା ନିତାନ୍ତ ଅବଶ୍ୟକ । ଲୋକ କେବେ ଆସମାନରୁ ଛିଣ୍ଡି ପଡ଼ନ୍ତି ନାହିଁ । କାର୍ଯ୍ୟକ୍ଷେତ୍ରରେ ଗଢ଼ି ପିଟି ହୋଇ ପ୍ରସ୍ତୁତ ହୁଅନ୍ତି । ଏତେ ଲୋକଟା ମଧ୍ୟରେ ନିରକ୍ଷର-ଗଣନା ପରିତ୍ୟାଗ କରି ହୃଦୟକୁ ପ୍ରସ୍ତୁତ କରି କାର୍ଯ୍ୟକ୍ଷେତ୍ରରେ ଛିଡ଼ା ହେବା ଭଳି ପଚାଶ ତିରିଶ ଜଣ ଲୋକ ବାହାରିବେ ନାହିଁ ? ତେବେ ଭୂମିର ଜାତି ଓ ଜାତୀୟତା କେଉଁଠାରେ ? ଦ୍ୱିତୀୟ କଥା ଧନ । ଏହି ସାମାନ୍ୟ କାର୍ଯ୍ୟପାଇଁ ଉତ୍କଳରେ ଧନ ନାହିଁ ? କେତେଅଡ଼େ କେତେ ବାଟରେ ଆମ୍ଭମାନଙ୍କର ଧନ ବ୍ୟୟ ହେଉଅଛି, ତାହାର କିଛି ହିସାବ ରଖିଥାଉଁ କି ? ଉତ୍କଳଖଣ୍ଡର ବର୍ତ୍ତମାନ ଶିକ୍ଷିତ ସଂଖ୍ୟା ବିଚାର କଲେ ଅନ୍ତତଃ ହଜାରେ କି ଦେଢ଼ ହଜାର ଲୋକ ସାହିତ୍ୟ-ସମାଜର ସଭ୍ୟ-ଶ୍ରେଣୀଭୁକ୍ତ ହୋଇ ପାରିବେ ନାହିଁ ? ଶିକ୍ଷିତଗଣ ସ୍ୱତଃପ୍ରବୃତ୍ତ ହୋଇ ଏହାର ସଭ୍ୟ ନ ହେବେ କାହିଁକି ? ଏଟା କଣ କାହାର ଘରର କାର୍ଯ୍ୟ ଯେ ଏଥିରେ ମାନାପମାନ ବିଚାର କରିବାକୁ ହେବ ? ପ୍ରତ୍ୟେକ ସଭ୍ୟ ଆପଣାର ବନ୍ଧୁମାନଙ୍କୁ ସଭ୍ୟ ଶ୍ରେଣୀଭୁକ୍ତ କରିବାକୁ ଚେଷ୍ଟା ନ କରିବେ କାହିଁକି ? ଏହି ଉପାୟରେ ବର୍ଷରେ ନ୍ୟୂନ-ପକ୍ଷରେ ହଜାରେ କି ଦେଢ଼ ହଜାର ଟଙ୍କା ଅନାୟାସେ ଆଦାୟ ହୋଇ ପାରେ । ତହିଁ ଉପରେ ପୁଣି ସମାଜର ଅଭିଭାବକ ଓ ବିଶିଷ୍ଟସଭ୍ୟ ଅଛନ୍ତି । ଯେଉଁ ସବୁ କାର୍ଯ୍ୟବିଭାଗ କଳ୍ପନା କରାଯାଇଅଛି, ସେଗୁଡ଼ିକ ଏପରି କି ଗୁରୁତର କଥା ? ଅଭିଭାବକମାନଙ୍କ ମଧ୍ୟରୁ ଜଣେ ଜଣେ ଇଚ୍ଛା କଲେ ଗୋଟିଏ ଗୋଟିଏ ବିଭାଗ ଅବୋରି ନେଇ ପାରନ୍ତି—ସେଥିପାଇଁ ଅନ୍ୟର ମୁଖାପେକ୍ଷା କରିବାକୁ ହେବ ନାହିଁ । ଏହା ଯଦି ନ ହୁଏ ବା ହେବା ଅସମ୍ଭବ ବୋଲି ବିବେଚିତ ହୁଏ, ତେବେ ଆଉ ବୃଥା ଆଡ଼ମ୍ବର, ଆସ୍ଫାଳନ କାହିଁକି ? ନିରର୍ଥକ କଳ୍ପନା ଜଳ୍ପନାରେ କାରଣ କଣ ? କଳଙ୍କ ଉପରେ କଳଙ୍କ ଗଦା କରିବାର ଫଳ କଣ ?

## ସାହାଯ୍ୟ ପ୍ରାପ୍ତି ।

—:o:—

ଉତ୍କଳସାହିତ୍ୟର ପାଠକମାନେ ଅବଗତ ଅଛନ୍ତି ଯେ ପାରଳାଖେମିଣ୍ଡିର ପରଲୋକଗତ ରାଜକୁମାର ଶ୍ରୀ ପଦ୍ମନାଭ ନାରାୟଣ ଦେବ ମହୋଦୟ ଏହି ପତ୍ରିକାର ପରମହିତୈଷୀ ବନ୍ଧୁ ଓ ଜଣେ ପ୍ରଧାନ ପୃଷ୍ଠପୋଷକ ଥିଲେ । ପତ୍ରିକାର ଜନ୍ମଠାରୁ ସେ ଦୁଇ ଖଣ୍ଡ ପତ୍ରିକାର ମୂଲ୍ୟ ଟ ୪୲ ସାହାଯ୍ୟସ୍ୱରୂପ ଟ ୨୫୲ ହିସାବରେ ବାର୍ଷିକ ଦେଇ ଆସୁଥିଲେ । ବିଗତ ବର୍ଷରେ ରାଜସଂସ୍କରଣର ପ୍ରସ୍ତାବ ହେବା ମାତ୍ରକେ ସାହାଯ୍ୟପରିମାଣ ଟ ୫୦୲ ନିର୍ଦ୍ଦେଶ କରି ଦେଇଥିଲେ ଏବଂ ଯଥାସମୟରେ ସପ୍ତମ ବର୍ଷର ସାହାଯ୍ୟ ପ୍ରେରଣ କରିଥିଲେ । ବର୍ତ୍ତମାନ ତାଙ୍କର ଜ୍ୟେଷ୍ଠ ଭ୍ରାତା ପାରଳାଖେମିଣ୍ଡିର ମାନନୀୟ ରାଜା ମହୋଦୟ ସମସ୍ତ ତଥ୍ୟ ଅନୁସନ୍ଧାନ କରି ରାଜକୁମାର ମହୋଦୟଙ୍କ ନିରୂପିତ ବାର୍ଷିକ ସାହାଯ୍ୟ ଟ ୫୦୲ ସ୍ଥିର ରଖିଅଛନ୍ତି ଏବଂ ଅଷ୍ଟମ ବର୍ଷନିମିତ୍ତ ଟ ୫୦୲ ଆମ୍ଭମାନଙ୍କ ନିକଟକୁ ପଠାଇ ଦେଇଅଛନ୍ତି । ଆମ୍ଭେମାନେ ରାଜା ମହୋଦୟଙ୍କର ଏହି ଅଯାଚିତ ଅନୁଗ୍ରହନିମିତ୍ତ ତାଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ଜଣାଉଅଛୁଁ । ଆମ୍ଭେମାନେ ଶୁଣି ଖୁସୀ ହେଲୁଁ ଯେ ସାଧାରଣ ହିତକର କାର୍ଯ୍ୟମାନଙ୍କରେ ରାଜକୁମାର ମହୋଦୟଙ୍କର ନିୟମିତ ଦାନଗୁଡ଼ିକ ରାଜା ମହୋଦୟ ଅକ୍ଷୁଣ୍ଣ ରଖିଅଛନ୍ତି ଏବଂ ତାଙ୍କର ବ୍ୟକ୍ତିଗତ ନିୟମିତ ଦାନମାନ ତାଙ୍କର ସହଧର୍ମିଣୀ ମହୋଦୟା ନିୟମିତରୂପେ ଚଳାଇବାର ଭାର ଗ୍ରହଣ କରିଅଛନ୍ତି । ଏ ଦୃଷ୍ଟାନ୍ତ ଉତ୍କଳଖଣ୍ଡରେ ବିରଳ ଏବଂ ଏହା ଅତି ଆନନ୍ଦଜନକ ସମ୍ବାଦ ଅଟେ, ଏଥିରେ ସଂଶୟ ନାହିଁ । ମାତ୍ର ପରଲୋକଗତ ରାଜକୁମାର ମହୋଦୟଙ୍କ ଅକୃତ୍ରିମ ଜାତୀୟ ଭାବ, ଉଦାର ହୃଦୟ ଓ ଉନ୍ନତ ଚରିତ୍ରର ସାକ୍ଷାତ୍ ପ୍ରଭାବଟି ଆଉ କାହିଁ ମିଳିବ ?

ଯାହାହେଉ, ଆମ୍ଭେମାନେ ଉଲ୍ଲିଖିତ ବାର୍ଷିକ ଦାନକୁ ଉତ୍କଳସାହିତ୍ୟ ନିମିତ୍ତ 'ପଦ୍ମନାଭ ନାରାୟଣ-ବୃତ୍ତି' ନାମରେ ଅଭିହିତ କଲୁଁ ।

—o:*:o—

ପ୍ରଥିତନାମା ଖଲ୍ଲିକୋଟ-ଅଷ୍ଟଦୁର୍ଗାଧିପତି ମାନନୀୟ ରାଜା ଶ୍ରୀ ହରିହର ମର୍ଦ୍ଦରାଜ ଦେବ ମହୋଦୟ ଉତ୍କଳସାହିତ୍ୟର ଏକ ଖଣ୍ଡ ରାଜସଂସ୍କରଣର ବାର୍ଷିକ ମୂଲ୍ୟ ଟ ୭୦୲ ପ୍ରଦାନ କରିଅଛନ୍ତି । ଆମ୍ଭେମାନେ ରାଜା ମହୋଦୟଙ୍କଠାରେ ଆନ୍ତରିକ କୃତଜ୍ଞତା ଅର୍ପଣ କରୁଅଛୁଁ ।

——*——

## ନିବେଦନ ।

ଅଷ୍ଟମ ଭାଗ ୧ମ ସଂଖ୍ୟା ପ୍ରକାଶିତ ହେଲା । ଏ ସଂଖ୍ୟାରେ ଗୋଟିଏ ଫର୍ମା ଅଧିକ ଦିଆଯାଇଅଛି । ତଥାପି କେତୋଟି ନିର୍ବାଚିତ ପ୍ରବନ୍ଧ ଏବଂ କେତେଗୁଡ଼ିଏ ପ୍ରସଙ୍ଗ ଓ ସମାଲୋଚନା ପାଇଁ ସ୍ଥାନ ହୋଇ ପାରିଲା ନାହିଁ । ବର୍ତ୍ତମାନ ଗ୍ରୀଷ୍ମାବକାଶ ନିମିତ୍ତ ସ୍କୁଲ କଲେଜ ପ୍ରଭୃତି ଅନେକ ଦିନ ବନ୍ଦ ରହିବ । ତେଣୁ ଦ୍ୱିତୀୟ ଓ ତୃତୀୟ ସଂଖ୍ୟା ଏକତ୍ର ଜୁନମାସ ଶେଷଭାଗକୁ ପ୍ରକାଶିତ ହେବ ।

—o:*:o—

## ଉତ୍କଳ ସାହିତ୍ୟ-ସମାଜର କାର୍ଯ୍ୟନିର୍ବାହକ ସମିତିର ନିର୍ଦ୍ଧାରଣ ।

୨୩ । ୪ । ୧୯୦୪



୧— ବିଶିଷ୍ଟରୂପେ ଓଡ଼ିଆ ଶବ୍ଦମାନଙ୍କର ଖଣ୍ଡିଏ କୋଷ ସଙ୍କଳନ କରିବା ନିମିତ୍ତ ନିମ୍ନ-ଲିଖିତ ବ୍ୟକ୍ତିମାନଙ୍କଦ୍ୱାରା ଗୋଟିଏ 'ଶାଖାସମିତି' ଗଠିତ ହେଉ ।

ଶ୍ରୀଯୁକ୍ତ ମଧୁସୂଦନ ଦାଶ ବି. ଏ.
" ବ୍ରଜାନନ୍ଦ ଦାସ ବି. ଏ.
" ନନ୍ଦକିଶୋର ବଳ ବି. ଏ.
" ମୃତ୍ୟୁଞ୍ଜୟ ରଥ
" ଗୋପାଳଚନ୍ଦ୍ର ପ୍ରହରାଜ ବି. ଏଲ.

ଶ୍ରୀଯୁକ୍ତ ମଧୁସୂଦନ ଦାଶ ବି. ଏ. ମହାଶୟ ଏହି ସମିତିର ସମ୍ପାଦକ ହେଲେ ।

୨— ପ୍ରାଚୀନ ପୁସ୍ତକ ସଂଗ୍ରହ ନିମିତ୍ତ ତଳଲିଖିତ ବ୍ୟକ୍ତିମାନଙ୍କଦ୍ୱାରା ଗୋଟିଏ କମିଟି ଗଠିତ ହେଉ ଏବଂ ଶ୍ରୀଯୁକ୍ତ କୃଷ୍ଣପ୍ରସାଦ ଚୌଧୁରୀ ମହାଶୟ ସେହି କମିଟିର ସମ୍ପାଦକ ନିଯୁକ୍ତ ହୁଅନ୍ତୁ ।

ଶ୍ରୀଯୁକ୍ତ ପୁରୁଷୋତ୍ତମ ତର୍କାଲଙ୍କାର
" ମଧୁସୂଦନ ଦାଶ ବି. ଏ.
" କୃଷ୍ଣପ୍ରସାଦ ଚୌଧୁରୀ

୩—ଉତ୍କଳସମ୍ମିଳନୀର ଅନ୍ତର୍ଭୁକ୍ତ ସାହିତ୍ୟ-ଶାଖାସମିତିର ୧୮-୩-୦୪ର ନିର୍ଦ୍ଧାରଣର ପ୍ରତିଲିପି ପଠିତ ହୋଇ ଏହା ନିର୍ଦ୍ଧାରଣ କରାଗଲା ଯେ, ଉତ୍କଳୀୟ ପ୍ରାଚୀନ ଗ୍ରନ୍ଥ ସଂଗ୍ରହ ନିମିତ୍ତ ଆପାତତଃ ଉତ୍କଳସମ୍ମିଳନୀକୁ ଟ ୧୦୦୍ ଏକ ଶତ ଟଙ୍କା ସାହାଯ୍ୟ ପ୍ରାର୍ଥନା କରାଯାଉ ।

୪— ଉତ୍କଳର ପ୍ରାଚୀନ ଗ୍ରନ୍ଥ ପ୍ରକାଶ ଏବଂ ନୂତନ ଉପାଦେୟ ପୁସ୍ତକମାନଙ୍କ ପ୍ରକାଶ ବିଷୟରେ ସାହାଯ୍ୟ କରିବାପାଇଁ ଗୋଟିଏ ପାଣ୍ଠି ଆବଶ୍ୟକ । ସେହି ପାଣ୍ଠି ଗଠନ ନିମନ୍ତେ ସଭାର ଅଭିଭାବକ ଏବଂ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ନିକଟକୁ ପ୍ରାର୍ଥନାପତ୍ର ପ୍ରେରିତ ହେଉ ।

୫— ଅଳ୍ପ କାଳ ମଧ୍ୟରେ ଉତ୍କଳ ସାହିତ୍ୟ-ସମାଜର 'କାର୍ଯ୍ୟାଳୟ' ଲାଗି ଗୋଟିଏ ଘର ଭଡ଼ା କରାଯାଉ, ସେଥିରେ ବ୍ୟବହାର ଲାଗି ଆଲମାରି, ବସିବା ଆସନ ପ୍ରଭୃତି ଉପକରଣ ମଧ୍ୟ କ୍ରୟ କରାଯାଉ ଏବଂ କାର୍ଯ୍ୟାଳୟର କାର୍ଯ୍ୟ ସୁଚାରୁରୂପେ ନିର୍ବାହ କରିବା ନିମନ୍ତେ ଅଳ୍ପ ବେତନରେ ଜଣେ ଭୃତ୍ୟ ରଖାଯାଉ । ଏସବୁଥିରେ କେତେ ବ୍ୟୟ ହେବ, ସମ୍ପାଦକ ତାହା ସ୍ଥିର କରି ଆଗାମୀ ଅଧିବେଶନରେ ପ୍ରସ୍ତାବ ଉପସ୍ଥାପିତ କଲେ ତାହା ବିଚାର କରାଯିବ ।



## ମୂଲ୍ୟପ୍ରାପ୍ତି ।

### ରାଜସଂସ୍କରଣ ।

୧୯୦୩

| | | |
|---|---|---|
| ଶ୍ରୀଯୁକ୍ତ ରାଜାସାହେବ | ଖଲ୍ଲିକୋଟ | ଟ ୭୦୲ |
| ଶ୍ରୀମତୀ ପାଟମହାଦେଈ | ,, | ଟ ୧୦୲ |
| ଶ୍ରୀଯୁକ୍ତ ରାଜାସାହେବ | ପାରଳାଖେମୁଣ୍ଡି | ଟ ୧୦୲ |
| ,, ରମାନାଥ ଦାସ | ପୁରୀ | ଟ ୫୲ |
| ,, ଦୀନବନ୍ଧୁ ପାଲ | ଛତ୍ରପୁର | ଟ ୫୲ |
| ,, ଚନ୍ଦ୍ରମୋହନ ମହାରଣା | ପୁରୀ | ଟ ୫୲ |
| ,, ଦାଶରଥି ପୂଜାହାରୀ | ସମ୍ବଲପୁର | ଟ ୫୲ |
| ,, ମୋହିନୀମୋହନ ସେନାପତି | କଟକ | ଟ ୫୲ |
| ,, ନୀଳମଣି ବିଦ୍ୟାରତ୍ନ | ରମ୍ଭା | ଟ ୫୲ |
| ,, ରଙ୍ଗାଭଟ୍ଟ ଗୁରୁମୂର୍ତ୍ତି ଶାସ୍ତ୍ରୀ | ବ୍ରହ୍ମପୁର | ଟ ୫୲ |

### ସାଧାରଣ ସଂସ୍କରଣ ।

୧୯୦୨

ଶ୍ରୀଯୁକ୍ତ ଜାନକୀନାଥ ବୋଷ କଟକ ଟ ୨୲

୧୯୦୩

ଶ୍ରୀଯୁକ୍ତ କାହ୍ନୁ ବେହେରା ରଲବ ଟ ୦ ୳
,, ଭଗବାନ ଦାସ ବାବାଜି
ପାରଳାଖେମୁଣ୍ଡି ଟ ୨୲
,, ମଧୁସୂଦନ ମିଶ୍ର ବଡ଼ଚଣା ଟ ୧୲
,, ଲକ୍ଷ୍ମୀନୃସିଂହ ଶ୍ରୀହରିଚନ୍ଦନ ପଟ୍ଟନାୟକ
ଟିକିଟି ଟ ୨୲
,, କରୁଣାକର ପଣ୍ଡା କଟକ ଟ ୧୲
,, ନରହରି ମିଶ୍ର ଆଠମଲ୍ଲିକ ଟ ୨୲
,, ମଧୁସୂଦନ ମିଶ୍ର ,, ଟ ୨୲
,, କୃତ୍ତିବାସ ସାମନ୍ତରାୟ ହେନ୍ଦ୍ରାପଡ଼ା ଟ ୦ ୳
,, ବାଲକୃଷ୍ଣ ଷଡ଼ଙ୍ଗୀ ଗଞ୍ଜାମ ଟ ୧୲
,, ଦୀନବନ୍ଧୁ ଗଡ଼ନାୟକ କଲିକତା ଟ ୨୲
,, ସମ୍ପାଦକ, କରେସପଣ୍ଡେନ୍ସ କ୍ଲବ ଓ ଇଉନିଅନ କ୍ଲବ
ଭବାନୀପାଟଣା ଟ ୨୲
,, ଦାଶରଥି ପଟ୍ଟନାୟକ ସମ୍ବଲପୁର ଟ ୧୲
,, ନୃସିଂହପ୍ରସାଦ ବହିଦାର
ବଲାଙ୍ଗିର ଟ ୧୲
,, ଚିନ୍ତାମଣି ତ୍ରିପାଠୀ ଭେଡ଼ା ଟ ୧୲
,, ବଟକୃଷ୍ଣ ମହାପାତ୍ର ପୁରୀ ଟ ୨୲
,, ପର୍ଶୁରାମ ପ୍ରଧାନ ଗାଙ୍ଗପୁର ଟ ୨୲
,, ରାଧାମୋହନ ମହାନ୍ତି କଟକ ଟ ୧୲
,, ପ୍ରାଣଧନ ଷଡ଼ଙ୍ଗୀ ,, ଟ ୦ ୳

ଶ୍ରୀଯୁକ୍ତ ଭକ୍ତବତ୍ସଳ ଦାସ କଟକ ଟ ୧୲
,, ଦକ୍ଷେଶ୍ୱର ମିଶ୍ର ଆଠମଲ୍ଲିକ ଟ ୧୲
,, ରାଜେନ୍ଦ୍ରନାଥ ବୋଷ ଭୁଜଙ୍ଗ ଟ ୨୲
,, ଗଣେଶ୍ୱର ମିଶ୍ର ସୋନପୁର ଟ ୨୲
,, ଭଗବତୀଚରଣ ଗୃହାର୍ଯ୍ୟା
ବ୍ରହ୍ମପୁର ଟ ୨୲
,, ବୈକୁଣ୍ଠନାଥ ଦାସ କେନ୍ଦୁଝର ଟ ୨୲
,, Rev. G. Howells କଟକ ଟ ୨୲
,, ଗଦାଧର ସାମନ୍ତରାୟ ଆଠମଲ୍ଲିକ ଟ ୩୲
,, ରଘୁବର ଭଞ୍ଜ କୋକ୍‌ସରା ଟ ୨୲
,, ଅର୍ଜୁନ ପଣ୍ଡା ଯୁନାଗଡ଼ ଟ ୧୲
,, ହରପ୍ରସାଦ ଦେ ଅମରବର୍ଷ୍ମ ଟ ୨୲
,, ଶୁକଦେବ ପଣ୍ଡା ସମ୍ବଲପୁର ଟ ୨୲
,, ଜଗନ୍ନାଥ ପଣ୍ଡା କୋଟପଦା ଟ ୦ ୳

### ଅଗ୍ରିମ ।

୧୯୦୪

ଶ୍ରୀଯୁକ୍ତ ଜଗନ୍ନାଥ ପଣ୍ଡା କୋଠପଦା ଟ ୧୲
,, ମଦନମୋହନ ମହାନ୍ତି ବାରିପଦା ଟ ୧୲
,, ଶୁକଦେବ ପଣ୍ଡା ସମ୍ବଲପୁର ଟ ୨୲
,, ଦାମୋଦର ମହାନ୍ତି କଟକ ଟ ୧୲
,, ଜଗବନ୍ଧୁ ପଣ୍ଡା ପଟାମୁଣ୍ଡାଇ ଟ ୧୲
,, ପରମାନନ୍ଦ ସେନାପତି
ମୟୂରଭଞ୍ଜ ଟ ୨୲
,, ଗଣେଶ୍ୱର ଦାସ କଟକ ଟ ୦୳

ଶ୍ରୀ ମଧୁସୂଦନ ରାଓ ପ୍ରଣୀତ କତିପୟ ପୁସ୍ତକ ।

"କୁସୁମାଞ୍ଜଳି"—ମୂଲ୍ୟ ଟ ୦। ଏହି କବିତା ପୁସ୍ତକର 'ଋଷି ପ୍ରାଣେ' ପ୍ରଭୃତି କେତୋଟି କବିତା ଶ୍ରୀ ରବୀନ୍ଦ୍ରନାଥ ଠାକୁର ପ୍ରଭୃତି କତିପୟ ବଙ୍ଗୀୟ ଶ୍ରେଷ୍ଠ କବିଙ୍କ କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ଉତ୍କଳ ଗାଥା"—ମୂଲ୍ୟ ଟ ୦/ କବିବର ରାଧାନାଥ ରାୟ ପ୍ରଭୃତି କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ବସନ୍ତ ଗାଥା"—ମୂଲ୍ୟ ଟ ୦/ ଉତ୍କଳର ସମସ୍ତ ସୁଲେଖକ କର୍ତ୍ତୃକ ପ୍ରଶଂସିତ ।

"ସଙ୍ଗୀତମାଳା"—ମୂଲ୍ୟ ଟ ୦। ଏଥିରେ ବହୁପ୍ରଶଂସିତ ଏକଶତ ଭକ୍ତିରସର ସଙ୍ଗୀତ ଅଛି ।

"ଅଙ୍କପ୍ରଶ୍ନ ସମାଧାନ"—ମୂଲ୍ୟ ଟ ୦। ଅଙ୍କ ପୁସ୍ତକରେ ଥିବା କଠିନ ପ୍ରଶ୍ନମାନ ଏଥିରେ କଷା ଯାଇଅଛି ।

☞ ଏହି ୫ ଖଣ୍ଡି ପୁସ୍ତକର ମୂଲ୍ୟ ମୋଟରେ ଟ ।। କିନ୍ତୁ ଏ ପାଞ୍ଚ ଖଣ୍ଡଯାକ ନେଲେ ଟ ୦।।/ ମୂଲ୍ୟରେ ଦିଆଯିବ । ମଫସଲବାସୀମାନଙ୍କୁ ଡାକଖର୍ଚ୍ଚ ଟ ୦/ ଅଧିକା ଦେବାକୁ ହେବ ।

ଶ୍ରୀ ପ୍ରଶାନ୍ତ ରାଓ
ନର୍ମାଲ ସ୍କୁଲ, କଟକ ।

---

ଆୟୁର୍ବେଦୀୟ ଔଷଧାଳୟ ।

କବିରାଜ ଶ୍ରୀ ସାରଦାପ୍ରସାଦ କବିରଞ୍ଜନ—ବାଲୁବଜାର, କଟକ ।

ଏହି ସ୍ଥାନରେ ସୁଲଭ ମୂଲ୍ୟରେ ବିଶୁଦ୍ଧ ମକରଧ୍ୱଜ, ସର୍ବ ପ୍ରକାର ତୈଳ, ଘୃତ, ମୋଦକ, ଚୂର୍ଣ୍ଣ, ବଟିକା ଓ ଦେଶୀୟ ପାଲସା, ସୁନା, ରୂପା, ଲୌହ, ଅଭ୍ର, ମୁକ୍ତା, ବଙ୍ଗ ଭସ୍ମ ବିକ୍ରୟାର୍ଥ ସର୍ବଦା ପ୍ରସ୍ତୁତ ଥାଏ । ଦୁଃସାଧ୍ୟ ଓ କଠିନ ରୋଗଗ୍ରସ୍ତ ବ୍ୟକ୍ତିମାନଙ୍କର ଅବସ୍ଥାସହ ପତ୍ର ଲେଖିଲେ ଅତି ଯତ୍ନପୂର୍ବକ ବ୍ୟବସ୍ଥାସହ ଭିଃ ପିଃ ଡାକରେ ଔଷଧ ପଠାଯାଏ । ଦୁଇ ପଇସାର ଡାକ ଟିକଟ ପଠାଇଲେ ବିନା ମୂଲ୍ୟରେ ଔଷଧ ତାଲିକା-ପୁସ୍ତକ ପ୍ରେରିତ ହୁଏ ।

---

# କବିରାଜ

ଶ୍ରୀ ଶରତ ଚନ୍ଦ୍ର କବିରତ୍ନଙ୍କର
ଅନ୍ନପୂର୍ଣ୍ଣା
ଆୟୁର୍ବେଦୀୟ-ଔଷଧାଳୟ, ଚୌଧୁରୀବଜାର
କଟକ ।

ପ୍ରଦରାନ୍ତ ବଟିକା ।
(ସ୍ତ୍ରୀ ରୋଗର ଅବ୍ୟର୍ଥ ମହୌଷଧ)

ବାଧକ, ଶ୍ୱେତ ଓ ରକ୍ତ ପ୍ରଦର ପ୍ରଭୃତି ଯାବତୀୟ କଷ୍ଟକର ଓ ଦୁରାରୋଗ୍ୟ ସ୍ତ୍ରୀରୋଗ ପ୍ରତି ଏହି ପ୍ରଦରାନ୍ତ ବଟିକା ଅବ୍ୟର୍ଥ ମହୌଷଧ । ରକ୍ତଦୋଷର ପରିଷ୍କାର, ସ୍ତ୍ରୀମାନଙ୍କର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ରକ୍ଷାର ଏପରି ସହଜ ଅଥଚ ଅମୋଘ ଔଷଧ ଆଉ ଦେଖାଯାଏ ନାହିଁ । ମୂଲ୍ୟ ପ୍ରତି ଡବା ଟ ୧ ୧ ମାତ୍ର ।

ଚ୍ୟବନପ୍ରାଶ ।

ସର୍ବଜନ-ବିଦିତ ପରମ ରସାୟନ ଏହି ମହୌଷଧ ସେବନ କଲେ ସର୍ବପ୍ରକାର କାସ ଓ ସ୍ୱରଭଙ୍ଗ ନିଶ୍ଚୟ ପ୍ରଶମିତ ହୁଏ । ଦୁର୍ବଳ ଓ କ୍ଷୀଣଧାତୁ ପକ୍ଷରେ ମହର୍ଷି-ପ୍ରବର୍ତ୍ତିତ ଚ୍ୟବନପ୍ରାଶ ପରି ପୁଷ୍ଟିକର ରସାୟନ ଔଷଧ ଏପର୍ଯ୍ୟନ୍ତ ପୃଥିବୀରେ ଆବିଷ୍କୃତ ହୋଇ ନାହିଁ । ମୂଲ୍ୟ ଏକ ମାସ ସେବନୋପଯୋଗୀ ଟ ୨ ୧ ଡାକମାସୁଲାଦି ସ୍ୱତନ୍ତ୍ର ।

ପ୍ରମେହାନ୍ତକ ବଟିକା ।

ଅତ୍ୟୁତ୍କୃଷ୍ଟ ମହୌଷଧ; ଏହା ସେବନ କଲେ ଷୋଡ଼ଶ ପ୍ରକାର ପ୍ରମେହ ଓ ସମସ୍ତ ଧାତୁନିର୍ଗମ, ଖଡ଼ିକଳିବତ୍ ପ୍ରସ୍ରାବ, ମୂତ୍ରାଶୟ ଓ ମୂତ୍ରନଳୀର ଜ୍ୱାଳା, ସୂଚୀବେଧବତ୍ ବେଦନା, ଅଣ୍ଡକୋଷରେ ବିଦାରଣ ପରି ଯନ୍ତ୍ରଣା, ଜ୍ୱର, ତୃଷ୍ଣା, ଅଗ୍ନିମାନ୍ଦ୍ୟ, ଅପାକ ଓ ଅରୁଚି, ମଳଭେଦ ବା କୋଷ୍ଠବଦ୍ଧ ହେତୁ ମଳମୂତ୍ର ଓ ବାୟୁର ଅବରୋଧ, ହୃତ୍ପୀଡ଼ା, ସ୍ୱପ୍ନଦୋଷ, ମୂତ୍ରବେଗ, ଅନିଦ୍ରା, ସର୍ବ ଶରୀରର ଅବସାଦ ଓ ମସ୍ତିଷ୍କର ଦୌର୍ବଲ୍ୟାଦି ପ୍ରମେହ-ଜନିତ ଯାବତୀୟ ଉପଦ୍ରବ ନିବାରିତ ହୁଏ । ଏହା ଔପସର୍ଗିକ ମେହର ମହୌଷଧ ।

୩୦ ବଟିକାର ମୂଲ୍ୟ ଟ ୧୧

୮ ମ ଭାଗ, ଜ୍ୟେଷ୍ଠ, ଆଷାଢ଼, ୧୩୧୧ । ୨ୟ, ୩ୟ ସଂଖ୍ୟା ।

# ଉତ୍କଳ-ସାହିତ୍ୟ ।

ମାସିକପତ୍ର ଓ ସମାଲୋଚନ ।

—:o:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—:o:—

THE UTKAL SAHITYA PRESS.
CUTTACK.
1904.

ବାର୍ଷିକ ମୂଲ୍ୟ ଡାକମାସୁଲ ସମେତ ଟ ୨ ଏହି ସଂଖ୍ୟାର ମୂଲ୍ୟ ୦ ।୵

# ସୂଚୀ ।



---

## ସାହାଯ୍ୟ ପ୍ରାପ୍ତି ।

ଧରାକୋଟାଧିପତି ମାନନୀୟ ଶ୍ରୀଯୁକ୍ତ ରାଜା ମଦନମୋହନ ସିଂହ ଦେବ ମହୋଦୟ "ଉତ୍କଳ ସାହିତ୍ୟ" ପତ୍ରିକାର ସାହାଯ୍ୟସ୍ୱରୂପ ଟ ୧୬୦ ୧ ପ୍ରଦାନ କରିଅଛନ୍ତି । ଏହି ଦାନ ନିମନ୍ତେ ଆମ୍ଭେମାନେ ରାଜା ମହୋଦୟଙ୍କଠାରେ ଆନ୍ତରିକ କୃତଜ୍ଞତା ଅର୍ପଣ କରୁଅଛୁଁ ।

---



---




ଡାକ୍ତର ମେଜର ସାହେବଙ୍କର ବିଶ୍ୱବିଖ୍ୟାତ ସେହି

# ଇଲେକ୍ଟ୍ରୋ-ସାଲସା ।

ଚିକିତ୍ସାଜଗତରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଅଛି ।

ରକ୍ତ ମାନବ ଦେହର ଜୀବନୀଶକ୍ତି । ତାଡ଼ିତଶକ୍ତି ଜୀବନୀଶକ୍ତିର ମୂଳ । ପ୍ରତିଦିନ ନାନାପ୍ରକାରରେ ବିଶେଷତଃ ଆହାର ବିହାରରେ, ଅଭ୍ୟାସର ଅନାଗ୍ରହରେ, ନିଶ୍ୱାସ ପ୍ରଶ୍ୱାସରେ ମାନବଦେହରେ ବିଷ ପ୍ରବେଶ କରୁଥାଏ । ଏହି ବିଷ କ୍ରମେ କ୍ରମେ ରକ୍ତ ସହିତ ମିଶ୍ରିତ ହୋଇ ଦେହାଭ୍ୟନ୍ତରସ୍ଥ ତାଡ଼ିତଶକ୍ତି ହ୍ରାସ କରେ ଏବଂ ପରିଣାମରେ ସାଧାରଣତଃ ଶୁକ୍ର ଓ ଶୋଣିତ ସମ୍ବନ୍ଧୀୟ ପୀଡ଼ା ଉତ୍ପନ୍ନ ହୁଏ । ଯେଉଁ ଔଷଧ ଏହି ରକ୍ତଦୁଷ୍ଟିର ବିଷ ଦୂରୀଭୂତ କରି ହ୍ରାସପ୍ରାପ୍ତ ବୈଦ୍ୟୁତିକ ଶକ୍ତିର ସାମଞ୍ଜସ୍ୟ ସମ୍ପୂର୍ଣ୍ଣରୂପେ ରକ୍ଷା କରିପାରେ, ସେହି ପ୍ରକୃତ ଔଷଧ; ଏହି—

"ଇଲେକ୍ଟ୍ରୋ-ସାଲସା" ତାହାର ଏକମାତ୍ର ଆଦର୍ଶ ।

---

ଏହା କଣ ? ଚିକିତ୍ସା-ବିଜ୍ଞାନ-ସମ୍ମତ ଶୁକ୍ର ଓ ଶୋଣିତର ଦୋଷ-ସଂଶୋଧକ ଏବଂ ତାଡ଼ିତଶକ୍ତିପ୍ରବର୍ତ୍ତକ କେତୋଟି ଦୁଷ୍ପ୍ରାପ୍ୟ କାର୍ଯ୍ୟକାରୀ ଉଦ୍ଭିଜ୍ଜ—
ନିଉ ୟର୍କ ନଗରବାସୀ ଖ୍ୟାତନାମା ଡାକ୍ତର :—
ଜେମସ ମେଜର ଏମ. ଏ. ଏମ. ଡି

ମହୋଦୟଙ୍କର ଅନୁଷ୍ଠିତ,—ନୂତନ ରସାୟନିକ ପ୍ରକ୍ରିୟାରେ ବିନିଃସୃତ ନିର୍ଯ୍ୟାସ ।

ମାନବଦେହରେ ଏହାର କ୍ଷମତା ଅସୀମ, ଗୁଣ ଅନନ୍ତ, କ୍ରିୟା ସ୍ଥାୟୀ ।

ଏଥିରେ ଯେ କେତୋଟି କାର୍ଯ୍ୟକାରୀ ଭେଷଜ ପଦାର୍ଥ ଅଛି, ତାହା ଅନ୍ୟ କୌଣସି ଔଷଧରେ ନାହିଁ ଏବଂ ଏହି ଗବେଷଣାଲବ୍ଧ ମହାଗୁଣଶାଳୀ ଦୁଷ୍ପ୍ରାପ୍ୟ ଭେଷଜ ଏହାର ଏରୂପ ଅସାଧାରଣ ଗୁଣାବଳୀର ମୂଳକାରଣ ।

ଏଥିରେ କେଉଁ କେଉଁ ରୋଗ ଆରୋଗ୍ୟ ହୁଏ ? ସର୍ବପ୍ରକାର କାରଣଜାତ ଶୁକ୍ର ଓ ଶୋଣିତର ବିକୃତ, ସ୍ନାୟୁଦୌର୍ବଲ୍ୟ, ଦେହର ବିଭିନ୍ନ ଯନ୍ତ୍ରର କ୍ରିୟା-ଘଟିତ କ୍ଷୀଣତା, ଶୁକ୍ରମେହ, ଶୁକ୍ର ତାରଲ୍ୟ, ନୂତନ ପୁରାତନ ମେହ, ପ୍ରମେହ, ସପ୍ତଧାତୁ ନିର୍ଗମ, ଅନିଚ୍ଛାରେ ବା ଅଳ୍ପ ଉତ୍ତେଜନାରେ ଶୁକ୍ରକ୍ଷରଣ, ସମ୍ପୂର୍ଣ୍ଣ ବା ଆଂଶିକ ପୁରୁଷତ୍ୱହୀନ, ପ୍ରସ୍ରାବରେ ଯନ୍ତ୍ରଣା, ଲୁଗାରେ ଦାଗଲଗା,

ସ୍ୱପ୍ନଦୋଷ, ଶୁକ୍ରରେ ସନ୍ତାନ ଉତ୍ପାଦିକା ଶକ୍ତିର ଅଭାବ, ମଳ ବା ମୂତ୍ରତ୍ୟାଗ ସମୟରେ ପ୍ରକାଶ୍ୟରେ ବା ଅଲକ୍ଷରେ ଶୁକ୍ରକ୍ଷରଣ, ମୂତ୍ରକୃଚ୍ଛ୍ରତା, ମୁହୁର୍ମୁହୁଃ ପ୍ରସ୍ରାବ, ଜନନେନ୍ଦ୍ରିୟର ଦୁର୍ବଳତା, ସ୍ମରଣଶକ୍ତିର ଲୋପ, ମସ୍ତିଷ୍କ କ୍ଲାନ୍ତ, ଦୃଷ୍ଟିଶକ୍ତିର କ୍ଷୀଣତା, ଶିରୋଘୂର୍ଣ୍ଣନ, କର୍ଣ୍ଣଶକ୍ତିର ହ୍ରାସ, ଶରୀର ଓ ମନର ଅବସାଦ, ଖିଟଖିଟା ସ୍ୱଭାବ, ଯୌବନୋଚିତ ସାମର୍ଥ୍ୟର ଅଭାବ, ନିର୍ଜନପ୍ରିୟତା, ହୃତ୍ପିଣ୍ଡର କଷ୍ଟଦାୟକ ସ୍ପନ୍ଦନ, ଅଧ୍ୟୟନରେ ବା ସାଂସାରିକ କାର୍ଯ୍ୟରେ ଅନିଚ୍ଛା ଓ ସାମର୍ଥ୍ୟହୀନତା, ଅକାରଣରେ ଉଦ୍‌ବେଗ, ଶୋଣିତରେ ସ୍ୱଳ୍ପତା, ପାରଦ ଓ ଉପଦଂଶାଦିଜାତ ଶୋଣିତ-ବିକୃତି, ବାତରକ୍ତ, ଅମ୍ଳବାତ, ଗଳକଣ୍ଡୂ, ବାଘି, ଉପଦଂଶର ଘା, ନାକ ଓ ମୁଖର ଭିତରେ ଘା, ନାଲୀ ଘା, ଶୋଥ ହେବା, ଖାଜୁ କୁଣ୍ଡିଆ, ଭଗନ୍ଦର, କୁଷ୍ଠ ପ୍ରଭୃତି ନାନାପ୍ରକାରର ଚର୍ମରୋଗ, ଶୁକ୍ର ବା ଶୋଣିତ ବିକାରଜ ଘଟିତ ସର୍ବପ୍ରକାର ଦୁର୍ଦ୍ଦମନୀୟ ବାତ, ଜଙ୍ଘ, ଜାନୁ, କଟି, ହସ୍ତ, ପଦ ଓ ସନ୍ଧିସ୍ଥଳର ଗୁରୁତ୍ୱ; ବେଦନା, ଥକ୍ ଥକ୍ କରିବା, ମୋଡ଼ିହେବା, ଶରୀରର ନାନା ସ୍ଥାନରେ ସ୍ନାୟୁପ୍ରକୃତିର ପାର ବା ଉପଦଂଶାଦିର ଉତ୍ପ୍ରସନ, ହସ୍ତ ଓ ପଦ ତଳର ଚମଡ଼ା ଫାଟିବା, ଧଳା ବା କଳାସିନ୍ଦୁ ଚିହ୍ନ ଫୁଟିଉଠିବା, ଧବଳ କୁଷ୍ଠାଦିର ପୂର୍ବଲକ୍ଷଣ, କୁଣ୍ଡାଇ ହୋଇ ହୋଇ ଫୁଲିଉଠିବା, ଚକ୍ଷୁରୁ ଜଳ ପଡ଼ିବା, ଅକାଳବାର୍ଦ୍ଧକ୍ୟ, ମୁଣ୍ଡରୁ ବାଳ ଝଡ଼ିବା, କେଶର ଅକାଳପକ୍ୱତା, ଶରୀରର ସାଧାରଣ ଦୌର୍ବଲ୍ୟ ଇତ୍ୟାଦି ଶୁକ୍ର ଓ ଶୋଣିତ ସଂକ୍ରାନ୍ତ ସର୍ବପ୍ରକାର ବ୍ୟାଧି ଓ ତାହାର ସହସ୍ରାଧିକ ଉତ୍କଟ ଉପସର୍ଗ ସମୂଳରେ ବିନଷ୍ଟ କରି ସ୍ୱାସ୍ଥ୍ୟ ବୃଦ୍ଧି କରିବାକୁ, କୋଷ୍ଠ ପରିଷ୍କାର ରଖିବାକୁ ଏବଂ ଦୁର୍ବଳ ଓ ଜରାଜୀର୍ଣ୍ଣ ଦେହ ସବଳ ଓ କାର୍ଯ୍ୟକ୍ଷମ କରିବାକୁ ଏହା ଅତୁଳନୀୟ; ସେଥିପାଇଁ—

## ଡାକ୍ତର ମେକରଙ୍କର ଇଲେକ୍‌ଟ୍ରୋ-ସାଲସା

ଆଜି ଭାରତର ସର୍ବତ୍ର ସମାଦୃତ ଓ ସର୍ବବ୍ୟାପ୍ତ । ପ୍ରକୃତ ଗୁଣ ଅଛି ବୋଲି ଏହାର ବିକ୍ରୟ ଏତେ ଅଧିକ—ବିକ୍ରୟବାହୁଲ୍ୟ-ହେତୁରୁ ଆଜି ବହୁ ନକଲର ସୃଷ୍ଟି ! କ୍ରେତାଗଣ ସାବଧାନ !!

"ଇଲେକ୍‌ଟ୍ରୋ-ସାଲସା"—ସକଳ ଦେଶର ସକଳ ଋତୁରେ ଉଲ୍ଲିଖିତ ରୋଗସମୂହର ସକଳ ଅବସ୍ଥାରେ ଆବାଳ-ବୃଦ୍ଧବନିତା, ରୋଗୀ, ଅରୋଗୀ ସମସ୍ତେ ନିର୍ବିଘ୍ନରେ ସେବନ କରି ପାରନ୍ତି ।

ଇଲେକ୍‌ଟ୍ରୋ-ସାଲସାର ମୂଲ୍ୟାଦି,—ସର୍ବପ୍ରକାର ଭାଷାରେ ବ୍ୟବସ୍ଥାପତ୍ରସମ୍ବଳିତ ୮ ଦିନ ସେବନୋପଯୋଗୀ ପ୍ରତ୍ୟେକ ଶିଶିର ମୂଲ୍ୟ ଟ ୨ ୯, ୩ ଶିଶି ମୂଲ୍ୟ ଟ ୫୪, ୬ ଶିଶି ଟ ୧୦୪, ଡଜନ ଟ ୨୦ ୯, ପ୍ୟାକିଂ ଓ ଡାକମାସୁଲ ଇତ୍ୟାଦି ଯଥାକ୍ରମେ ଟ ୦ ୪, ଟ ୦ ୪୵, ଟ ୧, ଟ ୧୪ ।

ଅସଂଖ୍ୟ, ଅଯାଚିତ ପ୍ରଶଂସାପତ୍ର ଏହାର ଅବ୍ୟର୍ଥତା, ଅଲୌକିକତା ଓ ଅକୃତ୍ରିମତାର ଜ୍ୱଳନ୍ତ ପ୍ରମାଣ, ଜ୍ୱଳନ୍ତ ସାକ୍ଷ୍ୟ ଦେଉଅଛି ।

୧ । ପାଟଣାର ମହାରାଜା ଦଳଗଞ୍ଜନ ସିଂହ ମହୋଦୟ ଲେଖିଅଛନ୍ତି:—

"ମହାଶୟଗଣ ! ମୋହର ପରିବାରସ୍ଥ ଏକ ବ୍ୟକ୍ତିର ଅତି କଠିନ ପୀଡ଼ାରେ ଡାକ୍ତର ମେକରଙ୍କର ଇଲେକ୍‌ଟ୍ରୋ ସାଲସାର ବିସ୍ମୟଜନକ ଶୁଭଫଳ ଦର୍ଶନ କରି ମୁଁ ଡାକ୍ତର ସାହେବଙ୍କର ଔଷଧର ଗୁଣପ୍ରତି ଏତେ ପକ୍ଷପାତୀ ହୋଇଅଛି ଯେ, ଆପଣମାନଙ୍କର ପ୍ରସ୍ତୁତ ମହୌଷଧି ରୋଗକ୍ଲିଷ୍ଟ ମାନବମଣ୍ଡଳୀର ମହୋପକାରୀ ଏ କଥା କହିବାକୁ ମୁଁ ଅଣୁମାତ୍ର ଦ୍ୱିଧା ବୋଧ କରୁ ନାହିଁ । ଆପଣମାନଙ୍କର ମହୌଷଧର ଗୁଣର ନିଦର୍ଶନସ୍ୱରୂପ ମୁଁ ଆପଣମାନଙ୍କୁ ଗୋଟିଏ ସ୍ୱର୍ଣ୍ଣପଦକ ଉପହାର ପ୍ରଦାନ କଲି । ଏହି ସାମାନ୍ୟ ଉପହାର ଆପଣମାନଙ୍କର ଅତୁଳନୀୟ ଓ ଅମୂଲ୍ୟ ଇଲେକ୍‌ଟ୍ରୋ-ସାଲସାର ଗୁଣର ତୁଳନାରେ ଯେତେ ଅକିଞ୍ଚିତ୍କର ହେଲେହେଁ ଏହା ମୋହର ହୃଦୟର କୃତଜ୍ଞତାର ନିଦର୍ଶନ ବୋଲି ଗ୍ରହଣ କଲେ କୃତାର୍ଥ ହେବି । ତା ୧୫।୧୦.୧୯୦୩"

୨ । ମହାମାନ୍ୟ ମହାରାଜା ସାର ସୁଢ଼ଳ ଦେଓ ବାମଣ୍ଡାରୁ ଲେଖିଅଛନ୍ତି :—
“* * * ମୁଁ ନିଃସନ୍ଦେହରୂପେ କହିପାରେ ଯେ “ଇଲେକ୍‌ଟ୍ରୋ-ସାଲ୍‌ସା” ଦୂଷିତରକ୍ତ ପରିଷ୍କାର କରିବା ଓ ରକ୍ତଦୁଷ୍ଟିହେତୁ ବିବିଧ ରୋଗ ଆରୋଗ୍ୟ କରିବାପକ୍ଷରେ ସର୍ବୋତ୍କୃଷ୍ଟ ।”

୩ । ମହାମାନ୍ୟ ମହାରାଜା ଗଉରଚନ୍ଦ୍ର ଦେଓ ରେଢ଼ାଖୋଲରୁ ଲେଖିଅଛନ୍ତି—
“* * * ବିଜ୍ଞାପନର ମୋହରେ ପଡି “ଡ୍ୟାନକନ” ଔଷଧ ମଗାଇଲି; ଉପକାର ହେବା ଦୂରେ ଥାଉ ଅପକାର ହେଲା, ସେଥିରେ ପାରା ଅଛି ବୋଲି ଜଣା ପଡ଼ିଲା । କିନ୍ତୁ ଆପଣମାନଙ୍କର ଇଲେକ୍‌ଟ୍ରୋ-ସାଲ୍‌ସାର ଗୁଣ ମୁଁ ଭୁଲି ପାରିବି ନାହିଁ । ମୋତେ ଆଉ ୩ ଡଜନ ପଠାଇଦେବେ ।”

୪ । ମହାମାନ୍ୟ ମହାରାଜା ହରିହର ମର୍ଦ୍ଦରାଜ ଦେଓ ଖଲ୍ଲିକୋଟରୁ ଲେଖିଅଛନ୍ତି—
“ରକ୍ତ ପରିଷ୍କାର କରି ବଳବୀର୍ଯ୍ୟ ବୃଦ୍ଧି କରିବାକୁ ଇଲେକ୍‌ଟ୍ରୋ-ସାଲ୍‌ସାର କ୍ଷମତା ଅସୀମ ଅଟେ ।”

୫ । ଭୋପାଳସ୍ଥିତ ପ୍ରଦେଶାଧିପତି ମହାରାଜାଧିରାଜ ରଘୁନାଥ ରାଓ ଦିନକର ମୁସିର—ଅଲ-ଖାସ ବାହାଦୁର ଲେଖିଅଛନ୍ତି :—ଅନୁଗ୍ରହ କରି ଆଉ ୩ ଶିଶି ଔଷଧ ଆମ୍ଭ ନିକଟକୁ ପଠାଇ ଦିଅନ୍ତୁ । ୨୫ ତାରିଖ ଜୁଲାଇ, ୧୯୦୩ ।

୬ । ଡାକ୍ତର ଜି. ଓଥ୍ବାର ( ବର୍ଣ୍ଣେଲ ) ଏଲ. ଏମ. ଏସ. ପ୍ରୋଫେସର ମେଡିକାଲ କଲେଜ, ମାନ୍ଦ୍ରାଜଠାରୁ ଲେଖିଅଛନ୍ତି :—“ପାରା ଓ ନିୟଦଂଶାଦିଜନିତ ରକ୍ତଦୁଷ୍ଟି ରୋଗରେ ଆପଣମାନଙ୍କର ଇଲେକ୍‌ଟ୍ରୋ-ସାଲ୍‌ସାର କ୍ରିୟା ଦେଖି ଅସୀମ ଆନନ୍ଦ ବୋଧ କରିଅଛି । ୧୩ ଜାନୁୟାରୀ, ୧୯୦୨ ।”

୭ । କଲିକତା ମେଡିକାଲ ବୋର୍ଡର ପ୍ରେସିଡେଣ୍ଟ ରାୟବାହାଦୁର ସୂର୍ଯ୍ୟକୁମାର ସର୍ବାଧିକାରୀ ଜି. ଏମ. ସି. ବି. ମହୋଦୟ ଲେଖିଅଛନ୍ତି :—“ରକ୍ତଦୁଷ୍ଟିଜାତ ଅନେକ ରୋଗୀଙ୍କୁ ଆପଣମାନଙ୍କର ଇଲେକ୍‌ଟ୍ରୋ-ସାଲ୍‌ସା ବ୍ୟବହାର କରାଇ ସନ୍ତୋଷଜନକ ଫଳ ପ୍ରାପ୍ତ ହୋଇଅଛି ।”

ଡାକ୍ତର ମେକର ସାହେବଙ୍କର

# ହାଇଡ୍ରୋସିଲ-ଇଲିକ୍‌ସାର

ବା ହୋଦବୃଦ୍ଧିର ଔଷଧ ।

ପ୍ରତିବର୍ଷ ୫ ହଜାରରୁ ଅଧିକ ରୋଗୀ ଆରୋଗ୍ୟ ଲାଭ କରୁଅଛନ୍ତି । ଆମ୍ଭେମାନେ ପ୍ରତିଜ୍ଞା କରି କହିପାରୁଁ, ଏହି ପ୍ରଲେପ ନିୟମିତରୂପେ କେତେକ ସପ୍ତାହ ବ୍ୟବହାର କଲେ ଏକଶିରା ବା କୋରଣ୍ଡ ଯେତେ ବଡ଼ ହଉ, ଯେତେ ପୁରାତନ ହେଉ ପଛକେ ନିଶ୍ଚୟ ଆରୋଗ୍ୟ ହେବ । ଯେଉଁମାନେ ଏହି କୁତ୍ସିତ ରୋଗ ଓ ତାହାର ବିବିଧ ଯନ୍ତ୍ରଣାଦାୟକ ଉପସର୍ଗାଦିରୁ ନିର୍ବିଘ୍ନରେ ବିନା ଯନ୍ତ୍ରଣାରେ ଅଥଚ ଗୋପନରେ ଆରୋଗ୍ୟ ଲାଭର ବାସନା କରନ୍ତି, ସେମାନେ ଏହି ମହୌଷଧ ପରୀକ୍ଷା କରି ଦେଖନ୍ତୁ । ପ୍ରଥମ ଦିନ ବ୍ୟବହାରରେ ଏହାର ଆଶ୍ଚର୍ଯ୍ୟ ଉପକାରିତା ବୁଝାଯାଏ । ତତ୍ପରେ କ୍ରମେ କ୍ରମେ ଆକାର ଓ ଗୁରୁତ୍ୱ କମି ଯାଏ । ଯେଉଁମାନେ ଆରୋଗ୍ୟ ହେବା ବିଷୟରେ ହତାଶ ହୋଇଅଛନ୍ତି, ସେମାନେ ଏହି ଔଷଧ ପ୍ରତି ସମ୍ପୂର୍ଣ୍ଣ ନିର୍ଭର କରନ୍ତୁ । ବ୍ୟବହାରରେ ଜ୍ୱାଳା-ଯନ୍ତ୍ରଣା ବା ଡାକ୍ତରର ପ୍ରୟୋଜନ ନାହିଁ । ମୂଲ୍ୟ ପ୍ରତି ଶିଶି ଟ ୧ ୫, ତିନି ଶିଶି ଏକତ୍ରରେ ଟ ୪ ୧ । ୬ ଶିଶି ଟ ୭୫ ଡଜନକୁ ଟ ୧୪୯ ମାସୁଲ ସ୍ୱତନ୍ତ୍ର ।

ଡାକ୍ତର ମେଜର ସାହେବଙ୍କର

# ହେୟାର ଲାଇନ

କେଶର ପରିପୋଷଣ, ପରିବର୍ଦ୍ଧନ ଓ ଶ୍ରୀସମ୍ପାଦନକାରୀ ସୁଗନ୍ଧୀ କେଶତୈଳ ।




କେତୋଟି ଭେଷଜଗୁଣାନ୍ୱିତ ସଦ୍ୟ ପ୍ରସ୍ଫୁଟିତ, ସୁଗନ୍ଧଯୁକ୍ତ, ଅନାଘ୍ରାତ, ପୁଷ୍ପର ସାର, ବୈଜ୍ଞାନିକ ପ୍ରଣାଳୀରେ ଏକତ୍ରିତ କରି ବିଶୁଦ୍ଧ କେଶପୋଷକ ତୈଳର ସଂଯୋଗରେ ଏହି କେଶ ତୈଳ ପ୍ରସ୍ତୁତ ହୋଇଅଛି । ଆପଣ ଏହା ଲଗାଇବାକୁ ଆରମ୍ଭ କରନ୍ତୁ, ଅପୂର୍ବ ସୌରଭରେ ଗୃହଅଙ୍ଗ ମହକି ପଡ଼ିବ । ମସ୍ତିଷ୍କ ସୁଶୀତଳ ହେବ । ନିକଟସ୍ଥ ଲୋକେ ମନୋହର ସୁଗନ୍ଧରେ ମୁଗ୍ଧ ହେବେ । ଆପଣଙ୍କର ମନେ ହେବ ଯେପରି ପ୍ରସ୍ଫୁଟିତ ଫୁଲ-ବଗିଚାକୁ ଆସିଅଛୁ ।

"ହେୟାର-ଲାଇନ" ଲଗାଇ କେଶ ବିନ୍ୟାସ କଲେ ୨୪ ଘଣ୍ଟା ପର୍ଯ୍ୟନ୍ତ ଗନ୍ଧ ସମ ଭାବରେ ଥାଏ । ସ୍ନାନ ପରେ ଦେହରେ ଯେତେ ପବନ ଲାଗେ, ହେୟାର-ଲାଇନର ଗନ୍ଧ ସେତେ ବାହାରୁ ଥାଏ, ଯେପରି ସୌରଭର ଭଣ୍ଡାର ଖୋଲିଦିଏ। ଅତି ମୂଲ୍ୟବାନ୍ ଅତର ଓ ବିଦେଶୀୟ ମ୍ୟାକେସାର ତୈଳ ପ୍ରଭୃତି ଏହାର ସୌରଭ ଓ ଗୁଣ ନିକଟରେ ପରାସ୍ତ ।

"ହେୟାର-ଲାଇନର" ରଙ୍ଗ ଅତି ମନୋହର, ସ୍ୱଭାବତଃ ଉଜ୍ଜ୍ୱଳ ଓ ସ୍ୱଚ୍ଛ । ଏଥି ନିମନ୍ତେ କେଶରେ ଅଠା ଧରେ ନାହିଁ ।

"ହେୟାର-ଲାଇନ" କେବଳ ସୌଖୀନ ଜିନିଷ ନୁହେ, ମୁଣ୍ଡବଥା, ମୁଣ୍ଡବୁଲା, ହିଷ୍ଟିରିଆ ପ୍ରଭୃତି ଶିରରୋଗର ମହୌଷଧ । ହସ୍ତ ପଦର ଜ୍ୱାଳା, ଗାତ୍ରଦାହ, ଅତି ଧଡ଼ପଡ଼ହେବା, ପ୍ରାଣର ଅଶାନ୍ତିଭାବ, ସ୍ନାୟବିକ ଦୌର୍ବଲ୍ୟ, ଘୂରିପଡ଼ିବା ପ୍ରାୟ ବୋଧହେବା, ଅନିଦ୍ରା, ଚେ-ଶୃଙ୍ଖଲ୍ୟ ପ୍ରଭୃତି ଉପସର୍ଗ ଦୂରୀକରଣରେ ଏହା ତୁଲ୍ୟ ସମଗୁଣାପନ୍ନ ଔଷଧ ଆଉ ନାହିଁ ।

"ହେୟାର-ଲାଇନ" ବ୍ୟବହାରଦ୍ୱାରା କେଶ ଉପୁଡ଼ିବା ବନ୍ଦ ହୁଏ, କେଶର ମୂଳ ଶକ୍ତ ହୁଏ, କେଶ ପ୍ରଚୁର ପରିମାଣରେ ବଢ଼େ ଏବଂ କଳା ଓ ଚିକ୍କଣ ହୁଏ, ମସ୍ତିଷ୍କ ଥଣ୍ଡା ରହେ । ଅନେକ ଦିନ ବ୍ୟବହାର କଲେ ଟାକସ ରୋଗ ନଷ୍ଟ ହୁଏ, ମୁଣ୍ଡର ରୂପୀ ପ୍ରଭୃତି ନଷ୍ଟ ହୁଏ; କେଶ ଘନ, କୋମଳ ଓ ସୁଦୃଶ୍ୟ ହୁଏ, ଦେହର ଦୁର୍ଗନ୍ଧ ଦୂର ହୁଏ, ଚର୍ମ କୋମଳ ଓ କାନ୍ତିଯୁକ୍ତ ହୁଏ, ମନର ସ୍ଥୈର୍ଯ୍ୟ ଧୈର୍ଯ୍ୟ ବଢ଼େ, ସ୍ମରଣଶକ୍ତି ବୃଦ୍ଧି ହୁଏ ।

ମୂଲ୍ୟ ପ୍ରତି ବଡ଼ ଆଃ ଶିଶି ଟ ୨ ୯; ୩, ୬, ୧୨ ଶିଶି କ୍ରମାନ୍ୱୟରେ ଟ ୫ ୲, ଟ ୧୦ ୲, ଟ ୨୦ ୯; ପ୍ୟାକିଙ୍ଗ ଓ ଡାକମାଶୁଲ ସ୍ୱତନ୍ତ୍ର ।

ପ୍ରାପ୍ତିସ୍ଥାନ—ଡବଲିଉ, ମେଜର ଏଣ୍ଡ କୋଂ
ହେଡ଼ ଅଫିସ,—୧୨ ନମ୍ବର ୱେଲିଂଟନ ଷ୍ଟ୍ରିଟ, କଲିକତା ।

# ଉତ୍କଳ-ସାହିତ୍ୟ ।

—— ୦※୦ ——

## ବାଣ-ହରଣ ।※

——:୦:——

### ପ୍ରଥମ ସର୍ଗ ।

ପୁଚ୍ଛିଲେ ଜନମେଜୟ ମୁନିଙ୍କ ପୟରେ,
ହେ ମୁନି ବାସନା ମୋର ପୂରଅ ସତ୍ୱରେ,
ଭୀଷ୍ମର ପାଣ୍ଡବ-ବଧ-ପ୍ରତିଜ୍ଞା ବିଷୟ,
ଶୁଣି ବିସ୍ମୟରେ ମନ ହେଉଛି ଅଥୟ,
କିରୂପେ ପାଇଲେ ବାର୍ତ୍ତା ରାଜା ଯୁଧିଷ୍ଠିର,
କିରୂପେ ବିହିଲେ ରକ୍ଷା ପ୍ରଭୁ ଯଦୁବୀର,
କହନ୍ତି ମହର୍ଷି ଶୁଣ ପୂର୍ବର କଥନ,
ଉତ୍ତରେ ଶିବିରେ ଯହିଁ ପାଣ୍ଡୁପୁତ୍ରଗଣ
ସଭା କରି ବସିଛନ୍ତି ଶ୍ରୀକୃଷ୍ଣ ସହିତ,
ପାଣ୍ଡବଙ୍କ ପକ୍ଷ ନୃପଗଣ ଅଗଣିତ
ସହିତେ ଲାଗିଛି ନାନା କଥୋପକଥନ,
ଏ ସମୟେ ଶୁଣ, ରାଏ, ଘଟିଲା ଯେସନ,
ଅସ୍ତଗାମୀ ରବିଙ୍କର କନକକିରଣେ
ଶିବିରର ଭୃଙ୍ଗଚୂଡ଼ା ଝଟକେ କେସନେ,
ଏ କାଳେ ଶିବିରଦ୍ୱାରେ ଉଭା ହେଲା ଚର,
ଶୁଣି ଆସିଥିଲା ଯେଉଁ ପୂର୍ବ ସମାଚାର;
ଦୁର୍ଯ୍ୟୋଧନ ଅଳି ଶୁଣି ଭୀଷ୍ମ ମହାବୀର
ପାଣ୍ଡବେ ବଧିବେ ବୋଲି ଦେଇଥିଲେ ଗିର,
ଶୁଣି ଚର ଊର୍ଦ୍ଧ୍ୱଶ୍ୱାସେ ଆସିଲାକ ଧାଇଁ,
ନୃପତି ସମ୍ମୁଖରେ କହେ ମସ୍ତକ ନୁଆଇଁ,

"ଅବଧାନ ହେ ମହିମା, ହେ ନାଥ ଶ୍ରୀପତି,
ଶୁଣି ଆସିଲଇଁ ଅଛି ଅଦ୍ଭୁତ ଭାରତୀ,
ଅସଦୃଶ କଥା ସେହି କହିବି କେସନେ !
ଅଭୟ ପାଇଲେ ସବୁ କହିବି ଚରଣେ ।"
ଚର କଥା ଶୁଣି ଦେଲେ ଅଭୟ ଗୋସାଇଁ
"ଯା କହିବ କହ ଫେଡି କିଛି ଭୟ ନାହିଁ ।"
ବ୍ୟାଧ ବୋଲେ "ଅବଧାନ କର ନରନାହା,
ଠିକେ କହିଛିବା କର୍ଣ୍ଣେ ଶୁଣିଲି ମୁଁ ଯାହା,
ହସ୍ତିନାକୁ ଯାଇଥିଲି ଗୂଢ଼ କାର୍ଯ୍ୟ ପାଇଁ,
ଥିଲି ଭୀଷ୍ମ ସମ୍ମୁ ପାଶେ ନଜରୁ ଲୁଚାଇ;
ଏକାଳେ କୌରବନାଥ ପ୍ରବେଶି ଶିବିରେ
ସେନାପତିପଦେ ଭୀଷ୍ମେ ବରିଲେ ବିଧିରେ,
ରାଜା ଆଗେ ବାକ୍ୟ ଦେଲେ ଭୀଷ୍ମ ବୀରମଣି
'ଅପାଣ୍ଡବା କାଲି ମୁହିଁ କରିବି ଧରଣୀ,'
ପିତାମହ ମୁଖେ ଶୁଣି ଏ ପ୍ରତିଜ୍ଞା ଗିର
ବାହୁଡ଼ିଲେ ହୃଷ୍ଟମନେ ରାଜା ସ୍ୱଶିବିର,
ସ୍ୱନେତ୍ରେ ଦେଖିଲି ସବୁ, ଶୁଣିଲି ଶ୍ରବଣେ,
ଯା ଦେଖିଲି ଯା ଶୁଣିଲି କହିଲି ଚରଣେ,
ଛାର ମୁହିଁ, ବୁଦ୍ଧି ମୋର ହୋଇଗଲା ହଣା,
ଏଥିକି ଉପାୟ ଲୋଡ଼ା ହେଉ ବିଚାରଣା,
ଗୋବିନ୍ଦ ତୁମ୍ଭର ସାହା ବ୍ରହ୍ମାଣ୍ଡଠାକୁର
ବିହିବେ ଅବଶ୍ୟ ଏଥି ଉପାୟ ପ୍ରଚୁର ।"

---

※ ଅସ୍ମମାନଙ୍କର ପୂର୍ବପୁରୁଷ ୬ ଉଦୟନାରାୟଣ ରାୟ-ଲିଖିତ ବଙ୍ଗଳା କାଶିରାମଦାସୀୟ ମହାଭାରତର ଖଣ୍ଡିଏ ଅତି ପ୍ରାଚୀନ ପାଣ୍ଡୁଲେଖ୍ୟର ଆଖ୍ୟାନ ଅବଲମ୍ବନ କରି ଏହି "ବାଣ-ହରଣ" ପ୍ରସଙ୍ଗ ମତ୍କର୍ତ୍ତୃକ ସଙ୍କଳିତ ହୋଇଥିଲା ।

ଶ୍ରୀ ରାଧାନାଥ ରାୟ ।

ନୃପ ମୁଖୁଁ ଏହି ବାଣୀ ଶୁଣି ଯୁଧିଷ୍ଠିର
ଭ୍ରାତୃଗଣସହ ହେଲେ କମ୍ପିତଶରୀର,
ଉତ୍ପାତ ପ୍ରାୟେ ଭୂ କମ୍ପିଲା ଯେସନେ,
ଉଠିଲେ ସମାଜ ଛାଡ଼ି ଗୋବିନ୍ଦ ଚରଣେ,
ବୋଇଲେ ଅର୍ଜୁନ "କାହିଁ ଉଠିଲ ହେ ମିତ,
ଅଧୀର ହେଉଛ କାହିଁ, ଏହା କି ଉଚିତ ?"
ବୋଇଲେ ଶ୍ରୀକୃଷ୍ଣ "ଶୁଣ ପାର୍ଥ ଧନୁର୍ଦ୍ଧର,
ସତ୍ୟ ସେ କଥା ଯାହା କହିଲା ଏ ନର,
ମାଗୁଣି ଏତେକ ମୋର, ଭୋ ଧର୍ମନୃପତି,
ବିଦା କର ଦିଅ ମୁହିଁ ଯିବ ଦ୍ୱାରାବତୀ ।"
କୃଷ୍ଣବାକ୍ୟ ଶୁଣି ରାଜା କହନ୍ତି ବିନୟେ,
"ଯିବ ଯେବେ, କିଛିକ୍ଷଣ ରହ, ଦୟାମୟେ,
ଜଗତେ ବିଦିତ କୃଷ୍ଣ ପାଣ୍ଡବର ସାହା,
ପାଣ୍ଡବର ବଳବୁଦ୍ଧି, ପାଣ୍ଡବର ନାହା,
ତୁମ୍ଭର ଭରସା, ନାଥ, ରଖିଥିଲି ମନେ,
ଚରଣ ତୁମ୍ଭର, ପ୍ରଭୁ, ବୁଝିବି କେସନେ ?
କୁରୁକ୍ଷେତ୍ରେ କାଲି ଯାଉ ହେବଟି ସମର,
ତାକୁ ଛାଡ଼ି ଆଜ ତୁମ୍ଭେ ଯିବ ନିଜ ଘର !"
ଭୀମ ବୋଲେ "କୃଷ୍ଣ, ତୁମ୍ଭ ବିଚାର ବିଚିତ୍ର,
ବିସ୍ମୟ ଲାଗଇ ଦେଖି ତୁମ୍ଭର ଚରିତ୍ର !
ଅଳ୍ପ ବୁଦ୍ଧି ତୁମ୍ଭର ଭାଳଇ ମୁହିଁ ମନେ,
ଆସ ଆସ ବସ ଆସି ନିଜ ସିଂହାସନେ ।"
ଏହା କହି ଝିଙ୍କି ନେଇ କୃଷ୍ଣଙ୍କୁ ସବଳେ
ବସାଇ ଦେଲେକ ଭୀମ ପୁଣି ସଭାତଳେ,
ଦାରୁଣ ହୁତେନ୍ଦ୍ର ବଳ ଧରଇ ପାବନ,
କମ୍ପିଲେ ତା ଝିଙ୍କା ପାଇ ପ୍ରଭୁ ଯଦୁମଣି,
କହନ୍ତି ନୃପଙ୍କୁ ଚାହିଁ ହାସ୍ୟମୁଖେ "ଅହେ
ଭୀମର ଏ ହୁଣ୍ଡ୍ରାପଣ ଦେଖିଲଟି ରାଏ !
ମୋହଠାରେ ଲବେ ଯାର ନାହିଁ ଉପରୋଧ,
ଆନ ଜନେ କିବା କଥା କହିଲେ ଏ କ୍ରୋଧ ।"
କହନ୍ତି ନୃପତି କରି ବିନୟ ବହୁତ
"ଭୀମର ଯେତେକ ଦୋଷ କ୍ଷମ ହେ ଅଚ୍ୟୁତ,
ହୁଣ୍ଡାପଣ ଭୀମର ହେ ନୁହଇ ନୂତନ,
ଏହା ଜାଣି କ୍ଷମ ତାକୁ, ହେ ମଧୁସୂଦନ ।"

ଯୁଧିଷ୍ଠିର ବାଣୀ ଶୁଣି କୃଷ୍ଣ ସହାସରେ
ସ୍ନେହ-ଆଲିଙ୍ଗନ ଦେଲେ ଭୀମଙ୍କୁ ସାଦରେ,
ବ୍ୟଗ୍ର ହୋଇ ବୋଇଲେ "ହେ ଧର୍ମନରପତି
ଯାହା ହେଉ, ଆଜ ମୁହିଁ ଯିବ ଦ୍ୱାରାବତୀ,"
ଆରତେ କହନ୍ତି ରାଏ "ଅହେ ବନମାଳୀ,
କି ଗତି ଆମ୍ଭର ହେବ ତୁମ୍ଭେ ଗଲେ ଚାଲି,
ଭୋ ପ୍ରଭୁ ଆରତତ୍ରାଣ ବ୍ରହ୍ମାଣ୍ଡ-କରତା,
ତୁମ୍ଭେ ଯେବେ ଛାଡ଼ି ଯିବ, ସରଲାଟି କଥା !"
କହନ୍ତି ଶ୍ରୀକୃଷ୍ଣ "ନାହିଁ ଉପାୟ ଏହାର,
ପାଣ୍ଡବର ମୁହିଁ ଏହା ଜାଣଇ ସଂସାର,
ତୁମ୍ଭର ଶରଣେ ରାଏ ଯାପିଲି ଜୀବନ,
ଶକ୍ତିମତେ କଲି ତୁମ୍ଭ ସଙ୍କଟ-ଖଣ୍ଡନ,
ଏ ସଙ୍କଟୁ ଉଦ୍ଧାରିବା ଅସାଧ ମୋହର,
ତେଣୁ ଏ ବାସନା ଏଥୁଁ ହୋଇବି ଅନ୍ତର,
ତ୍ରିଭୁବନେ ନାହିଁ ବୀର ଭୀଷ୍ମର ସମାନ,
ଭୀଷ୍ମ ଯା କହନ୍ତି କେବେ ନୋହିବଟି ଆନ
ଇନ୍ଦ୍ର ଚନ୍ଦ୍ର ପବନ ଶମନ ପ୍ରେତପତି,
ଗନ୍ଧର୍ବ କିନ୍ନର ସୁରାସୁର ଯକ୍ଷ ରକ୍ଷ,
ସମସ୍ତେ ଯୁଝନ୍ତି ଯେବେ ସହସ୍ର ବତ୍ସର
ଭୀଷ୍ମେ ନ ପାରିବେ ଜିଣି କହିଲି ନିକର,
ଭୀଷ୍ମର ପ୍ରତିଜ୍ଞା କଥା ସଂସାରେ ବିଦିତ,
ନିଜକୁ ସଂସାରସୁଖୁଁ କଲା ଯେ ବଞ୍ଚିତ,
ପିତୃସୁଖ ଲାଗି ନିଜ ସୁଖେ ଜଳାଞ୍ଜଳି
ଦେଇ ଚିରକୁମାରର ବ୍ରତ ନେଲା ବଳି!,
ଯେ ପ୍ରତିଜ୍ଞା କରେ ଭୀଷ୍ମ, କରେ ତା ପୂରଣ,
ଯେବେ ଯାହା କହେ, ତାହା ନ କରେ ଲଙ୍ଘନ,
ମୁନିଗଣଠାରୁ ମୁହିଁ ଶୁଣିଛି ଖବର
ତୁମ୍ଭ ବଧ ଲାଗି ଭୀଷ୍ମ ରଖିଛନ୍ତି ଶର,
ପାଇଲେ ସେ ଶର ହାତୁଁ ମୋତେ ନାହିଁ ଜଣା,
ଭୀଷ୍ମର ପ୍ରତିଜ୍ଞା ଶୁଣି ବୁଦ୍ଧି ହେଲା ହଣା,
ସେହି ଶରଯୋଗୁଁ ଭୀଷ୍ମ କରିଅଛି ପଣ,
ସେ ଶରେ କରିବ ପଞ୍ଚ ଭ୍ରାତାର ନିଧନ,
ଅମୋଘ ପ୍ରତିଜ୍ଞା ତାର, ତେଣୁ, ହେ ନୃପତି,
ବିଦା କରିଦିଅ, ମୁହିଁ ଯିବି ଦ୍ୱାରାବତୀ,

ପଞ୍ଚପାଣ୍ଡବର କାଲି ମରଣ ନିଶ୍ଚିତ,
ନୟନେ ଦେଖିବା ମୋର ନୁହଇ ଉଚିତ,
ତୁମ୍ଭଙ୍କୁ ରକ୍ଷିବ, ମୋର ଶକତି ତ ନାହିଁ,
ବୃଥା ଏ ଶିବିରେ ଅସ୍ତ୍ର ରହିବ କପାଇଁ ?''
ଏହା ଶୁଣି ସବିନୟେ ବୋଲେ ରାଜା ଧର୍ମ
"ତୁମ୍ଭର ଅସାଧ ଯାହା ଅଛୁଡ଼ି ସେ କର୍ମ,
ତୁମ୍ଭ ଯୋଗୁଁ ଯେ ବିପଦ ନୋହିବ ବାରଣ,
ଯହିଁ ବ୍ରହ୍ମା ଶିବ ଇନ୍ଦ୍ରେ ନ କରେ ଗଣନ,
ତେଣୁ ଏ ପ୍ରାର୍ଥନା ମୋର, ହେ ବ୍ରହ୍ମାଣ୍ଡସାଇ,
କାଳପ୍ରାପ୍ତ ନଷ୍ଟେ ଯେବେ ଅମ୍ଭେ ପଞ୍ଚଭାଇ,
ନଶିଲେ ମରଣ ଧ୍ରୁବ ନୁହେ ଖଣ୍ଡିବାର,
ସେ ଭୟ ଅମ୍ଭର ନାହିଁ କୃପା-ପାରାବାର,
ଭୀଷ୍ମଶରେ ଅମ୍ଭେ ଯେବେ ମରିବୁ ଗୋସାଇଁ,
ତୁମ୍ଭେ କପାଁ ଦ୍ୱାରବତୀ ଯିବ ସେଥିପାଇଁ ?
କାଲି ଅମ୍ଭ ଅଗେ ଉଭା ହେବ ରଣସ୍ଥଳେ,
ଶ୍ରୀମୂର୍ତ୍ତି ନିରେଖି ପ୍ରାଣ ତେଜିବୁଁ ସକଳେ,
ମୃତ୍ୟୁକାଳେ ତୁମ୍ଭଙ୍କୁ ଦେଖିବୁଁ ପଞ୍ଚଭାଇ,
ଲଭିବୁଁ ପରମଗତି, ଅହେ ଭବତ୍ରାହୀ,
ଶ୍ରୀମୁଖପଙ୍କଜ ଦେଖି ଏ ପାପନୟନେ
ତେଜିବୁଁ ପରାଣ ସର୍ବେ ଭୀଷ୍ମ-ପ୍ରହରଣେ,
ଏ ସୁଖୁଁ ଅମ୍ଭଙ୍କୁ କପାଁ କରିବ ବଞ୍ଚିତ ?
କୃପାନିଧି, ଏହା କି ତୁମ୍ଭର ଉଚିତ ?
ମାତ୍ର ହରି ପାଣ୍ଡବର ଆଶା ନ ପୂରିଲା,
କୌରବର ଅହଙ୍କାର ଅଧିକେ ବଢିଲା,
ଯା କଲା କୌରବ ସବୁ ହେଲାଟି ସମ୍ଭବ,
ଧନ୍ୟ ଭାଗ୍ୟବନ୍ତ ଧନ୍ୟ ଧନ୍ୟ ସେ କୌରବ,
ଧର୍ମ ତେଜି ଅଧର୍ମ ଆଚରି ପଦେ ପଦେ
ବିରାଜଇ ଧରାଧାମେ ଅଖିଲ ସମ୍ପଦେ,
ତୁମ୍ଭ ଯୋଗୁଁ ହେଉଅଛି ଏପରି ଭିଆଣ,
ତୁମ୍ଭେଟି ସବୁରି ହେତୁ, ନାହିଁ ହେତୁ ଆନ,
ଦୁଷ୍ଟର ଦଳନକାରୀ ଧର୍ମର ପାଳକ,
ଆତୁର ଜନଙ୍କୁ ତୁମ୍ଭେ କରଟି ତାରଣ,
ଦୁଷ୍ଟ ଜନେ କେହି ଯେବେ ଅଧର୍ମ ଆଚରେ,
ନ୍ୟାୟମାର୍ଗ ଲଙ୍ଘି ସାଧୁପାରେ ହିଂସା କରେ,
ତାହାରିକି କଷ୍ଟ କହେ ନାହିଁ ସାଧୁ ନର,
ସାକ୍ଷୀ କରି କହେ 'ମୋର ଅଛନ୍ତି ଈଶ୍ୱର'
ମାରିବେ ସେ ସହି ନିବ ସମସ୍ତ ପୀଡ଼ନ,
ମାତ୍ର ସବୁବେଳେ ଭାବେ ତୁମ୍ଭର ଚରଣ,
ପଦେ ପଦେ ଧର୍ମ ଧରେ ତୁମ୍ଭ ପାଦ ଧ୍ୟାୟି,
ତୁମ୍ଭର ଭକତି ସ୍ତୁତି ନିତି କରୁଥାଇ,
ଏହି କି ତୁମ୍ଭର, ନାଥ, ଈଶ୍ୱରଲକ୍ଷଣ ?
ଅଧର୍ମୀ ଜନର କର ସମ୍ପଦ-ବର୍ଦ୍ଧନ !
ଅଧର୍ମର ସାହା ତୁମ୍ଭେ ଅଟ ଯେବେ, ହରି,
ଆଗୁଁ ଜଣା ଥିଲେ କପାଁ ହୁଅନ୍ତା ଏପରି ?
ତୁମ୍ଭର ମହିମା କେବା ବୁଝିବାକୁ କ୍ଷମ ?
ଅନନ୍ତ ଭୁବନେ ତୁମ୍ଭ କର୍ମ ଅନୁପମ !
ଯାହା ଇଚ୍ଛା ତାହା ତୁମ୍ଭେ କରୁଛ ସାଧନ,
ତ୍ରିଭୁବନେ ହର୍ତ୍ତା କର୍ତ୍ତା ଆତୁର-ରକ୍ଷଣ,
ଅଗ୍ନିକୁଣ୍ଡୁଁ ପ୍ରହ୍ଲାଦଙ୍କୁ ରଖିଲ ଶ୍ରୀହରି,
କୃଷ୍ଣାଲଜ୍ଜା ନିବାରିଲ ବସ୍ତ୍ର ଦାନ କରି,
ତୁମ୍ଭ ଯୋଗୁଁ ଜତୁଗୃହୁଁ ବଞ୍ଚିଲୁଁ ସରବେ,
ବନବାସ କଟାଇଲୁଁ ଅତୁଳ ବିଭବେ,
ଦୁର୍ବାସାଙ୍କ ଅଭିଶାପୁଁ ରକ୍ଷିଲ କେଶବ,
ରକ୍ଷିଲ ଭୀମଙ୍କୁ ବିଷ ଦେଲାରୁ କୌରବ,
ଏକଚକ୍ରୀ ଗ୍ରାମେ ରକ୍ଷଃ ମୁଖୁଁ କଲ ପାରି,
ପାଣ୍ଡବର ସଖା ମନ୍ତ୍ରୀ ତୁମ୍ଭେ, ଦଇତାରି,
ଅସାଧ ତୁମ୍ଭର ପୁଣି କି ଅଛି ଜଗତେ ?
ତେଣୁ ରକ୍ଷା କର, ନାଥ, ଡାକୁଛି ଆରତେ,
ଭୀଷ୍ମଶରୁଁ ଉଦ୍ଧାର ହେ ବ୍ରହ୍ମାଣ୍ଡଠାକୁର,
କୃପା-ଅକୂପାର ନାମ ଘୋଷୁ ଜନପୁର ।''
ଭୀମ କହେ "ଅହେ ହରି ତୁମ୍ଭର ଭିଆଣ
ଦେଖି ବିସ୍ମୟରେ ମୁହିଁ ହେଲି ହତଜ୍ଞାନ,
ଅମ୍ଭେ ପାଞ୍ଚଭାଇ, ପ୍ରଭୁ, ତ୍ରିଭୁବନଜେତା,
ଧର୍ମବନ୍ତ ଧର୍ମପୁତ୍ର ଯାହାଙ୍କର ନେତା,
ଯାର ଧର୍ମବଳଯୋଗୁଁ ସର୍ବତ୍ର କୁଶଳ,
ଛୋଟେ ସଙ୍ଗୀ କରି ଦେଲା ଯେଉଁ ଧର୍ମବଳ,
ଯାଅ ଶୁତ, ଯହିଁ ଇଚ୍ଛା କର ତୁ ଗମନ,
ଧର୍ମ ତ ଅମ୍ଭର ଯିବ ନାହିଁ, ନାରାୟଣ,

କରିଅଛି ଟାଣପଣ ଗଙ୍ଗାର କୁମାର
କାଲି ରଣେ ପାଣ୍ଡବଙ୍କୁ କରିବ ସଂହାର,
କୋଟି ଭୀଷ୍ମ ଆସେ ଯେବେ, କୋଟି ଦୁର୍ଯ୍ୟୋଧନ,
କୋଟି କର୍ଣ୍ଣ, କୋଟି ଦ୍ରୌଣି, କୋଟି ଗୁରୁ ଦ୍ରୋଣ,
ମିଶନ୍ତି ସେପକ୍ଷେ ଯେବେ ଅମର ସକଳେ,
ତୁମ୍ଭେ ନକେ ଥାଅ ଯେବେ ମିଶି ହେଉ ଦଳେ,
ଧର୍ମଙ୍କ ଅଗ୍ରଜେ ଥୋଇ ଅମ୍ଭେ ପାଞ୍ଚଭାଇ
ତୁମ୍ଭ ନାମ ସ୍ମରି ଯିବୁଁ ସମରେ, ଗୋସାଇଁ,
ତୁମ୍ଭ ନାମ ଧର୍ମବଳେ ନିଶ୍ଚେ ହେବୁଁ ଜୟୀ,
ସ୍ୱନେତ୍ରେ ଦେଖିବ ସବୁ ରଣ ସ୍ଥଳେ ରହି,
ଲାଜ ମାଡୁ ନାହିଁ, ବସିଅଛ ପୋତି ମଥା,
ତୁମ୍ଭର ଏ ରୀତି, ତୁମ୍ଭେ ବ୍ରହ୍ମାଣ୍ଡ-କରତା,
ଯେ ଭକ୍ତେ ତୁମ୍ଭଙ୍କୁ ଭାଳୁ ଦୁଃଖ ଦେଲେ ଅତି
ଜଗତପାବନ ନାମ କପାଁ ନେବେ ପ୍ରାଣୀ ?"
କହନ୍ତି ଅର୍ଜୁନ "ଶୁଣ ଅହେ ନାରାୟଣ,
ବୃଥା ବାକ୍ୟବ୍ୟୟେ ପ୍ରଭୁ କେଉଁ ପ୍ରୟୋଜନ ?
ଯାଲାଗି ହୋଇଛି ତୁମ୍ଭ ଅବତାର ଭବେ,
ତୁମ୍ଭ ଆଜ୍ଞାବର୍ତ୍ତୀ ହୋଇ ଅଛିଁ ସରବେ,
ତୁମ୍ଭେ ଜାଣ, ଅମ୍ଭେ ପୁଣି ଜାଣୁ ସେହି କଥା,
ବ୍ୟାଖ୍ୟାଇଅଣ କେବେ ନୋହିବ ଅନ୍ୟଥା,
ବୃଥାରେ ହେଉଛ କପାଁ ଏପରି ଅଥୟ ?
ଭୀଷ୍ମପଣ କହି କପାଁ ଦେଖାଉଛ ଭୟ ?
ଭୀଷ୍ମପଣ ଶୁଣି, ପ୍ରଭୁ, ହେଲ ଏତେ ସେଉ !
ତୋ କୃପାରେ ଦାସ ତୋର ସବୁ ପାରେ କରି,
ପିତାମହଠାରେ, ନାଥ, ଅଛି ଯେଉଁ ଶର
ହେଲେ ମୁଁ ଛେଦିବି କାଲି ତୁମ୍ଭର ଆଗର,
ଏହି ଭୟେ କରି ଯିବ ଅମ୍ଭଙ୍କୁ ବର୍ଜନ,
ବାଳକର କ୍ରୀଡ଼ାପ୍ରାୟେ ତୁମ୍ଭ ଆଚରଣ !
କାଲି ଯାର ପ୍ରଥମ ସଂଗ୍ରାମ ଉପସ୍ଥିତ,
ତାପ୍ରତି ଏ ବାକ୍ୟ ତୋର ଅଟେ କି ଉଚିତ ?
କପାଁ କରାଇଲ ତେବେ ଯୁଦ୍ଧ ଆୟୋଜନ ?
କପାଁ କରାଇଲ ତେବେ ସୈନ୍ୟର ବର୍ଣ୍ଣନ ?
ନାରାୟଣୀସେନା କପାଁ ଦେଲ ଦୁର୍ଯ୍ୟୋଧନେ ?
ମୋର ହସ୍ତେ ନାଶ ହେବ କହିଲ ଆପଣେ,
ଅଦ୍ୟ ଭେଟହାରେ ଯାହା କହିଥିଲ, ହରି,
ଭୀଷ୍ମପଣ ଶୁଣି ସବୁ ଗଲ କି ପାସୋରି ?
ଈଶ୍ୱରଙ୍କ କଥା କିବା ଏହିପରି ଟଳେ ?
ତୁମ୍ଭ ଲୀଳା ଦେଖି ଆଜ ବିସ୍ମିତ ସକଳେ !"
ତଦନ୍ତରେ ସହଦେବ କହନ୍ତି ବଚନ
"ଅବଧାନ ହେଉ ପ୍ରଭୁ ଶ୍ରୀମଧୁସୂଦନ,
କଳ୍ପବୃକ୍ଷ ହୁଏ ଯେବେ ସ୍ୱହସ୍ତରୋପିତ,
ଛେଦନର ଯୋଗ୍ୟ ତାହା ନୁହେ କଦାଚିତ ।"
ଅଶ୍ରୁସିକ୍ତ ମୁଖେ ଭକ୍ତି କହନ୍ତି ନକୁଳ
"ଏ ଘୋର ସଂକଟେ, ନାଥ, ହୁଅ ଅନୁକୂଳ"
କହନ୍ତି ଦ୍ରୌପଦୀ 'କୃଷ୍ଣ, ଗୃହ୍ନି ଟେକ ମଥା,
କେଉଁ ଦିନୁ ଶିଖିଲ ହେ ଏତେ ନିଷ୍ଠୁରତା ?
ତ୍ରିଭୁବନେ ଖ୍ୟାତ ତୁମ୍ଭେ ପାଣ୍ଡବର ସାହା,
ଧର୍ମ କର୍ମ ବଳ ବୁଦ୍ଧି ତୁମ୍ଭେ ମାତ୍ର ନାହା,
କେତେ କେତେ ସଙ୍କଟରୁ କଲ ପ୍ରଭୁ ପାରି,
ଦୁର୍ବାସାଙ୍କ ଭୟେ ରକ୍ଷା କଲ, ଦାନବାରି,
ଉଦ୍ଧାରିଲ ଜୟଦ୍ରଥ ହସ୍ତୁଁ ମୋତେ ହେଲେ,
ବଞ୍ଚାଇଲ କୀଚକର ଆକ୍ରମଣବେଳେ,
ଶାନ୍ତିପନ ଋଷିଙ୍କର ଆଶ୍ରମେ ମୋ ପ୍ରାଣ
ବଞ୍ଚାଇଲ ଦୟା ବହି, ଅହେ ଭଗବାନ,
ଖାଣ୍ଡବଦାହନ ପରେ ପାର୍ଥସଙ୍ଗେ ଆସି
କହିଥିଲ ଯାହା ମନେ ରଖିଛି ଏ ଦାସୀ,
କହିଥିଲ ଏ ଯୁଦ୍ଧର ତୁମ୍ଭେ ଏକା ମୂଳ,
ତୁମ୍ଭ ଯୋଗୁଁ ଦର୍ପିଦର୍ପ ହୋଇବ ନିର୍ମୂଳ,
ତୁମ୍ଭ ଯୋଗେ ହେବ ଏହି କୁରୁକୁଳ ଧ୍ୱଂସ,
ତୁମ୍ଭ ଯୋଗେ କ୍ଷତ୍ରକୁଳ ହୋଇବେ ନିର୍ବଂଶ,
ଭୂଭାର ହରଣ ଲାଗି ତୁମ୍ଭେ ଭବତଳେ
ଅବତୀର୍ଣ୍ଣ, ଏହା ମୁହିଁ ଜାଣଇଟି ଭଲେ,
ତୁମ୍ଭ ସଙ୍ଗେ ଅବତୀର୍ଣ୍ଣ ପରଗୃହରୂପେ
ପାଞ୍ଚ ଭାଇ ମୁହିଁ ଏହା କହିଲ ସ୍ୱରୂପେ,
କପଟର କଥା ଏବେ କହ କେଉଁ ହେତୁ ?
ଧର୍ମର ପାଳକ ପରା ତୁମ୍ଭେ ଧର୍ମସେତୁ !
ଅନନ୍ତ ତୁମ୍ଭର ଲୀଳା ଅଗାଧ ସମୁଦ୍ର
କହିଁ କେ ପାରିବ କହ ହୋଇ ଜୀବ କ୍ଷୁଦ୍ର !

ହେଲ ତ ଉଦୟ ଥରେ, ମେଣ୍ଟିଲା ବାସନା,
ଏବେ ବହି କର ପ୍ରଭୁ ଉପାୟ ସର୍ଜ୍ଜନା,
ଅସ୍ତ ଗଲେ ରବି, ମୁହିଁ କରିବି ରଚନ,
ଉପାୟ ସରଜି ଅସି କରିବ ଭୋଜନ,
ଅଶେଷ ଚାତୁରୀ ଜାଣ, ଅଟେ ନନ୍ଦବାଳ,
ବିଶେଷରେ ନାମ ପୁଣି ତୁମ୍ଭର ଗୋପାଳ ।"
ହରିଙ୍କି ଏରୂପେ ଭାଷି ପରିହାସବାଣୀ
ହସନ୍ତି ବଦନେ ବସ୍ତ୍ର ଦେଇ ପାଟରାଣୀ,
ତଦନ୍ତେ କହନ୍ତି ବାଣୀ ପାଣ୍ଡୁକୁଳରାଣୀ
"ଯେ ଇଚ୍ଛା ତୁମ୍ଭର ତାହା ହେଉ ଭଗବାନ,
ନିଶ୍ଚେ ମୁଁ ଜାଣିଲି ଏବେ, ଅଟେ ଭାବଗ୍ରାହୀ,
ଭୀଷ୍ମଙ୍କରେ ପାଣ୍ଡବର କାଲି ରକ୍ଷା ନାହିଁ,
ସତେ କି ଅମ୍ଭଙ୍କୁ ତେବେ ତେଜିଲ ହେ ନାଥ?
ତୁମ୍ଭେ ନାଥ ଥାଉଁ ଅମ୍ଭେ ହେଲୁଁ କି ଅନାଥ ?
ସ୍ୱପନେ ନ ଭାଳିଥିଲି କରିବ ଏସନ,
ଏ ତୁମ୍ଭର ନ୍ୟାୟ, ହରି, ଈଶ୍ୱରଲକ୍ଷଣ ?
କୃପା-ଅକୂପାରୁଁ ବିନ୍ଦୁମାତ୍ର କୃପା ପାଇଁ
ଝୁରିବ କି ନାରଣ ହେଲୁଁ ବ୍ରହ୍ମାଣ୍ଡଗୋସାଇଁ ?
ପାଣ୍ଡବଙ୍କୁ ସତେ ପ୍ରଭୁ, କଲ କି ନିରଶ ?
ଚିରଦିନ ଆଶା କଲ ସମୂଳେ ବିନାଶ !
କୁନ୍ତୀଙ୍କ ମାଗୁଣି ପ୍ରଭୁ ନ ସ୍ମରିଲ ହେଲେ,
ପାଞ୍ଚ ଭାଇ ତୁମ୍ଭ ହାତେ ସମର୍ପି ଯେ ଥିଲେ,
ଗୁରୁଜନ ବାକ୍ୟ ପ୍ରଭୁ ନ ଘେନିଲ ମନେ,
ନିଶ୍ଚିନ୍ତ ଯେ ଥିଲେ ତୁମ୍ଭ ଆଶ୍ୱାସବଚନେ;
ଜନନୀ କୁନ୍ତୀଙ୍କ ବାଣୀ ଶିରୋଧାର୍ଯ୍ୟ କରି,
ଅଭୟତ ଦେଇଥିଲ ପାଣ୍ଡବଙ୍କୁ, ହରି;
କେଉଁ କାଳପାଇଁ ଦେଇଥିଲ ସେ ଅଭୟ,
ଏ ଅନ୍ତକେ ଛାଡ଼ ଯେବେ ଯିବ କୃପାମୟ ?
ତୁମ୍ଭେ ଛାଡ଼ ଗଲେ ସର୍ବେ ଭାସିଲୁଁ ଅକୂଳେ,
ସକଳ ଭରସା ତୁଟି ଗଲାଟି ସମୂଳେ !"
କୃଷ୍ଣେ ଚାହିଁ ନରପତି ଭାଷିଲେ ଏସନ,
ଲୋତକେ ପୂରିତ ହେଲା ଯୁଗଳ ନୟନ,
କହେ ଭୀମ "ମହାରାଜ, ଶୁଣ ମୋର ବାଣୀ,
ଯେତେକ ଅନର୍ଥ ତୁମ୍ଭେ ଘଟାଇଲ ଆଣି,
ତୁମ୍ଭେ କହ କରେଁ ମୁହିଁ ଧର୍ମ ଆଚରଣ,
ଧର୍ମତେଜେ ତ ଉଠିବ ଶତ୍ରୁଙ୍କ ନିଧନ,
ଧର୍ମ ଯୋଗୁଁ ଚିରସଖା ମୋହର କେଶବ,
ରଣେ ତ ଉଠିବେ ସେହି ଶତ୍ରୁ ପରାଭବ,
ବୃଥା ହେଲା ସବୁ ଆଶା, ଧର୍ମ ଆଚରଣେ
ଯେ ଫଳ ଫଳିଲା ତାହା ଦେଖିଲ ଆପଣେ,
କୃଷ୍ଣଙ୍କ ନିଜର ଭାବ ସମୁଚିତ ଫଳ
ଲଭିଲ, ଅମୃତ ଜାତ ହେଲାଟି ଗରଳ,
ପ୍ରତି ପଦେ ପଦେ ତୁମ୍ଭ ଆଶା ପୂର୍ଣ୍ଣ କରି
ବୁଡ଼ାଇଲେ ଭେଳା ଏବେ ସିନ୍ଧୁ ମଧ୍ୟେ ହରି,
ସବୁବେଳେ ଥିଲା, ରାଜା, ଧର୍ମ ତୁମ୍ଭ ଲକ୍ଷ୍ୟ,
ଧର୍ମର ଯେ ଫଳ ତାହା ହେଲାଟି ପ୍ରତ୍ୟକ୍ଷ !
ଆଉ କି କହିବି ମୁହିଁ ଶୁଣ ନରପତି,
ଯେତେ ଆଶା ବାନ୍ଧିଥିଲ ହୃଦେ ହରି ପ୍ରତି,
ଏବେ ତ ଜାଣିଲ ସେହି ପ୍ରିୟ ବନ୍ଧୁ କର୍ମ,
ବନ୍ଧୁତ ଭରସା କରିଥିଲ, ଅଟେ ଧର୍ମ,
ହେ କପଟୀ, କର ଆଉ ଭରସା କାହାର ?
ନିଜ ବାହୁବଳେ କର କୌରବ ସଂହାର,
ଲକ୍ଷ ରାଜା ପରାଜିଲ କୃଷ୍ଣା ସ୍ୱୟମ୍ବରେ,
ଭଦ୍ରା ଲାଗି ଯଦୁସେନା ଦଳିଲ ସମରେ,
ଦେବଗଣ ଜିଣି କଲ ଖାଣ୍ଡବ ଦାହନ,
ବାହୁ ଯୁଦ୍ଧେ ତୁଷ୍ଟ କଲ ଦେବ ତ୍ରିଲୋଚନ,
ନିବାତକବଚେ ନାଶି ତୋଷିଲ ବାସବେ,
ଗୋଗୃହେ ଜିଣିଲ କୁରୁବାହିନୀ ଆହବେ,
ଗନ୍ଧର୍ବର ହସ୍ତୁ ମୁକ୍ତ କଲ ଦୁର୍ଯ୍ୟୋଧନ,
ଏବେ ସେ ପାମରେ କର ସସୈନ୍ୟେ ନିଧନ,
ଯୁଧିଷ୍ଠିରେ ରାଜ୍ୟଛତ୍ର ଦିଅ ଏବେ, ଭାଇ,
ବନ୍ଧୁ ବାନ୍ଧବର ଆଉ ଆଶା ରଖ ନାହିଁ,
ଭୀଷ୍ମର ପ୍ରତିଜ୍ଞା ମହୀ ହେବ ଅପାଣ୍ଡବା,
ତୁମ୍ଭେ, ଭାଇ, କାଲି ମହୀ କର ଅକୌରବା,
ଆସିଛନ୍ତି ଦୂରୁଁ ଯେତେ ଯେତେ ରାଜଗଣ,
ସମସ୍ତଙ୍କୁ ବିଦା କରି ଦିଅ ଏହିକ୍ଷଣ,
ପର କେଉଁ କାଳେ ଭାଇ ହୁଏ କି ନିଜର ?
ସବୁ କାଳେ ଜଣା ଏହା—ଯେ ପର ସେ ପର,

ଗାଣ୍ଡୀବ କୋଦଣ୍ଡ କୋଟି, ଅକ୍ଷୟ ଯେ ତୂଣ,
କାଲି ରଣେ କର, ତାତ, ଭୀଷ୍ମପଣ ଚୂର୍ଣ୍ଣ ।"
କହୁଁ କହୁଁ ଭୀମ ରୋଷେ ହେଲେକ ଅସ୍ଥିର,
ଚକ୍ଷୁ ଠାରି ନିବାରିଲେ ତାଙ୍କୁ ଯୁଧିଷ୍ଠିର,
"ଧୈର୍ଯ୍ୟ ଧର, ବୀର, ଏବା ନୁହେ କ୍ରୋଧକାଳ,
ସାଧୁ ଯେ ସେ କ୍ରୋଧବଶେ ହୁଅଇ ଚଣ୍ଡାଳ,
ଏହିପରି ଅମ୍ଭେ ଯେବେ ହେବୁଁ ନିଧନ,
ଅକାରଣ ହେବ ସିନା ଧର୍ମ-ଆଚରଣ !
ଦେଖ କରୁଛନ୍ତି ହରି ଏଥିକି ମନ୍ତ୍ରଣା,
ଆମ୍ଭର ଧର୍ମର ତେଜ ତହୁଁ ଯିବ ଜଣା,
ନିତାନ୍ତ ଆମ୍ଭଙ୍କୁ ଯେବେ ଛାଡ଼ନ୍ତି ଶ୍ରୀପତି,
ଧର୍ମ ବଳେ ଅକୌରବା କର ବସୁମତୀ;
ଶ୍ରୀହରିଙ୍କ ମହିମା ନ ଜାଣ ବୃକୋଦର,
କର୍ମାର୍ଜିତ ଫଳ ପ୍ରଭୁ ଦିଅନ୍ତି ନରର ।"
ଏହା କହି ଜୋଡ଼ପାଣି କୃଷ୍ଣେ କଲେ ସ୍ତବ
"ଆର୍ତ୍ତଭଞ୍ଜନ ପ୍ରଭୁ ରକ୍ଷ ହେ ମାଧବ,
ତୁମ୍ଭର ସୃଜନ ଦେବ ଏ ତିନି ଭୁବନ,
ସତ୍ତ୍ୱ ରଜଃ ତମଃ ଗୁଣ ଧର ନାରାୟଣ,
ତୁମ୍ଭେ ବ୍ରହ୍ମା, ତୁମ୍ଭେ ଶିବ, ତୁମ୍ଭେ ଆଖଣ୍ଡଳ,
ତୁମ୍ଭେ ରବି, ତୁମ୍ଭେ ଶଶୀ, ବୃନ୍ଦାରକଦଳ,
ଅନନ୍ତ ଶକତିର ବ୍ୟାପଇ ନିରତେ
ଖଟଇ ତୁମ୍ଭର ଭୂତେ, ଭବ୍ୟେ, ଭବିଷ୍ୟତେ,
ତୁମ୍ଭେ ଆଦିମୂଳ, ନାଥ, ଜଗତ-କରତା,
ବେଦ ଶାସ୍ତ୍ର ତୁମ୍ଭେ, ନାଥ, ସଭିଙ୍କ ଭରତା,
ମୋହପଦ ଭାଗ୍ୟଧର କେବା ତ୍ରିଜଗତେ,
ସାହା ହୋଇ ସଙ୍ଗେ ଯାଇ ଫେରେ ଅବରଣେ ?
ଯାହାଙ୍କୁ ଭଜନ୍ତି ଯୋଗୀ ଋଷି ଅବିରାମ,
ପଞ୍ଚାନନେ ପଞ୍ଚାନନ-ଉଚ୍ଚରନ୍ତି ଯା ନାମ,
ଚତୁର୍ମୁଖେ ବିରଞ୍ଚି, ସହସ୍ର ମୁଖେ ଶେଷ
ଗାଇ ନ ପାରନ୍ତି ଯାର ମହିମାର ଲେଶ,
ପାଣ୍ଡବର ପତି ତୁମ୍ଭେ ତ୍ରିଭୁବନେ ଖ୍ୟାତ,
ସଙ୍କଟୁ ତାରିଲ କେତେ ଥର ଜଗନ୍ନାଥ,
ଭୀଷ୍ମର ବାଣର କଥା ଶୁଣି ଦେହ ଥରେ,
ଅଭୟରକ୍ଷଣ ଚାହିଁ କୃପାକଟାକ୍ଷରେ,
ଭୀଷ୍ମଶରେ ପାଞ୍ଚ ଭାଇ ହେବୁଁ ଯେବେ ନାଶ,
ତୁମ୍ଭ ଅପଯଶ ହେବ ଭୁବନେ ପ୍ରକାଶ !
ତୁମ୍ଭର ଆଶ୍ରିତ, ନାଥ, ଏହି ପଞ୍ଚ ପ୍ରାଣୀ,
ଶରଣ ସମ୍ଭାଳ, ଅହେ ପ୍ରଭୁ ଚକ୍ରପାଣି ।"
ଏହିରୂପେ ସ୍ତବ ଯହୁଁ କଲେ ଯୁଧିଷ୍ଠିର,
ହୋଇଲେ ପ୍ରସନ୍ନ ମୁଖେ ପ୍ରଭୁ ଯଦୁବୀର,
"ବୃଥା ଚିନ୍ତା କି କାରଣେ କର ହେ ରାଜନ ?
ଯଥା ମୁହିଁ, ସେହିପରି ତୁମ୍ଭେ ପାଞ୍ଚ ଜଣ,
ତୁମ୍ଭଙ୍କୁ ବଧିବ ଏତେ ଶକତି କାହାର ?
ଥାଉ ଆନ, ବ୍ରହ୍ମା ଶିବେ ନାହିଁ ଅଧିକାର;
ଏଥି କେଉଁ ତୁଚ୍ଛ ପୁଣି ଗଙ୍ଗାର ନନ୍ଦନ !
କେଉଁ ତୁଚ୍ଛ ବାଣେ ପୁଣି କରିବ ନିଧନ !
ତ୍ରିଲୋକବିଜୟୀ ଅଟ ତୁମ୍ଭେ ପାଞ୍ଚ ଭାଇ,
ତୁମ୍ଭମାନଙ୍କର ମୃତ୍ୟୁ ଧରଣୀରେ ନାହିଁ,
ଯାବତ ତୁମ୍ଭର ଶତ୍ରୁ ନୋହିବ ନିଧନ,
ଯାବତ ତୁମ୍ଭର ରାଜ୍ୟ ନ ଲଭ, ରାଜନ,
ଯାବତ ତୁମ୍ଭଙ୍କୁ ଘେନି ବୈକୁଣ୍ଠେ ନ ଯିବ,
ତାବତ ନିଶ୍ଚିନ୍ତ ମୁହିଁ କେବେ ନ ହୋଇବ,
ତୁମ୍ଭେ ପାଞ୍ଚ ଭାଇ ମୋର ରହି ଧରଣୀରେ,
ଚିନ୍ତା ଛାଡ଼ ଦିଅ ମୋର ଏ ଅଭୟ ଗୀରେ ।"
ଏହା କହି ମହାଦରେ ଦେବକୀନନ୍ଦନ
ଶ୍ରୀଭୁଜେ ଧର୍ମଙ୍କୁ ଦେଲେ ପ୍ରେମ ଆଲିଙ୍ଗନ,
ଆଲିଙ୍ଗିଲେ ଭୀମାର୍ଜୁନ ମାଦ୍ରୀସୁତଦ୍ୱୟେ,
ବହିଲା ଉଲ୍ଲାସସ୍ରୋତ ପାଣ୍ଡବହୃଦୟେ,
ପୁଲକେ ପୂରିତ ହୋଇ ପ୍ରଫୁଲ୍ଲ ସକଳେ,
ବସନ ଭୂଷଣ ତିନ୍ତି ଗଲା ଚକ୍ଷୁଜଳେ,
ଜଡ଼ବତ ହୋଇଗଲା ହରଷେ ତରଳ,
ସଭିଙ୍କେ ପଡ଼ିଗଲା ଆନନ୍ଦ ଚହଲ,
କହନ୍ତି ଅର୍ଜୁନେ ଚାହିଁ ବ୍ରହ୍ମାଣ୍ଡଗୋସାଇଁ
"ମାୟା ଦୁର୍ଯ୍ୟୋଧନ ବେଶେ ଭୀଷ୍ମ ପାଶେ ଯାଇ
ଛଳ ତାଙ୍କୁ ଏହି ରବେ ଅଣ ପଞ୍ଚବାଣ,
ଏକମାତ୍ର ଏହି ପରିତ୍ରାଣର ବିଧାନ,
ମାୟାଦୁର୍ଯ୍ୟୋଧନ ବେଶ ରଚନା କଠିନ
ନୁହଇ ମୁକୁଟ ତାର ହେଲେ କରାଧୀନ,

ଅତୁଲ ରତନେ ଗଢ଼ା ସେ ମୁକୁଟ ଭବେ,
ସେ ମୁକୁଟ ମାଗ ଯାଇଁ ସଭାସ୍ଥ କୌରବେ;
ତାହାଙ୍କ ସ୍ମରଣ, ସାର, ଯେବେ ଭାଗ୍ୟ ବଳେ
ସ୍ତ୍ରୀଗଣ ସହିତେ ବାନ୍ଧ ନେଇ ଦୁର୍ଯ୍ୟୋଧନେ
ଯାଉଥିଲା ଚିତ୍ରସେନ, ଧର୍ମ ଅଜ୍ଞା ପାଇ
ପାଣ୍ଡୁଗଣ ସନ୍ଧ ତାଙ୍କ ଥିଲ ମୁକୁଳାଇ,
ପ୍ରୀତ ହୋଇ ଦୁର୍ଯ୍ୟୋଧନ ଯାଚିଥିଲେ ବର,
'ପ୍ରୟୋଜନେ ଦେନେ ନେବ' କହିଲ ଉତ୍ତର,
ସେହି ବର ଫଳେ ଆଜ କୁରୁପତିଠାରୁ
ସେ ମୁକୁଟ ମାଗି ନେଇ, କୌରବ ସଭାରୁ
ଯାଇ ଦୁର୍ଯ୍ୟୋଧନ ବେଶେ ଭେଟ ଧୃଷ୍ଟ ଆରେ,
ଯା କରିବ କର, ଭାଇ, ଅନ ଉଚ୍ଚାରେ,
ଛଳ ଛାନ୍ଦେ ଆଣ ସେହି ପଞ୍ଚ ମୃତ୍ୟୁଶର,
ଅନର ଅସାଧ ଯାହା ସାଧ ସେ ତୁମ୍ଭର;
ପଛେ ପଛେ ଯିବ ମୁହିଁ ତୁମ୍ଭର ଶରଣେ,
ସବୁ ବାଧା ବିପତ୍ତିକି ଦଳିବ ଚରଣେ ।"
କେନ ସଖା ମନେ ପାଖି ଏ ମନ୍ତ୍ରଣାସାର
ଧର୍ମଙ୍କୁ ପ୍ରଣମି ହେଲେ ଶିବିରୁ ବାହାର ।

———

ଦ୍ୱିତୀୟ ସର୍ଗ ।

ହସ୍ତିନାରେ ସଭାତଳେ କୌରବ ନୃପତି
ବିରାଜନ୍ତି, ସଙ୍ଗେ ସଖା କର୍ଣ୍ଣ ମହାମତି,
ଅନେକତ ଭ୍ରାତା ସଙ୍ଗେ ଜୟଦ୍ରଥ ବୀର,
ନିମନ୍ତ୍ରିତ ଅଛି ଯେତେ ରାଜନ୍ୟପ୍ରବୀର,
ନାନାରଙ୍ଗେ ଗଳ୍ପାମୋଦେ ପ୍ରମତ୍ତ ସରବେ,
ବମ୍ପୁ ଅଛି ସଭାସ୍ଥଳୀ ହର୍ଷକଳରବେ,
ସମସ୍ତଙ୍କୁ କୁରୁନାଥ କହନ୍ତି ଅଭୟ
"ଶକ୍ତିମନ୍ତେ କର ସର୍ବେ ମୋର ଶତ୍ରୁ କ୍ଷୟ"
ଆଗନ୍ତୁକେ ଲଭୁଛନ୍ତି ଯୋଗ୍ୟ ବସାଘର,
ଯୋଗାନ୍ତି ନିରନ୍ତେ ଭକ୍ଷ୍ୟ ପେୟ ଅନୁଚର,
ଅସନ ବସନ ଶଯ୍ୟା ଆଦି ଉପାଧାନ,
ଲଭୁଛନ୍ତି ମନୋମତ ସୈନ୍ୟେ ଅନୁକ୍ଷଣ,
ମହାହର୍ଷେ ମତ୍ତ ଆଜ କୌରବ ଭୂପତି,
ପାତ୍ର ମିତ୍ର ବସିଛନ୍ତି ବେଢ଼ି ଚଉଭିତ,

ସେନାପତି ହେବେ କାଲି ଗଙ୍ଗାର କୁମାର
ନିଶ୍ଚେ ରଣେ ଶତ୍ରୁ ହେବ ସମୂଳେ ସଂହାର,
ଥାଏ ଯେବେ ସେହି ଶର ଭୀଷ୍ମର ସଦନେ,
ମାତ୍ର ହରି ପଶି ପାରେ ସମସ୍ତଙ୍କ ମନେ,
କେଜାଣି ସେ ବାଣ ଯେବେ ହରଇ
କୌଶଳେ,
ଅସାଧ ସେ ମାୟାବୀର କିବା ଭବତଳେ ?
ଭାବନ୍ତି ଏସନ ମନେ ରାଜା ଦୁର୍ଯ୍ୟୋଧନ,
ତାଙ୍କୁ ଚିନ୍ତାମଗ୍ନ ଦେଖି ରବିଙ୍କ ନନ୍ଦନ
ବୋଇଲେ "ହେ ସଖେ, କିପାଁ ଅଛ ମୂହ୍ୟମତି ?
ଏ ଛାଟିଲ ଏ ଭାବ ଏହା ନୂତନ ଯୁବତି,
ବିଧାତା ବିଧାନ କେବେ ନୋହିବଟି ଆନ,
ଏହା ଜାଣି ବୃଥା ଚିନ୍ତା ଛାଡ଼, ନରମଣି,
ତ୍ରିଭୁବନଜୟୀ ତୁମ୍ଭେ ବଳେ ମହାବଳୀ,
ନିଜ ତେଜେ ଶତ୍ରୁକୁଳ ଦେଇଅଛ ଦଳି,
ଶକ୍ତିମନ୍ତେ ତୁମ୍ଭଲାଗି ଯୁଝିବ ମୁଁ ରଣେ ।"
ଉତ୍ତରିଲେ ଦୁର୍ଯ୍ୟୋଧନ କର୍ଣ୍ଣର ବଚନେ
"ଶୁଣ ମିତ୍ର କର୍ଣ୍ଣ ବୀର ଅଙ୍ଗଦେଶପତି,
କିଲାଗି ଚିନ୍ତାରେ ମୁହିଁ ମଗନ ସମ୍ପ୍ରତି,";
କର୍ଣ୍ଣ କର୍ଣ୍ଣେ ମନ୍ତ୍ର ଦେଇ ଭୀଷ୍ମଙ୍କର ପଣ
କହି ଜଣାଇଲେ ସବୁ ଗାନ୍ଧାରୀନନ୍ଦନ,
ହସି କହେ କର୍ଣ୍ଣ "କିପାଁ ଆଉ, ନରବର,
ଚିନ୍ତାକୁ ବୃଥାରେ ସ୍ଥାନ ଦେଉଛ ମନର ?
ଖଣ୍ଡିଲା ଅରିଷ୍ଟ ଯେତେ, ଯାବତ ଜଞ୍ଜାଳ,
ନିର୍ବିରୋଧେ ମହୀ ଭୋଗ କର, ମହୀପାଳ,
ବୋଲନ୍ତି ନୃପତି "ସଖା, କର ଅବଧାନ
ଭୀଷ୍ମର ପ୍ରତିଜ୍ଞାବାଣୀ ନୋହିବଟି ଆନ,
ମାତ୍ର ପଞ୍ଚପାଣ୍ଡବ ଯେ ପୃଥିବୀର ରତ୍ନ,
ରତ୍ନଲାଭ ଲାଗି ଲୋକେ କରନ୍ତି ଯତ୍ନ,
ମୁହିଁ ସେ ରତ୍ନର ବୈରୀ ହେଲି ଏ ଜଗତେ,
ମୁହିଁ ହେଲି ବ୍ରତୀ ସେହି ରତ୍ନଧ୍ୱଂସ ବ୍ରତେ;
ତେଣୁ ଚିନ୍ତୁଅଛି, ଆହେ ଆଦିତ୍ୟ-କୁମାର,
କାଲି ନିଶ୍ଚେ ରଣେ ହେବ ପାଣ୍ଡବସଂହାର,
ମୁଁ କି ସେ କରିବ ଆଉ ଏ ସଂସାରେ ଥାଇ ?
ତୁମ୍ଭ ସଙ୍ଗେ ମନ୍ତ୍ରଣା ବାହିବ କାହାପାଇଁ ?

ଝଳଥିଲ ହେମେହେଦନ ଯିବ ଏହମତେ,
ଲଗିଥିବ ନାନା ରଙ୍ଗ ପାଣ୍ଡବ ସଙ୍ଗତେ,
କୋହଳା ସେ ଆଶା ପୂର୍ଣ୍ଣ, ଅହେ ବୈକର୍ତ୍ତନ,
ଅକସ୍ମାତ ଉଥଳା ବହୁ ଏ ଘଟନ !
ତେଣୁ ଏ ପ୍ରାର୍ଥନା ମୋର ପ୍ରଭୁଙ୍କ ପଦ୍ମର
ପାଣ୍ଡବେ ରହନ୍ତୁ, ମୁହିଁ ଯାଏଁ ଲୋକାନ୍ତର ।”
ବୋଇଲେ ରାଧେୟ “ଅହେ ଧର୍ମ ଅଖଣ୍ଡଳ,
ତୁମ୍ଭର ବାସନା ହେବ ସର୍ବଥା ସଫଳ,
ରହିଥିବ ମହାକୀର୍ତ୍ତି ଏ ମହୀମଣ୍ଡଳେ,
ଯାବତ ଚନ୍ଦ୍ରାର୍କ ତାହା ଗାଇବେ ସକଳେ,”
ଏହା ଶୁଣି ଦୁର୍ଯ୍ୟୋଧନ ହେଲେ ହୃଷ୍ଟମନ,
ଏକାଳେ ପ୍ରବେଶ ହେଲେ ଇନ୍ଦ୍ରର ନନ୍ଦନ,
ପୂର୍ବଦ୍ୱାରେ ପ୍ରବେଶିଲେ ବୀର ଧନଞ୍ଜୟ,
ଦ୍ୱାରୀ ଥିଲେ ଯେଉଁ ଦ୍ୱାରେ ସଞ୍ଜୟତନୟ,
ଥିଲେ ତାଙ୍କ ସଙ୍ଗେ ନାନା ଅନୁଚର ଲୋକେ
ଭାସ୍ୱର ଥିଲା ସେ ଦ୍ୱାର ଦନ୍ତୁର-ଅଲୋକେ;
ଭେଟନ୍ତେ ଅର୍ଜୁନ, ଦ୍ୱାରୀ ପୁଚ୍ଛିଁ ପରିଚୟ,
ଦେଲେ ପରିଚୟ ତାଙ୍କୁ ବୀର ଧନଞ୍ଜୟ,
ବୋଇଲେ ଅବର ‘ଶୁଣ, ଅହେ ଦ୍ୱାରିଗଣ,
ରାଜାଙ୍କ ଛାମୁରେ ଅଛି ମୋର ପ୍ରୟୋଜନ,
ଜଣାଅ ଛାମୁରେ ମୋର ଆଗମନବାଣୀ,
ଦ୍ୱାର ଛାଡି ଦିଅ ମୋତେ ରାଜଆଜ୍ଞା ଆଣି,
ସଞ୍ଜୟତନୟ ଶୁଣି ପାର୍ଥେ କରି ନତି
ଭେଟିଲେ ସଭାରେ ଯାଇଁ କୁରୁ ନରପତି,
ଯୁଗ୍ମକରେ ନିବେଦିଲେ “ଅହେ ନରରାଣ,
ମୋର ଏ ବଚନେ ହେଉ ଦବ୍ୟ ଅବଧାନ,
ଇନ୍ଦ୍ରର ଅଙ୍ଗଜ ଯେହୁ, ମଧ୍ୟମ ପାଣ୍ଡବ,
ସ୍ୱର୍ଗେ ଯାଙ୍କୁ ନେଇଥିଲେ ଦେବତା ବାସବ,
ଶିବଙ୍କୁ ଯେ ତୁଷ୍ଟ କଲେ କରି ଯୁଦ୍ଧ ଘୋର,
ଖାଣ୍ଡବ ଦହିଲେ ଯେହୁ ସଙ୍ଗ ହରି ହର,
ଜିଣିଲେ ଯେ ଲକ୍ଷେ ରାଜା କୃଷ୍ଣାସ୍ୱୟମ୍ବରେ,
ବାସବ-ଅରତି ଦୈତ୍ୟେ ନାଶିଲେ ସମରେ,
କପଟ-ଯୋଧନ ମୁକ୍ତ କଲେ ଯେଉଁ ଜନ,
ଯାଦବଙ୍କି କଭା ହେଲେ ଜିଣି ଯଦୁଗଣ,
ତୁମ୍ଭଙ୍କୁ ଯେ ମୁକ୍ତ କଲେ ଗନ୍ଧର୍ବର ସ୍ଥାନେ
ସେ ଅର୍ଜୁନ ଦ୍ୱାରେ ଉଭା, ଅଛୁ ଅବଧାନେ ।”
ଅର୍ଜୁନର ନାମ ଶୁଣି ରାଜା ଦୁର୍ଯ୍ୟୋଧନ
କର୍ଣ୍ଣ ସହ ବାହାରିଲେ ହୋଇ ହୃଷ୍ଟମନ,
ଆଉ ଯେତେ ସଭାସଦ ସେ ସଭାରେ ଥିଲେ
ନୃପତି ଉଠିଲେ ଦେଖି ସମସ୍ତେ ଉଠିଲେ;
ଆଗଭର ହୋଇ ବାସ୍ତେ ଗଲେକ ରାଜନ,
ବସିଥିଲେ ଦ୍ୱାରେ ଯହିଁ କୁନ୍ତୀଙ୍କ ନନ୍ଦନ;
“ଆସ ଆସ ଅର୍ଜୁନ” ବୋଲନ୍ତି କୁରୁସାଇଁ
“କହ କେଉଁ କାର୍ଯ୍ୟ ଲାଗି ଆସିଲ ହେ ଭାଇ,”
ବନ୍ଦନ୍ତେ ଅର୍ଜୁନ ବନ୍ଦୁ ରାଜାଙ୍କ ଚରଣ,
ବେନି ଭୁଜେ ଧରି ରାଜା ଦେଲେ ଆଲିଙ୍ଗନ,
ମହାଦରେ ନେଇ ରାଜା ଇନ୍ଦ୍ରର ନନ୍ଦନେ
ନିଜ ହସ୍ତେ ବସାଇଲେ ରତ୍ନ-ସିଂହାସନେ,
ଆଉ ଯେତେ ପାତ୍ର ମନ୍ତ୍ରୀ ସଭା ମଧ୍ୟେ ଥିଲେ,
ସମସ୍ତଙ୍କୁ ପାର୍ଥ ମିଷ୍ଟ ବଚନେ ତୋଷିଲେ;
ଶ୍ରମଯୁକ୍ତ ପାର୍ଥେ ଦେଖି ଆଦରେ ରାଜନ
ସ୍ୱହସ୍ତେ ବ୍ୟଜନ ଧରି କରନ୍ତି ବ୍ୟଜନ,
ବୋଲନ୍ତି ଅର୍ଜୁନେ ଚାହିଁ “କହ ଅହେ ଭାଇ,
ଆସିଲ ସଦନେ ମୋର କେଉଁ କାର୍ଯ୍ୟ ପାଇଁ,
ନିଶାକାଳେ ଆଗମନ ଆଶ୍ଚର୍ଯ୍ୟ ଏ କଥା,
କହ, ଭାଇ, ଆଗେ ଗୃହ କୁଶଳ ବାରତା
ଅଛନ୍ତି ତ ସର୍ବଗୁଣେ ରାଜା ଯୁଧିଷ୍ଠିର,
ଭୀମ ବେନି ମାଦ୍ରୀ ସୁତ, ଆଉ ଯେତେ ବୀର,
ଅଛନ୍ତି ତ ସର୍ବଗୁଣେ କୁମାର ସକଳ ?
ଦ୍ରୁପଦନନ୍ଦିନୀଙ୍କର ସବୁ ତ କୁଶଳ ?”
ନିବେଦନ୍ତେ ଧନଞ୍ଜୟ ଗୃହ-ଅନାମୟ
ପ୍ରୀତି ପ୍ରକାଶିଲେ ଶୁଣି ଗାନ୍ଧାରୀତନୟ,
ବୋଇଲେ “ବଚନ ମୋର ଶୁଣ, ପାର୍ଥ ଭାଇ,
କାଳିର ନିର୍ବନ୍ଧ କେବେ ଖଣ୍ଡି ହେବ ନାହିଁ,
ତୁମ୍ଭେ କି କାରଣେ ଅଜ ଆସିଲ ଏଠାକେ,
ମୋହୋ ପାଶେ ମନ ବଳାଇଲ କେଉଁ ଲାଗେ ?”
ଅର୍ଜୁନ ବୋଇଲେ “ଯାହା କହିଲ ପ୍ରମାଣ,
କାଳିର ବିଧାନ କେବେ ହେବ ନାହିଁ ଆନ,

ମାତ୍ର ପୂର୍ବ କଥା ରାଜା ଅଛଇ କି ମନେ,
ଚିତ୍ରସେନ ହସ୍ତୁ ଯେବେ ଉଦ୍ଧାରିଲି ରଣେ
ତୁମ୍ଭଙ୍କୁ ମହର୍ଷୀ ସହ, ଯାଚିଥିଲ ବର,
ପଡ଼ଇ କି ମନେ ସେହି କଥା ନୃପବର,
ସେହି ବର ପ୍ରାପ୍ୟ ମୋର ଅଛି ଅଦ୍ୟାବ,
ସେଥିଲାଗି ଶାସ୍ତ୍ରମୂଳୁ ଅସିଲି ମୁଁ ସ୍ୱଏ।''
ଅର୍ଜୁନର ବାକ୍ୟ ଶୁଣି ରାଜା ଦୁର୍ଯ୍ୟୋଧନ
ଦୀର୍ଘଶ୍ୱାସ ତେଜି ମନେ ଭାବିଲେ ତକ୍ଷଣ,
"ବୃଥା ହେଲା ପିତା ମୋର ସମସ୍ତ ଉଦ୍ୟମ,
ବୃଥା ହେଲା ନାନା ଦେଶୁଁ ସୈନ୍ୟ-ସମାଗମ,
ଆମନ୍ତ୍ରି ଆଣିଲ ପିତା ବୃଥା ରାଜଦଳ,
ଭୀଷ୍ମର ପ୍ରତିଜ୍ଞା ହେଲା ସମସ୍ତ ବିଫଳ,
ଯୁଦ୍ଧ କାଳେ ପାଣ୍ଡବର ଉପୁଜିଲା ଭୟ,
ଆସିଅଛି ସେଥିପାଇଁ ବୀର ଧନଞ୍ଜୟ
ଧୃତ ହସ୍ତ ପାଣ୍ଡବନାଥର ଆଜ୍ଞାମତେ
ମାଗି ନେବ ରାଜ୍ୟ ପଛ ହେଉଛି ପରତେ,
ପଡୁଅଛି ମନେ ମୋର ପୂର୍ବର ସେ କଥା,
ସତ୍ୟ ମୁହିଁ, ସତ୍ୟ ବାକ୍ୟ ନୁହଇ ଅନ୍ୟଥା;
ଏହା ଭାବି ଅଧୋମୁଖ ହୋଇ କୁରୁସାଇଁ
କହିଲେ ସେ ବରକଥା ମନେ ଅଛି, ଭାଇ,
ବୋଇଲେ ଅର୍ଜୁନ "ଏବେ ଦିଅ ସେହି ବର,"
"ଯା ମାଗିବ ମାଗ" ରାଜା କହିଲେ ଉତ୍ତର,
ବୋଇଲେ ଅର୍ଜୁନ "ଆହେ କୌରବପ୍ରଧାନ
ମୁକୁଟ ତୁମ୍ଭର ମୋତେ କର ଏବେ ଦାନ।"
ଉଚ୍ଚହାସ୍ୟେ କୁରୁପତି କହିଲେ ବିସ୍ମିତେ
"ଆଶ୍ଚର୍ଯ୍ୟ ଲାଗିଲା ଶୁଣି ବରକଥା ଚିତ୍ତେ,
ବଡ଼ ଭାଗ୍ୟହୀନ ତୁମ୍ଭେ, ହେ ବୀର ଫାଲ୍ଗୁଣି,
ଆସିଲ ଯା ଏଥି ଏହି ବର ଲାଗି ପୁଣି !
ରାଜ୍ୟ ଧନ ଅଶ୍ୱ ହସ୍ତୀ ବସ୍ତ୍ର ଆଭରଣ
ଜନପଦ ବରାଙ୍ଗନା ଅଛି ଅଗଣନ,
ତୁମ୍ଭ ସଙ୍ଗେ ଶତ୍ରୁଭାବ ଛାଡ଼ି ଏ ସକଳ,
ବଳାଇଲ ମନ ଛାର ମୁକୁଟେ କେବଳ !
ଭାଳିଥିଲି ରାଜ୍ୟ ମାଗି ନେବ, ଧନଞ୍ଜୟ,
ଦେଇଥାନ୍ତି ରାଜ୍ୟ ମୁହିଁ ନାହିଁଟି ସଂଶୟ,
କି ଧନ ମାଗିଲ, ଭାଇ, ମୋର କେଉଁ ଦୋଷ ?
ତୁମ୍ଭଠାରେ ମୋର ବଡ଼ ହେଲାଟି ଅକ୍ରୋଶ !
ଆହା କେଉଁ ତୁଚ୍ଛ ଦ୍ରବ୍ୟ ମାଗିଲ, ହେ ଭାଇ,"
ଏହା କହି କ୍ଷୁର ହେଲେ କୌରବଗୋସାଇଁ;
ପାର୍ଥ ବୋଲେ "ଏଥି କିବା ଦୁଃଖ କୁରୁନାଥା,
ଘଟିଲା ମୋ ଭାଗ୍ୟେ ବିଧି ଲେଖିଥିଲେ ଯାହା,
ମୁକୁଟ ତୁମ୍ଭର ମୋତେ ଦିଅ ହେ ରାଜନ,
ମୁକୁଟବ୍ୟତୀତେ ନାହିଁ ଆନ ପ୍ରୟୋଜନ,
ମୁକୁଟ ପାଇଲେ ମୁହିଁ ପାଇଲି ସମସ୍ତ,
ନ ହୁଅ ହେ ନରନାଥ ମୋହୋପାଇଁ ବ୍ୟସ୍ତ।"
"ତଥା ତେବେ" ଏହା କହି ରାଜା ଦୁର୍ଯ୍ୟୋଧନ
ମୁକୁଟ ଉତାରି ପାର୍ଥେ କଲେକ ଅର୍ପଣ,
ମୁକୁଟ ଲଭିଣ ପାର୍ଥ ପ୍ରଫୁଲ୍ଲ ଅନ୍ତରେ
ମେଲାଣି ମାଗିଲେ ରାଜା ପାଶେ ଯୋଡ଼କରେ,
"କିପାଁ ଯିବ ନିଶାଯୋଗେ ରହିଯାଅ, ଭାଇ,
ଏହା କହି ଅନ କଲେ କୌରବଗୋସାଇଁ;
ପାର୍ଥ ବୋଲେ "କାଲି, ରାଏ, ପ୍ରଥମ ସଂଗ୍ରାମ,
କପରି କରିବି ମୁହିଁ ଏଠାରେ ବିଶ୍ରାମ ?
ଯାଇ କରିବାକୁ ହେବ ସୈନ୍ୟ-ସମାବେଶ,"
ଉତ୍ତରିଲେ "ସତ୍ୟ ସତ" ବୋଲି
କୌରବେଶ,
"ଧର୍ମରାଜେ ଜଣାଇବ ମୋହର ପ୍ରଣାମ
କହିବ ନିଶ୍ଚୟ କାଲି ପ୍ରଥମ ସଂଗ୍ରାମ",
ଉଠିଲେ ମୁକୁଟ ଘେନି ଇନ୍ଦ୍ରର ନନ୍ଦନ,
ଆଶୀଷ ପ୍ରଣାମ ପାର୍ଥେ କଲେ ସଭାଜନ,
ସମାଦରେ ସବାନ୍ଧବେ ତହୁଁ କୁରୁରାଏ
ପାର୍ଥ ସଙ୍ଗେ ସଙ୍ଗେ ଗଲେ ସିଂହଦ୍ୱାରପାଏ;
ଘୋର ଅନ୍ଧକାରେ ପାର୍ଥ ଯାଇ କିଛିଦୂର,
ଭେଟିଲେ ସହସା ପଥେ ବ୍ରହ୍ମାଣ୍ଡଠାକୁର;
ନତ କଲେ କୃଷ୍ଣେ ବୀର ମୁକୁଟ ଦେଖାଇ,
ସଭାର ସକଳ କଥା ଶ୍ରୀପାଦେ ଜଣାଇ;
ବୋଇଲେ "ହେ ମହାପ୍ରଭୁ ମୋହୋ
ପ୍ରତୀକ୍ଷାରେ
ଏ ନକ୍ତକେ ଥିଲ କିମ୍ପା ଏ ଘୋର ଅନ୍ଧାରେ ?"

କହନ୍ତି ଶ୍ରୀପତି "ଶୁଣ, ଅହେ ଧନଞ୍ଜୟ,
ଏହା ଯେଣୁ ଥିଲ, ତେଣୁ ହେଲା ମହାଭୟ
କାଳେ ଖଳ ଦୁର୍ଯ୍ୟୋଧନ ସାଧିବ ଅହିତ,
ତୁମ୍ଭ ପ୍ରତୀକ୍ଷାରେ ତେଣୁ ଥିଲି ମୁଁ ଚକିତ,"
ବୋଇଲେ ଅର୍ଜ୍ଜୁନ "ତୁମ୍ଭ କୃପା ଯାହାଠାରେ,
ଭୀତ କିପାଁ ହେବ ସେହି ଖଳର ବେଭାରେ ?
ତୁମ୍ଭ କୃପାଫଳେ ମୁହିଁ ତ୍ରିଭୁବନଜେତା,
କିସ କରି ପାରେ ମୋର କୁରୁ କ୍ଷୁଦ୍ରଚେତା ?
ହେ କରୁଣାକର, ନାଥ ବାଞ୍ଛାକଳ୍ପତରୁ,
ତାରି ପାରେ ହେଲେ ମୋତେ ସବୁ ବିପଦରୁ;
ଯାହାର ଅଭୟ-ଦୁର୍ଗ ତୋର ପଦ୍ମପାଦ,
କୁହଁନ୍ତ ତାହାକୁ କିପାଁ ହେବେ ପରମାଦ ?"
ବୋଇଲେ ଅର୍ଜ୍ଜୁନ ତହୁଁ କୃଷ୍ଣ ମହାଶୟ,
"ଶୀଘ୍ରଗତି ଶିବିରପାଶେ ଯାଅ, ଧନଞ୍ଜୟ,
ଯାବତ ନ ଅସ ଫେରି ମୁଁ ବାଣ ସହିତ,
ତୁମ୍ଭ ପ୍ରତୀକ୍ଷାରେ ଏଥି ରହିବି, ହେ ମିତ ।"
"ଯେ ଆଜ୍ଞା" ବୋଲିଣ ତହୁଁ କୁନ୍ତୀର ନନ୍ଦନ
ନିଜ ଶିରେ ସେ ମୁକୁଟ ଦେଲେ ସେହିକ୍ଷଣ,
ମାୟାଦୁର୍ଯ୍ୟୋଧନବେଶ ଧରି ତ କୌଶଳେ
କୃଷ୍ଣେ କରି ନତି ଶୀଘ୍ର ଶିବିରକୁ ଚଳେ;
ଏଣେ ଗଙ୍ଗାପୁତ୍ର ବସି ଶିବିର ମଧ୍ୟରେ
ଅସ୍ତ୍ରେ ହସ୍ତ ଦେଇ ବୀର ଭାବନ୍ତି ଅନ୍ତରେ,
"ପ୍ରତିଜ୍ଞା ତ କଲି ମୁହିଁ ବଧିବି ପାଣ୍ଡବ,
କି ଅନର୍ଥ ଭିଆଇଲା ଦୁର୍ମତି କୌରବ !
ଅବଗ୍ରହେ ପିନା ମୁହିଁ କଲି ସେହି ପଣ,
ବିନାଶିବ ଧର୍ମବନ୍ତ ପାଣ୍ଡୁପୁତ୍ରଗଣ,
ପୂର୍ବେ ବାଣ ଦେଇ ମୋତେ ବ୍ରହ୍ମାଣ୍ଡର ସାଇଁ,
କହିଥିଲେ ନେବି ମୁହିଁ ଏ ବାଣ ଫେରାଇ,
ଉପସ୍ଥିତ ହେଲା ଏବେ ଏ ବିଷମକାଳ !
କିପାଁ ନ ନଅନ୍ତି ବାଣ ଫେରାଇ ଗୋପାଳ ?"
ଏହିରୂପେ ଭାଳୁଁ ଭାଳୁଁ ଗଙ୍ଗାର କୁମର
ଭେଟିଲେ ଶିବିରେ ତାଙ୍କୁ ପାର୍ଥ ଧନୁର୍ଦ୍ଧର,
ମାୟାଦୁର୍ଯ୍ୟୋଧନବେଶେ ଭେଟିଲେ ସେ ଯାଇ,
ନତ କଲେ ପାଦେ ଶିର ଭୂମିରେ ନୁଆଇଁ,
ଶୁଭାଶୀଷ କରି ଭୀଷ୍ମ ପୁଚ୍ଛିଲେ ବିସ୍ମୟେ
"ଆସିଲ ଶିବିରେ ବୀର ପୁଣି କି ବିଷୟେ !
କାଲି ଯୁଦ୍ଧେ ଅପାଣ୍ଡବା କରିବି ଧରଣୀ,
କହିଛି ଏ ପଣ ତୁମ୍ଭ ଆଗେ, ନରମଣି,
ପୁଣି ବାହୁଡ଼ିଲ କିପାଁ, ଲାଗଇ ବିସ୍ମୟ,
କି ମନ୍ତ୍ରଣା ଦେଲେ ପୁଣି କର୍ଣ୍ଣ ମହାଶୟ,
କି ମନ୍ତ୍ରଣା ଦେଲା ପୁଣି ଶକୁନି ଦୁର୍ମତି,
ସବୁ ଫେଡ଼ି କହ ମୋତେ, ଅହେ କୁରୁପତି ।"
ମାୟାଦୁର୍ଯ୍ୟୋଧନରୂପୀ କହନ୍ତି ଅର୍ଜ୍ଜୁନ
"ନିବେଦିବ ପାଦେ କିପାଁ ଆସିଲି ମୁଁ ପୁଣ,
ତୁମ୍ଭଠାରୁ ବିଦା ହୋଇ ବାହୁଡ଼ି ନବରେ
ବସିଲି ସଭାରେ ଯାଇ ମହାହର୍ଷଭରେ,
କର୍ଣ୍ଣ ଦୁଃଶାସନ ଆଦି ଯେତେ ମନ୍ତ୍ରିଗଣ
ତୁମ୍ଭେ ସେନାପତି ଶୁଣି ସର୍ବେ ହୃଷ୍ଟମନ,
ଆସିଲେ ଏସନ କାଳେ ରାଜା ଯୁଧିଷ୍ଠିର
ସଙ୍ଗେ ଘେନି ଚାରି ଭାଇ ପୁଣି ଯଦୁବୀର,
ପୁତ୍ର ସହ ବିରାଟ ଦ୍ରୁପଦ ନୃପବର,
ମହାମୁନି ବ୍ୟାସ ସତ୍ୟବତୀର କୁମର,
ଆସିଲେ ସକଳେ ଯୁଦ୍ଧହେତୁ ଭୟ କରି,
ବୁଝାଇ କହିଲେ ମୋତେ ଦ୍ୱୈପାୟନ ହରି,
"ନ କଲାଅ ଏ ସମରେ ମତି, ନରପତି,
ତୁମ୍ଭର ମହିମା ଯେତେ ଖ୍ୟାତ ବସୁମତୀ,
ତୁମ୍ଭଙ୍କୁ ପାରିବ ଜିଣି ବଳେ କି କୌଶଳେ
ନାହିଁଟି ଏସନ ବୀର ଏ ମହୀମଣ୍ଡଳେ,
ହେଉଁ ତୁଚ୍ଛ ଏଥି ପୁଣି ପଞ୍ଚପାଣ୍ଡୁସୁତ,
ବନେ ଭ୍ରମି ଭ୍ରମି ନାନାକଷ୍ଟେ ଅଭିଭୂତ !
ଶରୀରପଞ୍ଜରେ କ୍ଷୀଣ ପ୍ରାଣ ମାତ୍ର ଧରି
ଏମାନେ କି ତୁମ୍ଭ ସଙ୍ଗେ ଯୁଦ୍ଧେ ହେବେ ସରି ?
ସହାୟ ତୁମ୍ଭର ମହାମହା ଯୋଦ୍ଧାଗଣ,
କୋଦଣ୍ଡଟଙ୍କାରେ ଯାଙ୍କ କମ୍ପେ ତ୍ରିଭୁବନ;
ମହା ବଳବନ୍ତ ତୁମ୍ଭେ, ପାଣ୍ଡବେ ଦୁର୍ବଳ,
ଶକ୍ତିହୀନ ସଙ୍ଗେ ଯୁଦ୍ଧ ଅଯଶ କେବଳ !
ଶରଣ ତୁମ୍ଭର ଏବେ ନେଲେ ପଞ୍ଚଭାଇ,
ଶରଣ ସମ୍ଭାଳ ରଖ ସୁଯଶ ଗୋସାଇଁ,

ପଞ୍ଚଗ୍ରାମ ଦେଇ କର ଏହାଙ୍କୁ ପାଳନ,
କୀର୍ତ୍ତି ରଖ ନରପତି କୀର୍ତ୍ତି ବଡ଼ ଧନ ।"
ନାରାୟଣ ଦ୍ୱୈପାୟନ ଏସନ ବୁଝାଇ
ସମର୍ପଣ ଦେଲେ ମୋର ହସ୍ତେ ପଞ୍ଚ ଭାଇ,
ଅଶ୍ରୁମୁଖେ ଯୁଧିଷ୍ଠିର କଲେ ପରିହାର
"ଲାଗିଲା ତୁମ୍ଭଙ୍କୁ ଅମ୍ଭ ପାଳନର ଭାର,"
ଲଙ୍ଘି ନ ପାରିଲି ବ୍ୟାସ ଗୋବିନ୍ଦର କଥା,
ପାଣ୍ଡବର ଦୁଃଖେ ଦୁଃଖୀ ହେଲି ମୁଁ ସର୍ବଥା;
ତାଙ୍କ ଦୁଃଖେ ଉପୁଜିଲା କରୁଣା ମୋହର,
ସେହିକ୍ଷଣି ତେଜିଲି ମୁଁ ବାସନା ଯୁଦ୍ଧର;
ପାଣ୍ଡବଙ୍କୁ ପଞ୍ଚଗ୍ରାମ ଦେଲି ପିତାମହ,
ବାହୁଡ଼ିଲେ ସେଣୁ ବ୍ୟାସ ଶ୍ରୀନିବାସ ସହ;
ତେଣୁ ମୁଁ ଆସିଲି ଦେବ ତୁମ୍ଭର ସଦନ,
କିପାଁ ଯୁଦ୍ଧେ ଯିବ କାଲି? କେଉଁ ପ୍ରୟୋଜନ?
ନୋହିଲା ମରଣ ଦେବ ପଞ୍ଚପାଣ୍ଡବର,
ପଣ୍ଡ ହେଲା ଯୁଦ୍ଧର ଯେ ପ୍ରୟାସ ମୋହର,"
ଅସ୍ତ୍ରେ ଭର ଦେଇ ଶୋଇଥିଲେ ଗଙ୍ଗାସୁତ,
ମାତ୍ର ଦୁର୍ଯ୍ୟୋଧନ ବାକ୍ୟେ ହରଷେ ଅଦ୍ଭୁତ
ହୋଇ ଉଠି ବସିଲେ ସେ ଶୟନେ ତକ୍ଷଣ,
ପୁଲକେ ପ୍ରଫୁଲ୍ଲ ହେଲା ତାଙ୍କ ଅବଦନ,
ବୋଇଲେ "ଯେ କଥା ବୀର କହିଲ ଏକ୍ଷଣି,
କଥା ନୁହେ, ସୁଧାବୃଷ୍ଟି କଲ, ନରମଣି,
ମୃତକୁ ଅମୃତ ଦେଲ, ଶସ୍ୟରେ ଉଦ୍ରୁପ୍ତ,
ଏଥୁଁ ବଳି ଅଛି ମୋର କିବା ଅଛି ତୃପ୍ତ ?
ଏ କର୍ମ ତୁମ୍ଭର ଯୋଗ୍ୟ ଶୁଣ, ହେ ସଜ୍ଜନ,
ପାଣ୍ଡବ ସଙ୍ଗତେ କଲ ପ୍ରୀତିରେ ମିଳନ,
ରଖିଲ ଅତୁଳକୀର୍ତ୍ତି ଅଖିଳ ଜଗତେ,
ଘୋଷିବେ ଯା କାଳେ କାଳେ ଲୋକେ
ନାନାମତେ;"
ଏହିରୂପେ ପ୍ରଶଂସିଲେ ଗଙ୍ଗାର ନନ୍ଦନ,
ହର୍ଷେ ମାତ୍ର ଦୁର୍ଯ୍ୟୋଧନେ ଦେଲେ ଆଲିଙ୍ଗନ,
ବୋଇଲେ "ହେ ବତ୍ସ, ନୋହି ପାଣ୍ଡବେ
ବିମୁଖ,
ତାଙ୍କ ସଙ୍ଗେ ମିଳି ଏବେ ଭୁଞ୍ଜ ରାଜ୍ୟସୁଖ;
ବୟୋଜ୍ୟେଷ୍ଠ ଗୁଣଜ୍ୟେଷ୍ଠ ପାଣ୍ଡୁକୁଳଗଣ,
ଜ୍ୟେଷ୍ଠ ବୋଲି ତାଙ୍କ ସଦା କରିବ ସମ୍ମାନ;
ପାଣ୍ଡବଙ୍କୁ ରଖ ଏବେ ନେଇ ସ୍ୱଜନରେ,
ବିଦୁରଙ୍କ ଘରୁ ଆଣି କୁନ୍ତୀଙ୍କୁ ସତ୍ୱରେ
ମାତୃବତ ପୂଜା ତାଙ୍କୁ ଦିଅ ପୂର୍ବପରି,
ବାସନା ତୁମ୍ଭର ପୂର୍ଣ୍ଣ କରନ୍ତୁ ଶ୍ରୀହରି ।"
ବୋଇଲେ ଅର୍ଜ୍ଜୁନ "ଆଜ୍ଞା ପାଳିବି ତୁମ୍ଭର,
ତଥାପି ହୃଦୟେ ଭୀତି ଅଛି ନିରନ୍ତର,
ଭ୍ରାତୃଗଣମଧ୍ୟେ ଦ୍ୱନ୍ଦ୍ୱ ଲାଗେ ସବୁକାଳେ,
ଭ୍ରାତାକୁ ବଧାଏ ଭ୍ରାତା ବିପଦର ଜାଲେ,
ଅକସ୍ମାତ ଘଟି ପାରେ ହିତେ ବିପରୀତ,
ସତର୍କେ ରହିବା ତେଣୁ ନରଙ୍କ ଉଚିତ,
ତେଣୁ ଏ ମାଗୁଣି ମୋର, ଅହେ ମତିମାନ,
ପାଣ୍ଡବେ ବଧିବ ବୋଲି ଯେଉଁ ପଞ୍ଚବାଣ
ଦେଖାଇଥିଲ ମୋତେ ସେହି ପଞ୍ଚଶର
ଅଭିରୁଚି ଯେବେ, ମୋତେ ସମର୍ପଣ କର ।"
ଉତ୍ତରିଲେ ଭୀଷ୍ମ "ଅହେ ସାଧୁ ଦୁର୍ଯ୍ୟୋଧନ,
ସେ ବାଣେ ମୋହର ଆଉ କେଉଁ ପ୍ରୟୋଜନ?
ନେଇ ସେହି ବାଣ ରଖ ଯହିଁ ଇଚ୍ଛା ତବ,
ତୁମ୍ଭର ମଙ୍ଗଳ ସଦା କରନ୍ତୁ କେଶବ,"
ଏହା କହି ଅସ୍ତ୍ରାଗାରେ ପଶି ବୀରମଣି
ବାଣ ଆଣି ସମର୍ପିଲେ ଅର୍ଜ୍ଜୁନେ ସେକ୍ଷଣି,
ବାଣ ଦେଖି ପାର୍ଥ ହେଲେ ମନେ ମନେ ଭୀତ,
ପଞ୍ଚପାଣ୍ଡବର ଶିର ସେ ବାଣେ ଅଙ୍କିତ
ଦେଖି ହେଲେ ଧନଞ୍ଜୟ ବିସ୍ମୟେ ଆପ୍ଳୁତ,
ବାଣ ଧରି, ସବିନୟେ ନମି ଗଙ୍ଗାସୁତ
ବାହାରିଲେ ହୃଷ୍ଟମନେ ଶିବିରମଧ୍ୟରୁ,
ଭେଟିଲେ ଜନାର୍ଦ୍ଦନେ ଯାଇ ବାଞ୍ଛାକଳ୍ପତରୁ;
ବାଣ ଦେଖି ନାରାୟଣ ହେଲେ ବଡ଼ ପ୍ରୀତ,
ବୋଇଲେ "ଅସାଧ୍ୟ ଆଜି ସାଧିଲ ହେ ମିତ,"
ହେନସଖା ଉଭୟେ ଯାଇ ପାଣ୍ଡବଶିବିରେ
ଦେଖାଇଲେ ସେହି ବାଣ ରାଜା ଯୁଧିଷ୍ଠିରେ,
ମୁଖର ଶିବିର ହେଲା ଆନନ୍ଦ ଉତ୍ସବେ
ଆନନ୍ଦେ ଗଦ୍ଗଦ ସର୍ବେ ସ୍ତୁତିଲେ କେଶବେ ।

ଶ୍ରୀ ରାଧାନାଥ ରାୟ ।

## ରାମ ଦାଶ ।

### ( ଦାର୍ଢ୍ୟତାଭକ୍ତିରସାମୃତ-ପ୍ରଣେତା )

କେହି କେହି ଅକ୍ଷେପ କରି କହନ୍ତି:—"ଏହି ଦୁର୍ବଳ ଭାରତବାସୀ ତାହାର ପୂର୍ବ ପୁରୁଷମାନଙ୍କର ଗୌରବର କାହାଣୀ ଇତିହାସର ପୃଷ୍ଠାରେ ଲିପିବଦ୍ଧ କରି ରଖି ପାରି ନାହିଁ । ସାମାନ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ପାଇଁ ଯେପରି ବିଦେଶର ମୁହଁକୁ ଚାହିଁ ବସି ରହିଅଛି, ସେହିପରି ସ୍ୱଦେଶର ଅତୀତ ଗୌରବର କାହାଣୀ ପାଇଁ ସେହି ବୈଦେଶିକ ମହାପୁରୁଷମାନଙ୍କ ଉପରେ ନିର୍ଭର କରୁଅଛି । ସେମାନଙ୍କର ସେ ଅଧ୍ୟବସାୟ ନାହିଁ, ସେ ଅନୁସନ୍ଧିତ୍ସା ନାହିଁ, ସେ ଗବେଷଣା-ପ୍ରିୟତା ନାହିଁ ଯେ ସେମାନେ ଐକାନ୍ତିକ ଯତ୍ନ-ସହକାରେ କଠୋର ସାଧନରେ ପ୍ରବୃତ୍ତ ହୋଇ ଅତୀତ ଗୌରବର ଚିତ୍ର ସେମାନଙ୍କର ପ୍ରତିବେଶି-ମାନଙ୍କ ସମକ୍ଷରେ ଉନ୍ମୋଚନ କରିବାକୁ ସମର୍ଥ ହେବେ ?" କିନ୍ତୁ ଯାହା ଅନ୍ୟ କୌଣସି ଭାରତବାସୀ କରି ପାରି ନାହିଁ, ତାହା ଜଣେ ପାକସ୍ଥାନ ଓଡ଼ିଆ, ସୁନିପୁଣ ଓ ସୁସମ୍ବଦ୍ଧ ଭାବରେ କ ହେଲେ ମଧ୍ୟ, ଯଥାସାମାନ୍ୟ ପ୍ରକାରେ ସମ୍ପନ୍ନ କରି ଥିବାର ଜଣାଯାଏ । ଏହି ମହାତ୍ମା 'ଦାର୍ଢ୍ୟତାଭକ୍ତି-ରସାମୃତ'-ରଚୟିତା ରାମ ଦାଶ । ରାମ ଦାଶ ଗଞ୍ଜାମ ଜିଲ୍ଲାନ୍ତର୍ଗତ ମନ୍ଦରା ତାଲୁକାରେ ଜନ୍ମଗ୍ରହଣ କରି ଥିଲେ । ଏହାଙ୍କ ବାସସ୍ଥାନ ବ୍ରହ୍ମପୁର ନିକଟବର୍ତ୍ତୀ ଭୁଗୁ । ସେ ଦାର୍ଢ୍ୟତାଭକ୍ତିରସାମୃତରେ କହି ଅଛନ୍ତି:—

> "ମନ୍ଦରା ରାଜ୍ୟ ଭୁଗୁ ଗ୍ରାମ ।
> ସେ ଗ୍ରାମେ ଅଟେ ମୋ ବିଶ୍ରାମ ॥"

ଭୁଗୁ ଖଣ୍ଡିଏ ପଲ୍ଲିଗ୍ରାମ ; ଏଠାରେ ଅନେକ ଓଡ଼ିଆ ବ୍ରାହ୍ମଣ ବାସ କରନ୍ତି; ଗୋଟିଏ ଦେବା-ଳୟ ମଧ୍ୟ ଅଛି । ରାମ ଦାଶ ଏହି ଦେବାଳୟର ଅଧିକାରୀ ଓ ଏହି ବ୍ରାହ୍ମଣମାନଙ୍କର 'ଗୋସାଇଁ' ଅର୍ଥାତ୍ ଧର୍ମଗୁରୁ ଥିଲେ । ଏହି ଜିଲ୍ଲାର ଉତ୍ତର ପ୍ରଦେଶର ଅନେକଠାରେ ଦେଖାଯାଏ କି ଯେଉଁ ଗ୍ରାମରେ ଏକ ଶ୍ରେଣୀର ବ୍ରାହ୍ମଣମାନେ ବେଶି ସଂଖ୍ୟାରେ ନିବାସ କରନ୍ତି ସେହିଠାରେ ସେମାନେ ଗୋଟିଏ ଦେବାଳୟ ତୋଳାଇ ସେମାନଙ୍କ ଭିତରୁ ଜଣକୁ ବାଛି ତାହାକୁ ସେହି ମଠର ଅଧିକାରୀ କରି, ଗୋସ୍ୱାମୀ ଉପାଧି ଦେଇ ତାହାଠାରୁ ମନ୍ତ୍ର ଗ୍ରହଣ କରନ୍ତି । ଏହି ଗୋ-ସ୍ୱାମୀମାନେ ବାନପ୍ରସ୍ଥାଶ୍ରମ ଅବଲମ୍ବନ କରନ୍ତି ନାହିଁ; ଗୃହସ୍ଥାଶ୍ରମରେ ଥାଇ ନିଜ ନିଜ କର୍ତ୍ତବ୍ୟ କର୍ମମାନ ଚଳାଇ ନିଅନ୍ତି । ରାମ ଦାଶ ଏହି ଶ୍ରେଣୀର 'ଗୋସାଇଁ' ଜଣେ । ଏ ଜାତିରେ ଓଡ଼ିଆ ବ୍ରାହ୍ମଣ; ବଳରାମଗୋତ୍ରୀ ଓ ଯଜୁର୍ବେଦୀ । ଏହାଙ୍କ ପିତାଙ୍କ ନାମ ଲକ୍ଷ୍ମଣ ଦାଶ:—"ପିତା ମୋ ଲକ୍ଷ୍ମଣ ଦାଶ । ମୁହିଁ ଅଟଇ ତାଙ୍କ ଶିଷ୍ୟ ।" ପୁତ୍ରଙ୍କ ନାମ ମଧୁସୂଦନ ଦାଶ । ରାମ ଦାଶଙ୍କ ବଂଶ ତାଲିକା ଏହି:—

କୃଷ୍ଣ ଦାଶ
|
ଲକ୍ଷ୍ମଣ ଦାଶ
|
ରାମ ଦାଶ
|
ମଧୁସୂଦନ ଦାଶ
|
ଅର୍ଜ୍ଜୁନ ଦାଶ
|
ଶ୍ରୀଧର ଦାଶ
|
ପରଶୁରାମ ଦାଶ

ଦାର୍ଢ୍ୟତାଭକ୍ତିରସାମୃତ ପ୍ରଥମ ଖଣ୍ଡ ସପ୍ତମ

ଅଧ୍ୟାୟରେ ଯେଉଁ ରାମ ଦାସଙ୍କ ବିଷୟ ଲିଖିବାକୁ ହୋଇଅଛି ସେ ସମ୍ଭବତଃ ଉକ୍ତ ରାମ ଦାସ ବିନା ଅନ୍ୟ କେହି ନୁହନ୍ତି । ଅଳ୍ପ ପରିଶୀଳନ କରି ଦେଖନ୍ତୁ । ଦାର୍ଢ୍ୟତା ରାମ ଦାସଙ୍କ ବସତି ଦକ୍ଷିଣ ଦେଶ; "ଦକ୍ଷିଣ ଦେଶେ ପୁଣ୍ୟ କ୍ଷେତ୍ର । ଦେଖିଲା ମାତ୍ରକେ ପବିତ୍ର;" ଉକ୍ତ ରାମ ଦାସଙ୍କ ବାସସ୍ଥାନ ତାଙ୍ଗ୍ରାମ ମଧ୍ୟ ଦକ୍ଷିଣ ଦେଶରେ ଯାଏ । ଦାର୍ଢ୍ୟତା ରାମ ଦାସ ଜଣେ 'ଗୃହସ୍ଥ ବୈଷ୍ଣବ' ଓ କୌଣସି ମଠର ଅଧିକାରୀ ଥିଲେ, ତାହାଙ୍କର କୁଟୁମ୍ବ ସବୁ ତିନିଜଣ:—"ଗୃହସ୍ଥ ବୈଷ୍ଣବ ଅଟେ ପୁଣ । ତାର କୁଟୁମ୍ବ ତିନି ଜଣ । ଏକଇ ପୁତ୍ର ଏକ ନାରୀ । ସେ ଗ୍ରାମେ ଆଜ୍ଞା ମଠ କରି" । ଉକ୍ତ ରାମ ଦାସ ମଧ୍ୟ ଜଣେ ଗୃହସ୍ଥ ବୈଷ୍ଣବ ଓ ଉକ୍ତ ମଠର ଅଧିକାରୀ ଥିଲେ । ଏହାଙ୍କ କୁଟୁମ୍ବରେ ମଧ୍ୟ ତିନି ଜଣରୁ ଅଧିକ ନ ଥିଲେ । ଦାର୍ଢ୍ୟତା ରାମ ଦାସଙ୍କ "ସର୍ବଦା ଜାଣେ ତା ଭଜନ । କେବଳ ପ୍ରଭୁ ଲଛମନ"; ରାମମତାବଲମ୍ବୀ ଉକ୍ତ ରାମ ଦାସଙ୍କ ଇଷ୍ଟଦେବତା ମଧ୍ୟ ଲଛମନ । ଦାର୍ଢ୍ୟତା ରାମ ଦାସଙ୍କ ପରି ଉକ୍ତ ରାମ ଦାସ ନିରନ୍ତର ସାଧୁ ବୈଷ୍ଣବ ସେବାରେ ଅନୁରକ୍ତ ଥାନ୍ତି । ଦାର୍ଢ୍ୟତା ରାମ ଦାସ 'ପଣ୍ଡିତ, ବିବେକ' ଥିଲେ; ଉକ୍ତ ରାମ ଦାସ ମଧ୍ୟ ଜଣେ ସାଧାରଣ ପଣ୍ଡିତ ବୋଲି ପରିଚିତ ।

ରାମ ଦାସଙ୍କ ବିଦ୍ୟାଗୁରୁ କୌଣସି ଗଦାଧର ଦାସ:—"ଶ୍ରୀଗୁରୁ ଗଦାଧର ଦାସ । ସେ ପାଦପଦ୍ମେ ମୋର ଆଶ" । ଲୋକେ କହନ୍ତି ଏହି ଗଦାଧରଙ୍କଠାରେ ରାମ ଦାସ ସଂସ୍କୃତ ଅଧ୍ୟୟନ କରିଥିଲେ । ଯଥୋଚିତ ପାରଦର୍ଶିତା ଲାଭ କରି ଏ ନିଜେ ଖଣ୍ଡିଏ ସଂସ୍କୃତ ପାଠଶାଳା ଫିଟାଇ ତୁରର କେତେକ ଛାତ୍ରଙ୍କୁ ସଂସ୍କୃତ ପଢ଼ାଉଥିଲେ । ରାମ ଦାସ ତୁରର କାର୍ଯୀ କାମ ମଧ୍ୟ କରୁଥିଲେ । ଏହି କାର୍ଯୀପଣିଆ ଏହାଙ୍କ ପୁରୁଷାନୁକ୍ରମେ ଚାଲି ଆସୁଥିଲା ପରି ଜଣାଯାଏ; ଏହାଙ୍କ ପିତା କାର୍ଯୀ ଥିଲେ, ଏ ନିଜେ କାର୍ଯୀ ଥିଲେ ଓ ଏହାଙ୍କ ବଂଶଧର ପରଶୁରାମ ଦାସ ମଧ୍ୟ ବର୍ତ୍ତମାନ କାର୍ଯୀ ହୋଇଅଛନ୍ତି ।

ଦାର୍ଢ୍ୟତାଭକ୍ତିରସାମୃତ ଖଣ୍ଡିଏ ପ୍ରାଚୀନ ଭକ୍ତିଗ୍ରନ୍ଥ । ଏଥିରେ କେତେକ ପୌରାଣିକ ଓ ଅନେକ ଈଶ୍ୱରାନୁଗୃହୀତ ଐତିହାସିକ ଭକ୍ତଙ୍କ ଜୀବନବୃତ୍ତାନ୍ତ ଲିପିବଦ୍ଧ ହୋଇଅଛି । ଏହା ଦୁଇ ଭାଗରେ ବିଭକ୍ତ ଓ ପ୍ରତ୍ୟେକ ଭାଗ ୧୫ ଅଧ୍ୟାୟରେ ସମ୍ପୂର୍ଣ୍ଣ । ପ୍ରଥମ ଭାଗ ଶ୍ରୀ ବୀରକେଶରୀ ଦେବଙ୍କ ୪୧ ଅଙ୍କରେ ସମାପ୍ତ ହେବାର କବି ଲେଖି ଅଛନ୍ତି:—

ଶ୍ରୀ ବୀରକେଶରୀ ଦେବଙ୍କ ।
ସମ୍ପୂର୍ଣ୍ଣ ଏକଚାଳିଶି ଅଙ୍କ ।
ଯେ ଶୁକ୍ଳ ପଞ୍ଚମୀ ଦିବସେ ।
ଶୁକ୍ର ସକଳ ହରିବାସେ ।
ଚନ୍ଦ୍ରା ନକ୍ଷତ୍ର ଭଲ ବାରେ ।
ଉତ୍ତରା ନାମ ହରଣରେ ।
ଶୁଭ ନାମରେ ଯେଉଁ ଯୋଗ ।
ପଞ୍ଚାଶ ଦଣ୍ଡ ଥିଲା ଭୋଗ ।
ଏମନ୍ତ ଶୁଭ ଅନୁକୂଳେ ।
ପ୍ରାଣିଙ୍କ ଶ୍ରବଣ ମଙ୍ଗଳେ ।
ସମ୍ପୂର୍ଣ୍ଣ ହେଲା ଏ ଚରିତ ।
କହଇ ଲଛମନ ସୁତ ।

ଦ୍ୱିତୀୟ ଖଣ୍ଡ ଶ୍ରୀ ଦିବ୍ୟସିଂହଙ୍କ ୧୩ ଅଙ୍କରେ ସମାପ୍ତ ହୋଇଥିଲା:—

ଶ୍ରୀ ଦିବ୍ୟସିଂହ ଦେବଙ୍କର ।
ସମ୍ପୂର୍ଣ୍ଣ ତେରଣି ଅଙ୍କର ।

ଦ୍ୱିତୀୟ ଖଣ୍ଡରେ କୌଣସି କୌଣସି ହସ୍ତଲିଖିତ ପୁସ୍ତକରେ ୧୭ ଓ କୌଣସି କୌଣସି ପୁସ୍ତକରେ ୧୮ ଅଧ୍ୟାୟ ଥିବାର ଲକ୍ଷିତ ହୁଏ; କବି ତାହା ନିଜେ କହିଅଛନ୍ତି:—

ପ୍ରଥମ ପ୍ରବନ୍ଧ ପଞ୍ଚିଶ ।
ଅଧ୍ୟାରେ ହୋଇଲା ପ୍ରକାଶ ।
ତହିଁ ବିଚିଶ ସମ୍ଭାର ।
ଦ୍ୱିତୀୟ ସାଧୁମାନଙ୍କର ।

କୃପାରୁ ପୁଣ ପଞ୍ଚବଂଶ ।
ଅଧ୍ୟା ଦାର୍ଢ୍ୟଭକ୍ତାମୃତରସ ।
ଦୁଇ ପ୍ରବନ୍ଧ ମିଶିବାରେ ।
ସମ୍ପୂର୍ଣ୍ଣ ପଞ୍ଚାଶ ଅଧ୍ୟାରେ ।

କବି ପ୍ରଥମ ଭାଗ ରଚନାକାଳର ୩୨ବର୍ଷ ଉତ୍ତାରୁ ଦ୍ୱିତୀୟ ଭାଗ ରଚନା କରି ଥିଲେବୋଲି ଲେଖିଅଛନ୍ତି, ମାତ୍ର ଏହା ସମ୍ଭବପର ନୁହେ । ବୀର-କେଶରୀଦେବ ଖ୍ରୀ: ୧୬୩୬ ଠାରୁ ଖ୍ରୀ: ୧୬୬୩ ପର୍ଯ୍ୟନ୍ତ ଓ ଦିବ୍ୟସିଂହଦେବ ଖ୍ରୀ: ୧୬୬୩ ଠାରୁ ଖ୍ରୀ: ୧୬୯୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ବୀର-କେଶରୀଦେବଙ୍କ ବସ୍ତୁଳଣି ଅଙ୍କଠାରୁ ଦିବ୍ୟସିଂହ-ଦେବଙ୍କ ୨୩ ଅଙ୍କ ସରଚ ୨୨ ବା ୨୩ ବର୍ଷ ହେବ, ୩୨ ବର୍ଷ କିପରି ହେଲା ଜଣା ଯାଉ ନାହିଁ । ବୋଧ ହୁଏ 'ବାଇଶ' ପରିବର୍ତ୍ତେରେ 'ବତିଶ' ପଡ଼ି ଯାଇଥିବ । ରାମ ଦାସ ଓଡ଼ିଶା ରାଜା ବୀର-କେଶରୀ ଦେବଙ୍କ ସମୟର କବି, ଏହା ଉପରୋକ୍ତ ଅଂଶରୁ ସ୍ପଷ୍ଟ ଅବଧାରିତ ହୁଏ । ଏ କେଉଁ ସମ୍ବତ୍ସରରେ ଜନ୍ମଗ୍ରହଣ କରିଥିଲେ ଜଣା ଯାଏ ନାହିଁ ।

କବିଙ୍କ କବିତାରେ କୌଣସି ବାଗାଡ଼ମ୍ବର ବା ରଚନାଟୋପ ଲକ୍ଷିତ ହୁଏ ନାହିଁ, ଯାହା ଲେଖିଅଛନ୍ତି ତାହା ଅତ୍ୟନ୍ତ ସରଳ ଏ ସୁଖ-ବୋଧ ଭାଷାରେ ଲେଖିଅଛନ୍ତି; ଉଦାହରଣ ଦେଉଅଛୁ:—

ଏକଥା ଅଟଇ ପ୍ରମାଣ ।
ଶୁଣି ଚଳିଲେ ନୃପଗଣ ।
ବୋଇଲେ ଧର ହେ ଏହାଙ୍କୁ ।
କେଉଣ ବାପ ଅଛି ଇହାଙ୍କୁ ।
ସଭାର ଲୋକେ ଅଚମ୍ଭିତେ ।
ଅନାଇଛନ୍ତି ସ୍ତମ୍ଭୀଭୂତେ ।
ଜବାନ୍ଧ କରି ବନ୍ଧାଇଲେ ।
ପାଦେ ଶାଙ୍କୋଳି ପିନ୍ଧାଇଲେ ।
ଶ୍ରୀ ପୁରୁଷୋତ୍ତମ ମଧ୍ୟରେ ।
ଘେନିଣ ଗଲେ ବନ୍ଦୀଘରେ ।
ବନ୍ଦୀ ମନ୍ଦିରେ ଯନ୍ତ୍ର କରି ।
ଖଣ୍ଡା ଖୋଳାଇ ହାତ ଗାରି ।
ତହିଁରେ ଦାସଙ୍କୁ ଭରାଇ ।
ଉପରେ କାଠ ପଟା ଦେଇ ।
ସେ କାଠ ପଟା ପରେ ଭଲେ ।
ପଥରମାନ ମଡ଼ାଇଲେ ।
ନବଙ୍କେ କବାଟ କିଳାଇ ।
ଯେମନ୍ତେ ନ ଯିବ ପଳାଇ ।
ଅନେକ ଲୋକଙ୍କୁ ବଳାଇ ।
ଜଗାଇ ଦେଲେ ଦଣ୍ଡଧାରୀ ।
ଜାଗ୍ରତେ ରଖି ଜଗୁଥିଲ ।
କହି ଚଳିଲେ ମହୀପାଳ ।
ଶୂନ୍ୟରେ ଥିଲେ ଯେତେ ନର ।
କହିବା ଶକ୍ତି ଅଛି କାର ।
ମହାପ୍ରତାପୀ ନୃପବର ।
ଚଳିଣ ଗଲେ ନିଜ ପୁର ।
ଲୋକେ ଯେ ଗଲେ ଯେଝା ପୁର ।
ଦାସେ ରହିଲେ ବନ୍ଦୀଘର ।
ଜଗିଅଛନ୍ତି ଶତେ ଜଣ ।
ଅତ୍ୟନ୍ତ ଅଛଟ କରଣ ।
ନବଙ୍କ କରଣ କବାଟ ।
ମାଛି ଗଳିବ ନାହିଁ ବାଟ ।
ଦାସେ ରହିଲେ ତହିଁ ଯାଇଁ ।
ନବଙ୍କେ ଅଛୁ ବନ୍ଧା ହୋଇ ।
ପଦ୍ମରେ ଲାଗିଛି ଶାଙ୍କୋଳ ।
କେଣିକ ନ ପାରଇ ଚଳ ।
ଖଣ୍ଡା ମଧ୍ୟରେ ଅଛୁ ପଡ଼ି ।
ଅଙ୍ଗେ ଶିରେ ଚାର ଯୋଡ଼ି ।

* * *

'ଦାମରସାମୃତ' ରାମ ଦାସଙ୍କର ଅନ୍ୟତର ଗ୍ରନ୍ଥ ।

ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ।

## ମିଆଁ ସାହେବଙ୍କ ରୋଜନାମଚା । (୩)

ସନ୍ତାନ:—

ମୁସଲମାନମାନଙ୍କ ମଧ୍ୟରେ ଗର୍ଭଧାରଣର ନ୍ୟୂନତମ ସମୟ ଛ ମାସ ଏବଂ ଊର୍ଦ୍ଧ୍ୱତମ ସମୟ ଦୁଇ ବର୍ଷ । କ୍ଷେତ୍ରଜ ସନ୍ତାନ ସାଧାରଣତଃ ସ୍ୱାମୀଙ୍କର ବୋଲି କଳ୍ପିତ ହୁଏ । କିନ୍ତୁ ଉପଯୁକ୍ତ କାରଣ ଓ ପ୍ରମାଣ ଦେଖାଇ ସ୍ୱାମୀ କ୍ଷେତ୍ରଜ ସନ୍ତାନକୁ ଅସ୍ୱୀକାର କରି ପାରନ୍ତି । ପ୍ରଥମେ ଔରସ ବୋଲି ସ୍ୱୀକାର କରି ପରେ ଅସ୍ୱୀକାର କରିବାର କ୍ଷମତା ପିତାଙ୍କର ନାହିଁ । ଇଂରେଜମାନଙ୍କ ମଧ୍ୟରେ ଗୋଟିଏ ନିୟମ ପ୍ରଚଳିତ ଅଛି ଯେ କୌଣସି ପୁରୁଷସହବାସରେ କୌଣସି ସ୍ତ୍ରୀଙ୍କର ଗର୍ଭୋଦୟ ହେଲା ପରେ ଯେବେ ଦୁହେଁ ବିବାହସୂତ୍ରରେ ଆବଦ୍ଧ ହୁଅନ୍ତି ତେବେ ବିବାହ-ପୂର୍ବୋଦିତ ଗର୍ଭର ସନ୍ତାନ ବିବାହ-କାରଙ୍କର ବୋଲି ବିବେଚିତ ହୁଏ । କିନ୍ତୁ ମୁସଲମାନମାନଙ୍କ ବିଧାନ ଅନୁସାରେ ବିବାହ ପୂର୍ବରୁ ବିବାହକାରୀ ସ୍ୱାମୀଙ୍କ ସହବାସରେ ଗର୍ଭୋଦୟ ହୋଇଥିଲେ ଉକ୍ତ ଗର୍ଭଜାତ ଶିଶୁ ଉପରୋକ୍ତ ପିତାଙ୍କର ସନ୍ତାନସ୍ୱରୂପ ଗଣ୍ୟ ହୋଇ ନ ପାରେ । ଉକ୍ତ ସନ୍ତାନ କ୍ଷେତ୍ରଜ । କ୍ଷେତ୍ରଜ ସନ୍ତାନ ମାତୃ-ସମ୍ପତ୍ତିରେ ଅଧିକାରୀ, କିନ୍ତୁ ପିତୃ-ସମ୍ପତ୍ତିରୁ ବଞ୍ଚିତ ହୁଏ । ନିଷିଦ୍ଧବିବାହୋତ୍ପନ୍ନ ସନ୍ତାନର ପିତୃ-ସମ୍ପତ୍ତିରେ ଅଧିକାର ନାହିଁ ।

ମୁସଲମାନମାନଙ୍କ ମଧ୍ୟରେ ପୋଷ୍ୟପୁତ୍ର ଗ୍ରହଣ କରିବା ରୀତି ପ୍ରଚଳିତ ନାହିଁ । ଜ୍ଞାତ-ପିତୃକ ପୁତ୍ର ଅନ୍ୟ ପିତାଙ୍କର ପୋଷ୍ୟସ୍ୱରୂପ ଗୃହୀତ ହୋଇ ପାରିବେ ନାହିଁ । ସୁନ୍ନୀ ବିଧାନ ଅନୁସାରେ ଅଜ୍ଞାତ-ପିତୃକ ଲୋକଙ୍କୁ ଅନ୍ୟ ପୁରୁଷ ପୋଷ୍ୟପୁତ୍ରରୂପେ ଗ୍ରହଣ କରି ପାରନ୍ତି । ପୋଷ୍ୟପୁତ୍ରଙ୍କ ଜନ୍ମଦାତ୍ରୀ ଗ୍ରାହକ ପିତାଙ୍କ ସ୍ତ୍ରୀ ବୋଲି ବିବେଚିତ ହୁଅନ୍ତି ଏବଂ ସ୍ତ୍ରୀଙ୍କର ସମ୍ପତ୍ତି ଅଧିକାରରେ ଅଧିକାରିଣୀ ହୁଅନ୍ତି ।

ସନ୍ତାନପାଳନ:—ଶିଶୁ ସନ୍ତାନମାନଙ୍କୁ ପାଳନ କରିବାର ଅଧିକାର ସର୍ବାଦୌ ମାତାଙ୍କର । ଶିଶୁ ବଡ଼ି ଗଲେ ପିତା ତାହାକୁ ପାଳନ କରିବାର ଅଧିକାର ପ୍ରାପ୍ତ ହୁଅନ୍ତି ଏବଂ ତାହାର ଅଭିଭାବକ ହୁଅନ୍ତି । କନ୍ୟା ବିବାହିତା କିମ୍ବା ବୟଃପ୍ରାପ୍ତା ହେବା ପର୍ଯ୍ୟନ୍ତ ମାତା କନ୍ୟାର ଅଭିଭାବିକା —ବିବାହ-ନିଷିଦ୍ଧ ସମ୍ପର୍କରେ ସଂବଦ୍ଧ ପୁରୁଷ କୌଣସି କନ୍ୟାର ଅଭିଭାବକ ହେବାର ଯୋଗ୍ୟ ନୁହନ୍ତି । ମାତା କ୍ଷେତ୍ରଜ ସନ୍ତାନର ଅଭିଭାବିକା । ଅଭିଭାବକ ନାବାଳକର ନିଷିଦ୍ଧ-ସମ୍ପର୍କୀୟ ଲୋକ ସଙ୍ଗେ ବିବାହ କଲେ କିମ୍ବା ଦୁରାଚାର ଅଥବା ସୁଦୂରପ୍ରବାସୀ କିମ୍ବା ଜାତିଚ୍ୟୁତ ହେଲେ ତାଙ୍କର ଅଧିକାର ଲୁପ୍ତ ହୁଏ ।

ବୟଃପ୍ରାପ୍ତି:—କେଉଁ କେଉଁ ସମ୍ପ୍ରଦାୟଙ୍କ ମତରେ ବାଳକ ୧୫ ବର୍ଷ କିମ୍ବା ୧୮ ବର୍ଷ ବୟସ ଅତିକ୍ରମ କଲେ ବୟଃପ୍ରାପ୍ତ ହେବାର ବିବେଚିତ ହୁଏ । ଅଭିଭାବକ ହେବାର ଅଧିକାର ସର୍ବାଦୌ ପିତାଙ୍କର, ତଦଭାବେ ପିତୃନିଯୁକ୍ତ ବ୍ୟକ୍ତି, ତଦଭାବେ ପିତାମହ, ତଦଭାବେ କାଜୀଙ୍କଦ୍ୱାରା ମନୋନୀତ ବ୍ୟକ୍ତି ବାଳକର ଅଭିଭାବକ ହେବାର ଯୋଗ୍ୟ ଅଟନ୍ତି । ଅଭିଭାବକ ୨ ଶ୍ରେଣୀରେ ବିଭକ୍ତ:— ୧ ଦେହରକ୍ଷା ନିମନ୍ତେ । ୨ ସମ୍ପତ୍ତି-ରକ୍ଷା ନିମନ୍ତେ । ମାତା ନାବାଳକର ଦେହରକ୍ଷକ ହୋଇ ପାରନ୍ତି, କିନ୍ତୁ କାଜୀଙ୍କର ବିନା ଅନୁମତିରେ ନାବାଳକର ସମ୍ପତ୍ତି ରକ୍ଷା କରିବାର ଅଧିକାର ମାତାଙ୍କର ନାହିଁ । ନାବାଳକ ସନ୍ତାନମାନଙ୍କୁ ପିତା ଭରଣପୋଷଣ କରିବାକୁ ବାଧ୍ୟ । ପିତା ନିଃସ୍ୱ ହୋଇଥିଲେ ଓ ପିତାମହ ଧନୀ ହୋଇ-ଥିଲେ ପିତାମହ ବାଧ୍ୟ । ଦୁର୍ବଳ କିମ୍ବା ଅକ୍ଷମ ବୟଃପ୍ରାପ୍ତ ସନ୍ତାନମାନଙ୍କୁ ଭରଣପୋଷଣ କରିବା ପିତାଙ୍କର କର୍ତ୍ତବ୍ୟ—କନ୍ୟା ବିବାହିତା ଅଥବା ବୟଃପ୍ରାପ୍ତା ନ ହେବା ପର୍ଯ୍ୟନ୍ତ ତାଙ୍କ ଭରଣ-ପୋଷଣ କରିବାର ଭାର ପିତାଙ୍କ ଉପରେ ନ୍ୟସ୍ତ ।

ଦାନ:—ଦାନକୁ 'ହିବା' ବୋଲାଯାଏ । ଏହା ସାଧାରଣତଃ ୩ ପ୍ରକାର । ୧—ଦାତା ଗ୍ରହୀତାଙ୍କୁ ବିନାମୂଲ୍ୟରେ ଅନୁଗ୍ରହସ୍ୱରୂପ ଦାନ କରନ୍ତି । ୨—ଦାତା ଗ୍ରହୀତାଙ୍କଠାରୁ କିଛି ପଦାର୍ଥ

କେଉ ଗ୍ରହୀତାଙ୍କୁ କୌଣସି ବସ୍ତୁ ଦାନ କରନ୍ତି ।

୩— ଗ୍ରହୀତା ଦାତାଙ୍କୁ ଭବିଷ୍ୟତରେ କିଛି ପ୍ରତିଦାନ କରିବେ ଏହି ସର୍ତ୍ତରେ ଦାନ କରା ଯାଏ ।

ଦାନପତ୍ର କିମ୍ବା ମୌଖିକ ଆଦେଶଦ୍ୱାରା ଦାନ ସିଦ୍ଧ ହୁଏ । ମାରାତ୍ମକ ପୀଡ଼ାଗ୍ରସ୍ତ ବ୍ୟକ୍ତି ଯେବେ କିଛି ଦାନ କରନ୍ତି ତାହା ହେଲେ ଉକ୍ତ ଦାନ ତଳଲିଖିତ ନିୟମ ଅନୁସାରେ ପ୍ରବଳ ହୁଏ ।

୧ । ସମସ୍ତ ଉତ୍ତରାଧିକାରୀଙ୍କ ଅନୁମତି ବ୍ୟତିରେକେ ଜଣେ ଉତ୍ତରାଧିକାରୀଙ୍କୁ କୌଣସି ଦାନ ଦିଆ ହୋଇ ନ ଥିଲେ ତାହା ଅସିଦ୍ଧ ।

୨ । ଉତ୍ତରାଧିକାରୀଙ୍କ ଅନୁମତିସହ କୌଣସି ଉତ୍ତରାଧିକାରୀଙ୍କୁ ବା ଅପର ଲୋକଙ୍କୁ ଯାହା ଦାନ ହୋଇଥାଏ ତାହା ସିଦ୍ଧ ।

୩ । ଉତ୍ତରାଧିକାରୀଙ୍କ ଅନୁମତି ବ୍ୟତିରେକେ ଅପର ଲୋକଙ୍କୁ ଯାହା ଦାନ ହୋଇଥାଏ ତହିଁର $\frac{୧}{୩}$ ସିଦ୍ଧ ଓ ଅପର $\frac{୨}{୩}$ ଗ୍ରହୀତା ପାଇ ନ ପାରନ୍ତି ।

ସାଧାରଣତଃ ଦାନ ସିଦ୍ଧ ହେବା ନିମନ୍ତେ ନିମ୍ନଲିଖିତ କେତେ ଗୋଟି ବିଧି ପାଳନ ଏକାନ୍ତ ଆବଶ୍ୟକ ।

୧ । ଦାତା ଦାନ ଦେବାର ଇଚ୍ଛା ପ୍ରକାଶ କରିବେ ।

୨ । ଗ୍ରହୀତା ଉକ୍ତ ଦାନ ଗ୍ରହଣ କରିବାକୁ ସ୍ୱୀକୃତ ହେବେ ।

୩ । ଗ୍ରହୀତା ଦତ୍ତ ସମ୍ପତ୍ତିକୁ ଦାନ ପରେ ସ୍ୱାଧିକାରଭୁକ୍ତ କରିବେ ।

୪ । ଦତ୍ତ ସମ୍ପତ୍ତିରେ ଦାତାଙ୍କର ସମ୍ପୂର୍ଣ୍ଣ ଅଧିକାର ଥିବ ।

୫ । ଦାତା ବୟଃପ୍ରାପ୍ତ, ପ୍ରକୃତସ୍ଥ ଓ ସ୍ୱାଧୀନ ହୋଇଥିବେ ।

କେତେକ ସ୍ଥଳରେ ଦାନ ପ୍ରତ୍ୟାଖ୍ୟାତ ହୋଇ ପାରେ, କିନ୍ତୁ ଗ୍ରହୀତା ଦତ୍ତ ସମ୍ପତ୍ତିକୁ ହସ୍ତାନ୍ତର କରିଥିଲେ, ଅଥବା ଦତ୍ତ ସମ୍ପତ୍ତି ନଷ୍ଟ ହୋଇଥିଲେ, କିମ୍ବା ଦାତା ଓ ଗ୍ରହୀତାଙ୍କ ମଧ୍ୟରେ ବିବାହ ସମ୍ପର୍କ ଥିଲେ, ଦାନ ପ୍ରତ୍ୟାଖ୍ୟାନ ହୋଇ ନ ପାରେ ।

ୱକଫ୍ :—ସଦାବ୍ରତ ନିମନ୍ତେ ୱକଫକୁ ଉଅକଫ୍ ବୋଲାଯାଏ । କୌଣସି ଧର୍ମାର୍ଥ ଦାନକୁ ଉଅକଫ୍ ବୋଲାଯାଏ । ମୁସଲମାନଙ୍କ ମତରେ ଆପଣାର ସନ୍ତାନ ସନ୍ତତି ବା କୁଟୁମ୍ବମାନଙ୍କ ପୋଷଣ ନିମନ୍ତେ ଦାନ ଧର୍ମକାର୍ଯ୍ୟ ମଧ୍ୟରେ ପରି-ଗଣିତ । ଧର୍ମାର୍ଥ ଦାନ ପ୍ରତ୍ୟାଖ୍ୟାତ ହୋଇ ନ ପାରେ । ଧର୍ମାର୍ଥ ଦାନର ପ୍ରଧାନ ସର୍ତ୍ତ ଏହି କି ଉକ୍ତ ଦାନ ଚିରଦିନ ନିମନ୍ତେ ଉତ୍ସୃଷ୍ଟ ହେବାର ଆବଶ୍ୟକ । ଅଜାତ ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ 'ଉଅକଫ୍' କରାଯାଇ ପାରେ, କିନ୍ତୁ ସେମାନଙ୍କ ଉଦ୍ଦେଶ୍ୟରେ ଦାନ 'ହିବା' ଅସିଦ୍ଧ । ସମସ୍ତ 'ଉଅକଫ୍'ର ଶେଷ ଗ୍ରହୀତା ନିର୍ଧନମାନେ । ଅର୍ଥାତ୍ ଉଅକଫ୍‌ରେ ଦାତାଙ୍କର ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟ ସିଦ୍ଧ ହେବା ବିଷୟରେ ଯେବେ କିଛି ବାଧା ପଡ଼େ, ତାହାହେଲେ ଉକ୍ତ ଉତ୍ସୃଷ୍ଟ ସମ୍ପତ୍ତି ଦରିଦ୍ର-ସେବାରେ ନିୟୋଜିତ ହେବ । ମୁସଲମାନ ବିଧାନ ଅନୁସାରେ କୌଣସି 'ଉଅକଫ୍' ବ୍ୟର୍ଥ ହୋଇ ନ ପାରେ । କାରଣ ସମସ୍ତ 'ଉଅକଫ୍'ର ଶେଷ ଗ୍ରହୀତା ଏବଂ ଭୋକ୍ତା ଦରିଦ୍ରମାନେ ଅଟନ୍ତି । 'ଉଅକଫ୍'ର ମାର୍ଫତଦାର ବା ସେବାଏତଙ୍କୁ 'ମତ୍ୱାଲି' ବୋଲା ଯାଏ । ଉଅକଫ୍ କର୍ତ୍ତା ସ୍ୱୟଂ ମତ୍ୱାଲି ହୋଇ ପାରନ୍ତି କିମ୍ବା ଅନ୍ୟଙ୍କୁ ନିଯୁକ୍ତ କରି ପାରନ୍ତି । ଉଅକଫ୍ କର୍ତ୍ତା କାହାକୁ ମତ୍ୱାଲି ନିଯୁକ୍ତ କରି ନ ଥିଲେ କିମ୍ବା ନିଯୁକ୍ତ ମତ୍ୱାଲି କର୍ତ୍ତବ୍ୟରେ ତ୍ରୁଟି କଲେ କାଜୀ ଜଣେ ଉପଯୁକ୍ତ 'ମତ୍ୱାଲି' ନିଯୁକ୍ତ କରି ପାରନ୍ତି 'ଉଅକଫ୍' ଦାତାଙ୍କ କାର୍ଯ୍ୟକ୍ଷମ ବଂଶଧର ଜୀବିତ ଥିବା ପର୍ଯ୍ୟନ୍ତ ଅପର ବ୍ୟକ୍ତି ମତ୍ୱାଲି ହୋଇ ପାରିବେ ନାହିଁ । ହିନ୍ଦୁମାନଙ୍କ ଦେବୋତ୍ତର ସମ୍ପତ୍ତି ସମ୍ବନ୍ଧରେ ସେବାଏତମାନଙ୍କର ଯେଉଁ ଅଧିକାର, ଉଅକଫ୍ ସମ୍ପତ୍ତି ସମ୍ବନ୍ଧରେ ମତ୍ୱାଲିଙ୍କର ସେହି ଅଧିକାର ।

କ୍ରମଶଃ

ଶ୍ରୀ ଦୁର୍ଗାଚରଣ ଶର୍ମା ।

## ଓଡ଼ିଆ ଭାଷାର ମୂଳ । ( ୩ )

ଉଲ୍ଲିଖିତ ପ୍ରାକୃତ ଶବ୍ଦଗୁଡ଼ିକ ସଂସ୍କୃତମୂଳକ ଦେଖି ପାଠକମାନେ ମନେ କରିବେ ନାହିଁ ଯେ ସମସ୍ତ ପ୍ରାକୃତ ଶବ୍ଦ ସଂସ୍କୃତରୁ ଆସିଅଛି । ପ୍ରାକୃତରେ ଏପରି ଅନେକ ଶବ୍ଦ ଅଛି ଯେଉଁଗୁଡ଼ିକର ମୂଳ ସଂସ୍କୃତରେ ନାହିଁ । ସଂସ୍କୃତର ଧାତୁ ପ୍ରାକୃତରେ ବିଶୁଦ୍ଧ ଭାବରେ ନାହିଁ; ଅନେକ ପରିମାଣରେ ବ୍ୟତିକ୍ରମ ହୋଇଅଛି । ମଡ଼ମଡ଼, ଥରଥର, ପେଟ, ଧଡ଼ପଡ଼, ଚୁଲଚୁଲ, ବକ୍କରବକ୍କର, ଓଦ-ଓଦ, ପାଲ, ଖଡ଼, ଗଳଥା, ତୁମ୍ଭେ, ଅମ୍ଭେ, ଦାଲଦ, ଗଡ଼ଡ଼ ପ୍ରଭୃତି ଯେଉଁସବୁ ଶବ୍ଦ ଆମ୍ଭମାନଙ୍କ ଭାଷାରେ ଚଳୁଅଛି, ସେଗୁଡ଼ିକ ପ୍ରାକୃତ ଭାଷାରୁ ଆଗତ । ସଂସ୍କୃତ ଭାଷାରେ ଉକ୍ତ ପ୍ରକାର ଶବ୍ଦ ନାହିଁ । ନିମ୍ନଲିଖିତ ଧାତୁଗୁଡ଼ିକର ମୂଳ ମଧ୍ୟ ସଂସ୍କୃତ ଭାଷାରେ ନାହିଁ । ଯଥା:— ଓଡ଼୍, ଲୋଟ୍ଟ, ଧକ୍କ, ଖଡ୍ଡ, ପେଲ୍ଲ, ଉଗ୍ଗାଲ, ଭୁକ୍କ ( ଗର୍ଜନ ), କମ୍ମ ( କ୍ଷୌରକୁ ), ଖୋପ୍ପଡ଼, ଚଚ୍ଛ (ତକ୍ଷଣ), ଚକ୍ଖ (ଆସ୍ୱାଦନ), ପକ୍କ, ପିଟ୍ଟ, ଉଖୁଡ଼, କୁର, ଡୁଲ୍ଲ, ଦମ୍ମ, ପଲ୍ଲଟ, ଚଡ଼ ( ଆରୋହଣ ), ଢୋଳ, ଝୁଣ, ଛେଲ୍ଲ ଏହି ଧାତୁଗୁଡ଼ିକ ଓଡ଼ିଆ ଭାଷାରେ କିଞ୍ଚିତ୍ ପରିବର୍ତ୍ତିତ ଆକାର ଧାରଣ କରିଅଛି ।

ଓଡ଼ିଆ ଭାଷାର ଅନେକ ଶବ୍ଦ ପ୍ରାକୃତ ଅପେକ୍ଷା ସଂସ୍କୃତର ଅଧିକ ନିକଟବର୍ତ୍ତୀ । ସମ୍ଭବତଃ ସେଗୁଡ଼ିକ ପ୍ରାକୃତ ବାଟେ ଆସି ନାହିଁ, ସଂସ୍କୃତରୁ ସାକ୍ଷାତ୍ ଭାବରେ ଉତ୍ପନ୍ନ । ଅଥବା ସେଗୁଡ଼ିକ ପୂର୍ବେ ପ୍ରାକୃତଭବ ଥିଲା, ପରେ ସଂସ୍କୃତ ଭାଷାର ପ୍ରଭାବବୃଦ୍ଧି ସମ୍ପର୍କରେ ସଂସ୍କୃତ ଶବ୍ଦଗୁଡ଼ିକ ସେମାନଙ୍କର ସ୍ଥାନ ଅଧିକାର କରିଅଛି । ଯଥା:—

| ପ୍ରାକୃତ | ଓଡ଼ିଆ | ସଂସ୍କୃତ |
|---|---|---|
| ଥୋରେ | ଥବିର | ସ୍ଥବିରଃ |
| ସୁହଂ | ସୁଖ | ସୁଖଂ |
| ମେହୋ | ମେଘ | ମେଘଃ |
| ପଂଣସୋ | ପଣସ | ପନସଃ |
| ତୋଣ୍ଡଂ | ତୁଣ୍ଡ | ତୁଣ୍ଡଂ |
| ଣେଉରଂ | ନେପୁର | ନୂପୁରଂ |
| ମୁଅଙ୍ଗୋ | ମୃଦଙ୍ଗ | ମୃଦଙ୍ଗଃ |
| ନହୋ | ନଖ, ଲଖ | ନଖଃ |
| କଥଲୀ, କେଲୀ | କଦଳୀ | କଦଲୀ |

ଇତ୍ୟାଦି ।

ଏତଦ୍ବ୍ୟତୀତ ବହୁସଂଖ୍ୟକ ସଂସ୍କୃତ ଶବ୍ଦ ସାଧାରଣକଥିତ ଓଡ଼ିଆ ଭାଷାରେ ଅବିକଳ ରହିଅଛି । ଆମ୍ଭମାନଙ୍କ ଘରୋଇ ଭାଷାରେ ସୁଦ୍ଧା ସଂସ୍କୃତ ଶବ୍ଦସଂଖ୍ୟା ଅଳ୍ପ ନୁହେ । ଯଥା:— ବାଟ, ଗୋବର, କୋଠ, ଲୁଣ୍ଡ, ମୁଣ୍ଡ, ଜଳ, ଗାଲ, କଲଙ୍କି, ଧୂଳ, ସଙ୍କ୍ରାନ୍ତି, କଦମ୍ବ, ଛନ୍ଦ, ରଙ୍କ, ମନ୍ତ୍ର, ତମ୍ବ, କଥା, କାର୍ତ୍ତି, ବାଳ, ଘାସ ଇତ୍ୟାଦି । ଝଡ଼ିବା, ବୁଡ଼ିବା, ପିଟିବା, ବାନ୍ଧିବା ପ୍ରଭୃତି ଓଡ଼ିଆ କ୍ରିୟା ପଦକୁ ଆଧୁନିକ କୌଣସି ବୈୟାକରଣ ଅସଂସ୍କୃତମୂଳକ ବୋଲି ନିର୍ଦ୍ଦେଶ କରିଅଛନ୍ତି । କିନ୍ତୁ ଏହା କଣ ସମୀଚୀନ ? ସଂସ୍କୃତର ବୁଡ଼, ପିଟ୍ଟ, ଝଟ, ବନ୍ଧ ପ୍ରଭୃତି ଧାତୁରୁ ଏଗୁଡ଼ିକ ଆସିଅଛି । ପ୍ରଧାନ ବୈୟାକରଣ ମହର୍ଷି ପାଣିନି ପୂର୍ବୋକ୍ତ ଧାତୁଦ୍ୱୟର ନାମ ଉଲ୍ଲେଖ କରିଅଛନ୍ତି ।

ପାଲି ଭାଷା ଏକ ସମୟରେ ଏ ଦେଶରେ ଚଳୁଥିବା କଥା ପୂର୍ବରେ ଲେଖା ଯାଇଅଛି । ତାହା ସହିତ ଓଡ଼ିଆ ଭାଷାର କିପରି ସାଦୃଶ୍ୟ ଅଛି ଦେଖାଯାଉ ।

| ପାଲି | ଓଡ଼ିଆ । |
|---|---|
| ଛ | ଛ |
| ଅଟ୍ଠ | ଆଠ |
| ଚାଲୀସଂ | ଚାଳିଶ |
| ସତ୍ତରି | ସତୁରି |

| ପାଲି | ଓଡ଼ିଆ । |
|---|---|
| ଦିୟଡ୍ଢୋ | ଦେଢ଼ |
| ଅଡ୍ଢତେୟ୍ୟୋ | ଅଢ଼େଇ |
| ଦିଗୁଣ | ଦୁଗୁଣ |
| ଅମ୍ଳକୋ | ଅମ୍ଳକ |
| ତୁମ୍ହାନଂ / ତୁମ୍ହାକଂ | ତୁମ୍ଭମାନଙ୍କ |
| ଲଣ୍ଡୋ | ଲଣ୍ଡା |
| ଛଡ୍ଡ ( ଧାତୁ ) | ଛଡ଼ |
| ନାହିଁ | ନାହିଁ |
| ପିଟ୍ଠି | ପିଠି |
| ତେଲ୍ଲ | ତେଲ |
| ଲୁଣ୍ଡଂ | ଲୁଣ୍ଡିଆ |
| ହସେନ୍ତା | ହସନ୍ତା |
| ତରଚ୍ଛା | ତେରଚ୍ଛ |
| ନଟ୍ଟ | ନାଟ |
| ମରନ୍ତ | ମରନ୍ତ ଇତ୍ୟାଦି । |

ହଟ୍ଟ, ବଟ୍ଟ, ଲଟ୍ଠ, ତୁଚ୍ଛା, ବଟ୍ଠ ପ୍ରଭୃତି ଶବ୍ଦ ପାଲି ଭାଷାରୁ ଓଡ଼ିଆ ଭାଷାକୁ ଆସିଅଛି ।

ଓଡ଼ିଆ ପ୍ରାକୃତରୁ ଏବଂ ପ୍ରାକୃତ ସଂସ୍କୃତରୁ ଉତ୍ପନ୍ନ ହେଲେହେଁ ଯାହା ଦେଶୀ ଅର୍ଥାତ୍ ଦେଶବାସିମାନଙ୍କ ଗୃହରେ ଅବହମାନ ଚଳି ଆସୁଅଛି, ତାକୁ କଦାପି ସଂସ୍କୃତ ବା ପ୍ରାକୃତ ବୋଲିଯାଇ ନ ପାରେ । ଭାଷାର ଏହି ଅଂଶ ଦେଶର ନିଜସ୍ୱ । ଓଡ଼ିଆ ଭାଷାରେ ଏପରି ଅନେକ ଶବ୍ଦ ଅଛି ଯାହା ପ୍ରାକୃତରେ ନାହିଁ ଓ ସଂସ୍କୃତରେ ନାହିଁ । ଅତଏବ ସେଗୁଡ଼ିକୁ ଦେଶଜ ବୋଲିଯିବ । ଯଥା,—ଢେଉ (ଦେଉ) ଢିଙ୍କି, ଖୁନ୍ଦି, ଛାଳ, ମୂଳ, ମାଳପା, ମୁଣ୍ଡି, ଡ଼ୋଳା ଫାଳିଣା, ଖୋଇ (ସ୍ୱଭାବ), ହୁଙ୍କା, ଓଳିଆ, ଛାଟି, ବାହୁଙ୍ଗା, ଗଳା, ତଳ, ବାଜା, କଣା, ଝାମୁଡ଼ା, ପାନିଆଁ, ବାଡ଼ି ( ଯଷ୍ଟି ), ମେଣ୍ଢା ଇତ୍ୟାଦି । ଢେଙ୍କି କୁଲା ପ୍ରଭୃତି କେତୋଟି ଶବ୍ଦ ବଙ୍ଗବାସିମାନଙ୍କ ଗୃହରେ ଚଳୁଥିବାର ଜଣାଯାଏ । ଏଥିରୁ ଅନୁମାନ ହେଉଅଛି ଉକ୍ତ ଜାତୀୟ ଶବ୍ଦ ସବୁ ପ୍ରାକୃତ ପୂର୍ବରେ ଦେଶବାସିମାନଙ୍କ ମଧ୍ୟରେ ବ୍ୟବହୃତ ହେଉଥିଲା । ଏହି କେତୋଟି ସଦୃଶ ଶବ୍ଦ ଛାଡ଼ି ଦେଲେ ଅନ୍ୟ ଗୁଡ଼ିକ ଓଡ଼ିଶାର ସ୍ୱତ୍ୱ । ବହୁକାଳ ପୂର୍ବରୁ ଓଡ଼ିଆମାନଙ୍କ ଗୃହରେ ସେଗୁଡ଼ିକ ବ୍ୟବହୃତ ହୋଇ ଆସୁଅଛି । ବୌଦ୍ଧ ଯୁଗରେ ଏଥିମଧ୍ୟରୁ ଅନେକାଂଶ ହୁଏତ ଅନାର୍ଯ୍ୟ ଭାଷାରୁ ଗୃହୀତ ହୋଇଥିବ । ଅନ୍ୟଯୁଗରେ ଆର୍ଯ୍ୟମାନଙ୍କ କର୍ତ୍ତୃକ ଅନାର୍ଯ୍ୟ ଭାଷା ଗୃହୀତ ହୋଇଥିବାର ସମ୍ଭାବନା ନାହିଁ । ଆର୍ଯ୍ୟମାନଙ୍କ କଥା କେଣିକି ଥାଉ ସମାଜର ଦୃଢ଼ବନ୍ଧନବଶତଃ ଏକତ୍ରବାସୀ ବ୍ରାହ୍ମଣ ଓ ଶୂଦ୍ରମାନଙ୍କର ଭାଷା ମଧ୍ୟରେ ସୁଦ୍ଧା ପାର୍ଥକ୍ୟ ଲକ୍ଷିତ ହୁଏ । ଉଚ୍ଚଜାତୀୟ ଲୋକେ ନୀଚଜାତିର ଭାଷାକୁ ଗ୍ରହଣ ବା ଆଦର କରିନ୍ତି ନାହିଁ । ଏହି ଘୃଣା ଏଣିକି କ୍ରମଶଃ ଊଣା ହୋଇ ଆସୁଥିଲେହେଁ, ଆଜିକାଲି ଗ୍ରାମ ମଧ୍ୟରେ ଏହି ପ୍ରଭେଦ ଦେଖା ଯାଉଅଛି । ଦୃଷ୍ଟାନ୍ତସ୍ୱରୂପ କେତୋଟି ଶବ୍ଦ ପ୍ରଦତ୍ତ ହେଲା—

| ଉଚ୍ଚ ଜାତିର କଥା | ନୀଚ ଜାତିର କଥା |
|---|---|
| ଗିନା | ତାଟିଆ |
| ଥାଳ | ଦୋଟା |
| ଦୀପ | ବଇଠା |
| ଛୁଞ୍ଚଣୀ | ଝାଡ଼ୁ |
| ଗାଭି | ଗାଡ଼ି |
| ପହ୍ନାଇବା | ପାରୁବା |
| ତୋଟି | ତଣ୍ଟି ଇତ୍ୟାଦି । |

କିନ୍ତୁ ସେଗୁଡ଼ିକ ସବୁ ଅନାର୍ଯ୍ୟ ଭାଷା ନୁହେଁ । ଗାଡ଼ି, ପାରବା ଓ ଝାଡ଼ୁ ପ୍ରାକୃତମୂଳକ । ଗଡ଼ଜାତପ୍ରଚଳିତ ଅନେକ ଓଡ଼ିଆ ଶବ୍ଦ ଏଥିରୁ ସମ୍ପୂର୍ଣ୍ଣ ଭିନ୍ନ । ସେଗୁଡ଼ିକ ହୁଏତ ଅନାର୍ଯ୍ୟ ଭାଷାରୁ ଗୃହୀତ ହୋଇଥିବ । କିନ୍ତୁ ଏହା ନିଶ୍ଚିତ ଯେ ଅନେକ ଶବ୍ଦ ଅବଶ୍ୟକ ସମୟରେ ଭିନ୍ନ ଭାଷା ଆଦର୍ଶରେ ସ୍ୱତଃ ଗଠିତ ହୋଇ ଯାଇଅଛି ।

ହିନ୍ଦୀଭିନ୍ନ ଭାଷାମାନଙ୍କ ବ୍ୟତୀତ ହିନ୍ଦୀ ଗୁଜରାଟୀ ଭାଷାର କେତେକ ଅଂଶ ଓଡ଼ିଆ ଭାଷାରେ ମିଶିଥିବାର ଦେଖାଯାଏ । ହିନ୍ଦୀଭାଷୀ ମଧ୍ୟଭାରତର କେତେକ ଭୂଖଣ୍ଡ ଉତ୍କଳର ପାର୍ଶ୍ୱବର୍ତ୍ତୀ । ଅଳ୍ପକାଳ ପର ବଙ୍ଗଦେଶକୁ ଯିବାର ମାର୍ଗ ପୂର୍ବେ ସୁଗମ ନ ଥିବାରୁ ଓଡ଼ିଆମାନେ ମଧ୍ୟଭାରତ ସହିତ ସମ୍ପର୍କ ରଖୁଥିଲେ । କୌଣସି କୌଣସି ପଣ୍ଡିତ କହନ୍ତି ଯେ ବହୁ ପୂର୍ବ କାଳରେ ମଧ୍ୟଭାରତ ସହିତ ଓଡ଼ିଶାର ସମ୍ପର୍କ ଥିଲା । ଓଡ଼ିଆମାନେ ମଧ୍ୟଭାରତରୁ ଲେଖାପଢ଼ା ଶିକ୍ଷା କରିଥିଲେ । ସୁତରାଂ ଏହି ପୂର୍ବବର୍ତ୍ତୀ ଭାଷାଦ୍ୱୟ-ଦ୍ୱାରା ମଧ୍ୟ ଓଡ଼ିଆ ଭାଷାର ପୁଷ୍ଟି ହୋଇଅଛି । ନିମ୍ନରେ ଶବ୍ଦଗତ ଉଦାହରଣ ପ୍ରଦତ୍ତ ହେଲା ।

| ହିନ୍ଦୀ | ଓଡ଼ିଆ |
|---|---|
| ବଚ୍ଚା | ବଛା |
| ବହୁତ | ବହୁତ |
| ବହୁସ | ବହୁସ |
| ଚଉଥା | ଚଉଠା (ଠ) |
| ମହଁଗା | ମହଙ୍ଗା |
| ଅଗୁଆ | ଅଗୁଆ |
| ବହନ | ବହନ |
| ମଟ୍ଟୀ | ମାଟି |
| ଅରଣା | ଅରଣା |
| ବଢ଼ଇ | ବଢ଼େଇ |
| ଖେତ | ଖେତ |
| ବଠଖର | ବଟଖର |
| ଦାମ୍ | ଦାମ |
| ବାବନ୍ | ବାଉନ୍, ବାନ୍ |
| ପଲଙ୍ଗ୍ | ପଲଙ୍ଗ |
| ବେଂଗ୍ | ବେଙ୍ଗ |
| ଭଁଡାର | ଭଣ୍ଡାର |
| ଚମଡ଼ା | ଚମଡ଼ା |
| ଚକ୍କୀ | ଚକ |
| ବକ୍ରୀ | ବକ୍ରୀ |
| ହୋନ୍ତ | କହିତ ଇତ୍ୟାଦି |

ହଡ଼ବା, ଚୌଗଡ଼ବା, ଗୁହିଁବା, ପ୍ରଭୃତି କ୍ରିୟା ହିନ୍ଦୀମୂଳକ ହୋଇ ପାରେ ।

ଗୁଜରାଟୀ ଓଡ଼ିଆ ।

| ଗୁ: | ଓ: |
|---|---|
| ଭାନେଜ | ଭଣଜା |
| ଗାମ୍ | ଗାଁ |
| ଝାଡ଼୍ | ଝାଡ଼ୁ |
| ଗେରୁ | ଗେରୁ |
| ଭିଖ | ଭିକ |
| ପାଣି | ପାଣି |

ଗଙ୍ଗାବଂଶ ରାଜତ୍ୱର ଶେଷଭାଗରେ ଅର୍ଥାତ୍ ଷୋଡ଼ଶ ଶତାବ୍ଦୀର ପ୍ରାରମ୍ଭରେ ଚୈତନ୍ୟଦେବ ଓଡ଼ିଶାକୁ ବୈଷ୍ଣବଧର୍ମ ପ୍ରଚାର କରିବାଲାଗି ଆସିଥିଲେ ଏବଂ ପୁରୀରେ ଶେଷ ଅଷ୍ଟାଦଶ ବର୍ଷ କାଳ ଅବସ୍ଥାନ କରି ଦେହତ୍ୟାଗ କରିଥିଲେ । ବ୍ରାହ୍ମଣେତର ଜାତିମାନେ ଦଳ ଦଳ ହୋଇ ତାହାଙ୍କ ଦୀକ୍ଷା ଗ୍ରହଣ କଲେ । ଅନେକ ବଙ୍ଗାଳୀ ଉକ୍ତ ସମୟରେ ଓଡ଼ିଶାରେ ବାସ କରିବାକୁ ଲାଗିଲେ । ସେହି ସମୟରୁ ଅଦ୍ୟପର୍ଯ୍ୟନ୍ତ ବଙ୍ଗଳା ଧର୍ମସଙ୍ଗୀତ ଓ ସଙ୍କୀର୍ତ୍ତନ ଓଡ଼ିଆମାନଙ୍କ ମୁଖରେ ଗୀତ ହୋଇ ଆସୁଅଛି । ସେତେବେଳେ ଓଡ଼ିଆ ଭାଷା ଉପରେ ବଙ୍ଗଭାଷାର ପ୍ରଭାବ ବିଶେଷ ଭାବରେ ପଡ଼ିବାର କଥା, କିନ୍ତୁ ଓଡ଼ିଆ ଭାଷା ତାହାର ଅନେକ କାଳ ପୂର୍ବରୁ ପୂର୍ଣ୍ଣାଙ୍ଗ ହୋଇ ଥିବାରୁ ବଙ୍ଗଭାଷାକୁ ପ୍ରବେଶ କରିବାକୁ ବାଟ ମିଳି ନାହିଁ । ତଥାପି ଭକ୍ତକବି ଜଗନ୍ନାଥ ଦାସଙ୍କ ଭାଗବତରେ ସାଥି, ମାଝେ, ପ୍ରଭୃତି କେତୋଟି ଏବଂ ପୁରୁଷୋତ୍ତମ ଦାସଙ୍କ ଗଙ୍ଗା-ମାହାତ୍ମ୍ୟରେ ମାଝେ, ଅଣିଛେ, ଧରିଛେ ପ୍ରଭୃତି କେତୋଟି ବଙ୍ଗଳା ଶବ୍ଦ ଲକ୍ଷିତ ହୁଏ । ଏପରି ପ୍ରମାଦ ଘଟିବାର କାରଣ ଏହି ଯେ ଦାସେ ଶ୍ରୀ ଚୈତନ୍ୟ ଦେବଙ୍କର ଖୁବ ସନ୍ନିହିତ ଥିଲେ । ଚୈତନ୍ୟ ଏବଂ ଭକ୍ତିଷ୍ୟଗଣଙ୍କ ସହିତ ତାଙ୍କର ତର୍କ ବିତର୍କ ହେଉଥିଲା । ଉକ୍ତ ରାଜବଂଶର

ଲୋପ ଉତ୍ତାରେ ମୁସଲମାନ ଯୁଗରେ ପାରସୀ ଆରବୀ ଏ ଦେଶର ରାଜଭାଷା ହେବାରୁ ଉକ୍ତ ଭାଷାର ଅନେକ ଶବ୍ଦ ଓଡ଼ିଆ ଭାଷାର ସ୍ଥାନ ଅଧିକାର କଲା । ରାଜକୁଳପ୍ରଚଳିତ ଯାବତୀୟ ଶବ୍ଦ ଉକ୍ତ ଯାବନିକ ଭାଷାରୁ ଆଗତ । ଜମି, ତାଲୁକ, ମୁଲକ, ମୌଜା, ପ୍ରଭୃତି ସୁଦ୍ଧା ମୁସଲମାନୀ ଶବ୍ଦ । ଏହି ସବୁ ଶବ୍ଦ ଘରେ ଘରେ ଚଳି ଓଡ଼ିଆ ଭାଷାକୁ ଯବନାଧିକାର-ଚିହ୍ନିତ କରି ଅଛି । ମୁସଲମାନମାନଙ୍କ ରାଜତ୍ୱ ଉତ୍ତାରେ ମରହଟ୍ଟାମାନେ ପ୍ରାୟ ଅର୍ଦ୍ଧ ଶତାବ୍ଦୀ କାଳ ଓଡ଼ିଶାରେ ରାଜତ୍ୱ କରିଥିଲେ । ସେତେବେଳେ ଓଡ଼ିଶା ନାଗପୁର ରାଜ୍ୟାନ୍ତର ଅଧୀନ ଥିଲା । ସେଥି ଲାଗି ମରହଟ୍ଟୀ ଭାଷାରୁ କେତେକ ଶବ୍ଦ ଓଡ଼ିଆ ଭାଷାରେ ମିଶିଅଛି । ଉଦାହରଣସ୍ୱରୂପ କେତୋଟି ଶବ୍ଦ ନିମ୍ନରେ ଲିଖିତ ହେଲା:—

| ମରହଟ୍ଟୀ | ଓଡ଼ିଆ |
|---|---|
| ବାପ | ବାପ |
| ଭାଉଜା | ଭାଉଜ |
| ସବତ୍ | ସାବତ (ସପତ୍ନୀ) |
| ଅଟଣ | ଅଟଣ |
| ଛପର | ଛପର |
| ଉଭେଁ | ଉଭା |
| ଥଁଡା | ଥଣ୍ଡା |
| ଘାମ | ଘାମ |
| ଖଳବୁଳାଟ | ଖଳବଳ (ଚିନ୍ତା) |
| ଇକଡ଼ା | ଏତକ |
| ଝୁର୍ହାଡ଼ | ଝୁର୍ହାଡ |
| ବାନ୍ତ | ଭାନ୍ତ |
| ବାଞ୍ଝ | ବାଞ୍ଝ |
| ଠକ | ଠକ |
| ନାଢୁ | ନାଢ |
| ଇକଡ଼େ | ଏଆଡ଼େ |
| ଏକଭୁଳ | ଏଅଢୁଁ ଇତ୍ୟାଦି । |

ଓଡ଼ିଆ ଅକ୍ଷର ।

ଭାଷା ଉତ୍ପତ୍ତିର ବହୁକାଳ ପରେ ବର୍ଣ୍ଣମାଳାର ସୃଷ୍ଟି । ଭାଷାର ଉତ୍କର୍ଷ ଏବଂ ଜାତିମାନଙ୍କ ଜ୍ଞାନଶକ୍ତିର ଉନ୍ନତି ସଙ୍ଗେ ସଙ୍ଗେ ବର୍ଣ୍ଣମାଳା ଉଦ୍ଭାବିତ ହୋଇଅଛି । ବର୍ଣ୍ଣସୃଷ୍ଟି ପୂର୍ବରେ ଭାବ ସବୁ ନିବଦ୍ଧ କରିବାର ବଡ଼ ଅସୁବିଧା ଥିଲା । ତତ୍କାଳୀନ ଲୋକେ ସ୍ୱ ସ୍ୱ ଭାବ ବା କଥାକୁ ସ୍ମୃତି ଶକ୍ତି ପ୍ରଭାବରେ ରକ୍ଷା କରି ମୁଖେ ମୁଖେ ପରମ୍ପରାଗତ କରୁଥିଲେ । ଶୁଣି କରି ମନେ ରଖୁଥିବା ଯୋଗୁଁ ବେଦର ଗୋଟିଏ ନାମ 'ଶ୍ରୁତି' । ଲିପିବଦ୍ଧ ନ ହେଲେ କୌଣସି ବିଷୟ ଚିରସ୍ଥାୟୀ ହୋଇ ନ ପାରେ; କାରଣ ମାନବର ସ୍ମୃତିରକ୍ଷିତ କଥା ତାହାର ମୃତ୍ୟୁକାଳଯାଏ ସ୍ଥାୟୀ, ତାହାର ତିରୋଧାନ ସଙ୍ଗେ ସଙ୍ଗେ ତଦନୁସନ୍ଧାନ ଫଳର ଅଧିକାଂଶ ଲୋପ ପାଇଯାଏ । ଅନ୍ତର ଅନେକ ସମୟରେ ବହୁଭାବ ମନରେ ଉଦିତ ହୋଇ ଅଳ୍ପକାଳ ମଧ୍ୟରେ ବିଲୀନ ହୋଇଯାଏ । ଏହି ସବୁ ଅସୁବିଧା ନିବାରଣ ନିମିତ୍ତ ବର୍ଣ୍ଣସୃଷ୍ଟିର ପ୍ରୟୋଜନ ହେଲା । ଯେ କୌଣସି ବିଷୟରେ ଆଲୋଚନା କଲେ ଦେଖାଯିବ 'ସଙ୍କେତ' ବସ୍ତୁ-ପରିଚୟର ଗୋଟିଏ ପ୍ରଧାନ ଉପାୟ । ସେହିପରି ବର୍ଣ୍ଣମାଳା ପରିଚୟ ପାଇଁ ଯେଉଁ ସଙ୍କେତ ବ୍ୟବହୃତ ହୁଏ, ତାହାକୁ ଆମ୍ଭେମାନେ ବର୍ଣ୍ଣ ବା ଅକ୍ଷର କହୁଁ । ଭିନ୍ନ ଭିନ୍ନ ଭାଷାରେ ଭିନ୍ନ ଭିନ୍ନ ଅକ୍ଷର ପ୍ରଚଳିତ । ଭାଷାର ଉତ୍ପତ୍ତି ଓ ପରିବର୍ତ୍ତନ ସମ୍ବନ୍ଧରେ ଯେପରି ଘଟି ଥାଏ, ଅକ୍ଷର ସମ୍ବନ୍ଧରେ ମଧ୍ୟ ସେହିପରି । ବର୍ତ୍ତମାନ ଆଲୋଚ୍ୟ ବିଷୟ ଓଡ଼ିଆ ଅକ୍ଷର କାହିଁରୁ ଉତ୍ପନ୍ନ ।

ଲିପିସୃଷ୍ଟି ଉତ୍ତାରେ ଯେତେ ଲିପିମାଳା ବାହାରିଅଛି, ତନ୍ମଧ୍ୟରେ ବ୍ରାହ୍ମୀଲିପି ଭାରତବାସିମାନଙ୍କର ଆଦିଲିପି । ଖ୍ରୀଷ୍ଟପୂର୍ବ ଷଷ୍ଠ ସପ୍ତମ ଶତାବ୍ଦିରେ ଭାରତବାସିମାନେ ଉତ୍ତମରୂପେ ଲେଖି ପାରୁଥିଲେ । ଲଳିତବିସ୍ତର ପାଠରୁ ଜଣାଯାଏ, ବୁଦ୍ଧଦେବ ଅଙ୍ଗଲିପି, ବଙ୍ଗଲିପି, ମଗଧଲିପି, ବ୍ରାହ୍ମୀଲିପି, ଖରୋଷ୍ଟ୍ରୀ ଲିପି, ଦ୍ରାବିଡ଼ ଲିପି, ଦକ୍ଷିଣଲିପି, ଶାସ୍ୟଲିପି, ଚୀନଲିପି, ହୁଣ-

ଲିପି, ସାଗରଲିପି ପ୍ରଭୃତି ଚଉଷଠିପ୍ରକାର ଲିପି ଜାଣିଥିଲେ । ଏହି ମଗଧଲିପିରୁ କୁଟିଳ ଅକ୍ଷର ଜନ୍ମ ଲଭିଅଛି । କୁଟିଳଅକ୍ଷର ପୂର୍ବେ ବଙ୍ଗ କଳିଙ୍ଗ ପ୍ରଭୃତି ପ୍ରାଚ୍ୟ ଭୂଖଣ୍ଡରେ ବ୍ୟବହୃତ ହେଉଥିଲା । ଦେଶପ୍ରଚଳିତ ଲିପିମାନଙ୍କ ମଧ୍ୟରେ 'ଦେବନାଗର' ଅକ୍ଷର ପ୍ରଥମ । କାଳକ୍ରମେ ତାହା ଭାରତର ଅଧିକାଂଶ ସ୍ଥାନରେ ବ୍ୟାପ୍ତ ହୋଇ ଗଲା । କାରଣ ସମସ୍ତ ପଣ୍ଡିତମାନେ ଦେବନାଗରାକ୍ଷର ଲେଖୁଥିଲେ । ସୁତରାଂ ଦେବଭାଷା ସଂସ୍କୃତର ପ୍ରଚାରବୃଦ୍ଧି ସଙ୍ଗେ ସଙ୍ଗେ ଦେବନାଗରାକ୍ଷରର ପ୍ରଭାବ ବୃଦ୍ଧି ହୋଇଥିଲା । ଏହି ଦେବନାଗରାକ୍ଷର ଯେ କୁଟିଳାକ୍ଷର ଉପରେ ପ୍ରାଧାନ୍ୟ ସ୍ଥାପନ କରି ତାହାର କିଞ୍ଚିତ୍ ପରିବର୍ତ୍ତନ କରିଥିବ, ସେଥିରେ ସନ୍ଦେହ କଣ ? ଏହି ମିଶ୍ରିତ ଲିପିରୁ ଓଡ଼ିଆ ଅକ୍ଷରର ଉତ୍ପତ୍ତି । ଓଡ଼ିଶାରେ ମାଗଧୀ ପ୍ରାକୃତ ଚଳୁଥିବା ସମୟରେ ମାଗଧୀର କୁଟିଳ ଲିପି ବ୍ୟବହୃତ ହେଉଥିଲା । ପାଲି ଲିପି ମାଗଧୀ ଲିପିରୁ ଭିନ୍ନ । ସେଥିରେ ସରଳରେଖା, ତ୍ରିକୋଣ, ସମକୋଣ, ବୃତ୍ତି ଓ ବିନ୍ଦୁ ଥିଲା । ଏହି ପାଲି ଲିପି ହୁଏତ ଓଡ଼ିଆ ଅକ୍ଷର ଗଠନ ସମ୍ବନ୍ଧରେ ସାହାଯ୍ୟ କରିଥିବ । ଓଡ଼ିଶାର ବିଭିନ୍ନ ସ୍ଥାନସ୍ଥ ଶିଳାଲିପିର କୁଟିଳାକ୍ଷର ସହିତ ଆଧୁନିକ ଓଡ଼ିଆ ଅକ୍ଷରକୁ ତୁଳନା କଲେ ଦେଖାଯିବ, ଶେଷୋକ୍ତ ଅକ୍ଷର ସମ୍ପୂର୍ଣ୍ଣ ଗୋଲ । ଏହି ଗୋଲତ୍ୱର କାରଣ ସମ୍ବନ୍ଧରେ କେହି କେହି ଅନୁମାନ କରନ୍ତି, ତୈଲଙ୍ଗ ସହିତ ଓଡ଼ିଶାର ଯେତେବେଳେ ସମ୍ପର୍କ ଥିଲା, ସେତେବେଳେ ସେଥିରୁ ଏପରି ଲେଖିବାର ରୀତି ଅନୁକୃତ ହୋଇଅଛି । ଶ୍ରୀଯୁକ୍ତ ମଧୁସୂଦନ ଦାସ ବି. ଏ. ମହାଶୟ ଏହି ମତ ବିରୁଦ୍ଧରେ ତାଙ୍କ ପ୍ରବନ୍ଧରେ ଏହା ଲେଖିଅଛନ୍ତି ଯେ, 'ଖୋର୍ଦ୍ଧା ଅନ୍ତର୍ଗତ ବରୁଣାଇ ପର୍ବତରେ ପାଞ୍ଚ ପ୍ରକାର ଶିଳାଲିପି ଦେଖାଯାଏ । ତନ୍ମଧ୍ୟରୁ ଏକ ପ୍ରକାର ଗୋଲ ଓଡ଼ିଆ ଅକ୍ଷରରେ ଖୋଦିତ ଏବଂ ତାହା ୭୮° ସମ୍ବତ୍‌ରେ ଖୋଳା ହୋଇଥିବାର ଛନ୍ଦରେ ଲେଖାଅଛି'—ଅତଏବ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀ ମଧ୍ୟରେ ଗୋଲ ଓଡ଼ିଆ ଅକ୍ଷରର ସୃଷ୍ଟି ହୋଇଅଛି । ତାହାର ବହୁ କାଳ ପରେ ଓଡ଼ିଶା ସଙ୍ଗେ ତୈଲଙ୍ଗର ସମ୍ପର୍କ ହେଲା । ଲେଖନ ଓ ତାଳପତ୍ରରେ ଲେଖିବାଦ୍ୱାରା ଓଡ଼ିଆ ଅକ୍ଷର ଗୋଲ ହୋଇଅଛି, ଏହାହିଁ ବିଶ୍ୱାସଯୋଗ୍ୟ । ଏ ସ୍ଥଳରେ ଶ୍ରୀଯୁକ୍ତ ବାମ ସାହେବ କହିଅଛନ୍ତି— "ହିନ୍ଦୀ ପ୍ରଭୃତି ଭାଷାର ବର୍ଣ୍ଣ ସହିତ ଓଡ଼ିଆ ବର୍ଣ୍ଣର ସାଦୃଶ୍ୟ ଅଛି । କିନ୍ତୁ ଓଡ଼ିଆମାନେ ସେହି ଅକ୍ଷରକୁ ଗୋଲ କରି ଲେଖିବାକୁ ଚେଷ୍ଟା କରୁଥିଲେ । ସେହିପରି ଚେଷ୍ଟାର ମଧ୍ୟ କାରଣ ଥିଲା । ପୂର୍ବେ ତାଳପତ୍ର ଓ ଲୌହ ଲେଖନୀଦ୍ୱାରା ଲିଖନ କାର୍ଯ୍ୟ ସମ୍ପାଦିତ ହେଉଥିଲା । ଉକ୍ତ ଲେଖନର ସୂକ୍ଷ୍ମ ମୁନରେ ଅକ୍ଷରକୁ କୋଣବିଶିଷ୍ଟ କରି ଲେଖିଲେ ଶିରାଳ ପତ୍ର ଚିରି ଯିବ, ସେଥିଯୋଗୁଁ ସେମାନେ ଗୋଲ କରି ଲେଖିବାକୁ ବାଧ୍ୟ ହେଉଥିଲେ । ଅଧିକ ମଧ୍ୟ ଦକ୍ଷିଣ ହସ୍ତରେ ଲେଖିଲା ବେଳେ ବାମ ହସ୍ତ ଅଙ୍ଗୁଷ୍ଠାଗ୍ରର ପ୍ରତିଘାତରେ ଅକ୍ଷରଗୁଡ଼ିକ ସ୍ୱତଃ ଗୋଲ ହୋଇଯାଏ ।" ସେ ଯାହାହେଉ ଅକ୍ଷରସୃଷ୍ଟିର ବହୁ କାଳ ପରେ ଓଡ଼ିଆ ଅକ୍ଷର ପୂର୍ଣ୍ଣାଙ୍ଗ ହୋଇଅଛି । ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳରେ ( ୧୪୮୩ ଖ୍ରୀ: ) ଲିଖିତ ତାମ୍ରଶାସନର ଓଡ଼ିଆ ଲିପି ସଙ୍ଗେ ଆଧୁନିକ ଓଡ଼ିଆ ଅକ୍ଷରକୁ ତୁଳନା କଲେ ଦେଖାଯାଏ, ଦଶ ବାରଟି ଅକ୍ଷର ଛଡ଼ା ଆଉ ସମସ୍ତ ଅକ୍ଷର ଆଧୁନିକ ଓଡ଼ିଆ ଅକ୍ଷରର ଅନୁରୂପ । ଏଥିରୁ ଏହା ଉପପନ୍ନ ହେଉଅଛି ଯେ ପଞ୍ଚଦଶ ଶତାବ୍ଦିର ଶେଷ ଭାଗରେ ସୁଦ୍ଧା ଓଡ଼ିଆ ଅକ୍ଷର ପୂର୍ଣ୍ଣାଙ୍ଗ ହୋଇ ନ ଥିଲା, ଅର୍ଥାତ୍ ଆଧୁନିକ ଆକାର ଧାରଣ କରି ନ ଥିଲା ।

### ଓଡ଼ିଆ ବ୍ୟାକରଣ ।

ବର୍ତ୍ତମାନ ଓଡ଼ିଆ ବ୍ୟାକରଣ ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା ଆବଶ୍ୟକ ହେଉଅଛି । ଏହି

ବିଷୟ ଜଟିଳ ହେଲେହେଁ କେତୋଟି କଥା ପ୍ରମାଣ କରିବା ପାଇଁ ଏଠାରେ ଚେଷ୍ଟା କରା ଯିବ । ଦେଢ଼ ଶହ ବର୍ଷ ପୂର୍ବେ ଓଡ଼ିଆ ଭାଷାରେ ବହୁସଂଖ୍ୟକ ପୁସ୍ତକ ଲିଖିତ ହୋଇ ଥିଲା; କିନ୍ତୁ ଏହି ଦୀର୍ଘ କାଳ ମଧ୍ୟରେ ଖଣ୍ଡିଏ ସୁଦ୍ଧା ବ୍ୟାକରଣ ଲିଖିତ ହୋଇ ନାହିଁ । ଗତ କେତେକ ବର୍ଷ ମଧ୍ୟରେ ଦୁଇ ଚାରି ଖଣ୍ଡ ଓଡ଼ିଆ ବ୍ୟାକରଣ ଲିଖିତ ହୋଇଅଛି ସତ୍ୟ, କିନ୍ତୁ ଏପର୍ଯ୍ୟନ୍ତ ଖଣ୍ଡିଏ ପୂର୍ଣ୍ଣାଙ୍ଗ ବ୍ୟାକରଣ ପ୍ରସ୍ତୁତ ହୋଇ ନାହିଁ— କହିବାକୁ ହେବ । ନିମ୍ନରେ ଓଡ଼ିଆ ବ୍ୟାକରଣର ଉତ୍ପତ୍ତି ସମ୍ବନ୍ଧରେ କେବଳ ଆଲୋଚନା କରାଯାଉଅଛି ।

ବର୍ତ୍ତମାନ ଓଡ଼ିଆ ବ୍ୟାକରଣ ସଂସ୍କୃତାନୁସାରୀ । ଏହାର କେତେକ ଅଂଶ ପ୍ରାକୃତ ଅପେକ୍ଷା ଉତ୍କୃଷ୍ଟ । ତଳେ ଗୋଟିଏ ଗୋଟିଏ ବିଷୟ ସମ୍ବନ୍ଧରେ ସଂକ୍ଷେପରେ ପ୍ରୟୋଜନୀୟ କଥା-ଗୁଡ଼ିକ ଲିଖିତ ହେଉଅଛି :—

୧ ବର୍ଣ୍ଣମାଳା—ପ୍ରାକୃତ ଏବଂ ପାଲିରେ ଅଠଟି ସ୍ୱର ଅର୍ଥାତ୍ ଋ ୠ ଌ ଐ ଔ ଏହି ସବୁ ସ୍ୱର ସେଥିରେ ନାହିଁ । କିନ୍ତୁ ଓଡ଼ିଆରେ ସେ-ଗୁଡ଼ିକ ଅଛି । ସଂସ୍କୃତ ପ୍ରକ୍ରିୟାକୌମୁଦୀକାର ଅଯୋଗଭାଗୀ ଅନୁସ୍ୱାର (ଂ) ଓ ବିସର୍ଗର (ଃ) ଉଚ୍ଚାରଣ ନିମିତ୍ତ ସ୍ୱରବର୍ଣ୍ଣ ଶେଷରେ 'ଅଂ ଅଃ' ବର୍ଣ୍ଣଦ୍ୱୟ ଗ୍ରହଣ କରିଅଛନ୍ତି । ଓଡ଼ିଆ ଭାଷାରେ ମଧ୍ୟ ଉକ୍ତ ବର୍ଣ୍ଣଦ୍ୱୟ ବହୁ ପୂର୍ବକାଳରୁ ଚଳି ଆସୁଅଛି, କିନ୍ତୁ ଆଧୁନିକ ବୈୟାକରଣମାନେ ସେହି ବର୍ଣ୍ଣ ଦୁଇଟିକୁ ସ୍ଥାନ ଦଅନ୍ତି ନାହିଁ । ପ୍ରାକୃତରେ ଙ, ଞ, ନ, ଣ, ଷ ଏହି କେତୋଟି ବ୍ୟଞ୍ଜନ ବର୍ଣ୍ଣ ଏବଂ ପାଲିରେ ଶ ଓ ଷର ସତ୍ତା ନାହିଁ । ସଂସ୍କୃତ-ଦ୍ୱାରା ସଂସ୍କାର ହୋଇଥିବାରୁ ଆମ୍ଭମାନଙ୍କ ଭାଷାରେ ସମସ୍ତ ବ୍ୟଞ୍ଜନ ବର୍ଣ୍ଣ ରହିଅଛି । ଅନ୍ତ୍ୟସ୍ଥ ବର୍ଣ୍ଣ ବ୍ୟତୀତ ପ୍ରାୟ ସମସ୍ତ ବର୍ଣ୍ଣର ଉଚ୍ଚାରଣ ମୂଳାନୁଯାୟୀ । 'ଋ' ସ୍ୱରର ଉଚ୍ଚାରଣ ଅନ୍ୟାନ୍ୟ ଦେଶୀୟ ଭାଷାରେ 'ରି', କିନ୍ତୁ ଆମ୍ଭମାନଙ୍କ ଭାଷାରେ 'ରୁ' ଉଚ୍ଚାରିତ ହୁଏ । ଏହି ବର୍ଣ୍ଣର ମୌଳିକ ଉଚ୍ଚାରଣ କଣ, ତାହା ନିଶ୍ଚିତ ଭାବରେ ଜାଣିବା କଠିନ । ତେବେ ପ୍ରାକୃତରେ ସଂସ୍କୃତର 'ଋ' ସ୍ଥାନରେ ଅ ଏବଂ ଉ ଦୁଇ କଥା ହୋଇଥିବାର ଦେଖା ଯାଏ । ସଂସ୍କୃତରେ ଯ ଓ ଲ ଦୁଇଟି ବର୍ଣ୍ଣ, ଏଥିରେ ତାହା ଦୁଇଟି ଲେଖାଏଁ ଏବଂ ଉଚ୍ଚାରଣ ମଧ୍ୟ ଦୁଇ ପ୍ରକାର ; ଯଥା,—ଯ ୟ, ଲ ଳ । ଯର (ଜ-ଏ) ଉଚ୍ଚାରଣ ପ୍ରାକୃତରେ ଜ୍ଜ, ଓଡ଼ିଆରେ ପ୍ରାୟ 'ଜ୍ୟ' । ଶ, ଷ, ସ, ନ ଓ ଣର ସଂସ୍କୃତ ଉଚ୍ଚାରଣ ରକ୍ଷିତ ହୋଇଅଛି ।

୨ ସନ୍ଧି— ସଂସ୍କୃତରେ ବାକ୍ୟାନ୍ତର୍ଗତ ପ୍ରତ୍ୟେକ ପଦର ସନ୍ଧି ହୁଏ, କିନ୍ତୁ ପ୍ରାକୃତରେ ସେପରି ରୀତି ନାହିଁ । ସାଧୁ ଓଡ଼ିଆ ଭାଷାରେ ପଦାବଳୀ ଅତ୍ୟନ୍ତ ସନ୍ନିହିତ ନ ହେଲେ ସନ୍ଧି ହୁଏ ନାହିଁ । ଅପ୍ରୟୋଜନ ସ୍ଥଳରେ ସନ୍ଧି ଦୂଷଣୀୟ ।

୩ ସମାସ—ସଂସ୍କୃତର ସମାସଦ୍ୱାରା ସଂକ୍ଷେପରେ ଭାବ ବ୍ୟକ୍ତ କରିବାର ଗୋଟିଏ ପ୍ରଧାନ ଉପାୟ । କୌଣସି ଭାରତୀୟ ଭାଷାରୁ ଏ ରୀତି ଯେ ଏକାବେଳକେ ଉଠିଯିବ ଏହା ସମ୍ଭବ ନୁହେ । ଓଡ଼ିଆ ଭାଷାରେ ସେହି ରୀତି ଅଛି । ସାଧୁ ଭାଷାର ସମାସ ସଂସ୍କୃତର ଅନୁରୂପ ।

୪ ଲିଙ୍ଗ—ସଂସ୍କୃତର ଲିଙ୍ଗାନୁଶାସନ ଅତି ଜଟିଳ । ସଦ୍ୟଃପ୍ରସୂତା ପାଲି ଓ ପ୍ରାକୃତରେ ସୁଦ୍ଧା ସେ ନିୟମ ଅକ୍ଷୁଣ୍ଣ ନାହିଁ । 'ପ୍ରାକୃତେ ଲିଙ୍ଗ-ବ୍ୟଭିଚାରୀ'; ଓଡ଼ିଆରେ ମଧ୍ୟ ସେହିପରି ଘଟିଅଛି ଏବଂ ଏଥିରେ ପୁଂଲିଙ୍ଗ ଓ କ୍ଲୀବଲିଙ୍ଗର ଚିହ୍ନଗତ ପ୍ରଭେଦ କିଛି ନାହିଁ । ସାଧୁ ଓଡ଼ିଆ ଭାଷାର ସ୍ତ୍ରୀ-ଲିଙ୍ଗ ପ୍ରତ୍ୟୟ ସଂସ୍କୃତରୁ ଅଭିନ୍ନ ଥିବାରୁ, ସେଥିର ଆଲୋଚନା ଅନାବଶ୍ୟକ । ତଥାପି ଓଡ଼ିଆ ଭାଷାରେ ବ୍ୟବହୃତ ପ୍ରତ୍ୟୟଗୁଡ଼ିକର ମୌଳିକତା ସମ୍ବନ୍ଧରେ ଏଠାରେ କିଛି ବକ୍ତବ୍ୟ । ସଂସ୍କୃତର 'ଅନୀ' ପ୍ରତ୍ୟୟ ହିନ୍ଦୀରେ ଅଣୀ, ଣୀ, ଇଆଣୀ, ଓଡ଼ିଆରେ ମଧ୍ୟ ତାହା ; ଯଥା—ଠାକୁର—ଠାକୁରଣୀ, ମିତ—ମିତଣୀ, ପଣ୍ଡା—ପଣ୍ଡିଆଣୀ ।

ଉକ୍ତ 'ଅଣ' ପ୍ରତ୍ୟୟ ପ୍ରାକୃତରେ 'ଅଣୀ' ଗୁଜରାଟରେ 'ଣ' 'ଉଣ' ଏବଂ ଆମ୍ଭମାନଙ୍କ ଭାଷାରେ 'ଉଣୀ' ହୋଇଅଛି, ଯଥା—ବାଘ—ବାଘୁଣୀ, ଅନ୍ଧ—ଅନ୍ଧୁଣୀ । ସଂସ୍କୃତ ସ୍ତ୍ରୀଲିଙ୍ଗର 'ଈ' ପ୍ରତ୍ୟୟ ମଧ୍ୟ କ୍ୱଚିତ ଓଡ଼ିଆ ଭାଷାରେ ବ୍ୟବହୃତ ହୁଏ ।

୫ କାରକ—ସଂସ୍କୃତବତ୍ ଓଡ଼ିଆରେ କାରକ ଛ ଏବଂ ବିଭକ୍ତି ସାତ । ପାଲି ଏବଂ ପ୍ରାକୃତରେ ଚତୁର୍ଥୀ ବିଭକ୍ତି ନାହିଁ । ଆମ୍ଭମାନଙ୍କ ମାତୃଭାଷାରେ ଦ୍ୱିତୀୟା ଓ ଚତୁର୍ଥୀ ବିଭକ୍ତି ମଧ୍ୟରେ କିଛି ପ୍ରଭେଦ ନାହିଁ । କିନ୍ତୁ ସମସ୍ତ ବିଭକ୍ତି ସଂସ୍କୃତମୂଳକ ନୁହେ । ବିଭକ୍ତିଗୁଡ଼ିକ ଏହି,—

| | ଏକବଚନ | ବହୁବଚନ |
|---|---|---|
| ୧ ମା— | ୦ | ଏ, ମାନେ |
| ୨ ୟା— | କୁ, ଙ୍କୁ | ମାନଙ୍କୁ |
| ୩ ୟା— | ଏ, ରେ, ଦ୍ୱାରା, ଦେଇ, କର୍ତ୍ତୃକ | ମାନଙ୍କଦ୍ୱାରା ମାନଙ୍କଦେଇ |
| ୪ ର୍ଥୀ- | -ଦ୍ୱିତୀୟା ବିଭକ୍ତିର ଅନୁରୂପ । | |
| ୫ ମୀ— | ଉ, ରୁ, ଠାରୁ | ମାନଙ୍କରୁ, ମାନଙ୍କଠାରୁ |
| ୬ ଷ୍ଠୀ— | ର, ଙ୍କର | ମାନଙ୍କ, ମାନଙ୍କର |
| ୭ ମୀ— | ଏ, ରେ, ଠାରେ, | ମାନଙ୍କରେ ମାନଙ୍କଠାରେ ଇତ୍ୟାଦି |

ଏହି ବିଭକ୍ତିଗୁଡ଼ିକର ଆଗମନ ନିରୂପଣ କରିବା ଅତି କଠିନ । ସଂସ୍କୃତ ଭାଷାରେ ପ୍ରଥମା ବିଭକ୍ତି ଏକବଚନର 'ସି' ସ୍ଥାନର ପ୍ରାକୃତ ଭାଷାରେ 'ଓ', ଓଡ଼ିଆରେ ତାହା ଲୁପ୍ତ ହୋଇଅଛି, ସୁତରାଂ ପ୍ରଥମା ବିଭକ୍ତିର କୌଣସି ଚିହ୍ନ ନାହିଁ । ବହୁବଚନର 'ଏ' ପ୍ରାକୃତ 'ଓ'ର ରୂପାନ୍ତର; ଯଥା—ସଦ୍ଧାଓ, ସଦ୍ଧାଏ, ଲତାଓ, ଲତାଏ । ଅଥବା ସଂସ୍କୃତ ସର୍ବାଦି ଶବ୍ଦର ରୂପ ଅନୁକରଣରେ 'ଏ' ହୋଇଅଛି । 'ମାନେ' ବିଭକ୍ତିଟି କେଉଁଠାରୁ ଆସିଲା, ସେ ସମ୍ବନ୍ଧରେ ଏପର୍ଯ୍ୟନ୍ତ କେହି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇ ନାହାନ୍ତି । ଉତ୍କଳ-ସାହିତ୍ୟ ସମାଜର ବର୍ତ୍ତମାନ ସଭାପତି ମହୋଦୟ କେତେକ ବର୍ଷ ପୂର୍ବେ ଗୋଟିଏ ପ୍ରବନ୍ଧରେ ଏହି ସମ୍ବନ୍ଧରେ ଲେଖିଥିଲେ ଯେ, ମାନ୍ୟାର୍ଥରେ ବହୁବଚନକୁ କାଳକ୍ରମେ ଉପସ୍ଥିତ ବୃଦ୍ଧି ଅର୍ଥରୁ ବହୁବଚନରେ ମାନ୍ୟ କରି ବୋଧହୁଏ 'ମାନେ'ର ବ୍ୟବହାର ହୋଇଅଛି । କିନ୍ତୁ ଏହା ଭାଷା-ବିଜ୍ଞାନ-ସମ୍ମତ ହେଉ ନାହିଁ । ମୋହର କ୍ଷୁଦ୍ର ମତ ଏହି ଯେ ପାଲି ଭାଷାର ପୁଂଲିଙ୍ଗ 'ଅନେ' ଏବଂ କ୍ଲୀବଲିଙ୍ଗ 'ଅନି'ରୁ 'ମାନେ' ଆସିଅଛି । ଅନେକ ଶବ୍ଦ ସ୍ଥଳରେ ଏହି 'ଅନେ' ମଧ୍ୟ 'ମାନେ' ଆକାର ଧାରଣ କରିଥାଏ । ସମ୍ଭବତଃ ହିନ୍ଦୀ 'କୋ'ର ଉଚ୍ଚାରଣ ଲଘୁ ହୋଇ ଦ୍ୱିତୀୟାରେ 'କୁ' ଏବଂ ତାହା ସମ୍ମାନାଦର୍ଶରେ ସାନୁନାସିକ ହୋଇ 'ଙ୍କୁ' ହୋଇଅଛି । ୩ୟା ବିଭକ୍ତିର ସ୍ୱତନ୍ତ୍ର ଚିହ୍ନ ନାହିଁ । ଦ୍ୱାରା କର୍ତ୍ତୃକ ପ୍ରଭୃତି ଶବ୍ଦ ଯୋଗରେ ତୃତୀୟା ବିଭକ୍ତି କରାଯାଏ । 'ଦେଇ' ପ୍ରତ୍ୟୟ ବୋଧହୁଏ ପ୍ରାକୃତ 'ଏହି' ପ୍ରତ୍ୟୟର ବିକାର । ପ୍ରାକୃତର ପଞ୍ଚମୀ ବିଭକ୍ତି 'ତୋ'ର ଲଘୁ ଉଚ୍ଚାରଣ 'ଓ', ଏହି 'ଓ' ଟିକିଏ ଦୀର୍ଘ ହୋଇ ଆମ୍ଭମାନଙ୍କ ଭାଷାରେ 'ଉ' ହୋଇଅଛି । ରୁ ଏହି 'ଉ'ର ରୂପାନ୍ତର ମାତ୍ର । ପାଲି ଭାଷାର ଷଷ୍ଠୀ ବିଭକ୍ତି ବହୁବଚନରେ ସ୍ଥଳେ ସ୍ଥଳେ ଅନଂ ଓ ଆନଂ ବ୍ୟବହୃତ ହୋଇଥାଏ; ଏହି 'ଅନଂ' 'ଆନଂ' ମିଶ୍ରଣରେ ବୋଧହୁଏ ଓଡ଼ିଆ ଭାଷାର 'ମାନଙ୍କ' ଗଠିତ ହୋଇଅଛି । କିନ୍ତୁ ଉକ୍ତ ବିଭକ୍ତି ଏକବଚନ-ପ୍ରଯୁକ୍ତ 'ର' ଏବଂ ବଙ୍ଗଳା ଭାଷାର 'ଏର'ର ଉତ୍ପତ୍ତିସ୍ଥଳ ନିର୍ଣ୍ଣୟ କରିବା ଦୁଃସାଧ୍ୟ । ସଂସ୍କୃତରେ ଏ ସ୍ଥଳରେ 'ସ୍ୟ' ଏବଂ ପାଲି ଓ ପ୍ରାକୃତରେ ସ୍ସ । ସେଥିରୁ 'ର' ହେବା ଅସମ୍ଭବ । ତେଣୁକରି ଏହାର ଆଗମନ ସମ୍ବନ୍ଧରେ ଗୋଟିଏ ସିଦ୍ଧାନ୍ତ କରାଯାଇ ପାରେ ନାହିଁ । କୌଣସି ଗୋଟିଏ ସ୍ଥଳରୁ ବୋଧହୁଏ ତାହାର ଆଗମନର ସୂତ୍ରପାତ ହୋଇ ଅଛି । ଗୁରୋର୍ବାକ୍ୟଂ (ଗୁରୁର ବାକ୍ୟ), ବନ୍ଧୋର୍ଦଶା (ବନ୍ଧୁର ଦଶା) ଇତ୍ୟାଦି ସ୍ଥଳରୁ 'ର' ବିଭକ୍ତିର ସୂତ୍ରପାତ ହୋଇ ନାହିଁ କି ? ବିସର୍ଗ ସ୍ଥଳରେ ର

ଓ ସ ମଧ୍ୟରେ ଶ୍ରେୟ ଦେଖାଯାଏ । କେହି କେହି ଭାଷାତତ୍ତ୍ୱବିଦ୍ ଦେଶୀୟ ଭାଷାମାନଙ୍କର ଏହି 'ର'ର ଉତ୍ପତ୍ତି ସମ୍ବନ୍ଧରେ ଅନ୍ୟ ପ୍ରକାର ସିଦ୍ଧାନ୍ତ ମଧ୍ୟ କରିଅଛନ୍ତି । ସଂସ୍କୃତର ତ୍ୱଦୀୟ, ଅସ୍ମଦୀୟ, ମଦୀୟ ପ୍ରଭୃତି ସ୍ଥଳରେ ପ୍ରାକୃତରେ ତୁହକେରକ, ଅମ୍ହକେରକ, ମମକେରକ ଇତ୍ୟାଦି ହୋଇ-ଥାଏ । ଏହି 'କେରକ' ପ୍ରତ୍ୟୟ କାଳକ୍ରମେ ସଂକ୍ଷିପ୍ତ ହୋଇ ଅବଶେଷରେ 'ଏର' 'ର' ଆକାର ଧାରଣ କରିଅଛି । ଓଡ଼ିଆ ସାଧୁଭାଷା ଏବଂ କଥିତ ଭାଷାର କେତେକ ଅଂଶର ସପ୍ତମୀ ବିଭକ୍ତି ସ୍ଥଳରେ ସଂସ୍କୃତର 'ଏ' ବିଭକ୍ତି ଅବିକଳ ଅଛି । 'ରେ' ଏହି 'ଏ'ର ରୂପାନ୍ତର । 'ସ୍ଥାନ' ଶବ୍ଦ ହିନ୍ଦୀରେ 'ଠାଇଁ' ଏବଂ ଓଡ଼ିଆରେ 'ଠା'; ଏହି 'ଠା' ଯୋଗରେ ଠାରେ, ଠାରୁ ପ୍ରଭୃତି ବିଭକ୍ତିର ସୃଷ୍ଟି ହୋଇଅଛି । ଅନେକ ସ୍ଥଳରେ ଠାଇଁ ପ୍ରତ୍ୟୟ ମଧ୍ୟ ଦେଖାଯାଏ । ଯଥା:— ସେଠାଇଁ, ମୋଠାଇଁ ଇତ୍ୟାଦି ।

୬ । କ୍ରିୟା ପ୍ରକରଣ—ଓଡ଼ିଆର ପ୍ରାୟ ସମସ୍ତ କ୍ରିୟା ପ୍ରାକୃତ ଓ ସଂସ୍କୃତରୁ ଆଗତ । ଅନେକ ଓଡ଼ିଆ କ୍ରିୟାର ରୂପ ପ୍ରାକୃତ କ୍ରିୟାର ରୂପ ସହିତ ସମାନ । କେତୋଟି ସଂସ୍କୃତ କ୍ରିୟାପଦ ଏଥିରେ ଅବିକଳ ରହିଅଛି । ଯଥା—ବସନ୍ତି, ହସନ୍ତି, ଯାନ୍ତି, ଧର, ବସ ଇତ୍ୟାଦି । ସମସ୍ତ ବିଭକ୍ତି ସଂସ୍କୃତ କିମ୍ବା ପ୍ରାକୃତରୁ ଆସି ନାହିଁ । ନିମ୍ନରେ ସେ ସମ୍ବନ୍ଧରେ ଆଲୋଚନା କରାଯାଉଅଛି । ପ୍ରାକୃତରେ ବର୍ତ୍ତମାନ କାଳର ଇ, ଅନ୍ତି, ମି ଓ ମୁ ସ୍ଥାନରେ ଓଡ଼ିଆରେ ଇ, ଅନ୍ତି, ଇଁ ଓ ଉଁ; ଅନୁଜ୍ଞାର ହୁ ବା ଉ, ଅନ୍ତୁ ସ୍ଥାନରେ ଉ ଅନ୍ତୁ ହୋଇଅଛି । କିନ୍ତୁ ଏଥିରେ ଦ୍ୱିତୀୟ ପୁରୁଷ 'ହି' ବିଭକ୍ତିର ଲୁକ୍ ବା ଲୋପ ହୋଇଅଛି । ଓଡ଼ିଆରେ ପଦାନ୍ତସ୍ଥିତ ସ୍ୱର ନହିଁରେ ଯୁକ୍ତ ହୋଇଥାଏ, ଯଥା,—

| ପ୍ରାକୃତ | ଓଡ଼ିଆ |
|---|---|
| ଅଚ୍ଛଇ | ଅଛଇ, ଅଛି |
| ହସଉ | ହସୁ |
| ଅଚ୍ଛନ୍ତି | ଅଛନ୍ତି |
| ଦେକ୍ଖାମି | ଦେଖଇଁ, ଦେଖେଁ |
| ହସ ମୁ | ହସୁଁ |
| ଜାଣନ୍ତି | ଜାଣନ୍ତି |
| ଦେହି | ଦେ |
| ଯାହି | ଯା (ଅ) |
| ହୋନ୍ତୁ | ହୁଅନ୍ତୁ |

କରୁଅଛି, କରିପାରେ ପ୍ରଭୃତି କ୍ରିୟା ଗୋଟିଏ ଗୋଟିଏ ଧାତୁରୁ ନିଷ୍ପନ୍ନ ନୁହେ । ଅସ ଓ ପାର ଧାତୁ ମୂଳଧାତୁକୁ ସାହାଯ୍ୟ କରୁଅଛି । ଓଡ଼ିଆର ଛି, ଛୁ, ପ୍ରଭୃତି ପ୍ରତ୍ୟୟ ସଂସ୍କୃତରୁ ଆସି ନାହିଁ କି ପ୍ରାକୃତରୁ ଆସି ନାହିଁ । ଏଗୁଡ଼ିକ ଓଡ଼ିଶାରେ ପ୍ରାକୃତ ଚଳିବା ପୂର୍ବରେ ଥିଲା କି ନାହିଁ, ତାହା ଜାଣିବାକୁ ଉପାୟ ନାହିଁ । ତେବେ ଅନୁସନ୍ଧାନ-ଦ୍ୱାରା ଏତିକି ଜଣା ଯାଉଅଛି ଯେ ପୂର୍ବବର୍ତ୍ତିନୀ ଗୁଜରାଟୀ ଭାଷାରେ ଉକ୍ତ ପ୍ରତ୍ୟୟଗୁଡ଼ିକ ଦେଖା ଯାଏ । ଥିଲା, ଥା, ଥାନ୍ତା ପ୍ରଭୃତି ପ୍ରତ୍ୟୟ ସମ୍ଭବତଃ ହିନ୍ଦୀର ଥା, ଥୀ, ଥିୟା ପ୍ରଭୃତି ପ୍ରତ୍ୟୟ ଆଦର୍ଶରେ ସୃଷ୍ଟି ହୋଇଅଛି । ଓଡ଼ିଆ ଭାଷାର ଭବିଷ୍ୟତ୍ କାଳର 'ବ' ପ୍ରତ୍ୟୟ ତାହାର ମାତୃଭାଷାରେ ନାହିଁ । କିନ୍ତୁ ଗୁଜରାଟୀ ଓ ମରହଟ୍ଟୀ ଭାଷାରେ ଉକ୍ତ ସ୍ଥଳରେ ସେହି ପ୍ରତ୍ୟୟ ଅଛି । ପ୍ରାକୃତର 'ତେ' ପ୍ରତ୍ୟୟ ସ୍ଥଳରେ 'ତୋଲଃ' ଏହି ସୂତ୍ର ଅନୁସାରେ 'ଲେ' ହୋଇଅଛି । ଯଥା —ଗଡ଼େ (ଗତଃ)=ଗଲେ, ମଡ଼େ (ମୃତଃ) =ମଲେ, କଡ଼େ (କୃତଃ)=କଲେ । ଓଡ଼ିଆ ପରି ଗୁଜରାଟୀ ଏବଂ ମରହଟ୍ଟୀରେ ମଧ୍ୟ ଲା, ଲେ, ପ୍ରଭୃତି ଲକ୍ଷିତ ହୁଏ । ଯଥା ସୋଡ଼ିଲେ ( ଗୁ: ) ପଡ଼ିଲା, ପାବଲା (ମ:) । ଅମ୍ଭମାନଙ୍କ ଭାଷାରେ କର୍ମବାଚ୍ୟସ୍ଥଳରେ ଧାତୁ ସହିତ 'ଯାଏ' ଯୋଗ କରାଯାଏ । ସଂସ୍କୃତରେ ଧାତୁର ଉତ୍ତର କେବଳ 'ଯ' ଆଗମ ହୁଏ । ସମ୍ଭବତଃ ଏହି 'ଯାଏ' ପ୍ରାକୃତ 'ଜ୍ଜଇ' ପ୍ରତ୍ୟୟର ରୂପାନ୍ତର ।

ଅନ୍ୟଥା 'ଯା' ଧାତୁ ସାହାଯ୍ୟ କରଅଛୁ କହିଲେ ଅର୍ଥ ଘଟିବ ନାହିଁ । ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦେଲେ ଏହା ଠିକ ସ୍ପଷ୍ଟୀକୃତ ହେବ ।

| ପ୍ରାକୃତ | ଓଡ଼ିଆ |
|---|---|
| କୃ-କରିଜ୍ଜଇ | କରଯାଏ |
| ଶ୍ରୁ-ଶୁଣିଜ୍ଜଇ | ଶୁଣାଯାଏ |
| ବ୍ୟା-ହୃ-ବାହରିଜ୍ଜଇ | ବାହାରଯାଏ (କର୍ମ: କର୍ତ୍ତୃ) |
| ଜୃ-ଜରିଜ୍ଜଇ | ଜରିଯାଏ (କର୍ମ କର୍ତ୍ତୃ) |
| ଛିଦ୍-ଛିନ୍ଦିଜ୍ଜଇ | ଛିଣ୍ଡିଯାଏ ( „ ) |
| ଅବଶିଷ୍ଟ | |
| ଦୃଶ-ଦୀସଇ | ଦିଶଇ ( „ ) |
| ଶ୍ରୁ-ସୁବ୍ବଇ | ଶୁଭଇ |

୭ । କୃଦନ୍ତ—ସଂସ୍କୃତ କୃତ ପ୍ରତ୍ୟୟ ଏବଂ ତଦ୍ଭବ ଓଡ଼ିଆ ଭାଷାର କୃତ ପ୍ରତ୍ୟୟ ମଧ୍ୟରେ କେତେ ସାଦୃଶ୍ୟ ଅଛି ଦେଖିବା ଆବଶ୍ୟକ । ସଂସ୍କୃତର ଅନଟ୍ ପ୍ରତ୍ୟୟ ପ୍ରାକୃତରେ 'ଅଣ' ଏବଂ ଓଡ଼ିଆରେ ଅଣ ଓ ଣ ହୋଇଅଛି । ଯଥା:— ମିଶାଣ, ଗୁଣାଣ, ଘଟଣା ଇତ୍ୟାଦି । ସଂସ୍କୃତ ଘଞ୍ ଅମ୍ଭମାନଙ୍କ ତଦ୍ଭବ ଭାଷାରେ ମଧ୍ୟ ଭାବ ବାଚ୍ୟରେ ଅ ଓ ଆ ପ୍ରତ୍ୟୟ ହୋଇଥାଏ, ଯଥା: ହସ, ଖେଳ, କଣା, ମରା ଇତ୍ୟାଦି । କିନ୍ତୁ ଭାବ ବାଚ୍ୟର 'ଇବା' ପ୍ରତ୍ୟୟଟି ସଂସ୍କୃତରେ ନାହିଁ, ବା ପ୍ରାକୃତରେ ନାହିଁ । ବଙ୍ଗଳା ଭାଷା ଆଦର୍ଶରେ ବୋଧହୁଏ ଏହି ପ୍ରତ୍ୟୟର ସୃଷ୍ଟି ହୋଇଅଛି । ଗୁଜରାଟୀ ଭାଷା ସଙ୍ଗେ ଏହାର ସାମ୍ୟ ଦେଖା ଯାଏ । ଯଥା:—ଦେଖବୁଁ=ଦେଖିବା, କରବୁଁ = କରିବା, ପାଡ଼ବୁଁ=ପାଡ଼ିବା । ଏହି 'ଇବା' ପ୍ରତ୍ୟୟ ସହିତ 'ତୁମର୍ଥାଚ୍ଚ ଭାବବଚନାତ୍ ଚତୁର୍ଥୀ' ଏହି ସୂତ୍ର ଅନୁସାରେ ଚତୁର୍ଥୀ ବିଭକ୍ତିର 'କୁ' ଯୋଗ କରି ଅମ୍ଭମାନଙ୍କ ଭାଷାରେ ସଂସ୍କୃତର 'ତୁମ୍' ପ୍ରତ୍ୟୟ ସ୍ଥାନରେ 'ଇବାକୁ' ହୋଇଅଛି । କର୍ତ୍ତୃବାଚ୍ୟର ଉଅ, ଅ ପ୍ରଭୃତି ପ୍ରତ୍ୟୟ ପ୍ରାକୃତ ଓ ସଂସ୍କୃତରୁ ଆଗତ । ସଂସ୍କୃତର 'ଶତୃ' ପ୍ରତ୍ୟୟ ପ୍ରାକୃତରେ 'ଅନ୍ତ' ଏବଂ ସେଥିରୁ ଓଡ଼ିଆରେ 'ଅନ୍ତା' ହୋଇଅଛି । ଯଥା:— ଭୁଞ୍ଜତୃ= ଭଜନ୍ତ=ଭରନ୍ତା, ଜ୍ୱଳତୃ=ଜଳନ୍ତ =ଜଳନ୍ତା, ଚଳତୃ = ଚଳନ୍ତ = ଚଳନ୍ତା ଇତ୍ୟାଦି । ଘଟକ, ଚମକ, ଧମକ, ଝଡ଼ାକ୍, ଧଡ଼ାକ୍, ଲଢ଼ାଇ ପ୍ରଭୃତି ଶବ୍ଦ ହିନ୍ଦୀ ଆଦର୍ଶରେ ଗଠିତ । ଓଡ଼ିଆ ଭାଷାରେ ଅନନ୍ତର ଅର୍ଥରେ ବ୍ୟବହୃତ ଇ, ଇଣ ପ୍ରତ୍ୟୟ, ପ୍ରାକୃତର ଇଅ, ଉଣ ପ୍ରତ୍ୟୟରୁ ଏବଂ ଉଁ ପ୍ରତ୍ୟୟ ସଂସ୍କୃତର ଣମୁଲ୍ (ଅଂ) ପ୍ରତ୍ୟୟରୁ ଉତ୍ପନ୍ନ । ଯଥା—

| ପ୍ରାକୃତ | ଓଡ଼ିଆ |
|---|---|
| କରିଅ | କରି |
| ସୁଣିଅ, ସୁଣିଊଣ, | ଶୁଣି, ଶୁଣିଣ |
| ଜାଣିଅ | ଜାଣି |
| ପଳାଇଅ, ପଳେଉଣ, | ପଳାଇ,ପଳାଇଣ, |
| ଭ୍ରମଂ ଭ୍ରମଂ | ଭ୍ରମୁଁ ଭ୍ରମୁଁ |
| ସ୍ମରଂ ସ୍ମରଂ | ସ୍ମରୁଁ ସ୍ମରୁଁ ଇତ୍ୟାଦି । |

୮ ତଦ୍ଧିତ— ଓଡ଼ିଆ ଭାଷାର ପ୍ରାପ୍ତ ସମସ୍ତ ତଦ୍ଧିତ ପ୍ରତ୍ୟୟ ପ୍ରାକୃତ ଓ ସଂସ୍କୃତରୁ ଉତ୍ପନ୍ନ । ବର୍ତ୍ତମାନ ସେଗୁଡ଼ିକ ସ୍ୱତନ୍ତ୍ରରୂପେ ବର୍ଣ୍ଣିତ ହେବାକୁ ଗଲେ ବହୁ ସ୍ଥାନ ଆବଶ୍ୟକ ହେବ । ଇହିଁରୁ କେତେକଟିର ଗୋଟିଏ ତାଲିକା ଏଠାରେ ପ୍ରଦତ୍ତ ହେଲା ।

| ସଂ: | ପ୍ରା: | ଓ: |
|---|---|---|
| ମତୁପ୍, ବତୁପ୍ | ମନ୍ତ, ବନ୍ତ | ମନ୍ତ, ବନ୍ତ |
| ଈୟ, ଇକ | ଇଅ | ଈ, ଇଆ |
| ଉକ, ଉର | — | ଉକା, ଉର |
| ଇଲ, ଉଲ | — | ଇଲା, ଉଲା |
| ବତ୍ | ବନ୍ତ | ମନ୍ତ (ସଦୃଶ) |
| କ (ସ୍ୱାର୍ଥ) | ଅ | ଆ |
| ଦାନୀମ୍ | ଅଣୀ | ଣି (କ) |

ପ୍ରାକୃତରେ ଭାବ ଅର୍ଥରେ ଇମା ଓ ତଣ ପ୍ରତ୍ୟୟ ହୁଏ । 'ତ୍ୱ ସ୍ୟ ଡିମାତ୍ତଣୌ'—ସେଥିରୁ ଓଡ଼ିଆ ଭାଷାରେ ଅମି, ପଣ ଓ ପଣିଆ ପ୍ରତ୍ୟୟ ହୋଇଅଛି । ପାଗଳାମି, ବଡ଼ପଣ । ଶେଷୋକ୍ତ

ପ୍ରତ୍ୟୟଟି ହିନ୍ଦୀରେ ପନ (ନା), ମର୍ହଟ୍ଟୀରେ 'ପଣ'। ପାଲ ଓ ବାସୀ ଶବ୍ଦଦ୍ୱୟ ପ୍ରାକୃତରେ ଅଲ ଓ ଅସୀ ଏବଂ ତାହା ଅମ୍ଭମାନଙ୍କ ଭାଷାରେ ପ୍ରତ୍ୟୟ-ସ୍ୱରୂପ ବ୍ୟବହୃତ ହୋଇଅଛି। ଯଥା—ମହିଷ-ପାଳ=ମଇଁଷିଆଳ, ଭଣ୍ଡାରବାସୀ=ଭଣ୍ଡାରୀ, ତଥା ବୋଇତଅଳ, ଗାଈଅଳ, ପୂଜାରୀ ଇତ୍ୟାଦି। ଅମ୍ଭମାନଙ୍କ ଭାଷାର 'ଇତ' ପ୍ରତ୍ୟୟ ବୋଧହୁଏ ହିନ୍ଦୀ 'ଏତ'ର ରୂପାନ୍ତର ଯଥା— ଡକୈତ =ଡକାଇତ, ସେହିପରି ଖଣ୍ଡାଇତ, ସେନାଇତ ଇତ୍ୟାଦି। ହିନ୍ଦୀର ଖୁଁଦାର, ଚମାର, ଦୁଧାଳ ପ୍ରଭୃତି ଶବ୍ଦ ଦୃଷ୍ଟିରେ ଟେଟେହର, ଚମର, ଦୁଦାଳ ପ୍ରଭୃତି ଓଡ଼ିଆ ଶବ୍ଦର ଗଠନ। ସମସ୍ତ ପ୍ରତ୍ୟୟର ବିସ୍ତୃତ ଆଲୋଚନା ଏଠାରେ ନିଷ୍ପ୍ରୟୋଜନ, ସୁତରାଂ ତାହା ପରିତ୍ୟକ୍ତ ହେଲା।

୯ ଛନ୍ଦ—ଓଡ଼ିଆ ଭାଷାରେ ବିବିଧ ଛନ୍ଦ ବା ବୃତ୍ତ ପ୍ରଚଳିତ। ସଂସ୍କୃତରେ ଛନ୍ଦ ବର୍ଣ୍ଣର ଗୁରୁ ଲଘୁ ଭେଦ ଅନୁସାରେ ରଚିତ ହୁଏ। କିନ୍ତୁ ଅମ୍ଭମାନଙ୍କ ଭାଷାରେ ସେପରି ନୁହେ। ପ୍ରତ୍ୟେକ ପାଦର ଅନ୍ତ୍ୟ ବର୍ଣ୍ଣ ଏକ ହେବା ବିଧେୟ। ଏହି ରୀତି ଯେ ଏଥିରେ ନୂତନ ତାହା ନୁହେ, ଅନ୍ୟାନ୍ୟ ଦେଶୀୟ ଭାଷାରେ ମଧ୍ୟ ଅଛି। ସୁତରାଂ ଏପରି ରୀତି ଅବଶ୍ୟ ମୂଳ ଭାଷାରୁ ଆସିଅଛି। ସଂସ୍କୃତରେ ବୈଦିକ ଓ ଲୌକିକ ଭେଦରେ ଛନ୍ଦ ଦୁଇ ପ୍ରକାର। ଏହି ଲୌକିକ ଛନ୍ଦ ଦେଶୀୟ ଭାଷା-ପ୍ରଚଳିତ ଛନ୍ଦମାନଙ୍କର ଆଦି ଜନନୀ। ଉକ୍ତ ଛନ୍ଦର ସଂଖ୍ୟା ଗୋଟିଏ ଦୁଇଟି ନୁହେ, ବହୁ ଶତ। ସମସଂଖ୍ୟକ ବର୍ଣ୍ଣରେ ଅନେକ ପ୍ରକାର ଛନ୍ଦ ଓ ବୃତ୍ତ ରଚିତ ହୋଇଥିବାର ଦେଖାଯାଏ। କିନ୍ତୁ ଗୀତଗୋବିନ୍ଦର ଛନ୍ଦ ବ୍ୟତୀତ ଅନ୍ୟ କୌଣସି ସଂସ୍କୃତ ଛନ୍ଦରେ ପଦ୍ୟର ଅନ୍ତ୍ୟ ବର୍ଣ୍ଣ ସମାନ ଥିବାର ଦେଖାଯାଏ ନାହିଁ। ଏହି ଗୀତଗୋବିନ୍ଦ ଅମ୍ଭମାନଙ୍କ ଦେଶରେ ସୁପରିଚିତ। କେତେଗୁଡ଼ି ଓଡ଼ିଆ ଛନ୍ଦ ସେଥିରୁ ଉତ୍ପନ୍ନ ହୋଇ ଅଛି। ପ୍ରାକୃତ ଭାଷାର ଛନ୍ଦରେ ପଦ୍ୟର ଅନ୍ତ୍ୟ ବର୍ଣ୍ଣ ସମାନ ଥାଏ। ଦେଶୀୟ ଭାଷାମାନଙ୍କର ପଦ୍ୟ ରଚନା ରୀତି ସେଥିରୁ ଆଗତ। ପ୍ରାକୃତ ଛନ୍ଦ ପ୍ରାଚୀନ ଓଡ଼ିଆ ଭାଷା ଛନ୍ଦମାନଙ୍କର ଜନନୀ। ପିଙ୍ଗଳକୃତ ପ୍ରାକୃତ ଛନ୍ଦୋଗ୍ରନ୍ଥ ଆଲୋଚନା କଲେ କେଉଁ ଛନ୍ଦ ବା ବୃତ୍ତ କେଉଁ ପ୍ରାକୃତ ଛନ୍ଦରୁ ଉତ୍ପନ୍ନ, ତାହା ଉତ୍ତମରୂପେ ଜଣା ଯିବ। ସବୁ ଓଡ଼ିଆ ଛନ୍ଦ ପ୍ରାକୃତମୂଳକ ନୁହେ। ଅନେକ ଛନ୍ଦ ବଡ଼ ବଡ଼ କବିମାନଙ୍କର ସୃଷ୍ଟ। ଭଞ୍ଜକବି-ଯୁଗରେ ଅନେକ ପ୍ରକାର ନୂତନ ଛନ୍ଦର ସୃଷ୍ଟି ହୋଇଅଛି। ଏହା ମଧ୍ୟ ନିଶ୍ଚିତ ଯେ କବିମାନେ ନାନା ଛନ୍ଦ ଓ ବୃତ୍ତ ଦେଖି ସ୍ୱଇଚ୍ଛାମତ ଗୋଟିଏ ଗୋଟିଏ ନୂତନ ଛନ୍ଦ ମଧ୍ୟ ରଚନା କରିଅଛନ୍ତି। ଓଡ଼ିଆ ଛନ୍ଦ ପ୍ରାକୃତ ଛନ୍ଦରୁ ଉତ୍ପନ୍ନ ହେଲେହେଁ, ତାହାର ପଠନ ରୀତି ବା ଦଶା ଅବଶ୍ୟ ସ୍ୱତନ୍ତ୍ର ପ୍ରକାର। ସ୍ଥାନଭେଦରେ ଦଶା ଭିନ୍ନ ପ୍ରକାର ହେବା ସ୍ୱାଭାବିକ। କେହି କେହି ତେଲଙ୍ଗୀୟ ଗୀତରୁ ଏପରି ରୀତି ଆସିଥିବ ବୋଲି ଅନୁମାନ କରନ୍ତି। କିନ୍ତୁ ତାହା ସପକ୍ଷରେ ଅମ୍ଭେମାନେ ଏପର୍ଯ୍ୟନ୍ତ କୌଣସି ପ୍ରମାଣ ପାଇ ନାହୁଁ। ଛନ୍ଦ ସମ୍ବନ୍ଧରେ ଆଲୋଚନା କରିବାକୁ ଏଠାରେ ସ୍ଥାନାଭାବ। ଦୃଷ୍ଟାନ୍ତ ପ୍ରଦର୍ଶନପୂର୍ବକ ଏ ବିଷୟରେ ଆଲୋଚନା କଲେ ଗୋଟିଏ ସ୍ୱତନ୍ତ୍ର ପ୍ରବନ୍ଧ ହୋଇ ଯିବ।

୧୦ ଶବ୍ଦ—କେତୋଟି ଓଡ଼ିଆ ଶବ୍ଦରେ ସଂସ୍କୃତର ଛାୟା ପଡ଼ିଅଛି। ଅଥଚ ସମସ୍ତ ଏ ଭାଷାର ସ୍ୱତ୍ୱ। ପ୍ରବନ୍ଧାନ୍ତରରେ ଏ ସମ୍ବନ୍ଧରେ କିଛି ଆଲୋଚନା ହୋଇଥିବାରୁ ଏ ସ୍ଥଳରେ ସେ-ଗୁଡ଼ିକର ଉଦାହରଣ ଦେବା ନିଷ୍ପ୍ରୟୋଜନ। ଭାଷାର କଥା ଆଲୋଚନା କରିବାକୁ ଯାଇ ଅତିରିକ୍ତ ବିଷୟରେ ଲେଖିବା ଏଣିକି ଅନାବଶ୍ୟକ। ଅତଏବ ଏହିଠାରେ ପ୍ରବନ୍ଧର ଉପସଂହାର କରାଗଲା।

ବର୍ତ୍ତମାନ ଓଡ଼ିଆ ଭାଷା ସମ୍ବନ୍ଧରେ ଆଲୋଚନା କରି ଏହା ପ୍ରମାଣିତ ହେଲା ଯେ, ମାଗଧୀ ପ୍ରାକୃତ

ତାହାର ଜନନୀ । ସଂସ୍କୃତ ମାତାମହୀ, ପାଲି ଓ ମହାରାଷ୍ଟ୍ରୀ ମାତୃଷ୍ୱସା ଏବଂ ହିନ୍ଦୀ ଗୁଜରାଟୀ ଜ୍ୟେଷ୍ଠା ଭଗିନୀ । ମାତୃଗର୍ଭରୁ ଜନ୍ମ ଲଭିବାର କିଛି କାଳ ପରେ ଅର୍ଥାତ୍ ଶୈଶବାବସ୍ଥାରେ ମାତାର ସହଯୋଗ ଉପସ୍ଥିତ ହେବାରୁ ଏହା ଲୋକପ୍ରସିଦ୍ଧା ମାତାମହୀ କର୍ତ୍ତୃକ ବିଶେଷ ଭାବରେ ପାଳିତ ହୋଇ ପୁଷ୍ଟିଲାଭ କରିଅଛି । ତେଣୁ ଏହା ପୂର୍ବ ଆକାର ପରିବର୍ତ୍ତିତ ହୋଇଅଛି । ଶୈଶବାବସ୍ଥାରେ ଏହା ମାତୃଷ୍ୱସାଦ୍ୱୟଙ୍କ ସ୍ନେହଦୃଷ୍ଟିରେ ପଡିଥିଲା । ଜ୍ୟେଷ୍ଠା ଭଗିନୀଦ୍ୱୟ ଅନେକ ସ୍ଥଳରେ ଏହାକୁ ସାହାଯ୍ୟ କରିଅଛନ୍ତି । ତାହା ଛଡ଼ା ପାରସୀ ଆରବୀ ଯାବନିକ ଭାଷା ଏବଂ ମରହଟ୍ଟୀ ପ୍ରଭୃତି ପ୍ରତିବାସିନୀ ଭାଷାଦ୍ୱାରା ସମୟ ଓ ସୁବିଧା ଅନୁସାରେ ଏହାର କିଞ୍ଚିତ୍ ପରିବର୍ତ୍ତନ ସାଧିତ ହୋଇଅଛି ।

ଶ୍ରୀ ମୃତ୍ୟୁଞ୍ଜୟ ରଥ ।

—·—○○*○○—·—

## ଉପନିଷଦ୍‌ସଂଗ୍ରହ ।

### (ଅଥର୍ବବେଦୀୟ ମୁଣ୍ଡକୋପନିଷତ୍ ।)

ପ୍ରଥମ ମୁଣ୍ଡକ ।

ପ୍ରଥମେ ବ୍ରହ୍ମା ପ୍ରଜାପତି,
ଯାହାଙ୍କ ଜଗତ ଉତ୍ପତ୍ତି । ୧ ।
ଅଥର୍ବ ତାଙ୍କ ଜ୍ୟେଷ୍ଠ ସୁତ,
ଅଟନ୍ତି ସର୍ବ ଗୁଣଯୁତ । ୨ ।
ବ୍ରହ୍ମା ଯେ ବ୍ରହ୍ମବିଦ୍ୟାମାନ
ପୁତ୍ରଙ୍କୁ ଦେଲେ ଶିକ୍ଷାଦାନ । ୩ ।
ଅଥର୍ବ ସେ ବ୍ରହ୍ମବିଦ୍ୟାକୁ
ଶିକ୍ଷା ଯେ ଦେଲେ ଅଙ୍ଗିରଙ୍କୁ । ୪ ।
ଅଙ୍ଗିର ପୁଣ ଭରଦ୍ୱାଜେ
ନିଯୁକ୍ତ କଲେ ଶିକ୍ଷାକାର୍ଯ୍ୟେ । ୫ ।
ଏରୂପେ ବ୍ରହ୍ମବିଦ୍ୟା ସାର
ବ୍ରହ୍ମାଣ୍ଡେ ହେଲାକ ପ୍ରଚାର । ୬ ।
ଶୌନକ ମହର୍ଷି ପ୍ରଧାନ
ଶିଖିଲେ ବ୍ରହ୍ମବିଦ୍ୟାମାନ । ୭ ।
ଅଙ୍ଗିରଠାରୁ ସେ ଶୌନକ
ଶିଖିଲେ ବ୍ରହ୍ମବିଦ୍ୟାଯାକ । ୮ ।
ଯେରୂପେ ଏ ବିଦ୍ୟା ପ୍ରଚାର,
ଶୁଣନ୍ତୁ ସେହି ସମାଚାର । ୯ ।

———*———

ଏକଦା ଶୌନକ ମହର୍ଷି
ଅଙ୍ଗିର ମୁନି ପାଶେ ବସି । ୧୦ ।
ବିନୟେ ନୁଆଇଣ ମଥା
ପୁଚ୍ଛିଲେ ବ୍ରହ୍ମବିଦ୍ୟା କଥା । ୧୧ ।
ହେ ମୁନିବର ବୋଲ ମୋତେ,
କି ଜ୍ଞେୟ ଅଛି ଏ ଜଗତେ । ୧୨ ।
ଯେବଣ କଥା ହେଲେ ଜ୍ଞାତ
ଜାଣିବ ସକଳ ବୃତ୍ତାନ୍ତ । ୧୩ ।
ଅଙ୍ଗିର ଏତେ କଥା ଶୁଣି
ବୋଇଲେ ଅହେ ମହାମୁନି ! ୧୪ ।
ଦୁଇଟି ବିଦ୍ୟା ଅଟେ ସାର,
ଯହିଁରେ ଚଳୁଛି ସଂସାର । ୧୫ ।
ପର, ଅପର ଦୁଇ ବିଦ୍ୟା
ବ୍ରହ୍ମାଣ୍ଡ ମଧ୍ୟରେ ପ୍ରସିଦ୍ଧା । ୧୬ ।
ନିରୁକ୍ତି, ଶିକ୍ଷା, ଚତୁର୍ବେଦ,
ଜ୍ୟୋତିଷ, କଳ୍ପ, ଛନ୍ଦଭେଦ । ୧୭ ।
ଶବ୍ଦଜ୍ଞାପକ ବ୍ୟାକରଣ,
ଅପର ବିଦ୍ୟାରେ କଥନ । ୧୮ ।
ପର ବିଦ୍ୟାକୁ ଶ୍ରେଷ୍ଠ ଜାଣ,
ତହିଁରୁ ଜାତ ବ୍ରହ୍ମଜ୍ଞାନ । ୧୯ ।
ଜ୍ଞାନ ଇନ୍ଦ୍ରିୟ, କର୍ମେନ୍ଦ୍ରିୟ
ନ ଜାଣେ ବ୍ରହ୍ମଙ୍କ ବିଷୟ । ୨୦ ।

ନୁହନ୍ତି ବ୍ରହ୍ମ ସୂକ୍ଷ୍ମ ସ୍ଥୂଳ,
ପୁଣି ଅଟନ୍ତି ସର୍ବ ମୂଳ । ୨୧ ।
ରୂପବର୍ଜିତ ଜ୍ଞାନମୟ,
ସକଳ ବର୍ଣ୍ଣର ଆଶ୍ରୟ । ୨୨ ।
ଯହିଁରୁ ଜାତ ଏହି ଜ୍ଞାନ,
ପର ବିଦ୍ୟା ସେ ତାଙ୍କୁ ଜାଣ । ୨୪ ।
ଦେହରୁ ଜାତ ଯେସ୍ନେ ଲୋମ,
ପୃଥ୍ୱୀରେ ବୃକ୍ଷ ଲତା ଗୁଳ୍ମ । ୨୪ ।
ସୂକ୍ଷ୍ମ ଯେସନେ ଊର୍ଣ୍ଣନାଭି,
ସହଜେ ଥାଏଟି ପ୍ରସବି । ୨୫ ।
ଅକ୍ଷରୁ ଏହି ବିଶ୍ୱ ସର୍ବ,
ତେସନେ ହୋଇଛି ଉଦ୍ଭବ । ୨୬ ।
ଅକ୍ଷରୁ ବୀଜ ହେଲା ଜାତ,
ବୀଜରୁ ଜନ୍ମିଲେ ସମସ୍ତ । ୨୭ ।
ବୀଜରୁ ହେଲା ପ୍ରାଣ ମନ,
ତହିଁରୁ ଜାତ ଲୋକଗଣ । ୨୮ ।
ଶେଷରେ କର୍ମ, କର୍ମଫଳ
କ୍ରମଶ ଜନ୍ମିଲେ ସକଳ । ୨୯ ।
ସେ ବ୍ରହ୍ମ ସର୍ବ ଜ୍ଞାନମୟ,
ତାହାଙ୍କ ଜ୍ଞାନରୁ ଉଦୟ । ୩୦ ।
ପ୍ରପଞ୍ଚ ହୋଇଅଛି ଜାତ,
ଏକଥା ତୁମ୍ଭେ ହେଲେ ଜ୍ଞାତ । ୩୧ ।
ଜାଣି ପାରିବ ସର୍ବ ତତ୍ତ୍ୱ,
ନ ଭୁଲ ଏଥି ଅନ୍ୟ ମତ । ୩୨ ।
ଅହେ ଶୌନକ ଏହା ଜାଣି
ପାଇବେ ମୁକ୍ତି ସର୍ବ ପ୍ରାଣୀ । ୩୩ ।

———*———

ଦ୍ୱିତୀୟ ମୁଣ୍ଡକ ।

ତ୍ରେତା ଯୁଗରେ ଯଜ୍ଞ ଯାଗ
କଲେକ ଦେବେ ମହାଭାଗ । ୩୪ ।
ଲଭିବା ପାଇଁ କର୍ମଫଳ
କରିଣ ଥିଲେ ଏ ସକଳ । ୩୫ ।
କର୍ମଫଳର ଏ ବିଧାନ
କରନ୍ତି ଲୋକେ ଅନୁଷ୍ଠାନ । ୩୬ ।

ଅଗ୍ନି ହୋତ୍ରାଦି କ୍ରିୟାମାନ
ସ୍ୱର୍ଗଲାଭର ମାର୍ଗ ଜାଣ । ୩୭ ।
ଅନଳେ ଆହୁତ ପ୍ରଦାନ
କରିଣ ଥାନ୍ତି ଯଜମାନ । ୩୮ ।
ଯିବାର ପାଇଁ ଚନ୍ଦ୍ରଲୋକେ
ଏପରି କରିଥାନ୍ତି ଲୋକେ । ୩୯ ।
ଜାଣିବ ଏ କାର୍ଯ୍ୟ ସକଳ
ଅଟଇ କ୍ଷଣିକ କେବଳ । ୪୦ ।
ଭୋଗାନ୍ତେ ମାନବ ସକଳେ
ଆସନ୍ତି ପୁଣି ଧରାତଳେ । ୪୧ ।
ନରଯୋନି ବା ନୀଚଯୋନି
ଲଭନ୍ତି ଲୋକ ଆସି ପୁଣି । ୪୨ ।
ହେ ମୂଢ଼ନର କେଉଁ ସ୍ୱର୍ଗ
ବୃଥା ଲୋଡ଼ନ୍ତି ଲୋକବର୍ଗ । ୪୩ ।
ହୃଦୟ କରା ଜ୍ଞାନ ଭାବ
ହେ କରଅଛୁ ମୁକ୍ତି ଲାଭ । ୪୪ ।
ଅଗ୍ନି ହୋତ୍ରାଦି କ୍ରିୟାମାନ
ସମ୍ପର୍କ ନାହିଁ ତତ୍ତ୍ୱଜ୍ଞାନ । ୪୫ ।
ବସ୍ତୁ ନ ଚିହ୍ନି ମୂଢ଼ ଜନ
କରନ୍ତି ମନ୍ତ୍ରର ସାଧନ । ୪୬ ।
କେବଳେ ଜ୍ଞାନର ସଞ୍ଚାର
ବିରାଗ ଜନ୍ମିବ ସଂସାର । ୪୭ ।
ସନ୍ନ୍ୟାସ ଅବା ବାନପ୍ରସ୍ଥ,
ଭିକ୍ଷୁକ ଅଥବା ଗୃହସ୍ଥ । ୪୮ ।
ଯେଉଁ ଆଶ୍ରମେ ଥାଉ ଲୋକ
ଲଭଇ ଯେବେ ଜ୍ଞାନାଲୋକ । ୪୦ ।
କରିଣ ଇନ୍ଦ୍ରିୟ ଦମନ
ହିରଣ୍ୟଗର୍ଭ ଧ୍ୟାନେ ମଗ୍ନ । ୫୦ ।
ହୋଇ ଲଭନ୍ତି ଜ୍ଞାନଗଣେ
ପରମ ବ୍ରହ୍ମ ସନାତନେ । ୫୧ ।
କେବଳେ ବ୍ରହ୍ମବିଦ୍ୟାଲାଭ
ନ ଥାଏ ପାପ ପୁଣ୍ୟ ଭାବ । ୫୨
ଅବ୍ୟକ୍ତ ଅକ୍ଷର ଅବ୍ୟୟ,
ତହିଁରେ ଚିତ୍ତ କର ଲୟ । ୫୩ ।

ନିଖିଳସଂସାର କର୍ମରେ
ବସଗୀ ଥିବ ନିରନ୍ତରେ । ୫୪ ।
କର୍ମରୁ ଜନ୍ମ ଉତ୍ପତ୍ତି,
ଏହାହିଁ ଜାଣିବ ନିଶ୍ଚିତ । ୫୫ ।
ବିନାଶ ଜନ୍ମ ଲଭ କରି
ଜଗତେ ବୀଜାଙ୍କୁରପରି । ୫୬ ।
ନ ବୁଝି ଯେବେ ଥାଇ ତତ୍ତ୍ୱ,
ବହୁତ ହୁଅନ୍ତେ ଅନର୍ଥ । ୫୭ ।
ନିଖିଳ ବସ୍ତୁ କ୍ଷଣସ୍ଥାୟୀ,
ହୃଦରେ ଏହା ଥିବ ଥାୟି । ୫୮ ।
କ୍ଷଣଭଙ୍ଗୁର ବସ୍ତୁ ସର୍ବ,
କରିବ ଏହା ଅନୁଭବ । ୫୯ ।
ବୁଝିଲେ କର୍ମର ବିକୃତ,
ଲଭିବ ଆପଣା ପ୍ରକୃତ । ୬୦ ।
ତ୍ୟାଗ କରିଣ ସର୍ବ କର୍ମ
ଲଭିବ ବୈରାଗ୍ୟ ଧର୍ମ । ୬୧ ।
ସୁଖ ଦୁଃଖର ଏ ସଂସାର,
ଜାଣିବ ଅବଶ୍ୟ ଅସାର । ୬୨ ।
ବୃଥାରେ କର୍ମ ଅନୁଷ୍ଠାନ
ନ ହୁଏ ସ୍ଥିର ବିନା ଜ୍ଞାନ । ୬୩ ।
କର୍ମଫଳ ଯେ ଚିରସ୍ଥାୟୀ
ନୁହେଁଟି ଏହା ଥିବ ଥାୟି । ୬୪ ।
ଅପ୍ରସବନ୍ଧକ କର୍ମରେ
ଯେପାଁ ନିଯୁକ୍ତ ନିରନ୍ତରେ । ୬୫ ।
ଯେ କର୍ମେ ଉତ୍ଥାନ ପତନ,
ତହିଁରେ କେବା ପ୍ରୟୋଜନ । ୬୬ ।
ଯେ କର୍ମ ଅଟେ କ୍ଷୀଣମୟ,
ନେବଟି ସେଥିର ଆଶ୍ରୟ । ୬୭ ।
ସର୍ବଦା ହୋଇ ଶାନ୍ତ ଶିଷ୍ଟ,
ମୁକ୍ତିକେ ହେବ ବ୍ରହ୍ମନିଷ୍ଠ । ୬୮ ।
ମୁକ୍ତିକି ଲଭିବା ଆକାଶେ
ଯିବ ବିଜ୍ଞାନୀ ଗୁରୁପାଶେ । ୬୯ ।
ସୁଗୁରୁ ହୋଇ ଯତ୍ନବାନ
ଶିଷ୍ୟଙ୍କୁ ଦେବେ ବ୍ରହ୍ମଜ୍ଞାନ । ୭୦ ।
ଶିଷ୍ୟ ସେ ଜ୍ଞାନ କରି ଲଭ
ଜାଣିବେ ପରବ୍ରହ୍ମଭାବ । ୭୧ ।

—:o:—

ଦ୍ୱିତୀୟ ମୁଣ୍ଡକ ।

ଅନିତ୍ୟ ଜଗତ ସଂସାର,
କେବଳ ବ୍ରହ୍ମବସ୍ତୁ ସାର । ୭୨ ।
ଏହି ଯେ କର୍ମ, କର୍ମଫଳ,
ଅନିତ୍ୟ ଜାଣିବ ସକଳ । ୭୩ ।
କେବଳେ ଅନିତ୍ୟ ସର୍ବ କର୍ମ
ସତ୍ୟ ବୋଲିଣ ହୁଏ ଭ୍ରମ । ୭୪ ।
ଅଗ୍ନିରୁ ଅଗ୍ନି କଣା ଜାତ
ଅଗ୍ନିସ୍ୱରୂପେ ପ୍ରଦୋତ । ୭୫ ।
ଅକ୍ଷର ପୁରୁଷରୁ ବିଶ୍ୱ
ତାହାର ହୋଇଛି କ୍ରମଶ । ୭୬ ।
ଏ ବିଶ୍ୱମଣ୍ଡଳ ଶେଷରେ
ମିଳଇ ବ୍ରହ୍ମ ପୁରୁଷରେ । ୭୭ ।
ବ୍ରହ୍ମରୁ ଜାତ ଏ ସଂସାର,
ଦେହରୁ ଲୋମ ଯେପ୍ରକାର । ୭୮ ।
ସେ ବ୍ରହ୍ମ ଦେବ ଜ୍ୟୋତିର୍ମୟ,
ଅକ୍ଷର ଅମୂର୍ତ୍ତି ଅବ୍ୟୟ । ୭୯ ।
ଜନ୍ମିଷ୍ୟ ପୁଣି ନିରୁପାଧି,
ନାହିଁ ତାହାର ଅନ୍ତ ଆଦି । ୮୦ ।
ବ୍ରହ୍ମରୁ ଜାତ ପ୍ରାଣ ମନ,
ଇନ୍ଦ୍ରିୟ ଆକାଶ ପବନ । ୮୧ ।
ପୃଥିବୀ ସଲିଳ ଯେ ଜ୍ୟୋତି
ପ୍ରକାଶ ବହ୍ନି ହୋଇଛନ୍ତି । ୮୨ ।
ବିରାଟ ପୁରୁଷ ପ୍ରକାଶି
ଛନ୍ତି ଅନନ୍ତ ରୂପରାଶି । ୮୩ ।
ଦ୍ୟୁଲୋକ ତାହାଙ୍କର ଛବି,
ନୟନ ବେନି ଶଶୀ ରବି । ୮୪ ।
ଦଶଦିଗ ଯେ ତାଙ୍କ ଶ୍ରୁତି,
ଜୀବନସ୍ୱରୂପ ପବତ । ୮୫ ।
ତାହାଙ୍କ ବାକ୍ୟ ବେଦମୟ,
ଅନନ୍ତ ତାହାଙ୍କ ହୃଦୟ । ୮୬ ।

ଚରଣ ପୃଥ୍ୱୀ ଦେଲ ଜାଣ,
ଶରୀର ତାଙ୍କ ସର୍ବଭୂତ । ୮୭ ।
ଅନଳ ସୂର୍ଯ୍ୟ ସୋମ ଜଳ
ଔଷଧି ପୃଥ୍ୱୀମଣ୍ଡଳ । ୮୮ ।
ନାନା ପୁରୁଷ ଜୀବମାନ
ତାହାଙ୍କଠାରେ ବର୍ତ୍ତମାନ । ୮୯ ।
ଋକ୍ ଯଜୁ ସାମ ବେଦ ଗଣ,
ଉଦ୍ଭବ ତାଙ୍କ ହେତୁ ଘେନ । ୯୦ ।
ଯଜ୍ଞ ଦକ୍ଷିଣା କର୍ମମାନ
ଏ ସର୍ବ ତାହାଙ୍କ ଭିଆଣ । ୯୧ ।
ମାସ ବତ୍ସର କର୍ମଫଳ
ପ୍ରକାଶେ ମହିମା କେବଳ । ୯୨ ।
ମନୁଷ୍ୟ ପଶୁ ପକ୍ଷୀ କୀଟ
ଗ୍ରୀଷ୍ମ ଶରଦ ପ୍ରାବୃଟ । ୯୩ ।
ସାଗର ଗିରି ଜଳାଶୟ
ଔଷଧି ଧାନ୍ୟ ଶସ୍ୟଚୟ । ୯୪ ।
ପ୍ରାଣ ଅପାନ ଦାନ ବ୍ୟାନ
ଏ ସର୍ବ ବ୍ରହ୍ମଙ୍କ ଭିଆଣ । ୯୫ ।
ଏସବୁ ଜାଣ ସ୍ଥୂଳ ଦେହ,
ସେ ପୁଣି ଲିଙ୍ଗଦେହଗେହ । ୯୬ ।
ଅଟନ୍ତି ପରବ୍ରହ୍ମ ସାର
ସକଳ ଜ୍ଞାନର ଆଧାର । ୯୭ ।
ହେଲେକ ଅବିଦ୍ୟା ବିନାଶ,
ହୁଏଟି ପୂର୍ଣ୍ଣଜ୍ଞାନ ପ୍ରକାଶ । ୯୮ ।
ଆତ୍ମବୋଧରୁ ବ୍ରହ୍ମବୋଧ
ହେଲେକ ପାଇବ ପ୍ରବୋଧ । ୯୯ ।
ଚିନ୍ତ ଏ ସର୍ବ ବିବରଣ
ଶୌନକ ସ୍ଥିର କର ମନ । ୧୦୦ ।

---

## ଚତୁର୍ଥ ମୁଣ୍ଡକ ।

ପ୍ରଶ୍ନ ।

କରୁଣା କର ଭଗବାନ,
ଅରୂପ ପରବ୍ରହ୍ମଜ୍ଞାନ । ୧୦୧ ।
ହେବ ମୁଁ ପ୍ରାପ୍ତ କେପ୍ରକାର,
ବୋଲନ୍ତୁ ସେହି କଥା ସାର । ୧୦୨ ।

ଉତ୍ତର ।

ବ୍ରହ୍ମ ବ୍ୟାପକ ଚରାଚରେ,
ଧାରଣା କରିବ ମନରେ । ୧୦୩ ।
ବାହ୍ୟ ଇନ୍ଦ୍ରିୟ କଦାଚନ
ନ ପାନ୍ତି ତାହାଙ୍କ ଦର୍ଶନ । ୧୦୪ ।
ସେ ବ୍ରହ୍ମ ହୃଦୟକନ୍ଦରେ
ଅଛନ୍ତି ଜାଣିବ ମନରେ । ୧୦୫ ।
ଯାହା ସକଳ ଶୁଣେ କର୍ଣ୍ଣ,
କର୍ଣ୍ଣ ଯେ ଦେଖଇ ନୟନ । ୧୦୬ ।
ଜିହ୍ୱା ଗ୍ରହଣ କରେ ରସ,
ଜାଣଇ ତ୍ୱକ ଯେ ପରଶ । ୧୦୭ ।
ସେପରି ପରବ୍ରହ୍ମ ଭାବ
ମନେ କରିବ ଅନୁଭବ । ୧୦୮ ।
ସେ ପରବ୍ରହ୍ମ ପରାତ୍ପର,
ଅଣୁରୁ ମଧ୍ୟ ସୂକ୍ଷ୍ମତର । ୧୦୯ ।
ମନକୁ କରି ସୂକ୍ଷ୍ମତମ
ଅନୁଭବିବ ପରବ୍ରହ୍ମ । ୧୧୦ ।
ଉପନିଷଦ ଧନୁ ଜାଣ,
ଧ୍ୟାନନିମଗ୍ନ ମନ ବାଣ । ୧୧୧ ।
ଇନ୍ଦ୍ରିୟମାନ ନିବର୍ତ୍ତନ,
ତାହାକୁ ଜାଣ ଆକର୍ଷଣ । ୧୧୨ ।
ପରବ୍ରହ୍ମକୁ ଲକ୍ଷ କରି
ଯୋଖିବ ମନ ବାଣ ପରି । ୧୧୩ ।
ହେଲେକ ଏକାଗ୍ର ହୃଦୟ
ବିନ୍ଧିବ ଲକ୍ଷକୁ ନିଶ୍ଚୟ । ୧୧୪ ।
ଅଥବା ଧନୁ ଯେ ଓଁକାର,
କଣ୍ଟୁକି ଆତ୍ମା ଅଟେ ଶର । ୧୧୫ ।
ପରବ୍ରହ୍ମକୁ କର ଲକ୍ଷ
ବିନ୍ଧିଲେ ଭେଟିବ ପ୍ରତ୍ୟକ୍ଷ । ୧୧୬ ।
ଶର ଯେମନ୍ତ ଲକ୍ଷେ ବାଜେ,
ସାଧକ ପରବ୍ରହ୍ମେ ସଜେ । ୧୧୭ ।
ପ୍ରତ୍ୟକ୍ଷ ଉଭୟ ପରୋକ୍ଷ
ଛିଡ଼ିଲେକ ଯେ ପରଲୋକ । ୧୧୮ ।
ଇନ୍ଦ୍ରିୟବର୍ଗ ପ୍ରାଣ ମନ
ଭୁଲିବ ବସି ଅନୁକ୍ଷଣ । ୧୧୯ ।

ପ୍ରଶସ୍ତ ଆତ୍ମରୂପ ଜାଣି,
ମୁକ୍ତିସ୍ୱରୂପ ଆତ୍ମଜ୍ଞାନ । ୧୨୦ ।
ସଂସାରସିନ୍ଧୁ ପାର ହେତୁ ।
ଏକହିଁ ବ୍ରହ୍ମନାମ ସେତୁ । ୧୨୧ ।
ସେ ପରବ୍ରହ୍ମ ମନୋମୟ
ବ୍ୟାପିଣ ଅଛନ୍ତି ହୃଦୟ । ୧୨୨ ।
ବ୍ରହ୍ମ ଜୀବନସାରଭୂତ,
ଜାଣିଲେ ହେବ ଯେ ଅମୃତ । ୧୨୩ ।
ଜୀବ ଚୈତନ୍ୟ ଅହଙ୍କାର
ବ୍ରହ୍ମରେ ହେବଟି ପ୍ରସାର । ୧୨୪ ।
ଜନ୍ମକ ଛେଦେ ତୁମ୍ଭ ଜ୍ଞାନ,
ତାହିଁ ବା ବ୍ରହ୍ମ ତାହିଁ ପ୍ରାଣ । ୧୨୫ ।
କହିଁ ବା ତୁମ୍ଭେ ତାହିଁ ବ୍ରହ୍ମ,
ଏହି ଉଭୟ ଏକଆତ୍ମ । ୧୨୬ ।
ତାହିଁ ବା ଜ୍ଞାତା ତାହିଁ ଜ୍ଞେୟ
କିଅବା ଧ୍ୟାନ କେବା ଧ୍ୟେୟ । ୧୨୭ ।
ଚରମ ବାସନା ବିବେକ,
ସକଳ ପଦାର୍ଥ ଯେ ଏକ । ୧୨୮ ।
ତାହିଁ ବା ରୂପ ତାହିଁ ଗୁଣ,
ମାୟା ମୋହାଦି ବସ୍ତୁ ପୁଣ । ୧୨୯ ।
ସୂର୍ଯ୍ୟ ବା ଚନ୍ଦ୍ର ତାରା ଗ୍ରହ,
ଆକାଶ ବ୍ରହ୍ମାଣ୍ଡନିବହ । ୧୩୦ ।
ବ୍ରହ୍ମଙ୍କ ମହିମା ପ୍ରକାଶ
ବପ୍ୟେ ଅଟନ୍ତି ଉଦାସ । ୧୩୧ ।
ହେ ବତ୍ସ ତୁମ୍ଭେ ଜ୍ଞାନନେତ୍ରେ
ଦେଖିବ ତାହାଙ୍କୁ ସର୍ବତ୍ରେ । ୧୩୨ ।
କାଳରେ ଏ ବିଶ୍ୱ ସମସ୍ତ
ନଷ୍ଟ ହେବ କଳ୍ପାନ୍ତ । ୧୩୩ ।
ମାତ୍ର ଶୌନକ ସୁଧୀର,
ଅଟନ୍ତି ବ୍ରହ୍ମ ବସ୍ତୁ ସ୍ଥିର । ୧୩୪ ।

---

ପଞ୍ଚମ ମୁଣ୍ଡକ ।

ଦୁଇଟି ପକ୍ଷୀ ଏକ ବୃକ୍ଷେ
ବସିଣ ଅଛନ୍ତି ପ୍ରତ୍ୟକ୍ଷେ । ୧୩୫ ।
ଗୋଟିଏ ପକ୍ଷୀ ଭୁଞ୍ଜେ ଫଳ,
ଅନ୍ୟଟି ଦେଖଇ କେବଳ । ୧୩୬ ।
ଲିଙ୍ଗଦେହ ଯେ ଶରୀରରେ
କର୍ମଣ ଫଳ ଭୋଗ କରେ । ୧୩୭ ।
ମୁକ୍ତାତ୍ମାସ୍ୱରୂପ ଯେ ପକ୍ଷୀ
ଦେହରେ ବସିଥାନ୍ତି ସାକ୍ଷୀ । ୧୩୮ ।
ଜୀବାତ୍ମା କରନ୍ତି ଭୋଜନ,
ମୁକ୍ତାତ୍ମା କରନ୍ତି ଦର୍ଶନ । ୧୩୯ ।
ନାନା କର୍ମ କର୍ମଫଳ
ଜୀବାତ୍ମା ଭୁଞ୍ଜନ୍ତି କେବଳ । ୧୪୦ ।
ସୁଖ ଦୁଃଖ ବା ସ୍ୱାସ୍ଥ୍ୟ ରୋଗ
ଜୀବାତ୍ମା କରେ ଏହା ଭୋଗ । ୧୪୧ ।
ପରମାତ୍ମା ଯେ ଏ ଦେହରେ
ଥାଅନ୍ତି ସତ୍ତା ସ୍ୱରୂପରେ । ୧୪୨ ।
ଜୀବାତ୍ମା ଯେତେ କାର୍ଯ୍ୟ କରେ
ଦେଖନ୍ତି ସାକ୍ଷୀ ସ୍ୱରୂପରେ । ୧୪୩ ।
ନାନା ଯୋନିରେ ଜୀବଗଣ
ଭ୍ରମନ୍ତି ଭୋଗର କାରଣ । ୧୪୪ ।
ଜୀବାତ୍ମା ଭୋଗ ଅବସାନେ
ଗମନ୍ତି ପୁଣି ନିଜ ସ୍ଥାନେ । ୧୪୫ ।
ବନ୍ଧନ ଜନ୍ମ ଜନ୍ମାନ୍ତରେ
ସୁଖ ଯନ୍ତ୍ରଣା ଭୋଗ କରେ । ୧୪୬ ।
ଗୁରୁ ଯେ ଦେଲେ ଶିକ୍ଷାଦାନ
ଉଦୟ ହୁଏ ଦିବ୍ୟ ଜ୍ଞାନ । ୧୪୭ ।
ଅହିଂସା ସତ୍ୟ ତ୍ୟାଗ ଶମ,
ଏ ସର୍ବ କର ହୃଦଙ୍ଗମ । ୧୪୮ ।
ହୋଇଣ ବ୍ରହ୍ମଜ୍ଞାନଯୁକ୍ତ
ଜୀବାତ୍ମା ହୋଇ ପାରେ ମୁକ୍ତ । ୧୪୯ ।
ସେକାଳେ ଦେହ ମୃତ୍ୟୁ ଜରା
ଦୁଃଖ ସମ୍ପଦ ପରମ୍ପରା । ୧୫୦ ।
ଏ ସବୁ ଘୁଞ୍ଚି ଯିବ ଦଣ୍ଡେ,
ଦେଖିବ ବ୍ରହ୍ମଙ୍କୁ ବ୍ରହ୍ମାଣ୍ଡେ । ୧୫୧ ।
ସେ କାଳେ ହୋଇ ଅଚଞ୍ଚଳ
ଜୀବାତ୍ମା ଭୁଞ୍ଜିବେ ନିଷ୍କଳ । ୧୫୨ ।

ସାମାନ୍ୟ ଜୀବ ଯେ କାଳରେ
ମିଳଇ ଅନନ୍ତ ଦେହରେ । ୧୫୩ ।
ସେବେ ସେ କାଳେ ଜ୍ଞାନୋଦୟ,
ପ୍ରପଞ୍ଚ ଅଟେ ବ୍ରହ୍ମମୟ । ୧୫୪ ।
ମୁଁ ବ୍ରହ୍ମ ବ୍ରହ୍ମ ମୋ ଆଧାର,
ଜନ୍ମିବ ଜ୍ଞାନ ଏପ୍ରକାର । ୧୫୫ ।
କେବଳ ବ୍ରହ୍ମେ ସମାଧାନ,
ନ ଥିବ ଅନ୍ୟରୂପ ଜ୍ଞାନ । ୧୫୬ ।

ପ୍ରଶ୍ନ ।

ସେହି ଯେ ନିରଞ୍ଜନ ଭାବ
ତାହିଁ ମୁଁ କେଉଁପାରେ ଲଭ ? ୧୫୭ ।

ଉତ୍ତର ।

କେବେଳେ ସତ୍ୟର ଆଶ୍ରୟ
ହେବ ଏରୂପ ଜ୍ଞାନୋଦୟ । ୧୫୮ ।
ନ ଥିବ ସୁଖ ଦୁଃଖ ଆଦି,
ଜନ୍ମେ ନିଷ୍କଳ ଉପାଧି । ୧୫୯ ।
ଆତ୍ମବଳର ଜପ ତପ
ସହଜେ ହୋଇଯିବେ କ୍ଷୟ । ୧୬୦ ।
କାମନା କର୍ମ କର୍ମଫଳ,
ଅନ୍ତର ହେବ ଏ ସକଳ । ୧୬୧ ।
ନିର୍ମଳ ଭାବ ଯେଉଁ ମନ
ଅନୁଭବେ ନିରଞ୍ଜନ । ୧୬୨ ।
ଯେ ଲୋକ ଅଟେ ଅବିବେକୀ,
ନ ପାରେ ପରବ୍ରହ୍ମ ଦେଖି । ୧୬୩ ।
ବିବେକୀ ବୈରାଗୀ ଅନ୍ତରେ
ବ୍ରହ୍ମ ଦର୍ଶନ କରନ୍ତିରେ । ୧୬୪ ।
ଜୀବ ଦେହରେ ବ୍ରହ୍ମବସ୍ତୁ
ବାସ କରନ୍ତି ନିତ୍ୟ ଜନ୍ତୁ । ୧୬୫ ।
ସେ ବ୍ରହ୍ମ ଇନ୍ଦ୍ରିୟ ଅତୀତ,
ବିଶ୍ୱାସେ ଲଭିବ ନିଶ୍ଚିତ । ୧୬୬ ।
ନିର୍ମଳ ଅଟେ ଯାହା ମନ,
ସେ କରେ ତାହାଙ୍କୁ ଦର୍ଶନ । ୧୬୭ ।
ସାଧକ ନିତ୍ୟ ସାଧନାରେ
ବ୍ରହ୍ମ ଦର୍ଶନ କରିପାରେ । ୧୬୮ ।

ଜୀବମାନଙ୍କ ସର୍ବ ଚିତ୍ତ
ଇନ୍ଦ୍ରିୟେ ଅଛି ଆଚ୍ଛାଦିତ । ୧୬୯ ।
ସଦା ତେଣୁ ଜୀବ ମାୟା ମୋହେ
ଅଜ୍ଞାନ ରହିଛି ବିଷୟେ । ୧୭୦ ।
ଯେ ଜ୍ଞାନବନ୍ତ ମହାଭାଗ
ମୋହକୁ କରିପାରେ ତ୍ୟାଗ । ୧୭୧ ।
ସେ କରିପାରେ ହୃଦଙ୍ଗମ,
ବ୍ରହ୍ମାଣ୍ଡ ତ ପରବ୍ରହ୍ମ । ୧୭୨ ।
ଯେ ଆତ୍ମାନନ୍ଦ କରିପାରେ,
ସେ ଜାଣିପାରେ ସାରତସାରେ । ୧୭୩ ।

---

ଷଷ୍ଠ ମୁଣ୍ଡକ ।

ସର୍ବ ଭୂତରେ ଛନ୍ତି ବ୍ରହ୍ମ,
ଏକଥା କର ହୃଦଙ୍ଗମ । ୧୭୪ ।
ଜାଣେ ଯେ ଏ ଗୁପ୍ତ ସାର,
ଜନ୍ମ ନ ଲଭେ ପୁନର୍ବାର । ୧୭୫ ।
ମାନବ କାମନାର ଫଳେ
ଜନ୍ମ ଲଭଇ ଧରାତଳେ । ୧୭୬ ।
ସେହି କାମନା ହେଲେ ନଷ୍ଟ,
ମାନବ ପାଏ ନାହିଁ କଷ୍ଟ । ୧୭୭ ।
କାରଣ ନାଶେ କାର୍ଯ୍ୟ ନାଶ,
ଏକଥା କହିବ ବିଶ୍ୱାସ । ୧୭୮ ।
କଲେକ ବେଦ ଅଧ୍ୟୟନ,
ଅଥବା ଶାସ୍ତ୍ରାର୍ଥ ଶ୍ରବଣ । ୧୭୯ ।
ବହୁଳ ଗ୍ରନ୍ଥ ପଢ଼ି ଜନ୍ତୁ
ଲଭ ନ ହେବ ବ୍ରହ୍ମବସ୍ତୁ । ୧୮୦ ।
ଯେ ବୁଝିପାରେ ଆତ୍ମଭାବ,
ସେ କରେ ପରବ୍ରହ୍ମ ଲଭ । ୧୮୧ ।
ବ୍ରହ୍ମମହିମା ଗରୀୟସୀ,
ବୁଝଇ ଆତ୍ମତତ୍ତ୍ୱଦର୍ଶୀ । ୧୮୨ ।
ଭୋଗ ବାସନା ଇଚ୍ଛା ତେଜି
ଥିବ ଯେ ଆତ୍ମତତ୍ତ୍ୱ ଭେଜି । ୧୮୩ ।
ଏ ବସ୍ତୁ ଅଟଇ ମୋହର,
ଏ ଭାବ ନ ହେଲେ ଅନ୍ତର । ୧୮୪ ।

ମାୟାରେ ମଗ୍ନ ଥିବ ଜନ୍ତୁ,
ନାର ତ ଦେଖେ ବ୍ରହ୍ମବସ୍ତୁ । ୧୮୫ ।
ଭୋଗେଚ୍ଛା ତେଜେ ଯେ କୌଶଳେ,
ବଳୀ ସେ ଅଟେ ଆତ୍ମବଳେ । ୧୮୬ ।
ଯେ ଜିଣି ପାରେ ଇନ୍ଦ୍ରିୟକୁ,
ମହର୍ଷି ଜାଣିବ ତାହାକୁ । ୧୮୭ ।
ଯେ ରଖେ ପରବ୍ରହ୍ମେ ଭକ୍ତି,
ଲଭେ ସେ ନିରୁପାଧି ମୁକ୍ତି । ୧୮୮ ।
ଏ ଦେହ ଇନ୍ଦ୍ରିୟ ମନ ଚିତ୍ତ
ସମସ୍ତ ଅଟେ ବ୍ରହ୍ମମୟ । ୧୮୯ ।
ଜଗତ ଆତ୍ମା ଜ୍ଞାନ କର୍ମ,
ସମସ୍ତ ଜାଣ ପରବ୍ରହ୍ମ । ୧୯୦ ।
ଯେମନ୍ତ ବିଭିନ୍ନ ନଦ ନଦୀ,
ସମସ୍ତେ ମିଳନ୍ତି ଜଳଧି । ୧୯୧ ।
ଦେଖିଲେହେଁ ନଦୀ ଭିନ୍ନ ଭିନ୍ନ,
ନ ଥାଏ ସେକାଳରେ ଚିହ୍ନ । ୧୯୨ ।
ସ୍ୱଧର୍ମ ଭଜନ୍ତି ସକଳେ
ମିଶିଲେ ଯାଇ ସିନ୍ଧୁଜଳେ । ୧୯୩ ।
ତେସନେ ତେଜି ରୂପନାମେ,
ମିଳନ୍ତି ସର୍ବେ ବ୍ରହ୍ମଧାମେ । ୧୯୪ ।
ଜୀବ ସେକାଳେ ହୁଏ ବ୍ରହ୍ମ,
ସକଳ ବ୍ରହ୍ମବସ୍ତୁ ସମ । ୧୯୫ ।
ଯେ ବ୍ରହ୍ମନିଷ୍ଠ ଶ୍ରଦ୍ଧାବାନ,
ସେ ଲାଭ କରେ ବ୍ରହ୍ମଜ୍ଞାନ । ୧୯୬ ।
ଅଙ୍ଗିରା ଏକଥା ପୂର୍ବରେ
ବୋଇଲେ ଶୌନକ ପାଶରେ । ୧୯୭ ।
ସେ ଦିନୁ ଗୁରୁପରମ୍ପରା
ବ୍ୟାପିଲା ବ୍ରହ୍ମବିଦ୍ୟା ଧରା । ୧୯୮ ।
ବିଧିପୂର୍ବକ ଯେଉଁ ଲୋକ
ନ ଲଭେ ବ୍ରହ୍ମଜ୍ଞାନାଲୋକ । ୧୯୯ ।
ଏ ଶାସ୍ତ୍ରକଥା ଆଲୋଚନା
ତା ପକ୍ଷେ ଅଟେ ବିଡ଼ମ୍ବନା । ୨୦୦ ।
ଭକ୍ତିପୂର୍ବକ ବାରମ୍ବାର
ଋଷିଙ୍କୁ କରେ ନମସ୍କାର । ୨୦୧ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ଶ୍ରୀ ଫକୀରମୋହନ ସେନାପତି ।

---

## ସେତୁବନ୍ଧ ରାମେଶ୍ୱର । (୩)

ଫେବୃଆରୀ ୩ ତାରିଖ ପ୍ରାତଃକାଳରେ ଗାତ୍ରୋତ୍ଥାନ କରିବା ମାତ୍ରକେ ମନ୍ଦିରଅଭିମୁଖରେ ଯାତ୍ରା କଲୁଁ । ସୁପ୍ରଶସ୍ତ ରାଜପଥର ଉଭୟ ପାର୍ଶ୍ୱରେ ପୂଜକ ବ୍ରାହ୍ମଣମାନେ ସପରିବାରରେ ବାସ କରୁଅଛନ୍ତି । ଅନତିଦୂରରେ ରାମେଶ୍ୱରର ଶିବମନ୍ଦିର । ଏହାର ଉତ୍ତର, ଦକ୍ଷିଣ ଏବଂ ପୂର୍ବ ପ୍ରାନ୍ତରେ, ଅତି ନିକଟରେ ମହାସାଗରର ଊର୍ମ୍ମିମାଳା ଅବହମାନ କାଳ ବ୍ୟାପି ମନ୍ଦିରପାଦସଂଲଗ୍ନ ଭୂଭାଗକୁ ବିଧୌତ କରି ଦେଉଅଛି । ବାରିରାଶିର ତରଙ୍ଗକୋଳାହଳ ଚତୁର୍ଦ୍ଦିଗରେ ଯେଉଁ ଗାମ୍ଭୀର୍ଯ୍ୟର ସୃଷ୍ଟି କରିଅଛି, ଶିବମନ୍ଦିରର ବିରାଟ ମୂର୍ତ୍ତି ତାହାକୁ ଅଧିକ ଗମ୍ଭୀର କରି ଦେଉଅଛି । ଯୋଗେଶ୍ୱରଙ୍କର ଏହି ଅଭ୍ରଭେଦୀ ପ୍ରାଚୀନ ମନ୍ଦିର ପ୍ରାୟ ସହସ୍ର ବର୍ଷର ହିନ୍ଦୁଧର୍ମର ଶାନ୍ତିମୟ ଇତିହାସ ବକ୍ଷରେ ଧାରଣ କରି ଅନନ୍ତ ଜଳଧିର ଉତ୍କୂଳ ବିରାଟ ରୂପରେ ସମୁଦ୍ରଗର୍ଭରେ ଦଣ୍ଡାୟମାନ ରହିଅଛି । ଏହାର ମହାନ୍ ସୌନ୍ଦର୍ଯ୍ୟ ଦର୍ଶନ କରି ଭାରତବାସୀ ଲକ୍ଷ ଲକ୍ଷ ଶୈବଙ୍କ ପ୍ରାଣ ଆନନ୍ଦରେ ଉଦ୍ବେଳିତ ହୋଇ ଉଠେ । ଆମ୍ଭେମାନେ ଅପୌତ୍ତଳିକ । ମାତ୍ର ଭାବର ଆବେଶରେ ଏହି ପ୍ରାଚୀନ କୀର୍ତ୍ତିର ଦ୍ୱାରଦେଶରେ ମସ୍ତକ ଅବନତ ନ କରି ରହି ପାରିଲୁଁ ନାହିଁ ।

ବିଭିନ୍ନ ଦେଶର ମନ୍ଦିରନିର୍ମାଣପ୍ରଣାଳୀ ବିଭିନ୍ନ

ପ୍ରକାର । ଭାରତବର୍ଷରେ ଏହା ଯେଉଁ ବୈଚିତ୍ର୍ୟର ସୃଷ୍ଟି କରିଅଛି ତାହା ବର୍ତ୍ତମାନ ପଶ୍ଚିମଦେଶୀୟ ଶିଳ୍ପୀମାନଙ୍କର ଦୃଷ୍ଟି ଆକର୍ଷଣ କରୁଅଛି ଏବଂ ଭବିଷ୍ୟତରେ ମଧ୍ୟ କରିବ । କାଳୀ-ଘାଟର କାଳୀ ମନ୍ଦିର ପୁରୀର ଜଗନ୍ନାଥ ଦେବଙ୍କ ମନ୍ଦିରଠାରୁ ସମ୍ପୂର୍ଣ୍ଣ ବିଭିନ୍ନ । ପୁଣି ଓଡ଼ିଶାର କାରୁ-କାର୍ଯ୍ୟର ଅତ୍ୟୁଜ୍ଜ୍ୱଳ ନିଦର୍ଶନ ଭୁବନେଶ୍ୱରର ଉଚ୍ଚ ମନ୍ଦିର ସହିତ ଦାକ୍ଷିଣାତ୍ୟର ମିନାକ୍ଷୀ ଦେବୀଙ୍କ ମନ୍ଦିର, ରଙ୍ଗଜୀଙ୍କ ମନ୍ଦିର କିମ୍ବା ରାମେଶ୍ୱର ମନ୍ଦିରର ତୁଳନା କଲେ, କି ଗଠନପ୍ରଣାଳୀ, କି କାରୁକାର୍ଯ୍ୟ କାହିଁରେ ସାଦୃଶ୍ୟ ମିଳିବ ନାହିଁ । ଦାକ୍ଷିଣାତ୍ୟର ମନ୍ଦିରଗୁଡ଼ିକ ସମ୍ପୂର୍ଣ୍ଣ ବିଭିନ୍ନ ପ୍ରକାର । ଗୋଟିଏ ଗୋଟିଏ ମନ୍ଦିର ଗୋଟିଏ ଗୋଟିଏ କ୍ଷୁଦ୍ର ପଲ୍ଲୀଗ୍ରାମପରି । ବିଭିନ୍ନ ପ୍ରାଙ୍ଗଣର ସମା-ବେଶରେ ଏହାର ଅପୂର୍ବତା ଅତ୍ୟନ୍ତ ବୃଦ୍ଧି ଲଭି-ଅଛି । ସର୍ବବହିସ୍ଥ ପ୍ରାଚୀର ପରେ ପ୍ରଥମ ପ୍ରାଙ୍ଗଣ । ତତ୍ପରେ ପୁଣି ପ୍ରାଚୀର—ପୁଣି ପ୍ରାଙ୍ଗଣ । ଶ୍ରୀରଙ୍ଗମର ରଙ୍ଗଜୀଙ୍କ ମନ୍ଦିର ଏହିପରି ସାତୋଟି ପ୍ରାକାରରେ ସନ୍ନିବିଷ୍ଟ ସାତୋଟି ପ୍ରାଙ୍ଗଣର ସମଷ୍ଟି । ଏହି ସବୁ ପ୍ରାଙ୍ଗଣର କେନ୍ଦ୍ରସ୍ୱରୂପ ଦେବ-ମନ୍ଦିର ବିରାଜମାନ । ପ୍ରତ୍ୟେକ ପ୍ରାକାରର ଚତୁର୍ଦ୍ଦିଗରେ ଚାରୋଟି ସମୁଚ୍ଚ ଗୋପୁରମ୍ । ଗୋପୁରମ୍‌ର ଆକୃତି ଚତୁଷ୍କୋଣ ଏବଂ ତାହା ସୁପ୍ରଶସ୍ତ ମୂଳଦେଶଠାରୁ କ୍ରମାନ୍ୱୟ ସୂକ୍ଷ୍ମ ହୋଇ ଉଠିଅଛି । ଏହି ସବୁ ଗୋପୁରମ୍‌ର ସର୍ବାଙ୍ଗରେ ପ୍ରସ୍ତରନିର୍ମିତ ଅସଂଖ୍ୟ ଦେବ ଦେବୀଙ୍କ ମୂର୍ତ୍ତି । ଏହି ସବୁ ମୂର୍ତ୍ତି ସର୍ବତ୍ର ବହୁ ପୌରାଣିକ ଆଖ୍ୟାୟିକାର ପ୍ରତିକୃତିସ୍ୱରୂପ । ପ୍ରତ୍ୟେକ ମନ୍ଦିରର ଅଭ୍ୟନ୍ତରରେ ସ୍ତମ୍ଭପରିବେଷ୍ଟିତ । ଅସଂଖ୍ୟ ଗୃହ ଏବଂ ପ୍ରତ୍ୟେକ ମନ୍ଦିରରେ ଗୋଟିଏ ଲେଖାଏ ପ୍ରସ୍ତରବିନିବଦ୍ଧ ସରୋବର ଅଛି । ରାମେଶ୍ୱର ମନ୍ଦିରର ସୁଦୃଢ଼ ବହିର୍ଦ୍ୱାର ଅତିକ୍ରମ କଲେ ଦୁଇ ପାର୍ଶ୍ୱରେ ଅନେକ ଦୋକାନ ଦେଖା ଯାଏ । ଏହି ସବୁ ଦୋକାନରେ ବିବିଧ ପ୍ରକାର ଶାମୁକା, କଉଡ଼ି, ଶଙ୍ଖ ଓ ନାରକେଳ ପତ୍ରନିର୍ମିତ ନାନା ରଙ୍ଗର ଓ ନାନା ଆକାରର ଛୋଟ ବଡ଼ ପେଟରା, ଦାକ୍ଷିଣାତ୍ୟର ବିଭିନ୍ନ ଦେବମନ୍ଦିରର ଓ ତଦବସ୍ଥିତ ଦେବଦେବୀଙ୍କର ଛବିମାନ ବିକ୍ରୟାର୍ଥ ପ୍ରସ୍ତୁତ ଥାଏ । ଏହାଗୁଡ଼ିକ ଭିତରେ ଟିକିଏ ଅଗ୍ରସର ହେଲେ ଦେଖା ଯାଏ, ପଥଟି ଚତୁଷ୍ପାର୍ଶ୍ୱରେ ଚାରୋଟି ଶାଖାରେ ବିଭକ୍ତ ହୋଇ ଅଛି । ଊର୍ଦ୍ଧ୍ୱରେ ନାନା କାରୁକାର୍ଯ୍ୟମୟ ଛାତ ଏବଂ ନିମ୍ନରେ ଧାଡ଼ି ଧାଡ଼ି ପ୍ରସ୍ତର ସ୍ତମ୍ଭମାନ ଦଣ୍ଡାୟମାନ । ଏହି ସବୁ ସ୍ତମ୍ଭର ଦେହରେ ନାନା ପ୍ରକାର ଦେବ ଦେବୀଙ୍କର ପ୍ରସ୍ତର ମୂର୍ତ୍ତି ଛାତ ପର୍ଯ୍ୟନ୍ତ ସ୍ପର୍ଶ କରି-ଅଛି । ଏହି ସ୍ତମ୍ଭଶ୍ରେଣୀପରିବଦ୍ଧ ପଥମଧ୍ୟରୁ ଗୋଟିକର ଦୈର୍ଘ୍ୟ ୬୭୯ ଫୁଟ ଏବଂ ତାହାର ଉଭୟ ପାର୍ଶ୍ୱରେ କାରୁକାର୍ଯ୍ୟଖଚିତ ଏକଶହ ଷାଠିଏଟି ପ୍ରସ୍ତରସ୍ତମ୍ଭ ଦଣ୍ଡାୟମାନ ରହିଅଛି । ଏହି ସମସ୍ତ ପଥର (Colonnade) ମଧ୍ୟ ଭାଗରେ ଦଣ୍ଡାୟମାନ ହୋଇ ଚତୁର୍ଦ୍ଦିଗ ଅବଲୋକନ କଲେ ଯେଉଁ ଅପୂର୍ବ ଦୃଶ୍ୟ ନୟନପଥରେ ପତିତ ହୁଏ ତାହା ବୋଧ ହୁଏ ଦିଲ୍ଲୀର ବାଦସାହଙ୍କ ଦରବାରଗୃହ ସଙ୍ଗରେ ସ୍ପର୍ଦ୍ଧା କରି ପାରେ । ପୂର୍ବ ଓ ଦକ୍ଷିଣ ଦିଗର ପଥର ସଂଯୋଗସ୍ଥଳରେ ଗୋଟିଏ କ୍ଷୁଦ୍ର ସରୋବର । ତାହାର ଚତୁର୍ଦ୍ଦିଗରେ ସ୍ତମ୍ଭପରିବେଷ୍ଟିତ ଗୃହ । ଏହି ସବୁ ଗୃହର କାନ୍ଥରେ ଓ ଛାତରେ ରାମାୟଣବର୍ଣ୍ଣିତ ଅନେକ ଘଟଣାର ଦୃଶ୍ୟାବଳୀ ଚିତ୍ରିତ ରହିଅଛି । ଏହି ସବୁ ଦୃଶ୍ୟ କଦାକାର ନୁହେ । ଅନେକ ସ୍ଥଳରେ ତହିଁରେ ବିଶେଷ ଶିଳ୍ପସୌନ୍ଦର୍ଯ୍ୟ ପରିସ୍ଫୁଟ ହୋଇଅଛି । ଭାରତବର୍ଷର ସମସ୍ତ ତୀର୍ଥର ନିଦର୍ଶନ ସ୍ୱରୂପ ମନ୍ଦିରାଭ୍ୟନ୍ତରରେ ସ୍ଥାନେ ସ୍ଥାନେ କୂପ ଖନନ କରା ହୋଇଅଛି, ତନ୍ମଧ୍ୟରୁ କାହାର ନାମ ଗଙ୍ଗା, କାହାର ନାମ ଯମୁନା ଇତ୍ୟାଦି । ଏହି ସବୁ କୂପୋଦକରେ ସ୍ନାନ କରିବା ପରମ ପୁଣ୍ୟ-ଜନକ କାର୍ଯ୍ୟ ବୋଲି ବିବେଚିତ ହୁଏ । ଉତ୍ତର ଦିଗର ପଥରେ ଯେତେଦୂର ଅଗ୍ରସର ହୋଇ

ଦକ୍ଷିଣ ଅନ୍ତର ବାଙ୍କ ପାର ହେଲେ ଶିବ ମନ୍ଦିର । ମନ୍ଦିରର ସମ୍ମୁଖରେ ଏକ ପର୍ବତପ୍ରମାଣ ବୃଷ ଉତ୍ଥାନୋନ୍ମୁଖ ହୋଇ ମହାଦେବଙ୍କ ପାଇଁ ଅପେକ୍ଷା କରୁଅଛି । ତାହାର ସମ୍ମୁଖରେ ସ୍ୱର୍ଣ୍ଣମଣ୍ଡିତ ପତାକାସ୍ତମ୍ଭ ଛାତ ଭେଦ କରି ଦଣ୍ଡାୟମାନ ରହିଅଛି ।

ଆମ୍ଭେମାନେ ଅନ୍ତରରେ ଶ୍ରଦ୍ଧା ଓ ଭକ୍ତି ଘେନି ମନ୍ଦିରାଭ୍ୟନ୍ତରରେ ପ୍ରବେଶ କଲୁଁ । ଦାକ୍ଷିଣାତ୍ୟର ସମସ୍ତ ମନ୍ଦିରର ଦେବାଧିଷ୍ଠାନ ସ୍ଥଳ ଗାଢ଼ ଅନ୍ଧକାରରେ ଆବୃତ । ସମସ୍ତ ଦିବା ରାତ୍ରି ସେଠାରେ ଆଲୋକମାଳା ପ୍ରଜ୍ୱଳିତ ଥାଏ । ପଣ୍ଡାମାନେ ହାତ ଧରି ନେଇ ନ ଗଲେ ତାହା ଭିତରେ ପ୍ରବେଶ କରିବା ସମ୍ପୂର୍ଣ୍ଣ ଅସମ୍ଭବ ଓ ବିପଜ୍ଜନକ । ଆମ୍ଭେମାନେ ପ୍ରଦୀପାଲୋକରେ ଦକ୍ଷିଣ ପାର୍ଶ୍ୱରେ ରାମ, ଲକ୍ଷ୍ମଣ ଓ ସୀତା ଦେବୀଙ୍କର ମୂର୍ତ୍ତି ଦେଖିଲୁଁ । ସୀତା ଦେବୀଙ୍କର ପାଦମୂଳରେ ଭକ୍ତ ହନୁମାନ୍ ଯୁକ୍ତକରରେ ଅବସ୍ଥାନ କରୁଅଛନ୍ତି । ଏହି ମନ୍ଦିରରେ ଦୁଇଟି ଶିବ ମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛି । ତନ୍ମଧ୍ୟରୁ ଗୋଟିକର ନାମ ରାମଲିଙ୍ଗମ୍ ଏବଂ ଅପରଟିର ନାମ ବିଶ୍ୱ-ଲିଙ୍ଗମ୍ । ଏ ସମ୍ବନ୍ଧରେ ଯେଉଁ ଇତିହାସ ଅଛି ତାହା ନିମ୍ନରେ ବର୍ଣ୍ଣିତ ହେଲା ।

ଶ୍ରୀରାମଚନ୍ଦ୍ର ସୀତା ଉଦ୍ଧାର କରି ସ୍ୱଗୃହାଭିମୁଖରେ ପ୍ରତ୍ୟାବର୍ତ୍ତନ କରିବା କାଳରେ ଏହି ସ୍ଥାନରେ ଶିବାରାଧନା କରିବାର ମାନସ କରିଥିଲେ । ତଦୁଦ୍ଦେଶ୍ୟରେ କାଶୀଧାମସ୍ଥ ବାଣଲିଙ୍ଗମ୍ ନାମକ ଶିବଙ୍କୁ ଆନୟନ କରିବା ନିମିତ୍ତ ହନୁମାନ୍ ପ୍ରେରିତ ହୋଇଥିଲେ । ଏହି ଉପଲକ୍ଷରେ କାଶୀରେ ହନୁମାନ୍ ଓ ଶିବଶିଷ୍ୟ କାଳଭୈରବଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ହୋଇଥିଲା । ଅବଶେଷରେ ସ୍ୱୟଂ ବିଶ୍ୱେଶ୍ୱର ମଧ୍ୟବର୍ତ୍ତୀ ହୋଇ ମୀମାଂସା କରି ଦେଇଥିଲେ ଏବଂ ହନୁମାନ୍ ବାଣଲିଙ୍ଗଙ୍କୁ ରାମେଶ୍ୱରକୁ ଆଣିଥିଲେ । କିନ୍ତୁ ହନୁମାନଙ୍କ ପ୍ରତ୍ୟାବର୍ତ୍ତନରେ ଅତ୍ୟଧିକ ବିଳମ୍ବ ହେବାରୁ ଶ୍ରୀରାମଚନ୍ଦ୍ର କ୍ଷୁତ୍ପିପାସାରେ ଅତ୍ୟନ୍ତ କାତର ହୋଇ ପଡ଼ିଲେ । ପତିଦୁଃଖକାତରା ଜାନକୀ ଏହାର ଉପାୟ ବିଧାନ କରିବା ପାଇଁ ସ୍ୱହସ୍ତରେ ବାଲୁକାକଣାଦ୍ୱାରା ଏକ ଶିବମୂର୍ତ୍ତି ନିର୍ମାଣ କରିଥିଲେ । ରାମଚନ୍ଦ୍ର ସ୍ୱପତ୍ନୀନିର୍ମିତ ଶିବଲିଙ୍ଗମ୍ ପ୍ରତିଷ୍ଠିତ କରି ପୂଜା ଶେଷ କରି ନେଲେ । ଇତ୍ୟବସରେ ହନୁମାନ୍ ମଧ୍ୟ ବାଣଲିଙ୍ଗ ସମଭିବ୍ୟାହାରରେ ଶ୍ରୀରାମଚନ୍ଦ୍ରଙ୍କ ସମ୍ମୁଖରେ ଉପସ୍ଥିତ ହେଲେ । ସେତେବେଳେ ରାମଚନ୍ଦ୍ର ଅନନ୍ୟୋପାୟ ହୋଇ ସେହି ବାଣଲିଙ୍ଗଙ୍କୁ ମଧ୍ୟ ବିଶ୍ୱଲିଙ୍ଗ ନାମ ଦେଇ ପ୍ରତିଷ୍ଠିତ କଲେ । ତଦବଧି ରାମେଶ୍ୱର ମନ୍ଦିରରେ ଦୁଇଟି ଶିବମୂର୍ତ୍ତି ବିରାଜମାନ ଅଛନ୍ତି ।

ମନ୍ଦିରର ପୂର୍ବ ଦିଗରେ ଅନତିଦୂରରେ ସମୁଦ୍ର । ଆମ୍ଭେମାନେ ତାହାର ବେଳାଭୂମିସ୍ଥ ପ୍ରସ୍ତରଘାଟ ତରଙ୍ଗଗର୍ଭରେ ନିମଜ୍ଜିତ ହୋଇ ବଙ୍ଗୋପସାଗରର ପୁଣ୍ୟ ସଲିଳରେ ଅଭିଷିକ୍ତ ହେଲୁଁ । ବାଲୁକାମୟ ତୀରଭାଗରୁ ନାନାପ୍ରକାର ପ୍ରବାଳ, ଶୁକ୍ତି, ଶଙ୍ଖ, କଉଡ଼ି ଓ ପୁରୁଭୁଜ ପରି ଏକପ୍ରକାର ସାମୁଦ୍ରିକ ଜୀବ ସଂଗ୍ରହ କରି ପୁନରାୟ ମନ୍ଦିରକୁ ପ୍ରତ୍ୟାବର୍ତ୍ତନ କଲୁଁ । ଗୋଟିକାଏ ପଣ୍ଡା ପିଲା ଆମ୍ଭମାନଙ୍କୁ ଉପରୋକ୍ତ କାର୍ଯ୍ୟରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ତନ୍ମଧ୍ୟରୁ ଗୋଟିଏ ୧୦ ବର୍ଷର ବାଳକର ଇଂରାଜୀ ଭାଷାରେ କଥାବାର୍ତ୍ତା ଶୁଣି ଆମ୍ଭେମାନେ ଟିକିଏ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲୁଁ ।

ରାମେଶ୍ୱର ମନ୍ଦିରର ବନ୍ଦୋବସ୍ତ କାର୍ଯ୍ୟ ବର୍ତ୍ତମାନ ଗୋଟିଏ ବୋର୍ଡ଼ ଅବ୍ ଟ୍ରଷ୍ଟି ଉପରେ ନ୍ୟସ୍ତ ଅଛି । ଏହି ବୋର୍ଡ ଦ୍ୱାରା ନିଯୁକ୍ତ ଗୁମାସ୍ତା ଓ କିରାଣୀମାନେ ସମସ୍ତ କାର୍ଯ୍ୟର ତତ୍ତ୍ୱାବଧାନ କରନ୍ତି । ରାମନାଦର କଲେକ୍ଟର ବର୍ଷଶେଷରେ ଏହାର ହିସାବ ପରୀକ୍ଷା କରନ୍ତି । ପୁରୋହିତମାନେ ଏହି ବୋର୍ଡ଼ର ବେତନଭୋଗୀ ଅଟନ୍ତି ।

କୌଣସି ଯାତ୍ରୀ ପୂଜା ଦେବାକୁ ଇଚ୍ଛା କଲେ ତାହାର ପ୍ରଦତ୍ତ ଅର୍ଥରେ ଗୁମାସ୍ତା ନିକଟରୁ ଖଣ୍ଡିଏ ଟିକଟ ଗ୍ରହଣ କରିବାକୁ ପଡ଼େ । ସେହି ଟିକଟଖଣ୍ଡିକ ମନ୍ଦିରର ଛତ୍ରସାମନ୍ତ ଭାରପ୍ରାପ୍ତ ପୁରୋହିତ ହସ୍ତରେ ପ୍ରଦାନ କଲା ମାତ୍ରକେ ସେ ନିର୍ଦ୍ଦିଷ୍ଟ ମୂଲ୍ୟର ଦ୍ରବ୍ୟ ଭୋଗ ଦେଇଥାନ୍ତି । ପୂଜା ଟିକଟର ମୂଲ୍ୟ ଗଭର୍ଣ୍ଣମେଣ୍ଟ ନିର୍ଦ୍ଦିଷ୍ଟ କରି ଦେଇଅଛନ୍ତି । ଥରକ ଅର୍ଚ୍ଚନାର ମୂଲ୍ୟ ପାଞ୍ଚଅଣା, ସହସ୍ରନାମ ଏକ ଟଙ୍କା, କଳ୍ପିତ ଗଙ୍ଗୋଦକମ୍ ଏକ ଟଙ୍କା ବାର ଅଣା । ଭୋଗପାଇଁ ଯାତ୍ରିମାନେ ଯାହାର ଯାହା ଇଚ୍ଛା ଦେଇ ପାରନ୍ତି । ବିଶେଷ ଏତିକି ଯେ ଭୋଗ ପାଇଁ ପ୍ରଦତ୍ତ ଟଙ୍କାରୁ ଅର୍ଦ୍ଧେକ ବୋର୍ଡ କାଟି ରଖିବେ । ବାକି ଅର୍ଦ୍ଧେକଦ୍ୱାରା ଭୋଗଦ୍ରବ୍ୟ କ୍ରୟ କରାଯିବ । ଭୋଗ ପ୍ରସ୍ତୁତ ହେଲେ ତହିଁରୁ ମଧ୍ୟ ଅର୍ଦ୍ଧେକ ମନ୍ଦିରର ପୁରୋହିତ ଓ ଭୃତ୍ୟଗଣଙ୍କ ସକାଶେ ରଖାଯିବ, ବାକି ଅର୍ଦ୍ଧେକ ଅର୍ଥାତ୍ ସମଗ୍ର ଭୋଗର ଏକ ଚତୁର୍ଥାଂଶ ଦାତାଙ୍କ ଇଚ୍ଛା ଅନୁସାରେ ବ୍ରାହ୍ମଣ ଓ ଦରିଦ୍ରମାନଙ୍କୁ ବିତରଣ କରାଯିବ । ଏହି ପ୍ରକାରେ ସଂଗୃହୀତ ଅର୍ଥଦ୍ୱାରା ପୁରୋହିତମାନଙ୍କୁ ବେତନ ପ୍ରଦାନ, ମନ୍ଦିର ସଂସ୍କାର ଓ ପ୍ରୟୋଜନ ଅନୁସାରେ ନୂତନ ଗଠନ ଏବଂ ମନ୍ଦିରର ଯାତ୍ରା (ପର୍ବୋପଲକ୍ଷରେ ନାନା ଅନୁଷ୍ଠାନ ଓ ଆମୋଦ ପ୍ରମୋଦ) ନିର୍ବାହିତ ହୋଇଥାଏ । ମହାରାଜଙ୍କ ପାଇଁ ତାଙ୍କ ପ୍ରଦତ୍ତ ମୂଲ୍ୟରେ ଖଣ୍ଡିଏ ଟିକଟ କିଣିଲୁଁ । ଆମ୍ଭେମାନେ ନିଜ ପାଇଁ ମଧ୍ୟ ଖଣ୍ଡିଏ କିଣିଲୁଁ । ଶେଷୋକ୍ତ କଥା ଶୁଣି ବନ୍ଧୁମାନେ ଆମ୍ଭମାନଙ୍କୁ ନିତାନ୍ତ କପଟାଗ୍ରସ୍ତ ବୋଲି ମନେ କରି ପାରନ୍ତି । କିନ୍ତୁ ଆମ୍ଭମାନଙ୍କ ପକ୍ଷ ସମର୍ଥନ ପାଇଁ ଯୁକ୍ତି ଅଛି । ଆମ୍ଭମାନଙ୍କ ସ୍ୱର୍ଗାଦପି ଗରୀୟସୀ ଜନନୀ ଦେବୀ ଜଣେ ନିଷ୍ଠାବତୀ ହିନ୍ଦୁମହିଳା । ସେ ଦେବଦେବୀ ପୂଜା ଓ ତୀର୍ଥଦର୍ଶନରେ ପରମ ଆନନ୍ଦ ଓ ଶାନ୍ତି ଅନୁଭବ କରନ୍ତି । ହିନ୍ଦୁର ସର୍ବଶ୍ରେଷ୍ଠ ତୀର୍ଥ ଜଗନ୍ନାଥ ଧାମରେ ସେ ଆମ୍ଭମାନଙ୍କ ପରି ମ୍ଲେଚ୍ଛ (ଅବଶ୍ୟ ତାଙ୍କ ଦୃଷ୍ଟିରେ) ସହିତ ଏକତ୍ର ଆହାର କରି ଯେଉଁ ଆନନ୍ଦ ଅନୁଭବ କରିଅଛନ୍ତି ତାହା ଏ ଜଗତରେ ଦୁର୍ଲଭ । ଆମ୍ଭମାନଙ୍କର ଯାହା କଳ୍ପନାର ସୁଦ୍ଧା ଅଗୋଚର ଥିଲା, ତାହା ସେହି ଚିରସ୍ମରଣୀୟ ପୁଣ୍ୟ ଦିବସରେ ପ୍ରତ୍ୟକ୍ଷ କରିବା ପରେ ପୁଣ୍ୟକ୍ଷେତ୍ର ଆମ୍ଭମାନଙ୍କ ନିକଟରେ ମଧ୍ୟ ପରମ ପବିତ୍ରଧାମରେ ପରିଣତ ହୋଇଅଛି । ସେହିସବୁ ତୀର୍ଥ ଦର୍ଶନ କରିବାକୁ ସମର୍ଥ ହେଲେ ତାହାଙ୍କ ମତରେ ସେ ପୁନର୍ଜନ୍ମରୁ ମୁକ୍ତ ହୋଇ ପାରନ୍ତେ । ତାଙ୍କର ବୟସ ଓ ଶରୀରର ଅବସ୍ଥା ତାହାଙ୍କୁ ବର୍ତ୍ତମାନ ସର୍ବତୀର୍ଥ ପର୍ଯ୍ୟଟନର ସୁଖ ଶାନ୍ତିରୁ ବଞ୍ଚିତ କରି ରଖିଅଛି । ଏଥିପାଇଁ ଆମ୍ଭେମାନେ ଯେତେବେଳେ ଯେଉଁ ତୀର୍ଥ ଦର୍ଶନ କରିବାକୁ ଯାଉଁ, ସେଠାରେ ସେ ପରମାରାଧ୍ୟା ସ୍ୱଧର୍ମପରାୟଣା ମାତୃଦେବୀଙ୍କ ନାମରେ ପୂଜା ପ୍ରଦାନ କରିଥାଉଁ । ଏହି କଥା ଶୁଣି ତାହାଙ୍କ ମନରେ ଯେଉଁ ଆନନ୍ଦ ହୁଏ ଏବଂ ତାହାଙ୍କ ନିକଟରୁ ଆମ୍ଭେମାନେ ଯେଉଁ ଆଶୀର୍ବାଦ ଲାଭ କରୁଁ ତାହାର ମୂଲ୍ୟ ଆମ୍ଭମାନଙ୍କ ନିକଟରେ ସମସ୍ତ ଦର୍ଶନ ଶାସ୍ତ୍ରର ମୀମାଂସା ଅପେକ୍ଷା ସହସ୍ର ଗୁଣରେ ଅଧିକ । ନିଷ୍ଠାବାନ୍ ହେନ୍‌ରି ଗ୍ରିଫଥ ଭକ୍ତିରେ ଗଦ୍‌ଗଦ ହୋଇ ପୂଜା ଅର୍ଚ୍ଚନା ନିଷ୍ପନ୍ନ କଲେ । ଆମ୍ଭେମାନେ ପୂଜାବସାନରେ ପ୍ରବାସ-ଭବନକୁ ପ୍ରସ୍ଥାନ କଲୁଁ ।

ଇତଃପୂର୍ବେ ବର୍ଣ୍ଣିତ ହୋଇଅଛି, ସର୍ବ ପ୍ରଥମେ ଶ୍ରୀରାମଚନ୍ଦ୍ର ରାମେଶ୍ୱରଠାରେ ଶିବଲିଙ୍ଗ ସ୍ଥାପନ କରିଥିଲେ । କଥିତ ଅଛି ବହୁବର୍ଷ ପରେ କେତେକ ପରିବ୍ରାଜକ ସନ୍ନ୍ୟାସୀ ଏହି ସ୍ଥାନରେ ଉପନୀତ ହୋଇ ଦେଖିଲେ ଯେ ଗୋଟିଏ ଦୁଗ୍ଧବତୀ ଧେନୁ ଗୋଟିଏ ବଣବୁଦା (Bush) ପାଖରେ ଛିଡ଼ା ହୋଇ ଦୁଗ୍ଧ ପ୍ରଦାନ କରୁଅଛି । ଏହି ଆଶ୍ଚର୍ଯ୍ୟ-ଜନକ ଘଟଣା ସେମାନଙ୍କ ମନରେ କୌତୂହଳର ଉଦ୍ରେକ କରି ଦେଲା । ଅନୁସନ୍ଧାନ କରି ଦେଖିଲେ ଯେ ସେହି ବୁଦା ଭିତରେ ଦଣ୍ଡିଏ

ଶିବଲିଙ୍ଗ ସ୍ଥାପିତ ଅଛି । ସେହିମାନେ ପ୍ରଥମେ ସେଠାରେ ଗୋଟିଏ ତୃଣାଚ୍ଛାଦନ ନିର୍ମାଣ କରି ଦେଇଥିଲେ । ଏହି ଘଟନାର ଅଠଶତ ବର୍ଷ ପରେ ସିଂହଳଦ୍ୱୀପର ଅଧିପତି ପରରାଜଶେଖର ରାମେଶ୍ୱର ଦ୍ୱୀପରେ ଉପସ୍ଥିତ ହେଲେ ଏବଂ ନିଜ ବ୍ୟୟରେ ଗ୍ରାନାଇଟ ପ୍ରସ୍ତରଦ୍ୱାରା ବର୍ତ୍ତମାନ ମନ୍ଦିରର ପ୍ରଥମ ପ୍ରାଙ୍ଗଣ (The first court) ନିର୍ମାଣ କରାଇଲେ । କଥିତ ଅଛି ଯେ ଏହି ସମସ୍ତ ପ୍ରସ୍ତର ତ୍ରିଙ୍କମଲ୍ଲୀଠାରୁ ଆଣାଯାଇ ହୋଇଥିଲା । ପରରାଜଶେଖର ଦୁଇଗୋଟି ସୁବୃହତ୍ ହସ୍ତୀଦନ୍ତ ଏହି ମନ୍ଦିରକୁ ପ୍ରଦାନ କରିଥିଲେ । ତାହା ଅଦ୍ୟାପି ଦ୍ରାବିଡ଼ଦେଶର ଦଣ୍ଡାୟମାନ ରହିଅଛି । ସେ ହସ୍ତୀଦନ୍ତନିର୍ମିତ ଦୁଇଗୋଟି ଶିଙ୍ଗା ଦେବତାଙ୍କୁ ଉପଢୌକନ ଦେଇଥିଲେ, ତାହା ମଧ୍ୟ ଅଦ୍ୟାପି ଜଣେ ସ୍ଥାନୀୟ ବାଦ୍ୟକରର ଗୃହରେ ବିଦ୍ୟମାନ ଅଛି । ମନ୍ଦିରର ଦ୍ୱିତୀୟ ପ୍ରାଙ୍ଗଣ ମଦୁରାର ସୁପ୍ରସିଦ୍ଧ ନାୟକ ନରପତିମାନଙ୍କଦ୍ୱାରା ନିର୍ମିତ ହୋଇଥିଲା । ତୃତୀୟ ପ୍ରାଙ୍ଗଣ ଏବଂ ଦେବମନ୍ଦିରର ପ୍ରସ୍ତରସ୍ତମ୍ଭପରିବେଷ୍ଟିତ ପରମ ରମଣୀୟ ପଥ ସବୁ (Colonnades) ରାମନାଦର ଶାସକ ରାଜାମାନଙ୍କଦ୍ୱାରା ନିର୍ମିତ ହୋଇଥିଲା । ଏହି ଶେଷୋକ୍ତ ନରପତିମାନେ ମନ୍ଦିର ସକାଶେ ସୁବିସ୍ତୃତ ଜାଗିର ପ୍ରଦାନ କରିଅଛନ୍ତି । ପ୍ରାୟ ଏକଶତ ଗ୍ରାମ ଏହି ଜାଗିରର ଅନ୍ତର୍ଗତ । ରାମେଶ୍ୱର ମନ୍ଦିରର ଗୋପୁରମ୍‌ମାନଙ୍କର ସର୍ବାଙ୍ଗରେ ସନ୍ନିବିଷ୍ଟ ଅଧିକାଂଶ ପ୍ରସ୍ତରମୂର୍ତ୍ତି ରାଯସର୍ଣ୍ଣ ବାନରଙ୍କର ଛବି । ଦେବ ଦେବୀଙ୍କର ଛବିର ସଂଖ୍ୟା ଅନ୍ୟାନ୍ୟ ମନ୍ଦିରମାନଙ୍କ ତୁଳନାରେ ବିରଳ ।

ଆମ୍ଭେମାନେ ଅପରାହ୍ଣ ଗୋଟା ବେଳେ ରାମେଶ୍ୱର ପରିତ୍ୟାଗ କରି ପାମ୍ବାନାଭିମୁଖରେ ରମାନା ହେଲୁଁ । ଆମ୍ଭମାନଙ୍କର ଦାକ୍ଷିଣାତ୍ୟ ଭ୍ରମଣ ଏଠାରେ ଶେଷ ହେଲା । କିଯଦ୍ଦୂର ଅଗ୍ରସର ହୋଇ ଲକ୍ଷ୍ମଣକୁଣ୍ଡନାମକ ପୁଷ୍କରଣୀ ଦେଖିଲୁଁ । ଏହାର ଚତୁର୍ଦ୍ଦିଗ ପ୍ରସ୍ତରରେ ବନ୍ଧା । ଜଳାଶୟର ମଧ୍ୟସ୍ଥଳରେ ଗୋଟିଏ ସୁନ୍ଦର ପ୍ରସ୍ତରନିର୍ମିତ ମନ୍ଦିର । ରାମେଶ୍ୱରଠାରୁ ପାମ୍ବାନ ପର୍ଯ୍ୟନ୍ତ ମାର୍ଗର ଦୁଇ ପାର୍ଶ୍ୱରେ ଅନେକ ଦେବାଳୟ ଓ ଛତ୍ରମ୍ ଅଛି । ଦାକ୍ଷିଣାତ୍ୟର ରାଜନ୍ୟବୃନ୍ଦ ତୀର୍ଥଗାମିମାନଙ୍କ ସୁବିଧା ପାଇଁ ଏହି ସବୁ ଛତ୍ରମ୍ ନିର୍ମାଣ କରି ଦେଇଅଛନ୍ତି । ଆମ୍ଭମାନଙ୍କ ଗୋଶକଟଶ୍ରେଣୀ ଦ୍ରୁତ ବେଗରେ ଧାବିତ ହେଲା ଏବଂ କିଛି ଦୂର ଯାଇ ମହାରାଜଙ୍କ ଯାନଶ୍ରେଣୀକୁ ପଶ୍ଚାତରେ ପକାଇ ଦେଇ ଅଗ୍ରସର ହେବାକୁ ଲାଗିଲା । ଆମ୍ଭେମାନେ ଶକଟଚାଳକକୁ ମହାରାଜଙ୍କ ପଶ୍ଚାତରେ ରହିବାକୁ ଦୁଇ ତିନି ଥର ଆଦେଶ ଦେଲୁଁ । ପୁନରାୟ ଯେତେବେଳେ ସେ ଅଗ୍ରବର୍ତ୍ତୀ ହେଲା ସେତେବେଳେ ଆମ୍ଭମାନଙ୍କ ସହଯାତ୍ରୀ ହେନ୍ଦୁଅରର ବଡ଼କୁମାର ବାବୁ ଶ୍ରୀ ବାସୁଦେବ ଭଞ୍ଜ ଦେଓ ତାହାକୁ ଟିକିଏ କଠୋର ସ୍ୱରରେ ବାକ୍ୟରେ ଧମକ ଦେଲେ । ଶକଟଚାଳକ ସେତେବେଳେ କ୍ରୋଧାନ୍ୱିତ ହୋଇ ଇଂରାଜୀ ଭାଷାରେ ବଡ଼କୁମାର ବାବୁଙ୍କ ପ୍ରତି ଦେତେକ କର୍କଶ ବାକ୍ୟ ପ୍ରୟୋଗ କଲା । ସେ ବଡ଼କୁମାର ବାବୁଙ୍କ ଭାଷା ବୁଝି ନ ପାରିଲେ ସୁଦ୍ଧା ଭାବରୁ ବୁଝି ପାରି ଥିଲେ ଯେ ତାହାକୁ ଗାଳି ଦିଆ ହୋଇଅଛି । ଆମ୍ଭେମାନେ ତାହାର କର୍କଶ ବାକ୍ୟପ୍ରୟୋଗରେ ଅତ୍ୟନ୍ତ ବିରକ୍ତ ହେଲୁଁ । କିନ୍ତୁ ତାହାର ଇଂରାଜୀ ଭାଷା ପ୍ରୟୋଗରେ ତତୋଽଧିକ ବିସ୍ମିତ ହୋଇଥିଲୁଁ । କଥୋପକଥନରେ ଦେଖିଲୁଁ ସେ ବେଶ୍ ପରିଷ୍କୃତ ଇଂରାଜୀ କହି ପାରେ । ପଶ୍ଚାତରେ ଜାଣିଲୁଁ, ଶକଟଚାଳକ ଏହି ବର୍ଷ ମଦୁରାରୁ ପ୍ରବେଶିକା (ମାଟ୍ରିକୁଲେସନ) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛି । ସେ ସେହି ଗାଡ଼ିର ମାଲିକ । ଚାଳକ ଅନୁପସ୍ଥିତ ଥିବାରୁ ନିଜେ ଚଳାଇ ଆଣି ଅଛି । ଅତଃପର ଆମ୍ଭେମାନେ ତାହା ସଙ୍ଗେ ସସ୍ନେହ ଓ ଭଦ୍ର ଭାବରେ କଥାବାର୍ତ୍ତା କରିବାକୁ

ଲାଗିଲୁଁ । ଆମ୍ଭମାନଙ୍କର ପାଶ୍ କରିଥିବା ଶକଟ-ଚାଳକ ଆମ୍ଭମାନଙ୍କୁ ଅନେକ ପ୍ରକାର ପ୍ରକାର ତାମିଲ କବିତା ଓ ତାମିଲ ଗୀତ ଶୁଣାଇଲେ । ଆମ୍ଭମାନଙ୍କ ଦେଶର ଏଣ୍ଟ୍ରାନ୍ସ ପାଶ୍ କରିଥିବା ବାଳକ ଅପେକ୍ଷା ମାନ୍ଦ୍ରାଜ ପ୍ରେସିଡେନ୍ସିର ମେଟ୍ରି-କୁଲେଶନ ପାଶ୍ କରିଥିବା ବାଳକର ଇଂରାଜୀ ଭାଷାରେ ଅଧିକ ଦଖଲ ହୁଏ ଏବଂ ସେ ପ୍ରକାର ଇଂରାଜୀ କହି ପାରେ, ତାହାର ପ୍ରମାଣ ଅନେକ ସ୍ଥାନରେ ପ୍ରାପ୍ତ ହୋଇଅଛୁଁ । ସନ୍ଧ୍ୟା ହୋଇ ଆସିବାର ଦେଖି ଶକଟଚାଳକ ଗୋରୁକୁ ଟିକିଏ ଶୀଘ୍ର ସମୁଦ୍ର କୂଳରେ ଉପସ୍ଥିତ ହେବାକୁ ଅନୁରୋଧ କଲୁଁ । ସେ ସେତେବେଳେ ଏପ୍ରକାର କ୍ଷିପ୍ର ହସ୍ତରେ ଗାଡ଼ି ଚଳାଇଲା ଯେ ସୂର୍ଯ୍ୟ ଅସ୍ତ ନ ହେଉଣୁ ଅମ୍ଭେମାନେ ପାମ୍ବାନଠାରେ ପହଞ୍ଚିଲୁଁ । ଅମ୍ଭେମାନେ ତାହା ନିକଟରୁ ବିଦାୟ ହୋଇ ଏକାବେଳକେ ଛୁଟିଯାଇ ସମୁଦ୍ର କୂଳରେ ଶ୍ରୀରାମଚନ୍ଦ୍ରଙ୍କ ସେତୁ ଉପରେ ଛିଡ଼ା ହେଲୁଁ । ତୀର ଅଡ଼ରୁ ଲହରୀ ଉପରେ ଲହରୀ ଆସି ଆମ୍ଭ-ମାନଙ୍କ ପାଦସଂଲଗ୍ନ ପ୍ରସ୍ତରଗାତ୍ରରେ ମୁଣ୍ଡ ହୋଡ଼-ବାକୁ ଲାଗିଲା । ବିନ୍ଦୁ ବିନ୍ଦୁ ଲବଣାମ୍ବୁ ଛୁଟି ଆସି ଆମ୍ଭମାନଙ୍କ ଚକ୍ଷୁ, ମୁଖ, ଗାତ୍ର ଓ ବସ୍ତ୍ରରେ ପତିତ ହେବାକୁ ଲାଗିଲା । ଅମ୍ଭେମାନେ ପଶ୍ଚିମାଭିମୁଖୀ ହୋଇ ନିସ୍ତବ୍ଧ ଭାବରେ ଦଣ୍ଡାୟମାନ ହୋଇ ରହିଲୁଁ । ଅସ୍ତଗାମୀ ମ୍ଳାନ ସୂର୍ଯ୍ୟର ସହସ୍ର କିରଣ-ରେଖା ଆମ୍ଭମାନଙ୍କ ଚକ୍ଷୁ ଓ ମୁଖରେ ପତିତ ହେଲା । ପାଦମୂଳରେ ନୀଳକାନ୍ତପ୍ରୀ ସେହି ଅକ୍ଷୟ ସେତୁ, ସମ୍ମୁଖରେ ପଶ୍ଚାତରେ ଉତ୍ତାଳ ତରଙ୍ଗମାଳାପରିପୂର୍ଣ୍ଣ ଅପାର ବାରିଧିର ଅସୀମ ଶୋଭା, ସୁଦୂର ଦକ୍ଷିଣରେ ପୁଣ୍ୟଭୂମି ଭାରତବର୍ଷର [illegible] ଉପକୂଳ-ରେଖା, ଊର୍ଦ୍ଧ୍ୱରେ ଗୋଧୂଳିର କ୍ଷୀଣାଲୋକରେ ଧୂସର-ବର୍ଣ୍ଣାଭ ଅନନ୍ତ ଆକାଶ, ଅତି ସୁଦୂର ଦକ୍ଷିଣରେ କଦାପ୍ୟୋନ୍ମୁଖ ଦିନମଣିର ବିଷାଦମଳିନ ସ୍ୱର୍ଣ୍ଣ ମୁଖମଣ୍ଡଳ । ପ୍ରକୃତିର ଏହି ମନୋହାର ସୌନ୍ଦର୍ଯ୍ୟସାଗରରେ ବୁଡ଼ି ଯାଇ ଅମ୍ଭେମାନେ ଏକଦୃଷ୍ଟିରେ ସୂର୍ଯ୍ୟାସ୍ତ ଦେଖିବାକୁ ଲାଗିଲୁଁ । ତପନ ଦେବ ଧୀରେ ଧୀରେ ପଶ୍ଚିମ ଗଗନ ପ୍ରାନ୍ତରେ ଅବତରଣ କରିବାକୁ ଲାଗିଲେ । ଦେଖୁ ଦେଖୁ ତାହାର ସ୍ୱର୍ଣ୍ଣଗୋଲକ ଭାରତ ମହାସାଗରର ଶୁଭ୍ର ଊର୍ମିମାଳା ମଣିମୟ କିରୀଟ ରୂପରେ ବର୍ଣ୍ଣବିମୋହନ ଶୋଭା ସୃଷ୍ଟି କଲା । ନୀଳାମ୍ବୁସାଗରରେ ଧୀରେ ଧୀରେ ଅବଗାହନ କରୁ କରୁ ସହସା ସୂର୍ଯ୍ୟଦେବ ଅନ୍ତର୍ହିତ ହେଲେ, ପଶ୍ଚିମ ପୃଥିବୀ ଆପଣାର ପ୍ରାଣେଶ୍ୱରଙ୍କୁ ସାଗ୍ରହରେ ଅଙ୍କରେ ଧାରଣ କଲା । ତାହାର ଅଧର-ପ୍ରାନ୍ତରେ ସ୍ୱର୍ଣ୍ଣହାସ୍ୟ ଫୁଟି ଉଠିଲା । ପୂର୍ବ ଗଗନରେ ଗୋଧୂଳିର ଅନ୍ଧକାର ଘନ ହୋଇ ଆସିଲା, ସାନ୍ଧ୍ୟ ଗଗନକୁ ପ୍ରତିଧ୍ୱନିତ କରି ବିହଙ୍ଗମ-କଣ୍ଠରେ ପ୍ରକୃତି ଦେବୀଙ୍କର ସୁମଧୁର ଆରତି-ବାଦ୍ୟ ବାଜି ଉଠିଲା । ସମୁଦ୍ରଶୀକରବାହୀ ମୃଦୁଳ ମରୁତ ଆମ୍ଭମାନଙ୍କର ସର୍ବାଙ୍ଗ ଶୀତଳ କରି ଦେଲା । ଅମ୍ଭେମାନେ ଏହିପ୍ରକାରେ ପ୍ରକୃତିର ପୁଣ୍ୟସ୍ଥାନରେ ଅଭିଷିକ୍ତ ହୋଇ ବିଶ୍ୱରଚୟିତାଙ୍କ ଚରଣ ପ୍ରାନ୍ତରେ ମସ୍ତକ ଅବନତ କଲୁଁ ।

ପରଦିନ ପ୍ରାତଃକାଳରେ ସମୁଦ୍ରୋପକୂଳରୁ ବିବିଧପ୍ରକାର ପ୍ରବାଳ, ଶଙ୍ଖ, ଶାମୁକା ସଂଗ୍ରହ କରି ଅମ୍ଭେମାନେ ପୂର୍ବାହ୍ନ ୧୦ଘଣ୍ଟା ସମୟରେ ଷ୍ଟିମର ଆରୋହଣ କଲୁଁ ।

ଶ୍ରୀ ଅନନ୍ତନାରାୟଣ ସେନ ।

## ଗୋଟିଏ ଦିନ ।

'And wherefore do the poor complain ?'
The rich man asked of me,—
'Come, walk abroad with me' I said,
'And I will answer thee'.

*Southey.*

ଜ୍ୟେଷ୍ଠ ମାସର ମଧ୍ୟ ଭାଗ, ଘୋର ଗ୍ରୀଷ୍ମ, କିନ୍ତୁ ହଠାତ୍ ଅପରାହ୍ଣରେ ଆକାଶ ମେଘାଚ୍ଛନ୍ନ ହେଲା, ସୂର୍ଯ୍ୟଦେବଙ୍କର ପ୍ରଚଣ୍ଡତା ହ୍ରାସ ପାଇଗଲା, ମେଘାନ୍ତରାଳରେ ଲୁକ୍କାୟିତ ଥାଇ ସ୍ୱକୃତ ପାପର ପରିଣାମ ଭୋଗ କରୁଅଛନ୍ତି । ଅତି ଦର୍ପର ପତନ ନିଶ୍ଚୟ ଅଛି, ଏହି କଥା ଭାବି ମ୍ରିୟମାଣ ହୋଇ ରହିଅଛନ୍ତି ।

ଜୀବକୁଳ ମଧ୍ୟାହ୍ନର ଯାତନା ଭୋଗ କରି ସନ୍ତପ୍ତ ଚିତ୍ତରେ କାଳ ଯାପନ କରୁଥିଲେ । ବର୍ତ୍ତମାନ ସୁଖ ବୋଧ ହେବାରୁ ଯେ ଯାହା କାର୍ଯ୍ୟରେ ସ୍ୱଚ୍ଛନ୍ଦରେ ନିଯୁକ୍ତ ହେଲେ । ମୁଁ କିନ୍ତୁ କାର୍ଯ୍ୟାଭାବରୁ ଶୂନ୍ୟ ମନରେ ଗୃହରୁ ନିଷ୍କ୍ରାନ୍ତ ହେଲି, ଏଠି ସେଠି ବନ୍ଧୁମାନଙ୍କ ପାଖରେ ଟିକିଏ ଟିକିଏ ଆଳାପ କରି, ଲକ୍ଷ୍ୟହୀନ ଭାବରେ ପୁନଶ୍ଚ ରାଜପଥରେ ବହିର୍ଗତ ହେଲି ।

ଦୁଇ ପାର୍ଶ୍ୱର ବିପଣୀମାନଙ୍କର ଶୋଭା ଦେଖି ଦେଖି କ୍ରମେ କ୍ରମେ ଅଗ୍ରସର ହେଉଥିଲି । ଯାଇ ଯାଇ ଛକ ମୁଣ୍ଡରେ ପହଞ୍ଚିଲି, ମୁହୂର୍ତ୍ତକେ, ପଲକମାତ୍ରକେ ଏକ ଭୀଷଣ ଘୂର୍ଣ୍ଣି ବାୟୁ ଆରମ୍ଭ ହେଲା, ଧୂଳିରାଶିରେ ଆକାଶ ଅନ୍ଧକାରମୟ ହୋଇଗଲା, ପଥିକମାନଙ୍କ ପକ୍ଷରେ ପଦେ ମାତ୍ର ଅଗ୍ରସର ହେବା ସଙ୍କଟରେ ବିପନ୍ନ ହୋଇ ପଡ଼ିଲା । ଝଙ୍କାର ଟିକିଏ କମିଗଲା ଏବଂ ଝିପିରି ଝିପିରି ମେଘ ବର୍ଷିଲା । ବିପଦ ମଣି ଆଶ୍ରୟ ଖୋଜିଲି । ଦେଖିଲି, ସମ୍ମୁଖରେ ଏକ ପ୍ରକାଣ୍ଡ ଦ୍ୱିତଳ ଗୃହ । ଭିତରର ସୌନ୍ଦର୍ଯ୍ୟରାଶି ଦର୍ଶନ କରିବାର ଆକାଂକ୍ଷା ଜାତ ହେଉଥିଲେ ମଧ୍ୟ ତାହା ପୂର୍ଣ୍ଣ କରିବା ସୁକଠିନ ମଣି ଆକାଂକ୍ଷାକୁ ଦମନ କରିବାକୁ ହେଲା । ଇତ୍ୟବସରରେ ଦେଖିଲି, ବାମ ପାର୍ଶ୍ୱରେ ଏକ ସୁନ୍ଦର ହୋଟେଲ, ଦୁଇ ଖଣ୍ଡ କାଷ୍ଠାସନ ଓ ଖଣ୍ଡିଏ ଖଟିଆ ପଡ଼ିଅଛି । ତହିଁରେ ଉକ୍ତ ଦ୍ୱିତଳ-ନିବାସୀ ଧନୀ ସନ୍ତାନଙ୍କ ଦ୍ୱାରପାଳ ସୁସଜ୍ଜିତ ବେଶରେ, ଭୀଷଣ ମୂର୍ତ୍ତିରେ ଦଣ୍ଡାୟମାନ ହୋଇ ଅଛି । ଉକ୍ତ ଗୃହଟି ଗ୍ରୀଷ୍ମ ଓ ବର୍ଷା କାଳରେ ତାହାର ଆଶ୍ରୟ ସ୍ଥାନସ୍ୱରୂପ ନିର୍ଦ୍ଦିଷ୍ଟ ହୋଇ ଅଛି । ସେହି ସ୍ଥାନରେ ଆଶ୍ରୟ ନେବାକୁ ମନ ବଳାଇଲି । କରୁଣ ଦୃଷ୍ଟିରେ ତାହା ଆଡ଼କୁ ଟିକିଏ ଅନାଇଲି । ଅନାଇବା ମାତ୍ରକେ ଏକ ପ୍ରଚଣ୍ଡ ହୁଙ୍କାର ! ଶୁଣିବା ମାତ୍ରକେ ଛାତି ଧଡ଼ ପଡ଼ ହେଲା, ଅଗତ୍ୟା ମୁଖ ଫେରାଇ ସେ ସ୍ଥାନ ତ୍ୟାଗ କରିବାକୁ ଉଦ୍ୟତ ହେଲି । ଇତ୍ୟବସରରେ ମୋହର ପରିଚ୍ଛଦ ସାମାନ୍ୟ ଭାବରେ ଆର୍ଦ୍ର ହୋଇ ଯାଇଅଛି । କେଜାଣି କାହିଁକି, ସଦୟ ହୋଇ ଦ୍ୱାରବାନ୍‌ଟି ପଛରେ ଡାକି ସେଠାରେ ମୋତେ ଆଶ୍ରୟ ଦେଲା, ଉପବେଶନ କରିବାକୁ କାଷ୍ଠାସନ ଖଣ୍ଡିଏ ପାଇଲି । ଦ୍ୱାରପାଳଟିର ନାମ 'ରଘବା', ଲୋକଟି ସରଳାନ୍ତଃକରଣବିଶିଷ୍ଟ, ଉପବେଶନ ମାତ୍ରକେ ଆପଣାର କୀର୍ତ୍ତି, ସାହସ ଓ କାର୍ଯ୍ୟଦକ୍ଷତାର ପରିଚୟ ଦେବାକୁ ଲାଗିଲା, ସ୍ୱପ୍ରଭୁଙ୍କର ତାହା ପ୍ରତି ପ୍ରବଳ ସ୍ନେହର କେତେ ନିଦର୍ଶନ ଦେବାକୁ ଲାଗିଲା, ମୁଁ ସ୍ତିମିତ ଭାବରେ ସବୁ ଶୁଣିବାକୁ ଲାଗିଲି । ଅବିଶ୍ରାନ୍ତ ଭାବରେ ଅସରକୁ ଅସର ମେଘ ବର୍ଷୁଥିବାରୁ ରାଜପଥମାନଙ୍କରେ ଅଣ୍ଟିଏ ଲେଖାଏଁ ପାଣି ଜମି ଗଲାଣି । ମଧ୍ୟେ ମଧ୍ୟେ ଧଡ଼ ଧଡ଼ ଶବ୍ଦ କରି ଖଣ୍ଡିଏ ଖଣ୍ଡିଏ ଜୀର୍ଣ୍ଣ ଶକଟ ଚଳୁଅଛି । ଜନ ପ୍ରାଣୀଙ୍କର ଅନ୍ୟ ବିଶେଷ କୋଳାହଳ ନାହିଁ । କେବଳ ବୃଷ୍ଟିଧାରାର ଝର ଝର ଶବ୍ଦ ଛଡ଼ା ଆଉ କିଛି ଶ୍ରୁତିଗୋଚର ହେଉ

ନ ଥିଲା । କିଛି କାଳ ଏହିପରି ଅତିବାହିତ ହେଲା ପରେ ବର୍ଷା ଟିକିଏ କମି ଗଲା, ଏ ଅଡ଼େ ସେ ଅଡ଼େ ପ୍ରୟୋଜନାନୁସାରେ ଲୋକେ ଯେ ଯାହା କାର୍ଯ୍ୟରେ ଯିବା ଆସିବା କରିବାକୁ ଲାଗିଲେ । ଏମନ୍ତ ସମୟରେ ଗୋଟିଏ ବୃଦ୍ଧା ସ୍ତ୍ରୀ, ଏକ ଅନାଥ ବାଳକ ସହିତ ଆସି ଗୃହ ସମ୍ମୁଖସ୍ଥ ଦେବଦାରୁ ବୃକ୍ଷ ମୂଳରେ ଦଣ୍ଡାୟମାନ ହେଲା । ବାଳକ ମୁଖରେ ଅନବରତ ଏକ କଥା "ବାବା ! ଅଧୁଣୀ ଚୁଡ଼ାକୁ କେତେ ମିଳୁ", ମଧ୍ୟେ ମଧ୍ୟେ ବୃଦ୍ଧାର କାତରୋକ୍ତି । ଦୁହିଁଙ୍କର ଅବସ୍ଥା ଅତ୍ୟନ୍ତ ଶୋଚନୀୟ, ପରିଧେୟ ବସ୍ତ୍ର ଅତ୍ୟନ୍ତ ଜୀର୍ଣ୍ଣ, ମଳିନ, କୌଣସି ପ୍ରକାରେ ଅତି କଷ୍ଟରେ ଲଜ୍ଜା ନିବାରିତ ହେଉଅଛି । ତହିଁରେ ପୁଣି ସମସ୍ତ ଜଳସିକ୍ତ ଓ କର୍ଦ୍ଦମମୟ; ବାଟରେ ଆସୁ ଆସୁ ଅନେକ ସ୍ଥଳରେ ଗୋଡ଼ ଖସି ଯାଇଥିବାର ପରିଚୟ ମିଳୁଅଛି । ବାଳକଟିର ଶରୀରର ବକ୍ଷ ସ୍ଥାନରୁ ରକ୍ତଧାର ବହୁଅଛି । ବୃଦ୍ଧାର ନାସିକାରୁ ଏକ କ୍ଷୀଣ ରକ୍ତଧାର ବହୁଥିବାର ଦେଖିଲି ।

ସନ୍ନିକଟରେ ଆମ୍ଭମାନଙ୍କ ସ୍ୱର ଶୁଣି ବୃଦ୍ଧା ତାହାର ଦୁର୍ଦ୍ଦଶାର କାହାଣୀ କହିବାକୁ ଲାଗିଲା । ବୃଦ୍ଧାର କେହି ନାହିଁ, ଘର ନାହିଁ, ଦ୍ୱାର ନାହିଁ, ଆଶ୍ରୟ କେବଳ ବୃକ୍ଷମୂଳ; ପୁତ୍ର, ପୁତ୍ରବଧୂ ଥିଲେ, ଅନାହାରରେ ରୋଗରେ ମରି ଯାଇଅଛନ୍ତି । ଦୁଃଖର ସ୍ମୃତିସ୍ୱରୂପ କେବଳ ମାତ୍ର ଏହି ସନ୍ତାନଟିକୁ ରଖି ଯାଇଅଛନ୍ତି । ଅନ୍ଧର ମଧ ଗୋଟିଏ ଯଷ୍ଟି ଥିଲା, ଆଶା ଭରସା ଥିଲା, ମାଗି ଯାଚି ଆଣୁଥିଲା, ବୃଦ୍ଧାକୁ ପଦାକୁ ବାହାରିବାକୁ ହେଉ ନ ଥିଲା; କିନ୍ତୁ ହା ! ଦିନାକେତେ ହେଲା ତାହାର ଦେଖା ନାହିଁ । ଏହା କହି ବୃଦ୍ଧା କରୁଣ ସ୍ୱରରେ ବାହୁନି ବାହୁନି ବହୁତ କାନ୍ଦିଲା; କହିଲା ଅନ୍ନ ସକାଶୁ ଭିକ ମାଗିବାକୁ ବାହାରି ଅଛି, ବହୁତ କଷ୍ଟରେ ଅନେକ ବାଟ ବୁଲି ବୁଲି କେବଳ ମାତ୍ର ଦୁଇଟା ପଇସା ମିଳିଥିଲା, ତହିଁରୁ ଅଧଲାକର ମୁଢ଼ି କିଣି ଦୁହେଁଯାକ ଖାଇ ଥିଲୁଁ । ପିଲା ପାଇଁ ସଡକ ପଇସାକର ଚୂଡ଼ା କିଣି ନେବି ବୋଲି ଯାଉଥିଲି, ଛିଣ୍ଡା କାନିରେ ପଇସା ବନ୍ଧା ଥିଲା, ଖୋଲି ପାଇଲି ନାହିଁ । କହିବା ମାତ୍ରକେ ଗଗନଭେଦୀ ଆର୍ତ୍ତସ୍ୱରରେ କ୍ରନ୍ଦନ, ସେ କ୍ରନ୍ଦନ ଶୁଣି କୌଣସି ସହୃଦୟ ବ୍ୟକ୍ତି ସେଠାରେ ରହି ପାରିବ ନାହିଁ । କେତେ ବେଳ ହୋଇ ସେହିଠାରେ ଦୁହେଁଯାକ କାନ୍ଦି କାନ୍ଦି ରହିଲେ । ଏଣେ ସନ୍ଧ୍ୟା ସମାଗତପ୍ରାୟ, ଧନୀ ଲୋକଙ୍କ ଗୃହରେ ଆନନ୍ଦର ରୋଳ ଶୁଣା ଯାଉଅଛି, ଆଲୋକମାଳାରେ ବିଭୂଷିତ ହୋଇ ଗୃହ ଅପୂର୍ବ ଶ୍ରୀ ଧାରଣ କରିବାକୁ ଲାଗିଲାଣି । ପରିଷ୍କୃତ ପରିଚ୍ଛଦଧାରୀମାନେ ଥରକୁଥର ଘରୁ ବାହାରକୁ ଆସୁଅଛନ୍ତି ଏବଂ ଦୋକାନମାନଙ୍କରୁ ନାନାବିଧ ଜିନିଷପତ୍ର କିଣି ନେଇ ଯାଉଅଛନ୍ତି । ବିବିଧ ବିଳାସ ସାମଗ୍ରୀ, ବହୁବିଧ ମିଷ୍ଟାନ୍ନ, ନାନାଜାତୀୟ ସୁରସ ଫଳ ମୂଳ ପ୍ରଭୃତି ଗୃହକୁ ବୁହା ଲାଗିଅଛି । ବାଳକଟି ବୃଦ୍ଧାର ଅଙ୍କ ମଧ୍ୟରେ କାତରସ୍ୱରରେ ପ୍ରତ୍ୟେକ ଦାସଦାସୀଙ୍କୁ ତାହାର ଅବସ୍ଥା ଜଣାଇ କିଛି ଖାଦ୍ୟଦ୍ରବ୍ୟ ମାଗି ବହୁତ ଦୂରକୁ ସେମାନଙ୍କ ପଛେ ପଛେ ଦୌଡ଼ୁଥାଏ । କିନ୍ତୁ କଣ ହେବ, ସବୁ ବିଫଳ, ଭ୍ରୂକୁଟୀ, ତିରସ୍କାର ତର୍ଜ୍ଜନ ଗର୍ଜ୍ଜନ ଛଡ଼ା ଆଉ କିଛି ଲାଭ ହେଲା ନାହିଁ । ଶେଷରେ ଦ୍ୱାରବାନ୍‌ଟି ଆପଣାର ଅକର୍ମଣ୍ୟତା-ଜନିତ ଦଣ୍ଡର ଆଶଙ୍କା କରି ସେମାନଙ୍କୁ ସେଠାରୁ ବାହାର କରିବାକୁ ଚେଷ୍ଟା କରୁଅଛି, ଏମନ୍ତ ସମୟରେ ପ୍ରାସାଦାଭ୍ୟନ୍ତରରୁ ଏକ ବୃହତ୍ ଅଶ୍ୱଯାନ ଘଡ଼ ଘଡ଼ ଶବ୍ଦ କରି ବାହାରି ଆସିଲା, ସମ୍ମୁଖରେ ଦୁଇଜଣ 'ହେ' 'ହେ' ପାଟି କରି ଦୌଡ଼ୁଅଛନ୍ତି । ବୃଦ୍ଧାଟି ସୁଯୋଗ ମଣି ଗାଡ଼ୀ ପାଖକୁ ପାଟି କରି ଦୌଡ଼ି ଗଲା, କିନ୍ତୁ, ସଜୋର ଚାବୁକାଘାତରେ ନିକଟବର୍ତ୍ତୀ ନର୍ଦ୍ଦମାରେ ଯାଇ ଗଡ଼ ଗଡ଼ ପଡ଼ିଲା । ଅଭାଗାର ଶବ ଉପରେ ଭାଗ୍ୟବାନର ଐଶ୍ୱର୍ଯ୍ୟ-ଶକଟ—ଦୃଶ୍ୟ ନବ୍ୟ ! ପୂର୍ବୋକ୍ତ କବିଙ୍କ କଥାରେ ଉପସଂହାର—

"You asked me why the poor
Complain,
And these have answered thee !"

ଶ୍ରୀ ଚନ୍ଦ୍ରଶେଖର ନନ୍ଦ ।

## ସମାଜସଂସ୍କାର ।

ମନୁଷ୍ୟକୁ ସର୍ବଦା ନାନାପ୍ରକାର ଆନ୍ଦୋଳନରେ ବ୍ୟସ୍ତ ରହିବାକୁ ପଡ଼େ । ସ୍ୱାର୍ଥ ସନ୍ଧାନେ ନଭୁଲି ସମାଜ ବା ଦେଶର ହିତ ନିମନ୍ତେ କାର୍ଯ୍ୟ କରିବାକୁ ପଡ଼େ । କାର୍ଯ୍ୟଶୂନ୍ୟ ବା ନିଶ୍ଚେଷ୍ଟ ଜୀବନ ମାନବ ଆଖ୍ୟାର ଯୋଗ୍ୟ ନୁହେ । ରାଜନୈତିକ, ସାମାଜିକ ଓ ପାରତ୍ରିକ ଉନ୍ନତିଚେଷ୍ଟା ମାନବଜାତିର ସାର୍ଥକତା ସାଧନ କରେ ଏବଂ ପୁରୁଷାର୍ଥ ପ୍ରକାଶ କରେ । କୁସଂସ୍କାରସଙ୍କୁଳ ସମାଜର ସଂସ୍କାରଚିନ୍ତା କର୍ତ୍ତବ୍ୟପରାୟଣ ବ୍ୟକ୍ତି ହୃଦୟରେ ସର୍ବଦା ଜାଗରୂକ । ପୂର୍ବର ଆର୍ଯ୍ୟ ସମାଜ ଆଜି ନାହିଁ । ପ୍ରାୟ ସମଗ୍ର ଭାରତବାସୀ ହିନ୍ଦୁଜାତି ଆଜି ଅଧଃପତିତ । ନିରପେକ୍ଷ ବ୍ୟକ୍ତି ମାତ୍ରକେ ସ୍ୱୀକାର କରିବେ ଯେ ବ୍ରାହ୍ମଣର ବେଦ ଅଧ୍ୟୟନ, ବ୍ରହ୍ମଚର୍ଯ୍ୟ, ସ୍ତ୍ରୀଶିକ୍ଷା, ସ୍ତ୍ରୀସ୍ୱାଧୀନତା, ନାରୀର ସ୍ୱୟଂବରଣ ଏବଂ ଗୁଣକର୍ମଜନିତ ଜାତି ବିଭାଗ—ଏହିସବୁ ଉନ୍ନତ ବ୍ୟବସ୍ଥା ଯୋଗୁଁ ଭାରତବର୍ଷ ସଭ୍ୟତାର ଉଚ୍ଚତମ ସୋପାନରେ ଆରୋହଣ କରିଥିଲା । ଆଜି ହିନ୍ଦୁସମାଜରୁ ସେସବୁ ତିରୋହିତ ହୋଇ ଯାଇଅଛି ଏବଂ ତାହା ପରିବର୍ତ୍ତରେ ନିରକ୍ଷର ମୂର୍ଖତା, ବାଲ୍ୟବିବାହ, ଚିରବୈଧବ୍ୟ ଏବଂ ଜନ୍ମଗତ ଅସଂଖ୍ୟ ଜାତିର ଆଧିପତ୍ୟ ଆର୍ଯ୍ୟ ସମାଜକୁ କଳୁଷିତ କରି ଦେଇଅଛି, ଆଜି ହିନ୍ଦୁମାନେ ନିସ୍ତେଜ ନିର୍ବୀର୍ଯ୍ୟ ଓ ଐକ୍ୟଶୂନ୍ୟ ହୋଇ ଘୋର ଅବନତାବସ୍ଥାରେ ପଡ଼ିଅଛନ୍ତି । କଳଙ୍କିତ ସମାଜ ମାର୍ଜିତ ନ ହେବା ପର୍ଯ୍ୟନ୍ତ କୌଣସିପ୍ରକାର ଉନ୍ନତିର ଆଶା ନାହିଁ । ଭାରତର କୃତବିଦ୍ୟ ସାହସୀ ପୁତ୍ରମାନେ ଗବର୍ଣ୍ଣମେଣ୍ଟ ସହିତ ଘୋର ଯୁଦ୍ଧ କରି ତୁମୁଳ ଆନ୍ଦୋଳନ ଲଗାଇ ଶାସନ ବିଭାଗରେ ଇଂରାଜଙ୍କ ସହିତ ସମାନ ଅଧିକାର ଗ୍ରହଣ କରନ୍ତୁ ଏବଂ ସକଳପ୍ରକାର ରାଜନୈତିକ ସୁବିଧା ସୁଯୋଗ ପାଆନ୍ତୁ, ତଥାପି କହିଁରେ ପ୍ରୟୋଜନ ନାହିଁ, କାରଣ ହିନ୍ଦୁସମାଜ ହିନ୍ଦୁମାନଙ୍କୁ ଉକ୍ତ ରାଜନୈତିକ ସ୍ୱାତନ୍ତ୍ର୍ୟଲାଭରୁ ସର୍ବଦା ବଞ୍ଚିତ ରଖିବ । ଭାରତବାସୀ ହିନ୍ଦୁମାନଙ୍କର ପୂର୍ବ ବଂଶଧର ପାରସୀମାନେ ହିନ୍ଦୁମାନଙ୍କ ଅପେକ୍ଷା ଉନ୍ନତତର ଏବଂ ଜାପାନୀମାନେ ପୂର୍ବ ଦେଶବାସୀ ଜାତିମାନଙ୍କ ମଧ୍ୟରେ ଉନ୍ନତତମ । ଏହି ଉନ୍ନତିର କାରଣ ସେମାନଙ୍କ ସାମାଜିକ ଆନୁକୂଲ୍ୟ—ସାର୍ବଜନୀନ ବିଶାଳ ସମାଜର ସ୍ୱାତନ୍ତ୍ର୍ୟ ଓ ଔଦାର୍ଯ୍ୟ ।

ଗତ ଗଞ୍ଜାମ ଜାତୀୟ ସମ୍ମିଳନୀର ଅଧିବେଶନ ସମୟରେ କତିପୟ କୃତବିଦ୍ୟ ବନ୍ଧୁଙ୍କ ପରାମର୍ଶାନୁସାରେ ପୁଣି ସେମାନଙ୍କ ସହାନୁଭୂତି ଓ ସାହାଯ୍ୟ ଆଶା କରି 'ପ୍ରଜାବନ୍ଧୁ' ପତ୍ରଦ୍ୱାରା ଶିକ୍ଷିତ ଓ ସଂସ୍କାରପ୍ରିୟ ବ୍ୟକ୍ତିଙ୍କ ନିକଟରେ ଗୋଟିଏ ପ୍ରସ୍ତାବ କରାଯାଇଥିଲା—ଗୋଟିଏ ସଂସ୍କୃତ ଦଳ ଗଠିତ ହେବ, ଏହି ଦଳଭୁକ୍ତ ବ୍ୟକ୍ତିମାନଙ୍କୁ ସଂସ୍କାର କାର୍ଯ୍ୟ କରିବାକୁ ହେବ । ଆଜିକାଲି ଅନେକେ ସଭା ସମିତିରେ ବକ୍ତୃତା କରି ବା ଖବରକାଗଜରେ ପ୍ରବନ୍ଧାଦି ଲେଖି ଦେଇ ବାହାଦୁରି ନେଇ ଯାଆନ୍ତି, କିନ୍ତୁ କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କରିବାକୁ ସମସ୍ତେ ନାରାଜ । ଏହି ବିଜ୍ଞାପନ ପ୍ରତି କୌଣସି ବ୍ୟକ୍ତିର ହେଲେ ଭ୍ରୂକ୍ଷେପ ହେବାର ଜଣାଗଲା ନାହିଁ । ସଂସ୍କୃତ ଦଳରେ ଭୁକ୍ତ ହୋଇ ପ୍ରକାଶ୍ୟଭାବରେ ଯୋଗ ଦେବାର ଇଚ୍ଛା କେହି ହେଲେ ପ୍ରକାଶ କରି ନାହାନ୍ତି । ବିଜ୍ଞାପନଟି କେବଳ ଅରଣ୍ୟରୋଦନରେ ପରିଣତ ହୋଇଅଛି । ଏହି ଔଦାସୀନ୍ୟରୁ ବୁଝିବେ ନାହିଁ ଯେ ଶିକ୍ଷିତ ବ୍ୟକ୍ତିମାନଙ୍କ ମଧ୍ୟରେ କେହି ସଂସ୍କାରପ୍ରିୟ ନୁହନ୍ତି । ଅନେକେ ସଂସ୍କାରପ୍ରିୟ, କିନ୍ତୁ ନୈତିକ ସାହସର ଅଭାବ ପୁଣି ସ୍ୱାର୍ଥପରତାର ପ୍ରାଦୁର୍ଭାବ ଏହି ଔଦାସୀନ୍ୟର ମୂଳକାରଣ । ଅନେକେ ମନେ ମନେ ସଂସ୍କାର-

ସ୍ୱପ୍ରୟାସୀ, ଗୋପନରେ ଜାତିବନ୍ଧନରେ ଜଳାଞ୍ଜଳି ଦେଇଅଛନ୍ତି, ଖାଇବା ପିଇବାରେ କିଛି ବାରଣ ନ ରଖି ପଠାଣ ଘରେ ଯୋଗଣ କରୁଥାନ୍ତି । କୋମଳବୟସ୍କା ବାଳିକାର ବିବାହ ଅବୈଧ, ବାଲବିଧବାର ପୁନଃପରିଣୟ କର୍ତ୍ତବ୍ୟ, ଜଘନ୍ୟ ଜାତି ମୁକ୍ତିର କଣ୍ଟକ, ଧର୍ମ ( ପରମାର୍ଥ ) ବିଷୟର କେବଳ ପରିଶୁଦ୍ଧ ଓ ପବିତ୍ର ମନର ଭାବନା, ଏହା ସହିତ ଆହାର ବ୍ୟବହାରର ସମ୍ପର୍କ ନାହିଁ—ଏହି ମତଗୁଡିକର ପକ୍ଷପାତୀ ହେଲେହେଁ, କିନ୍ତୁ ମନୋଗତ ଭାବ କେହି ପ୍ରକାଶ କରନ୍ତି ନାହିଁ । ଶିକ୍ଷିତ ବ୍ୟକ୍ତିଙ୍କର ଏହି କପଟାଚାର ହେତୁ ସାଧାରଣଙ୍କର ସଂସ୍କାର କାର୍ଯ୍ୟରେ ଆସ୍ଥା ରହେ ନାହିଁ । କେହି ଏକ ବ୍ୟକ୍ତି ସାହସ କରି ମନୋଗତ ଭାବ ପ୍ରକାଶ କଲେ ସେହି ବ୍ୟକ୍ତି ପାଗଳ ବୋଲି ବିଗ୍ରହିତ ହୁଅନ୍ତି, କାର୍ଯ୍ୟ କଲେ ତ ସେହିକ୍ଷଣି ଜାତି ସମ୍ପ୍ରଦାୟରୁ ବହିଷ୍କୃତ ହେବେ ! ସମାଜ ବର୍ତ୍ତମାନ ଏହି ଅବସ୍ଥାରେ ଅଛି, ପୁଣି ସର୍ବଦା ରହିବ, ଏହା ଏହି ସଂସାରର ବ୍ୟାପାର, ତାହା ଅନ୍ୟଥା କରଯାଇ ନ ପାରେ । ତେବେ ମୋହର ବିଜ୍ଞାପନଟା ଅନାଦୃତ ଓ ହେୟ ହେବା କିଛି ଆଶ୍ଚର୍ଯ୍ୟର କଥା ନୁହେ । ଇତିହାସରୁ ଜଣାଯାଏ ଯେ କୌଣସି ସମୟରେ ହେଲେ ସଂସ୍କର୍ତ୍ତାମାନେ ଦଳବଦ୍ଧ ହୋଇ ତାହାର ଦେଶାଚାର ଭଙ୍ଗ କରି ପାରି ନାହାନ୍ତି । ପ୍ରଚଳିତ କୁପ୍ରଥାର ବିପରୀତାଚରଣହିଁ ସଂସ୍କାର । ସଂସ୍କର୍ତ୍ତାଙ୍କୁ ସର୍ବଦା ଏକାକୀ ହୋଇ ରହିବାକୁ ହୁଏ, ସକଳ ଯାତନା ସହିବାକୁ ପଡ଼େ, ସକଳ ସ୍ୱାର୍ଥ ତ୍ୟାଗ କରିବାକୁ ହୁଏ ଏବଂ ଆପଣାର ପରିଶୁଦ୍ଧ, ପବିତ୍ର ଆଚରଣର ଦୃଷ୍ଟାନ୍ତଦ୍ୱାରା ଅଦମ୍ୟ ସାହସ ପ୍ରଦର୍ଶନ ପୂର୍ବକ ପତିତର ପୁନରୁତ୍ଥାନ ସାଧନ କରିବାକୁ ହୁଏ । ମିଥ୍ୟାଚାରୀ କପଟାଚାରୀ କଦାପି ସଂସ୍କାର କରି ପାରନ୍ତି ନାହିଁ । ଅତଏବ ପ୍ରକୃତ ସଂସ୍କର୍ତ୍ତା-ମାନଙ୍କ ପକ୍ଷରେ କେତୋଟି ଗୁଣ ଅପରିହାର୍ଯ୍ୟ —ପ୍ରଥମ ସରଳତା, ଦ୍ୱିତୀୟ ସ୍ୱାର୍ଥତ୍ୟାଗ, ତୃତୀୟ ଅନାସକ୍ତି । ସ୍ୱାର୍ଥକୁ ଯେ ଜିଣିଅଛି ସେ ଅବଶ୍ୟ ଆପଣାର ଜୀବନରେ ନ ହେଲେ ସୁଦ୍ଧା ଭବିଷ୍ୟତରେ ଲୋକଙ୍କ ମନ ବଦଳାଇ ପାରିବ । ତାହାର ଜୀବନ ଆଦର୍ଶ ଜୀବନ, ତାହାର ପରାମର୍ଶ ଶିରୋଧାର୍ଯ୍ୟ । ସୁତରାଂ ସଂସ୍କାର କରିବାକୁ ହେଲେ ନିଜେ ସଂସ୍କୃତ ହେବାକୁ ହେବ । ତୁମ୍ଭେ କହି ପାର "ମୁଁ କହିବା କଥା କର, ମୁଁ କରିବା କାର୍ଯ୍ୟ ତୁମ୍ଭଙ୍କୁ କରିବାକୁ ହେବ ନାହିଁ ।" ସାଧାରଣ ଏ କଥା ଶୁଣିବେ ନାହିଁ । ତୁମ୍ଭେ ଅବା କହି ପାର "ଆମ୍ଭେ ସର୍ବଦା ସତ୍କର୍ମ ପ୍ରଚାର କରିବୁଁ, ଆମ୍ଭର ଦୁଷ୍କର୍ମଗୁଡିକ ଯେପରି କାହାରି ଦୃଷ୍ଟିଗୋଚର ନ ହୁଏ ତାହାର ବନ୍ଦୋବସ୍ତ କରିବୁଁ" । ଦୁଷ୍କର୍ମ ସର୍ବଦା ଲୁକ୍କାୟିତ ରହି ନ ପାରେ । କୁକର୍ମ କଥା ଦୂରେ ଥାଉ, ସତ୍କର୍ମ ସୁଦ୍ଧା ଗୁପ୍ତଭାବରେ କରଗଲେ ମନ୍ଦକର୍ମ ବୋଲି ଅନ୍ୟର ମନରେ ସନ୍ଦେହ ଜାତ ହୁଏ । ଅତଏବ ଦ୍ୱିଧାଚରଣଦ୍ୱାରା କୌଣସି ବ୍ୟକ୍ତି ମହଦନୁଷ୍ଠାନରେ କୃତକାର୍ଯ୍ୟ ହୋଇ ନାହାନ୍ତି, ହୋଇ ପାରିବେ ନାହିଁ ।

ସରଳତା—ନିଜ କୃତ କାର୍ଯ୍ୟ ଓ ନିଜ ପୋଷିତ ଭାବଗୁଡିକୁ ସ୍ପଷ୍ଟ ବ୍ୟକ୍ତ କରିବାର ନାମ ସରଳତା । ବନ୍ଧୁ, ମିତ୍ର, ପଡ଼ୋଶିଙ୍କ କଥା ଦୂରେ ଥାଉ, ଶତ୍ରୁ ସୁଦ୍ଧା ସରଳଭାବରେ ବଶୀଭୂତ । ସରଳାନ୍ତଃକରଣ ବ୍ୟକ୍ତିଙ୍କୁ ପାପପିଶାଚ ପ୍ରଲୁବ୍ଧ କରି ପାରେ ନାହିଁ, ଯେହେତୁ ପାପ କର୍ମ ସବୁ ଗୁପ୍ତଭାବରେ କରଯାଏ । କାଳେ ରହସ୍ୟ କଥା ସବୁ ପ୍ରକାଶ କରି ଦେବେ ବୋଲି କପଟାଚାରୀ ଓ ନୀତିଭ୍ରଷ୍ଟ ଲୋକେ ଏହାଙ୍କୁ ବିଶ୍ୱାସପାତ୍ର ମନେ କରନ୍ତି ନାହିଁ, ପୁଣି ଏହାଙ୍କ ସଙ୍ଗ ତ୍ୟାଗ କରନ୍ତି । ସାଧୁ ଲୋକେ ଏହାଙ୍କ ସଙ୍ଗ ଇଚ୍ଛା କରନ୍ତି, ସାଧାରଣ ଏହାଙ୍କ କଥାରେ ଆସ୍ଥା ରଖନ୍ତି ଏବଂ ଏହାଙ୍କ ନିକଟରେ ଆପଣା ହୃଦୟ ବ୍ୟକ୍ତ କରନ୍ତି ।

ଦ୍ୱିତୀୟ ସ୍ୱାର୍ଥତ୍ୟାଗ—ପରାର୍ଥେ ଆପଣାର ସୁଖ

ସମ୍ପଦ ପ୍ରଭୃତି ବିସର୍ଜନ କରିବାର ନାମ ସ୍ୱାର୍ଥତ୍ୟାଗ। ସ୍ୱାର୍ଜିତ ବା ପିତ୍ରର୍ଜିତ ସମ୍ପତ୍ତି ଜାଗ୍ରତ ନ କରିବା, ଫିଙ୍ଗି ଦେବା ବା ବୃଥା ବ୍ୟୟ କରିବା ସ୍ୱାର୍ଥତ୍ୟାଗ ନୁହେ। ଅନ୍ୟର କୌଣସି ପ୍ରୟୋଜନ ନ ଥାଇ ଆପଣାର ପ୍ରାପ୍ୟ ଗ୍ରହଣ ନ କରିବା, ବା ନିଜର ସୁଖ, ସମ୍ପଦ, ଯଶ, ପୌରୁଷ, ମାନ, ସୁବିଧା ନଷ୍ଟ କରିବା ସ୍ୱାର୍ଥତ୍ୟାଗ ନୁହେଁ। ଯେଉଁ ତ୍ୟାଗଦ୍ୱାରା ଅନ୍ୟର ଉପକାର ସାଧିତ ହୁଏ, ତାହାହିଁ ସ୍ୱାର୍ଥତ୍ୟାଗ। ସ୍ୱାର୍ଥତ୍ୟାଗର ପୁଣି ସୀମା ଅଛି। ଯେଉଁ ତ୍ୟାଗଦ୍ୱାରା ମନୁଷ୍ୟର ଶରୀର, ମନ ଓ ଆତ୍ମା ନଷ୍ଟ ହୁଏ ତାହା ତ୍ୟାଗ ନୁହେ। ସ୍ୱାର୍ଥତ୍ୟାଗର ଦୃଷ୍ଟାନ୍ତ ଅତିବ ଗୃଧ୍ନୁକୁ ଦୟାଶୀଳ କରି ପାରେ, ମାନୀର ମାନ ଭଙ୍ଗ କରି ପାରେ, ଉଦାସୀନକୁ ଉତ୍ତେଜିତ କରି ପାରେ, ସମସ୍ତ ଜଗତକୁ ବଶ କରେ, ନବାବଠାରୁ ଫକୀର ପର୍ଯ୍ୟନ୍ତ ଆବ୍ରାହ୍ମଣ ଚଣ୍ଡାଳ ସମସ୍ତେ ଏହି ଗୁଣରେ ବିମୋହିତ। କୌଣସି ପରାମର୍ଶ ଦାନରେ ବା କୌଣସି କର୍ମ କରିବାରେ ଉପଦେଷ୍ଟା ବା କର୍ତ୍ତାଙ୍କର ଯଦି କିଛି ସ୍ୱାର୍ଥ ନିହିତ ଥାଏ ତେବେ ଉକ୍ତ ସତ୍ପରାମର୍ଶ ଗ୍ରହଣ କରିବାକୁ ବା ଉକ୍ତ ସତ୍କାର୍ଯ୍ୟରେ ଯୋଗ ଦେବାକୁ ଲୋକେ ପଶ୍ଚାତ୍ପଦ ହୁଅନ୍ତି। ଯଥାର୍ଥ ତ୍ୟାଗୀ ଯାହା କହନ୍ତି ବା କରନ୍ତି ତହିଁରେ ତାଙ୍କର କୌଣସି ଅଭିସନ୍ଧି ନ ଥାଏ, କେବଳ ଲୋକୋପକାର ଉଦ୍ଦେଶ୍ୟ ଥାଏ। ଏଯୋଗୁଁ ତାଙ୍କ ଜୀବନ ସର୍ବସାଧାରଣଙ୍କ ଆଦର୍ଶସ୍ଥାନୀୟ ଏବଂ ତାଙ୍କ ଉପଦେଶ ସର୍ବଦା ପାଳନୀୟ।

ତୃତୀୟ ଅନାସକ୍ତି—ବିଷୟାସକ୍ତ ବ୍ୟକ୍ତି କୌଣସି ବ୍ୟକ୍ତି ବା ବସ୍ତୁରେ ଅଯଥା ଅନୁରାଗ ପ୍ରଦର୍ଶନପୂର୍ବକ ନିଷ୍ପକ୍ଷପାତ ବିଚାରରୁ ବଞ୍ଚିତ ହୋଇଥାନ୍ତି। ଏମାନଙ୍କର କର୍ତ୍ତବ୍ୟାକର୍ତ୍ତବ୍ୟ ବିବେଚନା ରହେ ନାହିଁ। କେବଳ ଫଳାଫଳ ବିଚାରରେ ହତାଶ ହୋଇ ଭଗ୍ନୋଦ୍ୟମ ହୋଇ ଯାନ୍ତି, ପୁଣି ପରିଣାମରେ ଦୁଃଖ ଭୋଗ କରନ୍ତି। ଫଳାଫଳ ପ୍ରତି ଅଧିକ ଦୃଷ୍ଟି ଆକର୍ଷିତ ହେଲେ କର୍ତ୍ତବ୍ୟ ପ୍ରତି ମନୋଯୋଗ କମି ଯାଏ। ଫଳୋପଲବ୍ଧି ଚିନ୍ତା ନ ଥିଲେ କାର୍ଯ୍ୟରେ ପ୍ରବୃତ୍ତି ଜନ୍ମେ ନାହିଁ, କିନ୍ତୁ ପରିଣାମଚିନ୍ତା କାର୍ଯ୍ୟାନୁଶୀଳନରେ ବ୍ୟାଘାତ ଜନ୍ମାଏ। ଏହି କଥାଟା ଆପାତତଃ ଅସଙ୍ଗତ ବୋଧ ହେଲେହେଁ ପ୍ରକୃତ ଅଟେ। ଅତଏବ ସମାଜସଂସ୍କର୍ତ୍ତାଙ୍କୁ ଆସକ୍ତି-ରହିତ ହେବାକୁ ହେବ। ଯେହେତୁ ସେମାନଙ୍କୁ ଅନେକ ବାଧା ବିଘ୍ନ ଅତିକ୍ରମ କରିବାକୁ ହେବ ଏବଂ ଫଳାଫଳ ବିବେଚନାରେ ହତାଶ ନ ହୋଇ ପୁନଃ ପୁନଃ ଚେଷ୍ଟା କରିବାକୁ ହେବ।

ସମାଜ ସଂସ୍କାର କରିବାକୁ ହେଲେ ଏହିପରି ସନ୍ନ୍ୟାସ ଅବଲମ୍ବନ କରିବାକୁ ହେବ। ଏହି ସାମାଜିକ ( ସମାଜ ସଂସ୍କାରକ ) ସନ୍ନ୍ୟାସୀଙ୍କୁ ଅବଶ୍ୟକ ହେଲେ ଗୃହତ୍ୟାଗୀ ହୋଇ ସକଳ ଭୋଗ ବାସନା ଛାଡିବାକୁ ହେବ, ଲୋଭ ମୋହରୁ ନିଷ୍କୃତି ପାଇବାକୁ ହେବ। ପ୍ରଜାହିତ, ଦେଶମଙ୍ଗଳ, ସମାଜ ସଂସ୍କାର ଏହାଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ ହେବ ଏବଂ ଉକ୍ତ କାର୍ଯ୍ୟ ଅନୁଶୀଳନରେ ସର୍ବଦା ଅନୁରକ୍ତ ରହିବାକୁ ହେବ। ସଂସାର ତ୍ୟାଗପୂର୍ବକ ମୌନାବଲମ୍ବୀ ଅରଣ୍ୟାନବାସୀ ସନ୍ନ୍ୟାସୀଙ୍କୁ ମୁଁ ପ୍ରକୃତ ସନ୍ନ୍ୟାସୀ ବିବେଚନା କରେ ନାହିଁ। ସେପରି ସନ୍ନ୍ୟାସୀର ମୋକ୍ଷ ବା ନିର୍ବାଣ ପ୍ରତି ଲକ୍ଷ୍ୟ ଥାଇ ପାରେ, କିନ୍ତୁ ଏହି ସନ୍ନ୍ୟାସଦ୍ୱାରା ଜଗତର କୌଣସି ଉପକାର ସାଧିତ ହୁଏ ନାହିଁ। ସାମାଜିକ ସନ୍ନ୍ୟାସୀଙ୍କ ପକ୍ଷରେ ଅସକ୍ତିରହିତ କାର୍ଯ୍ୟାନୁଶୀଳନ କିପରି ଆବଶ୍ୟକ ତାହା ଏବେ ସୁସ୍ପଷ୍ଟ ବୋଧ ହେବ। କାରଣ ଏହାଙ୍କୁ ସମସ୍ତ ସଂସ୍କାରକାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ହେବ, ସର୍ବଦା ଦେଶହିତକର କାର୍ଯ୍ୟରେ ବ୍ରତୀ ହେବାକୁ ହେବ, କିନ୍ତୁ ସ୍ୱାର୍ଥପର ଗୃହସ୍ଥ ପରି କୌଣସି ବିଷୟରେ ଆସକ୍ତ ରହିବାକୁ ହେବ ନାହିଁ।

ଏହି ସାମାଜିକ ସନ୍ନ୍ୟାସଦୀକ୍ଷା ଅବଲମ୍ବନ-ପୂର୍ବକ ସମାଜର ବହୁ ସଂସ୍କାର କରି ଯାଇ ପାରେ,

ଖବରକାଗଜମାନଙ୍କରେ ଗୋଟିଏ ବିଜ୍ଞାପନ ପ୍ରକାଶ କରି ଦେଇ ଶିକ୍ଷିତ ବ୍ୟକ୍ତିମାନଙ୍କୁ ଯେନ ଗୋଟିଏ ସଂସ୍କାର ଦଳ ଗଠନର ପ୍ରସ୍ତାବ କରି ଦେଇ ବାହାଦୁରୀ ନେଇ ଯିବା କେବଳ ଅନ୍ୟ ଗୋଟିଏ ବାଗାଡ଼ମ୍ବରପ୍ରଯୁକ୍ତ ନିଃସାର Indian Ho ( ଭାରତୀୟ ବା ଉତ୍କଳୀୟ "ହୋ" )!

ଉପସଂହାରରେ ପୁନର୍ବ୍ବାରପୂର୍ବ୍ବକ ମୋହର ଏହି ଧାରଣା ଦୃଢ଼ୀଭୂତ ହୋଇଅଛି ଯେ ସମାଜ ସଂସ୍କାରପ୍ରାର୍ଥୀ ବିଜ୍ଞାପକ ପକ୍ଷରେ ଆପଣାର ବାଗ୍ମିତା ପରିତ୍ୟାଗ କରି ଏହି ସନ୍ନ୍ୟାସ ଦୀକ୍ଷା ଅବଲମ୍ବନ କର୍ତ୍ତବ୍ୟ । ସମାଜସଂସ୍କାର ଏହି ସନ୍ନ୍ୟାସର ଅଭୀଷ୍ଟ ସଙ୍କଳ୍ପ । ଏହି ବିଶେଷ ସଙ୍କଳ୍ପ ସାଧନ ସକାଶେ ସନ୍ନ୍ୟାସୀଙ୍କୁ ଗ୍ରାମେ ଗ୍ରାମେ ଘରେ ଘରେ ବୁଲି ସଂସ୍କାରର ଶିକ୍ଷା ଦେବାକୁ ହେବ, ସଭା ସମିତି କରି ଗୋଟିଏ "ହୋ" ଉଠାଇ ଦେଲେ ଚଳିବ ନାହିଁ, କେବଳ ସାଧାରଣଙ୍କୁ ପ୍ରତ୍ୟକ୍ଷ, ସରଳ, ଅନାଡ଼ମ୍ବର ଭାବରେ କହି ବୁଝାଇ ସେମାନଙ୍କୁ ଅପୃତ୍ତ କରି ନେବାକୁ ହେବ ଏବଂ ଆପଣାର ଯଥାଶକ୍ତି ସମ୍ପତ୍ତି, ବିଦ୍ୟା ଓ କ୍ଷମତା ଭାଗୀ ସାମାଜିକ ସଂସ୍କାରକାର୍ଯ୍ୟରେ ଦାନ ପୂର୍ବ୍ବକ ବିଶୁଦ୍ଧ ଚରିତ୍ରର ଜ୍ୱଳନ୍ତ ଉଦାହରଣ ଦେଖାଇ ଶିକ୍ଷିତ ଭଦ୍ରବ୍ୟକ୍ତି ଓ ରଜା ଜମିଦାରମାନଙ୍କର ସଂସ୍କାର ପ୍ରତି ଅନୁକୂଳ୍ୟ ପ୍ରାର୍ଥନା କରିବାକୁ ହେବ । ଉକ୍ତ ଶିକ୍ଷିତ ବ୍ୟକ୍ତି ଗୁଡ଼ିକୁ ଯେନ ନବ୍ୟ ଝଡ଼ରେ ଏକ ସମାଜ ଗଠନ କରିବାକୁ ହେବ । ଉକ୍ତ ସମାଜ ସାର୍ବ୍ବଜନୀନ ହେବ । ଏହି ସମାଜରେ ବିଭିନ୍ନ ଧର୍ମାବଲମ୍ବୀ ଲୋକେ ଯୋଗ ଦେଇ ପାରିବେ । ଧର୍ମଭେଦରେ ସାମାଜିକ ସମ୍ମିଳନର ଭେଦ ରହିବ ନାହିଁ । ବିଭିନ୍ନ ଦେଶବାସୀ, ବିଭିନ୍ନ ଧର୍ମାବଲମ୍ବୀ ବିଭିନ୍ନ ଜାତିମାନଙ୍କ ମଧ୍ୟରେ ବୈବାହିକ ଓ ଆହାରୀୟ ସମ୍ବନ୍ଧ ରଖା ଯାଇ ପାରେ । ସ୍ତ୍ରୀମାନଙ୍କୁ ଶିକ୍ଷା ଓ ସ୍ୱାଧୀନତା ଦେବାକୁ ହେବ । ବିଧବାର ଇଚ୍ଛାମତେ ବିଧବାକୁ ବିବାହ କରିବାକୁ ଅଧିକାର ଦିଆ ଯିବ । ବାଲ୍ୟବିବାହ ପରିବର୍ତ୍ତେ ଯୁବତୀବିବାହ ପ୍ରଚଳନ କରାଯିବ । ଭାଷାଗତ ଦେଶଗତ ଜାତିର ଅସ୍ତିତ୍ୱ ରକ୍ଷା କରି ଆହାରଗତ ଓ ଜନ୍ମଗତ ଜଘନ୍ୟ ଜାତିକୁ ନିର୍ମ୍ମୂଳ କରିବାକୁ ହେବ । ସଂକ୍ଷେପରେ କହିବାକୁ ହେଲେ, ଯେଉଁ ବିଷୟରେ ଯେଉଁ ସଂସ୍କାରରେ ଶିକ୍ଷିତ ସାଧାରଣ ଏକମତ, ତାହାହିଁ ଅନୁଷ୍ଠାନ କରାଯିବ । ଏହି ସମାଜ ଧର୍ମ ବିଷୟରେ ହସ୍ତକ୍ଷେପ ନ କରି କେବଳ ସମାଜର ଆଚାର ବ୍ୟବହାର ଯେନ ଆନ୍ଦୋଳନ କରିବେ । ସମ୍ପାଦକ ମହାଶୟ ଏହି ପ୍ରସ୍ତାବରେ ସ୍ୱୀୟ ମତ ପ୍ରକାଶ କରି ପାଠକମଣ୍ଡଳୀଙ୍କୁ ଉପକୃତ କରିବେ ।*

ଆଉ ଗୋଟିଏ କଥା, ଅନେକ ଶିକ୍ଷିତ ଲୋକେ କହନ୍ତି ଯେ ଜାତୀୟ ଭାବରେ ସଂସ୍କାର କରିବାକୁ ହେବ ଏବଂ ଯେଉଁ ସଂସ୍କାରଗୁଡ଼ିକୁ ସାଧାରଣ ବିଶେଷ ଆପତ୍ତି କରନ୍ତି ନାହିଁ, ସୁତରାଂ ସହଜରେ କାର୍ଯ୍ୟରେ ପରିଣତ ହୋଇ ପାରିବ, ସେହି ସଂସ୍କାରଗୁଡ଼ିକ ପ୍ରଥମେ କରାଯିବ । ଅଶିକ୍ଷିତ ଓ ପୌରୋହିତ୍ୟ-ଅତ୍ୟାଚାରପ୍ରପୀଡ଼ିତ ସାଧାରଣ ଯେ କୌଣସି ମୂଳର ସଂସ୍କାର ହେଉ, ଅବଶ୍ୟ ଆପତ୍ତି କରିବେ । ବାଳିକାବିବାହ ଅକରଣୀୟ ଓ ଯୁବତୀବିବାହ କର୍ତ୍ତବ୍ୟ ଓ ପ୍ରଶସ୍ତ—ଏହା ଜାତୀୟ ସଂସ୍କାରକ ଦଳ ସ୍ୱୀକାର କରନ୍ତି । ସାଧାରଣଙ୍କ ଆପତ୍ତି ଅତିକ୍ରମ କରିବା ସକାଶେ ବାଳିକାର ବିବାହ ବୟସ ୯ ବର୍ଷ

---

* ଏ ପ୍ରଦେଶରେ ପ୍ରସ୍ତାବ ଓ ଘୋଷଣାର ଆଦୌ ଅଭାବ ନାହିଁ, ବରଂ ଏଗୁଡ଼ିକ ଅତିରିକ୍ତ ପରିମାଣରେ ବଢ଼ି ଉଠିଅଛି ! ନିଜେ ଲେଖକ ମହାଶୟ ଅନେକ ଦିନରୁ କେବଳ ଘୋଷଣା-କାର୍ଯ୍ୟରେ ବ୍ରତୀ ରହିଅଛନ୍ତି । ଆମ୍ଭେମାନେ ତାଙ୍କୁ କାର୍ଯ୍ୟକ୍ଷେତ୍ରରେ ଦେଖିବାକୁ ଉଦ୍‌ଗ୍ରୀବ ରହି-ଅଛୁଁ । ପ୍ରସ୍ତାବର କେତେ କଥା ଆମ୍ଭମାନଙ୍କୁ ଅଦ୍ଭୁତ ଲାଗିଲା ! ସଂ :

ପରବର୍ତ୍ତୀରେ ୧୦ ବା ୧୧ ବର୍ଷ ସ୍ଥିର କରି ଦେବାରେ ବିବାହର ମୂଳ ଉଦ୍ଦେଶ୍ୟ ସଫଳ ହେଲା କି ? ପୁଣି ବାଲ୍ୟ-ବିବାହଜନିତ ମନ୍ଦଫଳ-ଗୁଡ଼ିକ ନଷ୍ଟ ହେଲା କି ? ଯେ ଯାହା କହନ୍ତୁ ପଛକେ, ଏହି ଜାତୀୟ ଓ ସୁଲଭ ସଂସ୍କାରର ମୁଁ ପକ୍ଷପାତୀ ହୋଇ ନ ପାରେ । ଏହି ସଂସ୍କାର ସମ୍ବନ୍ଧରେ ଅନ୍ୟ ଏକ ପ୍ରବନ୍ଧରେ କିଛି ଲେଖିବାର ଇଚ୍ଛା ରହିଲା ।

ଶ୍ରୀ ଶ୍ରୀବତ୍ସ ପଣ୍ଡା

---

## ଖଣ୍ଡପଡ଼ା ।

ଓଡ଼ିଶାର ପାର୍ବତ୍ୟ ରାଜ୍ୟଗୁଡ଼ିକ ବ୍ରିଟିଶ ରାଜ୍ୟର ବହିର୍ଭୂତ । ଏଠାରେ କୌଣସି ଅପରାଧ ଘଟିଲେ ବ୍ରିଟିଶ ବିଚାରାଳୟରେ ତାହାର ବିଚାର ହୁଏ ନାହିଁ । ରାଜାମାନେ କରଦ ରାଜା ବୋଲି ପରିଗଣିତ, ଦୁଇ ବର୍ଷ କାରାବାସ ଓ ସହସ୍ର ମୁଦ୍ରା ଅର୍ଥଦଣ୍ଡ ବିଧାନ କରିବାର ଅଧିକାର ଏମାନଙ୍କର ଅଛି । ଅସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ସେମାନଙ୍କ ଉପରେ ଜିଲ୍ଲାଜଜ ତୁଲ୍ୟ, ସୁପରିଣ୍ଟେଣ୍ଡେଣ୍ଟଙ୍କ କ୍ଷମତା ହାଇକୋର୍ଟର କ୍ଷମତା ତୁଲ୍ୟ ।

ରାଜାମାନେ ସୈନ୍ୟ ରଖି କିମ୍ବା ମୁଦ୍ରା ପ୍ରସ୍ତୁତ କରି ପାରନ୍ତି ନାହିଁ । ସୁପରିଣ୍ଟେଣ୍ଡେଣ୍ଟଙ୍କ କ୍ଷମତା କୌଣସି ଆଇନାନୁସାରେ ବିଧିବଦ୍ଧ ନୁହେ । ରାଜାମାନଙ୍କୁ ପରାମର୍ଶ ଦେଇ ସୁଶାସନରେ ସାହାଯ୍ୟ କରିବା ସେମାନଙ୍କର କାର୍ଯ୍ୟ ।

ଏହି ସମସ୍ତ ଗଡ଼ଜାତ ବା ପାର୍ବତୀୟ ରାଜାମାନଙ୍କ ସଂଖ୍ୟା କ୍ରମେ ହ୍ରାସ ହେଉଅଛି । କନିକା, ଆଳି, ମଧୁପୁର, ଦର୍ପଣି ପ୍ରଭୃତି ରାଜ୍ୟମାନ ଇଂରାଜ ରାଜତ୍ୱ ଆରମ୍ଭ ହେବା ପୂର୍ବରୁ ମୋଗଲବନ୍ଦୀ ଜମିଦାରୀ ବୋଲି ପରିଗଣିତ ହୋଇ ଆସୁଅଛି । ବାଙ୍କି ଓ ଅନୁଗୁଳ ଇଂରାଜ ରାଜ୍ୟଭୁକ୍ତ ହୋଇ ଯାଇଅଛି । ବର୍ତ୍ତମାନ ଡମପଡ଼ା ଜମିଦାରୀରେ ପରିଣତ ହୋଇଅଛି । ବର୍ତ୍ତମାନ ଯେଉଁ ସବୁ ରାଜ୍ୟ କରଦ ବୋଲି ଗଣ୍ୟ, ସେମାନଙ୍କ ମଧ୍ୟରେ ମୟୁରଭଞ୍ଜ, ଢେଙ୍କାନାଳ, ପାଲଲହଡ଼ା, ହିନ୍ଦୋଳ, ତିଗିରିଆ, ବଡ଼ମ୍ବା, ନରସିଂହପୁର, ଖଣ୍ଡପଡ଼ା, ଦଶପଲ୍ଲା, ଆଠମଲ୍ଲିକ, ନୟାଗଡ଼ ଓ ବୌଦ୍ଧ ବିଖ୍ୟାତ । ଅଳ୍ପ ବୟସ ବା ଅନୁପଯୁକ୍ତତା ହେତୁ ଢେଙ୍କାନାଳ, ପାଲଲହଡ଼ା, ବଡ଼ମ୍ବା, ନରସିଂହପୁର ଓ ନୟାଗଡ଼ ବର୍ତ୍ତମାନ ଇଂରାଜ ପ୍ରତିନିଧିଦ୍ୱାରା ଶାସିତ ହେଉଅଛି ।

ରାଜ୍ୟଗୁଡ଼ିକର ଆୟତନ ହିସାବରେ ଖଣ୍ଡପଡ଼ା ଗୋଟିଏ କ୍ଷୁଦ୍ର ରାଜ୍ୟ । କିନ୍ତୁ ଏହି ରାଜ୍ୟଟିର ଟିକିଏ ବିଶେଷତ୍ୱ ଅଛି । ଖଣ୍ଡପଡ଼ାର ଆୟତନ ୨୪୪ ବର୍ଗମାଇଲ । ଲୋକସଂଖ୍ୟା ପ୍ରାୟ ୭୦୦୦୦ । ରାଜଧାନୀର ଲୋକସଂଖ୍ୟା ପୂର୍ବେ ୬୦୦୦ ଥିଲା, ବର୍ତ୍ତମାନ ୪୦୦୦ ହୋଇଅଛି । ସହରକୁ ଗଡ଼ଜାତରେ ଗଡ଼ କହନ୍ତି । ରାଜପ୍ରାସାଦର ଚାରିଆଡ଼ରେ ଗଡ଼ଖାଇ ବା ପରିଖା ଥାଉ ବା ନ ଥାଉ, ରାଜଧାନୀର ନାମ ଗଡ଼ । ଦୁର୍ଗ ନାହିଁ ସୈନ୍ୟ ନାହିଁ, ତଥାପି ନାମଟା ଅକ୍ଷୁଣ୍ଣ ଅଛି । ରାଜାମାନଙ୍କର ଅସାମାନ୍ୟ ପ୍ରତାପ । ରାଜାମାନେ ସମସ୍ତେ ଦେବତା ବୋଲି ଗଣ୍ୟ, ରାଜଦର୍ଶନରେ ପୁଣ୍ୟ ହୁଏ । ଅଶୌଚ ଶରୀରରେ ରାଜଦର୍ଶନ ଅନୁଚିତ । ପୁଣି ରାଜା କେବଳ ‘ଚଳନ୍ତି ବିଷ୍ଣୁ’ ତାହା ନୁହେ, ପ୍ରତ୍ୟେକ ରାଜା ସାକ୍ଷାତ୍ ନାରାୟଣ । ରାଜଧାନୀର ଅଧିବାସିମାନଙ୍କ ମଧ୍ୟରେ ପ୍ରାୟ ସମସ୍ତେ ରାଜବୃତ୍ତି ଭୋଗ କରନ୍ତି । ପ୍ରଜାମାନଙ୍କ ଅବସ୍ଥା ପ୍ରାୟ ସାଧାରଣତଃ ହୀନ । ଜମିର ଖଜଣା ଅତି ସାମାନ୍ୟ, ବଙ୍ଗଦେଶୀୟ ବିଘା ହିସାବରେ ଦୁଇ ଅଣାରୁ ଛ ଅଣା ପର୍ଯ୍ୟନ୍ତ । ଜମିର ଉର୍ବରତା ସାମାନ୍ୟ ନୁହେ । କୃଷିକାର୍ଯ୍ୟ ଭିନ୍ନ ଅନ୍ୟ ବ୍ୟବସାୟ ନାହିଁ । ପଥର ଅସୁବିଧା ହେତୁ

ଦ୍ରବ୍ୟାଦିର ରପ୍ତାନି ଅତି ଅଳ୍ପ । କୃଷିକରୁ ଧନାଗମ ପ୍ରଜାର କୌଣସି ମାମଲା ନାହିଁ । ସମସ୍ତଙ୍କର ଏକ ପ୍ରକାର ସୁଖରେ ଦିନ ଯାଉଅଛି । ବେଠି ଟଙ୍କାକୁ ମଧ୍ୟ କେହି ବିରକ୍ତ ନୁହନ୍ତି । ସେଇଟାକୁ କର୍ତ୍ତବ୍ୟ ବୋଲି ସମସ୍ତେ ମନେ କରନ୍ତି । ପ୍ରତ୍ୟେକ ରାଜ୍ୟରେ ରାଜା ସୂର୍ଯ୍ୟ । ରାଜାଙ୍କୁ ଅବଲମ୍ବନ କରି ସମସ୍ତେ ଅଛନ୍ତି । ରାଜାଙ୍କ ଅନୁରାଗ ଓ ବିରାଗରେ ସ୍ୱର୍ଗ ଓ ନରକ । ରାଜାଙ୍କର ପ୍ରତିଦ୍ୱନ୍ଦୀ ନାହିଁ । ଖଣ୍ଡପଡ଼ାର ବାର୍ଷିକ ଆୟ ୩୦୦୦୦ ଟଙ୍କା ହେବ । କିନ୍ତୁ ଦ୍ୱାରବଙ୍ଗ ଓ ବର୍ଦ୍ଧମାନର ରାଜାଙ୍କ ପ୍ରତାପ ଖଣ୍ଡପଡ଼ା ରାଜାଙ୍କ ପ୍ରତାପର ଏକ କଣା ମଧ୍ୟ ନୁହେ ।

ବୌଦ୍ଧ ରାଜ୍ୟର ଆୟତନ ୨୦୦୦ ବର୍ଗମାଇଲ; ଲୋକସଂଖ୍ୟା ୧୩୦୦୦୦; ରାଜସ୍ୱ ୩୫୦୦୦ ଟଙ୍କା । ନୟାଗଡ଼ର ଆୟତନ ୫୮୮ ବର୍ଗମାଇଲ; ଲୋକସଂଖ୍ୟା ୧୧୫୦୦୦; ରାଜସ୍ୱ ୬୩୦୦୦ ଟଙ୍କା । ଢେଙ୍କାନାଳର ଆୟତନ ୧୪୬୪ ବର୍ଗମାଇଲ; ଲୋକସଂଖ୍ୟା ୨୦୦୦୦୦; ରାଜସ୍ୱ ୧୨୦୦୦୦ । କେନ୍ଦୁଝରର ଆୟତନ ୩୦୦୦ ବର୍ଗମାଇଲ; ଲୋକସଂଖ୍ୟା ୨୧୫୦୦୦; ରାଜସ୍ୱ ୯୦୦୦୦ । ମୟୂରଭଞ୍ଜର ଆୟତନ ୪୨୪୩ ବର୍ଗମାଇଲ; ଲୋକସଂଖ୍ୟା ୪୦୦୦୦୦; ରାଜସ୍ୱ ୪୦୦୦୦୦ ଟଙ୍କା । ଧନରେ କେନ୍ଦୁଝର, ସଭ୍ୟତାରେ ମୟୂରଭଞ୍ଜ ଓ ପ୍ରତାପରେ ଖଣ୍ଡପଡ଼ା ଶ୍ରେଷ୍ଠ ବୋଲି ବୋଧ ହୁଏ । ଖଣ୍ଡପଡ଼ାର ରାଜା ନଟବର ସିଂହ ଦେବ ମର୍ଦ୍ଦରାଜ ଭ୍ରମରବର ରାୟ ବୟସରେ ଜ୍ୟେଷ୍ଠ, ଢେଙ୍କାନାଳର କୁମାର ସୁରପ୍ରତାପ ମହେନ୍ଦ୍ର ବାହାଦୁର କନିଷ୍ଠ । ମୟୂରଭଞ୍ଜ ଇଂରାଜୀରେ ସୁଶିକ୍ଷିତ, ଖଣ୍ଡପଡ଼ା ସଂସ୍କୃତରେ ସୁପଣ୍ଡିତ । ନଟବର ସିଂହଙ୍କ ବୟସ ୭୦ ବର୍ଷ ହେବ । ବ୍ୟୂଢ଼ୋରସ୍କ, ବୃଷସ୍କନ୍ଧ, ଲମ୍ବିତବାହୁ, ପଲିତ କେଶ ଦେଖିଲେ ମହାରାଜ ଦଶରଥଙ୍କ କଥା ମନେ ପଡ଼େ । ରାଜା ଅସାଧାରଣ କବି, ତାଙ୍କର ଗୌପଦ୍ୟାବଳୀ ଓ ଭଜନମାଳା ପ୍ରକାଶିତ ହୋଇଅଛି । ରଘୁନାଥଚରିତ ଏପର୍ଯ୍ୟନ୍ତ ମୁଦ୍ରିତ ହୋଇ ନାହିଁ । ଯେଉଁ କୋମଳ କରରେ ଚବିଶର ମାଳତୀମାଳା ବିରଚିତ ହୁଏ, ସେହି କରର ବନ୍ଧୁକାଘାତରେ ୩୦୦ ବ୍ୟାଘ୍ର ପଞ୍ଚତ୍ୱ ପ୍ରାପ୍ତ ହୋଇଅଛନ୍ତି । ରାଜା ନିଜ ହସ୍ତରେ ବନ୍ଧୁକ ଓ କୃପାଣ ପ୍ରସ୍ତୁତ କରି ଜାଣନ୍ତି । ପଲଙ୍କ ଗଜଦନ୍ତ-ଖଚିତ କରି ଜାଣନ୍ତି । ରାଧାବିନୋଦଙ୍କ ଗୃହ ମୂର୍ତ୍ତି ତାଙ୍କ ସ୍ଥାପତ୍ୟ ଘୋଷଣା କରୁଅଛି । ରାଜାଙ୍କ କବିତ୍ୱଶକ୍ତିର ବିସ୍ତୃତ ସମାଲୋଚନା ପରେ କରାଯିବ ।

ଖଣ୍ଡପଡାରେ ବ୍ରାହ୍ମଣ, କ୍ଷତ୍ରିୟ, କରଣ, ବୈଶ୍ୟଠାରୁ ପାଣ, ହାଡି, କଣ୍ଡରା ପ୍ରଭୃତି ପର୍ଯ୍ୟନ୍ତ ସବୁ ଜାତି ବାସ କରନ୍ତି । ଶାସନୀ ବ୍ରାହ୍ମଣଙ୍କ ସଂଖ୍ୟା ଅତି ଅଳ୍ପ, ବୈଦିକବ୍ରାହ୍ମଣଙ୍କ ସଂଖ୍ୟା ଅଧିକ । ରାଜା ସୂର୍ଯ୍ୟବଂଶୀୟ କ୍ଷତ୍ରିୟ, ରେଓଁଅର ରାଜା ବଘେଲବଂଶୀୟମାନଙ୍କର ନିକଟ ଆତ୍ମୀୟ । ରେଓଁଅର ବର୍ତ୍ତମାନ ରାଜା ଏହାଙ୍କର ଭ୍ରାତୁଷ୍ପୁତ୍ର । ଏମାନେ ଉତ୍କଳକୁ ଆସି ପ୍ରଥମରେ ନୟାଗଡ଼ରେ ରାଜପଣ କଲେ । ସେଠାରୁ ତଦାନୀନ୍ତନ ରାଜାଙ୍କ କନିଷ୍ଠଭ୍ରାତା ଯଦୁନାଥ ମଙ୍ଗରାଜ ଖଣ୍ଡପଡ଼ାରେ ରାଜତ୍ୱ ସ୍ଥାପନ କଲେ । ଖଣ୍ଡ ଖଣ୍ଡ ହୋଇ ସମଗ୍ର ରାଜ୍ୟ ଅଧିକୃତ ହୋଇଥିବାରୁ ଏହାର ନାମ ଖଣ୍ଡପଡ଼ା ହୋଇଅଛି । ତାଙ୍କ ପୁତ୍ର ନାରାୟଣ ମଙ୍ଗରାଜ, ନାରାୟଣଙ୍କ ପୁତ୍ର ବାଲୁଙ୍କେଶ୍ୱର ମଙ୍ଗରାଜ । ବାଲୁଙ୍କେଶ୍ୱରଙ୍କ ପୁତ୍ର ବନମାଳି ଅସାଧାରଣ ବୀରପୁରୁଷ ଥିଲେ, ଲୋକେ କହନ୍ତି ସେ ଗୋଟିଏ ହାତୀକୁ ଉଠାଇ ଫୋପାଡି ଦେଇ ପାରୁଥିଲେ । ବିଦ୍ରୋହ ସମୟରେ ସେ ପୁରୀ ରାଜାଙ୍କୁ ବିଶେଷ ସାହାଯ୍ୟ କରିଥିଲେ ବୋଲି ପୁରୀ ରାଜା ତାହାଙ୍କୁ 'ମର୍ଦ୍ଦରାଜ' ଉପାଧି ଦେଇଥିଲେ—'ଶତ୍ରୂନ୍ ମର୍ଦ୍ଦୟତି ଇତି ମର୍ଦ୍ଦରାଜଃ'* । ସେହି ସମୟରୁ ମଙ୍ଗରାଜ

* ବ୍ୟୁତ୍ପତ୍ତି ଅନୁସାରେ 'ମର୍ଦ୍ଦରାଜ' କିପରି ନିଷ୍ପନ୍ନ ହେଲା ବୁଝି ପାରିଲୁ ନାହିଁ । 'ମର୍ଦ୍ଦୟନ୍ (ଶତ୍ରୂନ୍) ରାଜତେ' ହେବ କି ? ସଂ:

ପରବର୍ତ୍ତୀରେ ଖଣ୍ଡପଡ଼ାର ରଜାମାନେ ମର୍ଦ୍ଦରାଜ ଉପାଧିରେ ଭୂଷିତ ହେଲେ । ବନମାଳୀଙ୍କ ପୁତ୍ର ବୈରାଗୀ ସିଂହ ଦେବ ମର୍ଦ୍ଦରାଜ ଭ୍ରମରବର ରାୟ । ତାଙ୍କ ପୁତ୍ର ନାରାୟଣ, ନାରାୟଣଙ୍କ ପୁତ୍ର ନୃସିଂହ । ଏହି ନୃସିଂହଙ୍କ ସହିତ ଇଂରାଜ ଗଭର୍ଣ୍ଣମେଣ୍ଟ ଓଡ଼ିଶା ଅଧିକାର ଉତ୍ତାରେ ସନ୍ଧି କରି ତାହାଙ୍କୁ କରଦ ରଜା ବୋଲି ସ୍ୱୀକାର କଲେ । ନୃସିଂହ ୩୦ ବର୍ଷ, ତାଙ୍କ ପୁତ୍ର ପୁରୁଷୋତ୍ତମ ୭ ବର୍ଷ, ତାଙ୍କ ପୁତ୍ର କୃତିଚନ୍ଦ୍ର ୨୨ ବର୍ଷ, ତାଙ୍କ ପୁତ୍ର କୃଷ୍ଣବହାଦୁର ୧୮୪୮ ଖ୍ରୀଷ୍ଟାବ୍ଦରେ ସିଂହାସନରେ ଆରୋହଣ କରି ୧୩ ବର୍ଷ ରାଜତ୍ୱ କରିଥିଲେ । ରଜା ନଟବର ସିଂହଦେବ ମର୍ଦ୍ଦରାଜ ଭ୍ରମରବରରାୟ କୃଷ୍ଣବହାଦୁରଙ୍କ ଭ୍ରାତା । ସେ ୧୮୬୭ ଖ୍ରୀଷ୍ଟାବ୍ଦରେ ସିଂହାସନରେ ଆରୋହଣ କରିଥିଲେ । ଏପରି ପ୍ରଜାରଞ୍ଜକ ରଜା ଅତି ଅଳ୍ପ ଦେଖାଯାନ୍ତି । ତାଙ୍କ କାନନବନରେ ୭୦,୦୦୦ ଆମ୍ବ ଗଛ ଅଛି । କ୍ଷୁଦ୍ର ବୃହତ୍ ଆମ୍ବ ବଗିଚା ଦୁଇ ଶହରୁ ଊଣା ନାହିଁ । ଗଛର ଫଳ ପ୍ରଜାମାନେ ଖାଇବେ । ଯେହି ଫଳ ତୋଳିଲେ ତାହାକୁ ଆମ୍ବ ଶେଷ ହେବା ପର୍ଯ୍ୟନ୍ତ ବାଗବାସ କରିବାକୁ ହେବ, କିନ୍ତୁ ଫଳ ପଡ଼ିଲେ ଗୋଟାଇ ନେବାର ଅଧିକାର ସମସ୍ତଙ୍କର ଅଛି । ଗ୍ରୀଷ୍ମ ଦିନରେ ପାର୍ବତ୍ୟ ପ୍ରଦେଶରେ ବନ୍ୟ ପଶୁ ପକ୍ଷୀଙ୍କର ଅତ୍ୟନ୍ତ ଜଳକଷ୍ଟ ଘଟେ, ଏହି ଅଭାବ ଦୂର କରିବା ପାଇଁ ମନୁଷ୍ୟର ଅଗମ୍ୟ ଅଧିତ୍ୟକାରେ ରଜା ବାହାଦୂର ଚାରି ପାଞ୍ଚୋଟି ପୁଷ୍କରିଣୀ ଖନନ କରାଇ ଦେଇଅଛନ୍ତି ।

ବ୍ରାହ୍ମଣ, କ୍ଷତ୍ରିୟ, କରଣ ଓ ବୈଶ୍ୟମାନଙ୍କୁ ଉଚ୍ଚବଂଶୀୟ, ଗଉଡ଼, ଗୁଡ଼ିଆ, ଭଣ୍ଡାରି ଓ ଖଣ୍ଡାୟତ* ପ୍ରଭୃତିଙ୍କୁ ମଧ୍ୟବଂଶୀୟ ଏବଂ ପାଣ, ହାଡ଼ି, କଣ୍ଡରା ପ୍ରଭୃତିଙ୍କୁ ନୀଚବଂଶୀୟ ବୋଲି ଗଣନା କରାଯାଏ । ଉଚ୍ଚ ବଂଶର ଆଚାର ବ୍ୟବହାର ଶାସ୍ତ୍ରସମ୍ମତ ଏବଂ ଅନ୍ୟଦେଶୀୟମାନଙ୍କ ପରି; କେବଳ ରାଜବଂଶର ବିଶେଷତ୍ୱ ଏହି ଯେ ମନୁର ନିୟମାନୁସାରେ ରଜା 'ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି' ଗ୍ରହଣ କରି ପାରନ୍ତି । ଆପଣା ଅପେକ୍ଷା ହୀନବଂଶର କନ୍ୟା ବିବାହ କଲେ ମଧ୍ୟ ରଜା ଶ୍ୱଶୁରବଂଶର ଅନ୍ନ ଜଳ ଗ୍ରହଣ କରିବେ ନାହିଁ । ମଧ୍ୟ ଓ ନୀଚ ବଂଶରେ ପଞ୍ଚାମୃତ ଭକ୍ଷଣର ନିୟମ ନାହିଁ । ଜାତକର୍ମ ଓ ବିବାହପଦ୍ଧତି ଏବଂ ଦେବାର୍ଚ୍ଚନାରେ ଅନେକ ଭିନ୍ନତା ଅଛି ।

ନୀଚ ଜାତିରେ ସନ୍ତାନ ଜନ୍ମର ପଞ୍ଚମ ଦିବସରେ ପାଞ୍ଚ ପ୍ରକାର ପତ୍ର ( ଦମ୍ଭୁଣିଆ, ବେଗୁନିଆ, ଉଙ୍କାର, ଅର୍କ ଓ ନଡ଼ା ) ସିଝାଇ କରି ପ୍ରସୂତି ଓ ଶିଶୁକୁ ସ୍ନାନ କରାଇ ଦିଅନ୍ତି । ସପ୍ତମ ଦିବସରେ ଶିଶୁର ମସ୍ତକ ମୁଣ୍ଡନ କରାଯିବ ଏବଂ ଦୁଇ ହାଣ୍ଡି ଭାତ ରାନ୍ଧି ସନ୍ତାନବତୀମାନଙ୍କୁ ଭୋଜନ ଦିଆଯାଏ ଏବଂ ଶିଶୁର ନାମକରଣ ହୁଏ । ପୂଜା ପାଠ କିଛି ନାହିଁ । ଅତଃପର ବିବାହ ପର୍ଯ୍ୟନ୍ତ ଆଉ କୌଣସି ସଂସ୍କାର ବା ଅନୁଷ୍ଠାନ ହୁଏ ନାହିଁ । ମଧ୍ୟମ ଜାତିମାନଙ୍କ ମଧ୍ୟରେ ଦ୍ୱାଦଶ ଦିବସରେ ପ୍ରସୂତି ଓ ଶିଶୁକୁ ସ୍ନାନ କରାଇ ଶୁଦ୍ଧ ପୂତ କରାଯାଏ । ମଳିନ ବସ୍ତ୍ର ସବୁ ଧୋବା ଘରକୁ ଦିଆ ହୁଏ, ନୂଆ ହାଣ୍ଡି କରାଯାଏ । ଏକବିଂଶ ଦିନରେ ଖଡ଼ୀରହି ( ଜ୍ୟୋତିଷୀ ) ସହିତ ପରାମର୍ଶ କରି ଶିଶୁର ନାମକରଣ ହୁଏ । ୭, ୮, ୧୨ ମାସରେ ଅନ୍ନପ୍ରାଶନ ହୁଏ । ସେ ସମୟରେ ଜ୍ଞାତିମାନଙ୍କୁ ଖୁଆଇବାକୁ ହୁଏ । ଅଷ୍ଟମ ବର୍ଷରେ କର୍ଣ୍ଣବେଧ ହୁଏ । ଏହା ପରେ ବିବାହ ପର୍ଯ୍ୟନ୍ତ ଆଉ କୌଣସି କର୍ମ ନାହିଁ ।

ଉଚ୍ଚ ଜାତିମାନେ ସପ୍ତମ ଦିନରେ ଭୁଜା ସହିତ କଉଡ଼ି ମିଶାଇ ବାଳକମାନଙ୍କୁ ଦିଅନ୍ତି; ଏହାକୁ ପଞ୍ଚୁଆତି କହନ୍ତି । ଏ ଦିନ ଶିଶୁର ହସ୍ତରେ ଖଣ୍ଡେ ଲୁଣର ପହୁଡ଼ ବାନ୍ଧି ଦିଅନ୍ତି ।

* ଖଣ୍ଡାୟତମାନଙ୍କ ସମ୍ବନ୍ଧରେ ଲେଖକ ମହାଶୟ ଗୁରୁତର ଭ୍ରମରେ ପଡ଼ିଅଛନ୍ତି । ସେମାନଙ୍କ ସାମାଜିକ ମର୍ଯ୍ୟାଦା କ୍ଷତ୍ରିୟମାନଙ୍କ ତଳେ । ଖଣ୍ଡାୟତ ଓ ଚଷା ଏକା ନୁହନ୍ତି ।  ସଂ:

ଛ ଦିନରେ ଷଷ୍ଠୀପୂଜା ହୁଏ, ଏହି ଦିନ ପିଲାର ନାହି ଖସି ପଡ଼େ ଏବଂ ସୂତିକା ଗୃହ ପରିଷ୍କାର କରା ହୁଏ । ଏହି ଦିନ ଷଷ୍ଠୀ ଦେବୀ ଶିଶୁର କପାଳରେ ଭାଗ୍ୟ ଲେଖି ଦିଅନ୍ତି । ଏକାଦଶ ବା ଦ୍ୱାଦଶ ଦିନରେ ନୂଆ ହାଣ୍ଡି କରା ହୁଏ ଏବଂ ଜ୍ଞାତି କୁଟୁମ୍ବମାନଙ୍କୁ ଖାଇବାକୁ ଦିଆଯାଏ । ଏକୋଇଶା ଦିନ ବନ୍ଧୁ ବାନ୍ଧବମାନଙ୍କୁ ନିମନ୍ତ୍ରଣ କରି ଶିଶୁର ନାମକରଣ କରନ୍ତି । ଛ ମାସରେ ଅନ୍ନପ୍ରାଶନ ଏବଂ ଏକ ବର୍ଷରେ ଜନ୍ମ ଦିନ ହୁଏ । ନେ ବର୍ଷଠାରୁ ଏଗାର ବର୍ଷ ମଧ୍ୟରେ କର୍ଣ୍ଣବେଧ ହୁଏ । ପନ୍ଦର ଷୋଳ ବର୍ଷରେ ବିବାହ । କରଣ ପ୍ରଭୃତି ଜାତି ବିବାହ ସମୟରେ ଉପବୀତ ଧାରଣ କରନ୍ତି ।

ଇତର ଜାତିମାନଙ୍କର ୭ ବର୍ଷଠାରୁ ୧୭ ବର୍ଷ ମଧ୍ୟରେ ବିବାହ ହୁଏ । କନ୍ୟା ଓ ବରର ଜାତକ ମେଳ ନ ହେଲେ ବିବାହ ହୁଏ ନାହିଁ । କଥାବାର୍ତ୍ତା ହେଲାରୁ ଜାତକ ମିଳାଇ କନ୍ୟା ଦେଖିବାର ଲଗ୍ନ କରିବାକୁ ହୁଏ । ଖଡ଼ୁ, ଖଇ, ବଡ଼ାଏ ହୋଶଲା ଶାଗ, ଅଣାକର ଦହି, ପାଞ୍ଚ ପଇସାର ମାଛ, ଅଠ ଅଣାର ଉଖୁଡ଼ା, ବାର ଅଣାର ମଦ ନେଇ କନ୍ୟା ଦେଖିବାକୁ ଯାନ୍ତି । କନ୍ୟାର ଦ୍ୱାରରେ ପହଞ୍ଚିଲେ ଦ୍ୱାର ଲିପା ହୁଏ । ସେଠାରେ ବର ଘରର ଉପହାରଗୁଡ଼ିକ ରଖି ତା ଉପରେ ଅରୁଆ ଚାଉଳ ଦଉଟି ବସ୍ତ୍ର ଦିଆ ହୁଏ, ଏହାକୁ ବନ୍ଦନା କହନ୍ତି । ତାହା ପରେ କନସଗୁଡ଼ିକ ଘରକୁ ନେଲେ ବର ଘରର ଲୋକମାନେ ମୁହଁ ହାତ ଧୋଇ ଉପବେଶନ କରନ୍ତି । ତତ୍ପରେ କନ୍ୟା ଘରର ମଦ ଆଣି ବରପକ୍ଷୀୟ ଲୋକଙ୍କୁ ଖାଇବାକୁ ଦିଆଯାଏ; ସେମାନଙ୍କ ମଦ ଶେଷ ହେଲେ ବର ଘରର ମଦ ଖିଆ ହୁଏ । ଏହାର ନାମ ପୁକୃତ । ଖାଇବା ପୂର୍ବରୁ ଘଡ଼ାଟି ପୂର୍ଣ୍ଣ ଅଛି କି ନାହିଁ ତାହା ଦେଖନ୍ତି, ଅପୂର୍ଣ୍ଣ ଥିଲେ ଖାନ୍ତି ନାହିଁ । ସମସ୍ତଙ୍କର ଖିଆ ଶେଷ ହେଲେ ଦୁଇ ସୁଆଣୀ ଓ ନିଭୃତ ପକ୍ଷର ଜଣେ ଜଣେ ଭଦ୍ର ଲୋକ ଏହି ଚାରି ଜଣଙ୍କ ପାଇଁ ଚାରି ଘୋଡ ମଦ ରଖା ହୁଏ । ସମସ୍ତଙ୍କ ଖିଆ ସରିଲେ ସେମାନେ ସେହି ଚାରି ଜଣଙ୍କୁ ପୁକୃତ କରିବାକୁ କହିବେ । ସେମାନେ କହିବେ ଆପଣମାନଙ୍କର ପୁକଲ୍ୟାଣ ହେଲେ ଆମ୍ଭେମାନେ ପୁକୃତ କରୁଅଛୁଁ । ଏହା କହି ସେମାନେ ସପ୍ତ ପୁରୁଷଙ୍କୁ ସାକ୍ଷୀ କରି ପୁଅ ଦେଇ କନ୍ୟା ଓ କନ୍ୟା ଦେଇ ପୁଅ ନେଉଅଛୁଁ ବୋଲି ପୁକୃତ କରନ୍ତି । ଏହାର ଅଠ ଦିନ ପରେ ବିବାହ । ବିବାହର ଆଭରଣ ଖଡ଼ୁ, ଲୁଗା, ସିନ୍ଦୂର, କଜ୍ଜ୍ୱଳ ଠାକୁରାଣୀଙ୍କୁ ଦେଇ କନ୍ୟା ଘରକୁ ନିଆ ହୁଏ । ସାହି ଘରରୁ ଜଳ ସଂଗ୍ରହ କରି ଆଣି ବିବାହଗୃହର ପୂର୍ବ ପ୍ରାନ୍ତରେ ହୋଇଲି ବୋଳାଇବା ବେଳେ ସେହି ଜଳରେ ବର କନ୍ୟାଙ୍କୁ ସ୍ନାନ କରାନ୍ତି । ଏହାର ନାମ ବାଡୁଅପାଣି । ଯେଉଁ ସ୍ତ୍ରୀର ବାଡୁଅ ପାଣି ହୋଇ ନ ଥାଏ ମୃତ୍ୟୁ ପରେ ତାହାର ମୋକ୍ଷ ନାହିଁ— ଦୁହେଁ ଦୁଇ ଡାଳରେ ବସି ଦେ ଦିନ ମୁହଁ ଚାହିଁ ଚାହିଁ ହେଉଥାନ୍ତି । ବିବାହ ପାଇଁ କନ୍ୟାପିତା ଚାରି ଘଡ଼ା ମଦ ରଖିବେ । ଭାତ, ତରକାରୀ, ଛେଳି ମାଂସ ଓ ଦୁଇ ଘଡ଼ା ମଦ ବିବାହ ପୂର୍ବରୁ ଖିଆଯାଏ । ବିବାହ ଶେଷ ହେଲେ ବାକି ଦୁଇ ଘଡ଼ା ଉଦରସାତ୍ କରନ୍ତି ।

ବିବାହ ସମୟରେ ଚାରି ଜଣ ଲୋକ ପଇତା ପିନ୍ଧି ବ୍ରାହ୍ମଣ ହୁଅନ୍ତି । ସେମାନେ ଚାରି ବଡ଼ା ନଡ଼ା ଉପରେ ବେଦିରେ ବସନ୍ତି ଏବଂ ଶାଳକାଠ ଜାଳି ସ୍ୱାହାଃ ସ୍ୱାହାଃ ବୋଲି ଘିଅ ଢାଳି ହୋମ କରନ୍ତି । ହୋମ ସମୟରେ ବରର ମାମୁଁ ବରକୁ ଏବଂ କନ୍ୟାର ମାମୁଁ କନ୍ୟାକୁ ଧରିଥାନ୍ତି ଏବଂ ନମସ୍ତେ ନମସ୍ତେ କହୁଥାନ୍ତି । ଚାରୋଟି କୁମ୍ଭ ବେଦି ଉପରେ ରଖି ସାତ ଖିଅ ସୂତା ବେଢ଼ାଇ ଦିଅନ୍ତି । ବର କନ୍ୟା ପରସ୍ପର ସମ୍ମୁଖୀନ ହୋଇ ବସନ୍ତି । ସେହିବେଳେ ମଙ୍ଗଳ-ଗୀତ ଗାନ୍ତି ।

ଲକ୍ଷେ ରଜା ବରଣୀରେ ଶ୍ରୀ ରଜା ଉଣା ।
ଧନୁଶର ଟେକିଲେ ବୀର ଯେ ଲକ୍ଷଣ ।
ଦ୍ରୌପଦୀ ଯେ ବରମାଳା ଗଳାରେ ପକାଇବେ ।

ଝିଅ ଦେବ ବୋଲି ବୋଲିଲେ ଜନକ ।
ଦଶରଥ ଛାମୁକୁ ଶ୍ରୀରାମଚନ୍ଦ୍ର ଲେଖି ।
ସେ ଲେଖା ଦେଖିଣ ସନ୍ଧ୍ୟାନନ୍ଦ ଗଲା ।
ଅଯୋଧ୍ୟା ନଗରେ ପ୍ରବେଶ ହୋଇଲା ।
ବସି କର ପାଠ କଲେ ଅଯୋଧ୍ୟାଦଣ୍ଡପାଣି ।
ବିବାହ ଲଗ୍ନ ଶୁଣିଲା ରାମକୁ ନେବବୋଲି ।
ରାମଙ୍କୁ ବଡ଼ ନେଇ କଲେ ବର ବେଶ ।
ରାମର ଲଲାଟେ ବାନ୍ଧିଲେ ମୁକୁଟ ।

ଏହି ସମୟରେ ବର ମୁଣ୍ଡରେ ମୁକୁଟ ପିନ୍ଧାଇ ଦିଅନ୍ତି ।

ରାମ ବିଭା ହୋଇଲେ ଯେ ଲକ୍ଷଣ ବରଯାତ୍ର
କନକ ମଣ୍ଡପରେ ମୁକ୍ତାହାର ଥୋପି
ପଢ଼ିଲେ ମଙ୍ଗଳ ଗୀତ ହେଲେ ହୁଳହୁଳି
ବିବିଧ ବାଇଦ ବାଜେ ପଡ଼ୁଛି ଉଚ୍ଛୁଳି
ବାନ୍ଧିଲେ ହସ୍ତରେ ଅଷାଢ଼ୁଆ ସୂତା ।

ଏହି ସମୟରେ ସେହି ସାତ ଖିଅ ସୂତାରେ ହାତଗଣ୍ଠି ପଡ଼େ ।

କଣ୍ଠରେ ପକାଇଲେ ସୁବର୍ଣ୍ଣ ପଇତା ।

ଏହି ସମୟରେ ବର ଗଳାରେ ପଇତା ଦିଆଯାଏ । ଏତିକରେ ଗୀତ ଶେଷ ହେଲା ।

ଗ୍ରନ୍ଥି ବାନ୍ଧିବାର ମନ୍ତ୍ର—

ଓଁ ତ୍ରପନ୍ନ ଙସ ଖସ
ଏ ଗୋତ୍ରରୁ ଯାଇ ସେ ଗୋତ୍ରରେ ପଶ୍ ।
ଲଙ୍ଗଳ ଉପରେ କଣ୍ଟି
ପଡ଼ୁ ହାତଗଣ୍ଠି ।

କନ୍ୟାର ଭାଇ ହାତଗଣ୍ଠି ଖୋଲି ଦେଲେ ନୂତନ ବସ୍ତ୍ର ପାଏ । ବର କନ୍ୟା ହାତ ଧରିଥିବ । ମାମୁ କନ୍ୟାକୁ ଆଣି ବର ଡାହାଣ ପାଖରେ ବସାଇବ । ତେତେବେଳେ କଉଡ଼ି ଖେଳ ହେବ । ବର ସାତ ଥର କଉଡ଼ି ପକାଇ ଦେବ, କନ୍ୟା ଗୋଟାଇ ଆଣି ବର ହାତରେ ଦେବ । ତହୁଁପରେ କନ୍ୟା କଡ଼ାଏ କଉଡ଼ି ମୁଠାଇ ଧରିବ, ବର ହାଣି ଅଞ୍ଚଳରେ ଛାଡ଼ା ଛଡ଼ାଇବାକୁ ଚେଷ୍ଟା କରିବ । ଅପାରଗ ହୋଇ ପ୍ରାର୍ଥନା କଲେ କନ୍ୟା କହିବ, କଣ ଦେବ କହ । ବର କହିବ ଛାତ ଗଣ୍ଡାଏ ଦେବି । ତେତେ-ବେଳେ କନ୍ୟା ମୁଠା ଛାଡ଼ି ଦେବ । ବର ପୁଣି ସେହିପରି କରିବ, କନ୍ୟା ମୁଠା ଫିଟାଇବାକୁ ଅକ୍ଷମ ହୋଇ ସ୍ୱୀକାର କରିବ, ସଞ୍ଚିତ ଧନ ଦେଇ ତୁମ୍ଭଙ୍କୁ ପୋଷିବି । ତେତେବେଳେ ସେହି ଗୃହ ଜଣ ଭଲ ଲୋକ ବ୍ରାହ୍ମଣ ଉଠି ଆଶୀର୍ବାଦ କରିବେ — ଏକଘର, ଏକବର, ଦୀର୍ଘଜୀବି, ଯୁଗେ ଯୁଗେ ରାଜ୍ୟ କରିବ, ସାତ ପୁଅ ସୁନାନାକୀ ଝିଅ ହେବ । ବ୍ରାହ୍ମଣମାନେ ଉଠିଗଲେ ଶାଶୁ ନଣନ୍ଦ ସମସ୍ତେ ଆସି ବନ୍ଦାପନା କରିବେ । ଘରର ଈଶାନ-କୋଣରେ ବଉବଉଥି ନାମକ ଗୃହଦେବତା ଥାନ୍ତି, ସେ ଦେବତାଙ୍କୁ ତେତେବେଳେ ମୁଣ୍ଡିଆ ମାରିବେ । ତହୁଁପରେ ବର କନ୍ୟା ଆହାର କରିବେ । ସେମାନଙ୍କ ଆହାର ଶେଷ ହେଲେ ବାକି ଦୁଇ ଘଡ଼ା ମଦ ଖାଇ କୁଟୁମ୍ବମାନେ ଯେ ଯେଉଁଠାରେ ପାରନ୍ତି ପଡ଼ିଯିବେ । କନ୍ୟା ଶ୍ୱଶୁର ଘରକୁ ଆସିଲେ ବରର ପିତା ପାଞ୍ଚ ଘଡ଼ା ମଦ ଭାତ ତରକାରୀ କୁଟୁମ୍ବମାନଙ୍କୁ ଖୁଆଇବେ । ଏତେକେ ବିବାହ ହେଲା ।

ଯାହାର ବାଡ଼ୁଅ ପାଣି ହୋଇ ନ ଥାଏ, ସାହାଡ଼ା ଗଛକୁ ଲୁଗା ଖଡ଼ୁ ମାଳୀ ସିନ୍ଦୂର ଦେଲେ ତାହାର ବିବାହ ହୋଇଯାଏ ।

ମଧ୍ୟଜାତୀୟ ଲୋକଙ୍କ ବିବାହପଦ୍ଧତି କହୁଅଛୁ । ଖଣ୍ଡାଇତଙ୍କ ପାଖରେ ଜାତକ ମେଳ ସବୁ ଜାତିରେ ଅଛି । ଜାତକ ମେଳ ହେଲେ କନ୍ୟାର ମାକୁ ଲୁଗା, ଭାଇକୁ ଯୋଡ଼ ଏବଂ ତେକୋଡ଼ି ଟଙ୍କା ଦେଇ ବରପିତା ବିବାହର ଦିନ ସ୍ଥିର କରି ଆସନ୍ତି । ବିବାହର ପୂର୍ବ ଦିନ ମଙ୍ଗଳପାଠ । ବରଘର ସ୍ତ୍ରୀମାନେ ନୂଆ ସିନ୍ଦୂର ଗୁଆ ହଳଦୀ ଘିଅ ନେଇ କନ୍ୟାକୁ ସ୍ନାନ କରାଇ ଆସନ୍ତି । ପ୍ରଭାତରେ ଉଭୟ ପକ୍ଷର ପ୍ରେରିତ ପାଞ୍ଚ ଘରର ଜଳରେ ସ୍ନାନ କରିବାକୁ ହୁଏ । ସ୍ନାନର ଲୁଗା ଭଣ୍ଡାରୀ ନିଏ । ନୂଆ ଲୁଗା ପିନ୍ଧି ବାଡ଼ୁଅ ଭାତ ଖାଇବାକୁ ହୁଏ ।

ଗୁଡ଼ିଆ ଭଣ୍ଡାରି କେଉଟ ତେଲି ଗଉଡ଼ ପ୍ରଭୃତି ମଧ୍ୟଜାତୀୟ ଲୋକମାନେ ଘୋଡ଼ାରେ ଚଢ଼ି ବିବାହ କରିବାକୁ ଯାଆନ୍ତି । ଉଚ୍ଚ ଶ୍ରେଣୀର ଚତୁର୍ଦ୍ଦୋଳ । ବିବାହ ଯାତ୍ରା ସମୟରେ ପଥରେ ଯେତେ ଦେବତା ଥାଆନ୍ତି, ସମସ୍ତଙ୍କୁ ଗୁଡ଼ଉଳ ଅଞ୍ଜଳି ଦେଇ ଯିବାକୁ ହୁଏ । କନ୍ୟା ଘରେ ପହଞ୍ଚିଲେ ବାଟବରଣି ହୁଏ । ନୂତନ ବସ୍ତ୍ର ପିନ୍ଧି ବେଦି ଉପରେ ବସି ବିବାହ ହୁଏ । ବିବାହର ଚତୁର୍ଥ ଦିବସରେ ଶ୍ରାଦ୍ଧ ଓ ହୋମ ହୁଏ । ପଞ୍ଚମ ଦିନରେ ଶ୍ୱଶୁର ଘରର କାହାର ମୁହଁ ନ ଦେଖି ବର ନିଜ ଘରକୁ ଫେରି ଆସେ । କନ୍ୟା ଗୃହଯୋଗ୍ୟା ନ ହେଲେ ଶ୍ୱଶୁର ଘରକୁ ଆସେ ନାହିଁ । ଦ୍ୱିରାଗମନ ସମୟରେ ଜ୍ଞାତି କୁଟୁମ୍ବଙ୍କୁ ଭୋଜନ ଦିଆଯାଏ । ଉଚ୍ଚ ଶ୍ରେଣୀରେ ଜାତକ ମେଳ ହେଲେ କନ୍ୟା ଘରୁ ସ୍ୱୀକାର ଆସେ । ଗୁଆ, ମୁଦି, ହାର, ବର ପାଇଁ ପାଟଯୋଡ଼, ଲୋଟା, ଥାଳି, ରୁପା ଥାଳିରେ ମହାପ୍ରସାଦ, ମାଛ, ଦହି, ପୁରୋହିତ, ଜ୍ୟୋତିଷୀ ଏବଂ ଭଣ୍ଡାରି ପାଇଁ ଲୁଗା ନେଇ ବାଜା ବଜାଇ କନ୍ୟାପକ୍ଷ ବିବାହ ସ୍ୱୀକାର କରି ଯାନ୍ତି । ବରର ଆତ୍ମୀୟ କୁଟୁମ୍ବ ଆସି ସ୍ୱୀକାର କଲେ କନ୍ୟାପକ୍ଷ ବିଦାୟ ହୁଅନ୍ତି । ବିଦାୟ ସମୟରେ ଉଭୟ ପକ୍ଷର ଜ୍ୟୋତିଷୀ ବରପକ୍ଷର ସ୍ୱୀକାରର ଦିନ ନିର୍ଦ୍ଦେଶ କରନ୍ତି । ସେହି ଦିନ ପୁରୋହିତ ଜ୍ୟୋତିଷୀ ଓ ଭଣ୍ଡାରି ମହାପ୍ରସାଦ ସହିତ ଗହଣା ଶାଢ଼ି ପ୍ରଭୃତି ନେଇ ଯାନ୍ତି । ଯୋଡ଼ାଏ ମୂଲ୍ୟବାନ୍ ଯୋଡ଼ ଦେଖାଇବା ପାଇଁ ନିଅନ୍ତି । ଅନ୍ୟ ସବୁ ପଦାର୍ଥ ଦେଇ ଏହି 'ବେଗର' ଯୋଡ଼ ଯୋଡ଼ିକ ଫେରାଇ ଆଣନ୍ତି । ବିବାହର ଅନ୍ୟାନ୍ୟ ପଦ୍ଧତି ମଧ୍ୟଶ୍ରେଣୀ ପରି । ବିବାହର ପୂର୍ବ ଦିନ ବରଯାତ୍ର ଯାଏ । କନ୍ୟାପକ୍ଷର ଲୋକମାନେ ପାଲିକି ଓ ବାଜା ନେଇ ଯାଇ ବରକୁ ବରଣ କରି ଆଣନ୍ତି । ସେମାନେ ସେହି ଦିନ ଫେରି ଆସନ୍ତି । ଯେ ବରଯାତ୍ର ଦିନ ବରଣ କରେ, ସେହି ପୁଣି ବାଟବରଣି ବେଳେ ବରଣ କରେ ।

ଖଣ୍ଡପଡ଼ାରେ ଗୋପୀନାଥ, ରଘୁନାଥ, ଲକ୍ଷ୍ମୀନରି, ହନୁମାନ୍, ନାରାୟଣ, ଜଗନ୍ନାଥ, ଚଣ୍ଡାଳୟ, ମହାଦେବ ପ୍ରଭୃତି ଦେବତା ଛଡ଼ା ଅନେକଗୁଡ଼ିଏ ନୂତନ ଦେବତା ଦେଖାଯାନ୍ତି । ଏମାନଙ୍କ ମଧ୍ୟରୁ କୌଣସି କୌଣସିଙ୍କୁ ସାନ୍ତାଳ ପ୍ରଗଣାରେ ଦେଖିଥିଲି । ବୋଧହୁଏ ଜନଭୂମିର ଧର୍ମଭାବ ଏକଜାତୀୟ । ଖଣ୍ଡପଡ଼ାର ଗ୍ରାମ୍ୟ ଦେବତାମାନଙ୍କ ନାମ ଉମାଦେଈ, ଭୋମଣୀ, ମଙ୍ଗଳା, ପାଟଚଣ୍ଡୀ, ସୁରିଆ ଏବଂ ବେହେରଗୁଣୀ । ମାଳିଜାତୀୟଲୋକମାନେ ମହାଦେବଙ୍କ ପୁରୋହିତ । ଚଉଁଳାନାମକ ଜଳସ୍ପର୍ଶୀ ଜାତି ଉମାଦେଈ, ଭୋମଣୀ, ମଙ୍ଗଳା ଓ ପାଟଚଣ୍ଡୀଙ୍କ ଏବଂ ଶୁଦ ଜାତି ସୁରିଆ ଏବଂ ବେହେରଗୁଣୀଙ୍କ ପୂଜା କରନ୍ତି । ଶୁଦ ଜାତି ମଧ୍ୟ ଜଳସ୍ପର୍ଶୀ । ମାଳି ଜାତି ଦେବୀମାନଙ୍କ ମଧ୍ୟ ପୂଜା କରନ୍ତି । ଉମା, ଭୋମଣୀ, ମଙ୍ଗଳା, ପାଟଚଣ୍ଡୀ, ସୁରିଆ ଏବଂ ବେହେରଗୁଣୀ ଦେବତାମାନଙ୍କର ପୂଜା ମଦ, ଛେଳି ଓ କୁକୁଡ଼ାରେ ସମ୍ପନ୍ନ ହୁଏ । ଅଥଚ ହିନ୍ଦୁମାନେ ଏହି ସବୁ ମଦ-କୁକୁଡ଼ାପ୍ରିୟା ଦେବୀମାନଙ୍କୁ ପୂଜା ଦେଇଥାନ୍ତି । କାଟିବା ପୂର୍ବରୁ କୁକୁଡ଼ା ଓ ଛେଳିକୁ ମୁଠିଏ ଚାଉଳ ଖାଇବାକୁ ଦିଅନ୍ତି । ଯେତେବେଳେ ଖାଉଥାନ୍ତି, ସେହି ସମୟରେ ଅସ୍ତ୍ରାଘାତରେ ମସ୍ତକ ଛେଦନ କରନ୍ତି ।

ସହସ୍ର ବର୍ଷ ପୂର୍ବେ ହିନ୍ଦୁ ସମାଜ କିପରି ଥିଲା, ଖଣ୍ଡପଡ଼ା ଆସିଲେ ତାହା ବୁଝା ଯାଏ । ଇଂରେଜୀ ହିସାବରେ ଦେଶୀୟ ଦରବାରକୁ ଅଲକ୍ଷ୍ୟ-ସମ୍ଭ୍ରମ ବୋଲି ଯାଇ ପାରେ । ରାଜା ହିନ୍ଦୁ, ପ୍ରଜାଗଣ ହିନ୍ଦୁ । ଚତୁର୍ମାସ୍ୟା, ବୈଶାଖ, କାର୍ତ୍ତିକ ଏବଂ ମାଘ ମାସରେ ରବିବାର, ଦଶମୀ, ଏକାଦଶୀ ଓ ଦ୍ୱାଦଶୀ ତିଥିରେ ଶିକାର ପର୍ଯ୍ୟନ୍ତ ହୁଏ ନାହିଁ । ରାଜକୁମାର ଖୁବ୍ ଭଲ ଶିକାରୀ । ଆମ୍ଭେମାନେ ଦିନେ ଅତି ବାଘ ଶିକାର କରିବାକୁ ଯାଇଥିଲୁଁ । ଦଳକୁ ଦଳ ହରିଣ ରାଜକୁମାରଙ୍କ ନିକଟରେ ଉପସ୍ଥିତ । ସେ ଥରେ ଅଙ୍ଗୁଳି ମଧ୍ୟ ଟେକେ ନାହିଁ । ହରିଣଗୁଡ଼ିକ ଫେରି ମୋ ଆଡ଼କୁ ଆସିଲେ । ଆମର ବୁଝାଇ ଦେଲେ ଯେ ଅଭ୍ୟାଗତଙ୍କ ସମ୍ମାନ ନିମିତ୍ତ ସେ ସେମାନଙ୍କୁ ମୋ ଆଡ଼କୁ ପଠାଇଥିଲେ । ମୁଁ ଶେଷରେ ବୁଝିଲି, ସେ ଦିନ ରବିବାର ।

ରୂପା କଟକ ତିଥିଆ । ଏଠାରେ ଗୋଟିଏ

କଥା କହି ରଖିଲି । ଧୁରଙ୍ଗୋକ୍ତ ଉତ୍ର ଦେଶ ଖୋର୍ଦ୍ଧା ଅଞ୍ଚଳ । ଖୋର୍ଦ୍ଧା ପୁରୀ ରାଜାଙ୍କ ପ୍ରାଚୀନ ରାଜଧାନୀ । ଏ ଦେଶର ସାଧାରଣ ଲୋକେ ଏହି ଅଞ୍ଚଳକୁ ଉଡ଼ିଶା ଏବଂ ଉତ୍ରଭ୍ୟ ଚଷା ବା ଖଣ୍ଡାୟତ ଅଧିବାସୀମାନଙ୍କୁ ଉଡ଼ିଆ କହନ୍ତି । ଏମାନେ ପୂର୍ବେ ଖଣ୍ଡା ଧରି ସୈନ୍ୟ ହେଉଥିଲେ । ବର୍ତ୍ତମାନ ଖଣ୍ଡା ଭାଙ୍ଗି ଲଙ୍ଗଳ ଲୁହା ପ୍ରସ୍ତୁତ କରି-ଅଛନ୍ତି । ପ୍ରଥମେ ଦେଶୀୟ ଲୋକମାନେ ଉଡ଼ିଆ ବୋଲି ଆପଣାକୁ ଅଭିହିତ କରୁଥିଲେ । ଆଜି-କାଲି ଆପଣା ଦେଶକୁ ଉତ୍କଳ ଏବଂ ଆପଣାକୁ ଉତ୍କଳୀୟ ବୋଲି କହୁଅଛନ୍ତି । ପୌରାଣିକ ଭୂଗୋଳ ଅନୁସାରେ ଏହି ଦୁଇଟି ଶବ୍ଦରେ ସେମାନଙ୍କର ଅଧିକାର ନାହିଁ । ସେଥିପାଇଁ ପ୍ରାଚୀନ ମତରେ ମୁଁ ଭାଷାଟିକୁ ଉଡ଼ିଆ ଭାଷା ବୋଲି ଅଭିହିତ କଲି ।

ଖଣ୍ଡପଡ଼ାର ଭାଷା ବିଶୁଦ୍ଧ ଉଡ଼ିଆ । ଏଥିରେ ଇଂରାଜୀ, ବଙ୍ଗଳା, ପାରସିର ମିଶ୍ରଣ ଆଦୌ ନାହିଁ । ଅମ୍ଭମାନଙ୍କ ଦେଶରେ ସଂସ୍କୃତମୂଳକ ଶବ୍ଦକୁ ସାଧୁଭାଷା ବୋଲିଯାଏ ଏବଂ ଶିକ୍ଷିତ ଲୋକମାନେ ସେହି ଭାଷାରେ କଥାବାର୍ତ୍ତା କହନ୍ତି । ଏ ଦେଶରେ ଅତି ନିମ୍ନଶ୍ରେଣୀର ଭାଷା ମଧ୍ୟ ସାଧୁ ଭାଷା ।

ପ୍ରାୟ ବିଂଶତି ବର୍ଷ ପୂର୍ବେ ନବ୍ୟଭାରତରେ ମୁଁ ସମୟ କ୍ରିୟା କଥା ଲେଖିଥିଲି । ଖଣ୍ଡପଡ଼ାରେ ଏବେ ସୁଦ୍ଧା ଏହି ପ୍ରକାର ବିଚାର ପ୍ରଥା ପ୍ରଚଳିତ ଅଛି । ଗୋଟିଏ ଅତି ନିମ୍ନଶ୍ରେଣୀର ଦରିଦ୍ର ଲୋକ ଚୌର୍ଯ୍ୟାପବାଦ ଖାଳନ କରିବାପାଇଁ ରାଜଧାନୀରେ 'ଧର୍ମଦ୍ୱାର' କରିବାକୁ ଆସିଥିଲା । ସେ କହିଲା ଯେ ସେ 'ମାଣ୍ଡୁ କରିବ' । ଏ ଦେଶର ଲୋକେ ସମୟକ୍ରିୟାକୁ ମାଣ୍ଡୁ କହନ୍ତି । ପୂର୍ବେ ଏହି ପ୍ରକାର 'ମାଣ୍ଡୁ' ହେଉଥିଲା, ବର୍ତ୍ତମାନ ନୂଆ ପ୍ରକାର ହେବ । ଅଗ୍ନିଦଗ୍ଧ ଲଙ୍ଗଳ ଲୁହା ଧରି ଓ ଗୋଖୁର ସର୍ପ-ପୂର୍ଣ୍ଣ କୁମ୍ଭରୁ ଗୁଆ ଉଠାଇ ଆପଣାର ନିର୍ଦ୍ଦୋଷତା ପ୍ରମାଣ କରିବାର 'ମାଣ୍ଡୁ' ଆଜି କାଲି ଉଠି ଯାଇ ଅଛି ।

ହୋମ କରି ଦୁଇଟି ମୃଣ୍ମୟ ଗୋଲକ ଜଳ ପାତ୍ରରେ ପ୍ରକ୍ଷେପ କରାଯିବ । ଦୁଇ ଖଣ୍ଡ ତାଳ ପତ୍ରରୁ ଖଣ୍ଡିକରେ 'ଯମ' ଓ ଅନ୍ୟଟିରେ 'ଧର୍ମ' ଲେଖି ଗୋଲକ ମଧ୍ୟରେ ଲୁଚାଇ ରଖାଯିବ ଏବଂ ଗୋଟିଏ ଶିଶୁକୁ ଏ ଗୋଲକ ଉଠାଇବାକୁ ଦିଆଯିବ । ଯମପୂର୍ଣ୍ଣ ଗୋଲକ ଉଠିଲେ ଦୋଷୀ ଏବଂ ଧର୍ମପୂର୍ଣ୍ଣ ଗୋଲକ ଉଠିଲେ ନିର୍ଦ୍ଦୋଷ ପ୍ରମାଣିତ ହେବ । କିନ୍ତୁ ଏ ମାଣ୍ଡୁ ସାଧାରଣଙ୍କର ପ୍ରିୟ ନୁହେ । ଷାଠିଏ ହାତ ଦୂରରେ ଗୋଟିଏ ବଟଶାଖା ପୋତି ହୋମ କରିବା ଉତ୍ତାରୁ ଅଭିଯୁକ୍ତ ବ୍ୟକ୍ତି ଜଳରେ ବୁଡ଼େ । ଜଣେ ତା ମସ୍ତକ ସ୍ପର୍ଶ କରିଥାଏ । ଆଉ ଜଣେ ଧନୁ ଘେନି ସେହି ବଟଶାଖା ଲକ୍ଷ୍ୟ କରି ଗୋଟିଏ ବାଣ ପ୍ରୟୋଗ କରେ । ଅନ୍ୟ ଜଣେ ତାହା ଗୋଟାଇ ଘେନି ଆସେ । ସେ ଫେରିବା ପୂର୍ବରୁ ଅଭିଯୁକ୍ତ ବ୍ୟକ୍ତି ଯେବେ ଭାସି ଉଠେ, ତେବେ ସେ ଅପରାଧୀ । ଏହି ମାଣ୍ଡୁଟି ସାଧାରଣଙ୍କର ବଡ଼ ପ୍ରିୟ । ଅଧିକାଂଶ ମକଦ୍ଦମା ସାକ୍ଷ୍ୟ ଓ ପ୍ରମାଣ ସାହାଯ୍ୟରେ ମୀମାଂସା କରାଯିବ ।

ଶ୍ରୀ ହୀରେଦଚନ୍ଦ୍ର ଗୁପ୍ତ ।

## ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ ।

ମହାକବି ଶୂଦ୍ରମୁନି ସାରଳା ଦାସଙ୍କ ମହାଭାରତର ଶଲ୍ୟପର୍ବରେ ଦୁର୍ଯ୍ୟୋଧନଙ୍କର ବ୍ୟାସ-ସରୋବର ପ୍ରବେଶ ସମୟରେ କୌରବ-ପକ୍ଷୀୟ ଭିନ୍ନ ଭିନ୍ନ ବୀରମାନଙ୍କ ଶବ ଉପରେ ଏବଂ ସର୍ବଶେଷରେ କୁମାର ଲକ୍ଷ୍ମଣଙ୍କ ଶବ ଉପରେ ରକ୍ତନଦୀ ପାର ହେବାର ଦୃଶ୍ୟ ଅତି କରୁଣ । ସମଗ୍ର ଉତ୍କଳ ସାହିତ୍ୟରେ, କେବଳ ଉତ୍କଳ ସାହିତ୍ୟ କାହିଁକି, ଯେ କୌଣସି ସାହିତ୍ୟରେ ଏହା ଅତୁଳନୀୟ ବିବେଚିତ ହେବ । ସାରଳା ଦାସଙ୍କର ଏହି ଆଖ୍ୟାନ ଅବଲମ୍ବନ କରି ନିମ୍ନଲିଖିତ ପ୍ରସଙ୍ଗ ଲେଖିଥିଲି ।

ଟଙ୍କିଲା ତରଙ୍ଗାୟିତା ଲୋହିତ କର୍ଦ୍ଦର—
ପୁଞ୍ଜେ ଅରୁଣିତ ଯାର ଉଚ୍ଚାବଚ ଭୂମି,
ବିଶ୍ୱଜନରମେଧ ବେଦ, ବକ୍ଷେ ଉର୍ଦ୍ଧ୍ୱ ସ୍ତମ୍ଭ

ଅର୍ଯ୍ୟଭାଗ୍ୟ-ଅବର୍ତ୍ତନ-ଅଭିନୟସ୍ଥଳୀ
କୁରୁକ୍ଷେତ୍ରେ, ଭୀଷ୍ମ, ଦ୍ରୋଣ, କର୍ଣ୍ଣଙ୍କ ଉତ୍ତରେ
ନଗଣ୍ୟ ଜର୍ଜର କୁରୁସେନା ଶେଷ ଅଂଶ,
ଅଦ୍ରିପତି ସମ ରଥୀ ଅଟଳ ସମରେ
ହତ ମଦ୍ରପତି ଶଲ୍ୟ ଆଜ ରଣାଙ୍ଗନେ,
ପାଣ୍ଡବ ରାଜାର ଖରଶାଣ ବାଣାଘାତେ;
ହତ ପୁଣି ଖଳମତି ଦୁରନ୍ତ ଶକୁନି,
ଅଗ୍ରଣୀ କପଟପାଶା-ପ୍ରପଞ୍ଚ ଭିଆଣେ,
ମାଦ୍ରୀସୁତ ଖରଶାଣ କୃପାଣର ଘାତେ;
ଅବଶିଷ୍ଟ କୁରୁବଳେ ଆଉ ତିନି ରଥୀ
କୃପାଚାର୍ଯ୍ୟ, କୃତବର୍ମ୍ମା, ବୀର ଅଶ୍ୱତ୍ଥାମା,
ସହି ନ ପାରି ରଣେ ପାଣ୍ଡବପ୍ରତାପେ,
ଆତଙ୍କେ ପଳାଇ ଲୁଚି ଅଛନ୍ତି କେ କାହିଁ;
ଧ୍ୱସ୍ତ ଛିନ୍ନଭିନ୍ନ ହୋଇ କୌରବବାହିନୀ
ପଡ଼ନ୍ତି ସମରକ୍ଷେତ୍ରେ, ପଡ଼ଇ ଯେସନେ
ପ୍ରଚଣ୍ଡ ବାତ୍ୟାର ବେଗେ ଉନ୍ମୂଳିତ ତରୁରାଜି;
ସ୍ଥାନେ ସ୍ଥାନେ ପଡ଼ିଥିଲେ ପଦାତିକ, ରଥୀ,
ଅଶ୍ୱସାଦୀ, ଗଜସାଦୀ, ଉଡ଼ାଇ କୌତୁକେ
ପତାକା, ବଜାଇ ମହାଦର୍ପେ ବୀରବାଞ୍ଛା,
ମତ୍ତ ହୋଇ ଯଶ ଆଶା ଜାଗ୍ରତ ସ୍ୱପନେ;
ସେତୁବନ୍ଧଠାରୁ—ଯହିଁ ଶୈଳ ବେନି ପାଶେ
ବନ୍ଦନ୍ତି ଜଳଦେବୀଏ କୃତାଞ୍ଜଳିପୁଟେ
ରଘୁବରପଦାବ୍ଜ, ଭେଦ ସାଗର-ଲହରୀ
ଫେନିଲ, ନୀଳାମ୍ବୁମାଳ ଆଶାତଟବାଳେ;
ବଦରିକାଶ୍ରମଯାଏ, ହିମଗିରି ଯହିଁ
ଦେବଦାରୁ-ଉପତ୍ୟକା-ମରକତବେଦ—
ପରେ ସ୍ୱଚ୍ଛ ସ୍ଫଟିକର ମେଦେଶବପରି
ଟେକିଛି ଗଗନେ ଗଙ୍ଗା-ଶୃଙ୍ଗାରିତ ଶିଖା,
ଅଗଣିତ ପୁର ଗ୍ରାମ, ଆବସଥ ଯେତେ
ସବୁଥିରୁ ଆସିଥିଲେ ଏହି ରଣ-ଯାଗେ
ଏ ଭାରତ ନରମେଧେ, ରଣମଦେ ମାତି,
ଯଜ୍ଞ-ପଶୁରୂପେ, ଆହା କେତେ ମହାପ୍ରାଣୀ!
ଆସିଥିଲେ ମାତ୍ର ସିନା ଲୋଟାଇବା ପାଇଁ
ଶତ୍ରୁଶସ୍ତ୍ରାଘାତେ ମୁଣ୍ଡ ରଣ ଚଣ୍ଡୀପୀଠେ !
ହତ ଗଜ ବାଜି, ଭଗ୍ନ ରଥ, ଛିନ୍ନ ଦେହ,
ଛିନ୍ନ ଅସ୍ତ୍ର ଶସ୍ତ୍ର, ଢାଲ ସଙ୍ଗେ ରୁଣ୍ଡ ହୋଇ

ପଡ଼ିଛନ୍ତି ରଣାଙ୍ଗନେ ପର୍ବତପ୍ରମାଣେ
ଲକ୍ଷ ଲକ୍ଷ ବୀର, ଆହା, ରକ୍ତାକ୍ତବିଗ୍ରହେ,
ଧନୀ କି ନିର୍ଦ୍ଧନ, ଯୁବା ବୃଦ୍ଧ, ରାଜା ପ୍ରଜା,
କି କୁଳୀନ ଅକୁଳୀନ, ସୁଜନ କୁତ୍ସିତ,
ଶତ୍ରୁ ମିତ୍ର, ଏକ ତଳେ ଶୋଇ ଆଲିଙ୍ଗନେ !
ଏକ ମାତ୍ର ଦୁର୍ଯ୍ୟୋଧନ ଲକ୍ଷଣ ସହିତେ
ଯୁଝୁଥିଲେ ଅଳ୍ପ ସୈନ୍ୟ ମହାଦମ୍ଭରେ
ଶତ୍ରୁ ସଙ୍ଗେ, କୁମାରଙ୍କୁ ବଞ୍ଚାଇବା ଆଶେ
ଗୁପ୍ତ ପଥେ ପେଷିଲେ ସେ ତାଙ୍କୁ ସ୍ୱଶିବିରେ,
ମାତ୍ର ସେ ଲକ୍ଷଣ ପଡ଼ି ଶତ୍ରୁଙ୍କ ହାତୋଟେ
ଲଭିଲେ ନିଧନ କୁରୁପତିର ଅଜ୍ଞାତେ;
ଅବଶିଷ୍ଟ ସୈନ୍ୟ କ୍ଷୟ ଦେଖି କୁରୁନାଥ
ବେନି ହସ୍ତେ ବେନି ଗଦା ଧରି ଅଦ୍ରୁତେ ।
ପଳାଇଲେ ତ୍ରସ୍ତେ ବ୍ୟାସ-ସରୋବରମୁଖେ;
ବୁଡ଼ନ୍ତେ ଭାସ୍କର, ପଥେ ଆସିଲା ଶର୍ବରୀ,
ଏ ସମୟେ କାଦମ୍ବିନୀ ଘୋଟି ନଭସ୍ତଳେ
ଭୀମ ପ୍ରଭଞ୍ଜନ ସହ ଅବିରଳ ଧାରେ
ଢାଳିଲା ସଲିଳପୂର, ବହାଇ ସମ୍ମୁଖେ
ସୁଗଭୀର ଖରସ୍ରୋତ ଲୋହିତ ଶୋଣିତେ,
ଭାସି ଯାଉଥିଲା ଯହିଁ ଶବ ରାଶି ରାଶି
ନର ଗଜ ବାଜିଙ୍କର ସ୍ୟନ୍ଦନ ସହିତେ,
ଅଗ୍ରେ ରକ୍ତନଦୀ ଦେଖି ବସିଲେ ଭୂପତି
ହାହାକାରେ କରଯୁଗ ମାରି ନିଜ ଭାଲେ
କହିଲେ ଆରତେ "ପଛେ ଗୋଡ଼ାନ୍ତି
ପାଣ୍ଡବେ,
ଶସ୍ତ୍ରପାଣି, ଦଣ୍ଡପାଣି ଦଣ୍ଡଧର ଯଥା,
ସମ୍ମୁଖେ ଭୀଷଣ ନଦୀ ତରଙ୍ଗମାଳିନୀ,
କେଉଁ ଉପାୟେ ମୁହିଁ ଯିବି ସରୋବରେ ?
କେ ତାରିବ ମୋତେ, ଆହା, ଏ ଘୋର
ସଙ୍କଟେ ?"
ସହସା ଦେଖିଲେ ସ୍ରୋତେ ଯାଉଅଛି ଭାସି
ଦୁଃଶାସନ ଶବ, ଯାଇ ସେ ଶବ ନିକଟେ
ବୋଇଲେ "ହେ ବାବୁ, ତୋର କ୍ଷତ୍ରିୟ-
ସମାଜେ
ଥିଲା ସବୁ ପରେ ଟେକ ବଇରି-ବଭ୍ରାଟେ,
ଅଭିମାନ ମୋର, ବାବୁ, ନ ସହିବ କ୍ଷଣେ,

ମୋର ଏ ଜୀବନେ, ବାନ୍ଧୁ, କସ କାର୍ଯ୍ୟ ଅଛି ?
କଇଁଛ ନକ୍ରଙ୍କୁ ମୁଁ ଯା ତୁମ୍ଭଙ୍କୁ ମଗର !
ତୁ ତ ପହଁରୁଛୁ ଏବେ ରକତଜଳନଦୀ,
ଏ ପ୍ରବାହେ ପାରି କରି ଦେବୁ କି ତୁ
ମୋତେ ?"

ଏହା ବୋଲି ଭେଳା କରି ଦୁଃଶା ପରେ ଯାଇ
ପଡ଼ନ୍ତେ ବୁଡ଼ିଲା ଶବ ନିଛାଲ ଗର୍ଭରେ;
ତାକୁ ଛାଡ଼ି କୁରୁ ବୀର ଦେଖିଲେ ଅଦୂରେ
କର୍ଣ୍ଣଙ୍କର ଶବ ଭାସି ଆସୁଛି ସେ ସ୍ରୋତେ,
ପ୍ରାଣହୀନ ହୋଇ ସୁଦ୍ଧା ଝଟକଇ ଯହିଁ
ଖରତେଜ ଅଗ ପରି ବାଳାର୍କ ସଦୃଶେ,
ପ୍ରାଂଶୁ ସ୍କନ୍ଧତାଳ ପ୍ରାୟେ ସେହି କୌରବେନ୍ଦୁ
ଏବେ ପୁଣ୍ୟ ଦଶେ ଛୋଟ ମୃତ୍ୟୁର କବଳେ,
କୋଳ କରି କର୍ଣ୍ଣେ ତହୁଁ କହିଲେ ସମ୍ବୋଧି
କୁରୁମଣି "ଅହୋ ମିତ୍ର, ପ୍ରିୟ ପ୍ରାଣୁଁ ବଳି
ତୁ ମୋହର, ଦୁଃଖି-ଦୁଃଖ ଦେଖି ତୋର ହୃଦ
ଦ୍ରବୁଥିଲା ସଦା, ତେଣୁ ଥିଲୁ ମହାଦାତା,
ଦାନବୀର ବୋଲି ଥିଲୁ ବିଖ୍ୟାତ ଜଗତେ,
ଦ୍ୱିଜବେଶେ ଦାନ ତୋତେ ମାଗନ୍ତେ ମଘବା,
କବଚ କୁଣ୍ଡଳ ତାଙ୍କୁ ଦେଲୁ ଅକାତରେ;
ନିରାଶ ନୋହିଲେ ଅର୍ଥୀ ତୋହୋଠାରେ
କେବେ,

ମେଣ୍ଟି ତୁହି, ମିତ୍ରମଣି, ମାତାଙ୍କର ବାଣୀ
ସୋଦରଗଣଙ୍କୁ ଛାଡ଼ି ଆଶ କଲୁ ମୋତେ;
ବନ୍ଧୁ ବୋଲି ମୁହିଁ ତୋତେ ସମ୍ଭାଳିଣ ଥିଲି,
ପାରି କରି ନେବୁ ନିରେ ମୋତେ ଏ
ପ୍ରବାହେ ?"

ଏହା କହି କର୍ଣ୍ଣ ଦେହେ ପଡ଼ିଲେ ମାତ୍ରକେ,
ବୁଡ଼ିଗଲା ସେହି ଦେହ ଅତଳ ସଲିଳେ;
ଦ୍ରୋଣଙ୍କର ପିଣ୍ଡ ଭାସି ଆସନ୍ତେ ତା ପରେ,
"ହାହା ଗୁରୁ ବୋଲି ଗଳା ଧଇଲେ ତା ଯାଇ,
ମୂର୍ତ୍ତିମନ୍ତ ଧନୁର୍ବେଦ ଥିଲୁ ତୁ ଜଗତେ,
ଶିଖିଥିଲି ଯେତେ ବିଦ୍ୟା ତୋହର ପାଖରେ,
ନ ଥିଲେ ଅଜୟ ତୋତେ ସମରେ ମଘବା,
ବାତ୍ସଲ୍ୟ ତୋହର ଥିଲା ଅଧିକ ଅର୍ଜୁନେ,
ପରଭବ ସେହି ତୋତେ ଦେଲା ଅବଶେଷେ !

ବେଦ ଶାସ୍ତ୍ରେ ଥିଲୁ ତୁହି ମର୍ତ୍ତ୍ୟ ବୃହସ୍ପତି,
ଏପରି ବ୍ରାହ୍ମଣ ଗୁରୁ ମାରଇ ପାଣ୍ଡବେ
ଲଭିଲେ ସାମ୍ରାଜ୍ୟ-ଶିରୀ କେଉଁ ଧର୍ମବଳେ !
ତୋର ଗୁଣ କହିବାକୁ ନାହିଁ ବେଳ ଆଉ,
ବରଷେ ନାହିଁ ମୁହିଁ ଜାଣିଲେ ପାଣ୍ଡବେ ;"
ଗୁରୁଙ୍କୁ ଏମନ୍ତ ସ୍ତୁତି, ତାଙ୍କ ଶବ ପରେ
କୋଳ କରି କୁରୁପତି ପଡ଼ିଲାରୁ ମାଡ଼,
ବୁଡ଼ିଗଲା ସେହି ପିଣ୍ଡ ଜଳେ ସେହିକ୍ଷଣି;
ଏଥିଅନ୍ତେ ଶକୁନି ଶବ ଆସିଲାକ ଭାସି,
ଶକୁନିବକ୍ଷତମୁଖ, ବଙ୍କୁଳ ଆକୃତ,
ତହିଁ ନେତ୍ର ପଡ଼ିଲାରୁ ଖେଦେ କୁରୁନାଥ
କହିଲେ ଏସନ ବାଷ୍ପଗଦଗଦ ସ୍ୱରେ,
"ହା ହା, ମୋ ମାତୁଳ, ତୁହି ପାଣ୍ଡବନାଶେ
ଭିଆଇଲୁ ଯେତେ କୂଟ ସବୁ ହେଲା ବୃଥା !
କପଟରୁ ଖୁଆଇଲୁ ଭୀମକୁ କୌଶଳେ,
ଜଉ, ଘୋଟ, ଛଣପଣ, ଗୁଆଘୃତ ଯୋଗେ
ଭିଆଇ ତୁ ଜତୁଗୃହ, ବଉଗିଲ ତହିଁ
ପୁରେ ଗଲେ ପାଣ୍ଡବେ ଦାହନ ଉଦ୍ଦେଶେ,
ନିକଳିଲେ ତହୁଁ ସେହି କେଉଁ ବୁଦ୍ଧିବଳେ ?
କପଟପାଶାର ଥିଲୁ ସୂତ୍ରଧାର ତୁହି,
ଜିଣିଲୁ ତୁ ରାଜ୍ୟ ଆଦି ସବୁ ବୁଦ୍ଧି ଛଳେ,
ମାତ୍ର ବୃଥା ହେଲା ସବୁ ଦଇବ-ଅଘଟେ !
ତୋର ଗୁଣ, ମାତୁଳ, ମୁଁ କହିବଇଁ କେତେ ?
କହ, ମାମୁ, କି ବୁଦ୍ଧି ମୁଁ କରିବି ଏ କାଳେ ?
କେମନ୍ତେ ହୋଇବି ପାରି ଏ ରୁଧିରନଦୀ ?"
ଶକୁନି ଉପରେ ଗଳା ପଡ଼ିଲାରୁ ମାଡ଼,
ବୁଡ଼ିଗଲା ସେହି ପିଣ୍ଡ ଅଗାଧ ପ୍ରବାହେ;
ସେ ଉଦ୍ୟମ ବୃଥା ଦେଖି ତହୁଁ ସେ ଅଚିରେ
କାନ୍ଦିଲେ ସୁମରି ଦୈବେ, ହାହାକାର କରି,
ଦେଖିଲେ ଏକାଳେ ଅଗ୍ରେ ଆସୁଅଛି ଭାସି
ପରମ ସୁନ୍ଦର ଯୁବା ସେହି ଖର ସ୍ରୋତେ,
କଙ୍କଣ କୁଣ୍ଡଳ ନାନା ଅଳଙ୍କାର ଦେହେ,
ଶତ ଚନ୍ଦ୍ର ଭାସି କି ସେ ଯାଉଛନ୍ତି ସଲିଳେ !
ଜଳଦେବତା କି ଯାଏ ନିଦ୍ରାଯୋଗେ ଭାସି
ସେ ଜଳେ, ବିଳାସେ ଆଣି ଲହରୀ-
ପ୍ରେଙ୍ଖୋଳା !

ଏହି ମୋତେ ନେବ ପରା ସ୍ରୋତ ପାର କରି,
ଏହା ପାଇଁ କୁରୁନାଥ ତୋଳି କରି ତାକୁ
ଉପରେ ଥୋଇଲେ ହୃଦ ଗଦା ଯେ ଜଡ଼ିତ,
ଆପେ କୁରୁନାଥ ପରେ ବସିଲେକ ମାଡ଼ି,
ଶୋଳ ଫଣି ଭାସେ ଶବ ସେ ରୁଧିରସ୍ରୋତେ,
ପିଠିରେ ବସିଣ ରାଜା ବେନି ହାତେ ବାହି
ଦ୍ୱିଖଣ୍ଡରେ ଉପନୀତ ହେଲେ ପରପାରେ,
ପାର ହୋଇ ମୃତପିଣ୍ଡ ଓହ୍ଲାଇ ତ୍ୱରିତେ
ବୋଇଲେ ସେ ଶବ ପ୍ରତି "ଦୁଃଶା କର୍ଣ୍ଣ ଆଦି
ଯୋଗେ ଯା ନୋହିଲା, ସାଧ ହେଲା
ତୋହୋ ଯୋଗେ !
କଏ ତୁ ମହାତ୍ମା ? ମୃତ ହୋଇ ଉପକାରୀ
ହେଲୁ ଏଡ଼େ ତୁହି ମୋର ଏ ଅନ୍ତକ
ବେଳେ ?"

ତୁଳାଇ ସେ ଶବ ମୁଖ ନରେଶେନ୍ଦ୍ର ପୁଣି
ଚହ୍ନିଲେ ସଙ୍କେତେ ରାଜା କୁମାର ଲକ୍ଷଣେ,
ଶୋକେ ଅସମ୍ଭାଳ ହୋଇ ବାହୁନ ବାହୁନ
ଶବକୁ ନିରେଖି ଚକ୍ଷୁ କହିଲେ ଅଇଛେ,
"ଏତ ମୋହ କୁଳାଙ୍କୁର ଏହି କୁରୁକୁଳେ,
କୁମାର ଲକ୍ଷଣ, ତୁହି ଥିଲୁ ପେଣ୍ଡୁ କରି,
ତୋର ରକ୍ଷା ଲାଗି ତୋତେ ରଣସ୍ଥଳୁଁ ମୁହିଁ
ପେଷିଲଇଁ ଗୁପ୍ତପଥେ କୌରବ ଶିବିରେ,
ଅହା, କୋତୋଠାରେ କଏ କଲା ଏ ଅନାଚ !
ସ୍ନେହୋନ୍ମୁଖ ଏ କୌରବ ଛିଣ୍ଡାଇ ଅକାଳେ
କଏ ଦଳି ଦେଲା, ଅହା, କୁରୁ-ଆଶାଲତା !
ବାଳୁତ ହୋଇ ତୁ ମୋର ଆଗେ ଗଲୁ ଚାଲି
ଛାଡ଼ି ମୋତେ ଏ ଜଗତେ ! ମୋର
ଯୋଗ୍ୟ ପୁତ,
ସୁଯୋଗ୍ୟ ଦାୟାଦ କୁରୁରାଜସିଂହାସନେ
ଥିଲୁ ତୁହି, ଅରେ ବାପ୍, କି ଗୁଣେ କି ରୂପେ,
ସୁମତି ଗୋ ଗୁଣରାଶି, ଦୟାମୂର୍ତ୍ତି ହୁଅ
ଝୁରି ହେଉଥାନ୍ତି ପ୍ରଜା ଦେଶ ଦେଶାନ୍ତରେ !
ଦୀନ ଦେବା ପାଇଁ ଦାନ ଗର୍ବ ତୁ ନ ଜାଣୁ,
ଅହର୍ନିଶ ଭକ୍ତି ତୋର ଦେବତା ବ୍ରାହ୍ମଣେ,
ଧର୍ମ କାର୍ଯ୍ୟ ସଦା ଲାଗି ଥାଇ ତୋର ଚିତ୍ତେ,
କେମନ୍ତେ ଛାଡ଼ିଲେ ତୋତେ ସେ ଧର୍ମ-
ଦେବତା !

ସଦା ସଦାଳାପୀ, ଦୁଃଖି ଜନର ଭରସା,
ସଦା ସତ୍ୟବାଦୀ, ସଦା ରତ ପରହିତେ,
ତୋତେ ଦେଖି 'ସାଧୁ ସାଧୁ' କହୁଥିଲେ
ଲୋକେ;

ପୂତସ୍ନିଗ୍ଧଶାଳୀ ତୋର ବଦନର ଭଙ୍ଗୀ
ଦେଖି ହେଉଥିଲେ ଲୋକେ ଅପୂର୍ବ
ହରଷେ,

ଉଦ୍‌ଘୂର୍ଣ୍ଣ ଥିଲା ଦେଶ ତୋ ଯଶ ସୌରଭେ;
ସାଧୁ ଯଥା, ଦୁର୍ଦ୍ଧର୍ଷ ତୁ ଥିଲୁ ରଣସ୍ଥଳେ,
କମ୍ପୁଥିଲେ ଶତ୍ରୁକୁଳ ତୋର ଧନୁର୍ଘୋଷେ;
ଅଛଇ ତୋହର, ବାପୁ, ସଦ୍‌ଗୁଣ ଯେତେ,
ମୁଖେ ନ ପାରିବେ କହି ସବୁ ଗଣପତି !
ହାପୁ ଲକ୍ଷଣରେ, କଲୁ ଅନାଥ ତୁ ମୋତେ ।
ବୁଡ଼ାଇଲୁ ତେଲା ମୋର ଅକୂଳ ସାଗରେ !
ଅନ୍ଧାର ଏ ସୃଷ୍ଟି ମୋତେ ଦିଶେ ତୋ ବିହୁନେ,
ବିକଳ ହେଉଛି ମୁହିଁ, ନ ନିରେଖୁ କପାଁ ?
ଉଠ ଉଠ, ବାପ୍, ଯିବା ନଗରେ ବାହୁଡ଼ି,
ଚାହିଁଥିବେ ତୋର ବାଟ ଭାନୁମତୀ ମାଏ;
ମାଏ ପୋଏ କଲ ମୋତେ ଅନେକ ଦହନ
ବାହୁଡ଼ି ନ ଯାନ୍ତି ଯଥା କୃଷ୍ଣ ଅପମାନେ,
ପଡ଼ା ପାଞ୍ଚ ଖଣ୍ଡି ମାଗିଥିଲେ ଯଦୁପତି,
ବେନି ପଡ଼ା ଦେବା ଲାଗି ତୁମ୍ଭେ କଲ ଅଳି,
ବିନା ଯୁଦ୍ଧେ ସୂଚି ମୂନେ ଦେବି ନାହିଁ କ୍ଷିତି,
କର୍ଣ୍ଣ ଶକୁନିଙ୍କ ସଙ୍ଗେ ପାଞ୍ଚି ଏ ମନ୍ତ୍ରଣା,
ପ୍ରତିଫଳ ତାର, ବାପୁ, ପାଇଲି ମୁଁ ଏବେ !
ଏଡ଼େ ବଡ଼ ସମ୍ପଦ ମୁଁ ହେଲେ ବୁଡ଼ାଇଲି !
ଆରେ ପୁତ୍ର, ବୋଲ ତୋର ମାନୁଛି ଏକଣି,
ଅର୍ଦ୍ଧେ ରାଜ୍ୟ ଦେବି, ଏବେ ଆସ ମୋର କୋଳେ;
ଦେଖି ତୋର ସେହି କାନ୍ତି, ସେହି ମୁଖ-ଶଶୀ
ଧରିବି ପରାଣ କେହି ଏ ବେଶେ ନିରେଖି ?
ମୃତ ପିଣ୍ଡ, ବାପୁ, ତୋର ଜଡ଼ାଇ ହୃଦୟେ,
ଏ ମୋହର ଦେହ କପାଁ ଯାଉ ନାହିଁ ଫାଟି ?
କର୍ପୂର ଚନ୍ଦନ ବୋଲି ହେଉ ଯେଉଁ ଦେହ,
ସେହି ଦେହ ଏବେ, ଅହା, ଅପ୍ଲୁତ
ଶୋଣିତେ !

ଲୁଲୁ ଥିଲା ଯେଉଁ ହୃଦେ ମଣି ଗଜମୋତ,,
ମେଦମାଂସ ଏବେ ବୋଲା ହୋଇଛି ସେ ସ୍ଥଳେ !
ଜନ୍ମଠାରୁ ମୁଣ୍ଡ ତୋର ରହିଁ ଅଳଯାଏ,
ନରେଖ ହେଲଣି ଏବେ ମୁହିଁ ଭବଛଳେ !
ହେବେହେଁ ନ ହେଉ ମୋର ମୋହପଟ ଫିଟା,
ତୋହୋପର ପୁତ୍ର ହେଉ ଜନମେ ଜନମେ;"

ଏହା କହି ସେହି ଘୋର ରଜନୀ ଅନ୍ଧାରେ
କବଡ଼ି ପଳାଶକୁଞ୍ଜେ ଏକ ଖାତ ଖୋଳ
କୁତ୍ସିତ ଲକ୍ଷଣକୁ ଶୁଆଇ ସେ ଶବେ,
ମାଣ୍ଡି ନେଦେ ତା ଉପରେ ପକାଇଲେ ମାଟି;
ଶରଗଡ଼ ଛଦନ୍ତରେ ପଳାଇ ଗୁପତେ
ସେ ପଳାଶ କୁଞ୍ଜେ କୁଞ୍ଜେ ମହଷ ଉଗରେ
ଭଜିଲେ ଅଶ୍ରଦ୍ଧ ବ୍ୟାଘ-ସନ୍ନେବରେ ଯାଇଁ ।

ଶ୍ରୀ ରାଧାନାଥ ରାୟ ।

---

## ସଂକ୍ଷିପ୍ତ ସମାଲୋଚନା ।

୧ ରାଜା କୃଷ୍ଣସିଂହକୃତ ମହାଭାରତ—ସଭାପର୍ବ, ବନପର୍ବ ଓ କର୍ଣ୍ଣପର୍ବ । ମୂଲ୍ୟ ଯଥାକ୍ରମେ ଟ୦୧୵, ଟ୦୧ ଓ ଟ୦୬ । ବୌଦାଧିପତି ଶ୍ରୀଯୁକ୍ତ ରାଜା ଯୋଗୀନ୍ଦ୍ର ଦେବଙ୍କଦ୍ୱାରା ଜଗଦୀଶ ପ୍ରେସରେ ପ୍ରକାଶିତ । ଅମ୍ଭେମାନେ ଉପରୋକ୍ତ ତିନି ଖଣ୍ଡି ପୁସ୍ତକ ଉପହାରସ୍ୱରୂପ ପାଇଥିବାର କୃତଜ୍ଞତା ସହକାରେ ପ୍ରକାଶ କରୁଅଛୁଁ । ରାଜା କୃଷ୍ଣ ସିଂହଙ୍କ ମହାଭାରତର ନୂତନ ପରିଚୟ ଦେବାକୁ ହେବ ନାହିଁ । ସମଗ୍ର ଗ୍ରନ୍ଥ ଖଣ୍ଡିକର ମୁଦ୍ରଣ ବହୁ ବ୍ୟୟସାପେକ୍ଷ ଏବଂ ସଂଶୋଧନାଦି ଅତ୍ୟନ୍ତ ଶ୍ରମସାଧ୍ୟ ଥିବାରୁ ଏପର୍ଯ୍ୟନ୍ତ ଏଥିରେ କେହି ପ୍ରବୃତ୍ତ ହେବାକୁ ସାହସୀ ହୋଇ ନ ଥିଲେ । ରାଜା ମହୋଦୟ ଏହି ମହତ୍ କାର୍ଯ୍ୟଟିର ଭାର ଗ୍ରହଣ କରି ସମଗ୍ର ଉତ୍କଳବାସିଙ୍କର ଧନ୍ୟବାଦାର୍ହ ହୋଇଅଛନ୍ତି । ଅମ୍ଭେମାନେ ସମଗ୍ର ପାଠ କରିବାର ଅବସର ପାଇ ନାହୁଁ । କେତେକ ସ୍ଥାନ ପାଠ କରି ବୁଝି ପାରୁ ଅଛୁଁ ଯେ ସଂଶୋଧନ କାର୍ଯ୍ୟ ଅନେକ ପରିମାଣରେ ଆଶାନୁରୂପ ହେଉଅଛି । ପୁସ୍ତକର କାଗଜ ଓ ଛପା ସୁନ୍ଦର । ଆକାର ଦୃଷ୍ଟିରେ ପୁସ୍ତକମାନଙ୍କର ମୂଲ୍ୟ ଅଧିକ ହୋଇ ନାହିଁ । ତେବେ ରାଜା ମହୋଦୟ ନିଜ ଯନ୍ତ୍ରାଳୟରେ ମୁଦ୍ରିତ କରୁଥିବା ସ୍ଥଳରେ ମୂଲ୍ୟଟା ଅଧିକ ସୁଲଭ କରିବାର ଥିଲା ।

୨ ମହାଭାରତ—ସଭାପର୍ବ—ମୟୂରଭଞ୍ଜର ମହାରାଜା ଶ୍ରୀ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ ବାହାଦୁରଙ୍କ ଆଜ୍ଞାନୁସାରେ ପଣ୍ଡିତ ଶ୍ରୀ ଗୋବିନ୍ଦଚନ୍ଦ୍ର ମହାପାତ୍ର ଶର୍ମାଙ୍କଦ୍ୱାରା ଅନୁବାଦିତ । ମୂଲ୍ୟ ଟ୦୧ ମାତ୍ର । ଏ ପୁସ୍ତକ ମୂଳ ସଂସ୍କୃତ ମହାଭାରତର ଅବିକଳ ଗଦ୍ୟାନୁବାଦ । ମୂଲ୍ୟ ଅତ୍ୟନ୍ତ ସୁଲଭ ହୋଇଅଛି । ଅମ୍ଭେମାନେ ନାନା ସ୍ଥାନରୁ କେତେକ ଅଂଶ ପାଠ କରି ଦେଖିଲୁଁ । ଅନୁବାଦ ନିତାନ୍ତ ଅକ୍ଷରଶଃ ହୋଇ ଥିବାରୁ ଏବଂ ଅନେକ କଠିନ ଶବ୍ଦ ମୂଳ ସଂସ୍କୃତରୁ ଗୃହୀତ ହୋଇଥିବାରୁ କିଛି ଜଟିଳ ହୋଇ ପଡ଼ିଅଛି । ଆଶା କରୁଁ ଅନୁବାଦକ ମହାଶୟ ଅନ୍ୟାନ୍ୟ ଖଣ୍ଡମାନ ଅନୁବାଦ କଲା ବେଳେ ଭାଷାକୁ ସରଳ ଓ ସୁବୋଧ କରିବାକୁ ଯତ୍ନବାନ୍ ହେବେ ।

୩ INDUBALA—A Domestic Picture by Sitanath Tattvabhusan. ମୂଲ୍ୟ ଟ୦।୵ ମାତ୍ର । ଏହି କ୍ଷୁଦ୍ର ପୁସ୍ତିକାଖଣ୍ଡି ପାଠକରି ଅମ୍ଭେମାନେ ଅତ୍ୟନ୍ତ ସୁଖୀ ହୋଇଅଛୁଁ । ଇନ୍ଦୁବାଳାଙ୍କର ହୃଦଃଶୋଷଣ ଜୀବନକାହାଣୀ ବର୍ଣ୍ଣନ କରିବାକୁ ଯାଇ ଲେଖକ ଗୃହଶିକ୍ଷା ତାହାର ସୁଫଳ ଅତି ସୁନ୍ଦରରୂପେ ଦେଖାଇଅଛନ୍ତି । ପୁସ୍ତିକା ଖଣ୍ଡି ଯୁବା ବୃଦ୍ଧ, ସ୍ତ୍ରୀ ପୁରୁଷ ସମସ୍ତଙ୍କ ପକ୍ଷରେ ଶିକ୍ଷାପ୍ରଦ ହୋଇଅଛି । ଭାଷା ବେଶ୍ ସରଳ ।

୪ ସଚିତ୍ର କବିତା-ହାରକ (ବଙ୍ଗଳା)—ଶ୍ରୀ ରମେଶଚନ୍ଦ୍ର ଜୋୟାରଦାର ପ୍ରଣୀତ । ମୂଲ୍ୟ ଟ୦। ମାତ୍ର । ଏଥିରେ କ୍ଷୁଦ୍ର କ୍ଷୁଦ୍ର ୧୪ ଟି ପଦ୍ୟ ଅଛି । ଲେଖା ଅପରିପକ୍ୱ ।

୫ । ନରସିଂହପୁରର ଭୂଗୋଳ ଓ ଇତିହାସ— ରାଜା ଶ୍ରୀ ସାଧୁଚରଣ ମାନସିଂହ ହରିଚନ୍ଦନ ମହାପାତ୍ରଙ୍କ ଦ୍ୱାରା ସଙ୍କଳିତ ଓ ପ୍ରକାଶିତ । ଏ ପ୍ରକାର କ୍ଷୁଦ୍ର ରାଜ୍ୟଖଣ୍ଡର ଭୌଗୋଳିକ ବିବରଣ ସଂଗ୍ରହ ଆଜିକାଲି ସେତେ କଠିନ କାର୍ଯ୍ୟ ନୁହେ ଏବଂ ଏଥିରେ ବିଶେଷ ମଧ୍ୟ ଅଧିକ ନାହିଁ । ମାତ୍ର କ୍ଷୁଦ୍ର ବୃହତ୍ ପ୍ରାୟ ସମସ୍ତ ରାଜ୍ୟର ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଇତିହାସ ଅଛି ଏବଂ ସମ୍ଭବତଃ ତାହା ଅନେକ ସ୍ଥଳରେ ଗୌରବମୟ । ଦୁଃଖର ବିଷୟ ସେଗୁଡ଼ିକ ଅନ୍ଧକାରାଚ୍ଛନ୍ନ । କେଉଁଠିକି ଦୃଷ୍ଟି ବା କେତେ ଜଣଙ୍କର ଯାଉଅଛି ? ଏପରି ଗୁରୁତର ଓ କଠିନ ଶ୍ରମସାଧ୍ୟ କାର୍ଯ୍ୟରେ ପ୍ରବୃତ୍ତ ହେବାକୁ କେତେ ଜଣ ରାଜା ? ପ୍ରାଚୀନ ଓଡ଼ିଆ ପୁଅ ବୀର ଥିଲେ, ଏକଥା ସମସ୍ତଙ୍କ ମୁହଁରୁ ଶୁଣାଯାଏ । ମାତ୍ର ବୀରଙ୍କ ପ୍ରକୃତ କାହାଣୀ କେତେଟା କେତେ ଜଣ ଜାଣନ୍ତି ? ଅମ୍ଭମାନଙ୍କର ସେଲ ଅଣା କେବଳ ମୂର୍ଖ ବାଲଙ୍ଗି ! ସେ ଯାହା ହେଉ, ରାଜା ମହୋଦୟ ସ୍ୱରାଜ୍ୟର ଇତିହାସର କେତେକ ଉପାଦାନ ସଂଗ୍ରହ କରି ପ୍ରଶଂସନୀୟ କାର୍ଯ୍ୟ କରି ଅଛନ୍ତି ।

୬ । ପ୍ରେମ-ଲହରୀ— ଶ୍ରୀ ହରିହର ମିଶ୍ରଙ୍କ ଦ୍ୱାରା ବିରଚିତ । ମୂଲ୍ୟ ପାଞ୍ଚ ପଇସା । କ ଠାରୁ କ୍ଷ ପର୍ଯ୍ୟନ୍ତ ଅକ୍ଷରାନୁକ୍ରମରେ ରଚିତ କେତେ ଗୁଡ଼ିଏ ଭଜନସଙ୍ଗୀତ । ଛନ୍ଦା ବନ୍ଧା ଲେଖାରୁ ରସ ବାହାରିବା କଠିନ ।

୭ । କଳି-ପୁରାଣ— ଉପରୋକ୍ତ ଲେଖକଙ୍କ ବିରଚିତ । ମୂଲ୍ୟ ତିନି ପଇସା । ସଙ୍ଗତ ଅସଙ୍ଗତ ଯାହା ଖୁସି ଲେଖିଲେ କବି ହୁଅନ୍ତି ନାହିଁ ।

୮ । ଚିତ୍ତବିନୋଦ-ଚତୁର୍ଦ୍ଦଶୀ— ଉପରୋକ୍ତ ଲେଖକଙ୍କ ରଚିତ । ମୂଲ୍ୟ ଦୁଇ ପଇସା । ମତିବୋଧ ଚଉତିଶାର ଅନୁକରଣ ।

---

## ଶୋକ-ସମ୍ବାଦ ।

ଉତ୍କଳଗୌରବ ଯଶସ୍କର ପୁରୁଷ ମହାମହୋପାଧ୍ୟାୟ ଶ୍ରୀ ଚନ୍ଦ୍ରଶେଖର ସିଂହ ସାମନ୍ତ ଆଉ ଏ ସଂସାରରେ ନାହାନ୍ତି—ରୋଗ ଶୋକ ଦାରିଦ୍ର୍ୟ ହିଂସା ଦ୍ୱେଷ ପ୍ରଭୃତିରେ ହସ୍ତ ଏଡ଼ାଇ ଅମରଗମ୍ୟ ଅମର ଧାମକୁ ଚାଲି ଯାଇଅଛନ୍ତି । ଏ ସଂସାରରେ ଥାଇ ମଧ୍ୟ ସେ ଜ୍ଞାନ ଓ ଧର୍ମ ବଳରେ ସଂସାରର ଅତୀତ ପ୍ରଦେଶରେ ବାସ କରୁଥିଲେ । ଦେହର ସମ୍ବନ୍ଧ ରହିତ ହେଲା—ସର୍ବ ପ୍ରକାର ବନ୍ଧନ ଛିନ୍ନ ହେଲା । ଏବେ ସେ ନିରବଚ୍ଛିନ୍ନ ଜ୍ଞାନ-ପ୍ରେମ-ସୁଧା ପାନର ଅଧିକାରୀ ହେଲେ । ଧନ୍ୟ ଉତ୍କଳରେ ଜନ୍ମଗ୍ରହଣ କରି ଚନ୍ଦ୍ରଶେଖର ସଭ୍ୟ ଜଗତ୍ ନିକଟରେ ଏହାର ମୁଖ ଉଜ୍ଜ୍ୱଳ କଲେ—ପତିତ ମାତୃଭୂମିକୁ କିଞ୍ଚିତ୍ ଊର୍ଦ୍ଧ୍ୱକୁ ଉଠାଇ ଆଣିଲେ । ମାତ୍ର ଉତ୍କଳବାସୀ ତାଙ୍କ ପ୍ରତି କି ବ୍ୟବହାର କରି ଅଛନ୍ତି ! ଆଜି ତାଙ୍କର ତିରୋଧାନରେ ଦୁଇ ଚାରିଟା ଶୋକପ୍ରକାଶକ ବାକ୍ୟ ଉଚ୍ଚାରଣ କରି—ଦୁଇ ଚାରି ବିନ୍ଦୁ ଅଶ୍ରୁ ବିସର୍ଜନ କରି ଅନେକେ କର୍ତ୍ତବ୍ୟ ଶେଷ କରି ବସିବେ । ଦୁର୍ଭାଗ୍ୟ ଦେଶରେ ପ୍ରତିଭାର ପରିଣାମ ଏହି ! ବୃଥା ଛଳନା— ବୃଥା ଛଦ୍ମବେଶରେ ଆଉ କିଛି ଫଳ ନାହିଁ ! ଚନ୍ଦ୍ରଶେଖର ଭିନ୍ନଦେଶବାସୀ— ଭିନ୍ନ ଜାତୀୟ ଲୋକ—ଅମ୍ଭେମାନେ ତାଙ୍କର କେହି ନୋହୁଁ । ସୁତରାଂ ଅମ୍ଭମାନଙ୍କ ମୁଖରେ ତାଙ୍କ କଥା ଶୋଭା ପାଇବ ନାହିଁ । ନୀରବତା ସର୍ବାଂଶରେ ଶ୍ରେୟଃ । ତାଙ୍କ ରାଜ୍ୟରେ— ସ୍ୱର୍ଗରେ ସେ ନିତ୍ୟାନନ୍ଦ ସମ୍ଭୋଗ କରନ୍ତୁ । ଅମ୍ଭେମାନେ ଧୂଳି ମାଟି ପେଣ ଯେପରି ଅଛୁଁ, ସେହିପରି ଥାଉଁ !

ଶ୍ରୀଯୁକ୍ତ ରାଯବହାଦୁର ବହିଦାର
ଗାଙ୍ଗପୁର ଟ ୵ ୯

„ ଛବଡ଼ ମହାନ୍ତ ମୟୂରଭଞ୍ଜ ଟ ୵ ୯
„ କୃଷ୍ଣଦେବ ମହାପାତ୍ର ଅଷ୍ଟାବଗ ଟ ୵ ୯
„ ଅଚ୍ୟୁତାନନ୍ଦ ଦାସ କଟକ ଟ ୧ ୯
„ ହରିହର ରାଜଗୁରୁ ଛଚନା
ଜଗନ୍ନାଥପୁର ଟ ୵ ୯
„ ଗୋପୀନାଥ କର ରାମପୁର ଟ ୧ ୯
„ ଅଦ୍ୱୈତଚରଣ ପଟ୍ଟନାୟକ
କଟକ ଟ ୦·୫
„ ଅଦ୍ୱୈତଚରଣ ମହାନ୍ତ ଖୋର୍ଦ୍ଧା ଟ ୵ ୯
„ ବନମାଳୀ ସିଂହ ଢେଙ୍କାନାଳ ଟ ୵ ୯
„ ସଦାନନ୍ଦ ସିଂହ ବଙ୍ଗମୁଣ୍ଡା ଟ ୵ ୯
„ ଶ୍ୟାମସୁନ୍ଦର ବାବୁ ଲକ୍ଷ୍ମୀଗଡ଼ ଟ ୧ ୯
„ ସୁନ୍ଦର ଭୋଇ ସଉଭଲା ଟ ୵ ୯
„ ଅନିରୁଦ୍ଧ ଗଡ଼ଢଅ ବଜପୁର ଟ ୧ ୯
„ ସମ୍ପାଦକ, ମାଲୁଦ-ହିତସାଧନୀ
ସଭା ମାଲୁଦ ଟ ୧ ୯
„ ଦାମୋଦର ଦୋଷ୍ଟା ଲେହେଡ଼ା ଟ ୵ ୯
„ କ୍ଷୀରୋଦ ସିଂହ ଅଳାଗଡ଼ ଟ ୵ ୯
„ ଭଗବାନପ୍ରସାଦ ଦାସ
ମୟୂରଭଞ୍ଜ ଟ ୵ ୯
„ ଶ୍ରୀନାଥ ସାମନ୍ତ ଅଠଗଡ଼ ଟ ୵ ୯
„ ରାମପ୍ରସାଦ ସିଂହ ଅପରବର୍ମା ଟ ୵ ୯
„ ହରେକୃଷ୍ଣ ମିଶ୍ର ନରସିଂହପୁର ଟ ୵ ୯
„ ଓଡ଼ିଯ଼ନାରାୟଣ ଦାସ
କାଶୀମପୁର ଟ ୧ ୯
„ ବଳରାମ ପଟ୍ଟନାୟକ ସାଉନଲା ଟ ୵ ୯

ଅଗ୍ରିମ ।
୧୯୦୪

„ ରଘୁନାଥ ସିଂହ ବର୍ମା ଟ ୵ ୯
„ ସୋମନାଥ ପାଣିଗ୍ରାହୀ ବାମଣ୍ଡା ଟ ୧ ୯
„ ବାଳକୃଷ୍ଣ ସ୍ୱାଇଁ ହଂସଦଅ ଟ ୧ ୯
„ ସୂର୍ଯ୍ୟମଣି ଦାସ ବସନା ଟ ୧ ୯
„ କୃଷ୍ଣକୃଷ୍ଣ ମହାନ୍ତ ପୁରୀ ଟ ୧ ୯
„ ସଚ୍ଚିଦାନନ୍ଦ ନାରାୟଣ ଦତ୍ତ କଟକ ଟ ୵ ୯

ଶ୍ରୀଯୁକ୍ତ ଅକ୍ଷୟଚନ୍ଦ୍ର ରାୟ ଢେଙ୍କାନାଳ ଟ ୵ ୯
„ ଚକ୍ରଧର ପଟ୍ଟନାୟକ ହିନ୍ଦୋଳ ଟ ୵ ୯
„ ଗର୍ଡନ ଏସ୍ ଓଇଲକିନ୍ସ୍ ସୁପ୍ରିଂ
ବ୍ରହ୍ମପୁର ଟ ୵ ୯
„ ଶ୍ରୀ ଜଳଧର ଦେଓ ବାମଣ୍ଡା ଟ ୵ ୯
„ ମ୍ୟାନେଜର ଖ୍ରୀଷ୍ଟିଆନ
ଅରଫାନ ହୋମ ବାଲେଶ୍ୱର ଟ ୵ ୯
„ ବଜ୍ରଚନ୍ଦ୍ର ମଜୁମଦାର
ସମ୍ବଲପୁର ଟ ୵ ୯
„ ପାର୍ବତୀଚରଣ ଦାସ
ଢେଙ୍କାନାଳ ଟ ୵ ୯
„ ଦୁର୍ଗାଚରଣ ପଟ୍ଟନାୟକ
ଢେଙ୍କାନାଳ ଟ ୵ ୯
„ ଛକଡ଼ ମହାନ୍ତ ମୟୂରଭଞ୍ଜ ଟ ୵ ୯
„ ହରିହର ରାଜଗୁରୁ ଛଚନା
ଜଗନ୍ନାଥପୁର ଟ ୵ ୯
„ ଗୋପୀନାଥ କର ରାମପୁର ଟ ୧ ୯
„ ହରିଶଙ୍କର ପଟ୍ଟନାୟକ ସମ୍ବଲପୁର ଟ ୧ ୯
„ ଅଦ୍ୱୈତଚରଣ ମହାନ୍ତ ଖୋର୍ଦ୍ଧା ଟ ୵ ୯
„ ବନମାଳୀ ସିଂହ ଢେଙ୍କାନାଳ ଟ ୵ ୯
„ ସଦାନନ୍ଦ ସିଂହ ବଙ୍ଗମୁଣ୍ଡା ଟ ୵ ୯
„ ଶ୍ୟାମସୁନ୍ଦର ବାବୁ ଲକ୍ଷ୍ମୀଗଡ଼ ଟ ୧ ୯
„ ସୁନ୍ଦର ଭୋଇ ସଉଭଲା ଟ ୵ ୯
„ ଅନିରୁଦ୍ଧ ଗଡ଼ଢଅ ବଜପୁର ଟ ୵ ୯
„ ସମ୍ପାଦକ, ମାଲୁଦ ହିତସାଧନୀ
ସଭା ମାଲୁଦ ଟ ୵ ୯
„ କ୍ଷୀରୋଦ ସିଂହ ଅଳାଗଡ଼ ଟ ୵ ୯
„ ଭଗବାନପ୍ରସାଦ ଦାସ ମୟୂରଭଞ୍ଜ ଟ ୵ ୯
„ ଶ୍ରୀନାଥ ସାମନ୍ତ ଅଠଗଡ଼ ଟ ୵ ୯
„ ଦୟାନିଧି ଦେବ ବାମଣ୍ଡା ଟ ୵ ୯
„ ମହନ୍ତ ଭଗବାନ ଦାସ ବାବାଜୀ
ଦେବୀମଠ ପାରଳା ଟ ୵ ୯
„ ଲକ୍ଷ୍ମୀଧର ମହାନ୍ତ ଖୋର୍ଦ୍ଧା ଟ ୧ ୯
„ ରାମପ୍ରସାଦ ସିଂହ ଅପରବର୍ମା ଟ ୵ ୯
„ ହରେକୃଷ୍ଣ ମିଶ୍ର ନରସିଂହପୁର ଟ ୵ ୯
„ ମୃତ୍ୟୁଞ୍ଜୟ ରଥ କଟକ ଟ ୧ ୯

## ମୂଲ୍ୟପ୍ରାପ୍ତି ।

### ରାଜସଂସ୍କରଣ ।

୧୯୦୩

ଶ୍ରୀଯୁକ୍ତ ବାଲୁକେଶ୍ୱର ମିଶ୍ର ବଲାଙ୍ଗିର ଟ ୫ ୯

" ରାଜାସାହେବ କନିକା କଟକ ଟ ୧୦ ୯

" ରାଜା ସାହେବ ବୀରମିତ୍ରା ବାମଣ୍ଡା ଟ ୧୦ ୯

" ବସ୍ତ୍ରଚରଣ ଚଟ୍ଟୋର୍ଯ୍ୟା ବ୍ରହ୍ମପୁର ଟ ୫ ୯

" କୃଷ୍ଣପ୍ରସାଦ ମହାନ୍ତି ବଲାଙ୍ଗିର ଟ ୫ ୯

" ରାଜାସାହେବ ପାଲଲହଡ଼ା ଟ ୫ ୯

ଶ୍ରୀଯୁକ୍ତ ରାଜାସାହେବ ନୂଆଗଡ଼ ଟ ୫ ୯

" ଯୁବରାଜସାହେବ କେନ୍ଦୁଝର ଟ ୫ ୯

" ମହାରାଜ ମଥୁର ସାହୁ ବ୍ରହ୍ମପୁର ଟ ୲୦ ୯

" ରାଜାସାହେବ ଗାଙ୍ଗପୁର ଟ ୫ ୯

" ଯୁବରାଜ ସାହେବ ଗାଙ୍ଗପୁର ଟ ୫ ୯

" ରାଜକୁମାର ରାଜୀବଲୋଚନ ଶିଖର ଦେଓ ଗାଙ୍ଗପୁର ଟ ୫ ୯

### ସାଧାରଣ ସଂସ୍କରଣ ।

୧୯୦୧

ଶ୍ରୀଯୁକ୍ତ ନରସିଂହ କର ଦେମାଣ୍ଡୋ ଟ ୧ ୯

୧୯୦୨

" ଚନ୍ଦ୍ରାମଣି ଚୌଧୁରୀ ମହାଶୟ କଟକ ଟ ୧ ୯

" ବେଞ୍ଜାମିନ ମହାନ୍ତି " ଟ ୲ ୯

" ପଦ୍ମନାଭ ଶତପଥୀ " ଟ ୧ ୯

" ଅଚ୍ୟୁତାନନ୍ଦ ଦାସ " ଟ ୧ ୯

" ନାରାୟଣପ୍ରସାଦ ମହାନ୍ତି " ଟ ୧ ୯

" ବୈଦ୍ୟନାଥ ମିଶ୍ର " ଟ ୧ ୯

" କାଳିକୃଷ୍ଣ ସରକାର " ଟ ୲ ୯

" ଅକ୍ଷୟଚନ୍ଦ୍ର ଦାସ ନୂଆଗଡ଼ ଟ ୲ ୯

" ମଣିଚରଣ ମହାପାତ୍ର ସାହିତ୍ୟ ମହାମଣ୍ଡଳ ଟ ୲ ୯

" ଅନନ୍ତଚନ୍ଦ୍ର ମହାନ୍ତି କଟକ ଟ ୧ ୯

୧୯୦୩

" ମଦନମୋହନ ରାଜଗୁରୁ ଭଞ୍ଜାନଗର ଟ ୲ ୯

" ରଘୁନାଥ ସିଂହ ବର୍ମା ଟ ୲ ୯

" ଗୁରୁପ୍ରସାଦ ପାଣିଗ୍ରାହୀ ଅନନ୍ତପୁର ଟ ୧ ୯

" ହରେକୃଷ୍ଣ ମିଶ୍ର କଟକ ଟ ୧ ୯

" ମଙ୍ଗଳଲାଲ ମାରୁଆଡ଼ି " ଟ ୧ ୯

" ମଧୁସୂଦନ ଦାସ " ଟ ୧ ୯

" ଆନନ୍ଦଚନ୍ଦ୍ର ପଣ୍ଡା " ଟ ୲ ୯

" ବେଞ୍ଜାମିନ ମହାନ୍ତି " ଟ ୧ ୯

" ସୁଦାମଚରଣ ନାୟକ " ଟ ୲ ୯

" ଯଦୁମଣି ଦାସ " ଟ ୧ ୯

" ଅର୍ତ୍ତତ୍ରାଣ ଶତପଥୀ " ଟ ୧ ୯

ଶ୍ରୀଯୁକ୍ତ କୁଞ୍ଜବିହାରୀ ଦାସ କଟକ ଟ ୧ ୯

" ଶ୍ୟାମସୁନ୍ଦର ସାହୁ ଲକ୍ଷ୍ମଣନାଥ ଟ ୲ ୯

" ଭଗବାନ ମିଶ୍ର ସମ୍ବଲପୁର ଟ ୲ ୯

" ଲୋକନାଥ ଦତ୍ତ ବହଳଦା ଟ ୲ ୯

" ବୃନ୍ଦାବନ ଦତ୍ତ " ଟ ୧ ୯

" ଚନ୍ଦ୍ରମଣି ପଣ୍ଡା କଟକ ଟ ୧ ୯

" ହରେମୋହନଲାଲ ଦାସ " ଟ ୧ ୯

" ରଘୁନାଥ ଘୋଷ " ଟ ୧ ୯

" ରଘୁନାଥ ପଢ଼ିଆରୀ " ଟ ୦ ୳

" ବ୍ରଜବନ୍ଧୁ ମିଶ୍ର ବେନ୍ତାପଡ଼ା ଟ ୦ ୳

" ରାମଚନ୍ଦ୍ର ସିଂହ କଟକ ଟ ୦ ୳

" ଅକ୍ଷୟଚନ୍ଦ୍ର ଦାସ ନୂଆଗଡ଼ ଟ ୲ ୯

" ଅକ୍ଷୟଚନ୍ଦ୍ର ରାୟ ଢେଙ୍କାନାଳ ଟ ୲ ୯

" ଗୋପୀନାଥ ଅଧିକାରୀ ଟେକାଳି ଟ ୲ ୯

" ଗର୍ଡନ ଏସ୍ ଉଇଲକିନ୍ସ ସୁପ୍ରାର ବ୍ରହ୍ମପୁର ଟ ୲ ୯

" ଶ୍ରୀ କଳନ୍ଦର ଦେଓ ବାମଣ୍ଡା ଟ ୲ ୯

" ମାନେଜର ଖ୍ରୀଷ୍ଟିଆନ ଉଡ଼ଂରୁମ ବାଲେଶ୍ୱର ଟ ୲ ୯

" ବିଜୟଚନ୍ଦ୍ର ମଜୁମଦାର ସମ୍ବଲପୁର ଟ ୲ ୯

" ପାର୍ବତୀଚରଣ ଦାସ ଢେଙ୍କାନାଳ ଟ ୲ ୯

" ଦୁର୍ଗାଚରଣ ପଟ୍ଟନାୟକ ଢେଙ୍କାନାଳ ଟ ୲ ୯

" ନାରାୟଣପ୍ରସାଦ ମହାନ୍ତି କଟକ ଟ ୲ ୯

# ବିଜ୍ଞାପନ ।

——:o:——

ଶ୍ରୀ ମଧୁସୂଦନ ରାଓ ପ୍ରଣୀତ କତିପୟ ପୁସ୍ତକ ।

"କୁସୁମାଞ୍ଜଳି"—ମୂଲ୍ୟ ଟ ୦। ଏହି କବିତା ପୁସ୍ତକର 'ଋଷି ପ୍ରାଣେ' ପ୍ରଭୃତି କେତୋଟି କବିତା ଶ୍ରୀ ରବୀନ୍ଦ୍ରନାଥ ଠାକୁର ପ୍ରଭୃତି କତିପୟ ବଙ୍ଗୀୟ ଶ୍ରେଷ୍ଠ କବିଙ୍କ କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ଉତ୍କଳ ଗାଥା"—ମୂଲ୍ୟ ଟ ୦/ କବିବର ରାଧାନାଥ ରାୟ ପ୍ରଭୃତି କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ବସନ୍ତ ଗାଥା"—ମୂଲ୍ୟ ଟ ୦।/ ଉତ୍କଳର ସମସ୍ତ ସୁଲେଖକ କର୍ତ୍ତୃକ ପ୍ରଶଂସିତ ।

"ସଙ୍ଗୀତମାଳା"—ମୂଲ୍ୟ ଟ ୦। ଏଥିରେ ବହୁପ୍ରଶଂସିତ ଏକଶତ ଭକ୍ତିରସର ସଙ୍ଗୀତ ଅଛି ।

"ଅଙ୍କପ୍ରଶ୍ନ ସମାଧାନ"—ମୂଲ୍ୟ ଟ ୦୳ ଅଙ୍କ ପୁସ୍ତକରେ ଥିବା କଠିନ ପ୍ରଶ୍ନମାନ ଏଥିରେ କଷା ଯାଇଅଛି ।

☞ ଏହି ୫ ଖଣ୍ଡ ପୁସ୍ତକର ମୂଲ୍ୟ ମୋଟରେ ଟ ୧।, କିନ୍ତୁ ଏ ପାଞ୍ଚ ଖଣ୍ଡ ଯାକ ନେଲେ ଟ ୦॥/ ମୂଲ୍ୟରେ ଦିଆଯିବ । ମଫସଲବାସିମାନଙ୍କୁ ଡାକଖର୍ଚ୍ଚା ଟ ୦/ ଅଧିକା ଦେବାକୁ ହେବ ।

ଶ୍ରୀ ପ୍ରଶାନ୍ତ ରାଓ
ନର୍ମାଲ ସ୍କୁଲ, କଟକ ।

---

ସଂସ୍କୃତ ମହାଭାରତର ଅବିକଳ ପଦ୍ୟାନୁବାଦ ରାଜା କୃଷ୍ଣ ସିଂହ କୃତ ମହାଭାରତ ଉତ୍ତମରୂପେ ସଂଶୋଧିତ ମୁଦ୍ରିତ ହୋଇ ନିମ୍ନଲିଖିତ ପର୍ବମାନ ଏ ପ୍ରେସରେ ବିକ୍ରୟାର୍ଥ ପ୍ରସ୍ତୁତ ଅଛି । ଅନ୍ୟାନ୍ୟ ପର୍ବମାନ ଯନ୍ତ୍ରସ୍ଥ । ଶୀଘ୍ର ପ୍ରକାଶିତ ହେବ ।

| | | | |
|---|---|---|---|
| ସଭାପର୍ବ | ଟ ୦।/ | ଶାନ୍ତିପର୍ବ | ଟ ୦॥ |
| ବନପର୍ବ | ଟ ୦। | ଶଲ୍ୟାଦି ପର୍ବତ୍ରୟ ଏକତ୍ରେ | ଟ ୦॥ |
| ଉଦ୍ଯୋଗପର୍ବ | ଟ ୧୧ | | |

ଜଗଦୀଶ ପ୍ରେସ } କଟକ }

ଶ୍ରୀ ଅଭିନ୍ନ ସାମନ୍ତ
ପ୍ରେସ ମେନେଜର ।

---

# ଭାଗବତଟୁଙ୍ଗୀରେ ସନ୍ଧ୍ୟା ।

ପୁସ୍ତକାକାରରେ ପ୍ରକାଶିତ ହୋଇଅଛି । ... ସୁନ୍ଦର, ୧୪୦ ପୃଷ୍ଠାରେ ସମ୍ପୂର୍ଣ୍ଣ । ମୂଲ୍ୟ—ଦୁଇ ଅଣା ମାତ୍ର ।

ଉତ୍କଳସାହିତ୍ୟ ଅଫିସରେ ଏବଂ କଟକର ପୁସ୍ତକ ବିକ୍ରେତାମାନଙ୍କଠାରେ ମିଳିବ ।



୮ ମ ଭାଗ, ଶ୍ରାବଣ, ୧୩୧୧ । ୪ର୍ଥ ସଂଖ୍ୟା ।

# ଉତ୍କଳ-ସାହିତ୍ୟ ।

ମାସିକପତ୍ର ଓ ସମାଲୋଚନ ।

—:o:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—:o —



THE UTKAL SAHITYA PRESS.
CUTTACK.
1904.



ବାର୍ଷିକ ମୂଲ୍ୟ ଡାକମାସୁଲ ସମେତ ଟ ୨ ୧ ପ୍ରତି ସଂଖ୍ୟାର ମୂଲ୍ୟ ଟ ୦ ୵

## ସୂଚୀ ।




ଡାକ୍ତର ମେଜର ସାହେବଙ୍କର ବର୍ଣ୍ଣବିଶ୍ୟାତ ସେହି

# ଇଲେକ୍ଟ୍ରୋ-ସାଲସା ।

ଚିକିତ୍ସାଜଗତରେ ସର୍ବୋଚ୍ଚ ସ୍ଥାନ ଅଧିକାର କରଅଛି ।

ରକ୍ତ ମାନବ ଦେହର ଜୀବନୀଶକ୍ତି । ତାଡ଼ିତଶକ୍ତି ଜୀବନୀଶକ୍ତିର ମୂଳ । ପ୍ରତିଦିନ ନାନାପ୍ରକାରରେ ବିଶେଷତଃ ଆହାର ବିହାରରେ, ଅତ୍ୟାଚାର ଅନାଚାରରେ, ନିଶ୍ୱାସ ପ୍ରଶ୍ୱାସରେ ମାନବଦେହରେ ବିଷ ପ୍ରବେଶ କରୁଥାଏ । ଏହି ବିଷ କ୍ରମେ କ୍ରମେ ରକ୍ତ ସହିତ ମିଶ୍ରିତ ହୋଇ ଦେହାଭ୍ୟନ୍ତରସ୍ଥ ତାଡ଼ିତଶକ୍ତି କ୍ଷୀଣ କରେ ଏବଂ ପରିଣାମରେ ସାଧାରଣତଃ ଶୁକ୍ର ଓ ଶୋଣିତ ସମ୍ବନ୍ଧୀୟ ପୀଡ଼ା ଉତ୍ପନ୍ନ ହୁଏ । ଯେଉଁ ଔଷଧ ଏହି ରକ୍ତଦୁଷ୍ଟିର ବିଷ ଦେହରୁ ଦୂର କରି ହ୍ରାସପ୍ରାପ୍ତ ବୈଦ୍ୟୁତିକ ଶକ୍ତିର ସାମଞ୍ଜସ୍ୟ ସମ୍ପୂର୍ଣ୍ଣରୂପ ରକ୍ଷା କରିପାରେ, ସେହି ପ୍ରକୃତ ଔଷଧ, ଏହି—

"ଇଲେକ୍ଟ୍ରୋ-ସାଲସା" ତାହାର ଏକମାତ୍ର ଅଦ୍ୱିତୀୟ ।

ଏହା କଣ ? ଚିକିତ୍ସା-ବିଜ୍ଞାନ-ସମ୍ମତ ଶୁକ୍ର ଓ ଶୋଣିତର ଦୋଷ-ସଂଶୋଧକ ଏବଂ
ତାଡ଼ିତଶକ୍ତିପ୍ରବର୍ତ୍ତକ କେତୋଟି ଦୁଷ୍ପ୍ରାପ୍ୟ ସାର୍ଯ୍ୟବାନ ଉଦ୍ଭିଜ୍ଜରୁ—
ନିଉ ୟର୍କ ନଗରବାସୀ ଖ୍ୟାତନାମା ଡାକ୍ତର :—
ଜେମସ ମେଜର ଏମ୍. ଏ. ଏମ୍. ଡି
ମହୋଦୟଙ୍କର ଅନୁଷ୍ଠିତ,—ନୂତନ ଗବେଷଣାପୂର୍ଣ୍ଣ ପ୍ରକ୍ରିୟାରେ ବିନାଃଦୃଷ୍ଟ ନିର୍ଯ୍ୟାସ ।
ମାନବଦେହରେ ଏହାର କ୍ଷମତା ଅସୀମ, ଗୁଣ ଅନନ୍ତ, କ୍ରିୟା ସ୍ଥାୟୀ ।

ଏଥିରେ ଯେ କେତୋଟି ସାର୍ଯ୍ୟବାନ ଭେଷଜ ପଦାର୍ଥ ଅଛି, ତାହା ଅନ୍ୟ କୌଣସି ଔଷଧରେ ନାହିଁ ଏବଂ ଏହି ଗବେଷଣାଲବ୍ଧ ମହାଗୁଣଶାଳୀ ଦୁଷ୍ପ୍ରାପ୍ୟ ଭେଷଜ ଏହାର ଏରୂପ ଅସାଧାରଣ ଗୁଣାବଳୀର ମୂଳକାରଣ ।

ଏଥିରେ କେଉଁ କେଉଁ ରୋଗ ଆରୋଗ୍ୟ ହୁଏ ? ସର୍ବପ୍ରକାର କାରଣଜାତ ଶୁକ୍ର ଓ ଶୋଣିତର ବିକୃତ, ସ୍ନାୟୁଦୌର୍ବଲ୍ୟ, ଦେହର ବିଭିନ୍ନ ସନ୍ଧିର କିମ୍ବା-ପେଶୀର କ୍ଷୀଣତା, ଶୁକ୍ରମେହ, ଶୁକ୍ରତାରଲ୍ୟ, ଜନନ ଦୁର୍ବଳତା ମେହ, ପ୍ରମେହ, ସ୍ୱପ୍ନଜ ଧାତୁ ନିର୍ଗମ, ଅନିଚ୍ଛାରେ ବା ଅଳ୍ପ ଉତ୍ତେଜନାରେ ଶୁକ୍ରସ୍ଖଳନ, ସମ୍ପୂର୍ଣ୍ଣ ବା ଆଂଶିକ ପୁରୁଷତ୍ୱହୀନ, ପ୍ରସ୍ରାବରେ ଯନ୍ତ୍ରଣା, ଲୁଗାରେ ...

ସ୍ୱପ୍ନଦୋଷ, ଶୁକ୍ରରେ ସନ୍ତାନ ଉତ୍ପାଦିକା ଶକ୍ତିର ଅଭାବ, ମଳ ବା ମୂତ୍ରତ୍ୟାଗ ସମୟରେ ପ୍ରକାଶ୍ୟରେ ବା ଅଲକ୍ଷରେ ଶୁକ୍ରକ୍ଷରଣ, ମୂତ୍ରକୃଚ୍ଛ୍ରତା, ମୁହୁର୍ମୁହୁଃ ପ୍ରସ୍ରାବ, ଜନନେନ୍ଦ୍ରିୟର ଦୁର୍ବଳତା, ସ୍ମୃତିଶକ୍ତିର ବିଲୋପ, ମସ୍ତିଷ୍କ କ୍ଳାନ୍ତି, ଦୃଷ୍ଟିଶକ୍ତିର କ୍ଷୀଣତା, ଶିରୋଘୂର୍ଣ୍ଣନ, ନିଦ୍ରାଶକ୍ତିର ବିକାର, ଶରୀର ଓ ମନର ଅବସାଦ, ଚିଡ଼ଚିଡ଼ା ସ୍ୱଭାବ, ଯୌବନୋଚିତ ସାମର୍ଥ୍ୟର ଅଭାବ, କର୍ମ୍ମେ ଅପ୍ରବୃତ୍ତି, ହୃତ୍‌ପିଣ୍ଡର କଷ୍ଟଦାୟକ ସ୍ପନ୍ଦନ, ଅଧ୍ୟୟନରେ ବା ସାଂସାରିକ କାର୍ଯ୍ୟରେ ଅନିଚ୍ଛା ଓ ସାମର୍ଥ୍ୟହୀନତା, ଅକାରଣରେ ଉଦ୍‌ବେଗ, ଶୋଣିତର ସ୍ୱଳ୍ପତା, ପାରଦ ଓ ଉପଦଂଶାଦିଜନିତ ଶୋଣିତ-ବିକୃତି, ବାତରକ୍ତ, ଆମବାତ, ଗଳଗଣ୍ଡ, ବାଗୀ, ଉପଦଂଶର ଘା, ନାକ ଓ ମୁଖର ଭିତରେ ଘା, ନାଲି ଘା, ଶୋଥ ହେବା, କାଛୁ କୁଣ୍ଡିଆ, ଭଗନ୍ଦର, କୁଷ୍ଠ ପ୍ରଭୃତି ନାନାପ୍ରକାର ଚର୍ମରୋଗ, ଶୁକ୍ର ବା ଶୋଣିତ ବିକାରଜ ଘଟିତ ସର୍ବପ୍ରକାର ଦୁର୍ଦ୍ଦମନୀୟ ବାତ, ଜଙ୍ଘ, ଉରୁ, କଟି, ହସ୍ତ, ପଦ ଓ ହସ୍ତପଦତଳର ଗୁରୁତ୍ୱ; ବେଦନା, ଧକ୍ ଧକ୍ କରିବା, ମୋଡ଼ିହେବା, ଶରୀରର ନାନା ସ୍ଥାନରେ କଦର୍ଯ୍ୟପ୍ରକୃତିର ଘାଆ ବା ଉପଦଂଶାଦିର ଉପସର୍ଗ, ହସ୍ତ ଓ ପଦ ତଳର ଚମଡ଼ା ଫାଟିବା, ଧଳା ବା କୁତ୍ସିତ ଦାଗ ଫୁଟିଉଠିବା, ଧବଳ କୁଷ୍ଠାଦିର ପୂର୍ବଲକ୍ଷଣ, କୁଣ୍ଡାଇ ହେଉ ହେଉ ଫୁଲିଉଠିବା, ଚକ୍ଷୁରୁ ଜଳ ପଡ଼ିବା, ଅକାଳବାର୍ଦ୍ଧକ୍ୟ, ମୁଣ୍ଡରୁ ବାଳ ଉପୁଡ଼ିବା, କେଶର ଅକାଳପକ୍ୱତା, ଶରୀରର ସାଧାରଣ ଦୌର୍ବଲ୍ୟ ଇତ୍ୟାଦି ଶୁକ୍ର ଓ ଶୋଣିତ ସଂକ୍ରାନ୍ତ ସର୍ବପ୍ରକାର ବ୍ୟାଧି ଓ ତାହାର ସହସ୍ରାଧିକ ଉତ୍କଟ ଉପସର୍ଗ ସମୂଳରେ ବିନଷ୍ଟ କରି କ୍ଷୁଧା ବୃଦ୍ଧି କରିବାକୁ, କୋଷ୍ଠ ପରିଷ୍କାର ରଖିବାକୁ ଏବଂ ଦୁର୍ବଳ ଓ ଜରାଜୀର୍ଣ୍ଣ ଦେହ ସବଳ ଓ କାର୍ଯ୍ୟକ୍ଷମ କରିବାକୁ ଏହା ଅତୁଳନୀୟ; ସେଥିପାଇଁ—

## ଡାକ୍ତର ମେକରଙ୍କର ଇଲେକ୍‌ଟ୍ରୋ-ସାଲସା

ଆଜି ଭାରତର ସର୍ବତ୍ର ସମାଦୃତ ଓ ପରିବ୍ୟାପ୍ତ । ପ୍ରକୃତ ଗୁଣ ଅଛି ବୋଲି ଏହାର କାଟତି ଏତେ ଅଧିକ—କାଟତିବାହୁଲ୍ୟ-ହେତୁରୁ ଆଜି ବହୁ ନକଲର ସୃଷ୍ଟି ! କ୍ରେତାଗଣ ସାବଧାନ !!

"ଇଲେକ୍‌ଟ୍ରୋ-ସାଲସା"—ସକଳ ଦେଶର ସକଳ ଋତୁରେ ଉଲ୍ଲିଖିତ ରୋଗସମୂହର ସକଳ ଅବସ୍ଥାରେ ଅବାଳ-ବୃଦ୍ଧବନିତା, ରୋଗୀ, ଅରୋଗୀ ସମସ୍ତେ ନିର୍ବିଘ୍ନରେ ସେବନ କରି ପାରନ୍ତି ।

ଇଲେକ୍‌ଟ୍ରୋ-ସାଲସାର ମୂଲ୍ୟାଦି,—ସର୍ବପ୍ରକାର ଭାଷାରେ ବ୍ୟବସ୍ଥାପତ୍ରସମ୍ବଳିତ ୮ ଦିନ ସେବନୋପଯୋଗୀ ପ୍ରତ୍ୟେକ ଶିଶିର ମୂଲ୍ୟ ଟ ୨୲, ୩ ଶିଶି ମୂଲ୍ୟ ଟ ୫୲, ୬ ଶିଶି ଟ ୯୲, ଡଜନ ଟ ୧୦୲, ପ୍ୟାକିଂ ଓ ଡାକମାସୁଲ ଇତ୍ୟାଦି ଯଥାକ୍ରମେ ଟ ୦୷, ଟ ୦୷୯, ଟ ୧, ଟ ୧୷ ।

ଅସଂଖ୍ୟ, ଅଯାଚିତ ପ୍ରଶଂସାପତ୍ର ଏହାର ଅବ୍ୟର୍ଥତା, ଅଲୌକିକତା ଓ ଅକୃତ୍ରିମତାର ଜ୍ୱଳନ୍ତ ପ୍ରମାଣ, ଜ୍ୱଳନ୍ତ ସାକ୍ଷ୍ୟ ଦେଉଅଛି ।

୧ । ପାଟଣାର ମହାରାଜା ଦଳଗଞ୍ଜନ ସିଂହ ମହୋଦୟ ଲେଖିଅଛନ୍ତି:—

"ମହାଶୟଗଣ ! ମୋହର ପରିବାରସ୍ଥ ଏକ ବ୍ୟକ୍ତିର ଅତି କଠିନ ପୀଡ଼ାରେ ଡାକ୍ତର ମେକରଙ୍କର ଇଲେକ୍‌ଟ୍ରୋ ସାଲସାର ବିସ୍ମୟଜନକ ଶୁଭଫଳ ଦର୍ଶନ କରି ମୁଁ ଡାକ୍ତର ସାହେବଙ୍କର ଔଷଧର ଗୁଣପ୍ରତି ଏତେ ପକ୍ଷପାତୀ ହୋଇଅଛି ଯେ, ଆପଣମାନଙ୍କର ପ୍ରସ୍ତୁତ ମହୌଷଧ ରୋଗକ୍ଲିଷ୍ଟ ମାନବମଣ୍ଡଳୀର ମହୋପକାରୀ ଏ କଥା କହିବାକୁ ମୁଁ ଅଣୁମାତ୍ର ଦ୍ୱିଧା ବୋଧ କରୁ ନାହିଁ । ଆପଣମାନଙ୍କର ମହୌଷଧର ଗୁଣର ଚିହ୍ନସ୍ୱରୂପ ମୁଁ ଆପଣମାନଙ୍କୁ ଗୋଟିଏ ସ୍ୱର୍ଣ୍ଣପଦକ ଉପହାର ପ୍ରଦାନ କଲି । ଏହି ସାମାନ୍ୟ ଉପହାର ଆପଣମାନଙ୍କର ଅତୁଳନୀୟ ଓ ଅମୂଲ୍ୟ ଇଲେକ୍‌ଟ୍ରୋ-ସାଲସାର ଗୁଣର ତୁଳନାରେ ଯେତେ ଅକିଞ୍ଚିତ୍କର ହେଲେହେଁ ଏହା ମୋହର ହୃଦୟର କୃତଜ୍ଞତାର ନିଦର୍ଶନ ବୋଲି ଗ୍ରହଣ କଲେ କୃତାର୍ଥ ହେବି । ତା ୧୫।୧୦।୧୯୦୩"

୨ । ମହାମାନ୍ୟ ମହାରାଜା ସାର ସୁଢ଼ଲ ଦେଓ ବାମଣ୍ଡାରୁ ଲେଖିଅଛନ୍ତି :—
“* * * ମୁଁ ନିଃସନ୍ଦେହରୂପେ କହିପାରେଁ ଯେ “ଇଲେକ୍‌ଟ୍ରୋ-ସାଲସା” ଦୂଷିତରକ୍ତ ପରିଷ୍କାର କରିବା ଓ ରକ୍ତବୃଦ୍ଧିହେତୁ ବିବିଧ ରୋଗ ଆରୋଗ୍ୟ କରିବାପକ୍ଷରେ ସର୍ବୋତ୍କୃଷ୍ଟ ।”

୩ । ମହାମାନ୍ୟ ମହାରାଜା ଗଉରଚନ୍ଦ୍ର ଦେଓ ରେଢ଼ାଖୋଲରୁ ଲେଖିଅଛନ୍ତି—
“* * * ବିଜ୍ଞାପନର ମୋହରେ ପଡ଼ି “ଡ୍ୟାନଜନ” ଔଷଧ ମଗାଇଲି; ଉପକାର ହେବା ଦୂରେ ଥାଉ ଅପକାର ହେଲା, ସେଥିରେ ପାରା ଅଛି ବୋଲି ଜଣା ପଡ଼ିଲା । କିନ୍ତୁ ଆପଣମାନଙ୍କର ଇଲେକ୍‌ଟ୍ରୋ-ସାଲସା'ର ଗୁଣ ମୁଁ ଯୁକ୍ତି ପାରିବି ନାହିଁ । ମୋତେ ଆଉ ୩ ଡଜନ ପଠାଇଦେବେ ।”

୪ । ମହାମାନ୍ୟ ମହାରାଜା ହରହର ମର୍ଦ୍ଦରାଜ ଦେଓ ଖଲ୍ଲିକୋଟରୁ ଲେଖିଅଛନ୍ତି—
“ରକ୍ତ ପରିଷ୍କାର କରି ବଳବୀର୍ଯ୍ୟ ବୃଦ୍ଧି କରିବାରୁ ଇଲେକ୍‌ଟ୍ରୋ-ସାଲସାର କ୍ଷମତା ଅସୀମ ଅଟେ ।”

୫ । ଗୋଆଲିୟରର ପ୍ରଦେଶାଧିପତି ମହାରାଜାଧିରାଜ ରଘୁନାଥ ରାଓ ଦିନକର ମୁସିର-ଅଲ-ଖାସ ବାହାଦୁର ଲେଖିଅଛନ୍ତି :—ଅନଢ଼ବଳରେ ଆଉର ୩ ଶିଶି ଔଷଧ ଆମ୍ଭ ନିକଟକୁ ପଠାଇ ଦିଅନ୍ତୁ । ୨୫ ତାରିଖ ଜୁଲାଇ, ୧୯୦୩ ।

୬ । ଡାକ୍ତର ଜି. ଓଗ୍ୟାର ( କର୍ଣ୍ଣେଲ ) ଅଇ. ଏମ. ଏସ୍. ପ୍ରୋଫେସର ମେଡ଼ିକଲ କଲେଜ, ମାନ୍ଦ୍ରାଜଠାରୁ ଲେଖିଅଛନ୍ତି :—“ପାରା ଓ ଉପଦଂଶାଦିଜନିତ ରକ୍ତଦୁଷ୍ଟି ରୋଗରେ ଆପଣମାନଙ୍କର ଇଲେକଟ୍ରୋ-ସାଲସାର କ୍ରିୟା ଦେଖି ଅସୀମ ଆନନ୍ଦ ଭୋଗ କରିଅଛି । ୧୩ ଜାନୁୟାରି, ୧୯୦୨ ।”

୭ । କଲିକତା ମେଡ଼ିକଲ ବୋର୍ଡର ପ୍ରେସିଡେଣ୍ଟ ରାୟବାହାଦୁର ସୂର୍ଯ୍ୟକୁମାର ସର୍ବାଧିକାରୀ ଜି. ଏମ. ସି. ବି. ମହୋଦୟ ଲେଖିଅଛନ୍ତି :—“ରକ୍ତଦୁଷ୍ଟିଜାତ କେତୋଟି ରୋଗୀଙ୍କୁ ଆପଣମାନଙ୍କର ଇଲେକ୍‌ଟ୍ରୋ-ସାଲସା ବ୍ୟବହାର କରାଇ ସନ୍ତୋଷଜନକ ଫଳ ପ୍ରାପ୍ତ ହୋଇଅଛି ।”

ଡାକ୍ତର ମେଜର ସାହେବଙ୍କର

# ହାଇଡ୍ରୋସିଲ-ଇଲିକ୍‌ସାର

ବା କୋଷବୃଦ୍ଧିର ଔଷଧ ।

ପ୍ରତିବର୍ଷ ୫ ହଜାରରୁ ଅଧିକ ରୋଗୀ ଆରୋଗ୍ୟ ଲାଭ କରୁଅଛନ୍ତି । ଆମ୍ଭେମାନେ ପ୍ରତିଜ୍ଞା କରି କହିପାରୁଁ, ଏହି ପ୍ରଲେପ ନିୟମିତରୂପେ କେତେକ ସପ୍ତାହ ବ୍ୟବହାର କଲେ ଏକଶିରା ବା କୋରଣ୍ଡ ଯେତେ ବଡ଼ ହଉ, ଯେତେ ପୁରାତନ ହେଉ ପଛକେ ନିଶ୍ଚୟ ଆରୋଗ୍ୟ ହେବ । ଯେଉଁମାନେ ଏହି କୁତ୍ସିତ ରୋଗ ଓ ତାହାର ବିବିଧ ଯନ୍ତ୍ରଣାଦାୟକ ଉପସର୍ଗାଦିରୁ ନିର୍ବିଘ୍ନରେ ବିନା ଯନ୍ତ୍ରଣାରେ ଅଥଚ ଗୋପନରେ ଆରୋଗ୍ୟ ଲାଭର ବାସନା କରନ୍ତି, ସେମାନେ ଏହି ମହୌଷଧ ପରୀକ୍ଷା କରି ଦେଖନ୍ତୁ । ପ୍ରଥମ ଦିନ ବ୍ୟବହାରରେ ଏହାର ଆଶ୍ଚର୍ଯ୍ୟ ଉପକାରିତା ବୁଝାଯାଏ । ତତ୍ପରେ କ୍ରମେ କ୍ରମେ ଆକାର ଓ ଗୁରୁତ୍ୱ କମି ଥାଏ । ଯେଉଁମାନେ ଆରୋଗ୍ୟ ହେବା ବିଷୟରେ ହତାଶ ହୋଇଅଛନ୍ତି, ସେମାନେ ଏହି ଔଷଧ ପ୍ରତି ସମ୍ପୂର୍ଣ୍ଣ ନିର୍ଭର କରନ୍ତୁ । ବ୍ୟବହାରରେ ଜ୍ୱାଳା-ଯନ୍ତ୍ରଣା ବା କଷ୍ଟକର ନିୟମ ନାହିଁ । ମୂଲ୍ୟ ପ୍ରତି ଶିଶି ଟ ୧ ୷, ଦୁଇ ଶିଶି ଏକତ୍ରରେ ଟ ୪ ୯ । ୬ ଶିଶି ଟ ୬୷ ଡଜନକୁ ଟ ୧୪୯ ମାସୁଲ ସ୍ୱତନ୍ତ୍ର ।

ଡାକ୍ତର ମେଜର ସାହେବଙ୍କ

# ହେୟାର ଲାଇନ

କେଶର ପରିପୋଷଣ, ପରିବର୍ଦ୍ଧନ ଓ ଶ୍ରମାପନୋଦନକାରୀ ସୁଗନ୍ଧି କେଶତୈଳ ।




କେତୋଟି ଭେଷଜଗୁଣାନ୍ୱିତ ଗନ୍ଧ ପ୍ରସ୍ଫୁଟିତ, ସୁଗନ୍ଧଯୁକ୍ତ, ଅନାଘ୍ରାତ, ପୁଷ୍ପର ସାର, ବୈଜ୍ଞାନିକ ପ୍ରଣାଳୀରେ ଏକତ୍ରିତ କରି ବହୁମୂଲ୍ୟ କେଶପୋଷକ ତୈଳର ସଂଯୋଗରେ ଏହି କେଶ ତୈଳ ପ୍ରସ୍ତୁତ ହୋଇଅଛି । ଆପଣ ଏହା ଲଗାଇବାକୁ ଆରମ୍ଭ କଲାମାତ୍ରେ, ଅପୂର୍ବ ସୌରଭରେ ଗୃହଅଙ୍ଗନ ମହକି ପଡ଼ିବ । ମସ୍ତିଷ୍କ ସୁଶୀତଳ ହେବ । ନିକଟସ୍ଥ ଲୋକେ ମନୋହର ସୁଗନ୍ଧିରେ ମୁଗ୍ଧ ହେବେ । ଆପଣଙ୍କର ମନେ ହେବ ଯେପରି ପ୍ରସ୍ଫୁଟିତ ପୁଷ୍ପ-ବଗିଚାକୁ ଆସିଅଛନ୍ତି ।

“ହେୟାର-ଲାଇନ” ଲଗାଇ କେଶ ବିନ୍ୟାସ କଲେ ୨୪ ଘଣ୍ଟା ପର୍ଯ୍ୟନ୍ତ ଗନ୍ଧ ସମ ଭାବରେ ଥାଏ । ସ୍ନାନ ପରେ ଦେହରେ ଯେତେ ପବନ ଲାଗେ, ହେୟାର-ଲାଇନର ଗନ୍ଧ ସେତେ ବାହାରୁଥାଏ, ଯେପରି ସୌରଭର ଭଣ୍ଡାର ଖୋଲିଦିଏ । ଅତି ମୂଲ୍ୟବାନ୍ ଅତର ଓ ବିଦେଶୀୟ ଲାଭେଣ୍ଡାର ତୈଳ ପ୍ରଭୃତି ଏହାର ସୌରଭ ଓ ଗୁଣ ନିକଟରେ ପରାସ୍ତ ।

“ହେୟାର-ଲାଇନର” ରଙ୍ଗ ଅତି ମନୋହର, ସ୍ୱଭାବତଃ ଉଜ୍ଜ୍ୱଳ ଓ ସ୍ୱଚ୍ଛ । ଏଥି ନିମନ୍ତେ କେଶରେ ଅଠା ଧରେ ନାହିଁ ।

“ହେୟାର-ଲାଇନ” କେବଳ ସୌଖୀନ ଜିନିଷ ନୁହେଁ, ମୁଣ୍ଡବଥା, ମୁଣ୍ଡବୁଲା, ହସ୍ତୀରଗୁ ପ୍ରଭୃତି ଶିରଃରୋଗର ମହୌଷଧ । ହସ୍ତ ପଦର ଜ୍ୱାଳା, ଗାତ୍ରଦାହ, ଶୀଘ୍ର ଧଇଁପଇଁହେବା, ଘ୍ରାଣର ଅଭୁକଭାବ, ସ୍ନାୟୁ ଦୌର୍ବଲ୍ୟ, ଘୁରିପଡ଼ିବା, ଶ୍ରାନ୍ତ ବୋଧହେବା, ଅନିଦ୍ରା, ଚିତ୍ତଚାଞ୍ଚଲ୍ୟ ପ୍ରଭୃତି ଉପସର୍ଗ ଦୂରୀକରଣରେ ଏହା ତୁଲ୍ୟ ଗୁଣସମ୍ପନ୍ନ ଔଷଧ ଆଉ ନାହିଁ ।

“ହେୟାର-ଲାଇନ” ବ୍ୟବହାରଦ୍ୱାରା କେଶ ଉପୁଡ଼ିବା ବନ୍ଦ ହୁଏ, କେଶର ମୂଳ ଶକ୍ତ ହୁଏ, କେଶ ପ୍ରଚୁର ପରିମାଣରେ ବଢ଼େ ଏବଂ କଳା ଓ ଚିକ୍କଣ ହୁଏ, ମସ୍ତିଷ୍କ ଥଣ୍ଡା ରହେ । ଅନେକ ଦିନ ବ୍ୟବହାର କଲେ ତାଙ୍କର ରୋଗ ନଷ୍ଟ ହୁଏ, ମୁଣ୍ଡର ରୂପୀ ପ୍ରଭୃତି ନଷ୍ଟ ହୁଏ; କେଶ ଘନ, କୋମଳ ଓ ସୁଦୃଶ୍ୟ ହୁଏ, ଦେହର ଦୁର୍ଗନ୍ଧ ଦୂର ହୁଏ, ଚର୍ମ କୋମଳ ଓ କାନ୍ତିଯୁକ୍ତ ହୁଏ, ମନର ସ୍ଥୈର୍ଯ୍ୟ ଧୈର୍ଯ୍ୟ ବଢ଼େ, ସ୍ମରଣଶକ୍ତି ବୃଦ୍ଧି ହୁଏ ।

ମୂଲ୍ୟ ପ୍ରତି ବଡ଼ ଶିଶି ଟ ୨୧; ୩, ୬, ୧୨ ଶିଶି କ୍ରମାନ୍ୱୟରେ ଟ ୫, ଟ ୧୦୫, ଟ ୨୦୧; ପ୍ୟାକିଂ ଓ ଡାକମାସୁଲ ସ୍ୱତନ୍ତ୍ର ।

ପ୍ରୋପ୍ରାଇଟର—ଡକ୍ଟର, ମେଜର ଏଣ୍ଡ କୋଂ

ହେଡ଼ ଅଫିସ୍,—୧୨ ନମ୍ବର ୱେଲିଂଟନ ଷ୍ଟ୍ରିଟ, କଲିକତା ।

# ଉତ୍କଳ-ସାହିତ୍ୟ ।



## ଶ୍ମଶାନ-ଦୃଶ୍ୟ । ※

—:o:—

ଚଣ୍ଡାଳପ୍ରଭୁର ଆଜ୍ଞା ଶିରୋଧାର୍ଯ୍ୟ କରି
କ୍ରୀତଦାସରୂପେ ଥାଇ ଭ୍ରମନ୍ତି ମଶାଣେ,
ଧୂଳରେ ଧୂସର, ଜୀର୍ଣ୍ଣ ଶୀର୍ଣ୍ଣକନ୍ଥାଧାରୀ
ମହାମତି ହରିଶ୍ଚନ୍ଦ୍ର, ଏ ମଶାଣେ ଯେତେ
ଦାହ ଲାଗି ଆସେ ଶବ, ପ୍ରତି ଶବଠାରୁ
ଶୁଳ୍କ ସଂଗ୍ରହର କାର୍ଯ୍ୟେ ନିଯୋଜିତ ହୋଇ;
କି ଘୋର ବୀଭତ୍ସ, ଆହା, ଏ ମଶାଣ ଭୂମି !
ଯତ୍ରକୀର୍ଣ୍ଣ କେଶଜାଲେ ଅଙ୍ଗାରେ ଖର୍ପରେ,
ନୀରବେ ଆସୀନ ହୋଇ ଯହିଁ ଭସ୍ମାସନେ,
ଭବର ଭଙ୍ଗୁର ଲୀଳା ଦେଖଇ କୌତୁକେ,
କ୍ରୂର କଙ୍କାଳ କାଳ ଅସ୍ଥି-ମାଳା-ଧାରୀ;
ସାମ୍ୟଦୀକ୍ଷା ପ୍ରଭୁଙ୍କର ଏହି ପୀଠସ୍ଥଳୀ,
ସମାନ ସକଳେ ଏଥି, କି ରାଜା କି ପ୍ରଜା,
କିବା ଅଟ୍ଟାଳିକାବାସୀ, କି କୁଟୀରବାସୀ,
କି ରତ୍ନପର୍ଯ୍ୟଙ୍କଶାୟୀ, କିବା ଭୂମିଶାୟୀ,
କୌଷେୟ ବସନଧାରୀ, କିବା ଚୀରଧାରୀ,
କି ସୁନ୍ଦର କି କୁତ୍ସିତ, କି ଜ୍ଞାନୀ ଅଜ୍ଞାନ,
ସମଦଶା ସଭିଙ୍କର, ସମପରିଣତି;
ଜୀବନର ସ୍ରୋତ ବହେ ସଦା ଏ ସାଗରେ,
ତରୁକୁଞ୍ଜୁ ପର୍ଣ୍ଣପୁଞ୍ଜ ଉଡ଼ାଇ ଯେସନେ
ଆଣେ ବାତ୍ୟା, ସେହିମତ ନିର୍ମମ ନିୟତି
ଘଉଡ଼ାଇ ଆଣେ ଜୀବେ ଏ ମଶାଣଭୂମେ,
କାଳର ଲାଗିଛି ନାଟ ଏଥି ସବୁକାଳେ,
ମୂରତ ଏହାର କିବା ବିଭୀଷିକାମୟୀ !
ଆକାଶେ ମଣ୍ଡଳାକାରେ ମୁହୁର୍ମୁହୁ ଘୂରି
ପଡ଼ୁଛନ୍ତି ଗୃଧ୍ରେ ଆସି କଳକଳାରବେ,
ରକ୍ତ, ମାଂସ, କ୍ଳେଦ ତାଙ୍କ ଚଞ୍ଚୁପୁଟେ ଧରି
ଝରଇ ଅକାଶ ଘୋଟି ବୃଷ୍ଟିଧାରା ପ୍ରାୟେ;
ଅଶିବ ପଟହ ପ୍ରାୟେ କର୍ଣ୍ଣକଟୁ ରବେ
ଉପୁଜାଇ ପ୍ରତିଶବ୍ଦ ଭୈରବେ ସଘନେ,
ରଚନ୍ତି ଶୃଗାଳକୁଳ ଭ୍ରମି ଚଉଦିଗେ;
ଜଟିଳାଗ୍ର ଚିତା ବହ୍ନି ଜଳେ ଠାବେ ଠାବେ
ପ୍ରଦୀପ୍ତ ମସ୍ତିଷ୍କମେଦେ, ଫୁଟାଇ କହଟେ
ନୃକରୋଟି, ଉଗ୍ରଗନ୍ଧ ପ୍ରସାରି ପବନେ;
ରୁଣ୍ଡ ହୋଇ କାହିଁ ଅବା ନାଚନ୍ତି ବେତାଳେ
ପରେତର ପଦାଘାତେ, ଭାଲେ କର ମାରି,
କମ୍ପାଇ ଲୋମହର୍ଷାରେ ଶ୍ମଶାନ-ଅବନୀ;
ପଡ଼ିଛନ୍ତି ଠାବେ ଠାବେ ଶବ ରାଶିରାଶି
ବେଷ୍ଟିତ ଶ୍ୱାପଦକୁଳେ, ସଦ୍ୟୋମୃତ ଦେହ,
ଢେଲ ହୋଇ ଫୁଲି ଦେହ ସଢ଼ଇ ମାଟିରେ,
ପ୍ରକଟାଇ ପୂତି-ଗନ୍ଧ ନାସାରନ୍ଧ୍ରରୋଧୀ,
ବୀଭତ୍ସ, ବିରୂପ ଘୋର ବିକୃତ ମୂରତି;
ଅଦୂରେ ପଡ଼ିଛି ଏକ ଶବପାଶେ ଯାଇ
ସମ୍ବୋଧି ସେ ଶବେ ରାଜା ଭାଷିଲେ ଏସନ—
"ଅରେ ଶବ, ଧନ୍ୟ ତୁହି, ପ୍ରଚୁର ଅଶନେ
କେତେ ପ୍ରାଣୀ ଲଭୁଛନ୍ତି ତୃପ୍ତି ତୋ ଦେହଠାରେ,
ଶିରେ ବସି କାକ ତୋର ଚଞ୍ଚୁପୁଟେ ଟାଣି
ଭାଙ୍ଗଇ ସେ ଚକ୍ଷୁମୁଦ୍ରା, ଲୁଣ୍ଠିତ ବାହାରେ
ଚୋବାଉଛି ଜିହ୍ୱା ତୋର ଶିବା ମହାସୁଖେ,
ପୁରୁଷାଙ୍ଗ ତୋର ଶ୍ୱାନ ଛିଣ୍ଡଇ କାମୋଡ଼ି

---

※ ସଂସ୍କୃତ ଚଣ୍ଡକୌଶିକ ନାଟକର ଛାୟା ଅବଲମ୍ବନପୂର୍ବକ ଏହା ଲିଖିତ ହୋଇଅଛି ।

କଙ୍କାଳ ସମଗ୍ର ଧଡ଼, ମାଂସ ସେହି ଧଡ଼େ
ସଢ଼ି ମୃଦୁ ହେବାଯାଏ ଅଛନ୍ତି ଅନାଇ
ଡେଣା ମେଲି ଗୃଧ୍ରକୁଳ ଘୋର ଉତ୍କଟ,
ଘନ ମୁହୁଃ ଭାବଭୋଗ-ଆଶାର ଉଲ୍ଲାସେ;
ସାର୍ଥକ ଏ ପିଣ୍ଡ ଘୋର, ଉଅଳି ରୁ ଯେଣୁ
ଶବ, ଏହି ମହୋତ୍ସବ ଏହି ପିଣ୍ଡ ଯୋଗେ;
ଆହା, ଏହି ପରିଣାମ ଏ ପିଣ୍ଡର ହିନା !
ଏହି ସେହି ସୂକ୍ଷ୍ମ କଟୀ, ଏହି ସେହି ଉରଃ
ଭୋଗ ସୁବିଶାଳ ସ୍ୱର୍ଣ୍ଣକପାଟ ପରାୟେ,
ଏହି ସେ ସୁନ୍ଦର ମୁଖ, ଚନ୍ଦ୍ରେ ଶତଦଳେ
ପଟୁଥିଲା ପଟାନ୍ତର ଯାର ଚାରୁପଣେ,
ଏହି ସେ ଅଧର, ଯାର ଚାରୁ ଅରୁଣିମା
ଗଞ୍ଜୁଥାଇ ପକ୍ୱବିମ୍ବେ, ଫୁଲ୍ଲ ବନ୍ଧୁଜୀବେ,
ଲୀଳାବିଳାସର ଥିଲେ ଉପାଦାନ ଯେତେ
ଏହିମାନ ଭଜିଛନ୍ତି, ଆହା, କି ବିକୃତ !
ରକ୍ତ ମେଦ ମାଂସ ଅସ୍ଥି ଲୀଳାକାରେ ଏବେ
ଉପୁଜାନ୍ତି ଏ ସରବେ ହାସ ଭାବୁକନେ,
ବୈରାଗ୍ୟ ଜଗନ୍ତି ଦୃଢ଼ ଜ୍ଞାନଙ୍କର ମନଃ,
ଆହା, ଏହା ଦେଖି ଲୋକେ ହୁଅନ୍ତି କେମନେ
ମତ୍ତ ବିଷୟର ମଦେ ଏହି ଦେହ ବହି ?
ଏ ଜାଗ୍ରତ, ଏ ଭଙ୍ଗୁର ଦେହ ବହି ପ୍ରାଣୀ
ହୁଅନ୍ତି କେମନେ ମତ୍ତ ଅହଙ୍କାରମାରେ ?
ଅବସାନ ହୋଇ ଏବେ ଆସିଲାଣି ଦିବା,
ଦିଗଦିଗନ୍ତରୁ ଉଡ଼ି ଆସି ବିହଙ୍ଗମେ
ମଣ୍ଡିତ କଲେଣି ସର୍ବେ ନୀଡ଼ଦ୍ରୁମାବଳୀ,
ଦିନ ଯାଇ ଅମେ ଯଥା ନୃପତି ଶାସନେ,
ନୃପତି ଶାସନେ ସିନା ପ୍ରଭାହୀନ ହୋଇ
ଗଗନପ୍ରାଙ୍ଗଣଦୀପ, ଅବସନ୍ନଗାମୀ—
—କାଳଭୁଜଙ୍ଗର ଶିଖାମଣି ଦିନମଣି
ବୁଡ଼ନ୍ତି ସାଗର ଜଳେ ଲୋହିତ ବରଣେ,
କାହିଁ ସେ ପ୍ରତାପ, କାହିଁ ସେହି ଚଣ୍ଡଦ୍ୟୁତି ?

ଅସ୍ତମିତ ଏବେ ସବୁ ନୃପତି ଶାସନେ,
ନୃପତିର ରଙ୍ଗଭୂମି ଏ ମଶାଣସ୍ଥଳୀ,
ଖାଲି ଏ ମଶାଣ କାହିଁ ? ସେହି ସେ ନୃପତି
କାପାଳିକରୂପେ ଖେଳେ ଅଖିଳ ଜଗତେ,
ବିଶ୍ୱଯାକ ତାର ଲୀଳା-ମଶାଣ-ଅଗଣା .
ରକ୍ତବର୍ଣ୍ଣ ଉହୁଁ ସିନା ଏ ସନ୍ଧ୍ୟା ଲୋହିତା,
ଚଢାବନ୍ତି ତାର ଏହି ଅସ୍ତଗାମୀ ରବି,
କରସ୍ଥି ଏ ତାରମାଳା, କୃକପାଳ ଶଶୀ,
ଏ ନୈଶ ଅନ୍ଧାର ତାର ଧୂମର ପଟଳୀ,
ଅହୋ, କିବା ଭୟଙ୍କରୀ ଶ୍ମଶାନଶର୍ବରୀ !
ଗମ୍ଭୀର ଭୀଷଣ କେତେ ଦିଶନ୍ତି ରୌଦ୍ରତେ
ଶ୍ମଶାନର ଦ୍ରୁମରାଜି, ରଟନ୍ତି ବିକଟେ
କଟୋରର ଦ୍ୱାରେ ଯହିଁ ଉଲୂକେ ସଘନେ,
ମୁହୁଃ ଡେଣା ଝାଡ଼ି, ଛାଡ଼ି କଳକଳା ରଡ଼ି,
ପଡୁଛନ୍ତି ଗୃଧ୍ରକୁଳ ଅସି ତରୁ ମୂଳେ,
ମତ୍ତ ହୋଇ ଶାଖାଲମ୍ବି-ଶବମେଦ ଘ୍ରାଣେ*
'ଫେଏ' 'ଫେଏ' ରବ କରି ଫେରୁ ଉଲ୍କାମୁଖୀ
ଫୁତ୍କାରେ ବିତାରେ ମୁଖୁଁ ଦୀପ୍ତ ଜ୍ୱଲାଶିଖା,
ଭୈରବୀ ମଶାଣଚଣ୍ଡୀ ଅଧିଷ୍ଠାତ୍ରୀ ଏଥି,
କପାଳମାଳିନୀ ଦେବୀ କପାଳକୁଣ୍ଡଳା,
ଭୀମା, ପ୍ରେତାଶିନୀ, ପ୍ରେତବିମାନଚାରିଣୀ;
ଚନ୍ଦ୍ର ଅସ୍ତ ଯାଇ ଏବେ ନିବିଡ଼ ତମସେ
ଆବୃତ ମଶାଣଭୂମି, ଦିଶୁ ନାହିଁ ରହା,
ଚକ୍ରବାଳ ଦିଶେ ଯେହ୍ନେ ବୋଲା ଭିନ୍ନାଞ୍ଜନେ,
ସୁତଭାର ନିଶୀଥିନୀ ଝାଉଁ ଝାଉଁ ରବେ
ହିପ୍ନେ ଜୀବର ଭୀତ, ବୁଡିଯାଏ ଚେତା;
କି ଦଶା ମୋହର ଆଜ, କି ଥିଲି କି ହେଲି !
କାହିଁ ଗଲେ ଦାସ ପୁଷ ରାଜପାଟ ଆଦି,
ରାଜସିଂହାସନ ଛାଡ଼ି ଚଣ୍ଡାଳ-ଅଧୀନେ
ଶୁଳ୍କଗ୍ରାହୀ ହୋଇ ମୁହିଁ ଭ୍ରମଇ ଏକାକୀ,
ଏ ମଶାଣେ, ସୂଚିଭେଦ୍ୟ ଏ ନିଶା ଅନ୍ଧାରେ !

* ବଧଦଣ୍ଡାର୍ହ ବ୍ୟକ୍ତିମାନଙ୍କୁ ଶ୍ମଶାନରେ ବଧକରିବାର ପ୍ରଥା ପ୍ରାଚୀନ ଭାରତରେ ପ୍ରଚଳିତ ଥିଲା ।

ଏହି ତ ପ୍ରାଣୀର ଗତି ଏ ମର୍ତ୍ତ୍ୟ-ମଣ୍ଡଳେ !
ସକଳ ନିୟତ କରେ କାଳ ହିଁ ସବସ୍ତୁ
ଛାଡ଼ନ୍ତି ପଡ଼ନ୍ତି ପ୍ରାଣୀ ଏହିରୂପେ ସିନା !
ଭାଗ୍ୟଚକ୍ର ଆବର୍ତ୍ତନେ ଅନେକପ୍ରୁ ହେଲେ
ବହନ୍ତି ପ୍ରାଣିଏ ଏହି ଭବରଙ୍ଗଭୂମେ ।"

ଏହିରୂପେ ସ୍ୱଳ୍ପ ସ୍ୱଳ୍ପ ଶୁଣିଲେ ନୃପତି
ସୁଦୂର ଶ୍ମଶାନପ୍ରାନ୍ତେ ବଳାପର ଧ୍ୱନି,
ଶୁଣୁ ଆହରବା. ଅଶେ ଭାଙ୍କୁଁ ଦ୍ରୁତପଦେ
ଗଲେ ଯେହି ଦିଗେ ସେହି ଧ୍ୱନି ଅନୁସରି ।

ଶ୍ରୀ ରଘୁନାଥ ରଥ ।

## ମିଅାଁ ସାହେବଙ୍କ ରୋଜନାମଚା । (୪)

ଉଇଲ ବା ଚରମ ପତ୍ର—

କୌଣସି ବ୍ୟକ୍ତିଙ୍କ ମୃତ୍ୟୁ ପରେ ତାଙ୍କ ସମ୍ପତ୍ତିରେ କିଏ ଅଧିକାରୀ ହେବ ଏ କଥା ଯେବେ ମୃତ୍ୟୁ ପୂର୍ବରୁ ଅଧିକାରୀ ନିର୍ଦ୍ଦେଶ କରି ଯାଆନ୍ତି ସେହି ଇଚ୍ଛାପ୍ରକାଶକୁ ଉଇଲ ବା 'ଉଅସିଅତ' କୁହାଯାଏ । ଚରମ ଇଚ୍ଛା ବାକ୍ୟଦ୍ୱାରା ବା ଲିଖିତ ପତ୍ରଦ୍ୱାରା ସମ୍ପାଦିତ ହୋଇ ପାରେ । ଚରମପତ୍ର ଲିଖିତ ହେବାର କିଛି ଜୋରଜରେ ନାହିଁ ।

ଉଇଲଗ୍ରହୀତା ନିର୍ଦ୍ଦିଷ୍ଟ ସମ୍ପତ୍ତି ଗ୍ରହଣ ନ କରିବା ପର୍ଯ୍ୟନ୍ତ ତାଙ୍କର ତହିଁରେ କୌଣସି ଅଧିକାର ପ୍ରବର୍ତ୍ତି ନ ପାରେ ।

ମୁସଲମାନଙ୍କ ଉଇଲ୍‌ରେ ନିମ୍ନଲିଖିତ ହେଉଛି ଗୋଟି ସର୍ତ୍ତ ପାଳିତ ହେବାର ଆବଶ୍ୟକ :—

୧ । ଉଇଲ କର୍ତ୍ତାଙ୍କର ଉତ୍ସର୍ଗୀକୃତ ସମ୍ପତ୍ତିରେ ପୂର୍ଣ୍ଣ ଅଧିକାର ଓ ସ୍ୱତ୍ୱ ଥିବ ।

୨ । ଉଇଲକର୍ତ୍ତା ବୟଃପ୍ରାପ୍ତ, ପ୍ରକୃତିସ୍ଥ ଏବଂ ସ୍ୱାଧୀନ ହୋଇଥିବେ ।

ଯେବେ ନାବାଳକ କୌଣସି ଉଇଲ ସମ୍ପାଦନ କରି ବୟଃପ୍ରାପ୍ତ ହେଲେ ତାହା ମଞ୍ଜୁର କରେ, ତାହା ହେଲେ ଉଇଲରେ କିଛି ବାଧା ପଡ଼ିବ ନାହିଁ ।

ସ୍ତ୍ରୀମାନଙ୍କର ମଧ୍ୟ ଉଇଲ କରିବାର ଅଧିକାର ଅଛି ।

୩ । ଉଇଲଗ୍ରହୀତା ନିର୍ଦ୍ଦିଷ୍ଟ ସମ୍ପତ୍ତି ଗ୍ରହଣ କରିବାର ଉପଯୁକ୍ତ ହୋଇଥିବେ । ଗର୍ଭସ୍ଥ ସନ୍ତାନ ଉଦ୍ଦେଶ୍ୟରେ ମଧ୍ୟ ଉଇଲ କରାଯାଇ ପାରେ । ଦାତାଙ୍କ ମୃତ୍ୟୁ ପରେ ଗ୍ରହୀତା ଉକ୍ତ ସମ୍ପତ୍ତି ଗ୍ରହଣ କରିବା ଆବଶ୍ୟକ ।

୪ । ନିର୍ଦ୍ଦିଷ୍ଟ ସମ୍ପତ୍ତି ଦାତାଙ୍କ ମୃତ୍ୟୁ ସମୟରେ ତାଙ୍କର ଅଧିକାରରେ ଥିବା ଆବଶ୍ୟକ ।

୫ । ଯେବେ ଗ୍ରହୀତା ଦାତାଙ୍କୁ ହତ୍ୟା କରନ୍ତି ତାହା ହେଲେ ଉଇଲନିର୍ଦ୍ଦିଷ୍ଟ ସମ୍ପତ୍ତି ପାଇ ପାରିବେ ନାହିଁ ।

୬ । ଯେବେ ଦାତା ଜଣେ ଉତ୍ତରାଧିକାରୀଙ୍କ ଉଦ୍ଦେଶ୍ୟରେ ଉଇଲ କରନ୍ତି ଏବଂ ସେଥିରେ ଅନ୍ୟ ଉତ୍ତରାଧିକାରୀମାନେ ସମ୍ମତି ପ୍ରକାଶ ନ କରନ୍ତି ତାହା ହେଲେ ଉକ୍ତ ଦାନ ସମ୍ପୂର୍ଣ୍ଣରୂପେ ନିଷ୍ଫଳ ହେବ ।

୭ । ଉତ୍ତରାଧିକାରୀଙ୍କ ଛଡ଼ା ଅନ୍ୟ ଲୋକ ଉଦ୍ଦେଶ୍ୟରେ ଯେବେ ଉଇଲ କରାଯାଏ, ସେଥିରେ ସମସ୍ତ ଉତ୍ତରାଧିକାରୀମାନେ ଅନୁମତି ବା ସମ୍ମତି ପ୍ରଦାନ ନ କଲେ ଗ୍ରହୀତା ଦାତାଙ୍କ ସମ୍ପତ୍ତିର ତୃତୀୟାଂଶରୁ ଅଧିକ ପାଇ ପାରିବେ ନାହିଁ ।

୮ । ଦାତାଙ୍କ ମୃତ୍ୟୁ ପୂର୍ବରୁ ଯେବେ ଗ୍ରହୀତା ପରଲୋକଗମନ କରନ୍ତି ତାହା ହେଲେ ଦାତାଙ୍କ ମୃତ୍ୟୁ ପରେ ଗ୍ରହୀତାଙ୍କ ଉତ୍ତରାଧିକାରୀମାନେ ନିର୍ଦ୍ଦିଷ୍ଟ ସମ୍ପତ୍ତିରେ ଅଧିକାରୀ ହେବେ ।

୯ । ଯେଉଁ ଲୋକଙ୍କର କେହି ଉତ୍ତରାଧିକାରୀ ନାହାନ୍ତି ସେ ଆପଣାର ଋଣ ପରିଶୋଧ ଓ ଅନ୍ତ୍ୟେଷ୍ଟିକ୍ରିୟାର ବ୍ୟୟ ସଂସ୍ଥାନ କରି ସମ୍ପତ୍ତିର ଅବଶିଷ୍ଟ ଉଇଲ କରି ପାରନ୍ତି ।

୧୦ । ଯଦି ଦୁଇ ଜଣ ବ୍ୟକ୍ତିଙ୍କ ନାମରେ ଉଇଲ କରି ଯାଇଥାଏ ଏବଂ ସେମାନଙ୍କ ମଧ୍ୟରୁ ଜଣେ ଉଇଲ ସମ୍ପାଦନ ସମୟରେ ମୃତ ହୋଇଥାଏ ଅନ୍ୟ ଜଣକ ଦତ୍ତ ସମ୍ପତ୍ତିର ଅର୍ଦ୍ଧେକ ପାଇବେ ।

୧୧ । ଦାତାଙ୍କ ମୃତ୍ୟୁ ପରେ ତାଙ୍କ ସମ୍ପାଦିତ ଉଇଲରେ ଉତ୍ତରାଧିକାରୀମାନେ ସମ୍ମତି ପ୍ରଦାନ କରିବା ଆବଶ୍ୟକ ।

୧୨ । ଦାତା ଉଇଲଦ୍ୱାରା ଧର୍ମାର୍ଥ ଦାନ (ୱାକଫ୍) ମଧ୍ୟ କରି ପାରନ୍ତି ।

ଦାତା ସ୍ୱକୃତ ଉଇଲକୁ ରଦ୍ କରି ପାରନ୍ତି । ଯଦି ପୂର୍ବକୃତ ଉଇଲକୁ ପ୍ରକାଶ୍ୟ ଭାବରେ ରଦ୍ ନ କରି ଦାତା ପୂର୍ବଦତ୍ତ ସମ୍ପତ୍ତିକୁ ଅନ୍ୟ ଗ୍ରହୀତାଙ୍କ ନାମରେ ଉତ୍ସର୍ଗ କରନ୍ତି ତାହାହେଲେ ଉଭୟ ଗ୍ରହୀତା ଦତ୍ତ ସମ୍ପତ୍ତିର ଅର୍ଦ୍ଧେକ ଲେଖାଏଁ ପାଇବେ । କିନ୍ତୁ ଯେବେ ଦାତା ପ୍ରକାଶ୍ୟ ଭାବରେ ପୂର୍ବ ଉଇଲକୁ ରଦ୍ କରନ୍ତି ତାହାହେଲେ ଦ୍ୱିତୀୟ ଗ୍ରହୀତା ସମସ୍ତ ସମ୍ପତ୍ତି ପାଇବେ ।

ଏକ୍‌ଜିକ୍ୟୁଟର ବା ମୃତବ୍ୟକ୍ତିଙ୍କ ସମ୍ପତ୍ତିର ତତ୍ତ୍ୱାବଧାରକ—

ମୃତ ବ୍ୟକ୍ତିଙ୍କ ଅନ୍ତେ ତ୍ୟକ୍ତ ସମ୍ପତ୍ତି ଓ ପରିବାର ରକ୍ଷଣାବେକ୍ଷଣର ଭାର ମୃତ ବ୍ୟକ୍ତି ଯାହାଙ୍କ ଉପରେ ଅର୍ପଣ କରି ଯାଇଥାନ୍ତି ତାହାଙ୍କୁ 'ୱାସି' ବୋଲାଯାଏ ।

ମନ୍ଦାଚରଣ ନିମନ୍ତେ 'ୱାସି'ଙ୍କୁ ପଦଚ୍ୟୁତ କରିବାର କ୍ଷମତା 'ଜଜ' ବା 'କାଜୀ'ଙ୍କର ଅଛି । କୌଣସି ଦାସ, ବିଧର୍ମୀ, ନାବାଳକ, ବାତୁଳ, ବିଦେଶୀ ବା ଧର୍ମତ୍ୟାଗୀ ବ୍ୟକ୍ତି ମୃତ ମୁସଲମାନଙ୍କ ସମ୍ପତ୍ତି ରକ୍ଷଣାବେକ୍ଷଣର ଉପଯୁକ୍ତ ନୁହନ୍ତି । କିନ୍ତୁ ଅଦାଲତ କେତେ ସ୍ଥଳରେ ହିନ୍ଦୁମାନେ ମୁସଲମାନଙ୍କ ତ୍ୟକ୍ତ ସମ୍ପତ୍ତିର ତତ୍ତ୍ୱାବଧାରକ ହେବା ବିଷୟ ମଞ୍ଜୁର କରିଅଛନ୍ତି । ମୃତବ୍ୟକ୍ତିଙ୍କ ଦ୍ୱାରା ନିଯୁକ୍ତ ବ୍ୟକ୍ତି ନ୍ୟସ୍ତ ଭାରକୁ ଗ୍ରହଣ କରିବା ନିମନ୍ତେ ବାଧ୍ୟ ନୁହନ୍ତି, କିନ୍ତୁ ଥରେ ଗ୍ରହଣ କଲେ ଜଜଙ୍କ ବିନା ଅନୁମତିରେ ତାହା ଛାଡି ପାରିବେ ନାହିଁ ।

'ୱାସି' ବା ତତ୍ତ୍ୱାବଧାରକ ତାଙ୍କର ମୃତ୍ୟୁ ପୂର୍ବରୁ ତାଙ୍କ ନିମନ୍ତେ ପ୍ରତିନିଧି ନିଯୁକ୍ତ କରି ପାରନ୍ତି ଓ ସମ୍ପତ୍ତି ରକ୍ଷଣାବେକ୍ଷଣ ବିଷୟରେ ଉକ୍ତ ପ୍ରତିନିଧିଙ୍କର ସମ୍ପୂର୍ଣ୍ଣ କ୍ଷମତା ରହିବ ।

ମୃତବ୍ୟକ୍ତି କୌଣସି ତତ୍ତ୍ୱାବଧାରକ ନିଯୁକ୍ତ ନ କରି ପରଲୋକ ଗମନ କରିଥିଲେ 'ଜଜ' ଜଣେ ତତ୍ତ୍ୱାବଧାରକ ନିଯୁକ୍ତ କରି ପାରିବେ ।

ମୃତବ୍ୟକ୍ତିଙ୍କ ତ୍ୟକ୍ତ ସମ୍ପତ୍ତିରେ ତତ୍ତ୍ୱାବଧାରକଙ୍କ କ୍ଷମତା—

୧ । ଯଦି ମୃତବ୍ୟକ୍ତିଙ୍କର ଉତ୍ତରାଧିକାରୀ ଓ ଉଇଲଗ୍ରହୀତା ଥାନ୍ତି ଓ ଉତ୍ତରାଧିକାରୀମାନେ ନାବାଳକ କିମ୍ବା ଅନୁପସ୍ଥିତ ଥାନ୍ତି ତାହାହେଲେ ତତ୍ତ୍ୱାବଧାରକ ନାବାଳକଙ୍କ ତରଫରୁ ତ୍ୟକ୍ତ ସମ୍ପତ୍ତି ବିଭାଗ କରି ନେଇ ପାରିବେ, କିନ୍ତୁ ଯେବେ ଉତ୍ତରାଧିକାରୀମାନେ ବୟଃପ୍ରାପ୍ତ ଓ ଉପସ୍ଥିତ ଥାନ୍ତି ତାହାହେଲେ 'ୱାସି' ସେମାନଙ୍କ ତରଫରୁ ସମ୍ପତ୍ତି ବିଭାଗ କରି ପାରିବେ ନାହିଁ କିମ୍ବା ସମ୍ପତ୍ତି ହସ୍ତାନ୍ତର କରି ପାରିବେ ନାହିଁ ।

୨ । ମୃତବ୍ୟକ୍ତିଙ୍କ ଋଣ ପରିଶୋଧ ଓ ଅନ୍ତ୍ୟେଷ୍ଟି କ୍ରିୟାର ବ୍ୟୟ ନିମନ୍ତେ, ନାବାଳକମାନଙ୍କ ଭରଣପୋଷଣାଦି ଉପକାର ନିମନ୍ତେ, ସମ୍ପତ୍ତିକୁ ଦ୍ୱିଗୁଣ ମୂଲ୍ୟରେ ବିକ୍ରୟ କରିବା ନିମନ୍ତେ ତତ୍ତ୍ୱାବଧାରକଙ୍କର ସମ୍ପତ୍ତି ହସ୍ତାନ୍ତରିତ କରିବାର ଅଧିକାର ଅଛି ।

୩ । ତତ୍ତ୍ୱାବଧାରକ ନିଜେ କିମ୍ବା ତାଙ୍କର ସମ୍ପର୍କୀୟ ଲୋକ ନିମନ୍ତେ ତାଙ୍କ ଅଧୀନସ୍ଥ ସମ୍ପତ୍ତିକୁ କଦାପି କ୍ରୟ କରି ନ ପାରନ୍ତି ।

ମୃତବ୍ୟକ୍ତି ଉଇଲ ବା ଚରମପତ୍ର ସମ୍ପାଦନ କରି ନ ଥିଲେ ମୃତବ୍ୟକ୍ତିଙ୍କର ପିତା କିମ୍ବା ପିତାଙ୍କ ଦ୍ୱାରା ନିଯୁକ୍ତ ତତ୍ତ୍ୱାବଧାରକ, ନଚେତ୍ ପିତାମହଙ୍କ ଦ୍ୱାରା ନିଯୁକ୍ତ ତତ୍ତ୍ୱାବଧାରକ ମୃତବ୍ୟକ୍ତିଙ୍କ ସମ୍ପତ୍ତି ତତ୍ତ୍ୱାବଧାନ କରି ପାରନ୍ତି । ଏପରି କେହି ନ

ଥିଲେ ମାତାଙ୍କ ନିଯୁକ୍ତ ତତ୍ତ୍ୱାବଧାରକ ମୃତବ୍ୟକ୍ତିଙ୍କ ଅସ୍ଥାବର ସମ୍ପତ୍ତିକୁ ବିକ୍ରୟ କରି ପାରିବେ ।

ସୁନ୍ନି ଓ ସିଆମାନଙ୍କ ମଧ୍ୟରେ ଉଇଲ ସମ୍ବନ୍ଧରେ ପ୍ରଭେଦ ଏହି ଯେ ସୁନ୍ନି ବିଧାନ ଅନୁସାରେ ମୃତବ୍ୟକ୍ତି ଯେବେ ଉତ୍ତରାଧିକାରୀମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତିଙ୍କୁ ସମ୍ପତ୍ତି ଦାନ କରିଥାନ୍ତି ତାହାହେଲେ ଉକ୍ତ ଦାନ ନିଷ୍ଫଳ ହେବ । କିନ୍ତୁ ସିଆ ବିଧାନ ଅନୁସାରେ ଉକ୍ତ ପ୍ରକାର ଦାନ ( ଅନ୍ୟ ଉତ୍ତରାଧିକାରୀମାନଙ୍କ ଅସମ୍ମତିରେ ସୁଦ୍ଧା ) ପ୍ରବଳ ରହେ ।

ମୁସଲମାନମାନଙ୍କ 'ଉଇଲ' ସମ୍ବନ୍ଧୀୟ ବିଧିର ୧୮୮୧ ସାଲର ୫ ଆଇନର କେତେକ ଗୋଟି ଧାରା ( ପ୍ରୋବେଟ ଆଇନ ) ଅନୁସାରେ ହେବାର ବିଧାନ ହୋଇଅଛି ।

କ୍ରମଶଃ

ଶ୍ରୀ ଦୁର୍ମୁଖ ଶର୍ମା ।

---

## ମୃଚ୍ଛକଟିକ ।

( 'ସଂସ୍କୃତପରିଷତ୍'ରେ ପଠିତ )

—:o:—

ଉତ୍କଳୀୟ ଶିକ୍ଷିତ ସମାଜର ଅତ୍ୟଳ୍ପ ଲୋକେ ମୃଚ୍ଛକଟିକର ବିଷୟ ଭଲ କରି ଜାଣିଥିବେ । ସ୍ୱଳ୍ପକାଳ ହେଲା ମୃଚ୍ଛକଟିକ ସହ ମୋର ପରିଚୟ ହୋଇଅଛି । ତାହାର ସୌନ୍ଦର୍ଯ୍ୟରେ ମୁଁ ଏତେ ମୁଗ୍ଧ ହୋଇଅଛି ଯେ, ସ୍ୱଳ୍ପକାଳ ମଧ୍ୟରେ ବହୁବାର ପଢ଼ି ସୁଦ୍ଧା ତୃପ୍ତି ହେଲା ନାହିଁ । କବି ଯଥାର୍ଥ କହିଅଛନ୍ତି;—'ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖିଲେହେଁ ନୂଆ ଦିଶୁଥାଇ' । କୌଣସି ଗୋଟିଏ ଅପୂର୍ବସୁନ୍ଦର ବସ୍ତୁ ଦେଖିଲେ ତାହା ବନ୍ଧୁମାନଙ୍କୁ ଦେଖାଇବାପାଇଁ ମନ ବଡ଼ ବ୍ୟାକୁଳ ହୁଏ । ମୁଁ ସେହିପରି ମୋହର ବନ୍ଧୁମାନଙ୍କୁ ଆଜି ମୃଚ୍ଛକଟିକର ଚିତ୍ର ଦେଖାଇବା ଲାଗି ବ୍ୟାକୁଳ । ତହିଁର ଚିତ୍ରପ୍ରଦର୍ଶନ ବିଷୟରେ ମୋପରି ଅଦୂରଦର୍ଶୀ ଅଳ୍ପଜ୍ଞ ବ୍ୟକ୍ତି ସମ୍ପୂର୍ଣ୍ଣ ଅକ୍ଷମ ହେଲେହେଁ ସାମୟିକ କୌତୂହଳ ମୋତେ ଉଦ୍ରିକ୍ତ କରୁଅଛି । ମୁଁ ମୃଚ୍ଛକଟିକର ସମାଲୋଚନା କରିବାକୁ ଯାଉ ନାହିଁ କିମ୍ବା ସମ୍ପୂର୍ଣ୍ଣ ପରିଚୟ ଦେବାକୁ ବସି ନାହିଁ । କେବଳ ପରିଚୟସ୍ୱରୂପ କେତୋଟି କଥା ସଂକ୍ଷେପରେ ପ୍ରକାଶ କରିବି ।

ମୃଚ୍ଛକଟିକ ଖଣ୍ଡିଏ ବୃହତ୍ ସଂସ୍କୃତ ନାଟକ । ଆଧୁନିକ ରଙ୍ଗମଞ୍ଚରେ ଯେଉଁମାନେ ନାଟକାଭିନୟ ଦେଖି ମୁଗ୍ଧ ହେଉଅଛନ୍ତି, ସେମାନଙ୍କର ଦୃଢ଼ ବିଶ୍ୱାସ ଯେ ପ୍ରାଚୀନ ସଂସ୍କୃତ ନାଟକମାନଙ୍କରେ ସେପରି ଚିତ୍ତାକର୍ଷୀ ଅଭିନୟମାନ ନାହିଁ । ଏହି ମତ ବିରୁଦ୍ଧରେ ମୃଚ୍ଛକଟିକ ଜ୍ୱଳନ୍ତ ସାକ୍ଷୀସ୍ୱରୂପ ରହିଅଛି । ଯେଉଁ ଦର୍ଶକମାନେ ଆଧୁନିକ ଅଭିନୟ ଦର୍ଶନରେ ପରିତୃପ୍ତି ଲାଭ କରିଅଛନ୍ତି, ସେମାନେ ଏହି ନାଟକର ଅଭିନୟ ଦର୍ଶନରେ କଦାପି ଅତୃପ୍ତ ହେବେ ନାହିଁ । ରାଜା ଶୂଦ୍ରକ ଏହି ଗ୍ରନ୍ଥର କବି । ତାହାଙ୍କର ଉତ୍ପତ୍ତି ସମୟ ଓ ବାସସ୍ଥାନ ନିରୂପଣ ସମ୍ବନ୍ଧରେ କୌଣସି ବିଶିଷ୍ଟ ପ୍ରମାଣ ମିଳେ ନାହିଁ । ତେବେ ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ ସେ ଖୁବ ପ୍ରାଚୀନ । କବିଙ୍କ ସ୍ୱଲିଖିତ ପରିଚୟରୁ ପଣ୍ଡିତମାନେ ତାହାଙ୍କୁ ବିକ୍ରମାଦିତ୍ୟଙ୍କର ପୂର୍ବବର୍ତ୍ତୀ ବୋଲି ଅନୁମାନ କରନ୍ତି । ସୁତରାଂ ମୃଚ୍ଛକଟିକ ସଂସ୍କୃତ ଦୃଶ୍ୟକାବ୍ୟ ମଧ୍ୟରେ ପ୍ରାଚୀନତର । ଗ୍ରନ୍ଥପାଠରୁ ଜଣାଯାଏ କବି ନୀନାଶାସ୍ତ୍ରରେ ପଣ୍ଡିତ ଥିଲେ । ନାଟକର ନାନା ସ୍ଥାନରେ କବିଙ୍କର ବିବିଧ ଶାସ୍ତ୍ରଜ୍ଞତ୍ୱର ପରିଚୟ ମିଳେ ।

ସଂସ୍କୃତ ଦୃଶ୍ୟ କାବ୍ୟମାନ ପଞ୍ଚ ଅଙ୍କରେ ବିଭକ୍ତ ହେବା ବିହିତ । ପଞ୍ଚାଧିକା ଦଶପର

ପ୍ରସାଦାଃ ପରକାର୍ଯ୍ୟତାଃ', ମୃଚ୍ଛକଟିକ ମଧ୍ୟ ଦଶ ଅଙ୍କରେ ବିଭକ୍ତ । ଏଥିର ଲେଖା ପ୍ରଣାଳୀ ଅପରାପର ନାଟକର ରଚନା ପ୍ରଣାଳୀଠାରୁ ଭିନ୍ନ । ଏଥିରେ ଗଦ୍ୟ ଓ ପ୍ରାକୃତ ଅଂଶ ଅଧିକ । ଅଧିକାଂଶସ୍ଥଳରେ ଅତି ସାଧାରଣ ଚରିତ୍ରଙ୍କଉପଯୋଗୀ । ଦକ୍ଷ କବି ଜଣେ ଧୀର ପ୍ରଶାନ୍ତ ଗୁଣବାନ୍ ନାୟକ ଏବଂ ନାୟିକା ଯେଉଁ ଏପରି ଅସାଧାରଣ ରଚନାଚାତୁର୍ଯ୍ୟ ସହକାରେ ସୃଜନ କରିଅଛନ୍ତି ଯେ ସେଥିର ପ୍ରତି ସ୍ଥଳରେ ଦର୍ଶକ ମଗ୍ନ ନ ହୋଇ ରହି ପାରିବେ ନାହିଁ । ସ୍ଥଳରେ ମୃଚ୍ଛକଟିକକୁ ବିବିଧ ଚିତ୍ରପେଟିକା ବୋଲି କହିଲେ ଅତିରଞ୍ଜନ ହେବ ନାହିଁ ।

ଅନ୍ୟାନ୍ୟ କବିମାନଙ୍କପରି ଶୂଦ୍ରକଙ୍କ ଗ୍ରନ୍ଥର ଲକ୍ଷ୍ୟ 'ଯତୋଧର୍ମସ୍ତତୋଜୟଃ—'ପାପସ୍ୟ ବିନାଶୋନାସ୍ତି'—'ସତ୍ୟମେବ ଜୟତି'— ଇତ୍ୟାଦି । ଏହା ଛଡ଼ା କବି ଅନେକ ଜାଗାରେ ସତ୍ୟ ପୁଷ୍ପକୁ ପ୍ରଦର୍ଶନ କରିଅଛନ୍ତି; ଯଥା— 'ଦୈବସ୍ୟ ବଶଗୋ ଜନ୍ତୁଃ'—'ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ'— 'ଦାରିଦ୍ର୍ୟଦୋଷୋଗୁଣରାଶିନାଶୀ'—'ଛିଦ୍ରେଷ୍ୱନର୍ଥା ବହୁଳୀଭବନ୍ତି'—'ଯଦ୍ଭାବି ନ ତଦ୍ଭାବି ଭାବିଚେତ୍ତୁ ନ ତଦନ୍ୟଥା'—ଇତ୍ୟାଦି ।

ନାଟକର ସଂକ୍ଷିପ୍ତ କଥା ଏହି,—ପୂର୍ବେ ଅବନ୍ତୀନଗରୀରେ ସର୍ବଗୁଣାଲଙ୍କୃତ ଚାରୁଦତ୍ତ ନାମକ ଜଣେ ଧନାଢ୍ୟ ବ୍ୟକ୍ତି ବାସ କରୁଥିଲେ । ସେ ବଦାନ୍ୟ ହୋଇ ନାନା ସତ୍କାର୍ଯ୍ୟରେ ପ୍ରଚୁର ଧନ ବ୍ୟୟ କରୁ କରୁ ଅବଶେଷରେ ମହା ଦରିଦ୍ର ହୋଇ ପଡ଼ିଲେ । କ୍ରମେ ଆଶ୍ରିତ ବାନ୍ଧବଗଣ ହୀନସ୍ନେହ ହୋଇଗଲେ । ତଥାପି ବସନ୍ତସେନା ନାମ୍ନୀ ଗୋଟିଏ ସାଧୁଶୀଳା ଗଣିକା ତାହାଙ୍କ ଗୁଣାନୁରକ୍ତ ହୋଇ ସହଧର୍ମିଣୀ ପଦରେ ନିଯୁକ୍ତ ହୋଇଥିଲେ । କାଳକ୍ରମେ ରାଜଶ୍ୟାଳକ ଶକାର ଦରିଦ୍ର ଚାରୁଦତ୍ତଙ୍କ ଗୁଣାନୁରାଗିଣୀ ବସନ୍ତସେନାକୁ ସ୍ୱବଶୀଭୂତ କରିବାପାଇଁ ନାନା ପ୍ରଲୋଭନ ପ୍ରଦର୍ଶନପୂର୍ବକ ଚେଷ୍ଟାକଲେ; କିନ୍ତୁ ଗୁଣଗ୍ରାହିଣୀ ଅନନ୍ୟାସକ୍ତା ବସନ୍ତସେନାର ମନ ସେଥିରେ ଲେଶମାତ୍ର ଟଳିଲା ନାହିଁ । ଏକଦା ଚାରୁଦତ୍ତ ନିଜ ଉପବନରେ ଥିଲେ; ତାହାଙ୍କର ଆହ୍ୱାନମତେ ସରଳା ବସନ୍ତସେନା ଉକ୍ତ ଉପବନ ଉଦ୍ଦେଶ୍ୟରେ ଭ୍ରମକ୍ରମେ ଅନ୍ୟ (ଶକାର) ଯାନରେ ବସି ଗଲେ । ଆମୋଦପ୍ରମୋଦୋଦ୍ଧୁତା ବସନ୍ତସେନା ଅଳ୍ପକ୍ଷଣ ପରେ ଭୀଷଣ ରାକ୍ଷସ ହସ୍ତରେ ପଡ଼ିବେ ବୋଲି ଜାଣି ନ ଥିଲେ । ଯାନରୁ ବାହାର ଦେଖିଲେ ସେ ଉପବନ ପରିଚିତ ନୁହେ । ଗୃହୁଁ ଗୃହୁଁ ଦୁର୍ବୃତ୍ତ ଶକାର ଶିଘ୍ରଗତିରେ ଯାନପାର୍ଶ୍ୱରେ ଉପସ୍ଥିତ ହୋଇ ବସନ୍ତସେନାକୁ ସ୍ୱ ଉଦ୍ୟାନ ଅଭିମୁଖେ ଘେନିଗଲା ଏବଂ ସେଠାରେ ନାନା ପ୍ରଲୋଭନ ଦେଖାଇଲେ ସୁଦ୍ଧା କାମନା ପୂର୍ଣ୍ଣ ନ ହେବାରୁ ତତ୍କ୍ଷଣାତ୍ ତାହାକୁ ବଧ କରିବାଲାଗି ଯାନବାହକକୁ ଆଦେଶ ଦେଲା । କିନ୍ତୁ ବାହକ ସେପରି ରୋମହର୍ଷଣ ଅନୁଷ୍ଠାନ କରିବାକୁ ଏକାନ୍ତ ଅସ୍ୱୀକୃତ ହେବାରୁ ଶେଷରେ ସେହି ଦୁର୍ମତି ସରଳା ଅବଳାର କୋମଳ ପ୍ରାଣ ଶୋଷଣ କଲା ଏବଂ ମୃତ ମନେ କରି ପତ୍ରରାଶିଦ୍ୱାରା ଶରୀର ଆଚ୍ଛାଦନ ପୂର୍ବକ ନିର୍ଭୀକଭାବରେ ବିଚାରଳୟାଭିମୁଖରେ ପ୍ରସ୍ଥାନ କଲା । ସେଠାରେ ଏହିପରି ଅଭିଯୋଗ ଉତ୍ଥାପିତ ହେଲା ଯେ ଚାରୁଦତ୍ତ ଅର୍ଥାଭାବ ହେତୁରୁ ଅଳଙ୍କାରମାନ ଗ୍ରହଣ କରି ବସନ୍ତସେନାକୁ ମାରିଅଛି । ଦୁର୍ମତି ଅଭିଯୋକ୍ତାର ସପକ୍ଷରେ ଅଧିକ ପ୍ରମାଣ ନ ମିଳିବାରୁ ଦରିଦ୍ର ଅର୍ଥ୍ୟ ଚାରୁଦତ୍ତ ଅପରାଧୀ ପ୍ରମାଣିତ ହେଲେ ଏବଂ ସେଥି ପାଇଁ ତାହାଙ୍କର ପ୍ରାଣଦଣ୍ଡ ଆଦେଶ ହେଲା । ଏଣେ କଲ୍ୟାଣୀ ବସନ୍ତସେନାର ମୃତ୍ୟୁ ହୋଇ ନାହିଁ । ଜଣେ ବୌଦ୍ଧ ସନ୍ନ୍ୟାସୀ ସେ ଉଦ୍ୟାନରେ ଉପସ୍ଥିତ ହୋଇ ତାହାଙ୍କର ଜୀବନ ରକ୍ଷା କରିଥିଲେ ଏବଂ ସୁଚିକିତ୍ସା ଓ ଶୁଶ୍ରୂଷା ଦ୍ୱାରା ସୁସ୍ଥ ସବଳ କରାଇ ପରମସଖା ଚାରୁଦତ୍ତଙ୍କ ନିକଟକୁ ଘେନି ଯିବାକୁ ମନ ବଳାଇଲେ । ପରିଣାମଫଳ

ଜଣ ହେଲା, ତାହା ପଶ୍ଚାତ୍ ବର୍ଣ୍ଣିତ ହେବ । ତେବେ ଏଠାରେ ଏତିକିମାତ୍ର ଉଲ୍ଲେଖଯୋଗ୍ୟ ଯେ, ଶେଷରେ ସତ୍ୟର ଜୟ ହେଲା ଏବଂ ନ୍ୟାୟର ପ୍ରତିଷ୍ଠା ହେଲା ।

ପୁସ୍ତକଖଣ୍ଡିକ ପାଠ କଲେ ସେକାଳର ସଭ୍ୟତା ଆଚାର ବ୍ୟବହାର ଓ ଶାସନପ୍ରଣାଳୀ ସମ୍ବନ୍ଧରେ ଯେଉଁ ଆଭାସ ମିଳେ ତାହା ତଳେ ବର୍ଣ୍ଣିତ ହେଉଅଛି । ୧ ସଭ୍ୟତା—ପୁସ୍ତକର ବର୍ଣ୍ଣନା ଯଦି ଅତିରଞ୍ଜିତ ହୋଇ ନ ଥାଏ, ତାହାହେଲେ ବୁଝିବାକୁ ହେବ, ସେ କାଳର ସଭ୍ୟତା ଆଧୁନିକ ସଭ୍ୟତା ଅପେକ୍ଷା କୌଣସି ଅଂଶରେ ହୀନ ନୁହେ । ବର୍ଣ୍ଣନାରୁ ଅନୁମାନ ହୁଏ ତାହା ଗ୍ରୀକ ସଭ୍ୟତାର ଯୁଗ । ଲୋକେ ଉତ୍ତମରୂପେ ଘୋଡାର ବ୍ୟବହାର ଜାଣିଥିଲେ । ବର୍ତ୍ତମାନ କାଳ ପରି କେତେବେଳେ କରେଣ୍ଟି (ଅଧିକରଣ) ଓ ଥାନା (ଗୁଲ୍ମସ୍ଥାନ) ଥିଲା । ଉଜ୍ଜ୍ୱଳବେଶଧାରୀ, ଶୈତକାକାର୍ଯ୍ୟ ପ୍ରଭୃତି କଥାରୁ ଲୋକମାନଙ୍କ ପରିଚ୍ଛଦ ସଭ୍ୟତାନୁରୂପ ଥିବାର ବେଶ ବୁଝାଯାଏ । 'ଚରଣଶୂନ୍ୟଂ ଯସ୍ୟ ନାସ୍ତି ସନ୍ନିକ୍ରମ୍' ବାକ୍ୟଟିରୁ ଜଣାଯାଉଅଛି ସେମାନଙ୍କ ମଧ୍ୟରେ ସଖ୍ୟ ଓ ଭ୍ରାତୃଭାବ ଭଲ ଥିଲା । ସାଧାରଣ ଶିକ୍ଷାର ଅବସ୍ଥା ମନ୍ଦ ନ ଥିଲା; ସ୍ତ୍ରୀମାନେ ମଧ୍ୟ କିଞ୍ଚିତ୍ ଶିକ୍ଷା ଲାଭ କରି ପାରୁଥିଲେ । ସ୍ତ୍ରୀମାନେ ସଙ୍କୀର୍ଣ୍ଣ-ସୀମାବଦ୍ଧ ନ ହୋଇ ନାନା ଅନ୍ତର ସମ୍ବାଦମାନ ଜାଣୁଥିଲେ । 'ମୂର୍ଖସ୍ୟ ଦଶଃ ଶୂନ୍ୟାଃ' କଥାରୁ ତାହାର ହେତେଢ ଆଭାସ ମିଳୁଅଛି । ସମ୍ଭ୍ରାନ୍ତ ଲୋକମାନଙ୍କ ଗୃହ ସୁସଜ୍ଜିତ ଏବଂ ସୁରୁଚିସମ୍ପନ୍ନ ଥିଲାପରି ଲାଗେ । 'ଅଭ୍ୟନ୍ତରଚତୁଃଶାଳକଂ' ବର୍ଣ୍ଣନାରୁ ସେମାନଙ୍କ ଗୃହଚତ୍ୱର (Compound) ଗୋଟିଏ ସୁଦୀର୍ଘ ପ୍ରାଚୀରଦ୍ୱାରା ଆବୃତ ଏବଂ ସେଥିରେ ନାନାପ୍ରକାର ପ୍ରକୋଷ୍ଠମାନ ଥିବାର ଅନୁମିତ ହୁଏ । ଭଦ୍ରଲୋକମାନଙ୍କ ବ୍ୟବହାରୋପଯୋଗୀ ପ୍ରକୋଷ୍ଠରେ ନାନାବିଧ ଆସନ ସଜ୍ଜିତ ଥିବାର ଏବଂ ପାଠକପୀଠ (table) ଉପରେ ଅନେକ ତାଳପତ୍ର ପୁସ୍ତକମାନ ବିଶୃଙ୍ଖଳ ଓ ଅସମ୍ବଦ୍ଧ ଭାବରେ ପଡ଼ିଥିବାର ପ୍ରମାଣ ମିଳେ । ଆଧୁନିକ ସଭ୍ୟଜାତିଙ୍କର (breakfast) ପରି ପ୍ରାତଃ ସମୟରେ କଲ୍ୟବର୍ତ୍ତ ବା ପ୍ରାତରାଶ ବିଧି ଉତ୍ତମରୂପେ ପ୍ରଚଳିତ ଥିବାର ଏହି କାବ୍ୟାନ୍ତର୍ଗତ ବର୍ଣ୍ଣନାରୁ ଜଣାଯାଉଅଛି । ପ୍ରାଚୀନ କାଳରେ ଧାତୁମୁଦ୍ରା ବ୍ୟବହାର ସ୍ଥଳରେ ବିନିମୟ ପ୍ରଥା ପ୍ରଚଳିତ ଥିବାର ଅସ୍ମମାନଙ୍କ ବିଶ୍ୱାସ । କିନ୍ତୁ ଉକ୍ତ ଯୁଗରେ ଆଧୁନିକ ପାଉଣ୍ଡ ଶିଲିଂ ପରି ସୁବର୍ଣ୍ଣ* ନାଣକ ପ୍ରଭୃତି ସ୍ୱର୍ଣ୍ଣମୁଦ୍ରା ବ୍ୟବହୃତ ହେଉଥିଲା । ସ୍ତ୍ରୀସ୍ୱାଧୀନତା ଅତି ସାମାନ୍ୟ ମାତ୍ରାରେ ଥିଲା ପରି ଅନୁମାନ ହୁଏ, କିନ୍ତୁ ଅବଗୁଣ୍ଠନ ପ୍ରଥା ପରିବ୍ୟକ୍ତ ହୋଇ ନ ଥିଲା । ସ୍ତ୍ରୀମାନଙ୍କର ପରିଚ୍ଛଦ ଓ ଅଳଙ୍କାର ସୁରୁଚିସମ୍ପନ୍ନ । ସେମାନେ ମଧ୍ୟ ଘୋଡା ବ୍ୟବହାର କରୁଥିଲେ । ନାଟକର ଚତୁର୍ଥ ଅଙ୍କରେ ଲେଖା ଅଛି,—'ଏଷା ପୁନଃ କା ପୁଷ୍ପପ୍ରାବରକପ୍ରାବୃତା ଉପାନଦ୍‌ଯୁଗଳନିକ୍ଷିପ୍ତ-ତୈଳଚିକ୍କଣାଭ୍ୟାଂ ପାଦାଭ୍ୟାଂ ଉଚ୍ଚାସନୋପବିଷ୍ଟା ?' ଭଦ୍ରମହିଳାମାନେ ଯାନ ଆରୋହଣ କରି ଯାତାୟାତ କରୁଥିଲେ । ଉକ୍ତ ଯୁଗରେ ଧର୍ମପ୍ରଣାଳୀ କିପରି ଥିଲା, ତାହା ଏ ନାଟକରୁ ଭଲରୂପେ ଜାଣିବାର ବାଟ ନାହିଁ । ତେବେ ଏହା ନିଶ୍ଚିତ ଯେ ସାଧାରଣଙ୍କ ମଧ୍ୟରେ ପ୍ରତିମା ପୂଜା ପ୍ରଚଳିତ ଥିଲା । ଚାରୁଦତ୍ତ ପ୍ରତିଦିନ ସକାଳେ ଗୃହଦେବତାମାନଙ୍କୁ ପୂଜା କରୁଥିଲେ । ସ୍ତ୍ରୀମାନେ ଯଥାବିଧି ବ୍ରତ ଉପବାସ ପ୍ରଭୃତି ଆଚରଣ କରୁଥିଲେ । ସାଧାରଣ ଏବଂ ନୀଚଜାତୀୟ ଲୋକମାନଙ୍କର ଆଚାର ବ୍ୟବହାର ଆଧୁନିକମାନଙ୍କର ପ୍ରାୟ ସମକକ୍ଷ । ଅସ୍ମମାନଙ୍କ ଦେଶର 'ରାମଲୀଳା' ପ୍ରଭୃତି ଯାତ୍ରା ଅଭିନୟ କାଳରେ ସାଧାରଣ ନାଟ୍ୟକାରମାନେ ଯେପରି ଅସ୍ୱାଭାବିକ ଓ ଅସଙ୍ଗତ ପ୍ରହସନମାନ ଦେଖାଇ ଥାନ୍ତି, ବସ୍ତୁ

* କର୍ଷଂ ସୁବର୍ଣ୍ଣସ୍ୟ ସୁବର୍ଣ୍ଣସଂଜ୍ଞଂ ।

ପ୍ରାଚୀନ ମୃଚ୍ଛକଟିକଯୁଗରେ ସୁଦ୍ଧା ସେହିପରି ସାଢ ଅଚଳ ଥିଲା। ଅବଶ୍ୟଦୋ ବଣିକ୍, ଅଗୌରଃ ସ୍ତୁତିକାରଃ, ଅଚଳଦୋ ଗ୍ରାମ୍ୟସମାଗମଃ' ପ୍ରଭୃତି କଥାରୁ ମଧ୍ୟ ସେକାଳର ଲୋକମାନଙ୍କ ଚରିତ୍ରର କେତେକ ଆଭାସ ମିଳେ।

ଶାସନପ୍ରଣାଳୀ—ବର୍ତ୍ତମାନ ଯୁଗ ପରି ନଗରର ଓ ରକ୍ଷା ନିମିତ୍ତ ଅନେକ ରାଜପୁରୁଷ ନିଯୁକ୍ତ ହେଉଥିଲେ। ଲୋକେ ରକ୍ଷିବର୍ଗଙ୍କୁ ଭୟ କରି ଶାନ୍ତିରେ କାଳଯାପନ କରୁଥିଲେ ସତ୍ୟ, କିନ୍ତୁ ତଥାପି ସେମାନଙ୍କ ମଧ୍ୟରେ କୂଟ କପଟ ତୀବ୍ର ଗତିରେ ଚାଲିଥିଲା। ଅନ୍ଧକାର ପରି ପୋଲିସ ବା ରକ୍ଷିବର୍ଗ ଅହୋରାତ୍ର ଭ୍ରମଣପୂର୍ବକ ନଗର ରକ୍ଷା କରୁଥିଲେ। ଅଧିକ ରାତିରେ ଲୋକେ ରକ୍ଷି-ମାନଙ୍କ ଭୟରେ ନଗର ମଧ୍ୟରେ ଯିବାକୁ ସାହସୀ ହେଉ ନ ଥିଲେ। ନାଟକର ଏକ ଅଂଶରେ ଲେଖା ଅଛି:—'ରାଜମାର୍ଗୋ ହି ଶୂନ୍ୟୋଽୟଂ ରକ୍ଷିଣଃ ସଞ୍ଚରନ୍ତି ଚ। ବଞ୍ଚନା ପରିହର୍ତ୍ତବ୍ୟା ବହୁ-ଦୋଷା ହି ଶର୍ବରୀ'। ଲୋକେ ଆପଣା ଆପଣା ମଧ୍ୟରେ ନାନା ବାଦ ବିବାଦ ଉପୁଜାଇ ବ୍ୟବହାର ନିମିତ୍ତ ରାଜକୁଳ ପୂର୍ଣ୍ଣ କରୁଥିଲେ। ବ୍ୟବହାରାର୍ଥୀ-ମାନେ (ବାଦୀ) ବିଚାରାଳୟରେ ନିଜ ଦୋଷ-ପ୍ରାପ୍ୟ ପ୍ରକାଶ କରି ନ ଥାନ୍ତି; † ଫଳତଃ ପ୍ରକୃତ ବିଚାର ହୋଇ ପାରୁ ନ ଥିଲା। ବିଚାରପତିମାନେ ଅର୍ଥୀ ବା ପ୍ରତ୍ୟର୍ଥୀଙ୍କୁ ନିରପରାଧ ବୋଲି ବିଶ୍ୱାସ କରୁ ଥିଲେହେଁ ପ୍ରମାଣର ବଳାବଳ ଅନୁସାରେ ଦୋଷୀ ବୋଲି ସ୍ଥିର କରିବାକୁ ବାଧ୍ୟ ହେଉଥିଲେ। ଧନ ଯାର ଜୟ ତାର—ଅକିଞ୍ଚନ ଦରିଦ୍ର ବିଚାରର ସବୁ ଦୋଷ। ସେଥିପାଇଁ କବି ଠାଏ କହିଅଛନ୍ତି,—'ଶଙ୍କନୀୟା ହି ଲୋକେଽସ୍ମିନ୍ ନିଷ୍ପ୍ରତାପା ଦରିଦ୍ରତା'। ଯାବଜ୍ଜୀବନ ନିର୍ବାସନ ଓ ପ୍ରାଣ-ଦଣ୍ଡାଜ୍ଞାର ଭାର ରାଜାଙ୍କ ହସ୍ତରେ ଥିଲା। କୌଣସି ଲବ୍ଧପ୍ରତିଷ୍ଠ ଧନାଢ୍ୟ ବ୍ୟକ୍ତି ପ୍ରତ୍ୟର୍ଥୀ ହେଲେ ହେଁ ତାହାଙ୍କୁ ବିଚାର ପୂର୍ବରୁ ବ୍ୟବହାରମଣ୍ଡପରେ ଉପଯୁକ୍ତ ଆସନ ପ୍ରଦତ୍ତ ହେଉଥିଲା। ଦୋଷୀ ପ୍ରମାଣିତ ହେଲେ କି ଧନୀ କି ଦରିଦ୍ର ସମସ୍ତେ ପାଦରେ ଶୃଙ୍ଖଳ ଧାରଣ କରିବାକୁ ବାଧ୍ୟ ଥିଲେ। "ବହତି ନିଗଡ଼ଯୁଗ୍ମଂ ପାଦଲଗ୍ନଂ ମହାତ୍ମା"। ରାଜା ପ୍ରଜାମାନଙ୍କ ଉପରେ ଅତ୍ୟାଚାର ମଧ୍ୟ କରୁ ଥିଲେ। ଆମ୍ଭମାନଙ୍କର ରମଣୀସମାଜରେ ଗୋଟିଏ ପ୍ରବାଦ ଅଛି ଯେ, 'ଆଗେ ରାଜାମାନେ ମାଇପଙ୍କ ଖୋସା କାଟି ନେଉଥିଲେ'; ମୃଚ୍ଛକଟିକ-ଯୁଗରେ ସେହିପରି ଅତ୍ୟାଚାର ଥିଲା। ତାହାର ପ୍ରମାଣ ସ୍ୱରୂପ ଏହି ଉକ୍ତିଟି ଦେଖନ୍ତୁ—କଦା ତ୍ୱାଂ କୁପିତେନ ରାଜ୍ଞା ପାଳକେନ ନବବଧୂ-କେଶକଲାପମିବ ସପୁଷ୍ପଂ ଛିଦ୍ୟମାନଂ ପ୍ରେକ୍ଷିଷ୍ୟେ।' ରାଜପୁରୁଷ ରାଜସମ୍ପୃକ୍ତ ଲୋକ-ମାନେ ଦୋଷ କରି ସୁଦ୍ଧା ନାନା ଛଳ କୌଶଳରେ ବିଚାରାଳୟରୁ ମୁକ୍ତି ଲାଭ କରୁ ଥିଲେ। ଫଳତଃ ବହୁତ ନିର୍ଦ୍ଦୋଷ ଅସହାୟ ବ୍ୟକ୍ତିଙ୍କର ସର୍ବନାଶ ସାଧିତ ହେଉଥିଲା। କବି ଲୋକପ୍ରସିଦ୍ଧ ସତ୍ୟନିଷ୍ଠ ଚାରୁଦତ୍ତଙ୍କ ମୁଖରେ ଏ ସମ୍ବନ୍ଧରେ କହିଅଛନ୍ତି:—"ଛିଦ୍ରୈଶୈଃ ଖେଦ-କାକୀର୍ଣ୍ଣୈ ରାଜ୍ଞଃ ଶାସନଦୂଷକୈଃ। ଅପାପାନଂ ସହସ୍ରାଣି ହନ୍ୟନ୍ତେ ଚ ହତାନି ଚ—୯ ମ ଅଙ୍କ।

ବର୍ତ୍ତମାନ ମୃଚ୍ଛକଟିକର ବିଷୟ ସମ୍ବନ୍ଧରେ କିଛି କହିବା ପୂର୍ବରୁ ଯୋଡ଼ିଏ ପ୍ରଧାନ ଦୃଶ୍ୟର ଅବତାରଣା କରିବାକୁ କୌତୂହଳ ହେଉଅଛି। ପ୍ରଥମ ଦୃଶ୍ୟ ବିଚାରାଳୟର କେତେକ କଥା

† ଛନ୍ନଂ ଦୋଷ ମୁଦାହରନ୍ତି କୁପିତା ନ୍ୟାଯ୍ୟେନ ଦୂର୍ବୀକୃତାଃ
ସ୍ୱାନ୍ ଦୋଷାନ୍ କଥୟନ୍ତି ନାଧିକରଣେ ସନ୍ତୋଽପି ନଷ୍ଟା ଧ୍ରୁବ।
ଯେ ପକ୍ଷାପରପକ୍ଷଦୋଷସହିତାଃ ପାପାନି ସଂକୁର୍ବତେ
ସଂକ୍ଷେପାଦପବାଦ ଏବ ସୁଲଭୋ ଦ୍ରଷ୍ଟୁର୍ଗୁଣୋ ଦୂରତଃ ॥

ଉପରେ ବର୍ଣ୍ଣିତ ହୋଇଅଛି । ଏଠାରେ ତାହାର କାର୍ଯ୍ୟପ୍ରଣାଳୀ ସଂକ୍ଷେପରେ ବର୍ଣ୍ଣନ କରିବା ଲକ୍ଷ୍ୟ । କାଯ୍ୟାରମ୍ଭ ଅଧିକରଣଦ୍ୱାର ସକଳ ରୁଦ୍ଧ ଥାଏ, ସକାଳେ ଶୋଧନକ (ମେହନ୍ତର) ଅସି ଗୃହ ପରିଷ୍କାର କରି ଏବଂ ଅସନମାନ ସଜାଡି ଗଲେ ଯାଏ, କ୍ରମେ ବେଳ ହୋଇ ଉଣ୍ଠି ଅର୍ଥୀ ପ୍ରତ୍ୟର୍ଥୀ ଏବଂ ଅଧିକରଣିକମାନେ ଧୀରେ ଧୀରେ ଉପସ୍ଥିତ ହୁଅନ୍ତି । ବାଣକମାନେ (ଅଧୁନାତନ ଟଉଣୀ) ନାନା ବାଗ୍‌ଜାଲ ବିସ୍ତାର କରି ଗ୍ରାହକମାନଙ୍କୁ ଥୋପ ଗିଳାଇବାର ଚେଷ୍ଟା କରୁଥାନ୍ତି । ପଛେ ଶ୍ରେଷ୍ଠୀ କାଯ୍ୟସ୍ଥ ଅର୍ଥାତ୍ ଅଧୁନାତନ ପେଷ୍କାର ପ୍ରଭୃତି ଏବଂ ପ୍ରାଡ଼୍‌ବିବେକ ( Judge ) ଉପସ୍ଥିତ ହେଲାକ୍ଷଣି କାର୍ଯ୍ୟାରମ୍ଭ ହୁଏ । ବିଚାରପତିଙ୍କ ଅଦେଶମତେ ଶୋଧନକ ଆବେଦନକାରମାନଙ୍କୁ ଯଥାକ୍ରମେ ଉଚ୍ଚୈଃସ୍ୱରରେ ଅହ୍ୱାନ କରେ । ବିଚାରପତି ସେମାନଙ୍କଠାରୁ ସାକ୍ଷ ପ୍ରମାଣାଦ ଗ୍ରହଣପୂର୍ବକ ଶେଷରେ ବ୍ୟବସ୍ଥାଶାସ୍ତ୍ରସମ୍ମତ ସିଦ୍ଧାନ୍ତ କରନ୍ତି । ପ୍ରମାଣାଦ ଆମୂଳାନ୍ତ ଲିପିବଦ୍ଧ ହେଉଥାଏ । ଅର୍ଥୀ ପ୍ରତ୍ୟର୍ଥୀ ଓ ସାକ୍ଷିମାନଙ୍କ ମଧ୍ୟରୁ କେହି ଅନୁପସ୍ଥିତ ହେଲେ, ତାହାଙ୍କୁ ଶୀଘ୍ର ରକ୍ଷିମାନଙ୍କଦ୍ୱାରା ଧରାଇ ( warrant ) ଅଣୁଥିଲେ । ବିଚାରାଂଶର ସମସ୍ତ କଥା ବର୍ଣ୍ଣନ ନ କରି ଏଠାରେ ପ୍ରଥମ ଓ ଶେଷ ଶ୍ଳୋକଗୁଡ଼ିକ ଉଦ୍ଧୃତ କରଗଲା । ସେଥିରୁ ପାଠକମାନେ କହିଁର କିଞ୍ଚିତ ଅଭାସ ପାଇବେ । ଯଥା—

ବ୍ୟବହାରଃ ସଦ୍ଦକ୍ଷୋର୍ଦ୍ଧ୍ୱଂ
ତ୍ୟଜ ଲଜ୍ଜାଂ ହୃଦସ୍ଥିତାଂ ।
ବ୍ରୂହି ସତ୍ୟମଲଂ ଧୈର୍ଯ୍ୟଂ
ଛଲମତ୍ର ନ ଗୃହ୍ୟତେ ।

ଅଲଂ ଲଜ୍ଜୟା ବ୍ୟବହାରସ୍ତ୍ୱାଂ ପୃଚ୍ଛତି ।
ଶେଷ—ଅର୍ଯ୍ୟ ଚାରୁଦତ୍ତ, ସତ୍ୟମଭିଧୀୟତାମ୍ ।
'ଇଦାନୀଂ ସୁକୁମାରେଽସ୍ମିନ୍
ନିଃଶଙ୍କଂ କର୍କଶାଃ କଶାଃ ।

ତବ ଗାତ୍ରେ ପତିଷ୍ୟନ୍ତି
ସହାସ୍ମାକଂ ମନୋରଥୈଃ ।

ଅଭିଯୁକ୍ତ ଦୋଷ ମୁଖରେ ସ୍ୱୀକାର ନ କରିବାଯାଏ ଚାରୁଦତ୍ତଙ୍କର ପ୍ରାଣଦଣ୍ଡାଜ୍ଞା ହୋଇ ନ ଥିଲା । କୌଣସି କୌଣସି ସ୍ଥଳରେ ବିନା ପ୍ରମାଣରେ ବିଷ ଅଗ୍ନି ପ୍ରଭୃତି ଦ୍ୱାରା ଶପଥ ଗୃହୀତ ହେଉଥିଲା । ଯଥା—'ବିଷସଲିଲତୁଲାଗ୍ନି ପ୍ରାର୍ଥିତେ ମେ ଶରୀରେ କ୍ରକଚ ମିହ ଶରୀରେ ସାକ୍ଷ୍ୟ ଦାତବ୍ୟ ମଦ୍ୟ' । *

ଦ୍ୱିତୀୟ, ବଧସ୍ଥାନର ଦୃଶ୍ୟ—ଅଦୂରରେ ଶ୍ମଶାନ । ସମସ୍ତ ନଗରବାସୀ ନରପଶୁ ଭଦ୍ର ଚାରୁଦତ୍ତଙ୍କ ପ୍ରାଣଦଣ୍ଡାଜ୍ଞା ଶ୍ରବଣରେ ଶୋକାର୍ତ୍ତ ଏବଂ କାତର । ନିବଡ଼ ଜନତାଦ୍ୱାରା ରାଜମାର୍ଗ ରୁଦ୍ଧ । ବନ୍ଧୁଗଣ ବସ୍ତ୍ରାଂଶରେ ମୁଖାଚ୍ଛାଦନପୂର୍ବକ ସ୍ତମ୍ଭୀଭୂତ ଏବଂ ଚକିତ—ନଗରବାସିନୀ ରମଣୀଗଣ ଅଶ୍ରୁବିସର୍ଜନପୂର୍ବକ ରୋରୁଦ୍ୟମାନା—ପ୍ରାସାଦର ଉପରିଭାଗ ଶୋକାକୁଳ ଦର୍ଶକମାନଙ୍କଦ୍ୱାରା ପରିପୂର୍ଣ୍ଣ । ଏଠାରୁ ଦୁଇ ଜଣ ଚଣ୍ଡାଳ ପଟହ ବାଦ୍ୟସହ ଜନତା ଭେଦ କରି, ବଧସ୍ଥାନ ଅଭିମୁଖରେ ଯାତ୍ରା କଲେ । ମଧ୍ୟରେ ବଧାର୍ଥ ରକ୍ତଚନ୍ଦନଚର୍ଚ୍ଚିତ ପୁଷ୍ପମାଳାବିଭୂଷିତ ଅବନତମୁଖ ଚାରୁଦତ୍ତ । ଯାହାକାଳରେ ଚାରୁଦତ୍ତ କହି ପାରୁଥିଲେ ଯେ,—'ନୟନସଲିଲସିକ୍ତଂ ପାଂଶୁରୂକ୍ଷୀକୃତାଙ୍ଗଂ । ପିତୃବନସୁମନୋଭିର୍ବେଷ୍ଟିତଂ ମେ ଶରୀରମ୍ । ବିରସମିହ ରଟନ୍ତୋ ରକ୍ତଗନ୍ଧାନୁଲିପ୍ତଂ । ବଲମିବ ପରିଭୋକ୍ତୁଂ ବାୟସାସ୍ତର୍କୟନ୍ତି । * * * ସର୍ବଗାତ୍ରେଷୁ ବିନ୍ୟସ୍ତୈ ରକ୍ତଚନ୍ଦନହସ୍ତକୈଃ । ପିଷ୍ଟଚୂର୍ଣ୍ଣାବକୀର୍ଣ୍ଣଶ୍ଚ ପୁରୁଷୋଽହଂ ପଶୂକୃତଃ ।' ଉକ୍ତସ୍ଥଳର ବର୍ଣ୍ଣନା ପଢ଼ିଲେ ସେମାଞ୍ଚ ନ ହେବ କାହାର ? କିନ୍ତୁ ମହାତ୍ମା ଚାରୁଦତ୍ତଙ୍କର ମୃତ୍ୟୁକୁ ଡର ନ ଥିଲା; ଡର କେବଳ ସମ୍ମାନହାନ ବା କୀର୍ତ୍ତିଲୋପକୁ

* ତୁଲାଗ୍ନ୍ୟାପୋବିଷଂ କୋଷୋ ଦିବ୍ୟାନୀହ ବିଶୁଦ୍ଧୟେ ।
ମହାଭିଯୋଗେଷ୍ୱେତାନ ଶୀର୍ଷକସ୍ଥେଽପି ଯୋଜୟେ । (ଯାଜ୍ଞବଲ୍କ୍ୟ)

—'ନ ଭୀତୋ ମରଣାଦସ୍ମି କେବଳଂ ଦୂଷିତଂ ଯଶଃ । ବିଶୁଦ୍ଧସ୍ୟ ହି ମେ ମୃତ୍ୟୁଃ ପୁତ୍ରଜନ୍ମସମୋ ଭବେତ୍ ।' ବହୁବାର ଘୋଷଣା (ନାଗରା ଦେଇ) କରି ଯେତେବେଳେ ବଧସ୍ଥାନରେ ଚଣ୍ଡାଳମାନେ ବେଳାତିକ୍ରମ ଦେଖି ବିଳମ୍ବ ନ କରିବାକୁ କହିଲେ, ସେତେବେଳେ ପିତୃବତ୍ସଳ ପୁତ୍ର ପିତାଙ୍କ ଲାଗି ନିଜ ପ୍ରାଣ ଦେବାକୁ ଆଗରେ ଠିଆ ହେଲା । ରାଜାଙ୍କ ନିଷ୍ଠୁରାଜ୍ଞା ପୁନର୍ଘୋଷିତ ହେବାରୁ ଚଣ୍ଡାଳମାନେ ଭୀତ ହୋଇ ଚାରୁଦତ୍ତଙ୍କୁ ଶୂଳାରୋପିତ କରିବାକୁ ଚେଷ୍ଟା କରୁଅଛନ୍ତି, ଏମନ୍ତ ସମୟରେ ନଗରମଧ୍ୟରେ ମହା ଗହଳ ପଡ଼ିଗଲା । ଶୁଣୁଁ ଶୁଣୁଁ ଜଣେ ସନ୍ନ୍ୟାସୀ କୌଣସି ରମଣୀ ସହିତ ଦୂରରୁ ଅତିବେଗରେ ଜନତା ଭେଦପୂର୍ବକ ଉଚ୍ଚୈଃସ୍ୱରରେ ଚିତ୍କାର କରି ବଧ-ସ୍ଥାନରେ ପହଞ୍ଚିଲେ; ଏହି ରମଣୀ ଚାରୁଦତ୍ତଙ୍କ ଗୁଣାନୁରାଗିଣୀ ବସନ୍ତସେନା । ଏଣେ ଚାରୁଦତ୍ତଙ୍କ ଧର୍ମପତ୍ନୀ ଧୂତା ସ୍ୱାମୀଙ୍କର ମୃତ୍ୟୁ ସୁନିଶ୍ଚିତ ଜାଣି ମହାଚିତାନଳର ଆୟୋଜନପୂର୍ବକ ସେଥିରେ ପ୍ରବେଶ କରିବାକୁ ଉଦ୍ୟତା, ସ୍ନେହର ଶିଶୁ ଅଞ୍ଚଳ ଧରି ରୋରୁଦ୍ୟମାନ—ଇତ୍ୟାଦି ଇତ୍ୟାଦି ।

ପରିଣାମଫଳ—ସତ୍ୟର ଜୟ । ଚାରୁଦତ୍ତଙ୍କ ଦଣ୍ଡାଜ୍ଞା ନିରୁଦ୍ଧ ହେଲା ଏବଂ ସଙ୍ଗେ ସଙ୍ଗେ ପ୍ରକୃତ ଦୋଷୀ ଶକାର ଦୃଢ଼ବଦ୍ଧ ହେଲା । ଦତ୍ତ, ପ୍ରାଣାଧିକା ବସନ୍ତସେନାସହ କ୍ଷିପ୍ରଗତିରେ ଚିତାନଳ ପାଖରେ ଉପସ୍ଥିତ ହୋଇ ଧର୍ମପତ୍ନୀଙ୍କ ଉଦ୍ଧାର କଲେ ଏବଂ ସ୍ୱଜନ ଓ ବନ୍ଧୁମାନଙ୍କ ସହ ମିଳିତ ହେଲେ; ମୁହୂର୍ତ୍ତକ ମଧ୍ୟରେ ନଗର ଆନନ୍ଦରେ ନାଚି ଉଠିଲା । ଏହି ସମୟରେ ଚାରୁଦତ୍ତଙ୍କ ଜଣେ ମିତ୍ରଦ୍ୱାରା ଅତ୍ୟାଚାରୀ ରାଜା ନିହତ ହୋଇଥିବାର ସମ୍ବାଦ ଆସିଲା; ଦତ୍ତ ଏଣିକି ନଗରର ସର୍ବେସର୍ବା ହେଲେ । ତାଙ୍କ ଆଦେଶରେ ଉକ୍ତ ରାଜହନ୍ତା ଯୋଦ୍ଧା ରାଜ୍ୟର ଅଧିପତି ହେଲେ । ଶଂସିତ ବୌଦ୍ଧଯତି ସମସ୍ତ ବୌଦ୍ଧମଠର କୁଳପତି ପଦରେ ନିଯୁକ୍ତ ହେଲେ । ଅନ୍ୟାନ୍ୟ ବନ୍ଧୁ ଓ ଆଶ୍ରିତମାନେ ମଧ୍ୟ ଉପଯୁକ୍ତ ଅଧିକାର ପ୍ରାପ୍ତ ହେଲେ । ପରମଶତ୍ରୁ ଶକାର ପଶ୍ଚାତ୍ ଶରଣାଗତ ହେବାରୁ ତାହାକୁ ମୁକ୍ତି ଦିଆଗଲା ।

ପାଠକବୃନ୍ଦ, ଉପରେ କେତୋଟି ପ୍ରଧାନଚିତ୍ର କଳ୍ପିତ ହେଲା । ଏହିପରି ଆଉ କେତେଗୁଡ଼ାଏ ଚରିତ୍ରବର୍ଗଙ୍କ ଯବନିକାପଟ ଖଚିତ ଅଛି । ବର୍ଣ୍ଣନା ପଢ଼ିଲେ ସମସ୍ତେ ଅନୁମାନ କରି ପାରିବେ ଯେ ତାହା ଉନ୍ନତ ଯୁଗର କଥା । ଇତିହାସ ଆଡ଼କୁ ଦୃଷ୍ଟି ପକାଇଲେ ମନେ ହୁଏ, ତାହା ଗ୍ରୀକ୍ ସଭ୍ୟତାର ଆଭାସ । କବି ପୁସ୍ତକଟିରେ ଯେପରି ରଚନାଚାତୁରୀ ଦେଖାଇଅଛନ୍ତି, ସେଥିରେ କି ସାଧାରଣ କି ଅସାଧାରଣ ସମସ୍ତେ ଉଣା ଅଧିକରେ ମୁଗ୍ଧ ହେବେ, ଏଥିରେ ସନ୍ଦେହ ନାହିଁ । କବି ସ୍ତ୍ରୀ ପୁରୁଷ ଉଭୟ ଚରିତ୍ରର ଉତ୍କର୍ଷ ଓ ଅପକର୍ଷକୁ ସାମାଜିକ ଅବସ୍ଥାସହ ଉତ୍ତମରୂପେ ଚିତ୍ରିଅଛନ୍ତି । ପରୋପକାରବ୍ରତ ବିଷୟରେ ବୌଦ୍ଧଯତିଙ୍କୁ ଉଚ୍ଚାସନ ପ୍ରଦତ୍ତ ହୋଇଅଛି । ମୃଚ୍ଛକଟିକର ବହୁ ସ୍ଥାନରେ ଭାବ ସରସ ଓ ଭାଷା ସରଳ । ଏହାର ଅନ୍ତର୍ଗତ ପ୍ରାକୃତର କେତେକ ଅଂଶ ଶାକରୀ ଭାଷା । ମୃଚ୍ଛକଟିକ-ପ୍ରାକୃତ ସଙ୍ଗେ ଆମ୍ଭମାନଙ୍କ ଦେଶୀ ଭାଷାର ବେଶ ସାମଞ୍ଜସ୍ୟ ଅଛି । କେତେକ ସ୍ଥାନର ବର୍ଣ୍ଣନା ପଢ଼ିଲେ ମନେ ହୁଏ, ଉକ୍ତ ଯୁଗରେ ବିଭିନ୍ନପ୍ରକାର ପ୍ରାକୃତ ପ୍ରଚଳିତ ଥିଲା । ଲୋକେ ସାହଚର୍ଯ୍ୟ ଭୟରେ ସ୍ୱ ସ୍ୱ କଥିତ ଭାଷାକୁ ଅବିମିଶ୍ର ରଖିବାକୁ ଚେଷ୍ଟା କରୁଥିଲେ । ଗୋଟିଏ ସ୍ଥାନରେ ପ୍ରହରୀର କର୍ତ୍ତବ୍ୟସ୍ୱରୂପ ଲେଖାଅଛି—'ବାଗ୍ ଦେଶଭାଷାନ୍ତରେ' ଅର୍ଥାତ୍ ଅନ୍ୟାନ୍ୟ ଦେଶ-ଭାଷା ମଧ୍ୟରୁ ସ୍ୱୀୟ ଭାଷାକୁ ରକ୍ଷା କରିବା । ମୃଚ୍ଛକଟିକର ରଚନା ନାନା ଅଳଙ୍କାରରେ ଅଳଙ୍କୃତ । ପ୍ରତ୍ୟେକ ଉପମାରୁ କବିଙ୍କ ଭାବୁକତାର ଅତି ସୁନ୍ଦର ପରିଚୟ ମିଳେ । ନିମ୍ନୋଦ୍ଧୃତ କେତୋଟି ଉପମାରୁ ପାଠକମାନେ ତାହାଙ୍କ ଭାବୁକତାର କିଞ୍ଚିତ୍ ଆଭାସ ପାଇବେ । ଯଥା,—

ଉଦୟତି ହି ଶଶାଙ୍କଃ କାମିନୀଗଣ୍ଡପାଣ୍ଡୁଃ
ଗ୍ରହଗଣ-ପରିବାରୋ ରାଜମାର୍ଗ-ପ୍ରଦୀପଃ ।
ତିମିରନିକରମଧ୍ୟେ ରଶ୍ମୟୋ ଯସ୍ୟ ଗୌରାଃ
ସ୍ରୁତଜଳ ଇବ ପଙ୍କେ କ୍ଷୀରଧାରାଃ ପତନ୍ତି ।
ଦତ୍ତକରବୀରଦାମା ଗୃହୀତ ଅବାଭ୍ୟାଂ
ବଧପୁରୁଷାଭ୍ୟାଂ ।
ଦୀପଇବ ମନ୍ଦସ୍ନେହଃ ସ୍ତୋକଂ ସ୍ତୋକଂ କ୍ଷୟଂ ଯାତି ।
ଏତତ୍ ଦହତି ଯତ୍ର ଗୃହମସ୍ମଦୀୟମ୍
କ୍ଷୀଣାର୍ଥମିତ୍ୟତଥ୍ୟଃ ପରିବର୍ଜ୍ଜୟନ୍ତି ।
ସଂଶ୍ଳିଷ୍ଟ-ସାନ୍ଦ୍ରମଦଲେଖମପି ଭ୍ରମନ୍ତଃ
କାଲାତ୍ୟୟେ ମଧୁକରାଃ କରିଣଃ କପୋଲମ୍ ।

ଆଉ ସବୁ କଥା ଠେଣିକି ଥାଉ, କବି ଖଣ୍ଡେ ସାମାନ୍ୟ ଜାଲି ଗୃହର ଏବଂ ବର୍ଷାଧାରାକୁ କିପରି ଭାବରେ ବର୍ଣ୍ଣିଅଛନ୍ତି ଦେଖନ୍ତୁ;—'ଅୟଂ ପଟଃ ସୂତ୍ରଦରିଦ୍ରତାଂ ଗତଃ, ହ୍ୟୟଂ ପଟଃ ଛିଦ୍ରଶତୈରଲଙ୍କୃତଃ । ଅୟଂ ପଟଃ ପ୍ରାବରିତୁଂ ନ ଶକ୍ୟତେ, ହ୍ୟୟଂ ପଟଃ ସଂବୃତ ଏବ ଶୋଭତେ ।' 'ତାଳୀଷୁ ତାରଂ ବିଟପେଷୁ ମନ୍ଦ୍ରଂ ଶିଳାସୁ ରୂକ୍ଷଂ ସଲିଲେଷୁ ଚଣ୍ଡଂ । ସଙ୍ଗୀତବୀଣା ଇବ ତାଡ୍ୟମାନା ସ୍ତାଳାନୁସାରେଣ ପତନ୍ତି ଧାରାଃ ।—୫ମ

କବିଙ୍କର ରଚନାପାଟବ ଯେଉଁପରି ପ୍ରଶଂସନୀୟ, ସେହିପରି ଗୋଟିଏ ଦୁଇଟି ସ୍ଥାନର ଅତିରଞ୍ଜନ ପ୍ରହସନୀୟ ଓ କୌତୁକଜନକ । ଚାରୁଦତ୍ତଙ୍କ ଶ୍ମଶାନଯାତ୍ରା ସ୍ଥଳରେ କବି ଯାହା ପ୍ରକାଶ କରିଅଛନ୍ତି, ତାହା ଏହି:—'ନ ଗର୍ଜ୍ଜତ୍ୟନ୍ତରିକ୍ଷଂ ନୈବାନଭ୍ରଂ ପତତି ବଜ୍ରଂ । ମହିଳାସମୂହମେଘାନ୍ନିପତତି ନୟନାମ୍ବୁ ଧାରାଭିଃ'-୧୦ମ । 'ବଧ୍ୟେ ନୀୟମାନେ ଜନସ୍ୟ ସର୍ବସ୍ୟ ରୁଦତଃ । ନୟନସଲିଲସିକ୍ତୋ ରଥ୍ୟାତୋ ନୋନ୍ନମତି ରେଣୁଃ ।' ଆମ୍ଭମାନଙ୍କର ଭଞ୍ଜ କବି ମଧ୍ୟ ଠାଏ ଏହିପରି ଲେଖିଅଛନ୍ତି:—'ଅତି କାତରେ ଉନ୍ନତ ରୋଦନ ସ୍ୱରେ ସହଚରମାନଙ୍କୁ ଡହିଁ କଲେ । ଅଶ୍ରୁରେ ପଙ୍କିଳ ହେବାର ଦେଖି କାଳହେ କୃପିକଉଣେ ଉତ୍ସାହୀ ହେଲେ'—ଲାବଣ୍ୟବତୀ । କାବ୍ୟଟିର ସରସ ବର୍ଣ୍ଣନାଗୁଡ଼ିକ ଦେଖାଇବାକୁ ଗଲେ ଅଣ୍ଟୁବାଡ଼ରେ ପଶିଲା ପରି ହେବ । ଅତଏବ ଏଠାରେ ସେ ଉଦ୍ୟମରୁ କ୍ଷାନ୍ତ ହେବାକୁ ପଡ଼ିଲା ।

ଉପସଂହାର ସ୍ଥଳରେ ବକ୍ତବ୍ୟ ଏହି ଯେ, ମୃଚ୍ଛକଟିର ଓଡ଼ିଆନୁବାଦ ହେବା ବାଞ୍ଛନୀୟ । ଏହା ଅବଶ୍ୟ ନିଷ୍କାରଣ ବାଞ୍ଛା ନୁହେ, ଏଥିରେ ଅନେକ ଶିକ୍ଷା ଅଛି । ଦୃଶ୍ୟଗୁଡ଼ିକ ମଧ୍ୟ ଆଧୁନିକ ରୁଚିର ଅନୁକୂଳ ଏବଂ ତାହା ଦୁରଭିନେୟ ନୁହେ । ଅଭିନେତାମାନେ ଅକ୍ଲେଶରେ ଏହି ନାଟକର ଅଭିନୟ ସମ୍ପାଦନ କରି ପାରିବେ ଏବଂ ସେଥିରେ ଶିକ୍ଷିତ ଅଶିକ୍ଷିତ ଉଭୟ ଶ୍ରେଣୀର ଲୋକେ ଆନନ୍ଦଲାଭ କରିବେ, ଏହା ମୋହର କ୍ଷୁଦ୍ର ବୁଦ୍ଧିର ଧାରଣା । ଅନୁବାଦ କାଳରେ ନାଟକର କେତେକ ଅଂଶ ସଂସ୍କାରପୂର୍ବକ ଲେଖିବାକୁ ହେବ ଏବଂ ସ୍ଥାନେ ସ୍ଥାନେ ପ୍ରାଚୀନ ଧରଣ କଥୁ ପରିବର୍ତ୍ତନ କରିବାକୁ ହେବ । କିନ୍ତୁ ଏଥିର ଭାଷା ସରଳ ହେଲେହେଁ ଅନୁବାଦ ସହଜ ନୁହେ, ଏଥିପାଇଁ ଯଥେଷ୍ଟ ଶକ୍ତି ଓ ଶ୍ରମ ଆବଶ୍ୟକ । କାରଣ ସେଥିର ଭାଷା ଓ ଭାବ ଅବିକଳ ବୈଦିକ ଏବଂ ଲୌକିକ । କୌଣସି ଶକ୍ତିମାନ୍ ଲେଖକଙ୍କ ଦ୍ୱାରା ନାଟକ ଖଣ୍ଡିକ ଅନୂଦିତ ହୋଇ ପାରିଲେ, ଉତ୍କଳସାହିତ୍ୟ-ଭଣ୍ଡାରରେ ଖଣ୍ଡେ ଉପାଦେୟ ପୁସ୍ତକ ରହିଯାନ୍ତା । ସେଥିଲାଗି ଲେଖକଙ୍କୁ ଉତ୍ସାହ ପ୍ରଦାନ ସର୍ବାଦୌ ଆବଶ୍ୟକ ।

ଶ୍ରୀ ମୃତ୍ୟୁଞ୍ଜୟ ରଥ ।

—:o✻o:—

## ଓଡ଼ିଆ ବିଭକ୍ତି ।

—:o:—

କେବଳ ଶବ୍ଦଗତ ସାଦୃଶ୍ୟ ଦେଖି କେହି କେହି କହନ୍ତି, ଓଡ଼ିଆ ଭାଷା ସଂସ୍କୃତରୁ ଜାତ । ଆଉ କେତେକ କୃତବିଦ୍ୟ ବ୍ୟକ୍ତିଙ୍କର ଧାରଣା ଏହି ଯେ ଓଡ଼ିଆ ଭାଷାର ଆଦି କେବଳ ପ୍ରାକୃତ । ଏ ବିଷୟ ଯେନ ହଠାତ୍ କୌଣସି ସିଦ୍ଧାନ୍ତରେ ଉପନୀତ ହେବା ନିରାପଦ ନୁହେ । ବ୍ୟାକରଣ ଭାଷାର ମେରୁଦଣ୍ଡ । କୌଣସି ଭାଷାର ଆଦି ନିର୍ଦ୍ଦେଶ କରିବା ପୂର୍ବରୁ ସେହି ଭାଷାର ବ୍ୟାକରଣ ପ୍ରତ୍ୟୟ ସବୁ ଉଦ୍ଘାଟନ କରି ଦେଖିବା ଆବଶ୍ୟକ । ଏହି ଉଦ୍ଦେଶରେ ଓଡ଼ିଆ ବିଭକ୍ତି ପ୍ରତ୍ୟୟ-ମାନଙ୍କର ଯତ୍ସାମାନ୍ୟ ବିବରଣ ଆଜି ଏଠାରେ ଦିଆଗଲା । କ୍ରମଶଃ ଅନ୍ୟାନ୍ୟ ପ୍ରତ୍ୟୟମାନଙ୍କ ଇତିହାସ ଲେଖିବାର ବାସନା ରହିଲା ।

ଓଡ଼ିଆ ପ୍ରଥମା ବିଭକ୍ତି ପ୍ରାକୃତ ପ୍ରଥମା ପରି ଅନୁସ୍ୱାର-ବିସର୍ଗ-ବର୍ଜିତ, ଯଥାଃ—ରାମ ପାଠ ପଢ଼ୁଅଛି ।

ଖୀରପାଥ ଣାଗରାଜ କଣ୍ଠ ଭୂଷଣନ୍ତୁଓ—
ପିଙ୍ଗଳ ।

ସାଧାରଣତଃ ଓଡ଼ିଆ ଦ୍ୱିତୀୟା ବିଭକ୍ତିରେ କୌଣସି ଚିହ୍ନ ସଂଯୁକ୍ତ ହୁଏ ନାହିଁ; ଯଥାଃ—ମୁଁ ବନରେ ବାଘ ଦେଖିଲି, ଗୋବିନ୍ଦ ବ୍ୟାକରଣ ପଢ଼ୁଅଛି, ସେ ଦାନ ଦେଲା । ପ୍ରାକୃତରେ ମଧ୍ୟ ଏହିପରି ଅନେକଠାରେ ଦେଖାଯାଏ:—

ମୁହ ଦେ ମହ ସୋହବଣାସମଣା ରମଣା—
ପିଙ୍ଗଳ ।

ଜେ କର ପରନ୍ଦଅଥର ହସନ୍ତୁଓ—ପିଙ୍ଗଳ ।

(ଅପଭ୍ରଂଶେ ଅମଙ୍କଶଶସିଧ୍ୟେତେଷାଂ
ଲୋପୋ ଭବତି—ହେମଚନ୍ଦ୍ର
ଲୁକ୍ ପ୍ରଥମାଦ୍ୱିତୀୟୟୋଃ—ଜୁମରବ୍ୟାକରଣ—
ପ୍ରାକୃତପାଦ)

ଓଡ଼ିଆରେ ପ୍ରାଣୀବାଚକ ସଂଜ୍ଞାଶବ୍ଦ ଓ ସର୍ବ-ନାମ ଶବ୍ଦର ଉତ୍ତର କର୍ମକାରକରେ 'କ' ବା 'କୁ' ନିତ୍ୟରେ ଯୁକ୍ତ ହୋଇଥାଏ, ଯଥାଃ—ସେ-ମାନେ ଗୋବିନ୍ଦକୁ କହିଲେ, ମୁଁ ତାହାକୁ ମାଗି ଅଛି । ଏହି 'କ' ବା 'କୁ' କିପରି ଆସିଲା, ନିରୂପଣ କରିବା କଷ୍ଟସାଧ୍ୟ । ଓଡ଼ିଆରେ ଏହି 'କ' ଓ 'କୁ' ଯେପରି ବ୍ୟବହୃତ ହୁଏ, ତେଲଙ୍ଗାରେ ମଧ୍ୟ କୌଣସି କୌଣସିଠାରେ ସେହିପରି ବ୍ୟବହୃତ ହୋଇଥାଏ । ଏହି ସାମଞ୍ଜସ୍ୟ ଦେଖି କେହି କେହି କହନ୍ତି, ଓଡ଼ିଆ 'କ' ଓ 'କୁ' ତେଲଙ୍ଗା ଭାଷାର ଅବିକଳ ଅନୁକରଣ । ଏପରି ଅନୁମାନ କରିବା କେତେ ଅସଙ୍ଗତ ବୋଧ ହୁଏ ନାହିଁ; କିନ୍ତୁ ଏଥିକି ଆପତ୍ତିଃ ଓଡ଼ିଆର 'କ' ଓ 'କୁ' କର୍ମ ଓ ସମ୍ପ୍ରଦାନ କାରକର ଚିହ୍ନ; ତେଲଙ୍ଗାର 'କି' ଓ 'କୁ' କେବଳ ଷଷ୍ଠୀ ବିଭକ୍ତିରେ ପ୍ରଯୋଗ ହୁଏ । କୌଣସି କୌଣସି ତେଲଙ୍ଗା ବୈୟାକରଣମାନେ ଏହି 'କ' ଓ 'କୁ' ପ୍ରତ୍ୟୟକୁ 'ତୁଡୁକଷଷ୍ଠୀ' ବୋଲି କହନ୍ତି; ଅର୍ଥାତ୍ ଏହା ପ୍ରକୃତ ତେଲଙ୍ଗା ପ୍ରତ୍ୟୟ-ରୂପେ ଗ୍ରହଣ କରନ୍ତି ନାହିଁ । ଦ୍ୱିତୀୟତଃ ପ୍ରାଚୀନ ତେଲଙ୍ଗାମାନଙ୍କ ସହିତ ପ୍ରାଚୀନ ଓଡ଼ିଆମାନଙ୍କର କେବେ ହେଲେ ସମ୍ବନ୍ଧ ଥିଲାପରି କୌଣସି ଐତିହାସିକ ପ୍ରମାଣ ମିଳେ ନାହିଁ । ବୀମସ୍ ସାହେବ କହନ୍ତି, ସଂସ୍କୃତ 'କକ୍ଷ' ଶବ୍ଦ ହିନ୍ଦିରେ 'କୋ' ଆକାର ଧାରଣ କରି ଓଡ଼ିଆରେ 'କୁ' ହୋଇଅଛି । ନିମ୍ନଶ୍ରେଣୀର ହିନ୍ଦୀ ଲୋକେ ମଧ୍ୟ 'କୋ' ପରିବର୍ତ୍ତରେ 'କୁ' ଉଚ୍ଚାରଣ କରିଥାନ୍ତି ।

ବଳରାମ ଦାସଙ୍କ ରାମାୟଣରେ ଓ ଅନ୍ୟାନ୍ୟ ପ୍ରାଚୀନ ପୁସ୍ତକାଦିରେ କର୍ମକାରକରେ 'କଇ' ପ୍ରତ୍ୟୟ ପ୍ରୟୋଗ ହେବାର ଦେଖାଯାଏ; ଯଥାଃ—

ଅବଶ୍ୟ ପଣ୍ଡିତେ ଏ ପୁତ୍ରକଇ ଦେଖି ।
ବୋଲିବେ କାହିଁ ପାଇଲୁ ଏ ପୁତ୍ର ଗୋଟିକ ।—
ରାମାୟଣ

ଲକ୍ଷ୍ମଣଙ୍କର ଏହି ପ୍ରକାରେ ବିଦ୍ୟା କହି ।
ତୁମ୍ଭ ସଙ୍ଗତେ ଦୂର ଗଲୁଁ ପଥ ବାହି ।—

ରାମାୟଣ

ଏହି 'କର' ପ୍ରତ୍ୟୟ ସଂସ୍କୃତ କୃତ ଶବ୍ଦରୁ ଉତ୍ପନ୍ନ ହୋଇ ଓଡ଼ିଆରେ 'କ' ଆକାର ଧାରଣ କରି 'କ' କାଳକ୍ରମେ 'କୁ' ହୋଇ ଥିବାର ଅନୁମାନ ହୁଏ । 'ଇ'ଠାରେ 'ଉ' ହେବାର ଅନେକଠାରେ ଦେଖାଯାଏ, ଯଥା:---ଗୈରିକ, ଗେରୁ; କୁଟ୍ଟିନୀ, କୁଟୁଣୀ; ତିଂତିଡ଼ୀ, ତେନ୍ତୁଳୀ ଇତ୍ୟାଦି । ଓଡ଼ିଆରେ ନିମିତ୍ତାର୍ଥରେ ଅନେକଠାରେ 'କୁ' ବ୍ୟବହୃତ ହୋଇଥାଏ ଯଥା:—ଖାଇବାକୁ ଭାତ ନାହିଁ; ଯିବାକୁ ବାଟ ନାହିଁ । ଏହି 'କୁ' ସଂସ୍କୃତ ସପ୍ତମୀ ବିଭକ୍ତି ପ୍ରତ୍ୟୟ 'କୃତେ'ରୁ ଆସିଅଛି । ଏହି କୃତେ ସଂସ୍କୃତରେ ନିମିତ୍ତାର୍ଥରେ, ପ୍ରୟୋଗ ହେବାର କୌଣସି କୌଣସିଠାରେ ଦେଖାଯାଏ, ଯଥା:—

ବାଲଶୋବତ କାମାତ୍ମା ରାଜା ଦଶରଥୋ ଭୃଶଂ ।
ପ୍ରସ୍ଥାପୟାମାସ ବନଂ ସ୍ତ୍ରୀକୃତେ ଯଃ ପ୍ରିୟଂ ସୁତଂ ।

—ରାମାୟଣ

ଓଡ଼ିଆରେ ମଧ୍ୟ ଏପରି ଉଦାହରଣ ମିଳେ; ଯଥା:—

ବୃଷ୍ଣିବଂଶକୁ ଦେବ ତୁହି କଲୁ ରକ୍ଷା ।
ଧୃତରାଷ୍ଟ୍ରଙ୍କ ସନ୍ତାନକୃତେ କର ବାଞ୍ଛା—

ସାରଳାଭାରତ, ଆଦିପର୍ବ ।

କୌଣସି କୌଣସି ପ୍ରାଚୀନ ପଦ୍ୟ କାବ୍ୟରେ ଦ୍ୱିତୀୟା ବିଭକ୍ତିରେ 'ନ୍ତ' ବା 'ନ୍ତି' ବ୍ୟବହୃତ ହେବାର ଲକ୍ଷିତ ହୁଏ, ଯଥା:—

ପୁତ୍ରନ୍ତ କୋଳେ ନେଇ ବୋଇଲେ ମୁନିଶ୍ରେଷ୍ଠ ।
ଅସଜ୍ଜନ ପୁତ୍ର ତୋ ସମସ୍ତେ ମହାଦୁଷ୍ଟ ।—ଆଦିପର୍ବ
ବେଦପୁତ୍ରଙ୍କୁ ଘେନି ଅଇଲେ ସତ୍ୟବତୀ ।
ବ୍ୟାସଙ୍କର କୋଳେ ନେଇ ଦେଲେ ସେ ପୁତ୍ରନ୍ତ

—ଆଦିପର୍ବ

ଏହି 'ନ୍ତ' ସଂସ୍କୃତ ଦ୍ୱିତୀୟା ବିଭକ୍ତି ପ୍ରତ୍ୟୟ 'ଅନ୍' ରୁ ଉତ୍ପନ୍ନ । 'ଅନ୍'ଠାରେ 'ଅନ୍ତ' ହେବାର ଅନେକ ଶବ୍ଦରେ ଦେଖାଯାଏ, ଯଥା:—ହନୁମାନ୍, ହନୁମନ୍ତ । ସଂସ୍କୃତରେ ମଧ୍ୟ 'ଅନ୍' 'ଅନ୍ତ' ହେବାର କୌଣସି କୌଣସିଠାରେ ଦେଖାଯାଏ, ଯଥା:—ଭବାନ୍, ଭବନ୍ତୌ, ଭବନ୍ତଃ ।

ସର୍ବନାମ ପ୍ରଥମ ଓ ଦ୍ୱିତୀୟ ପୁରୁଷର ଦ୍ୱିତୀୟା ବିଭକ୍ତିରେ 'ତେ' ପ୍ରତ୍ୟୟ ବ୍ୟବହୃତ ହୋଇଥାଏ, ଯଥା:—ତୋତେ, ମୋତେ । ପ୍ରକୃତରେ ଏ ଦୁଇ ଶବ୍ଦ 'କୁ' ପ୍ରତ୍ୟୟ ସହିତ 'ତୁକୁ', 'ମୁକୁ' ହେବାର ଥିଲା । ସାରଳାଦାସଙ୍କ ମହାଭାରତରେ ଏପରି ବ୍ୟବହାର ଅନେକଠାରେ ଦେଖାଯାଏ, ଯଥା:—

କାହିଁ ବୋଇଲି ମୁନି ହେ ଛାଡ଼ିଦିଅ ମୁକୁ ।
ଲଜ୍ଜା କି ନ ପାଇଲି ଶୃଙ୍ଗାର ମାଗିବାକୁ—

ଆଦିପର୍ବ ।

ତଥିର ଅହେ ପାଣ୍ଡୁ ତୋହର ଖରଯାକୁ ।
ଗାନ୍ଧାରୀର ପୁଏ ଥିଲେ ରାଜ୍ୟ ନୁହେ ତୁକୁ ।

—ଆଦିପର୍ବ

କୌଣସି କୌଣସି ନିମ୍ନଶ୍ରେଣୀ ଲୋକମାନଙ୍କ ମୁଖରୁ ମଧ୍ୟ ଅଦ୍ୟାପି ଏହିପରି ପ୍ରୟୋଗ ଶୁଣାଯାଏ, କିନ୍ତୁ ଶିକ୍ଷିତ ଲୋକେ 'ତୁକୁ' ଓ 'ମୁକୁ' ଏକାବେଳକେ ପରିତ୍ୟାଗ କରି କେବଳ 'ତୋତେ' 'ମୋତେ' ବ୍ୟବହାର କରିଥାନ୍ତି । ବାମସ୍ ସାହେବ କହନ୍ତି, ଏହି 'ତୋତେ' ପ୍ରତ୍ୟୟ 'ତହିଁ'ରୁ ବାହାରିଅଛି; 'ମୋତହିଁ'ରୁ 'ମୋତହି'; 'ମୋତହି'ରୁ 'ମୋତେ' ସାଧନ କରିଅଛନ୍ତି । କିନ୍ତୁ ଏହା ତେତେ ସମୀଚୀନ ବୋଧ ହୁଏ ନାହିଁ । ଏ ଦୁଇ ଶବ୍ଦ ପ୍ରାକୃତ 'ତୁଜ୍‌ଝେ' 'ମୁଜ୍‌ଝେ'ର ଅପଭ୍ରଂଶ ପରି ପ୍ରତୀତ ହୁଏ । 'ଝ' ଠାରେ 'ଜ' ହେବାର ଅନେକଠାରେ ଲକ୍ଷିତ ହୁଏ, ଯଥା:—ଲୁର୍ଯ୍ୟାତି, ଲୁଜ୍ଝେ; ଭଣ୍ୟତେ, ଭଣିଜ୍ଜେ । ଏହି 'ଜେ' ଓଡ଼ିଆମାନଙ୍କ ତୁଣ୍ଡରେ ପଡ଼ି ପୁନର୍ବାର 'ତେ'ରେ ପରିଣତ ହୋଇ ଯାଇଥିବ; ନତୁବା 'ତୋତେ', 'ମୋତେ' ସଂସ୍କୃତ 'ତ୍ୱତ୍', 'ମତ୍'ରୁ ଅନୁଭୂତ ହୋଇଅଛି ।

ଓଡ଼ିଆ କରଣ କାରକର ପ୍ରତ୍ୟୟ ଏ, ରେ, ରେକରି । 'ଏ' ସଂସ୍କୃତ 'ଏନ' ପ୍ରତ୍ୟୟରୁ ଜାତ । ପ୍ରାକୃତରେ* ମଧ୍ୟ ଅନେକଠାରେ କରଣ କାରକରେ 'ଏ' ପ୍ରତ୍ୟୟ ପ୍ରୟୋଗ ହେବାର ଦେଖାଯାଏ, ଯଥା:—

ଆଇହ ଅକ୍ରେ ହାରେ ପୂକ୍ତେ ।
ମକ୍‌ଷେକ୍‌କଂଗକୋ ହାସ୍‌ଅକ୍ଷକୋ—ପିଙ୍ଗଳ
ପିଅସଗ୍ଗୀଏ କହେ—ବର୍ଣ୍ଣରମଞ୍ଜରୀ

ଓଡ଼ିଆରେ କୌଣସି କୌଣସିଠାରେ 'ଏଣ' ପ୍ରତ୍ୟୟ ମଧ୍ୟ ବ୍ୟବହୃତ ହୋଇଥାଏ, ଯଥା:—

କମଳଲୋଚନ ଶ୍ରୀହରି ।
କରେଣ ଶଙ୍ଖଚକ୍ରଧାରୀ ।

ପ୍ରାକୃତରେ† ମଧ୍ୟ 'ଏଣ' ପ୍ରତ୍ୟୟ ସ୍ଥାନେ ସ୍ଥାନେ ଦେଖାଯାଏ ଯଥା:—

ହାଉ ଏକକ୍ ଦକ୍ଷଣ୍ଣ ପୁସଦ ପାଅ ଦକ୍ଷଣ୍ଣ
ପୁସଳକ୍‌କଏଣ—ପିଙ୍ଗଳ

ଏହି ପ୍ରତ୍ୟୟ କେବଳ ପଦ୍ୟକାବ୍ୟରେ ଦେଖାଯାଏ । ତୃତୀୟା ବିଭକ୍ତିର ସର୍ବତ୍ର ବ୍ୟବହୃତ ପ୍ରତ୍ୟୟ କେବଳ 'ରେ' । ଏହା ସଂସ୍କୃତ 'କୃତେ'ରୁ ଉତ୍ପନ୍ନ । 'କୃତେ' କ୍ରମଶଃ 'କଅରେ', 'କରଏ', 'ଯଏ', ହୋଇ ପରିଶେଷରେ 'ରେ' ଆକାର ଧାରଣ କରିଅଛି । 'ରେକରି' ଏଥିରେ ଦୁଇଗୋଟି ପ୍ରତ୍ୟୟ ମିଶିଅଛି, ଯଥା:— 'ରେ'+'କରି' । ଏହି ଦୁଇ ପ୍ରତ୍ୟୟ ଯାକ 'କୃତେ'ରୁ ଜାତ । କେବଳ 'ରେ' ପ୍ରୟୋଗ କଲେ ଭେବେ ଦୃଢ଼ତା ପ୍ରତିପାଦିତ ହେବ ନାହିଁ ବୋଲି 'କରି' ମଧ୍ୟ ସଂଯୁକ୍ତ ହୋଇଥାଏ । ଏଥିରୁ ଜଣାଯାଏ, ଓଡ଼ିଆ 'ରେ' ସଂସ୍କୃତ 'କୃତେ'ରୁ ଆସିଅଛି । 'ଦେଇ' ପ୍ରତ୍ୟୟ ସଂସ୍କୃତ 'ଦ୍ୱାରା' ପ୍ରତ୍ୟୟରୁ ଜାତ ।

'କି' ଓ 'କୁ' ଛଡ଼ା ଚତୁର୍ଥୀ ବିଭକ୍ତିରେ ଅଭି କେତେଗୁଡ଼ିଏ ପ୍ରତ୍ୟୟ ବ୍ୟବହୃତ ହୋଇଥାଏ, ଯଥା;—'ଲାଗି', 'ପାଇଁ' ଇତ୍ୟାଦି । 'ଲାଗି' ପ୍ରାକୃତର ଅବିକଳ ଅନୁକରଣ, ଯଥା,—

କାଦେଲଗୀ କବ୍ବର ହୋଇଥସି ମୁକ୍‌ଣ୍ଟେ— ପିଙ୍ଗଳ । 'ପାଇଁ' ସଂସ୍କୃତ 'ପ୍ରାପ୍ତି' ଶବ୍ଦରୁ ଜାତ ।

ପଞ୍ଚମୀ ବିଭକ୍ତିରେ ଅନେକ ପ୍ରତ୍ୟୟ ଦେଖାଯାଏ, ଯଥା;—ରୁ, ଠାରୁ, ଥୁଁ, ଠୁଁ ବା ଠୁ, ଉ ବା ଉଁ, ହୁଁ ଇତ୍ୟାଦି । ଏଥିରୁ 'ରୁ' ପ୍ରତ୍ୟୟ ବହୁଳ ପରିମାଣରେ ବ୍ୟବହୃତ ହୋଇଥାଏ । ଏହା ପ୍ରାକୃତ ପଞ୍ଚମୀ ବିଭକ୍ତି ପ୍ରତ୍ୟୟ 'ଅହୁ'ରୁ ଜାତ । 'ଦ' ଠାରେ 'ର' ହେବାର ଅନେକଠାରେ ଦେଖାଯାଏ, ଯଥା;—ଦ୍ୱାଦଶ, ବାରହ; ଏକାଦଶ, ଏଗାରହ; ବଦଶ, ବଗବୋଲ । ନତୁବା ସଂସ୍କୃତ 'ଆତ୍' ପ୍ରାକୃତରେ 'ଅହୁ', ଓଡ଼ିଆରେ 'ଆତୁ' ଓ 'ତୁ' ଆକାର ଧାରଣ କରି 'ତୁ' 'ରୁ' ହୋଇଅଛି । 'ତ'ଠାରେ 'ର' ହେବାର ଅନେକଠାରେ ଲକ୍ଷିତ ହୁଏ, ଯଥା;--ବତା, ବଗ; କଡ଼ାଲ, କଗଡ଼; କଡ଼ାକ, କରରକ । ଓଡ଼ିଆ ପଞ୍ଚମୀ ବିଭକ୍ତିରେ କୌଣସି କୌଣସିଠାରେ 'ଅତୁ' ପ୍ରତ୍ୟୟ ମଧ୍ୟ ବ୍ୟବହୃତ ହୋଇଥାଏ, ଯଥା;—ସେ ଘରଅତୁ ଆସିଲା । 'ସ୍ଥାନ' ଶବ୍ଦ ସହିତ 'ରୁ' ମିଶି 'ଠାରୁ' ହୋଇଅଛି । 'ଥୁଁ' ଓ 'ଠୁଁ' ପ୍ରତ୍ୟୟ 'ଲକ୍ଷୁଁ'ରୁ ଉତ୍ପନ୍ନ । ପ୍ରାଚୀନ ପୁସ୍ତକମାନଙ୍କରେ 'ଲକ୍ଷୁଁ' ଶବ୍ଦ ପଞ୍ଚମୀ ବିଭକ୍ତିରେ ପ୍ରୟୋଗ ହେବାର ଅନେକଠାରେ ଦେଖାଯାଏ, ଯଥା;—

ଜାତ ଦଧିଁ କରି ନାଶ କର୍ପା କରୁ ପ୍ରାଣୀ ।
ତୋ ଲକ୍ଷୁଁ ବଳ୍ପ ଦେ ଅନ ଅଛୁ ପରମାଣି—
ସାରଳାଭାରତ—ଆଦିପର୍ବ

ବ୍ରହ୍ମାର ଲକ୍ଷୁଁ ଯେ ମରୀଚ ଋଷି ଜାତ ।
ମରୀଚର ପୁତ୍ର କଶ୍ୟପ ତପୋବନ୍ତ—ରାମାୟଣ ।

କୌଣସି କୌଣସିଠାରେ 'ତ' ଲୋପ ହୋଇ କେବଳ 'ହୁଁ' ପ୍ରୟୋଗ ହେବାର ଦେଖାଯାଏ, ଯଥା;—

* ୫୦ ଟୀ, ୨ ସୀ_ଏ—ପ୍ରାକୃତପାଦ † ଏଣଷ୍ଟା—ପ୍ରାକୃତପାଦ ।

ଅଜନ୍ହୁଁ ଏଥା ନ ଭେଦିବ ଗତି ।
ନ କରିବ ପୀଡ଼ା ଶୁଣ ହେ ସ୍ୱର୍ଗବାସୀ—ରାମାୟଣ
ବ୍ରହ୍ମା ବୋଇଲେ ଅଗନ୍ହୁଁ ଏଥା ମୁହିଁ ଜାଣି—
ରାମାୟଣ

ଏହି 'ହୁଁ' ପ୍ରାକୃତରୁ ଆସିଅଛି ଯଥା;—
ଭ୍ୟସୋ—ତୋହ୍ନୁଁ; ରୁକ୍ଖହ୍ନୁଁ ପଡ଼ଦୋ—
ପ୍ରାକୃତପାଦ

କୌଣସି କୌଣସିଠାରେ 'ତହୁଁ', 'ରୁଁ' ହୋଇ ବ୍ୟବହୃତ ହୋଇଥାଏ, ଯଥା;— 'ଆଗରୁଁ' । 'ଉଁ' ବା 'ଉ' ପ୍ରାକୃତ ପ୍ରତ୍ୟୟ 'ଅହୁ' ରୁ ଉତ୍ପନ୍ନ (ଆହୁ, ଆଉ, ଉ); ଏହି 'ଉ' ପଞ୍ଚମୀ ବିଭକ୍ତିର ପ୍ରତ୍ୟେକ ପ୍ରତ୍ୟୟରେ ଦେଖାଯାଏ ।

ଓଡ଼ିଆ ଷଷ୍ଠୀ ବିଭକ୍ତି ପ୍ରତ୍ୟୟ 'ର' ପ୍ରାକୃତ ଷଷ୍ଠୀ ବିଭକ୍ତି ପ୍ରତ୍ୟୟ 'କେର'ରୁ ଜାତ । 'କ' କାର ଲୋପ ହୋଇ 'ର' କାର ମାତ୍ର ଓଡ଼ିଆରେ ଦେଖାଯାଏ । ପ୍ରାକୃତରେ ମଧ୍ୟ ଏପରି ପ୍ରୟୋଗ ସ୍ଥାନେ ସ୍ଥାନେ ଲକ୍ଷିତ ହୁଏ, ଯଥା;—
ସୋହର ଘୋହର । ଫଂକଟ ଫଂହର—ପିଙ୍ଗଳ

ବହୁବଚନରେ 'ମାନ' ପ୍ରତ୍ୟୟ ହେଲେ, 'କେର' ଶବ୍ଦର ଆଦ୍ୟ 'କ' କାରର ଲୋପ ହୁଏ ନାହିଁ, ଯଥାଃ—ତୁମ୍ଭମାନଙ୍କର । ଓଡ଼ିଆରେ କୌଣସି କୌଣସିଠାରେ 'ର' ପରବର୍ତ୍ତୀରେ 'ତ' ପ୍ରୟୋଗ ହୋଇଥାଏ, ଯଥାଃ—ଆମ୍ଭତ, ତୁମ୍ଭତ । ପ୍ରାକୃତରେ ମଧ୍ୟ ଏପରି କୌଣସି କୌଣସିଠାରେ ଦେଖାଯାଏ, ଯଥାଃ—
ଅହଣ୍ଡିଅ ଖାଇ ବଣଂ ଭିଖାରି ଗଇ ଭବତ୍ତୀ
ଚଲ ତା ହମାରି—ପିଙ୍ଗଳ

ପଞ୍ଚମୀ ବିଭକ୍ତି ପ୍ରତ୍ୟୟ ସବୁ ଯେଉଁ ଶବ୍ଦମାନଙ୍କରୁ ଜାତ, ସପ୍ତମୀ ବିଭକ୍ତି ପ୍ରତ୍ୟୟ ସବୁ ସେହି ଶବ୍ଦମାନଙ୍କରୁ ଜାତ । ପ୍ରଭେଦ ଏତିକିଃ ପଞ୍ଚମୀ ବିଭକ୍ତିର ପ୍ରତ୍ୟୟ ସବୁ 'ଉ'କାରାନ୍ତ; ସପ୍ତମୀ ବିଭକ୍ତିର ପ୍ରତ୍ୟୟ ସବୁ 'ଏ'କାରାନ୍ତ ବା 'ଇ'କାରାନ୍ତ । ଏହି 'ଏ' ଓ 'ଇ' ଅନ୍ୟାନ୍ୟ ସପ୍ତମୀ ବିଭକ୍ତି ପ୍ରତ୍ୟୟମାନଙ୍କରେ ଲକ୍ଷିତ ହୁଏ, ଯଥାଃ—

| ପଞ୍ଚମୀ ବିଭକ୍ତି | ସପ୍ତମୀ ବିଭକ୍ତି |
|---|---|
| ରୁ | ରେ (ଅହ୍ର + ଏ, ଅହେ, ହେ, ରେ) (ଅତ୍ର + ଏ, ଅଦେ, ଦେ, ରେ) |
| ଠାରୁ | ଠାରେ (ସ୍ଥାନ + ରେ) |
| ଥୁଁ | ଥି (ସ୍ଥ + ହିଁ) ପ୍ରାକୃତାନୁଯାୟୀ* |
| ଠୁଁ | ଠିଁ (ସ୍ଥ + ହିଁ) ଏଜନ |
| ହୁଁ | ହିଁ (ପ୍ରାକୃତରୁ ଅନୁକୃତ)† |
| ଉ ବା ଉଁ | ଏ ବା ଇ (ପ୍ରାକୃତରୁ ଅନୁକୃତ) |
| ଅରୁ | ଅରେ (ଅତ୍ର + ଏ, ଅଦେ, ଅରେ) |

ପ୍ରାକୃତରେ ଓଡ଼ିଆ ସପ୍ତମୀ ବିଭକ୍ତିର କେତେଗୁଡ଼ିଏ ପ୍ରତ୍ୟୟ ଅବିକଳ ଦେଖାଯାଏ, ଯଥାଃ—

(ଇ) ଚଉମତ୍ତ କରହୁ ଗଣ ଗୁରୁ ଠାଇଁ ।
ଠବ ଅନ୍ତ ପଓହର ପାଇଁ ପାଇଁ ।—ପିଙ୍ଗଳ
ଅଟ୍ଠହାର ସତ୍ତ ସାର ଠାଇ ଠାଇ ଣିମ୍ମଲା ।
—ପିଙ୍ଗଳ

(ଏ) ଗୁଣା ଜସ୍ସ ସୁଦ୍ଧା ଦେହ ରୂପମୁଦ୍ଧା ।
ଘରେ ବତ୍ତ ଜଗ୍ଗା ମଗ୍ଗ ତସ୍ସ ସଗ୍ଗା ।—
ପିଙ୍ଗଳ

(ହି) ପାଣ୍ଡବବଂସହି ଜନ୍ମ ଧରିଜ୍ଜେ**—ପିଙ୍ଗଳ

(ହିଁ) ଲଗୋ ଜହିଁ
ମଗ୍ଗ ଦିଗ୍ଗ—ପିଙ୍ଗଳ

* ହିଁ ସପ୍ତମ୍ୟା—ପ୍ରାକୃତପାଦ ।

† କିଂ ଯତ୍ତଦ୍ଭ୍ୟାଂ ଙୀଙସ୍ୟ ସ୍ଥାନେ ହିଁ ବା ଭବତି—ପ୍ରାକୃତପାଦ ।

(ଖ) ଜାତ ଏଥି ଦଶନ୍ତର ଜାଣିହ କନ୍ତା ।
ଜଥ ମନ୍ମଥଣ ଛିଁ କ ଣ ଛିଁ କପନ୍ତା—
ପିଙ୍ଗଳ

ପଦ୍ୟକାବ୍ୟରେ କୌଣସି କୌଣସିଠାରେ ଅଧିକରଣ କାରକରେ 'ଏଣ' ପ୍ରତ୍ୟୟ ପ୍ରୟୋଗ ହେବାର ଦେଖାଯାଏ, ଯଥା:—

ଶୁଣି ପୁତ୍ରାଦି ଜନ ଜଣ
କହନ୍ତି ପିଅର ଅଗେଣ ।—ଦାର୍ଢ୍ୟତା

ଏହି 'ଏଣ' ପ୍ରାକୃତ 'ଏଣ'ର ଅନୁକରଣ ମାତ୍ର ।

ଉତ୍ତରେ କୌଣସି କୌଣସିଠାରେ ସପ୍ତମୀ ବିଭକ୍ତିରେ 'ଠେ' ପ୍ରତ୍ୟୟ ପ୍ରୟୋଗ ହୋଇଥାଏ, ଯଥା:—ଘରଠେ, ମୋଠେ ।

ପ୍ରାକୃତରେ ମଧ୍ୟ ଏହି ପ୍ରତ୍ୟୟ ପ୍ରୟୋଗ ହେବାର ଦେଖାଯାଏ:—

ସୁଙ୍କାଣେ ଣାଉ କଣ୍ଟ୍‌ଠାଣେ କଣ୍ଠଠେ
ସାରଟ୍‌ଠାଣେ—ପିଙ୍ଗଳ

ଏହା 'ଠି' ପ୍ରତ୍ୟୟର ଅପଭ୍ରଂଶ । 'ଇ' କାର ଠାରେ 'ଏ' କାର ହେବାର ଅନେକ ସ୍ଥଳରେ ଲକ୍ଷିତ ହୁଏ, ଯଥା:—ଇମନ, ଏମନ; କଭୁବା 'ଠାରେ' ପ୍ରତ୍ୟୟ 'ଠାଏ', 'ଠେ' ହୋଇଅଛି ।

ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ।



## ଉପନିଷତ୍‌ସଂଗ୍ରହ ।

### କୃଷ୍ଣଯଜୁର୍ବେଦୀୟ—ଶ୍ୱେତାଶ୍ୱତରୋପନିଷତ୍ ।

—:o:—

ବୋଲନ୍ତି ବ୍ରହ୍ମବାଦଗଣ,
ବ୍ରହ୍ମ ଅଟନ୍ତି କି କାରଣ ?
କାହୁଁ ଆସିଛୁଁ ଆମ୍ଭେମାନେ,
ପ୍ରଳୟେ ଯାଉଁ କେଉଁ ସ୍ଥାନେ ?
କିପରି ଜୀବନ ଧାରଣ
କରୁଅଛନ୍ତି ପ୍ରାଣିଗଣ ?
ସୁଖ ଓ ଦୁଃଖ ଏ ଉଭୟେ
ବ୍ୟବସ୍ଥା କରୁଁ ଏ ବିଷୟେ ।
ନିୟତି ସ୍ୱଭାବ କାଳକୁ,
ଯେତେ ଘଟନା ଅକସ୍ମିକ ।
ଭୂତ ସମ୍ବନ୍ଧେ ବା ପୁରୁଷେ,
କିପାଇଁ ଚିନ୍ତନ୍ତି ମନୁଷ୍ୟେ ?
ଜୀବ ଯେ ସୁଖଦୁଃଖାଧୀନ
ହୋଇଅଛନ୍ତି ଚିର ଦିନ ।
ଜୀବ ଭୁଞ୍ଜନ୍ତେ ଏ ସମସ୍ତ,
ସୃଷ୍ଟି କାର୍ଯ୍ୟରେ ଅସମର୍ଥ ।
କାଳ ଓ ଆତ୍ମା ସମ୍ମିଳିତ
ସ୍ଥାନେ ଯେ ଦେବ ଅବସ୍ଥିତ ।

ସେ ଦେବ ସକଳ ପ୍ରଧାନ ,
କର ତାହାଙ୍କୁ ହୃଦେ ଧ୍ୟାନ ।
ଧ୍ୟାନତପସ୍ୟାପରାୟଣ,
ବିବେକୀ ମହାଋଷିଗଣ,
ପ୍ରଚ୍ଛନ୍ନ ଯେଉଁ ବ୍ରହ୍ମଶକ୍ତି,
ବିଜ୍ଞାନ-ନେତ୍ରରେ ଦେଖନ୍ତି ।
କାଳ ଓ ଆତ୍ମା ସମ୍ମିଳିତ,
କାରଣଦ୍ୱୟେ ନିୟମିତ ।
ଦେଉଣ ଚକ୍ରର ଉପମା
ବୋଲନ୍ତି ବ୍ରହ୍ମଙ୍କ ମହିମା,
ସେ ଚକ୍ର ଏକନେମିଯୁକ୍ତ,
ବେଷ୍ଟିତ ଗୁଣତ୍ରୟ ବୃତ୍ତ,
ଅର ତହିଁରେ ପଞ୍ଚାଶତ,
ଷୋଡ଼ଶ ଅଟେ ତହିଁ ଅନ୍ତ,
ବିଂଶତି ଅଟେ ପ୍ରତିଅର,
ଅଷ୍ଟକ ଷଡ଼ ଯେ ତହିଁର,
ବିବିଧ ଏକ ପାଶାନ୍ୱିତ,
ତ୍ରିମାର୍ଗେ ହୁଏ ସେ ଚାଳିତ,

ନମିତ୍ରୟଯୁ ଚକ୍ରଁ ଜାଣ,
ଏକହିଁ ନେମିର ସଙ୍ଗାତ,
ଏପରି ଯୁକ୍ତ ଗୁଣମାନ,
ଯେ ବ୍ରହ୍ମଚକ୍ରେ କରେଁ ଧ୍ୟାନ । *
ନଦୀସ୍ୱରୂପ କାର୍ଯ୍ୟ ବ୍ରହ୍ମେ
ବର୍ଣ୍ଣନା କରୁଛୁ ପ୍ରଥମେ,
ଏ ନଦୀ ବହୁଛୁ ଏମନ୍ତ,
ପାଞ୍ଚଟି ଉଗ୍ରସ ପାଞ୍ଚ ସ୍ରୋତ,
ପାଞ୍ଚଟି ଊର୍ମିରେ ମଣ୍ଡିତ,
ପଞ୍ଚ ଅବର୍ତ୍ତ ସମନ୍ୱିତ
ଶାଖା ଏହାର ପଞ୍ଚାଶତ,
ସୋପାନ ପଞ୍ଚଧା ବିଭକ୍ତ,
ପଞ୍ଚ ପୁଳକ ବାଦ୍ୟମାନ,
ଏହି ନଦୀକୁ କରେଁ ଧ୍ୟାନ । †
ଅପଣା କର୍ତ୍ତୃନ୍ତାକୁ ଲୋକ
ମନରେ ଭାବନ୍ତି ପୃଥକ ।
ବ୍ରହ୍ମଚକ୍ରରେ ଭ୍ରମ୍ୟମାନ,
ଏଥିକୁ ହେଉଥାନ୍ତି ଜାଣ ।
ଶେଷେ ଈଶ୍ୱରେ ହୋଇ କ୍ଷୀଣ,
ଜୀବ ତାହାଙ୍କୁ ହୁଏ ପ୍ରାପ୍ତ ।
ସେ ପରବ୍ରହ୍ମଙ୍କ ଗତି
ବେଦାନ୍ତେ ହୋଇଛୁ କଥିତ ।
କର୍ତ୍ତୃନ୍ତା, ଭୋକ୍ତା, ଭୋଗ୍ୟ ଯେତ
ଭାବନ୍ତୁ ଯେବା ଛନ୍ତି ତହିଁ ।

ଜଗତ୍ ପ୍ରପଞ୍ଚ ଅତୀତ,
ତାହାଙ୍କୁ ହୁଏ ଯେ ବିଦିତ ।
ଜନ୍ମାନ୍ତରରୁ ହୋଇ ମୁକ୍ତ
ପରମବ୍ରହ୍ମେ ହୁଏ ଯୁକ୍ତ ।
ବ୍ୟକ୍ତ ଅବ୍ୟକ୍ତ କ୍ଷରାକ୍ଷର,
ବ୍ରହ୍ମାଣ୍ଡଧାରକ ଈଶ୍ୱର ।
ଭୋଗେଣ ସୁଖଦୁଃଖାଧୀନ,
ଜୀବ ଯେ ଥାଏ ଚିରଦିନ ।
ଥାଗେଣ ଅବିଦ୍ୟା ବନ୍ଧନେ
ଈଶ୍ୱରେ ନ ଦେଖେ ନୟନେ ।
ଈଶ୍ୱର ଜାଣେ ହେଲେ ଯୁକ୍ତ,
ବନ୍ଧନୁଁ ହୁଏ ଯେ ବିମୁକ୍ତ ।
ଈଶ୍ୱର, ଜୀବ, ଅଜ୍ଞ, ଜ୍ଞାନୀ,
ଏ ଦୁଇ ଛନ୍ତି ଥିବ ଜାଣି ।
ଜୀବ ଯେ ସ୍ୱରୂପ ଅଂଶରେ
ସମାନ ଈଶ୍ୱର ସଙ୍ଗରେ ।
ଜୀବର ନାହିଁ ଜନ୍ମ ନାଶ,
ଏ କଥା କରିବ ବିଶ୍ୱାସ ।
ଭୋଗ୍ୟ ବିଷୟପ୍ରଦାୟିନୀ,
ବ୍ରହ୍ମାଣ୍ଡେ ପ୍ରକୃତି କାମିନୀ ।
ଈଶ୍ୱରଙ୍କର ଏକ ଶକ୍ତି,
ଅଛନ୍ତି ଜାଣ ହେ ସୁମତି ।
ଈଶ୍ୱର ସଙ୍ଗେ କରେ ବାସ,
ନାହିଁ ତା ଜନମ ବିନାଶ ।

* ବ୍ରହ୍ମଚକ୍ର—ଏକନେମି=କାରଣ ଅବସ୍ଥାରୂପ ଏକଚକ୍ରନାଭି । ବୃତ୍ତିତ୍ରୟ=ସତ୍ତ୍ୱ, ରଜଃ, ତମଃ ଏହି ତିନ ବୃତ୍ତି । ପଞ୍ଚାଶତ୍ ଅର=ସାଂଖ୍ୟ ଶାସ୍ତ୍ରୋକ୍ତ ପଞ୍ଚାଶତ୍ ପ୍ରତ୍ୟୟ ବା ବିପର୍ଯ୍ୟୟ ବା ଭ୍ରମ । ଷୋଡ଼ଶ ଅନ୍ତ=କ୍ଷିତି, ଅପ୍, ମରୁତ୍, ତେଜ, ବ୍ୟୋମ ଏହି ପଞ୍ଚ ମହାଭୂତ ଏବଂ ଏକାଦଶ ଇନ୍ଦ୍ରିୟ, ଏପରି ଷୋଡ଼ଶ । ବିଂଶତି ପ୍ରତିଅର=ଦଶ ଇନ୍ଦ୍ରିୟ ଏବଂ ସେମାନଙ୍କ ବିଷୟ ଏପରି ବିଂଶତି । ଷଡ଼ ଅଷ୍ଟକ=ଭୂମ୍ୟାଦି ପ୍ରକୃତି ଅଷ୍ଟକ; ୨—ତ୍ୱଗାଦି ଧାତୁ ଅଷ୍ଟକ; ୩—ଅଣିମାଦି ଐଶ୍ୱର୍ଯ୍ୟ ଅଷ୍ଟକ; ୪—ଧର୍ମାଦି ଭାବାଷ୍ଟକ; ୫—ବ୍ରହ୍ମାଦି ଦେବାଷ୍ଟକ; ୬—ଦୟାଦି ଗୁଣାଷ୍ଟକ । ଏକପାଶ=କାମନା । ତ୍ରିମାର୍ଗ=ଧର୍ମ, ଅଧର୍ମ, ଜ୍ଞାନ । ନିମିତ୍ତଦ୍ୱୟ=ପାପ ପୁଣ୍ୟ ।

† ପଞ୍ଚ ଉଗ୍ର=ପଞ୍ଚଭୂତ । ପଞ୍ଚସ୍ରୋତ=ଚକ୍ଷୁରାଦି ପଞ୍ଚେନ୍ଦ୍ରିୟ । ପଞ୍ଚଊର୍ମି=ପ୍ରାଣ, ଅପାନ, ସମାନ, ଉଦାନ, ବ୍ୟାନ । ପଞ୍ଚଆବର୍ତ୍ତ=ରୂପାଦି ପଞ୍ଚ ବିଷୟ । ପଞ୍ଚାଶତ୍ ଶାଖା=ଲଜ୍ଜା ଘୃଣା ପ୍ରଭୃତି । ସୋପାନ ପଞ୍ଚବିଧ=ଅବିଦ୍ୟା, ଅହଂଭାବ, ରାଗ, ଦ୍ୱେଷ, ଅଭିନିବେଶ । ପଞ୍ଚପୁଳକ= ଗର୍ଭ, ଜନ୍ମ, ଜରା, ବ୍ୟାଧି, ମରଣ ।

ଚିତ୍ସ୍ୱରୂପ ପରମାତ୍ମା,
ପ୍ରକାଶ ତାହାଙ୍କ ମହିମା ।
ଶକ୍ତିରୁ ଅଟେ ଜୀବପାଇଁ,
ସଂସାରଭାବ ତାଙ୍କ ନାହିଁ ।
ସେ ଆତ୍ମା ସ୍ୱତନ୍ତ୍ର ସ୍ୱାଧୀନ,
ଅଟନ୍ତି ବାସନାରୁ ଭିନ୍ନ ।
ଜୀବ ପ୍ରକୃତ ପରମାତ୍ମା,
ଜାଣେ ଯେ ଏଥିର ମହିମା,
ସେହି ସାଧକ ହୋଇ ମୁକ୍ତ
ପରମ ବ୍ରହ୍ମେ ହୁଏ ଯୁକ୍ତ ।
ପରମ ବ୍ରହ୍ମ ସନାତନ,
ଅବିଦ୍ୟା କରନ୍ତି ହରଣ ।
ନୁହନ୍ତି ବ୍ରହ୍ମ ପରମିତ,
କରନ୍ତି ଜୀବେ ନିୟମିତ ।
ସେ ବ୍ରହ୍ମଜ୍ଞାନ ଯେବା ପାଏ,
ତାହାର ମୋହ ନାଶ ଯାଏ ।
ହେଲେ ସେ ଈଶ୍ୱର ଅଧୀନ,
ସର୍ବ ବନ୍ଧନ ହୁଏ ଛିନ୍ନ ।
ସେ ପରବ୍ରହ୍ମ ଜ୍ଞାନହେତୁ
ନିବୃତ୍ତ ହୁଏ ଜନ୍ମ ମୃତ୍ୟୁ ।
ଚିତ୍ତ ରଖିଲେ ତାଙ୍କଠାରେ,
ଶରୀର ପତନ ଉତ୍ତାରେ
ମିଳି ଈଶ୍ୱର ସମୀପରେ,
ସର୍ବ ଐଶ୍ୱର୍ଯ୍ୟ ଲାଭ କରେ ।
ପ୍ରେରକ, ଭୋଗ୍ୟ ପୁଣି ଭୋକ୍ତା,
ଯେ ଜାଣେ ଏ ତିନି ଏକତା,
ଭବବନ୍ଧୁଁ ହୋଇ ମୁକ୍ତ,
ପରମେଶ୍ୱରେ ହୁଏ ଯୁକ୍ତ ।
ଜ୍ୱଳନ କାଷ୍ଠରେ ଅନଳ
ପ୍ରଚ୍ଛନ୍ନ ଥାଏ ସେ କେବଳ ।
ସେ କାଷ୍ଠ କଲେକ ଘର୍ଷଣ,
ଅନଳ ହୁଏ ଉତ୍ପନ୍ନ ।
କାଷ୍ଠକୁ କରେ ବିନାଶ,
ଅନଳ ହୁଏ ଅପ୍ରକାଶ ।
ବିନାଶ ନୁହେ ସେ ଅନଳ,
ଅଦୃଶ୍ୟ ହୁଅଇ କେବଳ ।
ଅନ୍ୟ କାଷ୍ଠରେ ଯେ ମିଳଇ,
ପୁନଶ୍ଚ ହୁଏ ପ୍ରକାଶିତ ।
ତେସନେ ଆତ୍ମା ଏ ଦେହରେ
ଦେହାନ୍ତ ଧରଣ ସଙ୍ଗରେ ।
କାଷ୍ଠକୁ କଲେକ ଘର୍ଷଣ,
ଅନଳ ହୁଏ ଉତ୍ପନ୍ନ ।
ଓଁକାର ଶବ୍ଦେ କଲେ ଧ୍ୟାନ,
ଜନ୍ମଇ ଚିତ୍ତେ ବ୍ରହ୍ମଜ୍ଞାନ ।
ଏ ଦେହ ଅଟଇ ଅରଣି,
ଓଁକାର ଉତ୍ତର ଅରଣି ।
ଧ୍ୟାନ ସ୍ୱରୂପ ଯେ ଘର୍ଷଣ,
ବ୍ରହ୍ମାଗ୍ନି ହୁଏ ଉତ୍ପନ୍ନ ।
ନଦୀଗର୍ଭରେ ଥାଏ ଜଳ,
ତିଳ ମଧ୍ୟରେ ଥାଏ ତୈଳ ।
ଦଧି ମଧ୍ୟରେ ଥାଏ ଘୃତ,
ଅରଣି ମନ୍ଥୁଁ ଅଗ୍ନି ଜାତ ।
ତେସନେ ସତ୍ୟତପରେ
ସନ୍ଧାନ କରିବ ଈଶ୍ୱରେ ।
ଏ ଆତ୍ମା ଆତ୍ମାରେ ବ୍ୟାପ୍ତ
ହେବଟି ଜାଣିବ ନିଶ୍ଚିତ ।
ସର୍ବ ଅଂଶରେ ହୋଇ ପ୍ଲୁତ,
ଦଧି ମଧ୍ୟରେ ଥାଏ ଘୃତ ।
ତେସନେ ସତ୍ୟତପରେ
ବ୍ରହ୍ମ ଯେ ଥାନ୍ତି ନିରନ୍ତରେ ।
ଏ ଦିବ୍ୟ ତତ୍ତ୍ୱ ଯେବା ଜାଣେ,
ସେ ଅଧିକାରୀ ବ୍ରହ୍ମଜ୍ଞାନେ ।

ଇତି ପ୍ରଥମ ଅଧ୍ୟାୟ ।

———

ଅହେ ସବିତା କୃପା କର,
ଜନମୁ ତତ୍ତ୍ୱଜ୍ଞାନ ମୋର ।
ପରମାତ୍ମାରେ ନେଇ ମୋତେ
ସଂଯୁକ୍ତ କରନ୍ତୁ ସନ୍ତତେ ।

ଅଗ୍ନିର ଜ୍ୟୋତି ମୋ ଉପରେ
ସ୍ଥାପନ କର କୃପାଭରେ ।
ଅଗ୍ନି ପ୍ରଭୃତି ଦେବଗଣେ
ମୋ ପ୍ରତି କରୁଣାନୟନେ,
ସକଳ ବସ୍ତୁପ୍ରକାଶକ
ଦେଉନ୍ତୁ ସାମର୍ଥ୍ୟଦାୟକ ।
ପୁଣି ସକଳ ବଳ ସାର
କରନ୍ତୁ ସବିତା ସଞ୍ଚାର ।
ସୂର୍ଯ୍ୟଦେବଙ୍କ ଆଜ୍ଞାଧୀନ
ହୋଇ ରହିବୁଁ ଚିରଦିନ ।
ହେବ ମୋ ପରମାର୍ଥ ଗତି,
ଯତ୍ନ କରିବୁଁ ଯଥାଶକ୍ତି ।
ପରବ୍ରହ୍ମଙ୍କ ଅଭିମୁଖେ
ଅହେ ସବିତା ଯିବୁଁ ସୁଖେ ।
ପରମବ୍ରହ୍ମ ଜ୍ୟୋତିର୍ମୟ,
ଏହା ମୋ ହେଉ ଜ୍ଞାନୋଦୟ ।
ସବିତା କରନ୍ତୁ ଆଦେଶ,
କରେଁ ମୁଁ ଆତ୍ମାରେ ପ୍ରବେଶ ।
ଯେ କଷ୍ଟେ ମନ ଓ ଇନ୍ଦ୍ରିୟ
କରୁ ପାରନ୍ତି ଆତ୍ମମୟ,
ସବିତାଦେବେ ସେହିମାନେ
ସ୍ତୁତି କରନ୍ତି ସାବଧାନେ ।
ସମସ୍ତ କ୍ରିୟାର ବିଧାନ
କରନ୍ତି ସେ ସବିତା ଜାଣ ।
ଇନ୍ଦ୍ରିୟ ପୁଣି ଦେବଗଣ
ଅଟନ୍ତି ତାଙ୍କ ଯେ କାରଣ ।
ସେ ବ୍ରହ୍ମ ଅତ୍ୟନ୍ତ ମହାନ,
ଅମ୍ଭେ ତାହାଙ୍କୁ କରୁଁ ଧ୍ୟାନ ।
ସେ ଦେବ ପବିତ୍ର ମାର୍ଗରେ
ଆସନ୍ତୁ ମୋହ ହୃଦୟରେ ।
ଅହେ ଅମୃତପୁତ୍ରଗଣ,
ଏ କଥା କରନ୍ତୁ ଶ୍ରବଣ ।
ଯେତେକ ଦିବ୍ୟଧାମବାସୀ,
ଶୁଣନ୍ତୁ ହୋଇ ଅଭିଳାଷୀ ।

ଯେଠାରେ କୁଣ୍ଡେ ଅଗ୍ନି ଜଳେ,
ଯେ ସ୍ଥାନେ ପ୍ରାଣାୟାମ ବଳେ
ଶରୀର ମଧ୍ୟସ୍ଥଳେ ଆନ୍ତ,
ଆବଦ୍ଧ ରହେ ପ୍ରାଣବାୟୁ,
ଯେଠାରେ କୁମ୍ଭେ ସୋମରସ
ଉଚ୍ଛୁଳ ଉଠଇ କ୍ରମଶ,
ସେଠାରେ ଯଜ୍ଞବିଷୟରେ
ପ୍ରବୃତ୍ତି ଜନ୍ମେ ସହଜରେ ।
ସବିତା ପ୍ରସାଦେ ସାଧକ
ହେଉନ୍ତୁ ବ୍ରହ୍ମଉପାସକ ।
କଲେକ ବ୍ରହ୍ମଙ୍କୁ ଆଶ୍ରୟ,
ତୁମ୍ଭର ଚିତ୍ତ ହେବ ଥିର ।
ତୁମ୍ଭ ଇନ୍ଦ୍ରିୟ ପୁଣି ମନ
ନ ହେବ ବନ୍ଧନକାରଣ ।
ଗ୍ରୀବା ମସ୍ତକ ବକ୍ଷସ୍ଥଳ
ଉନ୍ନତ ରଖିଣ କେବଳ,
ଆପଣା ମନରେ ଇନ୍ଦ୍ରିୟେ
ସ୍ଥାପନ କରିବ ହୃଦୟେ ।
ପରମବ୍ରହ୍ମ ଚିତ୍ତେ ସ୍ମର,
ପ୍ରଣବରୂପ ଭେଳା ଧରି,
ବିଷମ ସଂସାରସାଗର
ଉତ୍ତୀର୍ଣ୍ଣ ହେବେ ଜ୍ଞାନୀ ନର ।
ଏଥିରେ ଏହାହିଁ କର୍ତ୍ତବ୍ୟ,
ସୁଧୀର ସାଧକ ମାନବ
ପ୍ରାଣବାୟୁକୁ କୌଶଳରେ
ସଂଯତ କରିବେ ଯତ୍ନରେ ।
ନାସିକା ଯୋଗରେ କ୍ରମଶ
ଛାଡ଼ିବେ ନିଶ୍ୱାସ ପ୍ରଶ୍ୱାସ ।
ଜ୍ଞାନୀ ଏ ହୋଇ ଅପ୍ରମତ୍ତ,
ଯେସନେ ଦୁଷ୍ଟାଶ୍ୱଯୁକ୍ତ ରଥ,
ଏସନେ କରିଣ ଯତନ
ମନକୁ କରିବେ ଧାରଣ ।
ଯେ ସ୍ଥାନ ଅଟଇ ପବିତ୍ର,
ଅଗ୍ନିବାଲୁକାବର୍ଜ୍ଜିତ,

ଶୁଦ୍ଧ ପ୍ରସ୍ତର ଯହିଁ ନାହିଁ,
ସେ ସ୍ଥାନ ଯୋଗ୍ୟ ଧ୍ୟାନପାଇଁ ।
ଶବ୍ଦ ଯାହା ନିରନ୍ତର,
ନୁହଇ କେଶପୀଡ଼ାକର,
ନୁହଇ ବାୟୁ ବଳବାନ,
ଏମନ୍ତ ଗିରିଗୁହା ସ୍ଥାନ,
ନିର୍ମାଣ କରଣ କୁଟୀର,
ମନ ଇନ୍ଦ୍ରିୟ କରି ସ୍ଥିର,
ଚିତ୍ତକୁ କରି ସମାଧାନ,
ଭିତର ବସି ବ୍ରହ୍ମଧ୍ୟାନ ।
ଯୋଗ କରିବା ସମୟରେ
ଦେଖିବ ଯଦ୍ୟପି ନେତ୍ରରେ,
ନୀହାର, ଧୂମ, ସୂର୍ଯ୍ୟ, ବାୟୁ,
ଖଦ୍ୟୋତ, ଅଗ୍ନି, ଚନ୍ଦ୍ର ଆଉ,
ବ୍ରହ୍ମଙ୍କ ପ୍ରକାଶ ନିମିତ୍ତ
ପ୍ରଥମେ ହୁଏ ଅନୁମିତ ।
ମୃତ୍ତିକା, ଅଗ୍ନି, ଜଳ, ବାୟୁ,
ଉଠିଲେ ଆକାଶରୁ ଆଉ
ଯୋଗାଗ୍ନି ଯୁକ୍ତ ଏ ଦେହରେ
ରୋଗାଦି ପ୍ରବେଶ ନ କରେ ।
ଆରୋଗ୍ୟ ବର୍ଣ୍ଣ ଉଜ୍ଜ୍ୱଳତା,
ମଳ ମୂତ୍ରର ଯେ ଅଳ୍ପତା,
ସୁଗନ୍ଧ ସ୍ୱରର ମାଧୁର୍ଯ୍ୟ,
ଲୋଭଶୂନ୍ୟତା ଚିତ୍ତ ସ୍ଥୈର୍ଯ୍ୟ,
ଲଘୁତ୍ୱ ଆଦି ଏ ସକଳ
ଅଟେ ପ୍ରଥମ ଯୋଗଫଳ ।
ମଳିନ ଧାତୁ ନେଇ କାଟରେ
ଘର୍ଷଣ କଲେ ମୃତ୍ତିକାରେ,
ଉଜ୍ଜ୍ୱଳ ଦିଶଇ ଯେମନ୍ତ,
ତେସନେ ଜାଣି ଆତ୍ମତତ୍ତ୍ୱ
ଦେହୀ କୃତାର୍ଥ ହୋଇଥାଏ,
ଦେହାନ୍ତେ ସ୍ୱର୍ଗପଦ ପାଏ ।
ଯୋଗୀନ୍ଦ୍ର ସାଧକ ସମସ୍ତ,
ଦୀପସ୍ଥାନୀୟ ଆତ୍ମତତ୍ତ୍ୱ,
ତହିଁରେ ଦେଖି ବ୍ରହ୍ମତତ୍ତ୍ୱ,
ହୁଅନ୍ତି ମୃତ୍ୟୁଶୋକାତୀତ ।
ଈଶ୍ୱରେ ଜାଣି ଯୋଗୀ ଜନ
ବନ୍ଧନ କରନ୍ତି ଛେଦନ ।
ଏହି ଦେବ ସେ ସର୍ବ ଦିଗ,
ଅଗ୍ନି ଯେ ଅବାନ୍ତର ଦିଗ ।
ହିରଣ୍ୟଗର୍ଭ ସ୍ୱରୂପରେ
ଜନ୍ମ ହୁଅନ୍ତି ପ୍ରଥମରେ ।
ଜରାୟୁ ମଧ୍ୟେ ବର୍ତ୍ତମାନ
ଥାଆନ୍ତି ସେହି ଦେବ ଜାଣ ।
ଜନ୍ମିବେ ଜନ୍ମିଛନ୍ତି ପୁଣି,
ପଶ୍ଚାତେ ଥାନ୍ତି ଅଛୁଁ ଶୁଣି ।
ଯେଉଁ ଦେବତା ଅନଳରେ,
ଯେ ଦେବ ଅଛନ୍ତି ଜଳରେ ।
ବ୍ୟାପି ଅଛନ୍ତି ସର୍ବସ୍ଥାନ,
ଔଷଧି ମଧ୍ୟେ ବର୍ତ୍ତମାନ ।
ବନସ୍ପତିରେ ଯେ ଦେବତା
ପ୍ରକାଶିଛନ୍ତି ନିଜ ସତ୍ତା,
ସେହି ଦେବଙ୍କୁ ବାରମ୍ବାର
କରୁଅଛି ମୁଁ ନମସ୍କାର ।

ଇତି ଦ୍ୱିତୀୟ ଅଧ୍ୟାୟ ।

କ୍ରମଶଃ ।

ଶ୍ରୀ ଫକୀରମୋହନ ସେନାପତି ।

—:o:—

## ଜାତୀୟ ସଂସ୍କାର ।

ମାନବ ସମାଜ ଉନ୍ନତିଶୀଳ । ମାତ୍ର ପୃଥିବୀର ସମସ୍ତ ମନୁଷ୍ୟମାନଙ୍କୁ ଯେବେ ବିଚାର କଲେ ଯଦିଓ ସେମାନେ ସାଧାରଣତଃ ଉନ୍ନତି ଆଡ଼କୁ ଅଗ୍ରସର ହେଉଥିବାର ଦେଖାଯାଏ, ତଥାପି

ଏହି ବିଶାଳ ସମାଜ ଯେଉଁ ସବୁ କ୍ଷୁଦ୍ର କ୍ଷୁଦ୍ର ଜାତି-ଦ୍ୱାରା ଗଠିତ, ସେମାନଙ୍କ ଅତୀତକୁ ଦୃଷ୍ଟିପାତ କଲେ ଦେଖାଯାଏ, କୌଣସି ଜାତି ଅବିଚ୍ଛିନ୍ନରୂପେ ଉନ୍ନତି ପଥରେ ଅଗ୍ରସର ହୋଇ ଆସି ନାହିଁ। ଅତୀତର ଇତିହାସରୁ ଭବିଷ୍ୟତ ଅନୁମାନ କରିବାକୁ ହେଲେ ଜାତିବିଶେଷ ପକ୍ଷରେ ଯାହା ହୋଇଅଛି ଅନ୍ୟ ଜାତି ପକ୍ଷରେ ତାହା ଯେ ନ ହେବ, ଏହା କୁହାଯାଇ ନପାରେ । ବରଂ ବୋଧ ହୁଏ ବିରାଟ ମାନବସମାଜର ଉର୍ଦ୍ଧ୍ୱଗତି ଯଦିବା ଅପ୍ରତିହତ, ତଥାପି ତଦନ୍ତର୍ଗତ କ୍ଷୁଦ୍ର କ୍ଷୁଦ୍ର ଜାତିସମୂହ ଉତ୍ଥାନ-ପତନଶୀଳ ।

ହିନ୍ଦୁ ଜାତି ଏକ ସମୟରେ ଯେତେ ଉନ୍ନତ ଥିଲେହେଁ ଅନ୍ୟାନ୍ୟ ଜାତିଙ୍କ ତୁଳନାରେ ବର୍ତ୍ତମାନ ବହୁ ପଶ୍ଚାତରେ ପଡ଼ି ରହିଅଛି । ଏ ଦେଶରେ ସାହିତ୍ୟ ଗଣିତାଦିରେ ଅସାଧାରଣ ପ୍ରତିଭାଶାଳୀ ବ୍ୟକ୍ତିମାନେ ଜନ୍ମଗ୍ରହଣ କରିଥିଲେ ସତ୍ୟ, ଧର୍ମତତ୍ତ୍ୱରେ ଭାରତର ମନୀଷିମାନେ ଆଜଯାଏ ଅନତିକ୍ରାନ୍ତ ହୋଇ ରହିଅଛନ୍ତି ସତ୍ୟ, ମାତ୍ର ଯେଉଁ ଯେଉଁ ବିଷୟରେ ହିନ୍ଦୁ ଜାତି ଉନ୍ନତ ହୋଇଥିଲା ତାହା ଜାତିମଧ୍ୟସ୍ଥ ସବୁ ଶ୍ରେଣୀର ଲୋକଙ୍କ ମଧ୍ୟରେ ବିସ୍ତୃତ ନ ହୋଇ ଅଳ୍ପସଂଖ୍ୟକ ଲୋକଙ୍କ ମଧ୍ୟରେ ପରିମିତ ସୀମାବଦ୍ଧ ହୋଇ ରହିବାରୁ ଶିକ୍ଷାର ସଂକୀର୍ଣ୍ଣତା କାଳକ୍ରମେ ଜାତୀୟ ଜୀବନ ଓ ଜାତୀୟ ଚିନ୍ତାକୁ ସଙ୍କୁଚିତ କରି ଆମ୍ଭମାନଙ୍କ ଦେଶର ଅଧଃପତନ-ପଥ ପରିଷ୍କାର କରି ଦେଲା । ହୃଦୟରେ ନୈତିକ ବଳ ନାହିଁ, ଦୁର୍ଦ୍ଧର୍ଷ ତେଜ ନାହିଁ, ଅଟଳ ପ୍ରତିଜ୍ଞା ନାହିଁ, ଦୃଢ଼ ଆତ୍ମନିର୍ଭର ନାହିଁ, ପବିତ୍ର ସ୍ୱାର୍ଥତ୍ୟାଗ ନାହିଁ—ମୂଳତଃ, ଯାହା ମନୁଷ୍ୟ ଜୀବନରେ ସାର, ଯାହା ମନୁଷ୍ୟ ଜାତିର ବିଶେଷତ୍ୱ, ତାହା ସବୁ କିଛି ନାହିଁ । ଆମ୍ଭମାନଙ୍କର ପ୍ରାୟ ପ୍ରତି ଘରେ ରାମାୟଣ ମହାଭାରତ ପଢ଼ାଯାଏ। ମାତ୍ର ସେଥିରେ ଯେଉଁ ସବୁ ଆଦର୍ଶ ଚରିତ୍ର ଅଙ୍କିତ ହୋଇଅଛି, କେତେ ଜଣ ଲୋକ ସେସବୁ ଚରିତ୍ରକୁ ସ୍ୱ ସ୍ୱ ଜୀବନରେ ପ୍ରତିଫଳିତ କରିବାକୁ ପ୍ରୟାସ କରୁଅଛନ୍ତି । ଆମ୍ଭମାନଙ୍କର ସମସ୍ତ କାର୍ଯ୍ୟ ସଜୀବତାହୀନ; ସମସ୍ତ କାର୍ଯ୍ୟ ନିଃସ୍ୱାର୍ଥତା ଆଦର୍ଶଶୂନ୍ୟ ! ଯେଉଁ ଦିନଠାରୁ ହିନ୍ଦୁମାନଙ୍କର ଜାତୀୟ ଚିନ୍ତାର ପତନ ହେଲା, ସେହି ଦିନଠାରୁ ଜାତୀୟ ଚରିତ୍ରର ବଳ ହ୍ରାସ ହେଲା ଏବଂ ତତ୍ପରେ ବହିଃଶତ୍ରୁମାନଙ୍କର ନିର୍ଯ୍ୟାତନ ହିନ୍ଦୁ ଜାତିକୁ ମୁମୂର୍ଷୁ ଅବସ୍ଥାରେ ଆଣି ନିକ୍ଷେପ କଲା ।

ଅଧୁନା ପରିବର୍ତ୍ତନ ଉପସ୍ଥିତ । ବହୁ ଶତାବ୍ଦି-ବ୍ୟାପୀ ଶତ୍ରୁ ଉତ୍ପୀଡ଼ନ ଜାତୀୟ ଚିନ୍ତାର ଯେଉଁ ଜୀବନୀ ଶକ୍ତିକୁ ମ୍ରିୟମାଣ କରି ପକାଇ ଥିଲା, ପାଶ୍ଚାତ୍ୟ ଶିକ୍ଷା ଏବଂ ଶାସନର ପ୍ରଭାବରୁ ତାହା ପୁନର୍ଜୀବିତ ହେଉଅଛି । ଚିନ୍ତା ଶକ୍ତିର ବିକାଶ ସଙ୍ଗେ ସଙ୍ଗେ ଯେଉଁ ସବୁ ବିଷୟ ପ୍ରତି ଲୋକମାନଙ୍କର ଦୃଷ୍ଟି ଆକୃଷ୍ଟ ହେଉଅଛି, ତନ୍ମଧ୍ୟରେ ଆମ୍ଭମାନଙ୍କର ବର୍ତ୍ତମାନ ସାମାଜିକ ଅବସ୍ଥା ଅନ୍ୟତମ ଅଟେ । କିପରି ପଥ ଅବଲମ୍ବନ କଲେ ଆମ୍ଭେମାନେ ସ୍ୱ ସ୍ୱ ଜାତୀୟତା ରକ୍ଷା କରି ଉନ୍ନତି ଆଡ଼କୁ ଅଗ୍ରସର ହେବା, ଏହା ଆମ୍ଭମାନଙ୍କ ପକ୍ଷରେ ଗୋଟିଏ ଜଟିଳ ସମସ୍ୟା । ଆମ୍ଭମାନଙ୍କର ଅନେକ ଶିକ୍ଷିତ ଯୁବକ ସମାଜିକ ସଂସ୍କାରକୁ ଯେତେଦୂର ସହଜ ମନେ କରନ୍ତି, ବାସ୍ତବରେ ଏହା କେତେଦୂର ସହଜ ନୁହେ । ଯେଉଁ ଜାତିର ଅତୀତ ଇତିହାସରେ ଗୌରବର ବିଷୟ କିଛି ନାହିଁ, ତାହା ପକ୍ଷରେ ସହଜ ହୋଇ ପାରେ; ମାତ୍ର ଗୋଟିଏ ଲୁପ୍ତଗୌରବ ପ୍ରାଚୀନ ଜାତି ପକ୍ଷରେ ଏହା ଅତ୍ୟନ୍ତ କଠିନ ବ୍ୟାପାର । ଯେଉଁ ବ୍ୟକ୍ତି ସ୍ୱଜାତିର ପ୍ରାଚୀନ ଇତିହାସପ୍ରତି ଆସ୍ଥା ନ କରେ, ଯାହାର ଜାତୀୟ ସମ୍ମାନ ବୋଧ କରିବାର ଶକ୍ତି ନାହିଁ, ଯେ ନିଜ ଜାତିର ବ୍ୟକ୍ତିତ୍ୱ ରକ୍ଷା କରିବାକୁ ପ୍ରସ୍ତୁତ ନୁହେ, ସେପରି ଲୋକଦ୍ୱାରା କିଛିମାତ୍ର ଜାତୀୟ ମଙ୍ଗଳ ସାଧିତ ହେବ ନାହିଁ। ଯେଉଁ ଜାତି ଶତ ଶତ ବର୍ଷବ୍ୟାପୀ ଶତ୍ରୁ ଉତ୍ପୀଡ଼ନ ସହ୍ୟ କରି ନିଜର ଜାତୀୟତା

ଇଚ୍ଛା କରି ଆସିଅଛୁ, ସେ ଜାତିର ଆଭ୍ୟନ୍ତରୀଣ ଶକ୍ତିର ରହସ୍ୟ ଜାଣିବାକୁ ଚେଷ୍ଟା ନ କରି ସବୁ ଲୁପ୍ତସଂସ୍କାର ଲୁପ୍ତସଂସ୍କାର କହି ଉତ୍ତାଳ ହେବା ବିଜ୍ଞର କାର୍ଯ୍ୟ ନୁହେ । ନିଜର ଅସ୍ତିତ୍ୱ ଏବଂ ମହତ୍ତ୍ୱ ଉପଲବ୍ଧି କରିବା ବ୍ୟକ୍ତିଗତ କଣ, ଜାତିଗତ କଣ, ସର୍ବବିଧ ଉନ୍ନତିର ପ୍ରଥମ ସୋପାନ । 'ଅମ୍ଭେମାନେ କଣ' ଏହା ପ୍ରଥମେ ସ୍ଥିର ନ କଲେ 'ଅମ୍ଭେମାନେ କଣ ହେବା' ଏହା କେବେ ସ୍ଥିର କରି ନ ପାରୁଁ । ପୁଣି ଗତିର ଉଦ୍ଦେଶ୍ୟ ସ୍ଥିର ନ କରି କାର୍ଯ୍ୟରେ ପ୍ରବୃତ୍ତ ହେଲେ ସମୟ-ସ୍ରୋତରେ ଇତସ୍ତତଃ ହୋଇ ଭାସି ଯାଉଁ ଯାଉଁ ଭାଗ୍ୟବଶତଃ କୌଣସିଠାରେ ପହଞ୍ଚ ଯାଇ ପାରୁଁ, ମାତ୍ର ଏହା ଜାତୀୟତାରୂପ ପ୍ରକାଣ୍ଡ ଅଟ୍ଟାଳିକା ନିର୍ମାଣର ପ୍ରକୃଷ୍ଟ ଉପାୟ ନୁହେ ।

ସ୍ୱଜାତିର ଉନ୍ନତିକୁ ଲକ୍ଷ୍ୟ କରି ସଂସ୍କାର କରିବାକୁ ପ୍ରୟାସୀ ହେଲେ ଧୈର୍ଯ୍ୟାବଲମ୍ବନ ଏବଂ ସ୍ୱାର୍ଥତ୍ୟାଗ ଏକାନ୍ତ ଆବଶ୍ୟକ । ଅଜକାଲି ସମାଜସଂସ୍କାରର ନାମ ଦେଇ ନିଜର ସ୍ୱାର୍ଥ ସାଧନ କରୁଥିବା ଲୋକଙ୍କ ସଂଖ୍ୟା ଏତେ ଅଧିକ ଯେ ସେମାନଙ୍କ ମୌଖିକ ସ୍ୱଜାତିବାତ୍ସଲ୍ୟ ପ୍ରକୃତ ସଂସ୍କାରମାର୍ଗରେ ଏକପ୍ରକାର ଅନ୍ତରାୟ ହୋଇ ଉଠିଅଛି । କାରଣ ସେହିସବୁ ସଂସ୍କାରାନୁରାଗୀ ବ୍ୟକ୍ତିମାନଙ୍କର ସ୍ୱଦେଶବାତ୍ସଲ୍ୟରୂପ ବହିରାବରଣ ତଳେ ଯେଉଁ ଆତ୍ମବାତ୍ସଲ୍ୟଟିକ ନିହିତ ଥାଏ, ସମାଜର ଲୋକମାନେ ତାକୁ ଦେଖି ପାରି ସେମାନଙ୍କ ମତର ଅନୁଗମନ କରିବା ଦୂରେ ଥାଉ ଅଧିକନ୍ତୁ ଦୃଢ଼ତାସହିତ ତାହାର ପ୍ରତିକୂଳାଚରଣ କରନ୍ତି । ବ୍ୟକ୍ତିଗତ ମତ ଯେପରି ଚଞ୍ଚଳ ଓ ପରିବର୍ତ୍ତନଶୀଳ ସମାଜର ମତ ସେପରି ନୁହେ । ସୁତରାଂ ଫଳ ହୁଏ ଏହି ଯେ ସାଧାରଣ ଲୋକେ ସେପରି ବ୍ୟକ୍ତିର କଥାରେ ଆସ୍ଥା ନ ରଖି ସନ୍ଦିଗ୍ଧ ଚକ୍ଷୁରେ ତାହାର କାର୍ଯ୍ୟକଳାପ ପ୍ରତି ଦୃଷ୍ଟିପାତ କରନ୍ତି ଏବଂ ସେ ଏକପ୍ରକାର ସମାଜର ବାହାରେ ରହେ ।

ରକ୍ଷଣଶୀଳତା ମନୁଷ୍ୟ ଜାତିର ଗୋଟିଏ ସ୍ୱାଭାବିକ ଗୁଣ । ଏହି ରକ୍ଷଣଶୀଳତା ଯେ ପରିମାଣରେ ସାମାଜିକ ଉନ୍ନତିର ପ୍ରତିବନ୍ଧକ, ସେହି ପରିମାଣରେ ମଧ୍ୟ ତାହାର ମୂଳଭିତ୍ତି ଅଟେ । ଅତଏବ ଯେଉଁସବୁ ପ୍ରଥା, ଆଚାର, ବ୍ୟବହାର ସମାଜର ଅଧିକାଂଶ ବ୍ୟକ୍ତିଙ୍କଠାରେ ବଦ୍ଧମୂଳ ହୋଇ ଯାଇଅଛି, ତାହାକୁ ସବୁ ହଠାତ୍ ଉଚ୍ଛେଦ କରିବାକୁ ନ ବସି ପ୍ରଥମେ ଶିକ୍ଷାଦ୍ୱାରା ସାଧାରଣଙ୍କର ମନକୁ ଏପରି ପ୍ରସ୍ତୁତ କରିବା ଉଚିତ, ଯେପରି କି ସେମାନେ ସଂସ୍କାରର ଆବଶ୍ୟକତା ହୃଦୟଙ୍ଗମ କରି ପାରିବେ । ଏପରି କରିବାଦ୍ୱାରା ଅଧିକସଂଖ୍ୟକ ଲୋକଙ୍କର ମତ ଯେଉଁ ଆଡ଼କୁ ଧାବିତ ହେବ ସଂସ୍କାରର ପଥ ସେହି ଆଡ଼େ ।

କି କି ସଂସ୍କାର କରିବାକୁ ହେବ, କେବଳ ଏତିକି ଜାଣିବା ଦେଶର ଶିକ୍ଷିତ ବ୍ୟକ୍ତିମାନଙ୍କ ପକ୍ଷରେ ଯଥେଷ୍ଟ ନୁହେ; କେତେବେଳେ ସେହିସବୁ ସଂସ୍କାର କାର୍ଯ୍ୟରେ ପରିଣତ କରିବାକୁ ହେବ, ତାହା ମଧ୍ୟ ଜାଣିବା ଆବଶ୍ୟକ । ଯେବେ କେହି କେହି ଆଗ୍ରହାତିଶଯ୍ୟ ହେତୁରୁ ହେଉ, ବା ସ୍ୱଦେଶବାତ୍ସଲ୍ୟରୂପ ବହିରାବରଣଯୁକ୍ତ ସ୍ୱାର୍ଥପରତା ହେତୁରୁ ହେଉ, ସମାଜର ମତପ୍ରତି ଭ୍ରୂକ୍ଷେପ ନ କରି କୌଣସି କାର୍ଯ୍ୟ କରନ୍ତି, ତାହାହେଲେ ସେମାନେ ସମାଜର ନେତା ଓ ଉପଦେଷ୍ଟାର ଆସନରୁ ଚ୍ୟୁତ ହୁଅନ୍ତି । ପ୍ରକୃତ ଦେଶହିତୈଷୀ ସଂସ୍କାରକ ସାଧାରଣ ଲୋକଙ୍କଠାରୁ ନିଜର ବିଶେଷତ୍ୱ ପ୍ରତିପନ୍ନ କରିବାଦ୍ୱାରା ଲୋକପ୍ରତିଷ୍ଠା ଲାଭ କରିବାକୁ ବ୍ୟଗ୍ର ନ ହୋଇ ଧୀର ଏବଂ ଅଲକ୍ଷିତ ଭାବରେ ପାଞ୍ଚଜଣଙ୍କୁ ନିଜ ମତରେ ଦୀକ୍ଷିତ କରି ଆପଣାର ମହଦୁଦ୍ଦେଶ୍ୟ ସାଧନ କରିବାକୁ ଯତ୍ନ କରନ୍ତି ।

ସମାଜର କ୍ରିୟାକଳାପ ତନ୍ମଧ୍ୟସ୍ଥ ବ୍ୟକ୍ତିସମୂହର ନୈତିକ ଅବସ୍ଥାର ବାହ୍ୟ ବିକାଶ ମାତ୍ର । ଯେଉଁ ସବୁ ଚେଷ୍ଟା, ଯେଉଁ ସବୁ କାର୍ଯ୍ୟ ବ୍ୟକ୍ତି ପକ୍ଷରେ

ହେଉ ବା ସମାଜ ପକ୍ଷରେ ହେଉ ନୈତିକ ଭିତ୍ତି ଉପରେ ଅବସ୍ଥାପିତ ନୁହେ, ସେ ସବୁଥିରୁ କୌଣସି ସ୍ଥାୟୀ ଫଳ ଆଶା କରଯାଏ ନାହିଁ କିମ୍ବା ସେପରି ଚେଷ୍ଟା ବା କାର୍ଯ୍ୟଦ୍ୱାରା କୌଣସି ବ୍ୟକ୍ତି ବା ଜାତି ଉନ୍ନତ ହୋଇ ନାହାନ୍ତି । ଅତଏବ କୌଣସି ପ୍ରକାର ସଂସ୍କାର ପ୍ରବର୍ତ୍ତନ କରିବା ପୂର୍ବରୁ ସମାଜସ୍ଥ ଲୋକମାନଙ୍କର ନୈତିକ ଜୀବନ ଗଠନ ପ୍ରତି ଦୃଷ୍ଟି ରଖିବା କର୍ତ୍ତବ୍ୟ ।

ଜନସାଧାରଣଙ୍କର ଶିକ୍ଷା ସର୍ବବିଧ ସାମାଜିକ ଉନ୍ନତିର ଏକମାତ୍ର ସହାୟ । ଶିକ୍ଷା ବିସ୍ତାର ସଙ୍ଗେ ସଙ୍ଗେ ସାମାଜିକ ଚିନ୍ତାପ୍ରବାହ ଜାତ ହୁଏ ଓ ତତ୍ସହିତ ସମାଜର ନୈତିକ ଅବସ୍ଥା ଗଠିତ ହୁଏ ଏବଂ ସମୟରେ କେହି ପ୍ରତିଭାସମ୍ପନ୍ନ ବ୍ୟକ୍ତି ଜନ୍ମଗ୍ରହଣ କଲେ ସେ ନିଜର ଶକ୍ତିଦ୍ୱାରା ବିକ୍ଷିପ୍ତ ଏବଂ ବ୍ୟକ୍ତିଗତ ଆକାଙ୍କ୍ଷା ସବୁକୁ ଏକୀଭୂତ କରି—ସମାଜର ପ୍ରଚ୍ଛନ୍ନ ଭାବକୁ ପରିସ୍ଫୁଟ କରି ପ୍ରକାଶ୍ୟଭାବରେ ସମାଜକୁ ଉନ୍ନତି ଆଡ଼କୁ ନେଇ ଯାଆନ୍ତି । ଜାତୀୟ ଗଠନ ଦିନକରେ ହୋଇ ନାହିଁ, ଜାତୀୟ ସଂସ୍କାର ଦିନକରେ ହେବ ନାହିଁ । ଆମ୍ଭେମାନେ ଆଜି ଯାହା ସୂତ୍ରପାତ କରିବା, ତାହା ଫଳପ୍ରଦ ହେବା ପୂର୍ବରୁ ହୁଏତ ଆମ୍ଭେମାନେ କାର୍ଯ୍ୟକ୍ଷେତ୍ରରୁ ଚିରଦିନ ପାଇଁ ବିଦାୟ ନେଇ ଚାଲିଯିବା; ମାତ୍ର ପ୍ରତ୍ୟେକେ ଯେବେ ଜାତୀୟ ଜୀବନରେ ନିଜ ନିଜର ଦାୟିତ୍ୱ ମନେ ରଖି କାର୍ଯ୍ୟରେ ପ୍ରବୃତ୍ତ ହେଉଁ, ତାହାହେଲେ ଆମ୍ଭମାନଙ୍କର ଚେଷ୍ଟା ଶୂନ୍ୟରେ ଉଡ଼ି ଯିବ ନାହିଁ । ଆମ୍ଭମାନଙ୍କର କାର୍ଯ୍ୟରେ ଆନ୍ତରିକତା ଏବଂ ସଜୀବତା ଥିଲେ କୌଣସି କାର୍ଯ୍ୟ ଶେଷ କରି ନ ପାରିଲୁଁ ବୋଲି ମନରେ କ୍ଷୋଭ ହେବ ନାହିଁ—ସାନ୍ତ୍ୱନା, ଆମ୍ଭମାନଙ୍କର ଉଜ୍ଜ୍ୱଳ ଦୃଷ୍ଟାନ୍ତଦ୍ୱାରା ପ୍ରଣୋଦିତ ହୋଇ ଭାବୀ ବଂଶଧରମାନେ ତାହା ଶେଷ କରିବେ । ସୁତରାଂ ଯେବେ ଆମ୍ଭେମାନେ ସ୍ୱଜାତିର ଅତୀତ ଗୌରବକୁ ମନରେ ରଖି ପୃଥିବୀର ଉନ୍ନତ ଜାତିମାନଙ୍କର ଅବସ୍ଥା ସହିତ ଆମ୍ଭମାନଙ୍କର ବର୍ତ୍ତମାନ ଅବସ୍ଥା ତୁଳନା କରୁଁ ଏବଂ ଯେଉଁ ଯେଉଁ ବିଶେଷ କାରଣରୁ ସେମାନେ ଉନ୍ନତ ହୋଇଅଛନ୍ତି ସେହିସବୁ ନୈତିକ କାରଣଗୁଡ଼ିକ ସ୍ୱ ସ୍ୱ ଚରିତ୍ରରେ ପରିସ୍ଫୁଟ କରିଇ ତାହାର ଜୀବନ୍ତ ଦୃଷ୍ଟାନ୍ତ ସାଧାରଣ ସମକ୍ଷରେ ଧାରଣ କରୁଁ, ତାହାହେଲେ ସଂସ୍କାରର ପଥ ସହଜ ହୋଇଯିବ । ତାହା ନ ହେବାଯାଏ ସ୍ୱୟଂବର ପ୍ରଚଳନ, ପରିପୂର୍ବବିବାହ, ଅସବର୍ଣ୍ଣ ବିବାହ, ବିଦେଶୀୟ ଖାଦ୍ୟ ପରିଚ୍ଛଦ ପ୍ରଭୃତି ଯାହା ସବୁ ଆମ୍ଭମାନଙ୍କ ଜାତୀୟ ଦୁର୍ଗତିର ଉତ୍କୃଷ୍ଟ ପ୍ରତିଷେଧକ ବୋଲି ଅଧିକାଂଶ ସଂସ୍କାରଲିପ୍ସୁମାନଙ୍କର ଧାରଣା ହୋଇଅଛି, ସେ ସବୁଦ୍ୱାରା କିଛି ହେବ ନାହିଁ । ଜାତୀୟ ଚରିତ୍ରର ଉନ୍ନତି ବ୍ୟତିରେକେ ସଂସ୍କାରବିଶେଷଦ୍ୱାରା ଗୋଟିଏ କୁପ୍ରଥା ରହିତ ହେଲେ ତାହା ସ୍ଥାନରେ ଆଉ ଗୋଟିଏ କୁପ୍ରଥା ନିଶ୍ଚୟ ଦେଖା ଦେବ ଏବଂ ଆମ୍ଭେମାନେ ଯେପରି ଥିଲୁଁ ସେହିପରି ରହିବୁଁ । ଲାଭ ମଧ୍ୟରେ ପୁରାତନ ପରିବର୍ତ୍ତରେ ନୂତନ ।

ନୈତିକ ବଳ ଏବଂ ନିର୍ମଳ ଚରିତ୍ର ଜାତୀୟ ଉନ୍ନତିର ମୂଳଭିତ୍ତି ଅଟେ । କେବଳ ଏହି ସବୁ ଗୁଣଦ୍ୱାରା ଜାତୀୟ ଉତ୍ଥାନ ଏବଂ ଏମାନଙ୍କର ଅଭାବରେ ଜାତୀୟ ପତନ ହୋଇଅଛି । ଯେବେ ଆମ୍ଭେମାନେ ପୃଥିବୀ ମଧ୍ୟରେ ଗୋଟିଏ ଜାତି ବୋଲି ପରିଚିତ ହେବାକୁ ଆକାଙ୍କ୍ଷା କରୁଁ, ତାହାହେଲେ କିପରି ଶିକ୍ଷା ଦେଲେ ଜନସାଧାରଣର ଚରିତ୍ର ଗଠିତ ହେବ ତାହାର ଉପାୟ ବିଧାନ କରିବା ଆମ୍ଭମାନଙ୍କର ସର୍ବପ୍ରଧାନ କର୍ତ୍ତବ୍ୟ କାର୍ଯ୍ୟ । ତାହା ନ କରି ପ୍ରଥମରୁ ସଂସ୍କାର କରିବାକୁ ପ୍ରୟାସୀ ହେବା କେବଳ ଶକ୍ତି ଓ ସମୟର ଅପଚୟ ମାତ୍ର ।

ଶ୍ରୀ ପାରେଶ୍ୱର ମହାନ୍ତି ।

## ରାମ-କଥା ।

( କଟକ—ସାରସ୍ୱତ ସମିତିରେ ପଠିତ । )

---

"ଲୋକାଭିରାମ, ରଘୁବଂଶନାଥ" ଶ୍ରୀରାମଚନ୍ଦ୍ର ସମଗ୍ର ହିନ୍ଦୁସ୍ଥାନର ମହାନ୍ ଆଦର୍ଶ ପୁରୁଷ । ରାମକଥାମୃତବର୍ଣ୍ଣିକାମୃତ ମହାକାବ୍ୟ ରାମାୟଣର ରଚୟିତା ମହାକବି ବାଲ୍ମୀକି ସମଗ୍ର ଜଗତର ଜଣେ ଶ୍ରେଷ୍ଠ କବି । ଉଭୟଙ୍କର ଚରିତ୍ର ଓ ପ୍ରତିଭାର ଆଭାସ ମାତ୍ର ଦେବା ସାଧାରଣ ଲୋକର ସାଧ୍ୟ ନୁହେ ।

ଆଧୁନିକ ଯୁଗରେ ଉକ୍ତ ବିରାଟ ଗ୍ରନ୍ଥର ଅନୁଶୀଳନଦ୍ୱାରା ତଦନ୍ତର୍ଗତ ମହନୀୟ ଚରିତ୍ରମାନଙ୍କର ଚିତ୍ର ହୃଦୟ-ପଟରେ ଅଙ୍କିତ କରିବା ଲୋକେ ଶ୍ରେୟସ୍କର ମଣନ୍ତି ନାହିଁ । କ୍ଷୁଦ୍ର ଉପନ୍ୟାସ, ନାଟକ, ଖଣ୍ଡକାବ୍ୟ ପ୍ରଭୃତି ପ୍ରଣୟନ ବା ଅଧ୍ୟୟନରେ ଲୋକେ କାଳ ଅତିବାହିତ କରିବାକୁ ସୁଖକର ମଣନ୍ତି ।

ଭାରତଭୂମିର ହିନ୍ଦୁକୁଳ—କି ବଙ୍ଗାଳୀ, କି ଓଡ଼ିଆ, କି ମରହଟ୍ଟା, କି ଗୁଜରାଟୀ, କି କର୍ଣ୍ଣାଟୀ, ସକଳ ଶ୍ରେଣୀର ଲୋକ, ଧନୀ, ଦରିଦ୍ର, ପାର୍ବତ୍ୟ ଅରଣ୍ୟବାସୀ ପର୍ଯ୍ୟନ୍ତ ସମସ୍ତଙ୍କର ରାମ-ପ୍ରୀତି, ରାମଭକ୍ତି ପ୍ରବଳ ଦେଖାଯାଏ । କାଶୀବାସୀ ମାତ୍ରକେ ସହସ୍ର କଣ୍ଠୋତ୍ଥିତ ରାମନାମ ଶ୍ରୁତିଗୋଚର ହୁଏ । ଆର୍ତ୍ତ, ବିଷଣ୍ଣ, ଭୀତ, ବିପନ୍ନ, ମୁମୂର୍ଷୁର ସନ୍ତପ୍ତ ପ୍ରାଣ କିଏ କ୍ଷଣକେ ଶୀତଳ କରି ଦିଏ ? ରାମନାମ ଉଚ୍ଚାରଣମାତ୍ରକେ ହୃଦୟରେ ଅପୂର୍ବ ଶାନ୍ତି ଜାତ ହୁଏ । ସର୍ବକାଳରେ, ସକଳ ଅବସ୍ଥାରେ, ସକଳ ଶ୍ରେଣୀର ଲୋକଙ୍କ ନିକଟରେ ରାମଚରିତ୍ର ପୂଜ୍ୟ ।

ବାଲ୍ମୀକିଙ୍କର ଜଗନ୍ମୋହିନୀ ପ୍ରତିଭା ଏକା ଏହିପରି 'ନିଖିଳଲୋକପୂଜନ', 'ସର୍ବାଙ୍ଗସୁନ୍ଦର,' 'ମହନୀୟ' ଚରିତ୍ର ଅଙ୍କନରେ ପାରଦର୍ଶୀ ।

'ସତ୍ୟସନ୍ଧ' ଶ୍ରୀରାମଚନ୍ଦ୍ରଙ୍କ ଚରିତ୍ର ଗୁଣର ମାହାତ୍ମ୍ୟ ଶ୍ରବଣ କୀର୍ତ୍ତନ କଲେ ଚିତ୍ତବୃତ୍ତି ବାହ୍ୟଜ୍ଞାନଶୂନ୍ୟ ହୋଇ ତନ୍ମୟ ହୋଇଯାଏ, ଯେପରି କି ସମସ୍ତ ବୃତ୍ତି ବଳିଦାନ କରି ସେହି ଅନନ୍ତ ପ୍ରାଣ ନିକଟରେ ସର୍ବସ୍ୱ ଦାନ କରି ତାଙ୍କର ଆଦର୍ଶକୁ ଅନୁସରଣ ଓ ଅନୁକରଣ କରିବାହିଁ ଏକମାତ୍ର ସାର, ଏହି ଭାବ ଜାତ ହୁଏ ।

ହିନ୍ଦୁସ୍ଥାନର ପ୍ରତ୍ୟେକ ସକାମ ଗୃହସ୍ଥର କାମନା—ରାମଚନ୍ଦ୍ରଙ୍କ ପରି ପୁତ୍ର, ତାଙ୍କ ପରି ଭ୍ରାତା, ତାଙ୍କ ପରି ପ୍ରଭୁ, ତାଙ୍କପରି ରାଜା ଲାଭ କରିବା । ଏପରି ଅନବଦ୍ୟ, ସମୁଜ୍ଜ୍ୱଳ ଚରିତ୍ର ଜଗତର କୌଣସି କାବ୍ୟରେ ଦୁର୍ଲ୍ଲଭ । ପୃଥିବୀର ସଭ୍ୟଦେଶମାନଙ୍କରେ ଶ୍ରେଷ୍ଠ ମହାକାବ୍ୟମାନ ଅଛି, ଚିନ୍ତାଶୀଳ, ଭାବୁକ କବିମାନଙ୍କର ଅଭାବ ନାହିଁ; କିନ୍ତୁ ହିନ୍ଦୁସ୍ଥାନର ମହାକବି ବାଲ୍ମୀକିଙ୍କର ରାମାୟଣଗତ ରାମଚନ୍ଦ୍ର ଚରିତ୍ର ପରି କୌଣସି ମହାକାବ୍ୟର ଚିତ୍ର ଏତେଦୂର ଆଦର୍ଶସ୍ଥାନୀୟ ହୋଇ ନାହିଁ—ସାଧାରଣ ଲୋକଙ୍କର ଏପରି ଅକୃତ୍ରିମ ସମ୍ମାନ, ଭକ୍ତି, ପ୍ରୀତି ଆକର୍ଷଣ କରି ପାରି ନାହିଁ ।

ହିନ୍ଦୁଜାତି ନିକଟରେ ଚରିତ୍ରନିଷ୍ଠା, କର୍ତ୍ତବ୍ୟପରାୟଣତା ଓ ମାନସିକ ଉତ୍କର୍ଷ ଯେପରି ପୂଜ୍ୟ, ଅସାଧାରଣ ଦୈହିକ ବଳର ପ୍ରାଚୁର୍ଯ୍ୟ ସେପରି ନୁହେ । କଂସ, ଭୀମ, ହିରଣ୍ୟକଶିପୁ, କର୍ଣ୍ଣ ପ୍ରଭୃତି ଶ୍ରୀରାମଚନ୍ଦ୍ରଙ୍କର ଚରିତ୍ର ବଳ ନିକଟରେ ଅବନତମସ୍ତକ ।

ବର୍ତ୍ତମାନ ସଂକ୍ଷେପରେ ଶ୍ରୀରାମଚନ୍ଦ୍ରଙ୍କର ଚରିତ୍ର ବିଶ୍ଳେଷଣ କରାଯାଉ । କୈଶୋରାବସ୍ଥାରେ ତାହାଙ୍କର ଅଦମ୍ୟ ତେଜ ଓ ପ୍ରତିଭାର ନିଦର୍ଶନ ମିଳେ । ତାଡ଼କା ରାକ୍ଷସୀକୁ ବଧ କରି ସତ୍କର୍ମନିଷ୍ଠ, ଧର୍ମପରାୟଣ ଋଷିମାନଙ୍କର ତପୋବନରେ

ଶାନ୍ତି ସ୍ଥାପନ କରିଥିଲେ । ପ୍ରବୀଣ, ବୟୋବୃଦ୍ଧ, ସମରକୁଶଳ, ପରାକ୍ରମଶାଳୀ, ନାନାଦେଶାଗତ ରାଜନ୍ୟବର୍ଗଙ୍କ ସମକ୍ଷରେ ହରଧନୁ ଭଙ୍ଗ କରି ସାଧ୍ୱୀଶ୍ରେଷ୍ଠା, ରମଣୀରତ୍ନ ସୀତା ଦେବୀଙ୍କୁ ଧର୍ମପତ୍ନୀରୂପେ ଲାଭ କରି ଭଗ୍ନମନୋରଥ ରାଜନ୍ୟବୃନ୍ଦଙ୍କ ଈର୍ଷା ଓ ଶଙ୍କାନଳ ପ୍ରଜ୍ୱଳିତ କରିଥିଲେ । କ୍ଷତ୍ରକ୍ଷୟକର, ଦୁର୍ଦ୍ଧର୍ଷ ପରଶୁରାମଙ୍କୁ ଅକ୍ଳେଶରେ ଦମନ କରି ପୃଥିବୀକୁ ନିରାତଙ୍କ କରିଥିଲେ । ଭୁବନବିଜେତା, ପରାକ୍ରମଶାଳୀ, ସମ୍ରାଟଙ୍କର ମହାପ୍ରଭାବର ଏହା କେବଳ ସୂଚନା ମାତ୍ର ।

'ଶ୍ରୁତାନୁଗ' ମହାରାଜ ଦଶରଥଙ୍କର ଏକାଧିକ ଦାରପରିଗ୍ରହ ତତ୍କାଳୀନ ସାମାଜିକ ନୀତି ପକ୍ଷରେ ଦୂଷ୍ୟ ନ ଥିଲା ଏବଂ ସମ୍ପୂର୍ଣ୍ଣରୂପେ ରାଜଧର୍ମର ଅନୁମୋଦିତ ଥିଲା । ଅନ୍ୟତମା ପତ୍ନୀ କୈକେୟୀଙ୍କର ବରପ୍ରାର୍ଥନା ବିବରଣ ରାମଚନ୍ଦ୍ରଙ୍କ ଚରିତ୍ର-ଚିତ୍ର ଅଙ୍କନର ପ୍ରଧାନ ସୋପାନ ହୋଇଥିଲା । ଦଶରଥ ବୃଦ୍ଧ, ଅଶକ୍ତ, ରାଜକାର୍ଯ୍ୟ ପରିଚାଳନରେ ଅକ୍ଷମ, ସେହି ହେତୁରୁ ପ୍ରଜାରଞ୍ଜକ ନୃପତିଙ୍କ ମନରେ ମହାଦୁଃଖ ଜାତ ହେଲା; ସୁଯୋଗ୍ୟ ପୁତ୍ର ରାମଙ୍କୁ ଯୌବରାଜ୍ୟରେ ଅଭିଷିକ୍ତ କରିବାକୁ ଇଚ୍ଛା କରି ସମସ୍ତ ଆୟୋଜନ କଲେ । ସୂକ୍ଷ୍ମଦର୍ଶୀ, ମହାନୁଭାବ ରାମଚନ୍ଦ୍ରଙ୍କର ଏ ଶୁଭବାର୍ତ୍ତା ଅନ୍ତଃପୁରରେ ପ୍ରଚାରିତ ହେଲା । ସମସ୍ତେ ପୁଲକିତ; ମାତୃସ୍ଥାନୀୟା କୈକେୟୀଙ୍କର ବିଷାଦର ଚିହ୍ନ ନ ଥିଲା ।

ମୁହୂର୍ତ୍ତକମାତ୍ରକେ ଅବସ୍ଥାର ବିପର୍ଯ୍ୟୟ । ଆନନ୍ଦରୋଳପୂର୍ଣ୍ଣ ଅଯୋଧ୍ୟାକାଶରେ ବିଷାଦ-କୃଷ୍ଣମେଘର ଉଦୟ ହେଲା । ମନ୍ଥରା ରଙ୍ଗସ୍ଥଳରେ ଅବତୀର୍ଣ୍ଣ ହେଲେ । କୈକେୟୀଙ୍କର ଚିତ୍ତ-ବୈକଲ୍ୟ ଉପସ୍ଥିତ ହେଲା, ହୃଦୟରେ ହିଂସାନଳ ଜଳି ଉଠିଲା । ଅଯୋଧ୍ୟାର ଭାଗ୍ୟ-ଲକ୍ଷ୍ମୀ ପରିବର୍ତ୍ତିତ ହେଲା । ଦଶରଥଙ୍କର ଆସନ ଟଳିଲା, ଅଗତ୍ୟା କୈକେୟୀଙ୍କ ନିକଟରେ ଆତ୍ମବଳ ପ୍ରଦାନ କଲେ । ଉତ୍ସବପୂର୍ଣ୍ଣା, ଆନନ୍ଦୋନ୍ମତ୍ତା, ଅଯୋଧ୍ୟା ନଗରୀର ଜୟୋଲ୍ଲାସ ପ୍ରତି ଭ୍ରୂକ୍ଷେପ ନ କରି ଦଶରଥ ପ୍ରାଣାଧିକ ପ୍ରିୟତମ ପୁତ୍ରର ବନଗମନ ଆଦେଶ କଲେ ।

ଏଣେ ରାମଚନ୍ଦ୍ର ଅଭିଷେକ ସ୍ନାନୋଦ୍ୟତ, ଶୁଣିଲେ ସିଂହାସନ ଲାଭ ତାଙ୍କ ଭାଗ୍ୟରେ ନାହିଁ, ମାତୃସମା କୈକେୟୀ ସ୍ୱୀୟ ପୁତ୍ରର ମଙ୍ଗଳ ସାଧନାର୍ଥ କାତର, ପିତାଙ୍କ ମୁଖ ବିଷାଦଚ୍ଛାୟାରେ ଆବୃତ । କହିଲେ "ପିତା! ନାହିଁ, ପିତୃସତ୍ୟ ରକ୍ଷାର୍ଥ ମୁଁ ଅନଳମଧ୍ୟରେ ପ୍ରବେଶ କରିପାରେ, ଗରଳ ଭକ୍ଷଣ କରିପାରେ, ବନଗମନ କି କଥା ?" ଯେ ସିଂହାସନରେ ବସି ରାଜଦଣ୍ଡ ଧାରଣ କରି ଅତୁଳୈଶ୍ୱର୍ଯ୍ୟ ଭୋଗନିମନ୍ତେ ଅଗ୍ରସର ହେଉଥିଲେ, ସେ ପିତୃସତ୍ୟ ରକ୍ଷାର୍ଥ ଅମ୍ଳାନବଦନରେ ବନଗମନ ସ୍ୱୀକାର କଲେ । ପିତା ପୁତ୍ରଙ୍କର ଏହି ଦୁଇ ଚିତ୍ର ଦୁର୍ଲ୍ଲଭ !!

ଭ୍ରାତୃଭକ୍ତ ଲକ୍ଷ୍ମଣ ଏ ଦାରୁଣ ବାର୍ତ୍ତା ଶ୍ରବଣ କରି ରୋଷକଷାୟିତ ନେତ୍ରରେ ପ୍ରତିହିଂସା ନେବାକୁ ଉଦ୍ୟତ, କିନ୍ତୁ ଶାନ୍ତିପ୍ରିୟ, ଶୁଦ୍ଧାତ୍ମା ରାମଚନ୍ଦ୍ର ତହିଁରେ ବାଧା ଦେବାରେ ଅଗ୍ରସର । ମଣିରତ୍ନଖଚିତ ମୁକୁଟ ପଦଦଳିତ କରି ସତ୍ୟ-ନିଷ୍ଠା ଓ କର୍ତ୍ତବ୍ୟନିଷ୍ଠାର ମୁକୁଟ ପରିଧାନ କରି ଅରଣ୍ୟ ଯାତ୍ରା କଲେ । ସେ ଦୃଢ଼ନିଷ୍ଠା ନିକଟରେ ଭରତ ରାଜଶ୍ରୀକୁ ତୁଚ୍ଛ ଜ୍ଞାନ କରିଥିଲେ । କିଏ ଭାବିଥିଲା, ମୁହୂର୍ତ୍ତ ମାତ୍ରକେ କେବଳ ରମଣୀର ଏକ ଦୀର୍ଘନିଶ୍ୱାସରେ ସମଗ୍ର ଅଯୋଧ୍ୟାର ଭାଗ୍ୟ-ଲକ୍ଷ୍ମୀ ଏପରି ବିପର୍ଯ୍ୟସ୍ତ ହୋଇଯିବ ! ରାମଙ୍କ ବନଗମନ ଅପେକ୍ଷା ପୁତ୍ରଶୋକାତୁର ଦଶରଥଙ୍କର ପ୍ରାଣବିୟୋଗ ଅଧିକତର ମର୍ମସ୍ପର୍ଶୀ ! ଭରତଙ୍କର ରାଜପଦ ଗ୍ରହଣରେ ଅନିଚ୍ଛା ଅତୋଧିକ ପ୍ରଶଂସନୀୟ ! ଲକ୍ଷ୍ମଣଙ୍କର ଭ୍ରାତୃସହ ଅରଣ୍ୟଗମନ ଅତୁଳନୀୟ ! ବାଲ୍ମୀକିଙ୍କର ତୁଳିକାରେ ପୁଷ୍ପ ଚନ୍ଦନ ବୃଷ୍ଟି ହେଉ ! ଏକାଧାରରେ ଏତେଗୁଡ଼ିଏ ଦୁର୍ଲ୍ଲଭ, ସର୍ବଜନାକାଙ୍କ୍ଷିତ ଚିତ୍ର !! ସ୍ଥାନେ ସ୍ଥାନେ ହନୁସମାନ ସପତ୍ନୀର ନବୀନା ବଳରେ

ପୂରଣାର ! କୈକେୟୀଙ୍କର ବରପ୍ରାର୍ଥନାଦ୍ୱାରା ପରୋକ୍ଷଭାବରେ ମହାକବି ସମାଜକୁ ଅତି ସୂକ୍ଷ୍ମରୂପେ ସତର୍କ କରି ଦେଇଅଛନ୍ତି । ଏତେବେଳ ପର୍ଯ୍ୟନ୍ତ ଶ୍ରୀ ରାମଚନ୍ଦ୍ରଙ୍କର ଏତାଦୃଶ ଅଲୌକିକ ଦେବଭାବରେ ଆମ୍ଭେମାନେ ମୁଗ୍ଧ । ସୁଖଦୁଃଖରେ ସର୍ବଦା ସମଜ୍ଞାନ । ହଠାତ୍ ତାହାଙ୍କର ପାର୍ଥିବ ଭାବର ବିକାଶ ଦେଖି ଚମତ୍କୃତ ହେବାକୁ ହୁଏ । ସୀତାଙ୍କ ବିଚ୍ଛେଦରେ ଅମିତତେଜା, ମହାବୀର ରାମଚନ୍ଦ୍ର ଅଜ୍ଞ କ୍ଷୁଦ୍ର ଶିଶୁବତ୍ ମ୍ରିୟମାଣ ! ଅନବରତ ନାନା ଦୁଃଖ ଭୋଗରେ ଯେଉଁ ଚିତ୍ତ ଅବିଚଳ ଥିଲା, ତାହା ବର୍ତ୍ତମାନ ନିତାନ୍ତ ଚଞ୍ଚଳ ଓ କ୍ଷୁବ୍ଧ । ରାଜ୍ୟନାଶ ହେଲା, ବନେ ଯିବା ରାମଚନ୍ଦ୍ରଙ୍କର ଦୌର୍ବଲ୍ୟ ପ୍ରକାଶ ପାଇ ନ ଥିଲା । ଆଜି ସେ ଦୃଢ଼ତା କାହିଁ ? ସୀତାଙ୍କ ବିରହରେ ସକରୁଣ କ୍ରନ୍ଦନ ତାହାର ସ୍ଥାନ ଅଧିକାର କଲା । ଯେତେବେଳେ କୌଶଲ୍ୟା ଦଶରଥଙ୍କୁ ନାନା ଶୋକପୂର୍ଣ୍ଣ ବାକ୍ୟରେ ତିରସ୍କାର କରୁଥିଲେ, ଲକ୍ଷ୍ମଣ ଯେତେବେଳେ ଅସିହସ୍ତରେ ପ୍ରତିହିଂସା ନେବାକୁ "ହନିଷ୍ୟେ ପିତରଂ ବୃଦ୍ଧଂ କୈକେୟ୍ୟାସକ୍ତମାନସଂ" କହି ଧାବମାନ ହୋଇଥିଲେ, ସେତେବେଳେ ଯେଉଁ ଶାନ୍ତପ୍ରିୟ ରାମଚନ୍ଦ୍ର ରାଜଭବନରେ ଶାନ୍ତି ସ୍ଥାପନ କରିଥିଲେ, ସେହି ରାମଚନ୍ଦ୍ର ଆଜି ଭାବବିହ୍ୱଳ, ଶୋକସନ୍ତପ୍ତ । ତାହାଙ୍କର ହୃଦୟ "ବଜ୍ରାଦପି କଠୋରାଣି, ମୃଦୂନି କୁସୁମାଦପି" ।

ସୀତାବିଚ୍ଛେଦକାତର ରାମଚନ୍ଦ୍ର ବିରହ-ଯନ୍ତ୍ରଣା ସହ୍ୟ କରି ନ ପାରି ଯେତେବେଳେ ନାନା ସ୍ଥାନ ଅନ୍ୱେଷଣ କରୁଥିଲେ ଏବଂ ନାନା ସ୍ଥାନରେ ସନ୍ଧାନ କରିବାକୁ ଲକ୍ଷ୍ମଣଙ୍କୁ ପ୍ରେରଣ କରୁଥିଲେ, ସେ ସମୟର ତାହାଙ୍କର ମାନସିକ ଅବସ୍ଥା ଅତି କୋମଳଭାବାପନ୍ନ ଥିଲା । ନାନା ବେଶଧାରିଣୀ ପ୍ରକୃତି ଦେବୀଙ୍କଠାରେ ରାମଚନ୍ଦ୍ରଙ୍କର ଭ୍ରାନ୍ତ କଳ୍ପନା ଓ ଛାୟାମୟୀ ସୀତାମୂର୍ତ୍ତି ଦର୍ଶନ ଶିଶୁଜନୋଚିତ ହେଲେହେଁ କବିଙ୍କର ଉତ୍କୃଷ୍ଟ କବିତ୍ୱର ପରିଚାୟକ, ଏହା ନିଃସନ୍ଦେହ । ନିର୍ବାସିତ, ସ୍ନେହପ୍ରବଣ, ପ୍ରେମପରାୟଣ, ରାଜକୁମାରଙ୍କର ହୃଦ୍‌ଚ୍ଛେଦଜନକ ବିଳାପଧ୍ୱନି ଶ୍ରବଣ କଲେ ହୃଦୟ ଏକାବେଳକେ ଦ୍ରବୀଭୂତ ହୋଇଯାଏ । ଏହିପରି ଶତ ଶତ ମନୋହର ଚିତ୍ରରେ ରାମାୟଣ ପରିପୂର୍ଣ୍ଣ । କବିଙ୍କର ପ୍ରତିଭା ଅତୁଳନୀୟ, ରାମଚନ୍ଦ୍ରଙ୍କର ଚରିତ୍ର ସୌନ୍ଦର୍ଯ୍ୟ ମଧ୍ୟ ଚରମସୀମାରେ ଉପନୀତ । ଏହିସବୁ ଆଲୋଚନା କରୁଁ କରୁଁ ସେହି ପରମାରାଧ୍ୟ ଯୋଗୀନନ୍ଦନ ଶ୍ରୀ ରାମଚନ୍ଦ୍ରଙ୍କ ପାଦପଦ୍ମରେ ଭକ୍ତିପୂର୍ଣ୍ଣ ହୃଦୟରେ ସହସ୍ର ସହସ୍ର ପ୍ରଣାମ ନ କରି ଓ ମହର୍ଷି ବାଲ୍ମୀକିଙ୍କର ପ୍ରତିଭା ନିକଟରେ ଅବନତମସ୍ତକ ନ ହୋଇ ରହି ହୁଏ ନାହିଁ ।

ଶ୍ରୀ ଚନ୍ଦ୍ରଶେଖର ନନ୍ଦ ।

—:o:—

## ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ ।

ଚୈତନ୍ୟ ଦେବଙ୍କ ବିଷୟ ଲେଖିବା ପୂର୍ବେ ତାହାଙ୍କ ଜାତିକୁଳ ସମ୍ବନ୍ଧରେ କିଞ୍ଚିତ୍ ଆଲୋଚନା କରିବା ବୋଧ କରୁଁ ଅସଙ୍ଗତ ହେବ ନାହିଁ । ଚୈତନ୍ୟ ଦେବଙ୍କ ଜନ୍ମସ୍ଥାନ ନବଦ୍ୱୀପ, ପିତାଙ୍କ ନାମ ଜଗନ୍ନାଥ ମିଶ୍ର, ଜନନୀ—ଶଚୀ ଦେବୀ । ଏହାଙ୍କର ଦୁଇ ସ୍ତ୍ରୀ, ପଦ୍ମାବତୀ ପ୍ରଥମା, ଦ୍ୱିତୀୟା ସ୍ତ୍ରୀଙ୍କ ନାମ ବିଷ୍ଣୁପ୍ରିୟା ।

ଚୈତନ୍ୟ ଦେବ ଉତ୍କଳ ଶ୍ରେଣୀ ବ୍ରାହ୍ମଣ—ଜାତିରେ ଓଡ଼ିଆ । ତାଙ୍କର ଆଦ୍ୟ ବାସସ୍ଥାନ ଯାଜପୁର । ଏହାଙ୍କ ପିତାମହ ଉପେନ୍ଦ୍ର ମିଶ୍ର ପ୍ରତାପରୁଦ୍ର ଦେବଙ୍କଦ୍ୱାରା ଉତ୍ପୀଡ଼ିତ ହୋଇ ଶ୍ରୀହଟ୍ଟ ପଳାଇ ଯାଇଥିଲେ । ସୁଦୀର୍ଘ କାଳରୁ ନବଦ୍ୱୀପ ସଂସ୍କୃତଶିକ୍ଷାର ପୀଠସ୍ଥାନ ବୋଲି ପରିଚିତ । ଚୈତନ୍ୟ ଦେବଙ୍କ ପିତା ଜଗନ୍ନାଥ ମିଶ୍ର ସଂସ୍କୃତ

ଅଧ୍ୟୟନ ଉପଲକ୍ଷରେ ନବଦ୍ୱୀପରେ ବାସ କରୁଥିଲେ । ସେହି ଅବସ୍ଥାରେ ଶ୍ରୀ ଚୈତନ୍ୟଙ୍କ ଜନ୍ମ । ଚୈତନ୍ୟ ଦେବଙ୍କ ଜନ୍ମସ୍ଥାନ ନବଦ୍ୱୀପ, ମାତ୍ର ଆମ୍ଭେମାନେ ତାହାଙ୍କୁ ଓଡ଼ିଆ ବ୍ରାହ୍ମଣ ବୋଲି ପରିଚୟ ଦେଉଅଛୁଁ । ଏଥିରେ କେହି କେହି ଆପତ୍ତି ଉତ୍ଥାପନ କରି ପାରନ୍ତି; ଏ କ୍ଷେତ୍ରରେ ଆମ୍ଭପକ୍ଷ ସମର୍ଥନ ନିମନ୍ତେ କେତେକ କଥା କହିବା ଆବଶ୍ୟକ ବୋଧ କରୁଅଛୁଁ । ମନେ କରନ୍ତୁ, ଜନ୍ ଟାମସ୍ ଇଂରେଜ ସିଭିଲିୟାନ; କାର୍ଯ୍ୟୋପଲକ୍ଷରେ କଟକରେ ବାସ କରିବା ସମୟରେ ତାହାଙ୍କର ଏକ ପୁତ୍ର ଜାତ ହେଲା—ନାମ ରବର୍ଟ । ଆପଣ କଣ ରବର୍ଟଙ୍କୁ ଓଡ଼ିଆ ପିଲା କହିବେ, ନା ଇଂରେଜ ପିଲା କହିବେ ? ଅବଶ୍ୟ ଆମ୍ଭେମାନେ ବଙ୍ଗଳାର ସର୍ବଶ୍ରେଷ୍ଠ ସମ୍ବାଦପତ୍ର ସୋମପ୍ରକାଶର ସୁବିଖ୍ୟାତ ସମ୍ପାଦକ ପଣ୍ଡିତ ଦ୍ୱାରକାନାଥ ବିଦ୍ୟାଭୂଷଣଙ୍କୁ ଓଡ଼ିଆ ବୋଲି ପରିଚୟ ଦେବାକୁ ସାହସ କରି ନ ପାରୁଁ । କାରଣ ତାହାଙ୍କ ପୂର୍ବପୁରୁଷ ଓଡ଼ିଆ ବ୍ରାହ୍ମଣ ହେଲେ ମଧ୍ୟ ସେମାନେ ବହୁକାଳ ଯାବତ୍ ଉତ୍କଳ ସମ୍ପର୍କ ପରିତ୍ୟାଗ କରି ଯାଇଅଛନ୍ତି । ଶତାଧିକ ବର୍ଷାବଧି ଅନେକ ବଙ୍ଗୀୟ କାୟସ୍ଥ ଓ ବ୍ରାହ୍ମଣ ବଙ୍ଗରୁ ସମ୍ପୂର୍ଣ୍ଣରୂପେ ବିଚ୍ଛିନ୍ନ ହୋଇ ଆସି ଉତ୍କଳରେ ବାସ କରୁଥିଲେ ମଧ୍ୟ ସେମାନେ ଆପଣାକୁ ବଙ୍ଗାଳୀ ବୋଲି ପରିଚୟ ଦେବାକୁ ଗୌରବର ବିଷୟ ଜ୍ଞାନ କରନ୍ତି, ଏହି ହିସାବରେ ଆମ୍ଭେମାନେ ଷ୍ଟେଟନାଗପୁରର ସୁବିଖ୍ୟାତ ସ୍କୁଲ ଇନସ୍ପେକ୍ଟର ରାୟ ଷାରେଣର ଚକ୍ରବର୍ତ୍ତୀ ବାହାଦୁର ଏବଂ ନୀଳକଣ୍ଠ ସାର୍ବଭୌମ ଓ ଭବାନୀଚରଣ ପଞ୍ଚାନନ ପ୍ରଭୃତିଙ୍କୁ ଓଡ଼ିଆ ବ୍ରାହ୍ମଣ ବୋଲି ପରିଚୟ ଦେଇ ପାରୁଁ । କାରଣ ଏମାନଙ୍କ ମୂଳ ପୁରୁଷ ଗୋପୀଜନ ମିଶ୍ର ଉତ୍କଳ ଶ୍ରେଣୀ କାଶ୍ୟପ ଗୋତ୍ରୀୟ ଯଜୁର୍ବେଦୀ ବ୍ରାହ୍ମଣ, ଯାଜପୁରରୁ ଉଠି ଯାଇ ହୁଗଳୀ ଜିଲ୍ଲାରେ ବାସ କରିଥିଲେ । ମାତ୍ର ଯୁକ୍ତି ଏବଂ ସଦ୍ବ୍ୟବହାର ଅନୁରୋଧରେ ଆମ୍ଭେମାନେ ସେମାନଙ୍କୁ ଓଡ଼ିଆ ବୋଲି ପରିଚୟ ଦେବାକୁ ନିତାନ୍ତ ଅନିଚ୍ଛୁକ । କାରଣ ସେମାନେ ଉତ୍କଳ ଦେଶକୁ ସମସ୍ତ ବିଷୟରେ ସମ୍ପୂର୍ଣ୍ଣରୂପେ ସମ୍ପର୍କ ବିଚ୍ଛିନ୍ନ କରି ଯାଇଅଛନ୍ତି । ବଙ୍ଗର ନିତାନ୍ତ ନିଃସମ୍ପର୍କୀୟ କେତେକ କାୟସ୍ଥ ପ୍ରଭୃତି ଜାତି ଜନ୍ମସ୍ଥାନ, କର୍ମକ୍ଷେତ୍ର, ସୁଖ ସୌଭାଗ୍ୟର ଲୀଳାଭୂମି କଥା ବିସ୍ମୃତ ହୋଇ ଯେ ଆପଣାକୁ ବଙ୍ଗାଳୀ ବୋଲି ପରିଚୟ ଦେଉଥାନ୍ତି, ସେଥିର ଗୋଟିଏ ଭାରି ମଜବୁଦ୍ କାରଣ ଅଛି—ଓଡ଼ିଶାଟା ପଚା ଭାରି କଦର୍ଯ୍ୟ ଦେଶ, ଓଡ଼ିଆଗୁଡ଼ାକ ନିତାନ୍ତ ଛୋଟ ଜାତି ! ସୁତରାଂ ଜାଣି ଶୁଣି କବୁଲ ଜବାବ ଦେବା ସେମାନଙ୍କ ମତରେ ନିତାନ୍ତ ନିର୍ବୋଧତାର କାର୍ଯ୍ୟ ଅଟେ । ସେ ଦିନ ଜଣେ ବଙ୍ଗାଳୀ ବାବୁ ମିଷ୍ଟର ଦାସଙ୍କୁ କହିଥିଲେ--"ଆପଣ ତ ଜଣେ ବଙ୍ଗାଳୀ, ଓଡ଼ିଆ କିଆଁ ହେବେ ?" ଦାସେ ତାହାର ଉପଯୁକ୍ତ ଜବାବ ଦେଇଥିଲେ "ଆମ୍ଭେ ଜାଣୁ ଆମ୍ଭ ସାତପୁରୁଷ ଓଡ଼ିଆ ଅଟନ୍ତି ।" ଅର୍ଥାତ୍ ସେହି ବଙ୍ଗାଳୀ ବାବୁଙ୍କ ମତରେ ଓଡ଼ିଶାରେ ଏତେ ଗୋଟାଏ ଲୋକ ଜନ୍ମିବା ସମ୍ଭବପର ନୁହେ । ମାତ୍ର ବଙ୍ଗଦେଶର ସୁପ୍ରସିଦ୍ଧ ଲେଖକ ମାନନୀୟ ଜଜ ବାବୁ ସାରଦାଚରଣ ମିତ୍ର ଏମ୍. ଏ. ବି. ଏଲ୍. ଗତ ଚୈତ୍ର ମାସ ପ୍ରବାସୀରେ ଚୈତନ୍ୟ ଦେବଙ୍କ ସମ୍ବନ୍ଧରେ ଯେଉଁ ପ୍ରବନ୍ଧ ଲେଖିଅଛନ୍ତି, ସେଥିର ଏକ ଅଂଶର ମର୍ମ ଏହି—'ଓଡ଼ିଆମାନେ ବଙ୍ଗାଳୀ ଜାତିପରି ଭୀରୁ କାପୁରୁଷ ନୁହନ୍ତି । ସତର ଜଣ ପଠାଣ ପାଇକ ଡରରେ ବଙ୍ଗଳାର ସ୍ୱାଧୀନ ରଜା ଘର ଦ୍ୱାର ଛାଡ଼ି ପଳାଇ ଯାଇଥିଲେ; ମାତ୍ର ଓଡ଼ିଆମାନେ କ୍ରମାଗତ ଯୁଦ୍ଧ କରି ଦୁଇଶତ ବର୍ଷ ପର୍ଯ୍ୟନ୍ତ ପଠାଣମାନଙ୍କୁ ସୁବର୍ଣ୍ଣରେଖାର ଜଳ ଛୁଇଁବାକୁ ଦେଇ ନାହାନ୍ତି ଏବଂ ଓଡ଼ିଆମାନେ ଦୀର୍ଘକାଳ ଯାବତ୍ ତ୍ରିବେଣୀ ପର୍ଯ୍ୟନ୍ତ ଅଧିକାର କରିଥିଲେ ।' ଆମ୍ଭେମାନେ କି ସେହି ମହାପୁରୁଷମାନଙ୍କ ବଂଶଧର ?

ବୋଧ କରୁଁ କଥାପ୍ରସଙ୍ଗରେ ଆମ୍ଭେମାନେ

କଷ୍ଟରୁ ଦୂରରେ ଅସି ପଡ଼ଅନ୍ତି । କୌଣସି ବିଷୟ ଲେଖିବା ସମୟରେ ସହଜରେ କେତେକ ଅବାନ୍ତର ବିଷୟ ଅସି ପଡ଼ି ଯାଇଥାଏ । ଯାହା ହେଉ ଅମ୍ଭେମାନେ ବର୍ତ୍ତମାନ ପ୍ରସ୍ତାବିତ ବିଷୟ ଲେଖିବାକୁ ପ୍ରବୃତ୍ତ ହେଲୁଁ ।

"ଯଦା ଯଦାହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।"
"ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ ।
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଭଗବାନଙ୍କର ଶ୍ରୀମୁଖ ବାକ୍ୟ—ଧର୍ମର ଗ୍ଲାନି ଅଧର୍ମର ଅଭ୍ୟୁତ୍ଥାନ ଉପସ୍ଥିତ ହେଲେ ଅମ୍ଭେ ଆପଣାକୁ ସୃଜନ କରୁଁ । ଦୁଷ୍କୃତକାରୀମାନଙ୍କର ବିନାଶ, ସାଧୁମାନଙ୍କ ପରିତ୍ରାଣ ଏବଂ ଧର୍ମ ସଂରକ୍ଷଣ ସକାଶେ ଅମ୍ଭେ ଯୁଗେ ଯୁଗେ ଜନ୍ମଗ୍ରହଣ କରୁଁ ।

ବାସ୍ତବରେ ଜଗତର 'ଧର୍ମରାଜ୍ୟର ଇତିହାସ ଆଲୋଚନା କଲେ ଭଗବାନଙ୍କ ଶ୍ରୀମୁଖ ବାକ୍ୟର ସଫଳତା ସହଜରେ ଉପଲବ୍ଧି ହୁଏ । କେବଳ ଅଧର୍ମର ବିନାଶ ଓ ସତ୍ୟ ଧର୍ମର ପ୍ରଚାର ନିମନ୍ତେ ଖ୍ରୀଷ୍ଟ, ମହମ୍ମଦ, ବୁଦ୍ଧ, ନାନକ, ଚୈତନ୍ୟ ଏବଂ ରାମମୋହନଙ୍କ ଆବିର୍ଭାବ । ବଙ୍ଗ ଦେଶରେ ଯେଉଁ ସମୟରେ ଧର୍ମ ନାମରେ ନାନା ପ୍ରକାର କୁତ୍ସିତ କ୍ରିୟାକାଣ୍ଡ ଅନୁଷ୍ଠିତ ହେଉଥିଲା, ପଞ୍ଚମକାର ସେବନ ଲୋକେ ଉନ୍ମତ୍ତ ଥିଲେ, ଠିକ ସେହି ସମୟରେ ଚୈତନ୍ୟ ଦେବଙ୍କ ଉତ୍ପତ୍ତି । ଭକ୍ତ ସମ୍ପ୍ରଦାୟଙ୍କ ମନର ଧାରଣା, ଚୈତନ୍ୟ ଦେବ ବ୍ରହ୍ମ ସ୍ୱରୂପ ଅଟନ୍ତି, ଯାହା—

ଚୈତନ୍ୟୋ ଭଗବଦ୍ଭକ୍ତଃ
ନ ଚ ପୂର୍ଣ୍ଣୋ ନଚାଂଶକଃ ।

ଯାହାହେଉ ମହାତ୍ମା ଚୈତନ୍ୟଦେବ ଈଶ୍ୱରଙ୍କ ଅନୁଗୃହୀତ ମହାପୁରୁଷରୂପେ ଅନନ୍ତ କାଳ ଯେ ପୂଜିତ ହେବେ ସେ ବିଷୟରେ ସଂଶୟ ଜନ୍ମିବାର କାରଣ ଦେଖୁ ନାହୁଁ । ବଙ୍ଗୋତ୍କଳ ପ୍ରଦେଶସ୍ଥ ଅନେକ ଦେବାଳୟରେ ଚୈତନ୍ୟ ମୂର୍ତ୍ତି ଅନ୍ୟାନ୍ୟ ଦେବବିଗ୍ରହପ୍ରାୟ ପୂଜିତ ହେଉଅଛି ଏବଂ ଚିର କାଳ ହେବ ।

ଶିକ୍ଷା କର୍ମ୍ମା ସହବାସ ଗୁଣରେ ଯେ ଚୈତନ୍ୟ ଦେବ ଧର୍ମ ପ୍ରଚାର କାର୍ଯ୍ୟରେ ନିଯୁକ୍ତ ହୋଇ ଥିଲେ, ତାହା ନୁହେ । ତାହାଙ୍କ କାର୍ଯ୍ୟାବଳୀ ଆଲୋଚନା କଲେ ସହଜରେ ପ୍ରତୀତ ହୁଏ, ଭଗବାନ ଯେମନ୍ତ ପାଷଣ୍ଡଦଳର ଦଳନ ଏବଂ ପତିତମାନଙ୍କର ଉଦ୍ଧାର ନିମନ୍ତେ ଉପଯୁକ୍ତ ସମୟରେ ତାହାଙ୍କୁ ପୃଥିବୀକୁ ପ୍ରେରଣ କରିଥିଲେ । ଚୈତନ୍ୟ ଦେବଙ୍କ ଯଜ୍ଞୋପବୀତ ଧାରଣ ସମୟରେ ଯେଉଁ ଘଟନା ଘଟିଥିଲା, ଲୋଚନ ଦାସ ପଣ୍ଡିତ ଚୈତନ୍ୟମଙ୍ଗଳ ଗ୍ରନ୍ଥରେ ସେ ବିଷୟ ଏହିପରି ବର୍ଣ୍ଣନ କରିଅଛନ୍ତି:—

"ବାଣମୂର କର୍ଣ୍ଣେ ମନ୍ତ୍ର କହେ ତାର ବାପ ,
ଦଣ୍ଡ କରେ ଦେଖି ଡରେ ଡରଇଲ ପାପ ।
ଭିକ୍ଷା ମାଗଏ ପ୍ରଭୁ ଆଶ୍ରମ ଆଗର,
ସନ୍ନ୍ୟାସ ଆଶ୍ରମ ସର୍ବ ଆଶ୍ରମେର ସାର ।
ଯୁଗଧର୍ମ ସନ୍ନ୍ୟାସ କରିବ ମନେ ଛିଲ,
ମୁଣ୍ଡନେର କାଲେ ସେଇ ମନେତେ ପଡ଼ିଲ ।
ଏଇ ମନ ହଲ ବୁଝି ହଇଲ ଆଦେଶ,
କାଲ ସବ ଜନେର ଆମି ଘୁଚାଇବ କ୍ଲେଶ ।

ଚୈତନ୍ୟ ଦେବ ଏହି କଥା ମନରେ କରନ୍ତେ— "ପ୍ରେମାରମ୍ଭେ ମହାଦମ୍ଭେ ହୁଙ୍କାର ଗର୍ଜନ" କରିବାକୁ ଲାଗିଲେ ।

'ଚମକ ଲାଗିଲ ଦେଖି ସକଲ ବ୍ରାହ୍ମଣ'

* * *

'ସୁଦର୍ଶନ ଆଦି ଯତ ପଣ୍ଡିତ ପ୍ରଧାନ ।
ଏକଥ ହଇଯା ସବେ କରେ ଅନୁମାନ ॥
ସକଲ ପଣ୍ଡିତ ଦେଖି କରଏ ବିଚାର ।
ମାନୁଷ ନା ହୟ ଏଇ ଶଚୀର କୁମାର ॥'

ଉପସ୍ଥିତ ପଣ୍ଡିତମାନେ ସ୍ଥିର କଲେ ଏହି ବାଳକ ବିଷ୍ଣୁ ଅଂଶରୁ ଜାତ ହୋଇ ଅଛନ୍ତି । ସମସ୍ତେ ଏକ ବାକ୍ୟରେ କହିଲେ—

'ଲୋକ ନିସ୍ତାରିତେ ପ୍ରଭୁ ଯୁଗେ ଯୁଗେ ଜନ୍ମ ।'

ଚୈ: ମ:

ଯଜ୍ଞୋପବୀତ ଧାରଣ କରିବା ଉତ୍ତାରେ ଚୈତନ୍ୟ ଦେବ ଦିନେ ରଜନୀ ଯୋଗରେ ସ୍ୱପ୍ନ ଦେଖିଲେ— ଲୋଚନ ଦାସ ସେ ବିଷୟ ଏହି-ପରି ବର୍ଣ୍ଣନ କରିଅଛନ୍ତି :—

ନିଜ ପରିଜନ ଆଉ ପୁରଜନ ସବ
ସଭେ ସେଇ ଦେଖେ ଆଉ କରେ ଅନୁଭବ ।
କେମନତେ ନିଜ ଜନ ସଙ୍ଗେ ଅଛେ ପ୍ରଭୁ ।
ସ୍ୱପ୍ନ କହେ ସବାକାର ହାସେ ଲହୁ ଲହୁ ॥
ଶୁନ ସବ ଜନ ସ୍ୱପ୍ନ ଦେଖିନୁ ରଜନୀ ।
ଆଚମ୍ବିତେ ମୋରଠାଇଁ ଆଇଲ ଦ୍ୱିଜମଣି ॥
ମୋର କର୍ଣ୍ଣେ କହିଲ ସନ୍ନ୍ୟାସ ମନ୍ତ୍ର ଏକ ।
ଏଖନ ଆମାର ମନ ଅଛେ ପରତେକ ॥
ଯାବତ ହୃଦୟେ ମୋର ପ୍ରବେଶିଲ ମନ୍ତ୍ର ।
ସେ ଅବଧି ହୁଅ ମୋର ନା ହୟ ସ୍ୱତନ୍ତ୍ର ॥

ଏହି ସ୍ୱପ୍ନ ଦେଖିବାର କିଛି ଦିନ ଉତ୍ତାରେ ଦିନେ—

କାୟୁବ୍ୟାଧି ଛଲେ କୈଲ ପ୍ରେମ ପରକାଶ ।
ଭକ୍ତଗଣ ଲୟେ କୈଲ ବିବିଧ ବିଳାସ ॥

ଚୈ: ଚରିତାମୃତ

"ଆର ଏକଦିନ କେଶବ ଭରତୀ
ଆଇଲ ସନ୍ନ୍ୟାସୀବର ଅତି ଶୁଦ୍ଧମତି ॥

ଚୈ: ଚ:

ସେହି ସନ୍ନ୍ୟାସୀ କେଶବ ଭରତୀ ସମସ୍ତଙ୍କ ସାକ୍ଷାତରେ କହିଲେ—

"ଶୁଣ ଶୁଣ ସବ ଜନ ଆମାର ଉତ୍ତର
ସନ୍ନ୍ୟାସ କରିବେ ଏଇ ଦେବ ବିଶ୍ୱମ୍ଭର ।
ଛାଡ଼ିୟା ଯାଇବେ ପ୍ରଭୁ ଆପଣାର ବାସ
ଜନନୀ ଛାଡ଼ିୟା ଆର ନିଜ ସବ ଦାସ ।

ଚୈ: ମଙ୍ଗଳ

ତବେ ତ କରଲା ପ୍ରଭୁ ଗୟାତେ ଗମନ
ଈଶ୍ୱରପୁରୀର ସଙ୍ଗେ ତଥାଇ ମିଲନ ।
ଦୀକ୍ଷା ଅନନ୍ତର ହୈଲ ପ୍ରେମ ପରକାଶ

※ ※ ※

ଚୈ: ଚରିତାମୃତ

ଚୈତନ୍ୟ ଦେବ ଗୟାଧାମରୁ ଫେରି ଆସି ପୁନର୍ବାର ଗୃହବାସୀ ହେଲେ । କିନ୍ତୁ ପାଷଣ୍ଡ ଦଳର ଉଦ୍ଧାରନିମନ୍ତେ ଯାହାଙ୍କର ଆବିର୍ଭାବ, ସ୍ୱର୍ଗୀୟ ଅଗ୍ନି ଯାହାଙ୍କ ହୃଦୟରେ ପ୍ରଜ୍ୱଳିତ ହେଉଅଛି, ସଂସାରର ମାୟା ବନ୍ଧନ କି ତାହାଙ୍କୁ ଆୟତ୍ତ କରି ରଖି ପାରେ ? ଶଚୀ ଦେବୀଙ୍କର ନେତ୍ରମଣି ବିଷ୍ଣୁପ୍ରିୟାଙ୍କର ହୃଦୟସର୍ବସ୍ୱ କ୍ଷୀର କୁଟୁମ୍ବ ଏବଂ ବିଦ୍ୟାର୍ଥୀମାନଙ୍କର ପରମାଶ୍ରୟ ଚୈତନ୍ୟ ଦେବ ପୃଥିବୀର କୋଟି କୋଟି ମହା-ପାପିଙ୍କ ପରିତ୍ରାଣସକାଶେ ପୂର୍ଣ୍ଣଯୌବନ ଚତୁ-ର୍ବିଂଶତି ବର୍ଷ ବୟସରେ ସନ୍ନ୍ୟାସ ଗ୍ରହଣ କଲେ । ଚୈତନ୍ୟ ଚରିତାମୃତରେ ଏହିପରି ବର୍ଣ୍ଣିତ ଅଛି :—

"ଏସବ ପାଷଣ୍ଡୀ ତବେ ହଇବେ ନିସ୍ତାର
ଆର କୋନ ଉପାୟ ନାହିଁ ଏଇ ଯୁକ୍ତି ସାର ।
ଏଇ ଦୃଢ଼ ଯୁକ୍ତି କରି ପ୍ରଭୁ ଅଛେ ଘରେ
କେଶବ ଭାରତୀ ଆଇଲ ନଦୀୟା ନଗରେ ।
ପ୍ରଭୁ ତାରେ ନମସ୍କରି କୈଲ ନିମନ୍ତ୍ରଣ
ଭିକ୍ଷା କରାଇୟା ତାରେ କୈଲ ନିବେଦନ ।

* * * *

ଭାରତୀ କହେନ ତୁମି ସବ ଅନ୍ତର୍ଯାମୀ
ଯେ କର ସେ କରବ ସ୍ୱତନ୍ତ୍ର ନହି ଆମି ।
ଏତ ବଲି ଭାରତୀ କାଟୋୟାତେ ଗେଲା
ମହାପ୍ରଭୁ ତାହାଁ ଯାଇ ସନ୍ନ୍ୟାସ କରିଲା ।

ସନ୍ନ୍ୟାସ ଗ୍ରହଣ ଉତ୍ତାରେ ନବଦ୍ୱୀପରେ ଯାଇ ଭକ୍ତ ଏବଂ ପାରିଷଦମଣ୍ଡଳୀ ସହିତ ହରିସଙ୍କୀର୍ତ୍ତନରେ ନିମଗ୍ନ ଥାନ୍ତି, ଏମନ୍ତ ସମୟରେ ନୀଳାଚଳରେ ଶ୍ରୀମୂର୍ତ୍ତି ଦର୍ଶନ ସକାଶେ ତାହାଙ୍କର ପ୍ରବୃତ୍ତି ଜାତ ହେଲା । ଚୈତନ୍ୟ ଭାଗବତରେ ସେ ବିଷୟ ଏହିପରି ବର୍ଣ୍ଣିତ ଅଛି—

"ବାହ୍ୟ ପ୍ରକାଶିୟା ପ୍ରଭୁ ନିଜ କୁତୂହଲେ
ବଲିଲେନ ଆମି ଚଲିଲାମ ନୀଳାଚଲେ ।
ଜଗନ୍ନାଥ ପ୍ରଭୁର ହଇଲ ଆଜ୍ଞା ମୋରେ
ନୀଳାଚଲେ ତୁମି ଝାଟ ଆଇସ ସତ୍ୱରେ ।

ଏତ ବଲି ହରଲେନ ପ୍ରଭୁ ପୂର୍ବମୁଖ
ଭକ୍ତସବ ପାଇଲେନ ପରାନନ୍ଦ ସୁଖ ।
ତାନ ଇଚ୍ଛା କେହୋଁ ସେ ଜାନେନ ସବମାତ୍ର
ତାନ ଅନୁଗ୍ରହେ ଜାନେ ତାନ କୃପାପାତ୍ର ।

* * *

ଗଙ୍ଗାମୁଖ ହଇୟା ଚଲିଲା ଗୌରଚନ୍ଦ୍ର

* * *

ନିତ୍ୟାନନ୍ଦ ସଂହତି ସେ ନିଶା ସେଇ ଗ୍ରାମେ
ଅଛିଲେନ କୋନ ପୁଣ୍ୟବନ୍ତେର ଆଶ୍ରମେ ।
ତବେ ଆରଦିନେ ତତକ୍ଷଣେ ଭକ୍ତଗଣ
ଆସିୟା ପାଇଲ ସବେ ପ୍ରଭୁ ଦରଶନ ।
ତବେ ପ୍ରଭୁ ସର୍ବ ଭକ୍ତଗଣ କରି ସଙ୍ଗେ
ନୀଳାଚଳ ପ୍ରତି ଶୁଭ କରିଲେନ ରଙ୍ଗେ ।

ସେହିଠାରେ ମହାପ୍ରଭୁ ନିତ୍ୟାନନ୍ଦଙ୍କୁ କହିଲେ—

"ଶ୍ରୀବାସାଦି କରି ଯତ ସବ ଭକ୍ତଗଣ
ସବାର କରହ ଗିୟା ଦୁଃଖ ବିମୋଚନ ।
ଏଇ କଥା ତୁମି ଗିୟା ବଲିଓ ସବାରେ
ଆମି ଯାବ ନୀଳାଚଳଚନ୍ଦ୍ର ଦେଖିବାରେ ।
ସବାର ଅପେକ୍ଷା ଆମି କରି ଶାନ୍ତିପୁରେ
ରହିବାଙ୍ଗ ଶ୍ରୀ ଅଦ୍ୱୈତ ଆଚାର୍ଯ୍ୟେର ଘରେ ।
ତା ସବା ଲଇୟା ତୁମି ଆସିବା ସତ୍ୱର
ଆମି ଯାଇ ହରିଦାସେର ଫୁଲିୟା ନଗର ।

* * *

ହେନମତେ ଶ୍ରୀଗୌରସୁନ୍ଦର ଶାନ୍ତିପୁରେ
କରିଲା ଅଶେଷ ରଙ୍ଗ ଶ୍ରୀ ଅଦ୍ୱୈତ ଘରେ ।

* * *

ପୋହାଇଲା ନିଶା ପ୍ରଭୁ କରି ନିଜ କୃତ୍ୟ
ବସିଲେନ ଚତୁର୍ଦ୍ଦିଗ ବେଢ଼ି ସବ ଭୃତ୍ୟ ।
ପ୍ରଭୁ ବଲେନ ଆମି ଚଲିଲାମ୍ ନୀଳାଚଲେ
କେହୁ ଦୁଃଖ ନା ଭାବିବା ତୋମରା ସକଲେ ।
ନୀଳାଚଲଚନ୍ଦ୍ର ଦେଖି ଆମି ପୁନର୍ବାର
ଆସିୟା ହଇବ ସଙ୍ଗୀ ତୋମା ସବାକାର ।
ସବେ ଗିୟା ଗୃହେ ସବେ କରହ କୀର୍ତ୍ତନ
ଜନ୍ମ ଜନ୍ମ ତୁମି ସର୍ବ ଆମାର ଜୀବନ ।
ଭକ୍ତଗଣ ବଲେ ପ୍ରଭୁ ଯେ ତୋମାର ଇଚ୍ଛା
କାର ଶକ୍ତି ତାହା କରିବାରେ ପାରେ ମିଥ୍ୟା ।

ସେହି ସମୟରେ ପଠାଣମାନଙ୍କ ସହିତ ଓଡ଼ିଶା ମହାରାଜାଙ୍କର ଯୁଦ୍ଧ ହେଉଥିଲା । ଭକ୍ତମାନେ ତାହା ସ୍ମରଣ କରାଇ ଦେଇ ପ୍ରଭୁଙ୍କୁ କହିଲେ—

"ତଥାପିହ ହଇୟାଛେ ଦୁର୍ଘଟ ସମୟ
ସେ ରାଜ୍ୟେ ଏଖନ କେହ ପଥ ନାହିଁ ବୟ ।
ଦୁଇ ରାଜ୍ୟେ ହଇୟାଛେ ଅତ୍ୟନ୍ତ ବିବାଦ
ମହା ଦସ୍ୟୁ ସ୍ଥାନେ ସ୍ଥାନେ ପରମ ପ୍ରମାଦ ।

* * *

ପ୍ରଭୁ ବଲେ ଯେ ସେ କେନେ ଉତ୍ପାତ ନା ହୟ
ଅବଶ୍ୟ ଚଲିବ ମୁଇଁ ବଲିଲୁଁ ନିଶ୍ଚୟ ।
ବୁଝିଲେନ ଅଦ୍ୱୈତ ପ୍ରଭୁର ଚିତ୍ତ ବୃତ୍ତ
ଚଲିଲେନ ନୀଳାଚଲେ ନା ହଇଲ ନିବୃତ୍ତ ।

* * *

ସେଇକ୍ଷଣେ ମହାପ୍ରଭୁ ମତ୍ତ ସିଂହଗତି
ଚଲିଲେନ ଶୁଭ କରି ନୀଳାଚଲ ପ୍ରତି ।

* * *

ନିତ୍ୟାନନ୍ଦ ଗଦାଧର ମୁକୁନ୍ଦ ଗୋବିନ୍ଦ
ସଂହତି ଜଗଦାନନ୍ଦ ଆର ବ୍ରହ୍ମାନନ୍ଦ ।

ମାର୍ଗମଧ୍ୟରେ ରାମଚନ୍ଦ୍ରଖାଁ ସହିତ ଭେଟ ହେବାରୁ ସେ ପ୍ରଭୁଙ୍କୁ ଜଣାଇଲା— ·

ସବେମାତ୍ର ହଇୟାଛେ ବିଷମ ସମୟ
ସେ ଦେଶେ ଏ ଦେଶେ କେହ ପଥ ନାହିଁ ବୟ ।
ରାଜାରା ତ୍ରିଶୂଲ ପୁତିଆଛେ ସ୍ଥାନେ ସ୍ଥାନେ
ପଥିକ ପାଇଲେ ଜାଶୁ ବଲି ଲୟ ପ୍ରାଣେ

* * *

ଜାତି ପ୍ରାଣ ଧନ କେନେ ଆମାର ନା ଯାୟ
ରାତ୍ରେ ଅଜ ତୋମା ପାଠାଇବ ସର୍ବଥାୟ ।
ଶୁଣିୟା ହଇଲ ସୁଖୀ ବୈକୁଣ୍ଠେର ନାଥ

ସେହିଠାରେ ରାମଚନ୍ଦ୍ରଖାଁ ଶ୍ରୀଚୈତନ୍ୟଙ୍କ ଯାତ୍ରା ସକାଶେ ନୌକା ଆଣି ଦେଲେ ।

ହେନଇ ସମୟେ ହେ ରାମଚନ୍ଦ୍ର ଖାନ
ନୌକା ଆସି ଘାଟେ ପ୍ରଭୁ ହୈଲ ବଦ୍ୟମାନ ।
ତତକ୍ଷଣେ ହରି ବଲି ଗୌରାଙ୍ଗସୁନ୍ଦର
ଉଠିଲେନ ଗିୟା ପ୍ରଭୁ ନୌକାର ଉପର ।
ଶୁଭଦୃଷ୍ଟେ ଲୋକେରେ ବିଦାୟ ଦିୟା ପରେ
ଚଲିଲେନ ପ୍ରଭୁ ନୀଳାଚଲ ନିଜ ପୁରେ ।

ସେ ସମୟରେ ବଙ୍ଗଦେଶର ମାର୍ଗ ନିତାନ୍ତ ଦୁର୍ଗମ ଓ ଭୟସଙ୍କୁଳ ଥିଲା । ଦେଶ ଅରାଜକ ପ୍ରାୟ, ସୁବାଦାର ପଠାଣ କର୍ମଚାରୀମାନେ ଲୁଣ୍ଠନଦ୍ୱାରା ଅର୍ଥ ସଂଗ୍ରହ କରିବାକୁ କର୍ତ୍ତବ୍ୟକର୍ମର ପରାକାଷ୍ଠା ବୋଲି ଜ୍ଞାନ କରୁଥିଲେ । ଓଡ଼ିଶାର ମାର୍ଗ ଅପେକ୍ଷାକୃତ ସୁଗମ ଥିଲା, ଏଥିପାଇଁ ଧର୍ମପ୍ରାଣ ଜଗନ୍ନାଥଯାତ୍ରିମାନେ ଅତି ସଭୟ ଓ ନୀରବ ଭାବରେ ଅନ୍ଧକାର ମଧ୍ୟରେ ନୌକା ଯୋଗେ ମାର୍ଗ ଅତିକ୍ରମ କରିବାକୁ ବାଧ୍ୟ ହେଉଥିଲେ । ଶ୍ରୀ ଚୈତନ୍ୟଙ୍କ ଆଜ୍ଞାରେ ଶ୍ରୀ ମୁକୁନ୍ଦ ନୌକାରେ ବସି କୀର୍ତ୍ତନ ଆରମ୍ଭ କରିବାରୁ—

"ଅବୋଧ ନାବିକ ବଲେ ହଇଲ ସଂଶୟ
ବୁଝିଲାମ୍ ଆଜି ଆର ପ୍ରାଣ ନାହିଁ ରୟ ।
କୂଲେତେ ଉଠିଲେ ବାଘ ଲଇୟା ପଲାୟ
ଜଲେତେ ପଡ଼ିଲେ କୁମ୍ଭୀରେତେ ଧରେ ଖାୟ ।
ନିରନ୍ତର ଏ ପାଣିତେ ଡାକାଇତ ଫିରେ
ପାଇଲେଇ ଧନ ପ୍ରାଣ ଦୁଇ ନାଶ କରେ ।
ଏତେକ ଯାବତ ଉଡ଼ିଶାର ଦେଶ ଯାଇ ।
ତାବତ ନୀରବ ହଓ ସକଲ ଗୋସାଇଁ ।
ସଙ୍କୋଚ ହଇଲ ସବେ ନାବିକେର ବୋଲେ
ପ୍ରଭୁ ସେ ଭାସେନ ନିରବଧି ପ୍ରେମଜଲେ ।
କ୍ଷଣେକ ଉଠିୟା ପ୍ରଭୁ କରିଲ ହୁଙ୍କାର
ସବାରେ ବଲିଲେନ କେନେ ଭୟ କର କାର ।
ଏଇ ନା ସମ୍ମୁଖେ ସୁଦର୍ଶନ ଚକ୍ର ଫିରେ
ବୈଷ୍ଣବ ଜନେର ନିରବଧି ବିଘ୍ନ ହରେ ।
କିଛୁ ଚିନ୍ତା ନାହିଁ କର ହରିସଂକୀର୍ତ୍ତନ

* * *

ଶୁଣିୟା ପ୍ରଭୁର ବାକ୍ୟ ସବ ଭକ୍ତଗଣ
ଆନନ୍ଦେ ଲାଗିଲ ତବେ କରିତେ କୀର୍ତ୍ତନ ।
ହେନମତେ ମହାପ୍ରଭୁ ସଂକୀର୍ତ୍ତନରସେ
ପ୍ରବେଶ ହଇଲ ଆସି ଶ୍ରୀ ଉତ୍କଳ ଦେଶେ
ଉତ୍ତରିଲା ଗିୟା ନୌକା ଶ୍ରୀ ପୟାଗ ଘାଟେ
ନୌକା ହତେ ମହାପ୍ରଭୁ ଉଠିଲେନ ତଟେ ।
ପ୍ରବେଶ କରିଲ ଗୌରଚନ୍ଦ୍ର ଓଡ୍ରଦେଶେ

* * *

ସେଇ ସ୍ଥାନେ ଆଛେ ତାର ଗଙ୍ଗାଘାଟ ନାମ ।

ଏହି ଗଙ୍ଗାଘାଟ ଗଙ୍ଗା ନଦୀର କୂଳବର୍ତ୍ତୀ ଅଟେ । ଏହାର ଅନ୍ୟତର ନାମ ପ୍ରୟାଗ ଘାଟ । ଭାଗୀରଥୀ ଏହି ସ୍ଥାନରେ ବିବିଧ ଶାଖାରେ ବିଭକ୍ତ ହୋଇ ପ୍ରବାହିତ ହେଉଅଛନ୍ତି । ପାଣ୍ଡବଜ୍ୟେଷ୍ଠ ଯୁଧିଷ୍ଠିର ଏହିଠାରେ ଏକ ଶିବଲିଙ୍ଗ ସ୍ଥାପନ କରିଅଛନ୍ତି; ତାହାର ନାମ ଅମ୍ବୁଲିଙ୍ଗ । ଏହି ଘାଟରେ ନୌକାରୁ ଓହ୍ଲାଇ ଓଡ୍ର ଦେଶରେ ପହଞ୍ଚିଲେ ଅର୍ଥାତ୍ ସେ ସମୟରେ ଏହି ସ୍ଥାନ ଉତ୍କଳ ଅଧିକାରଭୁକ୍ତ ଥିଲା । ବର୍ତ୍ତମାନ ୨୪ ପରଗନା ଅନ୍ତର୍ଭୁକ୍ତ ହୋଇଅଛି । ଜୟାନନ୍ଦ ମିଶ୍ରେ ବୋଲନ୍ତି—"ଦେବନଦ ପାର ହୈୟା ସେୟା ଖାଲ ଦିୟା ଉତ୍ତରିଲା ତାମ୍ରଲିପ୍ତେ ।" ତାମ୍ରଲିପ୍ତ ଅର୍ଥାତ୍ ତମଲୁକ ଓଡ୍ର ଅନ୍ତର୍ଗତ ଥିଲା । ଆମ୍ଭେମାନେ ଦେଖିଅଛୁଁ, ତମଲୁକ ପର୍ଯ୍ୟନ୍ତ ଓଡ଼ିଆମାନଙ୍କର ବାସ ଅଟେ । ମାତ୍ର କ୍ରମଶଃ ସେମାନେ ବଙ୍ଗାଳୀ ପାଲଟି ଗଲେଣି । ତଥାପି ଅଦ୍ୟାବଧି ଅନେକ ଲୋକଙ୍କ ଘରେ ଜଗନ୍ନାଥ ଦାସ ଭଗବତ ଗାଦି ପୂଜିତ ହେଉଅଛି ।

ସର୍ବରାତ୍ରି ସେଇ ଗ୍ରାମେ କରି ସଂକୀର୍ତ୍ତନ
ଉଷାକାଲେ ମହାପ୍ରଭୁ କରିଲ ଗମନ ।

* *

ଏଇମତେ ମହାପ୍ରଭୁ ଚଲିଆ ଆସିତେ ।
କତ ଦିନେ ଉତ୍ତରିଲ ସୁବର୍ଣ୍ଣରେଖାତେ ।
ସୁବର୍ଣ୍ଣରେଖାର ଜଲ ପରମ ନିର୍ମଲ
ସ୍ନାନ କରିଲେନ ପ୍ରଭୁ ବୈଷ୍ଣବ ସକଲ ।

* *

ମୁହୂର୍ତ୍ତେକେ ଗେଲ ପ୍ରଭୁ ଜଲେଶ୍ୱର ଗ୍ରାମେ
ବରାବର ଗେଲ ଜଲେଶ୍ୱର ଦେବ ସ୍ଥାନେ ।

ଜଳେଶ୍ୱରରେ ଏକ ସୁପ୍ରସିଦ୍ଧ ମହାଦେବ ମନ୍ଦିର ଏବଂ ଅନ୍ୟାନ୍ୟ ଦେବାଳୟ ଅଛି ।

ଏଇମତେ ଜଳେଶ୍ୱରେ ସେ ସର୍ବ ରହିୟା
ଉଷା କାଳେ ଚଳିଲ ସକଳ ଭକ୍ତ ଲୟା ।

* * *

ବାଁଶଦହ ପଥେ ଏକ ଶାକ୍ତ କାସୀ ବେଶ
ଆସିୟା ପଡ଼ିଲ ପଥେ କରିଲ ଆଦେଶ ।
ମହାପ୍ରଭୁ ସେହି ଶାକ୍ତକୁ ଉଦ୍ଧାର କରି—
ଆଇଲ ରେମୁଣା ଗ୍ରାମେ ଗୌରାଙ୍ଗ ଶ୍ରୀହରି ।
ରେମୁଣାୟ ଦେଖି ନନ୍ଦ ମୂର୍ତ୍ତି ଗୋପୀନାଥ
ନୃତ୍ୟ କରିଲ ନୃତ୍ୟ ଭକ୍ତବର୍ଗ ସାଥ ।

ରେମୁଣା ଗ୍ରାମ ବାଲେଶ୍ୱର ଜିଲ୍ଲା ସଦର ମହକୁମାଠାରୁ ପ୍ରାୟ ୫ ମାଇଲ ଦୂର ପଶ୍ଚିମରେ ଅବସ୍ଥିତ । ଏ ସ୍ଥାନର ଗୋପୀନାଥ ଜୀଉ ଦେବମନ୍ଦିର ବଙ୍ଗୋତ୍କଳ ଦେଶରେ ସୁପ୍ରସିଦ୍ଧ । ବଙ୍ଗଦେଶୀୟ ଅନେକ ଶ୍ରୀକ୍ଷେତ୍ରଯାତ୍ରୀ ଦର୍ଶନ ନିମନ୍ତେ ଏଠାକୁ ଯାଉଥାନ୍ତି । ଶିବଚତୁର୍ଦ୍ଦଶୀ ବାସି ଦିବସଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଏଠାରେ ମହୋତ୍ସବ ହୋଇଥାଏ, ଅନେକ ଯାତ୍ରୀ ବୃନ୍ଦ ହୋଇଥାନ୍ତି ।

କତ ଦିନେ ମହାପ୍ରଭୁ ଗୌରାଙ୍ଗ ସୁନ୍ଦର
ଆଇଲେନ ଯାଜପୁର ବ୍ରାହ୍ମଣ ନଗର ।

* * *

ମହାତୀର୍ଥ ବହେ ତଥା ନଦୀ ବୈତରଣୀ
ଯାର ଦରଶନେ ପାପ ପଳାୟେ ଆପନ ।
ଜନ୍ତୁ ମାତ୍ର ଯେ ନଦୀର ହଇଲେଇ ପାର
ଦେବଗଣେ ଦେଖେ ଚତୁର୍ଭୁଜେର ଆକାର ।

* * *

ଯାଜପୁରେ ଆଛୟେ ଯତେକ ଦେବସ୍ଥାନ
ଲକ୍ଷ ଲକ୍ଷ ବତ୍ସରେଓ ଲଇତେ ପାରି ନାମ ।
ଦେବାଳୟ ନାହିଁ ହେନ ନାହିଁ ତଥା ସ୍ଥାନ
କେବଳ ଦେବେର ବାସ ଯାଜପୁର ଗ୍ରାମ ।
ପ୍ରଥମେ ଦଶାଶ୍ୱମେଧ ଘାଟ ନ୍ୟାସୀମଣି
ସ୍ନାନ କରିଲେନ ଭକ୍ତ ସହିତ ଆପନି ।

ତବେ ପ୍ରଭୁ ଗେଲ ଆଜ ବରାହ ସମ୍ମୁଖେ
ନୃତ୍ୟ କରିଲ ନୃତ୍ୟ ଗୀତ ପ୍ରେମରସେ ।
ବଡ଼ ସୁଖୀ ହୈଲ ପ୍ରଭୁ ଦେଖି ଯାଜପୁର

ପୂର୍ବପୁରୁଷମାନଙ୍କ ଜନ୍ମସ୍ଥାନ ପୁଣ୍ୟକ୍ଷେତ୍ର ଯାଜପୁରର ପ୍ରତ୍ୟେକ ଦେବାଳୟ ପ୍ରତ୍ୟେକ ଗ୍ରାମ ଦେଖିବା ସଙ୍କାଶେ ଭକ୍ତବୃନ୍ଦଙ୍କୁ ପରିତ୍ୟାଗ କରି ଏକାକୀ ପ୍ରଚ୍ଛନ୍ନ ଭାବରେ ଭ୍ରମଣ କରିବାକୁ ଲାଗିଲେ । ଭକ୍ତବୃନ୍ଦ ପ୍ରଭୁଙ୍କୁ ନ ଦେଖି ମହା ବ୍ୟସ୍ତ ହେବାରୁ ନିତ୍ୟାନନ୍ଦ ଠାକୁର ସେମାନଙ୍କୁ ବୁଝାଇ କହିଲେ —

ନିତ୍ୟାନନ୍ଦ ବଲେ ସବେ ସ୍ଥିର କର ଚିତ୍ତ
ଜାନିଲାମ ପ୍ରଭୁ ଗିୟାଛେନ ଯେ ନିମିତ୍ତ ।
ନିଭୃତେ ଠାକୁର ସବ ଯାଜପୁର ଗ୍ରାମ
ଦେଖିବେନ ଦେବାଳୟ ଯତ ପୁଣ୍ୟ ସ୍ଥାନ ।

* * *

ପ୍ରଭୁଓ ବୁଲିୟା ସବ ଯାଜପୁର ଗ୍ରାମ
ଦେଖିୟା ଯତେକ ଯାଜପୁର ପୁଣ୍ୟ ସ୍ଥାନ
ସର୍ବ ଭକ୍ତଗଣ ଯଥା ଅଛେନ ବସିୟା
ଆର ଦିନ ସେଇ ସ୍ଥାନେ ମିଲିଲ ଆସିୟା ।

ଯାଜପୁରର ପ୍ରତ୍ୟେକ ଗ୍ରାମ ପ୍ରତ୍ୟେକ ଦେବାଳୟ ଭ୍ରମଣ ପୂର୍ବକ ଚୈତନ୍ୟ ଦେବ ସେ ସ୍ଥାନରୁ ଯାତ୍ରା କଲେ—

ହେନମତେ ମହାନନ୍ଦେ ଶ୍ରୀ ଗୌରସୁନ୍ଦର
ଆଇଲେନ କତ ଦିନେ କଟକ ନଗର ।
ଭାଗ୍ୟବତୀ ମହାନଦୀ ଜଲେ କରି ସ୍ନାନ
ଆଇଲେନ ପ୍ରଭୁ ସାକ୍ଷୀଗୋପାଲେର ସ୍ଥାନ ।
ସାକ୍ଷୀଗୋପାଲ ଦର୍ଶନ କରି—
"ତବେ ପ୍ରଭୁ ଆଇଲେନ ଶ୍ରୀଭୁବନେଶ୍ୱର
ଗୁପ୍ତକାଶୀବାସ ଯଥା କରେନ ଶଙ୍କର ।
ସର୍ବ ତୀର୍ଥ ଜଲ ଯଥା ବିନ୍ଦୁ ବିନ୍ଦୁ ଆଣି
ବିନ୍ଦୁସରୋବର ଶିବ ସୃଜିଲ ଆପନି ।
ଶିବ ପ୍ରିୟ ସରୋବର ଜାଣି ଶ୍ରୀ ଚୈତନ୍ୟ
ସ୍ନାନ କରି ବିଶେଷେ କରିଲ ଅତି ଧନ୍ୟ ।

* * *

ନୃତ୍ୟ ଗୀତ ଶିବ ଅଗ୍ରେ କରିଲ ଆନନ୍ଦ
ସେ ରାତ୍ରି ରହିଲ ସେହି ସ୍ଥାନେ ଗୌରଚନ୍ଦ୍ର ।
ସେହି ସ୍ଥାନେ ଶିବ ଯାଇଲେନ ସେଇମତେ
ସେହି କଥା କହି ସ୍କନ୍ଦ ପୁରାଣେର ମତେ ।
ଶ୍ରୀଚୈତନ୍ୟ ଭୁବନେଶ୍ୱରରେ ନିତ୍ୟକର୍ମାଦି ସମାପ୍ତ କରି ସେ ସ୍ଥାନରୁ ଯାତ୍ରା କଲେ—
ପଥେ ଯତ ଦେଖଏ ସୁକୃତି ନରଗଣ
ତାରା ବଲେ 'ଏଇ ତ ସାକ୍ଷାତ ନାରାୟଣ ।
ଚତୁର୍ଦ୍ଦିଗେ ବେଢ଼ିୟା ଚଲୟ ଭକ୍ତଗଣ
ଆନନ୍ଦ ଧାରାୟ ପୂର୍ଣ୍ଣ ସବାର ନୟନ ।
ସବେ ଗୋର ଦଣ୍ଡ ପ୍ରଭୁ ପ୍ରେମେର ଆବେଶେ
ପ୍ରହର ତିନେକ ଆସି ହଲ ପରବେଶେ ।
ଆଇଲେନ ପ୍ରଭୁ ମାତ୍ର ଆଠାରନାଳାୟ
ସର୍ବ ଭାବ ସମ୍ବରଣ କୈଲ ଗୌରରାୟ ।
ମନ୍ଦିର ସିଂହଦ୍ୱାରଠାରେ ଉପସ୍ଥିତ ହୋଇ ଭକ୍ତମାନଙ୍କୁ କହିଲେ—
"ତୋମରା ତ ଆମାର କରିଲା ବନ୍ଧୁ କାଯ
ଦେଖାଇଲା ଆଣି ଜଗନ୍ନାଥ ମହାରାଜ ।
ଏବେ ଆଗେ ତୋମରା ଚଲହ ଦେଖିବାରେ
ଆମି ବା ଯାଇବ ଆଗେ ତାହା ବଲ ମୋରେ ।
ମୁକୁନ୍ଦ ବଲେନ ତବେ ଆଗେ ତୁମି ଯାଓ
ଭାଲ ବଲି ଚଲିଲେନ ଶ୍ରୀ ଗୌରାଙ୍ଗ ରାୟ ।

* * *

ପ୍ରେମବଶ ହଇଲ ଗୌରଚନ୍ଦ୍ର ନୀଳାଚଲେ
ପ୍ରବେଶ ହଇଲ ଆସି ପୁରୀର ଭିତରେ ।
ଆବେଶେ ଚଲିଲା ପ୍ରଭୁ ଜଗନ୍ନାଥ ମନ୍ଦିରେ
ଜଗନ୍ନାଥ ଦେଖି ପ୍ରେମେ ହଇଲା ଅସ୍ଥିରେ ।
ଜଗନ୍ନାଥ ଆଲିଙ୍ଗିତେ ଚଲିଲ ଧାଇୟା
ମନ୍ଦିରେ ପଡ଼ିଲା ପ୍ରେମେ ଆବିଷ୍ଟ ହଇୟା ।
ଏହି ସମୟରେ ଦୈବାତ୍ ସାର୍ବଭୌମ ସେ ସ୍ଥାନରେ ଉପସ୍ଥିତ ହେଲେ । ଚୈତନ୍ୟ ଦେବଙ୍କ ସହିତ ତାଙ୍କର ଭେଟ ହେଲା ।
"ପ୍ରଭୁର ସୌନ୍ଦର୍ଯ୍ୟ ଆର ପ୍ରେମେର ବିକାର
ଦେଖି ସାର୍ବଭୌମ ହୈଲ ଆନନ୍ଦ ଅପାର ।

ଶ୍ରୀଚୈତନ୍ୟ ପ୍ରେମରେ ଆବିଷ୍ଟ ହୋଇ ଅଚେତନ ଭାବରେ ଥିଲେ । ସେହି ସମୟରେ ଜଗନ୍ନାଥ ଦେବଙ୍କ ଭୋଗର ସମୟ ଉପସ୍ଥିତ । ମାତ୍ର ଭୋଗ ସ୍ଥାନରେ ଚୈତନ୍ୟ ଦେବ ଅଚେତନ ଭାବରେ ପଡ଼ିଅଛନ୍ତି—
ସାର୍ବଭୌମ ତବେ ଉପାୟ କୈଲ
ଶିଷ୍ୟ ପଡ଼ିଛାଦ୍ୱାରା ନିଲ ବହାଇୟା
ଘରେ ଆନି ପବିତ୍ର ସ୍ଥାନେ ରାଖିଲ ଶୋଆଇୟା ।
ଶ୍ୱାସ ପ୍ରଶ୍ୱାସ ନାହିଁ ଯୁଥି ଉଦର ସ୍ପନ୍ଦନ
ଦେଖିୟା ଚିନ୍ତିତ ହୈଲ ଭଟ୍ଟାଚାର୍ଯ୍ୟେର ମନ ।
ସୂକ୍ଷ୍ମ ତୁଲା ଆନି ନାସା ଅଗ୍ରେତେ ଧରିଲ
ଈଷତ୍ ଚଲୟେ ତୁଲା ଦେଖି ଧୈର୍ଯ୍ୟ ହୈଲ ।
ଦେଖି ଭଟ୍ଟାଚାର୍ଯ୍ୟ ମନେ କରେନ ବିଚାର
ଏଇ କୃଷ୍ଣେର ମହାପ୍ରେମ ସାତ୍ତ୍ୱିକ ବିକାର ।

* * *

ଏତ କେନ୍ତେ ଭଟ୍ଟାଚାର୍ଯ୍ୟ ଆଛେନ ବସିୟା
ନିତ୍ୟାନନ୍ଦାଦି ସିଂହଦ୍ୱାରେ ଉତ୍ତରିଲ ଗିୟା ।
ତାହା ଦେଖି ଲୋକ କହେ ଅନ୍ୟାନ୍ୟ ବାତ
ଏକ ସନ୍ନ୍ୟାସୀ ଆସି ଦେଖି ଜଗନ୍ନାଥ ।
ମୂର୍ଚ୍ଛିତ ହଇୟା ଚେତନ ନା ହୟ ଶରୀରେ
ସାର୍ବଭୌମ ଲଇୟା ଗେଲ ଆପଣାର ଘରେ ।
ଶୁନି ତବେ ଜାନିଲେନ ମହାପ୍ରଭୁର କାର୍ଯ୍ୟ
ହେନ କାଲେ ଆଇଲ ତାହାଁ ଗୋପୀନାଥାଚାର୍ଯ୍ୟ ।
ମୁକୁନ୍ଦ ନିତ୍ୟାନନ୍ଦ ପ୍ରଭୃତି ପାରିଷଦବୃନ୍ଦ ପ୍ରଭୁଙ୍କ ଦଶାପ୍ରାପ୍ତି ଓ ସାର୍ବଭୌମ ଗୃହରେ ଅବସ୍ଥାନ ବିଷୟ ଶୁଣି ସମସ୍ତେ ବିଚାର କଲେ—
ଚଲ ସବେ ଯାଇ ସାର୍ବଭୌମେର ଭବନ
ପ୍ରଭୁ ଦେଖି ପାଛେ କରିବ ଈଶ୍ୱର ଦରଶନ ।
ଏତ ବଲି ଗୋପୀନାଥ ସବାରେ ଲଇୟା
ସାର୍ବଭୌମ ଘରେ ଗେଲ ହରଷିତ ହୈୟା ।
ସାର୍ବଭୌମ ସ୍ଥାନେ ଗିୟା ପ୍ରଭୁକେ ଦେଖିଲ
ପ୍ରଭୁ ଦେଖି ଆଚାର୍ଯ୍ୟେର ଦୁଃଖ ହର୍ଷ ହୈଲ ।
ସାର୍ବଭୌମ ଜାନାୟା ସବା ନିଲ ଅଭ୍ୟନ୍ତରେ
ନିତ୍ୟାନନ୍ଦ ଗୋସାଇଁରେ ତେହ କୈଲ ନମସ୍କାରେ ।

ସେ ସ୍ଥାନରେ ଭକ୍ତବୃନ୍ଦ ପ୍ରଭୁଙ୍କୁ * ଅଚୈତନ୍ୟାବସ୍ଥାରେ ପଡ଼ିଥିବାର ଦେଖି ଦୁଃଖିତ ଏବଂ ଅନନ୍ଦିତ ହେଲେ ଏବଂ ସାର୍ବଭୌମଙ୍କ ପୁତ୍ର ଚନ୍ଦନେଶ୍ୱରଙ୍କୁ ସଙ୍ଗରେ ନେଇ ଜଗନ୍ନାଥ ଦର୍ଶନକୁ ଗଲେ । ଦର୍ଶନ ଉତ୍ତାରେ ବାହୁଡ଼ି ଆସି ପ୍ରଭୁଙ୍କୁ ଜଡ଼ବସ୍ତୁ ଦେଖିଲେ । ତହିଁ ଉତ୍ତାରେ ପ୍ରଭୁଙ୍କ ନିକଟରେ—

ଉଚ୍ଚ କରି କରେ ସବେ ନାମସଙ୍କୀର୍ତ୍ତନ
ତୃତୀୟ ପ୍ରହରେ ହୈଲ ପ୍ରଭୁର ଚେତନ ।
ହୁଙ୍କାର କରିୟା ଉଠେ ହରି ହରି ବଲି
ଆନନ୍ଦେ ସାର୍ବଭୌମ ତାଁର ନୈଲ ପଦଧୂଳି ।

ତଦନନ୍ତର ପ୍ରଭୁ ପାରିଷଦଗଣପରିବେଷ୍ଟିତ ହୋଇ ସମୁଦ୍ରସ୍ନାନକୁ ଗଲେ । ସ୍ନାନ ଉତ୍ତାରେ ସାର୍ବଭୌମଙ୍କ ନିମନ୍ତ୍ରଣାନୁସାରେ ତାହାଙ୍କ ଘରେ ଭୋଜନ କଲେ । ସାର୍ବଭୌମ ପ୍ରଭୁଙ୍କ ସକାଶେ ମନ୍ଦିରରୁ ବିବିଧ ପ୍ରକାର ମହାପ୍ରସାଦ ଆଣାଇ ରଖିଥିଲେ । ପାରିଷଦପରିବେଷ୍ଟିତ ହୋଇ ପ୍ରଭୁ ପଂକ୍ତି ଭୋଜନରେ ବସିଥାନ୍ତି, ସାର୍ବଭୌମ ଭକ୍ତିପୂର୍ବକ ପରିବେଷଣ କରୁଥାନ୍ତି—

ସାର୍ବଭୌମ ପରିବେଷଣ କରେନ ଆପନେ
ପ୍ରଭୁ କହେ ମୋରେ ଦାଓ ଲାଫଡ଼ା ବ୍ୟଞ୍ଜନେ ।
ପିଠା ପାନା ଦେହ ତୁମି ଇହା ସବାକାରେ
ତବେ ଭଟ୍ଟାଚାର୍ଯ୍ୟ କହେ ଯୋଡ଼ ହାତ କରେ ।
ଜଗନ୍ନାଥ କୈଛେ କରିୟାଛେନ ଭୋଜନ
ଆଜି ସବ ମହାପ୍ରସାଦେ କର ଆସ୍ୱାଦନ ।
ଏତ ବଲି ପିଠା ପାନା ସବ ଖାଓୟାଇଲ
ଭିକ୍ଷା କରାଇୟା ଆଚମନ କରାଇଲ ।

ତଦନନ୍ତର ପ୍ରଭୁ ଯାଇ ଗୋପୀନାଥ ଆଚାର୍ଯ୍ୟଙ୍କ ଗୃହରେ ବସା କରି ରହିଲେ । ଦିନକରେ ସାର୍ବଭୌମ ପ୍ରଭୁଙ୍କ ବାସସ୍ଥାନ ପିତା, ଜାତି, ଗୁରୁ ପ୍ରଭୃତିର ପରିଚୟ ଗୋପୀନାଥ ଆଚାର୍ଯ୍ୟଙ୍କୁ ପଚାରିବାରେ ଆଚାର୍ଯ୍ୟ ଆପଣେ ପ୍ରଭୁଙ୍କର ପ୍ରକୃତ ପରିଚୟ ସାର୍ବଭୌମଙ୍କୁ ଦେଲେ । ସାର୍ବଭୌମ ବୈଦାନ୍ତିକ, ସୁତରାଂ ନିରାକାରବାଦୀ ; କିନ୍ତୁ ଚୈତନ୍ୟ ଦେବ ସାକାରବାଦୀ । କଥା ପ୍ରସଙ୍ଗରେ ଧର୍ମ ବିଷୟରେ ତର୍କ ଉଠିଲା । ଉଭୟେ ସ୍ୱ ସ୍ୱ ମତ ସମର୍ଥନ ନିମନ୍ତେ ଶାସ୍ତ୍ରୀୟ ବିବିଧ ପ୍ରକାର ପ୍ରମାଣ ପ୍ରୟୋଗ କରିବାକୁ ଲାଗିଲେ । ଅବଶେଷରେ ଶ୍ରୀମଦ୍ଭାଗବତ ୧ମ ସ୍କ: ୭ମ ଅ: ଆତ୍ମାରାମ ୧୦ମ ଶ୍ଲୋକ ପାଠ କରି ସାର୍ବଭୌମ ୯ ପ୍ରକାର ବ୍ୟାଖ୍ୟାଦ୍ୱାରା ଆତ୍ମପକ୍ଷ ସମର୍ଥନ କଲେ । ମାତ୍ର ଚୈତନ୍ୟ ଦେବ ସାର୍ବଭୌମକୃତ ବ୍ୟାଖ୍ୟା ଏକାବେଳକେ ପରିତ୍ୟାଗ କରି ଭିନ୍ନଭାବରେ ଅଷ୍ଟାଦଶ ପ୍ରକାର ବ୍ୟାଖ୍ୟା କରନ୍ତେ ସାର୍ବଭୌମ ପରାଜୟ ସ୍ୱୀକାର କଲେ ଏବଂ ଚୈତନ୍ୟଦେବଙ୍କ ଶ୍ରୀଚରଣରେ ପ୍ରଣତ ହୋଇ ଶିଷ୍ୟତ୍ୱ ସ୍ୱୀକାର କଲେ ।

କ୍ରମଶଃ

ଶ୍ରୀ ଫକୀରମୋହନ ସେନାପତି ।

——:o:——

## ଏକାଗ୍ରତା ।

ପଶାଖେଳେ ରତ ଥିଲେ ପ୍ରଭୁ ଯଦୁପତି
ଦ୍ୱାରକାସଦନେ, ସଙ୍ଗେ ରୁକ୍ମିଣୀ ରୂପସୀ
ଭୂତଳେ ରୂପିଣୀ ରମା, ରୂପିଣୀ ବାଗ୍‌ଦେବୀ
ସତ୍ୟଭାମା, ଜାମ୍ବବତୀ ଆଦି ମହିଷୀଏ
ପାର୍ଶ୍ୱେ ବସି ଦେଖୁଛନ୍ତି ଖେଳ କୁତୂହଳେ;
ଏକାଳେ ପ୍ରଭୁଙ୍କୁ ଦେଖି ସହସା ବିମନା
ପଚାରନ୍ତେ ଦେଖି ତାର ପାଟମହାଦେବୀ,
ସସ୍ମିତେ ଭାଷିଲେ ପ୍ରଭୁ "କୁରୁ ସଭାତଳେ
ଦ୍ରୌପଦୀଙ୍କ ଦୁଃଶାସନ କରେ ବିବସନା,
ଦ୍ୟୂତଜୟୀ କ୍ରୂର କୁରୁପତିର ଆଦେଶେ;
ଦ୍ୟୂତେ ହାରି ଯୁଧିଷ୍ଠିର ଗୃହ ଭାଇ ସହ,
କ୍ରୀତଦାସରୂପେ କୁରୁ ସଭାତଳେ ବସି,

ଦ୍ରୌପଦୀର ଏ ଲାଞ୍ଛନା ଦେଖନ୍ତୁ ନୟନେ;
ନୀରବ ସରବେ ମାତ୍ର, ନୀରବ ଯେସନ
ମନ୍ତ୍ରୌଷଧି-ରୁଦ୍ଧବୀର୍ଯ୍ୟ ଫଣାଧର ଫଣୀ,
ଭୀମର ସେ ମହାଗଦା, ଅର୍ଜ୍ଜୁନର ଧନୁ
ପଣପାଶେ ବନ୍ଧ ହୋଇ ଭଜନ୍ତି କ୍ଳୀବତା,
କୁରୁବୃଦ୍ଧ ପିତାମହ ଅଧୀନ ସଭାରେ,
ଅଧୀନ ବିଦୁର ପୁଣି ଦ୍ରୋଣ ମହାମତି,
ଅଧୀନ ଜଗତପୂଜ୍ୟ ପୁରୋଧାମଣ୍ଡଳୀ,
ଭଜନ୍ତି ମୌନ ସବେ ଅପମାନଭୟେ;
ଗୁରୁଜନଠାରେ ହରି ବସିଲେ ଗୁହାରି
ଉଚ୍ଚୈଃସ୍ୱରେ କୃଷ୍ଣା ମୋତେ ଡାକଇ ବିକଳେ;"
ଏହା କହି ଖେଳେ ରତ ହେଲାରୁ ମୁରାରି
ଭାଷିଲେ ଶ୍ରୀ ସତ୍ୟଭାମା "କି ନିଷ୍ଠୁର ହିଆ
ତୁମ୍ଭର, ହେ ପ୍ରାଣପତି, ତୁମ୍ଭ ପଦ୍ମପାଦେ
ରଖିଥାଇ ଯେ ଅବଳା ଲଯ୍ଯ ଅହର୍ନିଶି,
ଏ ଦଶା ତାହାର ଜାଣି ହେଉ ନାହିଁ କୃପା !
ଦ୍ରୌପଦୀ ତୁମ୍ଭର ଦାସୀ ବିଦିତ ଜଗତେ,
ହଟାଯେ ଉପାୟ ଫେଡ଼ ଦୁଃଖିର ଆରତ;"
ଉତ୍ତରିଲେ ଚକ୍ରପାଣି "ଅୟି ସୁହାସିନି,
ଭକ୍ତ ମୋର ଯାଜ୍ଞସେନୀ ଜାଣଇ ମୁଁ ଭଲେ,
ଜାଣଇ ମୁଁ ଡାକୁଅଛି ଆରତେ ସେ ମୋତେ,
ମାତ୍ର ବେନି ଭୁଜେ ଧରି ବସନ ସେ ଦୃଢ଼େ
ନିବାରଇ ଦୁଃଶାସନେ, ନିର୍ଭର ସେ ପେଣୁ
ନ ରଖି ମୋଠାରେ ରଖିଅଛି ନିଜ ଭୁଜେ;"
ଏହା କହି ରତ ହେଲେ ପୁଣି ଦ୍ୟୂତାମୋଦେ
ଯଦୁମଣି, କିଛିକ୍ଷଣ ପରେ ପୁଣି ଚାହିଁ
ବିସ୍ତାରିତ ନେତ୍ରେ ଗୃହ୍ନି ହସ୍ତିନାଭିମୁଖେ
କହିଲେ "ଅହାହା, ବଡ଼ ଆର୍ତ୍ତେ ସୁଲୋଚନା
ଯାଜ୍ଞସେନୀ ଡାକେ ମୋତେ ଭାସି ନେତ୍ରନୀରେ,
ତୋଳି ଊର୍ଦ୍ଧ୍ୱେ ଏକ ଭୁଜ, ଅନ୍ୟ ଭୁଜେ ଧରି
ସ୍ୱଦେହେ ବସନ ଦୃଢ଼େ," "ରଖ ପ୍ରଭୁ ଯାଇ"
ଉତ୍ତରିଲେ ସମସ୍ୱରେ ସର୍ବ ମହିଷୀଏ,
"ଉଚିତ କି ମଠ ଆଉ କରିବାର ଏବେ
ଏ ଅବସ୍ଥାରେ ତାର ହେ କୃପାବାରିଧି ?"
ଉତ୍ତରିଲେ ବନମାଳୀ "କେବି ମୁଁ ସମ୍ଭାଳ
ବାଳକ, ମାତ୍ର ସେ ବେଳ ଆସି ନାହିଁ ଏବେ;"
ଶୁଣି ଶ୍ରୀମୁଖର ବାଣୀ ରାଣୀଏ ବିସ୍ମୟେ
ଏକ ଆରେକର ମୁଖ ଚାହିଁ ହେଲେ ତୁନି;
ଗଣ୍ଡାଭାବ୍ୟଞ୍ଜକ ସେହି ନୀରବ ଚାହାଣୀ
ଦେଖି ପ୍ରଭୁ ଶ୍ରୀନିବାସ ହସି ମନେ ମନେ
ଆଗପରି ରତ ପୁଣି ହେଲେ ପଶାଖେଳେ;
ଟଳଟଳ ଟଳେ ପୁଣି ଅଳ୍ପକ୍ଷଣ ପରେ
ଟଳନାରୁ ସିଂହାସନ, ନୟନ ବିସ୍ତାରି
ହସ୍ତିନା ନଗରୀ ମୁଖେ ଦିବ୍ୟଦୃଷ୍ଟି ଦେଇ
ସ୍ତବ୍ଧ ଭାବେ ମୁହୂର୍ତ୍ତିକ ଚକ୍ର ଚକ୍ରାମଣି
କହିଲେ "ଗଲିଲି ଏବେ କୁରୁରାଜପୁରେ,
ରଖିବି କୃଷ୍ଣାର ଲଜ୍ଜା ବସନ ଯୋଗାଇ
ଶୂନ୍ୟରୁ, ଏବେ ସେ ଅନ୍ୟ ଆଶ୍ରା ଛାଡ଼ି ଦେଇ
ବେନିବାହୁ ଊର୍ଦ୍ଧ୍ୱେ ତୋଳି ଡାକୁଅଛି ମୋତେ,
ମୋ ବିହୁନେ ଅନ୍ୟ ଆଶ୍ରା ଦେଲାଣି ସେ ଛାଡ଼ି,
ଢାଳିଲାଣି ପାଦେ ମୋର ଯାବନ୍ତ ଭରସା,
ଟଳନରୁ ସିଂହାସନ ଜାଣିଲି ସେ ଏବେ
ଏକାଗ୍ରେ ଡାକଇ ମୋତେ ଅବିଭକ୍ତ ହୃଦେ;"
ଏହା କହି କାର୍ଯ୍ୟଯାକେ ଆସେହି ତକ୍ଷଣେ
ହସ୍ତିନା-ଅବାସ-ଦେଶେ ବିଜେ ହେଲେ ଯାଇ
ଲଜ୍ଜାନିବାରଣକାରୀ ବ୍ରହ୍ମାଣ୍ଡ-ଗୋସାଇଁ ।

ଶ୍ରୀ ବିଶ୍ୱନାଥ ରାୟ ।

## ସଂକ୍ଷିପ୍ତ ସମାଲୋଚନା ।

୧ । ବ୍ରଜବନ୍ଧୁବିହାର—ଶ୍ରୀ ମଣିଚରଣ ମହାପାତ୍ରଙ୍କଦ୍ୱାରା ବିରଚିତ; ମୂଲ୍ୟ ଅଠଅଣା । ଏହି ୧୬୫ ପୃଷ୍ଠାବ୍ୟାପୀ ପୁସ୍ତକଖଣ୍ଡି ପାଠ କରି ଦେଖିଲୁଁ, ମଣିଚରଣ ବାବୁଙ୍କର ପଦ୍ୟ ରଚନା କରିବାର କ୍ଷମତା ଯଥେଷ୍ଟ ଅଛି । ରଚନା ସର୍ବତ୍ର ସରଳ, ମଧୁର ଏବଂ ପ୍ରାଚୀନାନୁସାରୀ; ଅଥଚ ପ୍ରାଚୀନ ରଚନାରେ ଯାହା ସାଧାରଣ ଦୋଷ, ତାହା ଏଥିରେ ନାହିଁ । ମାତ୍ର ଗ୍ରନ୍ଥକାର କି ବିଷୟ ପ୍ରତିପାଦନ କରିବାପାଇଁ ବା କେଉଁ ନୂତନ ଭାବ ପାଠକ ସାଧାରଣଙ୍କୁ ଦେବାପାଇଁ ଏତେଗୁଡ଼ାଏ ଶକ୍ତି ଓ ସମୟ ଅକାତରେ ବ୍ୟୟ କଲେ, ବୁଝି ପାରିଲୁଁ ନାହିଁ । ଏକ ଅଡ଼େ ଶ୍ରୀକୃଷ୍ଣଙ୍କ ଦେବତ୍ୱ ପ୍ରତିପାଦନ ଚେଷ୍ଟା, ଅନ୍ୟ ଅଡ଼େ ଗୋପାଙ୍ଗନାମାନଙ୍କ ସହିତ ପାର୍ଥିବ ପଙ୍କିଳ ପ୍ରେମ-ଲୀଳା ବର୍ଣ୍ଣନ, ଏହା ଅଧୁନାତନ ଉନ୍ନତ ଏବଂ ମାର୍ଜିତ ରୁଚି ନିକଟରେ କିମ୍ଭୂତ କିମାକାର ପଦାର୍ଥ !

୨ । ଜାତୀୟସଙ୍ଗୀତ—ଖଲ୍ଲିକୋଟ-ଅଷ୍ଟ-ଦୁର୍ଗାଧୀଶ୍ୱର ରାଜା ଶ୍ରୀ ହରିହର ମର୍ଦ୍ଦରାଜ ଦେବଙ୍କ ଦ୍ୱାରା ପ୍ରକାଶିତ । ପୁସ୍ତକଖଣ୍ଡି ବିତରଣ ଉଦ୍ଦେଶ୍ୟରେ ପ୍ରକାଶିତ ହୋଇଥିବାର ଅବଗତ ହେଲୁଁ । ଏଥିରେ ବିଭିନ୍ନ ବ୍ୟକ୍ତିଙ୍କ ବିରଚିତ ପ୍ରାୟ ୫୦ ଟି ଗୀତ ଅଛି । 'ପ୍ରାଚୀବନ୍ଧୁ' ସମ୍ପାଦକ ପଣ୍ଡିତ ଶ୍ରୀ ନୀଳମଣି ବିଦ୍ୟାରତ୍ନ ମହାଶୟ ବିଜ୍ଞାପନ ପ୍ରଚାର ଏବଂ ପୁରସ୍କାର ଘୋଷଣା ପ୍ରଭୃତି ନାନା ଉପାୟରେ ସଙ୍ଗୀତଗୁଡ଼ିକ ସଂଗ୍ରହ କରିଥିବାର ଭୂମିକାରେ ବ୍ୟକ୍ତ କରିଅଛନ୍ତି । ଉତ୍କଳର ବର୍ତ୍ତମାନ ଅବସ୍ଥାରେ ଏପ୍ରକାର ଜାତୀୟ ସଙ୍ଗୀତ ବାହାରିବାର ସମ୍ଭାବନା, ତାହା ଆମ୍ଭେମାନେ ପୂର୍ବରୁ ବୁଝି ପାରିଥିଲୁଁ ଏବଂ ପ୍ରସଙ୍ଗକ୍ରମେ ତାହାର ଆଭାସ ମଧ୍ୟ ଦେଇଥିଲୁଁ । ସଙ୍ଗୀତଗୁଡ଼ିକ ଦେଖି ଆମ୍ଭମାନଙ୍କର ବିଶେଷ କିଛି ଭାବାନ୍ତର ଉପସ୍ଥିତ ହେଲା ନାହିଁ । ଯାହାହେଉ, ସଂଗ୍ରାହକ ମହାଶୟଙ୍କ ଉତ୍ସାହ ଏବଂ ପ୍ରକାଶକ ମହୋଦୟଙ୍କ ଜାତୀୟ ଅନୁରାଗକୁ ପ୍ରଶଂସା ନ କରି ରହି ପାରିଲୁଁ ନାହିଁ ।

୩ । ଜ୍ଞାନ-ଗଙ୍ଗା—ଖଲ୍ଲିକୋଟ-ଅଷ୍ଟଦୁର୍ଗାଧୀଶ୍ୱର ରାଜା ଶ୍ରୀ ହରିହର ମର୍ଦ୍ଦରାଜ ଦେବଙ୍କଦ୍ୱାରା ସମ୍ପାଦିତ ଓ ପ୍ରକାଶିତ; ମୂଲ୍ୟ ଏକଅଣା । ଏ କ୍ଷୁଦ୍ର ପୁସ୍ତିକା ଖଣ୍ଡିକରେ କେତେଗୁଡ଼ାଏ ବିଦେଶୀୟ ନୀତିଶୀଳ ଲେଖକ, କବି ଏବଂ ସାଧୁ ମହାତ୍ମାମାନଙ୍କର ଜ୍ଞାନଗର୍ଭ ଉକ୍ତିର ଉତ୍କଳାନୁବାଦ ପ୍ରକାଶିତ ହୋଇଅଛି । ଭଲ କଥା ସକଳ ସମୟରେ ଓ ସକଳ ଅବସ୍ଥାରେ ଭଲ ।

୪ । ଆର୍ଯ୍ୟ-ମିତ୍ର—ଶ୍ରୀ ବନମାଳୀ ଗୁରୁଙ୍କ ପ୍ରଣୀତ; ମୂଲ୍ୟ ଛ ପଇସା ମାତ୍ର । ଲେଖକ ଭୂମିକାରେ ପୁସ୍ତିକାର ନାମକରଣ ପ୍ରସଙ୍ଗରେ ଯାହା କହିଅଛନ୍ତି, ପୁସ୍ତିକା ପାଠ କରି ତାହାର ସଫଳତା କିଛି ଦେଖି ପାରିଲୁଁ ନାହିଁ । ୧୩ ପୃଷ୍ଠାର କ୍ଷୁଦ୍ର ପୁସ୍ତକରେ ଆର୍ଯ୍ୟମହିମା ବର୍ଣ୍ଣନ କରି "ଆର୍ଯ୍ୟ-ମିତ୍ର" କରିବାର ଆକାଂକ୍ଷା ନିତାନ୍ତ ବାଳକୋଚିତ ।

୫ । ସନାତନଧର୍ମପତ୍ରିକା ( ମାସିକ ପତ୍ର )—ପାଟଣା ମହାରାଜ ଶ୍ରୀଯୁକ୍ତ ଦଳଗଞ୍ଜନ ସିଂହ ଦେବଙ୍କ ଆନୁକୂଲ୍ୟରେ ବଲାଙ୍ଗିର ସନାତନ ଧର୍ମସଭାରେ ସମ୍ପାଦିତ । ଡାକମାସୁଲ ସମେତ ଅଗ୍ରିମ ବାର୍ଷିକ ମୂଲ୍ୟ ଟ ୧ ମାତ୍ର । ଆକାର ବହିରାବରଣ ସହିତ ଡବଲ ୮ ପେଜୀ ଦୁଇ ଫର୍ମା । ଆମ୍ଭେମାନେ ପ୍ରଥମ ସଂଖ୍ୟା ଖଣ୍ଡିକ ( ଚୈତ୍ର ମ ସର ) ପାଇଥିବାର କୃତଜ୍ଞତା ସହକାରେ ପ୍ରକାଶ କରୁଅଛୁଁ । ଗୋଟିଏ ସଂଖ୍ୟା ଦେଖି ମତ ପ୍ରକାଶ କରିବା କେତେଦୂର ନିରାପଦ ନୁହେ । ପତ୍ରିକା ଖଣ୍ଡି ସୁପରିଚାଳିତ ହୋଇ ଧର୍ମ ବିଷୟରେ ଜନସାଧାରଣଙ୍କୁ କିଛି ଶିକ୍ଷା ଦେଇ ପାରିଲେ ଅବଶ୍ୟ ଭଲ କଥା । ଆମ୍ଭେମାନେ ସେହିକି ଦେଖିବାର ଆଶାରେ ରହିଲୁଁ ।

## ମୂଲ୍ୟପ୍ରାପ୍ତି ।

### ରାଜସଂସ୍କରଣ—

୧୯୦୩

ଶ୍ରୀଯୁକ୍ତ ରାଜା ସାହେବ ନରସିଂହପୁର — ନରସିଂହପୁର — ଟ ୧୦ <
„ ରାମଚନ୍ଦ୍ର ଛାମୁପଟ୍ଟନାୟକ — ଖଲ୍ଲିକୋଟ — ଟ ୧୦ <
„ ରାୟ ରାଧାନାଥ ରାୟ ବାହାଦୁର — କଟକ — ଟ ୫ <
„ ଦାମୋଦର ପଟ୍ଟନାୟକ — ଅଠଗଡ଼ — ଟ ୫ <
„ ରାମଚନ୍ଦ୍ର ଦାଶ — ପୁରୀ — ଟ ୫ <
„ ବାଳମୁକୁନ୍ଦ କହ୍ନବାର — ଭବାନୀପାଟଣା — ଟ ୫ <
„ ବକ୍ସି ଲୋକନାଥ ବିଦ୍ୟାଧର ମହାପାତ୍ର — ଖେଡ଼ଙ୍ଗା — ଟ ୫ <

### ସାଧାରଣ ସଂସ୍କରଣ—

୧୯୦୧

ଶ୍ରୀଯୁକ୍ତ ବଳଭଦ୍ର କର ସୋନପୁର ଟ ୨ <

୧୯୦୨

ଶ୍ରୀଯୁକ୍ତ ବଳଭଦ୍ର କର ସୋନପୁର ଟ ୨ <
„ ନୀଳମଣି ଦାସ „ ଟ ୧ <
„ ବାଳକୃଷ୍ଣ ମହାପାତ୍ର କଟକ ଟ ୧ <
„ ଗୋପୀନାଥ ଦାଶ
ବାଲେଶ୍ୱର ଟ ୧ <

୧୯୦୩

ଶ୍ରୀଯୁକ୍ତ ବଳରାମ ଭ୍ରମରବର କଟକ ଟ ୨ <
„ ବ୍ରଜମୋହନ ମହାପାତ୍ର
ନରସିଂହପୁର ଟ ୨ <
„ ମହାଦେବ ଘଡ଼ାଇ
ଅନନ୍ତହେଲା ଟ ୨ <
„ ଦୀନବନ୍ଧୁ ଷଡ଼ଙ୍ଗୀ
ଦିବ୍ୟସିଂହପୁର ଟ ୧ <
„ ବାସୁଦେବ ତ୍ରିପାଠୀ
ସୋନପୁର ଟ ୨ <
„ ଶିବରାମ ସାହୁ „ ଟ ୨ <
„ ଅଚ୍ୟୁତାନନ୍ଦ ରାଉତ୍ରାଅ
ରମ୍ଭେଲ ଟ ୨ <

ଶ୍ରୀଯୁକ୍ତ ବେଞ୍ଜାମିନ ମହାନ୍ତି କଟକ ଟ ୧ <
„ ଗୋଲାପ ସିଂହ ସମ୍ବଲପୁର ଟ ୨ <
„ କୃଷ୍ଣଚନ୍ଦ୍ର କର ଦର୍ପଣ ଟ ୨ <
„ ଗୋପୀନାଥ କାବ୍ୟତୀର୍ଥ
କଟକ ଟ ୧ <
„ ପଦ୍ମନାଭ ଶତପଥୀ କଟକ ଟ ୧ <
„ ଚକ୍ରଧର ମହାନ୍ତି ଚିକାହୋଲ ଟ ୨ <
„ କୃଷ୍ଣପ୍ରସାଦ ପଣ୍ଡା କଣ୍ଡାଉ ଟ ୧ <
„ ବ୍ରଜବନ୍ଧୁ ମିଶ୍ର କଟକ ଟ ୦ ୪
„ ଅଚ୍ୟୁତାନନ୍ଦ ଦାସ „ ଟ ୧ <
„ ନାରାୟଣ ଦାଶ „ ଟ ୧ <
„ ଜାନକୀନାଥ ବୋଷ „ ଟ ୨ <
„ କ୍ଷେତ୍ରମୋହନ ଦାସ „ ଟ ୧ <
„ ରାଧାନାଥ ପତି ମେଦନୀପୁର ଟ ୨ <
„ ରାଧାକୃଷ୍ଣ ବୋଷ ବାଲେଶ୍ୱର ଟ ୧ <
„ ମଦନମୋହନ ପଟ୍ଟନାୟକ
ବଡ଼ମ୍ବା ଟ ୨ <
„ ଗୋବିନ୍ଦପ୍ରସାଦ ମହାପାତ୍ର
ଭାଗପୁର ଟ ୧ <

୧୯୦୪

ଶ୍ରୀଯୁକ୍ତ ବଳଭଦ୍ର ପଣ୍ଡା ଭବାନୀପାଟଣା ଟ ୨ <

,, ବ୍ରଜମୋହନ ମହାପାତ୍ର
ନରସିଂହପୁର ଟ ୨ ୵

,, ସହଦେବ ଗଡ଼ନାୟକ
ଅବଢଢେଙ୍କା ଟ ୨ ୵

,, ଅଚ୍ୟୁତାନନ୍ଦ ଗଡ଼ନ୍ତ୍ରଆ ରମ୍ଭେଲ ଟ ୨ ୵

,, ଗୋଲାପ ସିଂହ ସମ୍ବଲପୁର ଟ ୨ ୵

,, ମଧୁସୂଦନ ଦାଶ କଟକ ଟ ୧ ୵

,, କୈଳାଶଚନ୍ଦ୍ର ଭରଥର
କଟକ ଟ ୧ ୵

,, ସଦାନନ୍ଦ ପଟ୍ଟନାୟକ ,, ଟ ୧ ୵

,, ଆନନ୍ଦଚନ୍ଦ୍ର ପଢ଼ ,, ଟ ୧ ୵

,, ଚକ୍ରଧର ମହାନ୍ତି ଢଢାବୋଲ ଟ ୨ ୵

,, କୃଷ୍ଣପ୍ରସାଦ ପଣ୍ଡା କଣ୍ଟାଉ ଟ ୨ ୵

,, ଧର୍ମାନନ୍ଦ ପଟ୍ଟନାୟକ କଟକ ଟ ୧ ୵

,, ଗୋପୀନାଥ ମିଶ୍ର ,, ଟ ୧ ୵

,, ଅଭିରାମ ଭଞ୍ଜ ,, ଟ ୧ ୵

,, ଦଧିବାମନ ଦାସ ,, ଟ ୦ ୳

,, ଗଣେଶ୍ୱର ମିଶ୍ର ସମ୍ବଲପୁର ଟ ୨ ୵

ଶ୍ରୀଯୁକ୍ତ ଚନ୍ଦ୍ରଶେଖର ନନ୍ଦ କଟକ ଟ ୧ ୵

,, ଜୟରାମ ଗିରି ଝୋରଉ ଟ ୧ ୵

,, ହରେକୃଷ୍ଣ ପଟ୍ଟନାୟକ ବାରିପଦା ଟ ୧ ୵

,, ମହାରାଜା ଶ୍ରୀ ବ୍ରଜମୋହନ ଦେବ
ବର୍ମନ୍ ଭବାନୀପାଟନା ଟ ୨ ୵

,, ବାଞ୍ଛାନିଧି ପଣ୍ଡା ଶଙ୍ଖବାସ ଟ ୧ ୵

,, ରାଧାନାଥ ପଢ଼ ମେଦନୀପୁର ଟ ୨ ୵

,, ମଦନମୋହନ ପଟ୍ଟନାୟକ
ବଡ଼ମ୍ବା ଟ ୨ ୵

,, ଜୟରାମ ରାୟ କଟକ ଟ ୧ ୵

,, ଉଦୟନାଥ ଦାଶ ,, ଟ ୦ ୳

,, ସେଖ ମହମ୍ମଦ ଜସିର ଅଲି
ବାମଣ୍ଡା ଟ ୧ ୵

,, ଫକୀର ଉଦଗାତା
ଡି.ରାମଚନ୍ଦ୍ରପୁର ଟ ୧ ୵

୧୯୦୫-୧୯୦୬ ପାଇଁ ଅଗ୍ରିମ ।

ଶ୍ରୀଯୁକ୍ତ ବଳଭଦ୍ର ପଣ୍ଡା ଭବାନୀପାଟଣା ଟ ୩ ୵

# ବିଜ୍ଞାପନ ।

—:o:—

ଶ୍ରୀ ମଧୁସୂଦନ ରାଓ ପ୍ରଣୀତ ନୂତନ ପଦ୍ୟ ପୁସ୍ତକ ।

"କୁସୁମାଞ୍ଜଳି"—ମୂଲ୍ୟ ଟ ୦ । ଏହି କବିତା ପୁସ୍ତକର 'ଋଷି ପ୍ରାଣେ' ପ୍ରଭୃତି କେତୋଟି କବିତା ଶ୍ରୀ ରବୀନ୍ଦ୍ରନାଥ ଠାକୁର ପ୍ରଭୃତି ନୂତନ ବଙ୍ଗୀୟ ଶ୍ରେଷ୍ଠ କବିଙ୍କ କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ଉତ୍କଳ ଗାଥା"—ମୂଲ୍ୟ ଟ ୦/ କବିବର ରାଧାନାଥ ରାୟ ପ୍ରଭୃତି କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ବସନ୍ତ ଗାଥା"—ମୂଲ୍ୟ ଟ ୦/୯ ଉତ୍କଳର ସମସ୍ତ ସୁଲେଖକ କର୍ତ୍ତୃକ ପ୍ରଶଂସିତ ।

"ସଙ୍ଗୀତମାଳା"—ମୂଲ୍ୟ ଟ ୦ । ଏଥିରେ ବହୁପ୍ରଶଂସିତ ଏକଶତ ଭକ୍ତିରସର ସଙ୍ଗୀତ ଅଛି ।

"ଅଙ୍କପ୍ରଶ୍ନ ସମାଧାନ"—ମୂଲ୍ୟ ଟ ୦୳ ଅଙ୍କ ପୁସ୍ତକରେ ଥିବା କଠିନ ପ୍ରଶ୍ନମାନ ଏଥିରେ କଷା ଯାଇଅଛି ।

☞ ଏହି ୫ ଖଣ୍ଡ ପୁସ୍ତକର ମୂଲ୍ୟ ମୋଟରେ ଟ ୧, କିନ୍ତୁ ଏ ପାଞ୍ଚ ଖଣ୍ଡଯାକ ନେଲେ ଟ୦।୵୯ ମୂଲ୍ୟରେ ଦିଆଯିବ । ମଫସଲବାସୀମାନଙ୍କୁ ଡାକଖର୍ଚ୍ଚ ଟ ୦/ ଅଧିକା ଦେବାକୁ ହେବ ।

ଶ୍ରୀ ପ୍ରଶାନ୍ତ ରାଓ
ନର୍ମାଲ ସ୍କୁଲ, କଟକ ।

---

ସଂସ୍କୃତ ମହାଭାରତର ଅବିକଳ ପଦ୍ୟାନୁବାଦ ରାଜା କୃଷ୍ଣ ସିଂହ କୃତ ମହାଭାରତ ଉତ୍ତମରୂପେ ସଂଶୋଧିତ ମୁଦ୍ରିତ ହୋଇ ନିମ୍ନଲିଖିତ ପର୍ବମାନ ଏ ପ୍ରେସରେ ବିକ୍ରୟାର୍ଥ ପ୍ରସ୍ତୁତ ଅଛି । ଅନ୍ୟାନ୍ୟ ପର୍ବମାନ ଯନ୍ତ୍ରସ୍ଥ । ଶୀଘ୍ର ପ୍ରକାଶିତ ହେବ ।

| | | | |
|---|---|---|---|
| ସଭାପର୍ବ | ଟ ୦ ୳୵ | କର୍ଣ୍ଣପର୍ବ | ଟ ୦ ୱ |
| ବିରାଟପର୍ବ | ଟ ୦ ୳ | ଶଲ୍ୟାଦି ପର୍ବତ୍ରୟ ଏକତ୍ରେ | ଟ ୦ ୱ |
| ଉଦ୍ୟୋଗପର୍ବ | ଟ ୧ ୯ | | |

ଜଗନ୍ନାଥ ପ୍ରେସ
କଟକ } ଶ୍ରୀ ଅଭିନ୍ନ ଦାସ
ପ୍ରେସ ମେନେଜର ।

---

# ବିଚିତ୍ର ହରିବଂଶ ।

—:—

ନାନା ପ୍ରକାର ପ୍ରାଚୀନ ଉତ୍ତମ ଛନ୍ଦରେ ଶ୍ରୀ ବାଳୁକେଶର ଅତିବୃଦ୍ଧି ଦ୍ୱାରା ବିରଚିତ ।

ସମଗ୍ର ପୁସ୍ତକଟି ପ୍ରାୟ ୬୦୦ ପୃଷ୍ଠା ହେବ । ୪୦୦ ପୃଷ୍ଠା ଛପା ସରିଲାଣି । ଆଗାମୀ ଦୁର୍ଗାପୂଜା ବେଳକୁ ପୁସ୍ତକ ବାହାରି ପାରିବ । ଛପା ଶେଷ ହେଲେ ଏହି ବୃହତ୍ ପୁସ୍ତକର ମୂଲ୍ୟ ନିମ୍ନରେ ଟ ୨। (ଦୁଇ ଟଙ୍କା ଚାରିଅଣା)ରୁ ଊଣା ହେବ ନାହିଁ । ମାତ୍ର ବର୍ତ୍ତମାନ ଯେଉଁମାନେ ପତ୍ର ଲେଖି ଗ୍ରାହକ ହେବେ, ସେମାନଙ୍କୁ ଟ ୧॥ ମୂଲ୍ୟରେ ଦିଆଯିବ । ପୁସ୍ତକ ବାହାରିବା ମାତ୍ରେ [illegible] ଡାକରେ ପୁସ୍ତକ ପଠାଇ ଦିଆଯିବ । ଡାକମାସୁଲ ଓ ଭି: ପି: ଖରଚ ଦେବେ ।

ଚାନ୍ଦିନୀଚୌକ, କଟକ
୨।୮।୧୯୦୪ } ଶ୍ରୀ [illegible]ପ୍ରସାଦ ନନ୍ଦ
ମେନେଜର, ଉତ୍କଳସାହିତ୍ୟ ପ୍ରେସ ।

୮ ମ ଭାଗ, ଭାଦ୍ର, ୧୩୧୧ । ୫ମ ସଂଖ୍ୟା ।

# ଉତ୍କଳ-ସାହିତ୍ୟ ।

ମାସିକପତ୍ର ଓ ସମାଲୋଚନ ।

—:o:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—:o —

THE UTKAL SAHITYA PRESS.
CUTTACK.
1904.

ବାର୍ଷିକ ମୂଲ୍ୟ ଡାକମାସୁଲ ସମେତ ଟ ୨ ୧ ପ୍ରତି ସଂଖ୍ୟାର ମୂଲ୍ୟ ଟ ୦ ।/

## ସୂଚୀ ।




ଡାକ୍ତର ମେଜର ସାହେବଙ୍କର ବିଶ୍ୱବିଖ୍ୟାତ ସେହି

# ଇଲେକ୍ଟ୍ରୋ-ସାଲସା ।

ଚିକିତ୍ସାଜଗତରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଅଛି ।

ରକ୍ତ ମାନବ ଦେହର ଜୀବନୀଶକ୍ତି । ତାଡ଼ିତଶକ୍ତି ଜୀବନୀଶକ୍ତିର ମୂଳ । ପ୍ରତିଦିନ ନାନାପ୍ରକାରରେ ବିଶେଷତଃ ଆହାର ବିହାରରେ, ଅଭ୍ୟାଗତ ଅନାଗତରେ, ନିଶ୍ୱାସ ପ୍ରଶ୍ୱାସରେ ମାନବଦେହରେ ବିଷ ପ୍ରବେଶ କରୁଥାଏ । ଏହି ବିଷ କ୍ରମେ କ୍ରମେ ରକ୍ତ ସହିତ ମିଶ୍ରିତ ହୋଇ ଦେହାଭ୍ୟନ୍ତରସ୍ଥ ତାଡ଼ିତଶକ୍ତି ହ୍ରାସ କରେ ଏବଂ ପରିଣାମରେ ସାଧାରଣତଃ ଶୁକ୍ର ଓ ଶୋଣିତ ସମ୍ବନ୍ଧୀୟ ପୀଡ଼ା ଉତ୍ପନ୍ନ ହୁଏ । ଯେଉଁ ଔଷଧ ଏହି ରକ୍ତଦୁଷ୍ଟିର ବିଷ ଦୂରୀଭୂତ କରି ହ୍ରାସପ୍ରାପ୍ତ ବୈଦ୍ୟୁତିକ ଶକ୍ତିର ସାମଞ୍ଜସ୍ୟ ସମ୍ପୂର୍ଣ୍ଣରୂପ ରକ୍ଷା କରିପାରେ, ସେହି ପ୍ରକୃତ ଔଷଧ; ଏହି—

"ଇଲେକ୍ଟ୍ରୋ-ସାଲସା" ତାହାର ଏକମାତ୍ର ଆଦର୍ଶ ।

---

<u>ଏହା କଣ ?</u> ଚିକିତ୍ସା-ବିଜ୍ଞାନ-ସମ୍ମତ ଶୁକ୍ର ଓ ଶୋଣିତର ଦୋଷ-ସଂଶୋଧକ ଏବଂ ତାଡ଼ିତଶକ୍ତିପ୍ରବର୍ତ୍ତକ କେତୋଟି ଦୁଷ୍ପ୍ରାପ୍ୟ କାର୍ଯ୍ୟକାରୀ ଉଦ୍ଭିଦରୁ—
ନିଉ ୟର୍କ ନଗରବାସୀ ଖ୍ୟାତନାମା ଡାକ୍ତର :—
<u>ଜେମସ୍ ମେଜର ଏମ୍. ଏ. ଏମ୍. ଡି</u>

ମହୋଦୟଙ୍କର ଅନୁଷ୍ଠିତ,—ନୂତନ ରସାୟନିକ ପ୍ରକ୍ରିୟାରେ ବହିଃକୃତ ନିର୍ଯ୍ୟାସ ।
ମାନବଦେହରେ ଏହାର କ୍ଷମତା ଅସୀମ, ଗୁଣ ଅନନ୍ତ, କ୍ରିୟା ସ୍ଥାୟୀ ।

ଏଥିରେ ଯେ କେତୋଟି କାର୍ଯ୍ୟକାରୀ ଭେଷଜ ପଦାର୍ଥ ଅଛି, ତାହା ଅନ୍ୟ କୌଣସି ଔଷଧରେ ନାହିଁ ଏବଂ ଏହି ଗବେଷଣାଲବ୍ଧ ମହାଗୁଣଶାଳୀ ଦୁଷ୍ପ୍ରାପ୍ୟ ଭେଷଜ ଏହାର ଏରୂପ ଅସାଧାରଣ ଗୁଣାବଳୀର ମୂଳକାରଣ ।

<u>ଏଥିରେ କେଉଁ କେଉଁ ରୋଗ ଆରୋଗ୍ୟ ହୁଏ ?</u> ସର୍ବପ୍ରକାର କାରଣଜାତ ଶୁକ୍ର ଓ ଶୋଣିତର ବିକୃତି, ସ୍ନାୟୁଦୌର୍ବଲ୍ୟ, ଦେହର ବିବିଧ ଯନ୍ତ୍ରର କ୍ରିୟା-ଘଟିତ କ୍ଷୀଣତା, ଶୁକ୍ର ମେହ, ଶୁକ୍ର ତାରଲ୍ୟ, ନୂତନ ପୁରାତନ ମେହ, ପ୍ରମେହ, ସପୂଜ ଧାତୁ ନିର୍ଗମ, ଅନିଚ୍ଛାରେ ବା ଅଳ୍ପ ଉତ୍ତେଜନାରେ ଶୁକ୍ରକ୍ଷରଣ, ସମ୍ପୂର୍ଣ୍ଣ ବା ଅଂଶିକ ପୁରୁଷତ୍ୱହୀନ, ପ୍ରସ୍ରାବରେ ଯନ୍ତ୍ରଣା, ଲୁଗାରେ ଦାଗଲଗା,

ସ୍ୱପ୍ନଦୋଷ, ଶୁକ୍ରରେ ସନ୍ତାନ ଉତ୍ପାଦିକା ଶକ୍ତିର ଅଭାବ, ମଳ ବା ମୂତ୍ରତ୍ୟାଗ ସମୟରେ ପ୍ରକାଶ୍ୟରେ ବା ଅଲକ୍ଷରେ ଶୁକ୍ରକ୍ଷରଣ, ମୂତ୍ରକୃଚ୍ଛ୍ରତା, ମୁହୁର୍ମୁହୁଃ ପ୍ରସ୍ରାବ, ଜନନେନ୍ଦ୍ରିୟର ଦୁର୍ବଳତା, ସ୍ମୃତିଶକ୍ତିର ବିଲୋପ, ମସ୍ତିଷ୍କ କ୍ଳାନ୍ତି, ଦୃଷ୍ଟିଶକ୍ତିର କ୍ଷୀଣତା, ଶିରୋଘୂର୍ଣ୍ଣନ, ନିଦ୍ରାଶକ୍ତିର ବିକାର, ଶରୀର ଓ ମନର ଅବସାଦ, ଚିଡଚିଡ଼ା ସ୍ୱଭାବ, ଯୌବନକାଳୋଚିତ ସାମର୍ଥ୍ୟର ଅଭାବ, ନିର୍ଜନପ୍ରିୟତା, ହୃତପିଣ୍ଡର କଷ୍ଟଦାୟକ ସ୍ପନ୍ଦନ, ଅଧ୍ୟୟନରେ ବା ସାଂସାରିକ କାର୍ଯ୍ୟରେ ଅନିଚ୍ଛା ଓ ସାମର୍ଥ୍ୟହୀନତା, ଅକାରଣରେ ଉଦ୍‌ବେଗ, ଶୋଣିତର ସ୍ୱଳ୍ପତା, ପାରଦ ଓ ଉପଦଂଶାଦିଘଟିତ ଶୋଣିତ-ବିକୃତ, ବାତରକ୍ତ, ଆମବାତ, ଗାନ୍ଧକଣ୍ଡୁ, ବାଘୀ, ଉପଦଂଶର ଘା, ନାକ ଓ ମୁହଁର ଭିତରେ ଘା, ନାଲି ଘା, ଶୋଥ ହେବା, କାଛୁ କୁଣ୍ଡିଆ, ଭଗନ୍ଦର, କୁଷ୍ଠ ପ୍ରଭୃତି ନାନାପ୍ରକାର ଚର୍ମରୋଗ, ଶୁକ୍ର ବା ଶୋଣିତ ବିକାରଜ ଘଟିତ ସର୍ବପ୍ରକାର ଦୁର୍ଦ୍ଦମନୀୟ ବାତ, ଜଙ୍ଘ, ଏଣ୍ଟୁ, କଟି, ହସ୍ତ, ପଦ ଓ ସନ୍ଧିସ୍ଥଳର ଗୁରୁତ୍ୱ; ବେଦନା, ଥକ୍ ଥକ୍ କରିବା, ମୋଡିହେବା, ଶରୀରର ନାନା ସ୍ଥାନରେ ବିବର୍ଣ୍ଣପ୍ରକୃତିର ଦାଗ ବା ଉପଦଂଶାଦିର ଉଗ୍ରପ୍ରକାଶ, ହସ୍ତ ଓ ପଦ ତଳର ଚମଡ଼ା ଉଠିବା, ଧଳା ବା କୃଷ୍ଣସିତ୍ର ଚିହ୍ନ ଫୁଟିଉଠିବା, ଧବଳ କୁଷ୍ଠାଦିର ପୂର୍ବଲକ୍ଷଣ, କୁଣ୍ଡାଇ ହେଉ ହେଉ ଫୁଲିଉଠିବା, ଚକ୍ଷୁରୁ ଜଳ ପଡିବା, ଅକାଳବାର୍ଦ୍ଧକ୍ୟ, ମୁଣ୍ଡରୁ ବାଳ ଉପୁଡିବା, କେଶର ଅକାଳପକ୍ୱତା, ଶରୀରର ସାଧାରଣ ଦୌର୍ବଲ୍ୟ ଇତ୍ୟାଦି ଶୁକ୍ର ଓ ଶୋଣିତ ସଂକ୍ରାନ୍ତ ସର୍ବପ୍ରକାର ବ୍ୟାଧି ଓ ତାହାର ସହସ୍ରାଧିକ ଉତ୍କଟ ଉପସର୍ଗ ସମୂଳରେ ବିନଷ୍ଟ କରି କ୍ଷୁଧା ବୃଦ୍ଧି କରିବାକୁ, କୋଷ୍ଠ ପରିଷ୍କାର ରଖିବାକୁ ଏବଂ ଦୁର୍ବଳ ଓ ଜରାଜୀର୍ଣ୍ଣ ଦେହ ସବଳ ଓ କାର୍ଯ୍ୟକ୍ଷମ କରିବାକୁ ଏହା ଅତୁଳନୀୟ; ସେଥିପାଇଁ—

## ଡାକ୍ତର ମେଜରଙ୍କର ଇଲେକ୍‌ଟ୍ରୋ-ସାଲସା

ଆଜି ଭାରତର ସର୍ବତ୍ର ସମାଦୃତ ଓ ପରିବ୍ୟାପ୍ତ । ପ୍ରକୃତ ଗୁଣ ଅଛି ବୋଲି ଏହାର ବିକ୍ରୟ ଏତେ ଅଧିକ—ବିକ୍ରୟବାହୁଲ୍ୟ-ହେତୁରୁ ଆଜି ବହୁ ନକଲର ସୃଷ୍ଟି ! କ୍ରେତାଗଣ ସାବଧାନ ! !

"ଇଲେକ୍‌ଟ୍ରୋ-ସାଲସା"—ସକଳ ଦେଶର ସକଳ ଋତୁରେ ଉଲ୍ଲିଖିତ ରୋଗସମୂହର ସକଳ ଅବସ୍ଥାରେ ଆବାଲ-ବୃଦ୍ଧବନିତା, ରୋଗୀ, ଅରୋଗୀ ସମସ୍ତେ ନିର୍ବିଘ୍ନରେ ସେବନ କରି ପାରନ୍ତି ।

ଇଲେକ୍‌ଟ୍ରୋ-ସାଲସାର ମୂଲ୍ୟାଦି,—ସର୍ବପ୍ରକାର ଭାଷାରେ ବ୍ୟବସ୍ଥାପତ୍ରସମ୍ବଳିତ ୮ ଦିନ ସେବନୋପଯୋଗୀ ପ୍ରତ୍ୟେକ ଶିଶିର ମୂଲ୍ୟ ଟ ୨ ୧, ୩ ଶିଶି ମୂଲ୍ୟ ଟ ୫୴, ୬ ଶିଶି ଟ ୧୦୴, ଡଜନ ଟ ୨୦ ୧, ପ୍ୟାକିଂ ଓ ଡାକମାସୁଲ ଇତ୍ୟାଦି ଯଥାକ୍ରମେ ଟ ୦ ୴, ଟ ୦ ୴୶, ଟ ୧, ଟ ୧୴ ।

ଅସଂଖ୍ୟ, ଅଯାଚିତ ପ୍ରଶଂସାପତ୍ର ଏହାର ଅବ୍ୟର୍ଥତା, ଅଲୌକିକତା ଓ ଅକୃତ୍ରିମତାର ଜ୍ୱଳନ୍ତ ପ୍ରମାଣ, ଜ୍ୱଳନ୍ତ ସାକ୍ଷ ଦେଉଅଛି ।

୧ । ପାଟଣାର ମହାରାଜା ଦଳଗଞ୍ଜନ ସିଂହ ମହୋଦୟ ଲେଖିଅଛନ୍ତି:—

"ମହାଶୟଗଣ ! ମୋହର ପରିବାରସ୍ଥ ଏକ ବ୍ୟକ୍ତିର ଅତି କଠିନ ପୀଡ଼ାରେ ଡାକ୍ତର ମେଜରଙ୍କର ଇଲେକ୍‌ଟ୍ରୋ ସାଲସାର ବିସ୍ମୟଜନକ ଶୁଭଫଳ ଦର୍ଶନ କରି ମୁଁ ଡାକ୍ତର ସାହେବଙ୍କର ଔଷଧର ଗୁଣପ୍ରତି ଏତେ ପକ୍ଷପାତୀ ହୋଇଅଛି ଯେ, ଆପଣମାନଙ୍କର ପ୍ରସ୍ତୁତ ମହୌଷଧି ରୋଗକ୍ଲିଷ୍ଟ ମାନବମଣ୍ଡଳୀର ମହୋପକାରୀ ଏ କଥା କହିବାକୁ ମୁଁ ଅଣୁମାତ୍ର ଦ୍ୱିଧା ବୋଧ କରୁ ନାହିଁ । ଆପଣମାନଙ୍କର ମହୌଷଧର ଗୁଣର ନିଦର୍ଶନସ୍ୱରୂପ ମୁଁ ଆପଣମାନଙ୍କୁ ଗୋଟିଏ ସ୍ୱର୍ଣ୍ଣପଦକ ଉପହାର ପ୍ରଦାନ କଲି । ଏହି ସାମାନ୍ୟ ଉପହାର ଆପଣମାନଙ୍କର ଅତୁଳନୀୟ ଓ ଅମୂଲ୍ୟ ଇଲେକ୍‌ଟ୍ରୋ-ସାଲସାର ଗୁଣର ତୁଳନାରେ ଯେତେ ଅକିଞ୍ଚିତ୍କର ହେଲେହେଁ ଏହା ମୋହର ହୃଦୟର କୃତଜ୍ଞତାର ନିଦର୍ଶନ ବୋଲି ଗ୍ରହଣ କଲେ କୃତାର୍ଥ ହେବି । ତା ୧୬।୧୦।୧୯୦୭"

୨ । ମହାମାନ୍ୟ ମହାରାଜା ସାର ସୁଢ଼ଲ ଦେଓ ବାମଣ୍ଡାରୁ ଲେଖିଅଛନ୍ତି :—
“* * * ମୁଁ ନିଃସନ୍ଦେହରୂପେ କହିପାରେ ଯେ “ଇଲେକଟ୍ରୋ-ସାଲସା” ଦୂଷିତରକ୍ତ ପରିଷ୍କାର କରିବା ଓ ରକ୍ତଦୁଷ୍ଟିହେତୁ ବିବିଧ ରୋଗ ଆରୋଗ୍ୟ କରିବାପକ୍ଷରେ ସର୍ବୋତ୍କୃଷ୍ଟ ।”

୩ । ମହାମାନ୍ୟ ମହାରାଜା ଗଉରଚନ୍ଦ୍ର ଦେଓ ରେଢ଼ାଖୋଲରୁ ଲେଖିଅଛନ୍ତି—
“* * * ବିଜ୍ଞାପନର ମୋହରେ ପଡ଼ି “ଡ୍ୟାନକିନ” ଔଷଧ ମଗାଇଲି; ଉପକାର କେବା ଦୂରେ ଥାଉ ଅପକାର କଲା, ସେଥିରେ ପାରା ଅଛି ବୋଲି ଜଣାପଡ଼ିଲା । କିନ୍ତୁ ଆପଣମାନଙ୍କର ଇଲେକ୍‌ଟ୍ରୋ-ସାଲସାର ଗୁଣ ମୁଁ ବୁଝି ପାରିବି ନାହିଁ । ମୋତେ ଆଉ ୩ ଡଜନ ପଠାଇଦେବେ ।”

୪ । ମହାମାନ୍ୟ ମହାରାଜା ହରିହର ମର୍ଦ୍ଦରାଜ ଦେଓ ଖଲ୍ଲିକୋଟରୁ ଲେଖିଅଛନ୍ତି—
“ରକ୍ତ ପରିଷ୍କାର କରି ବଳବୀର୍ଯ୍ୟ ବୃଦ୍ଧି କରିବାକୁ ଇଲେକଟ୍ରୋ-ସାଲସାର କ୍ଷମତା ଅସୀମ ଅଟେ ।”

୫ । ଗୋପାଳପୁର ପ୍ରଦେଶାଧିପତି ମହାରାଜାଧିରାଜ ରଘୁନାଥ ରାଓ ବହଦୂର ମୁସିର—ଅଲ-ଖାସ ବାହାଦୁର ଲେଖିଅଛନ୍ତି :—ଅନୁଗ୍ରହବଳରେ ଆଉରି ୩ ଶିଶି ଔଷଧ ଆମ୍ଭ ନିକଟକୁ ପଠାଇ ଦିଅନ୍ତୁ । ୨୫ ତାରିଖ ଜୁଲାଇ, ୧୯୦୩ ।

୬ । ଡାକ୍ତର ଜ. ଓ୍ୟାକାର ( କର୍ଣ୍ଣେଲ ) ଆଇ. ଏମ. ଏସ୍. ପ୍ରୋଫେସର ମେଡିକାଲ କଲେଜ, ମାନ୍ଦ୍ରାଜଠାରୁ ଲେଖିଅଛନ୍ତି :—“ପାରା ଓ ଉପଦଂଶାଦିଜନିତ ରକ୍ତଦୁଷ୍ଟି ରୋଗରେ ଆପଣମାନଙ୍କର ଇଲେକଟ୍ରୋ-ସାଲସାର କ୍ରିୟା ଦେଖି ଅସୀମ ଆନନ୍ଦ ଭୋଗ କରୁଅଛୁ । ୧୩ ଜାନୁୟାରି, ୧୯୦୨ ।”

୭ । କଲିକତା ମେଡିକାଲ ବୋର୍ଡର ପ୍ରେସିଡେଣ୍ଟ ରାୟବାହାଦୁର ସୂର୍ଯ୍ୟକୁମାର ସର୍ବାଧିକାରୀ ଡ. ଏମ. ସି. ବି. ମହୋଦୟ ଲେଖିଅଛନ୍ତି :—“ରକ୍ତଦୁଷ୍ଟିଜାତ କେତୋଟି ରୋଗୀଙ୍କୁ ଆପଣମାନଙ୍କର ଇଲେକଟ୍ରୋ-ସାଲସା ବ୍ୟବହାର କରାଇ ସନ୍ତୋଷଜନକ ଫଳ ପ୍ରାପ୍ତ ହୋଇଅଛୁ ।”

ଡାକ୍ତର ମେକର ସାହେବଙ୍କର

# ହାଇଡ୍ରୋସିଲ-ଇଲିକ୍‌ସାର

ବା କୋଷବୃଦ୍ଧିର ଔଷଧ ।

ପ୍ରତିବର୍ଷ ୫ ହଜାରରୁ ଅଧିକ ରୋଗୀ ଆରୋଗ୍ୟ ଲାଭ କରୁଅଛନ୍ତି । ଆମ୍ଭେମାନେ ପ୍ରତିଜ୍ଞା କରି କହିପାରୁଁ, ଏହି ପ୍ରଲେପ ନିୟମିତରୂପେ କେତେକ ସପ୍ତାହ ବ୍ୟବହାର କଲେ ଏକଶିରା ବା କୋରଣ୍ଡ ଯେତେ ବଡ଼ ହେଉ, ଯେତେ ପୁରାତନ ହେଉ ପଛକେ ନିଶ୍ଚୟ ଆରୋଗ୍ୟ ହେବ । ଯେଉଁମାନେ ଏହି କୁତ୍ସିତ ରୋଗ ଓ ତାହାର ବିବିଧ ଯନ୍ତ୍ରଣାଦାୟକ ଉପସର୍ଗାଦିରୁ ନିର୍ବିଘ୍ନରେ ବିନା ଯନ୍ତ୍ରଣାରେ ଅଥଚ ଗୋପନରେ ଆରୋଗ୍ୟ ଲାଭର ବାସନା କରନ୍ତି, ସେମାନେ ଏହି ମହୌଷଧ ପରୀକ୍ଷା କରି ଦେଖନ୍ତୁ । ପ୍ରଥମ ଦିନ ବ୍ୟବହାରରେ ଏହାର ଆଶ୍ଚର୍ଯ୍ୟ ଉପକାରିତା ବୁଝାଯାଏ । ତତ୍ପରେ କ୍ରମେ କ୍ରମେ ଆକାର ଓ ଗୁରୁତ୍ୱ କମି ଥାଏ । ଯେଉଁମାନେ ଆରୋଗ୍ୟ ହେବା ବିଷୟରେ ହତାଶ ହୋଇଅଛନ୍ତି, ସେମାନେ ଏହି ଔଷଧ ପ୍ରତି ସମ୍ପୂର୍ଣ୍ଣ ନିର୍ଭର କରନ୍ତୁ । ବ୍ୟବହାରରେ ଜ୍ୱାଳା-ଯନ୍ତ୍ରଣା ବା କଷ୍ଟକର ନିୟମ ନାହିଁ । ମୂଲ୍ୟ ପ୍ରତି ଶିଶି ଟ ୧୳, ତିନି ଶିଶି ଏକତ୍ରରେ ଟ ୪ ୯ । ୬ ଶିଶି ଟ ୭୳ ଡଜନକୁ ଟ ୧୪୯ ମାସୁଲ ସ୍ୱତନ୍ତ୍ର ।

ଡାକ୍ତର ମେଜର ସାହେବଙ୍କର

# ହେୟାର ଲାଇନ

କେଶର ପରିପୋଷଣ, ପରିବର୍ଦ୍ଧନ ଓ ଶ୍ରୀସମ୍ପାଦନକାରୀ ସୁଗନ୍ଧୀ କେଶତୈଳ ।




କେତୋଟି ଭେଷଜଗୁଣାନ୍ୱିତ ସଦ୍ୟ ପ୍ରସ୍ଫୁଟିତ, ସୁଗନ୍ଧଯୁକ୍ତ, ଅନାଘ୍ରାତ, ପୁଷ୍ପର ସାର, ବୈଜ୍ଞାନିକ ପ୍ରଣାଳୀରେ ଏକତ୍ରିତ କରି ବିଶୁଦ୍ଧ କେଶପୋଷକ ତୈଳର ସଂଯୋଗରେ ଏହି କେଶ ତୈଳ ପ୍ରସ୍ତୁତ ହୋଇଅଛି । ଆପଣ ଏହା ଲଗାଇବାକୁ ଆରମ୍ଭ କରନ୍ତୁ, ଅପୂର୍ବ ସୌରଭରେ ଗୃହଅଙ୍ଗ ମହକି ପଡ଼ିବ । ମସ୍ତିଷ୍କ ସୁଶୀତଳ ହେବ । ନିକଟସ୍ଥ ଲୋକେ ମନୋହର ସୁଗନ୍ଧିରେ ମୁଗ୍ଧ ହେବେ । ଆପଣଙ୍କର ମନେ ହେବ ଯେପରି ପ୍ରସ୍ଫୁଟିତ ଫୁଲ-ବଗିଚାକୁ ଆସିଅଛନ୍ତି ।

"ହେୟାର-ଲାଇନ" ଲଗାଇ କେଶ ବିନ୍ୟାସ କଲେ ୨୪ ଘଣ୍ଟା ପର୍ଯ୍ୟନ୍ତ ଗନ୍ଧ ସମ ଭାବରେ ଥାଏ । ସ୍ନାନ ପରେ ଦେହରେ ଯେତେ ପବନ ଲାଗେ, ହେୟାର-ଲାଇନର ଗନ୍ଧ ସେତେ ବାହାରୁ ଥାଏ, ଯେପରି ସୌରଭର ଭଣ୍ଡାର ଖୋଲିଦିଏ। ଅତି ମୂଲ୍ୟବାନ୍ ଅତର ଓ ବିଦେଶୀୟ ମ୍ୟାକେଶାର ତୈଳ ପ୍ରଭୃତି ଏହାର ସୌରଭ ଓ ଗୁଣ ନିକଟରେ ପରାଜିତ ।

"ହେୟାର-ଲାଇନର" ରଙ୍ଗ ଅତି ମନୋହର, ସ୍ୱଭାବତଃ ଉଜ୍ଜ୍ୱଳ ଓ ସ୍ୱଚ୍ଛ । ଏଥି ନିମନ୍ତେ କେଶରେ ଅଠା ଧରେ ନାହିଁ ।

"ହେୟାର-ଲାଇନ" କେବଳ ସୌଖୀନ୍ ଜିନିଷ ନୁହେଁ, ମୁଣ୍ଡବଥା, ମୁଣ୍ଡବୁଲା, ହିଷ୍ଟିରିଆ ପ୍ରଭୃତି ଶିରରୋଗର ମହୌଷଧ । ହସ୍ତ ପଦର ଜାଳା, ଗାତ୍ରଦାହ, ଅତି ଧଡ଼ପଡ଼ହେବା, ପ୍ରାଣର ଅକୁଳଭାବ, ସ୍ନାୟବୀୟ ଦୌର୍ବଲ୍ୟ, ଘୂରିପଡ଼ିବା ପ୍ରାୟ ବୋଧହେବା, ଅନିଦ୍ରା, ଚିତ୍ତ-ଚାଞ୍ଚଲ୍ୟ ପ୍ରଭୃତି ଉପସର୍ଗ ଦୂରୀକରଣରେ ଏହା ତୁଲ୍ୟ କ୍ଷମତାପନ୍ନ ଔଷଧ ଆଉ ନାହିଁ ।

"ହେୟାର-ଲାଇନ" ବ୍ୟବହାରଦ୍ୱାରା କେଶ ଉପୁଡ଼ିବା ବନ୍ଦ ହୁଏ, କେଶର ମୂଳ ଶକ୍ତ ହୁଏ, କେଶ ପ୍ରଚୁର ପରିମାଣରେ ବଢ଼େ ଏବଂ କଳା ଓ ଚିକ୍କଣ ହୁଏ, ମସ୍ତିଷ୍କ ଥଣ୍ଡା ରହେ । ଅନେକ ଦିନ ବ୍ୟବହାର କଲେ ଟାଙ୍ଗରା ରୋଗ ନଷ୍ଟ ହୁଏ, ମୁଣ୍ଡର ରୂପୀ ପ୍ରଭୃତି ନଷ୍ଟ ହୁଏ; କେଶ ଘନ, କୋମଳ ଓ ସୁଦୃଶ୍ୟ ହୁଏ, ଦେହର ଦୁର୍ଗନ୍ଧ ଦୂର ହୁଏ, ଚର୍ମ କୋମଳ ଓ କାନ୍ତିଯୁକ୍ତ ହୁଏ, ମନର ସ୍ଥୈର୍ଯ୍ୟ ଧୈର୍ଯ୍ୟ ବଢ଼େ, ସ୍ମରଣଶକ୍ତି ବୃଦ୍ଧି ହୁଏ ।

ମୂଲ୍ୟ ପ୍ରତି ବଡ଼ ଅଃ ଶିଶି ଟ ୨ ୧; ୩, ୬, ୧୨ ଶିଶି କ୍ରମାନ୍ୱୟରେ ଟ ୫୲, ଟ ୧୦୲, ଟ ୨୦ ୧; ପର୍ଯ୍ୟନ୍ତ ଓ ଡାକମାସୁଲ ସ୍ୱତନ୍ତ୍ର ।

ପ୍ରାପ୍ତିସ୍ଥାନ—ଡବଲିଉ, ମେଜର ଏଣ୍ଡ କୋଂ
ହେଡ଼ ଅଫିସ,—୧୨ ନଂ ଓ୍ୱେଲିଂଟନ ଷ୍ଟ୍ରିଟ, କଲିକତା ।

# ଉତ୍କଳ-ସାହିତ୍ୟ ।

## ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ । (୨)*

ଉତ୍କଳଭୂମିରେ ବୌଦ୍ଧଧର୍ମ ବିନାଶର ଅସନ୍ନ କାଳରେ ଉପସ୍ଥିତ ଅଥବା ବିନଷ୍ଟପ୍ରାୟ, ଲୋକମାନଙ୍କର ଧର୍ମ ମତରେ କିଛି ସ୍ଥିରତା ନାହିଁ, ଶୈବଧର୍ମ ଏବଂ ନାନାପ୍ରକାର ଉପଧର୍ମରେ ଦେଶ ପ୍ଲାବିତ, ଅନାହୂତ ଇସଲାମ ଧର୍ମ ଉତ୍କଳର ଉତ୍ତରଦ୍ୱାର ସୁବର୍ଣ୍ଣରେଖା କୂଳରେ ଆସିକା ପ୍ରବେଶ କରିବାକୁ ଉଦ୍ୟତ, ଠିକ ସେହି ଧର୍ମ-ବିପ୍ଳବ ସମୟରେ ଧର୍ମ 'ସଂରକ୍ଷଣାର୍ଥାୟ'

* ଆମ୍ଭେମାନେ ଲେଖକ ମହାଶୟଙ୍କଠାରୁ ନିମ୍ନଲିଖିତ ପତ୍ରଖଣ୍ଡି ପାଇ ଆନନ୍ଦସହକାରେ ପ୍ରକାଶ କରୁଅଛୁଁ । ପ୍ରବନ୍ଧୋକ୍ତ ଅଯଥା ଆକ୍ଷେପୋକ୍ତି ପାଠ କରି ଆମ୍ଭେମାନେ ବ୍ୟଥିତ ଥିଲୁଁ ଏବଂ ଏହାର ପ୍ରତିବାଦ ମଧ୍ୟ ପ୍ରତୀକ୍ଷା କରିଥିଲୁଁ । ମାତ୍ର ଲେଖକ ମହାଶୟ ଯଥାସମୟରେ ସ୍ୱୀୟ ଭ୍ରମ ସଂଶୋଧନପୂର୍ବକ ସରଳ ଭାବରେ ସାଧାରଣରେ ପ୍ରକାଶ କରି ଯଥେଷ୍ଟ ଉଦାରତାର ପରିଚୟ ଦେଇଅଛନ୍ତି । ଉ: ସା: ସ: ।

ପ୍ରିୟ ବିଶ୍ୱନାଥ ବାବୁ,

ଗତ ସଂଖ୍ୟା ସାହିତ୍ୟରେ ମୁଦ୍ରିତ ଚୈତନ୍ୟ ଦେବ ସମ୍ବନ୍ଧୀୟ ପ୍ରବନ୍ଧର ଏକ ସ୍ଥାନରେ ଲେଖିଅଛି:—

"ଉତ୍କଳବାସୀ ବଙ୍ଗାଳମାନେ ଆପଣାମାନଙ୍କୁ ଓଡ଼ିଆ ବୋଲି ପରିଚୟ ଦେବାକୁ ଅଗୌରବର ବିଷୟ ବୋଲି ଜ୍ଞାନ କରନ୍ତି"—ଇତ୍ୟାଦି ।

ଗତ କାଲି ସନ୍ଧ୍ୟା ସମୟରେ ରାୟ ବାହାଦୁର ରାଧାନାଥ ବାବୁ ସାକ୍ଷାତ କରିବା ନିମନ୍ତେ ମୋ ପାଖକୁ ଆସିଥିଲେ । ଉକ୍ତ ବିଷୟ ସେନି ତାହାଙ୍କ ସହିତ କଥୋପକଥନଦ୍ୱାରା ମୋହର ଭ୍ରମ ଦୂର ହୋଇଅଛି । ବାସ୍ତବରେ ମୁଁ ଜାଣେ ଉତ୍କଳବାସୀ ବଙ୍ଗୀୟ ଶିକ୍ଷିତଶ୍ରେଣୀ ଲୋକେ ମାତୃଭୂମିର ଉନ୍ନତିକଳ୍ପେ ବିଶେଷ ଯତ୍ନଶୀଳ, ମାତୃଭୂମି ମଧ୍ୟ ସେମାନଙ୍କ ମୁଖାପେକ୍ଷିଣୀ । କେତେକ ଶିକ୍ଷିତ ବଙ୍ଗାଳି ନିଜ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ଅଗୌରବର ବିଷୟ ଜ୍ଞାନ କରନ୍ତି ନାହିଁ । ମାତ୍ର କାୟସ୍ଥ ଓ ବୈଦ୍ୟ ପ୍ରଭୃତି କେତେକ ଜାତିଙ୍କ ସଂଖ୍ୟା ଉତ୍କଳରେ ଏତେ ସଙ୍କୀର୍ଣ୍ଣ ଯେ ପୁତ୍ର କନ୍ୟା ଆଦାନ ପ୍ରଦାନ ସମ୍ବନ୍ଧରେ ବଙ୍ଗଳା ସହିତ ସମ୍ପର୍କ ନ ରଖିଲେ ଗତ୍ୟନ୍ତର ନାହିଁ । ଏ ସୁଯୋଗ ପରିତ୍ୟାଗ କରିବା ସହଜ ନୁହେ । ଏ କ୍ଷେତ୍ରରେ ସେମାନଙ୍କୁ ନିତାନ୍ତ ବାଧ୍ୟ ହୋଇ ବଙ୍ଗାଳ ବୋଲି ପରିଚୟ ଦେବାକୁ ପଡ଼େ ।

ଅତ୍ୟନ୍ତ ଆନନ୍ଦର ବିଷୟ ବଙ୍ଗାଳ ଓଡ଼ିଆ ପାର୍ଥକ୍ୟ-ଜ୍ଞାନ ଶିକ୍ଷିତ ସମାଜରୁ ପ୍ରାୟ ଦୂର ହୋଇ ଅଛି । ଏହି ସୁଲକ୍ଷଣକୁ କାହାର ସୌଭାଗ୍ୟର ବିଷୟ ବୋଲି ଜ୍ଞାନ କରିବୁଁ ? ଭାରତମାତାର ନୁହେ କି ?

୧୫ । ୮ । ୦୪

ଆପଣଙ୍କର
ଶ୍ରୀ ଫକୀରମୋହନ ସେନାପତି ।

ଭଗବାନଙ୍କ ଅବତାରରୂପେ ଯେପରି ଜଗନ୍ନାଥ ଦାସ ଏବଂ ଚୈତନ୍ୟ ଦେବଙ୍କର ଆବିର୍ଭାବ । ଉତ୍କଳଖଣ୍ଡରେ ପବିତ୍ର ବୈଷ୍ଣବ ଧର୍ମର ପ୍ରଚାରକ ଉଲ୍ଲିଖିତ ପଞ୍ଚ ମହାପୁରୁଷ ଅଟନ୍ତି । ସ୍ୱକୀୟ ମତ ପ୍ରଚାର ବିଷୟରେ ଉଭୟେ ଏକକୁ ଅନେକ ସହାୟ ହୋଇଥିଲେ । ବର୍ତ୍ତମାନ ଉତ୍କଳଖଣ୍ଡରେ ଯେଉଁ ସାର୍ବଭୌମ ବୈଷ୍ଣବ ଧର୍ମ ପ୍ରଚଳିତ ଅଛି, ତାହାର ବୀଜବପନକାରୀ ଅତିବଡ଼ି ଜଗନ୍ନାଥ ଦାସେ ଅଟନ୍ତି । ଚୈତନ୍ୟ ଦେବଙ୍କ ଉତ୍କଳ ଦେଶକୁ ଶୁଭାଗମନ ପୂର୍ବରୁ ଜଗନ୍ନାଥ ଦାସ ବୀଜ ବପନ କରିଥିଲେ, ଚୈତନ୍ୟ ଦେବଙ୍କ ଯତ୍ନରେ ତାହା ବୃକ୍ଷରୂପେ ପରିଣତ ହୋଇଅଛି । ଜଗନ୍ନାଥ ଦାସଙ୍କ ଉପ୍ତ ବୀଜର ଆଶ୍ରୟ ଗ୍ରହଣ କରି ନ ଥିଲେ ଚୈତନ୍ୟ ଦେବଙ୍କ ମତ ଅଦ୍ୟାବଧି ସ୍ଥାୟିତ୍ୱ ଲାଭ କରିଥାନ୍ତା କି ନାହିଁ, ସମ୍ପୂର୍ଣ୍ଣ ସନ୍ଦେହର ବିଷୟ ଅଟେ । ବଙ୍ଗଦେଶରେ ଚୈତନ୍ୟ ଦେବଙ୍କ ମତ କର୍ତ୍ତାଭଜା, ବାଉଲ ପ୍ରଭୃତି ନାନା ସମ୍ପ୍ରଦାୟଦ୍ୱାରା ନାନାପ୍ରକାର ବିକୃତ ଭାବ ଧାରଣ କରିଅଛି । ମାତ୍ର ଜଗନ୍ନାଥ ଦାସ ଯେଉଁ ବୀଜ ବପନ କରିଥିଲେ ତଦୁତ୍ପନ୍ନ ବୃକ୍ଷ ଅଦ୍ୟାବଧି ଅକ୍ଷୁଣ୍ଣ ଭାବରେ ରହିଅଛି । ସେଥିରେ ହସ୍ତକ୍ଷେପ କରିବାକୁ କେହି ସାହସୀ ହୋଇ ନାହାନ୍ତି । କେବଳ ଧର୍ମ ନୁହେ, ଭାଷାପ୍ରଚାର ବିଷୟରେ ମଧ୍ୟ ଉତ୍କଳଭୂମି ଜଗନ୍ନାଥ ଦାସଙ୍କଠାରେ ସମ୍ପୂର୍ଣ୍ଣ ଋଣୀ । ଅଦ୍ୟାବଧି ପ୍ରାୟ ଅର୍ଦ୍ଧ ସହସ୍ର ବର୍ଷ ଗତ ହୋଇଅଛି, କୋଟି କୋଟି ନର ନାରୀ କାଳସ୍ରୋତରେ ଭାସି ଯାଇଅଛନ୍ତି, ମାତ୍ର କଟକର ଗୋପାଳକ ଶିଶୁଠାରୁ ରାଜା ମହାରାଜା ପର୍ଯ୍ୟନ୍ତ ଏପରି କେହି ଲୋକ ଥିଲେ ବା ଅଛନ୍ତି ଯାହାଙ୍କୁ ଜଗନ୍ନାଥ ଦାସଙ୍କର ଅନ୍ତତଃ ଦୁଇପଦ କବିତା ନ ପଢ଼ନ୍ତେ ଅଥବା ଯେ ଦାସଙ୍କ ନାମ ଶୁଣି ନାହାନ୍ତି, ଏହା ଆମ୍ଭେମାନେ ଅନୁମାନ କରି ପାରୁ ନାହିଁ । ଭାଷା ଏବଂ ଧର୍ମ ପ୍ରଚାର ସମ୍ବନ୍ଧରେ ଉତ୍କଳଭୂମି ଅଚ୍ୟୁତ, ଅନନ୍ତ, ଯଶୋବନ୍ତ, ବଳରାମ ଏବଂ ଜଗନ୍ନାଥ ଦାସ ଏହି ପଞ୍ଚ ମହାପୁରୁଷଙ୍କଠାରେ ବିଶେଷ ଋଣୀ। ମାତ୍ର ଏମାନଙ୍କ ମଧ୍ୟରେ ଜଗନ୍ନାଥ ଦାସ ସର୍ବପ୍ରଧାନ ଅଟନ୍ତି ।

ଭବିଷ୍ୟ ପୁରାଣରେ ବର୍ଣ୍ଣିତ ଅଛି, ଚୈତନ୍ୟ ଦେବ ଶ୍ରୀକୃଷ୍ଣ ଅଂଶରୁ ଏବଂ ଜଗନ୍ନାଥ ଦାସ ରାଧିକା ଅଂଶରୁ ବୈକୁଣ୍ଠ ଧାମରୁ ଆସି ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ । ଏହି ପୌରାଣିକ ବାକ୍ୟପ୍ରତି ଆସ୍ଥା ସଂସ୍ଥାପନ କରିବା ବିଷୟରେ କୁଣ୍ଠିତ ଅଧୁନାତନ ପାଶ୍ଚାତ୍ୟ ଜ୍ଞାନାଲୋକପ୍ରାପ୍ତ ଏପରି ଅନେକ ପାଠକ ଥାଇ ପାରନ୍ତି, ମାତ୍ର ଚୈତନ୍ୟ ଦେବ ଓ ଜଗନ୍ନାଥ ଦାସ ଏ ଉଭୟ ଯେ ଅପ୍ରାକୃତ ଏବଂ ଈଶ୍ୱରଙ୍କ ବିଶେଷ ଅନୁଗୃହୀତ ମହାପୁରୁଷ ଥିଲେ, ନିଶ୍ଚୟ ଏ ବିଷୟର ପ୍ରତିବାଦ କରିବାକୁ କେହି ସାହସୀ ହେବେ ନାହିଁ ।

ଅତିବଡ଼ି ଜଗନ୍ନାଥ ଦାସ ଏବଂ ଚୈତନ୍ୟ ଦେବଙ୍କ ପରସ୍ପର ମିଳନ ସମ୍ବାଦ ଆମ୍ଭେମାନେ ଜଗନ୍ନାଥଚରିତାମୃତରୁ ଉଦ୍ଧାର କରିବୁଁ । ତତ୍ପୂର୍ବେ ଜଗନ୍ନାଥଙ୍କ ଜନ୍ମ ଉତ୍କ୍ରାନ୍ତି ଏବଂ ବାଲ୍ୟ ଜୀବନ ସମ୍ବନ୍ଧରେ କବି ଦିବାକର ଯାହା ଲେଖି ଯାଇଅଛନ୍ତି ତାହା ଉଲ୍ଲେଖ କରିବା ଅସଙ୍ଗତ ହେବ ନାହିଁ ।

ଗୋଲୋକ ବୈକୁଣ୍ଠଧାମରେ ଶ୍ରୀ କୃଷ୍ଣଚନ୍ଦ୍ର ମାନବରୂପରେ ପୃଥିବୀରେ ଜନ୍ମଗ୍ରହଣ କରିବା ସଙ୍କାଶେ ସ୍ୱୀକୃତ ହୋଇ ଶ୍ରୀମତୀ ରାଧିକାଙ୍କୁ କହିଲେ :—

"ପୁଣ ଅଂଶନୀ ରାଧା ଗୃହିଁ ।
ବୋଇଲେ ଜାତ ହୁଅ ମହୀ ।
ନନ୍ଦ ରଜା ସୁଧାଦ ନାମ ।
ସଂସାରେ କରଅ କୀର୍ତ୍ତନ ।
ଆଜ୍ଞାପ୍ରମାଣେ ସେ ଅଇଲେ ।
ଓଡ଼ିଶା ରାଜ୍ୟେ ଜନ୍ମ ହେଲେ ।
ନାମ କପିଳେଶ୍ୱରପୁର ।
ଶାସନ ମଧ୍ୟେ ତାଙ୍କ ଘର ।

ପୁରାଣପଣ୍ଡା ଭଗବାନ ।
ପଦ୍ମା ବୋଲିଣ ପତ୍ନୀ ନାମ ।
ଜନମ ନୋହେ ଯେବେ ମହୀ ।
ତେବେ ଯେ ଭକ୍ତି ହୁଏ ନାହିଁ ।
ତେଣୁ ସେ ପତ୍ନୀର ଉଦରେ ।
ଜନ୍ମିଲେ ବାଳକ ବେଶରେ ।
ଭାଦ୍ରବ ଶୁକ୍ଳାଷ୍ଟମୀ ଦିନ ।
ବେଳ ମଧ୍ୟାହ୍ନ ହୋଲେ ଜନ୍ମ ।
ବୁଧ ଅନୁରାଧା ନକ୍ଷତ୍ରେ ।
ମାହେନ୍ଦ୍ର ଗୁରୁଙ୍କ ବେଳାରେ

* * *

ଦ୍ୱାଦଶ ବରଷର ହେଲେ ।
ପିତା ବିବାହ କରାଇଲେ ।
ପିତାଙ୍କୁ ବଡ଼ ନାସ୍ତି ହେଲେ ।
ସମଗ୍ର ବିଦ୍ୟାକୁ ଘୋଷିଲେ ।
ଯଜୁର୍ବେଦ ସାମବେଦକୁ ।
କଣ୍ଠସ୍ଥ କଲେ ଯେ ତାହାକୁ ।
କଳାପ ବର୍ଦ୍ଧମାନ ଦୁଇ ।
ରଖିଲେ ଜିହ୍ୱାଗ୍ରରେ ଥୋଇ ।
ସକଳ ଶାସ୍ତ୍ର ପୂର୍ଣ୍ଣ ହେଲେ ।
ଭାଗବତ ସମଗ୍ର ଘୋଷିଲେ ।
ଶ୍ରୀରାମାୟଣ ଗ୍ରନ୍ଥ ସାଧି ।
ଭାଗବତରେ ଦେଲେ ବୁଦ୍ଧି ।
ଦ୍ୱାଦଶସ୍କନ୍ଧ ଭାଗବତ ।
ଟୀକା ଟିପ୍ପଣୀ ଯେ ସମସ୍ତ ।
ହେଲା ଅଷ୍ଟାଦଶ ବରଷ ।
ଏମାନ ସାଧିଲେ ବିଶେଷ ।

* * *

ଜଗନ୍ନାଥ ଦାସେ ଅଷ୍ଟାଦଶ ବର୍ଷ ବୟସ ସମୟରେ ସମସ୍ତ ଶାସ୍ତ୍ର ଅଧ୍ୟୟନ ସମାପ୍ତ କରି ଧର୍ମାଚରଣରେ ପ୍ରବୃତ୍ତ ହୋଇଥିଲେ । ଜଗତର ପ୍ରାଣିମାନଙ୍କ ସଦ୍‌ଗତିର ଉପାୟ ଉଦ୍ଭାବନରେ ପ୍ରବୃତ୍ତ ଥାନ୍ତି, ଏମନ୍ତ ସମୟରେ ଚୈତନ୍ୟ ଦେବଙ୍କ ସହିତ ତାହାଙ୍କର ଭେଟ ହେଲା :—

ଶ୍ରୀ ଅତିବଡ଼ ଜଗନ୍ନାଥ ।
ଦଶମସ୍କନ୍ଧ ଭାଗବତ ।
ଶ୍ରୀବୃକ୍ଷ ମୂଳର ବିଚାରି ।
କରନ୍ତି ଗଣେଶ ଆଗର ।
ଏହି ସମୟେ ଶ୍ରୀ ଚୈତନ୍ୟ ।
ସଙ୍ଗେ ଘେନିଣ ସଖାଗଣ ।
ବଟମୂଳରେ ବିଜେ କଲେ ।
ପୁରାଣ ଶୁଣି ତୋଷ ହେଲେ ।
ପ୍ରେମଭାବରେ ଶ୍ରୀ ଚୈତନ୍ୟ ।
ଦାସଙ୍କୁ କଲେ ଆଲିଙ୍ଗନ ।

ଶ୍ରୀ ଚୈତନ୍ୟ ଜଗନ୍ନାଥ ଦାସଙ୍କୁ ଆଲିଙ୍ଗନ କରି ଅଢ଼େଇ ଦିବସ ପର୍ଯ୍ୟନ୍ତ ଭାବାବେଶରେ ଅଚୈତନ୍ୟାବସ୍ଥାରେ ଥିଲେ—

"ଅଢ଼ାଇ ଦିବସ ପର୍ଯ୍ୟନ୍ତେ ।
ବୁଡ଼ି ରହିଲେ ଭାବଚିତ୍ତେ ।

* * *

ବୈଷ୍ଣବବୃନ୍ଦ ଯେତେ ଥିଲେ ।
ମାନ୍ୟ କରି ବସାକୁ ଗଲେ ।
ପ୍ରତିଦିବସ ଚଇତନ୍ୟ ।
ଆସନ୍ତି କରି ଦରଶନ ।
ବଟ ତଳେ ପୁରାଣ ଶୁଣି ।
ଦଣ୍ଡେ ରହନ୍ତି ପ୍ରେମ ଘୁଣି ।

ମାତ୍ର ତାହାଙ୍କର ସହଚରମାନେ ବଙ୍ଗଦେଶୀୟ ।

ବୈଷ୍ଣବବୃନ୍ଦ ଯେତେ ଥିଲେ ।
ଏମନ୍ତ ଦେଖି ବିଚାରିଲେ ।
ଉତ୍କଳ ବ୍ରାହ୍ମଣ ସହିତେ ।
ଭାବ ବଢ଼ାଇଲେ ନିରତେ ।
ଏହି ରାଜ୍ୟରେ ଏ ରହିବେ ।
ଉତ୍କଳୀ ଧର୍ମ ଆଚରିବେ ।
ଏ ସବୁ ଛଡ଼ାଇବା ଆମ୍ଭେ ।
ଏମନ୍ତ ବିଚାରି ଆରମ୍ଭେ ।

ଏହି କଥା ପରସ୍ପର ବିଚାର କରି ଶ୍ରୀ ଚୈତନ୍ୟ ଦେବଙ୍କୁ—

ବୋଇଲେ ଉତ୍କଳୀ ବ୍ରାହ୍ମଣ ।
ଅସ୍ପର୍ଶ ଦେଖି ଯେ ଆପଣ ।
ଏହାଙ୍କୁ ସ୍ପର୍ଶ କରିବାରେ ।
ନିଷେଧ ଅଛି ଯେ ଶାସ୍ତ୍ରରେ ।

ଜଃ ଚଃ

ଚୈତନ୍ୟ ଦେବ ବୈଷ୍ଣବମାନଙ୍କ ବାକ୍ୟ ଶୁଣି ହରଷ ହୋଇ କହିଲେ—

ଦ୍ୱାରକାପୁରେ ଭଗବାନ ।
ବ୍ରାହ୍ମଣେ କରନ୍ତି ମାନ୍ୟ ।
ସର୍ବ ଦେବତା ବସ୍ତୁ ଦେହେ ।
ବ୍ରାହ୍ମଣ ଦେହେ ବସ୍ତୁ ରହେ ।

* * *

ଏ ବାରତା ଦାସେ ପାଇଲେ ।
ପ୍ରଭୁଙ୍କ ଦର୍ଶନକୁ ଗଲେ ।
ବେନି ଅବସ୍ଥା ଘେନି କରେ ।
ମିଳିଲେ ଯାଇ ମଠଠାରେ ।
ସାତିଣ ସମ୍ପ୍ରଦ ସ୍ଥାନ ।
ବସାରେ ବିଜେ ଶ୍ରୀ ଚୈତନ୍ୟ ।
ଦାସେ ଯୋଡ଼ିଣ ବେନି ହସ୍ତ ।
ପ୍ରଭୁଙ୍କୁ କଲେ ଦଣ୍ଡବତ ।
ଆଜ୍ଞା ଯେ କଲେ ଶ୍ରୀ ଚୈତନ୍ୟ ।
ଆସହ ଦାସେ ଭକ୍ତିପୂର୍ଣ୍ଣ ।

ଜଃ ଚଃ

ଚୈତନ୍ୟ ଦେବଙ୍କ ଅଭ୍ୟର୍ଥନା ଗ୍ରହଣ କରି ଜଗନ୍ନାଥ ଦାସ ଆସନ ଗ୍ରହଣ କଲେ । ଭକ୍ତି ସମ୍ବନ୍ଧରେ ଏବଂ ଗୁରୁତତ୍ତ୍ୱ ସମ୍ବନ୍ଧରେ ଉଭୟଙ୍କ ମଧ୍ୟରେ କେତେକ କ୍ଷଣ ପର୍ଯ୍ୟନ୍ତ କଥୋପକଥନ ହେଲା । ଜଗନ୍ନାଥ ଦାସଙ୍କର ଧର୍ମ ଏବଂ ଭକ୍ତିତତ୍ତ୍ୱ ବିଷୟରେ ପ୍ରଗାଢ଼ ଜ୍ଞାନ ଦେଖି ଶ୍ରୀ ଚୈତନ୍ୟ ଦେବ ଆଜ୍ଞା କଲେ—"ହେ ଦାସେ, ଧାର୍ମିକତାରେ ଏବଂ ଜ୍ଞାନଗୌରବରେ ତୁମ୍ଭେ ଅମ୍ଭଠାରୁ ଅତି ବଡ଼ ଅଟ, ଏଥିକୁ "ଅତିବଡ଼" ଏହି ପଦ ପାଇବାର ଯୋଗ୍ୟ" । ପାରିଷଦମଣ୍ଡଳୀଙ୍କ ସାକ୍ଷାତରେ ଅତିବଡ଼ ଜଗନ୍ନାଥ ଦାସ ବୋଲି ସମ୍ବୋଧନ କଲେ । ଜଗନ୍ନାଥଚରିତାମୃତରେ ଏହିପରି ବର୍ଣ୍ଣିତ ଅଛି—

ଆପଣା ଶ୍ରୀଅଙ୍ଗ ପାଛୋଡ଼ି ।
କଷାବସନ ଅଙ୍ଗୁ କାଢ଼ି ।
ଦାସଙ୍କ ଶିରେ ବାନ୍ଧି ଦେଲେ ।
ଅତି ବଡ଼ ବୋଲି ବୋଇଲେ ।
ପ୍ରତି ଦିବସ ସ୍ନେହ ଚଢ଼େ ।
ତାହାନ୍ତ ଅତିବଡ଼ ନାମେ ।
ଶ୍ରୀ ଅତିବଡ଼ ଜଗନ୍ନାଥ ।
ତାହାନ୍ତ ମାନବ ସମସ୍ତ ।
ମହାପ୍ରଭୁଙ୍କ ମୁଖୁଁ ଶୁଣି ।
ସର୍ବେ ବୋଇଲେ ଏହି ବାଣୀ ।
ଏଣିବେ ଗଲା କେତେ ଦିନ ।
ଶ୍ରୀପୁରୁଷୋତ୍ତମେ ଚୈତନ୍ୟ ।
ଅତିବଡ଼ ବୋଲି ବୋଲନ୍ତେ ।
ବୈଷ୍ଣବେ ଦୁଃଖ କଲେ ଚିତ୍ତେ ।
ଉତ୍ତମ ବ୍ରାହ୍ମଣ ଅଣାଇ ।
ବୋଇଲେ ଅତିବଡ଼ ଏହି ।
ଆଜି ପର୍ଯ୍ୟନ୍ତ ସେବା କଲୁଁ ।
ସମସ୍ତେ ପାନ ପଦେ ଗଲୁଁ ।
ଏହାଙ୍କ ସଙ୍ଗେ ଯେବେ ଥିବା ।
ଏହି କଥା ସିନା ଶୁଣିବା ।

* * *

ଏମନ୍ତେ କେତେ ଦିନ ଗଲା ।
ଅତିବଡ଼ କଥା ବାଧିଲା ।

* * *

ଚୈତନ୍ୟ ଦେବ ପରଷରେ ଏହି ବିଷୟ ଅବଗତ ହୋଇ ପାରିଷଦମାନଙ୍କୁ କହିଲେ, ଏହି କ୍ଷେତ୍ରର ମହିମା ଅପାର, ଏ ସ୍ଥାନବାସୀ ବିପ୍ରଗଣ ପୂଜନୀୟ ଅଟନ୍ତି—ଅତିବଡ଼ ଜଗନ୍ନାଥ ଦାସ ସତ୍‌କୁଳଜାତ ବ୍ରାହ୍ମଣ, ବିଦ୍ୱାନ୍ ଏବଂ ଧାର୍ମିକପ୍ରଧାନ । ଅମ୍ଭ ମତରେ ସେ ଅମ୍ଭଠାରୁ ଅତି ବଡ଼ ଅଟନ୍ତି—

ଏ କ୍ଷେତ୍ର ଟେକା ଯେ ପାଷାଣ ।
ଈଶ୍ବର କାଷ୍ଠ ବାଲମାନ ।
ଅନ୍ୟ ରାଜ୍ୟକୁ ସେ କେବଳ ।
ମନୁଷ୍ୟ ଅବା କେତେ କଥା ।
ଏ ଯେନ ଅତିବଡ଼ ବାଣୀ ।
ଦାଶଙ୍କୁ ଚିତ୍ତ ନୁହେ ପୁଣି ।

* * *

ଏ ଭାବ ପ୍ରଭୁ ମୁଖୁଁ ଶୁଣି ।
ସର୍ବ ବୈଷ୍ଣବ ଦୁଃଖ ମଣି ।
କାତର ହେଲେ ସର୍ବେ ଚିତ୍ତେ ।
ଥିବାର ନୁହେଁଟି ଉଚିତେ ।
ଏ ଭାବ ମନରେ ଭାଳିଲେ ।
ପ୍ରଭୁଙ୍କ ସ୍ନେହ ଦୂର କଲେ ।
ମହାପ୍ରଭୁଙ୍କ ସଙ୍ଗ ଛାଡ଼ି ।
ଯାଜନଗରକୁ ଦେଲେ ଧାଡ଼ି ।
ରହିଲେ ଯାଜନଗ୍ରେ ଯାଇଁ ।
ଏଣେ ଶ୍ରୀ ଚୈତନ୍ୟ ଗୋସାଇଁ ।
ଷଟ୍ ମୂର୍ତ୍ତି ବୈଷ୍ଣବଙ୍କ ଭୁଲେ ।
ଶ୍ରୀପୁରୁଷୋତ୍ତମେ ରହିଲେ ।
ଭକ୍ତମାନଙ୍କ ସ୍ନେହ ଚିତ୍ତେ ।
ଦୟା ବହିଲେ ହୃଦଗତେ ।
ବୈଷ୍ଣବ ହରିଦାସ ନାମ ।
ସକଳ ମତେ ପ୍ରିୟତମ ।
ତାଙ୍କୁ ପେଷିଲେ ଦୟା ବହି ।
ସର୍ବ ମହନ୍ତେ ଅଣ ଯାଇ ।
ପତ୍ରିକାରେ ଶ୍ଳୋକ ଲେଖିଲେ ।
ହରିଦାସଙ୍କ ହସ୍ତେ ଦେଲେ ।

* * *

ଆଜ୍ଞାରେ ହରିଦାସେ ଗଲେ ।
ଯାଜନଗ୍ରରେ ପ୍ରବେଶିଲେ ।
ସର୍ବ ବୈଷ୍ଣବେ ମାନ୍ୟ କରି ।
କହିଲେ ସଭାକୁ ବିସ୍ତାରି ।
ସର୍ବ ବୈଷ୍ଣବ ସନମତେ ।
ପତ୍ରିକା ଦେଲେକ ଅଗ୍ରତେ ।
ଜଗଦାନନ୍ଦ ଚକ୍ରବର୍ତ୍ତୀ ।
ସଭାରେ ସଂମୁଖ ପଢ଼ନ୍ତି ।

ବୈଷ୍ଣବମାନଙ୍କ ପ୍ରତି ଶ୍ରୀଚୈତନ୍ୟ ଦେବଙ୍କ ପତ୍ର—"ତୃଣାଦପି ସୁନୀଚେନ ତରୋରପି ସହିଷ୍ଣୁନା ଅମାନିନା ମାନଦେନ କୀର୍ତ୍ତନୀୟଃ ସଦା ହରିଃ ।"

ଶୁଣି ବୈଷ୍ଣବେ ସ୍ଥିର ହୋଇ ।
ବୋଇଲେ ହରିଦାସେ ଚାହିଁ ।
ଆମ୍ଭରେ ସ୍ନେହ ଅଛି ଯେବେ ।
ଏଠାକୁ ଯେନ ଯାନ୍ତୁ ତେବେ ।
ନ ଦେଖି ଚୈତନ୍ୟ ଚରଣ ।
ନ ଯିବୁଁ ଏ କ୍ଷେତ୍ରବରେଣ !
ଶୁଣିଣ ହରିଦାସେ ଗଲେ ।
ପ୍ରଭୁଙ୍କୁ ଏ କଥା କହିଲେ ।
ଶୁଣିଣ ଚୈତନ୍ୟ ଗୋସାଇଁ ।
ଅତିବଡ଼ ଦାସଙ୍କୁ ଚାହିଁ ।
ବୋଇଲେ ଯାଜନଗ୍ରେ ଯିବା ।
ସକଳ ବୈଷ୍ଣବେ ଆଣିବା ।
ଅତିବଡ଼ ସ୍ୱାମୀ ବୋଇଲେ ।
ମୋ ଲାଗି ସର୍ବେ ରୁଷି ଗଲେ ।
ସେଠାକୁ ଯିବି ମୁଁ କେମନ୍ତେ ।
କ୍ରୋଧ ବହିବେ ସର୍ବେ ଚିତ୍ତେ ।
ଶ୍ରୀମହାପ୍ରଭୁ ଆଜ୍ଞା ଦେଲେ ।
ମିଶାଇ ଦେବୁ ତାଙ୍କ ଭୁଲେ ।
ଆମ୍ଭର ବଚନ ରହିବ ।
ତାଙ୍କ ତୁମ୍ଭର ପ୍ରୀତି ହେବ ।
ଷଷ୍ଠ ମୂର୍ତ୍ତି ବୈଷ୍ଣବ ସଙ୍ଗେ ।
ଯାଜ ନଗରେ ପ୍ରଭୁ ରଙ୍ଗେ ।
ପ୍ରବେଶ ଯାଜ ନଗ୍ରେ ଯାଇ ।
ବୈଷ୍ଣବବୃନ୍ଦେ ଛନ୍ତି ଯହିଁ ।
ଶୁଣି ବୈଷ୍ଣବେ ତୁଷ୍ଟ ହେଲେ ।
ଦୂରକୁ ପାଛୋଟି ଆଇଲେ ।
ଅଗତ ସ୍ୱାଗତ ଭୋଜନ ।
ଏ ଭାବେ ଗଲା କେତେ ଦିନ ।

ଧନେକ ଅଗାଧ ହରଷେ ।
ଭାବନ୍ତେ ଅତିବଡ଼ ଦାଶେ ।
ପୂର୍ବ କଥା ଯେଣୁ ଶୁଣିଲେ ।
ବୈଷ୍ଣବେ ଅତି ଦୁଃଖ କଲେ ।
ଯେଉଁ କଥାକୁ ଏତେ ଦୂର ।
ଏବେ ବୋଇଲେ ସେ ଉତ୍ତର ।
ପୁରୁଷୋତ୍ତମେ ପେବେ ଯିବା ।
ଏହି କଥା ସିନା ଶୁଣିବା ।

ଏହି କଥା ଶୁଣି ଚୈତନ୍ୟ ଦେବ କହିଲେ—

ତୁମ୍ଭେ ବା ଦୁଃଖ କର କେଉ ।
ଏ ଅତିବଡ଼ ଜଗନ୍ନାଥ ।
ଆମ୍ଭ ବଚନ ଅନ୍ୟ ନୋହି ।
ଏ ଅତି ବଡ଼ ଯୋଗ୍ୟ ହୋଇ ।

ଆମ୍ଭେମାନେ ଏ କ୍ଷେତ୍ରରେ ଦୁଇଗୋଟି କଥା ଦେଖୁଅଛୁଁ; ଚୈତନ୍ୟ ଦେବଙ୍କର ଉତ୍କଳ ଦେଶ ପ୍ରତି ଶ୍ରଦ୍ଧା ଓ ସ୍ୱଜାତୀୟ ବିପ୍ରପ୍ରୀତି ଏବଂ ସାଧୁ ସର୍ବତ୍ୟାଗୀ ବୈଷ୍ଣବମାନଙ୍କର ବିଦ୍ୱେଷ ଭାବ । ଶ୍ରୀ ଚୈତନ୍ୟ ଦେବଙ୍କର ପବିତ୍ର ଦେଶ, ପିତାମହଙ୍କ ଜନ୍ମସ୍ଥାନ, ସ୍ୱମତ ପ୍ରଚାରର ପ୍ରଶସ୍ତ କ୍ଷେତ୍ର ଉତ୍କଳ ଦେଶ ପ୍ରତି ଏତେଦୂର ମାୟା, ପ୍ରୀତି ଏବଂ ଭକ୍ତି ଥିଲା ଯେ ସେ ସନ୍ନ୍ୟାସ ଜୀବନର ଚତୁର୍ବିଂଶତ ବର୍ଷ ଯାବତ୍ ଉତ୍କଳ ତ୍ୟାଗ କରି ଯାଇ ନାହାନ୍ତି—

"ଛଅ ବତ୍ସର କୈଲ ଐଛେ ଗମନାଗମନ ।

* * *

ଶେଷ ଅଷ୍ଟାଦଶ ବର୍ଷ ନୀଳାଚଳେ ବାସ ।

ଚୈ: ଚ:

ଉତ୍କଳୀମାନଙ୍କ ପ୍ରତି ମଧ୍ୟ ତାହାଙ୍କର ପ୍ରଗାଢ଼ ସ୍ନେହ ଏବଂ ପ୍ରୀତି ଥିଲା । ବଙ୍ଗୀୟ ଯେ ସମସ୍ତ ମହାପୁରୁଷ ପ୍ରଭୁଙ୍କର ନିତାନ୍ତ ଅନ୍ତରଙ୍ଗ, ତରୁଣ ସହଚର, ଧର୍ମଚର୍ଚ୍ଚା ଧର୍ମପ୍ରଚାର ବିଷୟରେ ପ୍ରଧାନ ସହାୟ ଏବଂ ଶିଷ୍ୟରୂପେ ତାହାଙ୍କର ଅନୁଗାମୀ ହୋଇଥିଲେ,କେବଳ ଜଣେ ଉତ୍କଳୀ ବ୍ରାହ୍ମଣ ଜଗନ୍ନାଥ ଦାଶଙ୍କ ଅନୁରୋଧରେ ସମସ୍ତଙ୍କୁ ପରିତ୍ୟାଗ କରିବାକୁ କୁଣ୍ଠିତ ହେଲେ ନାହିଁ । ଜଗନ୍ନାଥ ଦାଶଙ୍କ ସହିତ ଶ୍ରୀ ଚୈତନ୍ୟଙ୍କର ମିଳନ ସମ୍ବନ୍ଧରେ ଆମ୍ଭେମାନେ ପ୍ରଭୁଙ୍କ ଚରିତ୍ରରେ ଗୋଟିଏ ବିଶେଷତ୍ୱ ଦେଖୁଅଛୁଁ । ଚୈତନ୍ୟ ଦେବଙ୍କ ବିଶ୍ୱାସ, ଜଗତ୍ ସଂସାରରେ କେହି ତାହାଙ୍କର ନୁହେଁ, ସେ କାହାର ନୁହନ୍ତି । ହୃଦୟ-ବଲ୍ଲଭା ନେତ୍ରପ୍ରତିମା ବିଷ୍ଣୁପ୍ରିୟାଙ୍କୁ କର୍ତ୍ତବ୍ୟ ଅନୁରୋଧରେ ପରିତ୍ୟକ୍ତ ପୁଷ୍ପମାଳା ପରି ଏବଂ ଜନନୀ ଶଚୀ ଦେବୀଙ୍କୁ ମସ୍ତକର କେଶ ସମାନ ସହଜରେ ପରିତ୍ୟାଗ କରି ଆସିଲେ । ଗୃହତ୍ୟାଗ ସମୟରେ କହିଥିଲେ—

"ଧରିଯା ଯୋଗିର ବେଶ ଯାବ ଦେଶେ ଦେଶେ
ଯଥା ଗେଲେ ପାବ ପ୍ରାଣନାଥେର ଉଦ୍ଦେଶେ ।"

ସ୍ୱଦଳ ସହିତ ନୀଳାଚଳ ଯାତ୍ରା ସମୟରେ ଗଙ୍ଗା ପାର ହୋଇ "ଓଡ୍ର" ଦେଶ ମଧ୍ୟରେ ଆସୁଅଛନ୍ତି, ବାଟରେ—

କତ ଦୂରେ ଗେଲେ ମାତ୍ର ଦାନୀ ଦୁରାଚାର
ରଖିଲେକ ଦାନ ଗୃହେ ନ ଦେୟ ଯାଇବାର ।

ଚୈ: ମ:

ମାତ୍ର ପ୍ରଭୁଙ୍କ ତେଜ ଦେଖି ଦାନୀ ଦାନରେ ବାଟ ଛାଡ଼ି ଦେଲା ଏବଂ ପ୍ରଭୁଙ୍କ ସହଯାତ୍ରିମାନଙ୍କୁ ଲକ୍ଷ କରି ପଚାରିଲା—

ଜିଜ୍ଞାସିଲ ତୋମାର କତକ ଲୋକ ହୟ ।

ଚୈ: ମ:

ପ୍ରଭୁ କହେ ଜଗତେ ଆମାର କେହ ନୟ
ଆମିଓ କାହାର ନହି କହିଲ ନିଶ୍ଚୟ ।
————ଏକ ଆମି ଦୁଇ ନାହିଁ
ଅଥଚ————ସକଳ ଆମାର

ଅର୍ଥାତ୍ ସେ ବିଶ୍ୱାସ କରନ୍ତି, ସେ ବିଶ୍ୱସଂସାରର ଏବଂ ବିଶ୍ୱସଂସାର ତାହାଙ୍କର ।

ସେହି ସମଦର୍ଶୀ ନ୍ୟାସୀ ପ୍ରଭୁ ଜଗନ୍ନାଥ ଦାଶଙ୍କୁ ବିଶେଷ ଆପଣାର ଜ୍ଞାନ କରି ତାହାଙ୍କୁ ହୃଦୟ ସମର୍ପଣ କରିଥିଲେ ଏବଂ ସେହି ଜଗନ୍ନାଥ ଦାଶଙ୍କ ସହବାସ ଅନୁରୋଧରେ ଶ୍ରୀକ୍ଷେତ୍ର ଧାମକୁ

ଧର୍ମାର୍ଜନ ଓ ଧର୍ମପ୍ରଚାରର ପ୍ରଶସ୍ତ କ୍ଷେତ୍ର କରି ସମସ୍ତ ଜୀବନ ଅତିବାହିତ କରିଥିଲେ ।

ଅନ୍ୟତ୍ର ଯେ ସମସ୍ତ ମହାପୁରୁଷ କେବଳ ଚୈତନ୍ୟ ଦେବଙ୍କ ଦତ୍ତ ଧର୍ମପ୍ଲବରେ ଏବଂ ତାହାଙ୍କ ପ୍ରେମରେ ଉନ୍ମତ୍ତ ହୋଇ 'ସ୍ୱର୍ଗାଦପି ଗରୀୟସୀ' ଜନନୀ ଜନ୍ମଭୂମି, ହୃଦୟବଲ୍ଲଭ ଜ୍ଞାତି ପରିଜନ ସଂସାରବନ୍ଧନର ରଜ୍ଜୁ ସ୍ୱରୂପ ଯଥାସର୍ବସ୍ୱ ଅବଲୀଳାକ୍ରମେ ପରିତ୍ୟାଗପୂର୍ବକ ପ୍ରଭୁଙ୍କ ପଶ୍ଚାଦ୍‌ଗାମୀ ଏବଂ ଛାୟା ସମାନ ଅହର୍ନିଶ ନିକଟବର୍ତ୍ତୀ ଥିଲେ ଏବଂ ପ୍ରଭୁଙ୍କ କ୍ଷଣିକ ବିରହରେ ଯେଉଁମାନଙ୍କୁ ଜଗତ୍ ସଂସାର ତମିସାଚ୍ଛନ୍ନ ପରି ପ୍ରତୀୟମାନ ହେଉଥିଲା, ସେମାନେ ଅତି ତୁଚ୍ଛ ଅସମ୍ମାନ ସହ୍ୟ କରିବାକୁ କ୍ଷମ ହେଲେ ନାହିଁ । ବୈଷ୍ଣବମାନେ ଆପଣାମାନଙ୍କୁ ପ୍ରଭୁଙ୍କର ନିତାନ୍ତ ବିଶ୍ୱସ୍ତ ଭକ୍ତ ଓ ବିଶେଷ ଅନୁଗୃହୀତ ବୋଲି ଜ୍ଞାନ କରୁଥିଲେ । ମାତ୍ର ଜଗନ୍ନାଥ ଦାସ ଅତିବଡ଼ ପଦ ପାଇବାରୁ 'ତୃଣାଦପି ସୁନୀଚେନ—ତରୋରପି ସହିଷ୍ଣୁନା—' ବୈଷ୍ଣବ ଧର୍ମର ବୀଜ ମନ୍ତ୍ର ବିସ୍ମରଣପୂର୍ବକ ଅନ୍ୟତ୍ର ଚାଲି ଗଲେ । ଆମ୍ଭେମାନେ ମଧ୍ୟ ଦେଖୁଅଛୁଁ କେବଳ ଶ୍ରୀଚୈତନ୍ୟଙ୍କର ତାତ୍କାଳିକ ସଙ୍ଗୀମାନଙ୍କର ନୁହେ, ବଙ୍ଗଦେଶୀୟ ଅନ୍ୟାନ୍ୟ ବୈଷ୍ଣବମଣ୍ଡଳୀର ମଧ୍ୟ ଜଗନ୍ନାଥଦାସଙ୍କ ପ୍ରତି ଗୋଟାଏ କପଟ ପ୍ରଚ୍ଛନ୍ନ ବିଦ୍ୱେଷଭାବ ଥିଲା ପରି ଜଣାଯାଏ । ଗୋସ୍ୱାମୀ ଗ୍ରନ୍ଥକାରମାନେ ଚୈତନ୍ୟ ଦେବଙ୍କ ଶ୍ରୀକ୍ଷେତ୍ରସ୍ଥ ଯାବତୀୟ ଲୀଳା ଆପଣା ଆପଣା ଗ୍ରନ୍ଥରେ ବିଶଦଭାବରେ ବର୍ଣ୍ଣିତ କରି ଯାଇଅଛନ୍ତି । ପ୍ରଭୁଙ୍କ କ୍ଷେତ୍ରସ୍ଥ ଲୀଳାମଧ୍ୟରେ ସାର୍ବଭୌମଙ୍କ ସହିତ ଶାସ୍ତ୍ରାର୍ଥ ବିଚାର ଏବଂ ଜଗନ୍ନାଥ ଦାସଙ୍କ ସହିତ ସମ୍ମିଳନ ଏହି ଦୁଇ ଗୋଟି ପ୍ରଧାନ ଘଟନା । ମିଳନ ସମୟରେ ଉଭୟଙ୍କ ବୟସ ସମାନ ଅର୍ଥାତ୍ ୨୪ ବର୍ଷ ହୋଇଥିଲା । ଚୈତନ୍ୟ ଦେବଙ୍କ ଜନ୍ମ ୧୪୦୭ ଶକ ଫାଲଗୁନ ପୂର୍ଣ୍ଣିମା, ଜଗନ୍ନାଥ ଦାସଙ୍କ ଜନ୍ମ ମଧ୍ୟ ୧୪୦୭ ଶକ ଭାଦ୍ର ଶୁକ୍ଳାଷ୍ଟମୀ । ଉଭୟେ ଯେମନ୍ତ ପରାମର୍ଶ କରି ଜନ୍ମ ଗ୍ରହଣ କରିଥିଲେ । ଜଗନ୍ନାଥ ଦାସଙ୍କ ସହିତ ସମ୍ମିଳନ ବୃତ୍ତାନ୍ତ ଉଲ୍ଲେଖ କରିଥିଲେ ବୋଧ କରୁଁ ଚୈତନ୍ୟଚରିତାମୃତରେ ଦଶ ଅଧ୍ୟାୟ ପାଠ ବଳ ପଡ଼ିଥାନ୍ତା, ମାତ୍ର କୃଷ୍ଣଦାସ କବିରାଜ ବା ଅନ୍ୟ ଗ୍ରନ୍ଥକାର ଜଗନ୍ନାଥ ଦାସଙ୍କ ନାମୋଲ୍ଲେଖ ଭିନ୍ନ ଅନ୍ୟ କୌଣସି ପ୍ରସଙ୍ଗ ଲେଖି ନାହାନ୍ତି ।

ଶ୍ରୀନାଥ ଚକ୍ରବର୍ତ୍ତୀ ଆଉ ଉଦ୍ଧାରଣ ଦାସ
କଡା ମିଶ୍ର କାଠକାଟା ଜଗନ୍ନାଥ ଦାସ । ଚୈ: ଭା:

ବୈଷ୍ଣବ ଗୋସାଇଁମାନେ ଯେ କେବଳ ଜଗନ୍ନାଥ ଦାସଙ୍କୁ ତ୍ୟାଗ କରି ଯାଇଥିଲେ ଏମନ୍ତ ନୁହେ, ଉତ୍କଳ ଦେଶ ପ୍ରତି ମଧ୍ୟ ସେମାନଙ୍କର କେମନ୍ତ ଗୋଟାଏ କ୍ରୋଧ ଥିଲା । ଗୋସ୍ୱାମୀ ବୃନ୍ଦାବନ ଦାସ ଚୈତନ୍ୟ ଭାଗବତରେ ଲେଖି ଅଛନ୍ତି—

"ଗଙ୍ଗାତୀରେ ପୁଣ୍ୟସ୍ଥାନ ସକଲ ଆଛୟେ ।
ବୈଷ୍ଣବ ଜନ୍ମୟେ କେନ ଅଶୌଚ ଦେଶେତେ ।
ଚୈ: ଭା:

ଅର୍ଥାତ୍ ଓଡ଼ିଶା ପରି ଅପବିତ୍ର ଦେଶରେ ବୈଷ୍ଣବ ଜନ୍ମିବା ଅନୁଚିତ ।

"ଆପନେ ହଇଲା ଅବତୀର୍ଣ୍ଣ ଗଙ୍ଗାତୀରେ ।
"ସଙ୍ଗେର ପାର୍ଷଦ ଜନ୍ମାଇଲେନ ଦୂରେଦୂରେ ।
※ ※ ※
"ଯେ ଦେଶେ ପାଣ୍ଡବ ନାହିଁ ଗେଲ କଦାଚିତ ।

ଚୈତନ୍ୟ ଦେବ କି ସହାସେ ଅପାଣ୍ଡବା ଦେଶକୁ ଆସିଥିଲେ ବୃନ୍ଦାବନ ଦାସ ଠାକୁରେ ସେଥିର ଗୋଟାଏ କୈଫିୟତ୍ ଦେଇଅଛନ୍ତି:—

"ସଂସାର ତାରିତେ ଶ୍ରୀ ଚୈତନ୍ୟ ଅବତାର
* * *
ଶୋଚ୍ୟ ଦେଶେ ଶୋଚ୍ୟ କୁଲେ ଆପନ ସମାନ
ଜନ୍ମାଇୟା ବୈଷ୍ଣବ ସବାରେ କରେ ତ୍ରାଣ ।
ଚୈ: ଭା:

ଅର୍ଥାତ୍ ଶୋଚ୍ୟ ଦେଶ ଓ ଶୋଚ୍ୟ କୁଳରେ ଆପଣା ସମାନ ବୈଷ୍ଣବ ଜନ୍ମାଇ ସେମାନଙ୍କୁ

ଉଦ୍ଧାର କରିବାକୁ ହେବ, ଶ୍ରୀ ଚୈତନ୍ୟ ଦେବଙ୍କର ଏହିପରି ଉଦ୍ଦେଶ୍ୟ ଥିଲା, ସେଥି ସକାଶେ ସେ ପୃଥିବୀ ସାର ଖୋଜି ଖୋଜି ଭାର ଗୋଟାଏ ଅପବିତ୍ର ଦେଶ ଓଡ଼ିଶା ପାଇଥିଲେ ।

ମାତ୍ର ସ୍ୱୟଂ ଚୈତନ୍ୟ ମହାପ୍ରଭୁଙ୍କର କିପରି ଧାରଣା ଥିଲା ତାହାଙ୍କ ଶ୍ରୀମୁଖ ବାକ୍ୟରୁ ବୁଝନ୍ତୁ ।

"ଯଦ୍ୟପ୍ୟେଷ ଜଗନ୍ନାଥଃ ସର୍ବଗଃ ସର୍ବଭାବନଃ ।
ସନ୍ତି କ୍ଷେତ୍ରାଣି ଚାନ୍ୟାନି ସର୍ବପାପହରାଣି ବୈ ।
ଏତତ୍ତୁ କ୍ଷେତ୍ରଂ ବରିଷ୍ଠାସ୍ୟ ବପୁର୍ଭୂତଂ ମହାତ୍ମନଃ ।
ସ୍ୱୟଂ ବପୁଷ୍ମାନ୍ ଭତ୍ରାସ୍ତେ ସ୍ୱନାମ୍ନା ଖ୍ୟାପିତଂ ହି ତତ୍ ।
ତତ୍ର ଯେ ସ୍ଥାତୁମିଚ୍ଛନ୍ତି ତେ ସର୍ବେଽପି ହତାଂହସଃ ।
କିଂ ପୁନସ୍ତତ୍ର ତିଷ୍ଠନ୍ତୋ ଯେ ପଶ୍ୟନ୍ତି ଗଦାଧରମ୍ ।
(ସ୍କନ୍ଦପୁରାଣ ଉତ୍କଳଖଣ୍ଡ ପ୍ରଥମ ଅଧ୍ୟାୟ,
୯ । ୧୦ । ୧୧ । ଶ୍ଳୋକ ।)

ଅସ୍ୟାର୍ଥଃ—ଯେବେହେଁ ଏହି ଜଗନ୍ନାଥ ସର୍ବବ୍ୟାପୀ ସକଳର କାରଣ ଏବଂ ବହୁଳ ପାପନାଶକ ଅନ୍ୟାନ୍ୟ କ୍ଷେତ୍ର ମଧ୍ୟ ଅଛି, ତଥାପି ଏହି କ୍ଷେତ୍ରଟି ସେହି ମହାତ୍ମା ଭଗବାନଙ୍କର ବପୁଃସ୍ୱରୂପ ହେବାରୁ ସବୁଠାରୁ ଶ୍ରେଷ୍ଠତ୍ୱ ଲାଭ କରିଅଛି । ଏହି ମହାପ୍ରଭୁ ସ୍ୱୟଂ ବିଗ୍ରହଧାରୀ ହୋଇ ଏହି ସ୍ଥାନରେ ଅବସ୍ଥାନ କରୁଅଛନ୍ତି ଏବଂ ଏହି କ୍ଷେତ୍ରକୁ ସ୍ୱନାମରେ ବିଖ୍ୟାତ କରିଅଛନ୍ତି । ଏ ସ୍ଥାନରେ ଯେଉଁମାନେ ଅବସ୍ଥାନ କରିବାକୁ ଇଚ୍ଛା କରନ୍ତି, ସେମାନଙ୍କର ସମସ୍ତ ପାପ ବିନଷ୍ଟ ହୁଏ ଏବଂ ଯେଉଁମାନେ ବାସ କରି ଗଦାଧରଙ୍କ ସେହି ମୂର୍ତ୍ତି ଦର୍ଶନ କରୁଅଛନ୍ତି ସେମାନଙ୍କ ସୌଭାଗ୍ୟ ବର୍ଣ୍ଣନାତୀତ ।

ଅପିଚ ସୁଦୀର୍ଘକାଳ ଯାବତ୍ ଯେଉଁ ଦେଶ ମର୍ତ୍ତ୍ୟଲୋକରେ ସ୍ୱର୍ଗଧାମ ସ୍ୱରୂପ, ବୌଦ୍ଧ ଭିକ୍ଷୁମାନଙ୍କର ଧ୍ୟାନକ୍ଷେତ୍ର, ବୈଷ୍ଣବ ସାଧୁମାନଙ୍କର ଲୀଳାଭୂମି, ଶୈବ ଗାଣପତ୍ୟ ଓ ଶାକ୍ତ ସମସ୍ତଙ୍କର ଅଭୀଷ୍ଟ ସ୍ଥାନ ସେହି ଦେଶ 'ଅପାଣ୍ଡବ' 'ଶୋଚ୍ୟ', ଦେଶବାସୀ ପତିତ ! ଶ୍ରୀବୃନ୍ଦାବନ ଦାସ ଠାକୁରଙ୍କ ଉଦ୍ଦେଶ୍ୟରେ ଓଲଟି ହେବା ଛଡ଼ା ଅଉ କଣ କହିବୁଁ ? ପାର୍ଷଦ ବୈଷ୍ଣବବୃନ୍ଦର ବା ପରବର୍ତ୍ତୀ ଗ୍ରନ୍ଥକାର ଗୋସ୍ୱାମୀମାନଙ୍କର ଉକ୍ତିର ଦୁଇ ଗୋଟି କାରଣ ଦେଖୁଅଛୁଁ ।

୧ମ । ସେମାନଙ୍କ ମତରେ ଚୈତନ୍ୟଦେବ ସ୍ୱୟଂ କୃଷ୍ଣଙ୍କ ଅବତାର, ସୁତରାଂ ତାଙ୍କଠାରୁ ଆଉ ଜଣେ ବଡ଼ ହେବା ଅସମ୍ଭବ ।

୨ୟ । ଏତେ ଭକ୍ତ ଓ ପାରିଷଦ ଥାଇ ଥାଉ କେବଳ ଜଗନ୍ନାଥ ଦାସେ ଅତିବଡ଼ ପଦ ପାଇବେ, ଏହା ନିତାନ୍ତ ଅସହ୍ୟ କଥା ।

ଏ ବିଷୟ ଏହି ପର୍ଯ୍ୟନ୍ତ ହେଉ । ଏ ଉତ୍ତରେ ଯାଜନଗରରେ ବୈଷ୍ଣବମଣ୍ଡଳୀ ପ୍ରଭୁଙ୍କ ଶ୍ରୀମୁଖରୁ ଯେତେବେଳେ ସ୍ପଷ୍ଟ ଶୁଣିଲେ—

"ଅମ୍ଭ ତରକ ଅନ ନୋହି ।
ଏ ଅତି ବଡ଼ ଯୋଗ୍ୟ ହୋଇ ।
ସେତେବେଳେ—
ଏ କଥା ବୈଷ୍ଣବେ ଶୁଣିଲେ ।
ମହାପ୍ରଭୁଙ୍କୁ ଖୁଣ୍ଟ ଦେଲେ ।
ବଣ କୃଷ୍ଣ ପୁରକୁ ଯାଇ ।
ରହିଲେ ସ୍ଥାନ କରି ତହିଁ ।

ବୈଷ୍ଣବବୃନ୍ଦ ଗଲ ଯିବାରୁ—

ଏଣେ ଚୈତନ୍ୟ ବଜେ ଭଲେ
ପୁରୁଷୋତ୍ତମରେ ରହିଲେ ।
ମାତ୍ର ଧର୍ମପ୍ରାଣ ବୈଷ୍ଣବବୃନ୍ଦ

ପ୍ରଭୁଙ୍କ ବିଚ୍ଛେଦ ସହି ନ ପାରି—

ପୁଣିହିଁ ସମ୍ବତ୍ସର ଅନ୍ତେ
ସର୍ବ ବୈଷ୍ଣବ ଶୁଦ୍ଧ ଚିତ୍ତେ ।
ଶ୍ରୀ ପୁରୁଷୋତ୍ତମ ଦର୍ଶନ ।
ହୁଅନ୍ତେ ମନ ଛନ ଛନ ।
ମାଧି ଦାସଙ୍କୁ ହକାରିଲେ ।
ମହାପ୍ରଭୁଙ୍କୁ ଭାଷା ଦେଲେ ।
ସେ ମାଧି ଦାସ ଚଳି ଗଲେ ।
ପ୍ରଭୁଙ୍କୁ ଦଣ୍ଡବତ ଦେଲେ ।
ପୁଣି ପୁଚ୍ଛିଲେ ଶ୍ରୀ ଚୈତନ୍ୟ ।
ବୈଷ୍ଣବ ତରନ୍ତ କଥାନ ।

ସେ ମାଧ ଦାସ କହେ ବାଣୀ ।
ତୁମ୍ଭ ପ୍ରସାଦେ ସର୍ବ ପୁଣି ।
ସର୍ବ କୁଶଳ ସର୍ବ ସିଦ୍ଧି ।
ଭକ୍ତି କରନ୍ତୁ ସଂସିଦ୍ଧି ।
ଶୁଣିଣ ପ୍ରଭୁ ହର୍ଷ ହେଲେ ।
ଗୌରାଙ୍ଗ ଅଶ୍ରୁ ଜଳ ଗଳେ ।
ସେ ମାଧ କହିଲେ ଅଗ୍ରେ ।
ଏମନ୍ତେ କହୁ ହଜ ଅନ୍ତେ ।
ବାଞ୍ଛନ୍ତି ପାରଷଦଗଣ ।
ତୀର୍ଥକୁ କରିବା ଭ୍ରମଣ ।
ନାଥ ହେ ମହାପ୍ରଭୋ! ତୁମ୍ଭେ ତ——
ଉତ୍କଳ ରାଜ୍ୟରେ ରହିଲ ।
ଉତ୍କଳ ଧର୍ମ ଆଚରିଲ ।
ଚୈ: ଚ:

ମାଧଦାସଙ୍କ ବାକ୍ୟ ଶ୍ରବଣ କରି ପ୍ରଭୁ ଆଜ୍ଞା କଲେ—

"ରହିବ ମାଧ ଦାସେ ଯାଅ ।
ଏହି ପଞ୍ଜିକା ତହିଁ ଦେଅ ।
* * *
ସେ ମାଧ ଦାସେ ଆଜ୍ଞା ନେଲେ ।
ବୈଷ୍ଣବମଣ୍ଡଳୀରେ ଦେଲେ ।
ତହିଁରେ ଅଛୁ ଲେଖା ହୋଇ ।
କାଶିଧାମ ଦେଖିଛୁ ମୁହିଁ ।
ମଥୁପୁର ଗୋପନଗର ।
ବୃନ୍ଦାବନ ଦ୍ୱାରକାପୁର ।
ଗଙ୍ଗାଦ୍ୱାର ଗଙ୍ଗାସଙ୍ଗମ ।
ଅଯୋଧ୍ୟା ବଦରିକାଶ୍ରମ ।
ଏ ସର୍ବ ସ୍ଥାନେ କୃଷ୍ଣ ଥିଲେ ।
ଯୁଗାନ୍ତ ହେଲେ ଛାଡ଼ି ଗଲେ ।
ଛାଡ଼ି ସକଳ କ୍ଷେତ୍ର ତୀର୍ଥ ।
ନୀଳକନ୍ଦରେ ଜଗନ୍ନାଥ ।
ମୂର୍ତ୍ତି ଯେ ଜଗତକୁ ମୋହି ।
ବେଣୁ ଅଛେ କରନ୍ତି ମୁହିଁ ।
ନୀଳାଚଳ ସମାନେ ସ୍ଥାନ ।
ଜଗତେ ନାହିଁ ବୋଲି ଜାଣ ।

ଏ ଦେହ ଥିବା ପର୍ଯ୍ୟନ୍ତ ।
ଛାଡ଼ିବ ନାହିଁ କଦାଚିତ ।
ଏ ଭାଷା ଶୁଣିଣ ବୈଷ୍ଣବେ ।
କାତର ହେଲେ ମନେ ସର୍ବେ ।
କାତରୁ ଥିଲୁଁ ଅମ୍ଭେ ଚିତ୍ତେ ।
ଦୟା ବହିବେ ଶଚୀସୁତେ ।
ଅଦ୍ଭୁତ ପଦ ଛଡ଼ାଅ ।
ପାଶକୁ ପୁଣି ନେବେ ସେହି ।
ଶ୍ରୀ ପୁରୁଷୋତ୍ତମେ ନ ଥିବା ।
ତ ଅଶେ ଉଦ୍ଧବ କରିବା ।
ଏ ଉତ୍ତରେ ବୈଷ୍ଣବବୃନ୍ଦ——
ଛାଡ଼ି ପୁରୁଷୋତ୍ତମ ଆଶ ।
ଶ୍ରୀ ବୃନ୍ଦାବନେ କଲେ ବାସ ।

ଥୋକେ ଦିବସ ବୃନ୍ଦାବନରେ ରହିବା ଉତ୍ତରେ—

ଦ୍ୱାଦଶ ମହାନ୍ତ ଯେ ଥିଲେ ।
ଲେଉଟି ଦେଶକୁ ଆଇଲେ ।
ଦ୍ୱାଦଶ ସ୍ଥାନେ କରି ଘର ।
ଅଦର ରହିଲେ ସଂସାର ।
ସେ କାଳେ ମଠ ଥିଲା ହୋଇ ।
ଏବେ ଦ୍ୱାଦଶ ପାଟ କହି ।
ଶ୍ରୀ ଚଇତନ୍ୟ ବାଲ୍ୟକାଳେ ।।
ନବଦ୍ୱୀପରେ ଉଦେ ହେଲେ ।
ନଦୀୟା ନବଦ୍ୱୀପ ଘାଟ ।
ସେ ଅଟେ ଚୈତନ୍ୟଙ୍କ ପାଟ ।
ଖଡ଼ଦ ଗ୍ରାମ ପାଟ କଲେ ।
ନିତ୍ୟାନନ୍ଦ ପ୍ରଭୁ ରହିଲେ ।
ଶାନ୍ତିପୁରରେ ଶ୍ରୀ ଅଚ୍ୟୁତ ।
ପାଟ ଯେ ତାହାଙ୍କ ବିଦିତ ।
ଅମ୍ବୁଆ ପାଟରେ ଠାକୁର ।
ଗୌରୀ ଦାସ ପଣ୍ଡିତବର ।
ଖାନାକୁଳ କୃଷ୍ଣନଗର ।
ପାଟେ ଅଭିରାମ ଠାକୁର ।

ଚନ୍ଦନପୁର ପାଟ ହୋଇ ।
ତହିଁରେ ଶ୍ରୀଦାଶ ଗୋସାଇଁ ।
ମଣ୍ଡପଡ଼ାରେ ଯେଉଁ ପାଟ ।
ତହିଁ ଜଗଦାସ ପଣ୍ଡିତ ।
ରାମକେଳି ଗ୍ରାମ ପାଟରେ ।
ଶ୍ରୀରୂପ ଗୋସାଇଁ ତହିଁରେ ।
ଅଗ୍ରାଦ୍ୱୀପ ପାଟ ଯା ତହିଁ ।
ତହିଁରେ ଶ୍ରୀଘୋଷ ଗୋସାଇଁ ।
ଯାଜନଗ୍ରରେ ପାଟ ସାକେ ।
ଅର୍ଗ୍ଯ୍ୟ ଗୋସାଇଁଙ୍କ ବଜେ ।
ବରାନଗ୍ର ପାଟ ସୁନ୍ଦର ।
ଶ୍ରୀ ଭାଗବତାଚାର୍ଯ୍ୟବର ।
ପାଣିହାଟି ଗ୍ରାମ ପାଟରେ ।
ଶ୍ରୀ ସିନ୍ଧୁରାନନ୍ଦ ଠାକୁର ।
ହଗାଫଳନ୍ତି ଯାର ନାମ ।
ସରଙ୍ଗ ଗୋସାଇଁ ଥାଶ୍ରମ ।

ବୈଷ୍ଣବ ଗୋସାଇଁମାନଙ୍କର ସମସ୍ତ ପାଟର ଉତ୍ତାରେ—

ଏ କଥା ବୁଝି ଶ୍ରୀ ଚୈତନ୍ୟ ।
ମଥୁରା ଦାସଙ୍କୁ ଘରଣ ।
ବୋଇଲେ ବୃନ୍ଦାବନେ ଯିବ ।
ବୈଷ୍ଣବମାନଙ୍କୁ ଅଣିବ ।
ମଥୁରା ଦାସେ ଅଜ୍ଞା କେଲେ ।
ବୃନ୍ଦାବନରେ ପ୍ରବେଶିଲେ ।

ଶ୍ରୀ ଚୈତନ୍ୟଦେବଙ୍କ ଅଜ୍ଞାପତ୍ର ମଥୁରା ଦାସଙ୍କ ହସ୍ତରୁ ପାଠ—

ବୋଡ଼ବ ମୂର୍ତ୍ତି ସଜ ହେଲେ ।
ଗୁଣ୍ଡିଚ୍ଚ ଯାତ୍ରାକୁ ଅଇଲେ ।

ଜ : ଚ :

ପ୍ରଥମ ବର୍ଷର ଅଦ୍ୱୈତାଦ ଭକ୍ତଗଣ
ପ୍ରଭୁରେ ଦେଖିବେ କୈଲ ନୀଳାଦ୍ରି ଗମନ ।
ରଥଯାତ୍ରା ଦେଖି ତାହା ରୈଲ ଚତୁମାସ,
ପ୍ରଭୁସଙ୍ଗେ ନୃତ୍ୟ ଗୀତ ପରମ ଉଲ୍ଲାସ ।
ବଦାୟ ସମୟ ପ୍ରଭୁ କହିଲା ସବାରେ,
ପ୍ରତ୍ୟବ୍ଦ ଅସିବା ସବେ ଗୁଣ୍ଡିଚ୍ଚ ଦେଖିବାରେ ।
ପ୍ରଭୁ ଅଜ୍ଞାୟ ଭକ୍ତଗଣ ପ୍ରତ୍ୟବ୍ଦ ଅସିୟା
ଗୁଣ୍ଡିଚ୍ଚ ଦେଖିୟା ଯାନ୍ ପ୍ରଭୁରେ ମିଳିୟା ।
ଦ୍ୱାଦଶ ବର୍ଷର ଐଛେ କୈଲ ଗତାଗତ
ଅନ୍ୟୋନ୍ୟେ ଦୁହାଁର ଦୁହାଁ ନାହିଁ ଅବସ୍ଥିତ ।

ଚୈ : ଚ :

କ୍ରମଶଃ

ଶ୍ରୀ ଫକୀରମୋହନ ସେନାପତି ।

## ମିର୍ଜା ସାହେବଙ୍କ ରୋଜନାମଚା । (୫)

ମୁସଲମାନମାନଙ୍କ ମଧ୍ୟରେ ପ୍ରଚଳିତ ସମ୍ପତ୍ତି ବିଭାଗ ବ୍ୟବସ୍ଥା ବିଶେଷ ଗୋଲମାଳଆ; ଅଧିକାଂଶ ସ୍ଥଳରେ ଗଣ୍ଡା କଉଡ଼ା ଆନ୍ତି ପର୍ଯ୍ୟନ୍ତ ହିସାବ କରିବାକୁ ହୁଏ; ସେ ମଧ୍ୟ ସ୍ଥିର ନୁହେ । ତାହାସବୁ ପରେ ଦେଖିବେ । କିନ୍ତୁ ସମ୍ପତ୍ତି ଗ୍ରହଣ ଓ ବିଭାଗ ସମ୍ବନ୍ଧରେ କେତେକଗୁଡ଼ିଏ ସାଧାରଣ ନିୟମ ଅଛି :—

ସ୍ୱୋପାର୍ଜ୍ଜିତ ଓ ପୈତୃକ ସମ୍ପତ୍ତିର ପ୍ରଭେଦ ମୁସଲମାନ ଅଇନରେ ନାହିଁ । ବର୍ତ୍ତମାନ ଅଧିକାରୀଙ୍କର ଅଧିକୃତ ସମ୍ପତ୍ତିରେ ଷୋଳପଣ କ୍ଷମତା ଥାଏ । ସେ ଜୀବଦଶାରେ ଅଧିକୃତ ସମ୍ପତ୍ତିର ଯଥେଚ୍ଛା ବ୍ୟବହାର କରି ପାରନ୍ତି । କେବଳ ଉଇଲ ବା ମରଣପତ୍ର ସମୟରେ କେତେକ ସ୍ଥାନରେ ଉତ୍ତରାଧିକାରୀମାନଙ୍କର ଅନୁମତି ବିନା ଉଇଲ ସର୍ବତୋଭାବେ ପ୍ରବଳ ହୋଇ ନ ପାରେ । ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିର ଅଧିକାରୀ ହେବା ନିମନ୍ତେ ଏକଶ୍ରେଣୀର ସ୍ତ୍ରୀ ଓ ପୁରୁଷ ଉଭୟ ଜାତୀୟ ଉତ୍ତରାଧିକାରୀ ବିଦ୍ୟମାନ ଥିଲେ ଜଣେ

ପୁରୁଷର ପ୍ରାପ୍ୟ ଅଂଶ ଜଣେ ସ୍ତ୍ରୀର ପ୍ରାପ୍ୟ ଅଂଶର ଦ୍ୱିଗୁଣ ହେବ । ଅର୍ଜିତ ବା ପ୍ରାପ୍ତ ସମ୍ପତ୍ତିକୁ ଯଥେଚ୍ଛା ବ୍ୟବହାର ଓ ହସ୍ତାନ୍ତର କରିବା ସମ୍ବନ୍ଧରେ ସ୍ତ୍ରୀ ଓ ପୁରୁଷମାନଙ୍କର ସମାନ ଅଧିକାର । ( ଏସବୁ ନିୟମଗୁଡ଼ିକ ହିନ୍ଦୁଶାସ୍ତ୍ରାନୁମୋଦିତ ନିୟମମାନଙ୍କର ବିପରୀତ । ମୁସଲମାନ ଓ ହିନ୍ଦୁ ଆଇନର କି କି ପ୍ରଭେଦ ଅଛି, ତାହା 'ବିଦ୍ୟାନିଧିଙ୍କ ପୋଥି'ରୁ ପରେ ପାଇବେ । ଆମ୍ଭେମାନେ ହିନ୍ଦୁ ଆଇନ ସମ୍ବନ୍ଧରେ 'ବିଦ୍ୟାନିଧିଙ୍କ ପୋଥି'ରୁ କେତେକ ବିଷୟ ସଂଗ୍ରହ କରି ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବାକୁ ମନସ୍ଥ କରିଅଛୁଁ; କିନ୍ତୁ ବିଦ୍ୟାନିଧି ମହାଶୟ ଆମ୍ଭମାନଙ୍କ ଆଶା କେତେଦୂର ସଫଳ କରିବେ, ତାହା ଭଗବାନଙ୍କୁ ଜଣା । ଏହିଠାରେ ଗୋଟିଏ କଥା ପାଠକମାନଙ୍କୁ ଜଣାଇ ରଖିବାର ଆବଶ୍ୟକ । 'ମିର୍ଜା ସାହେବଙ୍କ ରୋଜନାମଚା' ପଢ଼ି କେତେକ ବନ୍ଧୁ ଶର୍ମାଙ୍କ ଉପରେ ବିରକ୍ତ ହୋଇ ଅଛନ୍ତି, କାରଣ ଏଥିରେ ସରସ କଥା କିଛି ନାହିଁ । ଏପରି ବିରକ୍ତିରେ ଶର୍ମା ନାଚାର । କେହି କେହି କହନ୍ତି ଯେ ନୀରସ କଥାଗୁଡ଼ିକୁ ସରସ କରି ପ୍ରକାଶ କରିବା ବିନା ବାହାଦୁରୀ । ମନେ କରନ୍ତୁ, ଜଣେ ମୃତ ମୁସଲମାନଙ୍କର ପିତା, ମାତା, ବିଧବା ସ୍ତ୍ରୀ ଓ ଦୁଇଟି ପୁତ୍ର ଏବଂ ଗୋଟିଏ କନ୍ୟା ବିଦ୍ୟମାନ । ସେମାନଙ୍କ ବ୍ୟବସ୍ଥା ଅନୁସାରେ ତ୍ୟକ୍ତ ସମ୍ପତ୍ତିରେ ପିତାଙ୍କର ଅଂଶ ଏକଷଷ୍ଠାଂଶ, ମାତାଙ୍କର ଏକଷଷ୍ଠାଂଶ, ବିଧବାର ଏକଅଷ୍ଟମାଂଶ, ପ୍ରତ୍ୟେକ ପୁତ୍ରର ୬୦ ଭାଗରୁ ୧୩ ଭାଗ ଓ କନ୍ୟାର ଏକଶ କୋଡ଼ିଏ ଭାଗରୁ ଏକ ଭାଗ ପଡ଼ିବ । ଏହାକୁ ସରସ କରିବାକୁ ଗଲେ ପିତାଙ୍କ ଟଙ୍କାର ୨ ପଣ ୧୩ ଗଣ୍ଡା ୧ କଡ଼ା ୧ କାନ୍ତି, ମାତାଙ୍କର ଏକାକ, ବିଧବାଙ୍କର ୨ ପଣ, ପ୍ରତ୍ୟେକ ପୁତ୍ରର ୩ ପଣ ୯ ଗଣ୍ଡା ୧ କଡ଼ା ୧ କାନ୍ତି, କନ୍ୟାର ୧ ପଣ ୧୪ ଗଣ୍ଡା ୨ କଡ଼ା ୨ କାନ୍ତି । ଏଥିରେ ସରସ ତାହାକୁ ବୋଲାଯିବ, ନୀରସ ତାହାକୁ ବୋଲାଯିବ ? ପାଠକ ମହୋଦୟ ବିରକ୍ତ ନ ହୋଇ ଏଥିର ଗୋଟାଏ ମୀମାଂସା କରି ଦେବେ କି ? ଏଥିପାଇଁ କହୁଁ, ବନ୍ଧୁମାନେ ବିରକ୍ତ ହେଲେ ଆମ୍ଭେମାନେ ନାଚାର । ଫଟୋଗ୍ରାଫ ତୋଳିବାକୁ ଗଲେ ଲେଫଡ଼ା ମୁହଁଟାଏ ସେଥିରେ ଉଠିଲେ ଫଟୋଗ୍ରାଫରର କଉଡ଼ ମାରା ଯିବ କଅଁ ? ସେ ଯାହାହେଉ ଅସଲ କଥା ଧରନ୍ତୁ । ଯେ ବିରକ୍ତ ହେବେ, ତାଙ୍କ ସମୟ ନଷ୍ଟ କରିବାର ଆମ୍ଭମାନଙ୍କର ଉଦ୍ଦେଶ୍ୟ ବା ଇଚ୍ଛା ନୁହେ । ରଘ କୈଫିୟତ ।) ନିକଟତମ ସମ୍ପର୍କୀୟ ଉତ୍ତରାଧିକାରୀ ବିଦ୍ୟମାନ ଥିଲେ ଦୂରତର ସମ୍ପର୍କୀୟ ଉତ୍ତରାଧିକାରୀମାନେ ତ୍ୟକ୍ତ ସମ୍ପତ୍ତିରୁ ବଞ୍ଚିତ ହୁଅନ୍ତି । ମୃତବ୍ୟକ୍ତି ଯେଉଁ ସମ୍ପ୍ରଦାୟଭୁକ୍ତ, ତାଙ୍କର ତ୍ୟକ୍ତ ସମ୍ପତ୍ତି ସେହି ସମ୍ପ୍ରଦାୟର ବିଧାନ ଅନୁସାରେ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବିଭକ୍ତ ହେବ ।

ତ୍ୟକ୍ତ ସମ୍ପତ୍ତିରୁ ପ୍ରଥମେ ଅନ୍ତ୍ୟେଷ୍ଟି କ୍ରିୟାର ବ୍ୟୟ, ତତ୍ପରେ ମୃତବ୍ୟକ୍ତିଙ୍କ ଋଣ ପରିଶୋଧ, ତଦନ୍ତେ ତାଙ୍କର ଅଙ୍ଗୀକୃତ ଦାନ ପରିଶୋଧ ହେବ, ଅବଶିଷ୍ଟ ସମ୍ପତ୍ତି ବିଧାନ ଅନୁଯାୟୀ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବିଭକ୍ତ ହେବ ।

କୌଣସି ଉତ୍ତରାଧିକାରୀ ଆପଣାର ପ୍ରାପ୍ୟ ଅଂଶ ଗ୍ରହଣ କରିବାକୁ ଅନିଚ୍ଛୁକ ହେଲେ ବା ପ୍ରାପ୍ୟ ଅଂଶ ତ୍ୟାଗ କଲେ ତାହାଙ୍କର ପରବର୍ତ୍ତୀ ଉତ୍ତରାଧିକାରୀମାନେ ତଦନ୍ତେ ଉକ୍ତ ଅଂଶ ଦାବୀ କରି ପାରନ୍ତି ।

ଉପସ୍ଥିତ ଅଧିକାରୀଙ୍କଠାରେ ସମ୍ପତ୍ତି ନ୍ୟସ୍ତ ଥିବା ପର୍ଯ୍ୟନ୍ତ ତାଙ୍କର ପୁତ୍ରପୌତ୍ରାଦିମାନଙ୍କର ଉକ୍ତ ସମ୍ପତ୍ତିରେ କୌଣସି ଅଧିକାର ନାହିଁ ।

ସୁନ୍ନିମାନଙ୍କ ମଧ୍ୟରେ ଉତ୍ତରାଧିକାର-ସୂତ୍ରରେ ସମ୍ପତ୍ତି ବିଭାଗ ବଡ଼ ଗୋଳମାଳିଆ ଏବଂ ତାହା ବୁଝାଇବା ପୂର୍ବରୁ ସିଆମାନଙ୍କ ସମ୍ପତ୍ତି ବିଭାଗ ବିଷୟ ବୋଲିଯିବ । ଏହା ଅପେକ୍ଷାକୃତ ସରଳ ।

ସିଦ୍ଧାମାନଙ୍କ ଉତ୍ତରାଧିକାରମାନେ ପ୍ରଥମେ ଦୁଇ ଶ୍ରେଣୀରେ ବିଭକ୍ତ—୧ ରକ୍ତସମ୍ପର୍କୀୟ, ୨ ବିଶେଷ ସମ୍ପର୍କୀୟ ।

ରକ୍ତସମ୍ପର୍କୀୟମାନେ ୩ ଉପଶ୍ରେଣୀରେ ବିଭକ୍ତ । ପ୍ରତ୍ୟେକ ଉପଶ୍ରେଣୀ ମଧ୍ୟରେ ଦୁଇ ବିଭାଗ ଅଛି—

୧ମ ଉପଶ୍ରେଣୀ
- ୧ମ ବିଭାଗ—ମୃତବ୍ୟକ୍ତିର ବାପ ମା ।
- ୨ୟ ବିଭାଗ—ପୁଅ, ଝିଅ, ନାତି, ନାତୁଣୀ, ଅଣନାତି, ପଣନାତି ଓ ସେମାନଙ୍କ ଉତ୍ତରସମାନେ ।

୨ୟ ଉପଶ୍ରେଣୀ
- ୧ମ ବିଭାଗ--ଗୋସାଇଁ ବାପା, ଅଜା, ଅଈ, ପଣଗୋସାଇ-ବାପା ।
- ୨ୟ ବିଭାଗ—ଭାଇ, ଭଉଣୀ, ଭଣଜା, ପୁତୁରା ଓ ସେମାନଙ୍କ ଉତ୍ତରସ ।

୩ୟ ଉପଶ୍ରେଣୀ
- ୧ମ ବିଭାଗ--ବଡ଼ବାପ, ଦଦେଇ, ପିଉସୀ, ମାଉସୀ, ମାମୁ (ଯେତେ ପୁରୁଷ ଛଡ଼ା ହୋଇଥାନ୍ତୁ ।)
- ୨ୟ ବିଭାଗ —ବଡ଼ବାପପୁଅ, ମାମୁପୁଅ, ମାଉସୀପୁଅ, ପିଉସୀପୁଅ ଓ ସେମାନଙ୍କ ଉତ୍ତରସମାନେ (ଯେତେ ପୁରୁଷ ଛଡ଼ା ହୋଇଥାନ୍ତୁ ।)

ରକ୍ତସମ୍ପର୍କୀୟ ଉତ୍ତରାଧିକାରମାନଙ୍କ ମଧ୍ୟରୁ ୧ମ ଉପଶ୍ରେଣୀର ଉତ୍ତରାଧିକାରୀ ବିଦ୍ୟମାନ ଥିଲେ ୨ୟ ବା ୩ୟ ଉପଶ୍ରେଣୀର ଉତ୍ତରାଧିକାରମାନେ ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତି ପାଇ ପାରିବେ ନାହିଁ । ୨ୟ ଉପଶ୍ରେଣୀର ଉତ୍ତରାଧିକାରୀ ବିଦ୍ୟମାନ ଥିଲେ ୩ୟ ଉପଶ୍ରେଣୀର ଉତ୍ତରାଧିକାରମାନେ ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହୋଇ ନ ପାରନ୍ତି ।

୧ମ ଉପଶ୍ରେଣୀର ୧ମ ବିଭାଗଭୁକ୍ତ ନିକଟତମ ଉତ୍ତରାଧିକାରମାନେ (ମୃତବ୍ୟକ୍ତିର ପିତାମାତା) ୨ୟ ବିଭାଗଭୁକ୍ତ ନିକଟତମ ଉତ୍ତରାଧିକାରୀମାନଙ୍କ (ପୁତ୍ର ପୌତ୍ରାଦି)ସହିତ ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହେବେ—ପ୍ରକାଶ ଥାଉ କି ପୁତ୍ର ବିଦ୍ୟମାନ ଥିଲେ ପୌତ୍ର ସମ୍ପତ୍ତି ପାଇ ପାରିବେ ନାହିଁ । କନ୍ୟା ବିଦ୍ୟମାନ ଥିଲେ ନାତି ପାଇ ପାରିବେ ନାହିଁ ।

୨ୟ ଉପଶ୍ରେଣୀର ୧ମ ବିଭାଗର ନିକଟତମ ଉତ୍ତରାଧିକାରୀ, ୨ୟ ବିଭାଗସ୍ଥ ନିକଟତମ ଉତ୍ତରାଧିକାରୀମାନଙ୍କ ସହିତ ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହେବେ ।

୩ୟ ଉପଶ୍ରେଣୀର ୧ମ ବିଭାଗର ନିକଟତମ ଅଧିକାରୀମାନେ ବିଦ୍ୟମାନ ଥିଲେ ୨ୟ ବିଭାଗସ୍ଥ ବ୍ୟକ୍ତିମାନେ ଅଧିକାରୀ ହୋଇ ପାରିବେ ନାହିଁ ।

ଏ ଗଲା ରକ୍ତସମ୍ପର୍କୀୟ ଉତ୍ତରାଧିକାରମାନଙ୍କ ବିବରଣ । ତତ୍ପରେ ବିଶେଷ ସମ୍ପର୍କୀୟ ଉତ୍ତରାଧିକାରମାନେ ୨ ଉପଶ୍ରେଣୀରେ ବିଭକ୍ତ—

୧ମ ଉପଶ୍ରେଣୀ—ବିବାହସମ୍ପର୍କୀୟ, ଯଥା—ମୃତବ୍ୟକ୍ତିର ସ୍ୱାମୀ ବା ସ୍ତ୍ରୀ ।

୨ୟ ଉପଶ୍ରେଣୀ— ଯେଉଁ ବ୍ୟକ୍ତି କ୍ରୀତଦାସକୁ ସ୍ୱାଧୀନତା ପ୍ରଦାନ କରି ଥାଏ, ସେ କ୍ରୀତଦାସର ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହୁଏ । ମୃତ ବ୍ୟକ୍ତିର ଅପରାଧ ବା ଦୋଷର କ୍ଷତିପୂରଣ କରିବା ନିମନ୍ତେ ଯେଉଁ ବ୍ୟକ୍ତି ସ୍ୱୀକୃତ ହୋଇ ଥାଏ, ସେ ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହେବ । ଯଦି ଉପରୋକ୍ତ ବ୍ୟକ୍ତି କେହି ନ ଥାନ୍ତି ତେବେ ମୃତବ୍ୟକ୍ତିର ସମ୍ପତ୍ତି 'ଇମାମ୍' ବା ଭୂଲ-ଗୁରୁ ପାଇବେ ।

ମୃତବ୍ୟକ୍ତିର ସ୍ୱାମୀ କିମ୍ବା ସ୍ତ୍ରୀ ରକ୍ତସମ୍ପର୍କୀୟ ଉତ୍ତରାଧିକାରମାନଙ୍କ ଉପସ୍ଥିତିରେ ମଧ୍ୟ ତ୍ୟକ୍ତ ସମ୍ପତ୍ତିର ଶାସ୍ତ୍ରସିଦ୍ଧ ଅଂଶ ପାଇବେ । କିନ୍ତୁ ସାମୟିକ ବା 'ମୁତା'ଦ୍ୱାରା ବିବାହିତ ଦମ୍ପତିଙ୍କ ପ୍ରତି ଏହି ନିୟମ ଖଟିବ ନାହିଁ । ଉପରୋକ୍ତ ବିବାହ ସମୟରେ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ଉତ୍ତରାଧିକାରିତ୍ୱ ବିଷୟ ଚୁକ୍ତି ହୋଇ ନ ଥିଲେ ସ୍ୱାମୀ

କିମ୍ବା ସ୍ତ୍ରୀ ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହୋଇ ପାରିବେ ନାହିଁ ।

କୋରାନ ଅନୁସାରେ ରକ୍ତସମ୍ପର୍କୀୟ ଓ ବିବାହ-ସମ୍ପର୍କୀୟ ଉତ୍ତରାଧିକାରମାନଙ୍କର ଅଂଶ ନିର୍ଦ୍ଦିଷ୍ଟ ଅଛି; ସେହି ନିର୍ଦ୍ଦିଷ୍ଟ ଅଂଶ ପାନ୍ତି ଓ ନିର୍ଦ୍ଦିଷ୍ଟ ଅଂଶ ବାଦ ଯାହା ଅବଶିଷ୍ଟ ରହେ ତାହାକୁ ସେହି ପାନ୍ତି ।

( କ ) ପିତାଙ୍କ ଅଂଶ—ମୃତବ୍ୟକ୍ତିର ପୁତ୍ର, ପୌତ୍ର ଇତ୍ୟାଦି ବିଦ୍ୟମାନ ଥିଲେ ମୃତବ୍ୟକ୍ତିର ପିତା ତ୍ୟକ୍ତ ସମ୍ପତ୍ତିର ଏକଷଷ୍ଠାଂଶ ବା ୮୦୵୮ ପାଇବେ । ମୃତବ୍ୟକ୍ତିର କନ୍ୟା କିମ୍ବା ଦୌହିତ୍ରାଦି ବିଦ୍ୟମାନ ଥିଲେ ପିତା ପ୍ରଥମେ ୮ ୦ ୵ ୮ ପାଇବେ ଓ କନ୍ୟା କିମ୍ବା ଦୌହିତ୍ର ସଙ୍ଗେ 'ଅବଶିଷ୍ଟ' ସମ୍ପତ୍ତିରେ ଅଧିକାରୀ ହେବେ । ପୁତ୍ର କନ୍ୟା ଇତ୍ୟାଦି ନ ଥିଲେ ଅଂଶଭାଗିମାନଙ୍କ ଅଂଶ ବାଦ 'ଅବଶିଷ୍ଟ' ସମ୍ପତ୍ତିରେ ପିତା ଅଧିକାରୀ ହେବେ ।

ନୋଟ—ମୁସଲମାନ ବିଧାନାନୁସାରେ 'ଅବଶିଷ୍ଟ' ସମ୍ପତ୍ତି ଏକ ପ୍ରକାର ବିଶେଷ ଅର୍ଥରେ ବ୍ୟବହୃତ ହୁଏ । ଶାସ୍ତ୍ର ଅନୁସାରେ ଅଂଶ-ଭାଗିମାନଙ୍କ ଅଂଶ କାଢ଼ି ନେଲେ ବାକି ଯାହା ରହେ ତାହାକୁ 'ଅବଶିଷ୍ଟ' ବୋଲି ଯାଏ ।

( ଖ ) ମାତାଙ୍କ ଅଂଶ—ମୃତବ୍ୟକ୍ତିର ଔରସ ବିଦ୍ୟମାନ ଥିଲେ ମାତା ଏକ ଷଷ୍ଠାଂଶ ବା ୮ା ୦ ୵ ୮ ଅଂଶ ପାଇବେ । ମୃତବ୍ୟକ୍ତିର ଔରସ କିମ୍ବା ୨ ବା ତତୋଽଧିକ ଭାଇ ବିଦ୍ୟମାନ ନ ଥିଲେ ମାତା ଏକତୃତୀୟାଂଶ ବା ୮ା ୦ ।/ ୪ ପାଇବେ । ପୁତ୍ର କିମ୍ବା ପୌତ୍ର ନ ଥିଲେ ଓ କନ୍ୟା ଥିଲେ କନ୍ୟା ସଙ୍ଗେ ମାତା 'ଅବଶିଷ୍ଟାଂଶ'ର ଭାଗୀ ହୁଅନ୍ତି ।

( ଗ ) କନ୍ୟାର ଅଂଶ— ଏକମାତ୍ର କନ୍ୟା ଅର୍ଦ୍ଧେକ ବା ୮ା ୦ ୳, ଦୁଇ କିମ୍ବା ତତୋଽଧିକ କନ୍ୟା ଥିଲେ ସେମାନେ ଏକତ୍ର ଦୁଇ ତୃତୀୟାଂଶ ବା ୮ା ୦ ୳୵ ୮ ପାଇବେ । ପୁତ୍ର ଥିଲେ ପ୍ରତ୍ୟେକ ପୁତ୍ର ୨ ଭାଗ ଓ ପ୍ରତ୍ୟେକ କନ୍ୟା ୧ ଭାଗ ବାଣ୍ଟି ନେବେ ।

(ଘ) ମୃତବ୍ୟକ୍ତିର ଏକପିତୃକ ଏବଂ ଏକ-ମାତୃକ ଭଗିନୀ ଅର୍ଦ୍ଧେକ ବା ୮ା ୦ ୳ ପାଏଁ । ଏପରି ନନର ୨ ବା ତତୋଽଧିକ ଭଗିନୀ ଥିଲେ ସମସ୍ତେ ଏକତ୍ର ଦୁଇତୃତୀୟାଂଶ ବା ୮ା୦୳୵ ୮ ପାନ୍ତି । ( ମୁସଲମାନମାନଙ୍କ ମଧ୍ୟରେ ବିଧବା-ବିବାହ ପ୍ରଚଳିତ ଥିବାରୁ ପୂର୍ଣ୍ଣ ଭାଇ ଭଗିନୀ, ଅର୍ଦ୍ଧ ଭାଇ ଭଗିନୀ ଶବ୍ଦ ପ୍ରଯୁକ୍ତ ଅଛି । ଏକ ମାତା ପିତାଙ୍କଠାରୁ ଯେଉଁ ଦୁଇ ଜଣ ଜନ୍ମ ହୋଇ ଥାନ୍ତି ସେମାନଙ୍କ ମଧ୍ୟରେ 'ପୂର୍ଣ୍ଣ' ସମ୍ବନ୍ଧ । ଯେବେ ମାତାଙ୍କର ପୂର୍ବବିବାହୋତ୍ପନ୍ନ ସନ୍ତାନ ଥାଏ ଓ ପରବିବାହରେ ଦ୍ୱିତୀୟ ସ୍ୱାମିଙ୍କଦ୍ୱାରା ଅଉ ଗୋଟିଏ ସନ୍ତାନ ଉତ୍ପନ୍ନ ହୁଏ, ତେବେ ଏ ଦୁଇ ସନ୍ତାନଙ୍କ ମଧ୍ୟରେ ମାତୃପକ୍ଷରୁ 'ଅର୍ଦ୍ଧ' ସମ୍ବନ୍ଧ । ଏକ ପିତାଙ୍କର ଦୁଇ ବିବାହୋତ୍ପନ୍ନ ଦୁଇଗୋଟି ସନ୍ତାନଙ୍କ ମଧ୍ୟରେ ପିତୃପକ୍ଷରୁ 'ଅର୍ଦ୍ଧ' ସମ୍ପର୍କ । ) ମୃତ ବ୍ୟକ୍ତିର ପୂର୍ଣ୍ଣ ଭାଇ ଓ ପୂର୍ଣ୍ଣ ଭଗିନୀ ଥିଲେ ପ୍ରତ୍ୟେକ ଭାଇର ୨ ଅଂଶ ଓ ପ୍ରତ୍ୟେକ ଭଗିନୀର ୧ ଅଂଶ । ପୂର୍ଣ୍ଣ ଭାଇ ଓ ପୂର୍ଣ୍ଣ ଭଗିନୀ ନ ଥିଲେ ପିତୃପକ୍ଷରୁ ଅର୍ଦ୍ଧ ଭଗିନୀ ଓ ଭାଇ ଉପରୋକ୍ତ ହିସାବରେ ମୃତବ୍ୟକ୍ତିର ସମ୍ପତ୍ତି ପାଇବେ ।

ଯେବେ ମାତୃପକ୍ଷରୁ ଜଣେ ଅର୍ଦ୍ଧ ଭଗିନୀ ବା ଭାଇ ଥାଏ ତେବେ ସେ ଏକଷଷ୍ଠାଂଶ ବା ୮ ୦ ୵ ୮ ପାଏ । ଦୁଇ ବା ତତୋଽଧିକ ଥିଲେ ଏକତ୍ର ଏକତୃତୀୟାଂଶ ବା ୮ ୦ ।/ ୪ ପାନ୍ତି । ଭାଇର ଅଂଶ ଭଗିନୀର ଅଂଶ ଏସ୍ଥଳରେ ସମାନ ଅଟେ ।

(ଙ) ସ୍ୱାମିର ଅଂଶ—ମୃତା ସ୍ତ୍ରୀର ଗର୍ଭଜାତ ସେହି ନ ଥିଲେ ତ୍ୟକ୍ତ ସମ୍ପତ୍ତିରୁ ଅର୍ଦ୍ଧେକ ବା ୮ା୦୳ ପାଇବେ । ଯେବେ ସେହି ଗର୍ଭଜାତ ସନ୍ତାନ ଥାଏ ତେବେ ସ୍ୱାମୀ ଏକଅଷ୍ଟମାଂଶ ବା ୮ା ୦୵ ପାଇବେ । ଯେବେ ଜନ ହୁପକ୍ଷେଣୀର ସେହି

ନ ଥାଏ ତେବେ 'ତମାମ' ପରିବର୍ତ୍ତରେ ସ୍ୱାମୀ ସମୁଦାୟ ତ୍ୟକ୍ତ ସମ୍ପତ୍ତି ପାଇବେ ।

(ଗ) ବିଧବାର ଅଂଶ—ସ୍ୱାମୀଙ୍କର ସନ୍ତାନ ସନ୍ତତି ନ ଥିଲେ ବିବାହିତା ସ୍ତ୍ରୀ କିମ୍ବା ସ୍ତ୍ରୀମାନେ ସ୍ୱାମୀଙ୍କ ତ୍ୟକ୍ତ ସମ୍ପତ୍ତିର ଏକଚତୁର୍ଥାଂଶ ବା ଦା ୦ । ପାଇବେ । ଯେବେ ସ୍ୱାମୀଙ୍କର ପୁଅ ଝିଅ ନାତି ନାତୁଣୀ ଇତ୍ୟାଦି କେହି ଉତ୍ତରସ ଥାଏ ତେବେ ସ୍ତ୍ରୀମାନେ ତ୍ୟକ୍ତ ସମ୍ପତ୍ତିର ଏକଅଷ୍ଟମାଂଶ ବା ଦା ୦ ୵ ପାଇବେ । ସ୍ୱାମୀଙ୍କର ତ୍ୟକ୍ତ ଅସ୍ଥାବର ସମ୍ପତ୍ତିରେ ବିଧବାଙ୍କର କୌଣସି ଅଂଶ ନାହିଁ । ଅନ୍ୟ କେହି ଉତ୍ତରସ ନ ଥିଲେ ବିଧବାଙ୍କର ପ୍ରାପ୍ୟ ଦସନ୍ତ ଗୃହପଣ ଯାଇ ବାକି ଅଂଶ ବାହପଣ ତମାମ୍ ପାଇବେ । 'ମୁତା' ପ୍ରଥାନୁସାରେ ବିବାହିତା ସ୍ତ୍ରୀଙ୍କ ସଙ୍ଗେ ବିବାହ ଚୁକ୍ତିରେ ସର୍ତ୍ତ ନ ଥିଲେ ସେ ସ୍ୱାମୀଙ୍କ ତ୍ୟକ୍ତ ସମ୍ପତ୍ତିରେ ଭାଗୀ ହୋଇ ପାରିବେ ନାହିଁ ।

ସିହା ବିଧାନ ଅନୁସାରେ ଉପରୋକ୍ତ ବ୍ୟକ୍ତିମାନେ ତ୍ୟକ୍ତ ସମ୍ପତ୍ତିର ଅଂଶଭାଗୀ ଅଟନ୍ତି । ଏହିମାନଙ୍କ ମଧ୍ୟରୁ ବିଧବାଙ୍କ ଛଡ଼ା ଅନ୍ୟ ଉତ୍ତରାଧିକାରୀମାନେ ନିରୂପିତ ଅଂଶ ପାନ୍ତି ଓ ସମ୍ପତ୍ତିର 'ଅବଶିଷ୍ଟାଂଶ'ରେ ମଧ୍ୟ ସମୟ ସମୟରେ ଭାଗୀ ହୁଅନ୍ତି । ଏମାନଙ୍କ ଛଡ଼ା ଅନ୍ୟ ଉତ୍ତରାଧିକାରୀମାନଙ୍କର ଶାସ୍ତ୍ରୋକ୍ତ ଅଂଶ ନାହିଁ । ଏମାନେ କେବଳ 'ଅବଶିଷ୍ଟାଂଶ'ରେ ଭାଗୀ ହୁଅନ୍ତି ।

ସିହା ବିଧାନ ଅନୁସାରେ ଉକ୍ତସମ୍ପର୍କୀୟ ଉତ୍ତରାଧିକାରୀମାନଙ୍କ ମଧ୍ୟରୁ 'ଅଂଶଦାର'ମାନଙ୍କ ବିଷୟ କୁହାଗଲା ।

(ପାଠକ ମହୋଦୟ, ଏଗୁଡ଼ିକ ଧୀରେ ଧୀରେ ଗଳାଧଃକରଣ କରିବାକୁ ହେବ, ସେଥିପାଇଁ ଗୁଣ୍ଡାଗୁଡ଼ିକ ଷ୍ଟେଟ କରି ବଳିବାକୁ ପଡ଼ୁଅଛି । 'ଥ୍ରୀନଦୁଷ୍ଟିଅ' ବୋଲି ସ୍ଥିର କରି ବସିବେ ନାହିଁ ।)

କ୍ରମଶଃ

ଶ୍ରୀ ଦୁର୍ମୁଖ ଶର୍ମା ।

---

## ଅହଲ୍ୟା ବାଈ ।

ରାଣୀ ଅହଲ୍ୟା ବାଈଙ୍କ ସୁଧାମୟ ନାମ କେବଳ ସୁପରିଚିତ । ସେ ଏକଶତାଧିକ ବର୍ଷ ହେଲା ଇହଲୀଳା ତ୍ୟାଗ କରିଥିଲେ ସୁଦ୍ଧା ଆଜିକାଲି କୋଟି କୋଟି ଭାରତବାସୀଙ୍କ ହୃଦୟରେ ଦେବୀ ଭଳି ପ୍ରତିଷ୍ଠିତା । ତାହାଙ୍କର ଯଶୋଗୁଣରାଶି ସମସ୍ତ ଭାରତରେ ଉଦ୍ଘୋଷିତ ହୋଇ ତାହାଙ୍କ ନାମକୁ ଅମର କରିଅଛି । ସେ ଏପରି ସର୍ବଜନାଦୃତ ଯେ ସ୍ଥାନେ ସ୍ଥାନେ ଶକଟଚାଳକର ଗୁଞ୍ଜ ଗାନ, ଗୋରକ୍ଷକର ପ୍ରଦୋଷ ଗୀତ, ଗାୟକର ମଧୁମୟ ସଙ୍ଗୀତ, ଧର୍ମପିପାସୁର ପାରମାର୍ଥିକ ସ୍ତୁତି ପଠନ, ପ୍ରତ୍ୟେକରେ ତାହାଙ୍କ ଯଶ ଓ ଗୁଣ କୀର୍ତ୍ତିତ ହୋଇଥାଏ । ରାଣୀ ଅହଲ୍ୟା ବାଈଙ୍କ ଜୀବନବୃତ୍ତାନ୍ତ ଅତ୍ୟନ୍ତ ରୋଚକ ଓ ଶିକ୍ଷାପ୍ରଦ ଅଟେ । କି ସ୍ତ୍ରୀ କି ପୁରୁଷ, କି ରାଜା କି ପ୍ରଜା, କି ସ୍ୱଦେଶୀ କି ବିଦେଶୀ, ସମସ୍ତଙ୍କର ତାହା ଗୋଟିଏ ଉନ୍ନତ ଆଦର୍ଶରୂପେ ସ୍ଥାପିତ ହେବାର ଯୋଗ୍ୟ । ଯେଉଁ ଭାରତମାତାଙ୍କ ଗର୍ଭରୁ ଏହିପରି ଜଗନ୍ମୋହିନୀ ଦୁହିତାଙ୍କର ଆବିର୍ଭାବ ହୋଇଥିଲା, ସେହି ମାତାଙ୍କ ଦୁହିତାଗଣର ବର୍ତ୍ତମାନ ଅବସ୍ଥା ଏତେ ହୀନ ଏତେ ନଗଣ୍ୟ, ଏହା ଅତ୍ୟନ୍ତ ପରିତାପର ବିଷୟ !

ଅହଲ୍ୟା ବାଈଙ୍କ ପତି ଖଣ୍ଡୀ ରାଓ ମାଲବ ରାଜ୍ୟର ପ୍ରଥମ ମରହଟ୍ଟା ରାଜା ମଲହର୍ ରାଓଙ୍କ ଏକମାତ୍ର ପୁତ୍ର ଥିଲେ । ସେ ପିତାଙ୍କ ଶାସନ କାଳରେ ଯାଠ୍ ନାମକ ଜାତିଙ୍କ ସହିତ ଯୁଦ୍ଧ କରୁ କରୁ ଭରତନଗର ନିକଟବର୍ତ୍ତୀ ପର୍ବତଶ୍ରେଣୀ ପଦତଳେ ବଜ୍ରାଘାତରେ ପ୍ରାଣ ହରାଇ ଥିଲେ । ସେ ସମୟକୁ ତାହାଙ୍କର ଅହଲ୍ୟାଙ୍କ

ଗର୍ଭରୁ ଗୋଟିଏ ପୁତ୍ର ଓ ଗୋଟିଏ ଦୁହିତା ଜନ୍ମଗ୍ରହଣ କରିଥିଲେ । ଏହି ପୁତ୍ରଙ୍କ ନାମ ମାଲ । ମାଲ ମାତାମହଙ୍କ ମରଣ ପରେ ମାଲବର ରାଜପଦରେ ଅଭିଷିକ୍ତ ହୋଇଥିଲେ । ମାତ୍ର ଦୁର୍ଭାଗ୍ୟକ୍ରମେ ସିଂହାସନାରୋହଣ କରିବାର ଏକବର୍ଷ ସମ୍ପୂର୍ଣ୍ଣ ନ ହେଉଣୁ ସେ କାଳଗ୍ରାସରେ ପତିତ ହେଲେ । ତାହାଙ୍କର ମାନସିକ ଓ ଶାରୀରିକ ଶକ୍ତି ଅତ୍ୟନ୍ତ ଦୁର୍ବଳ ଏବଂ ସ୍ୱଭାବ ଦୁଷ୍ଟ ଥିଲା । ନିଜ ମାତାଙ୍କ ପ୍ରତି ତାହାଙ୍କର କିଛିହିଁ ଆଦର ନ ଥିଲା । ମାତାଙ୍କର ସମସ୍ତ କାର୍ଯ୍ୟରେ ସେ ବିଘ୍ନ ଜନ୍ମାଉଥାନ୍ତି । ଗୋଟିଏ ଦୃଷ୍ଟାନ୍ତରୁ ତାହାଙ୍କ ସ୍ୱଭାବ କେତେଦୂରପର୍ଯ୍ୟନ୍ତ ମନ୍ଦ ଓ ନୀଚ ଥିଲା ତାହା ସହଜରେ ଅନୁମିତ ହୋଇ ପାରିବ । କୌଣସି ଏକ ସମୟରେ ସେ କେତେଜଣ ବ୍ରାହ୍ମଣଙ୍କ ନିକଟକୁ ନୂତନ ବସ୍ତ୍ର କେତେଖଣ୍ଡ ପୁରସ୍କାରରୂପେ ପଠାଇଥିଲେ । ଉକ୍ତ ବସ୍ତ୍ର ଭିତରେ ସେ କେତେଗୋଟି ବିଛା ବିଙ୍କଡ଼ା ରଖି ଦେଇ ଗୁଡ଼ାଇଥିଲେ । ଲୋଭୀ ବ୍ରାହ୍ମଣଗଣ ତାହା ପାଇଲାକ୍ଷଣି ପିନ୍ଧିବା ପରେ ଉକ୍ତ ବିଷାକ୍ତ ଜୀବଙ୍କଦ୍ୱାରା ସ୍ୱଭାବତଃ ଦଂଶିତ ହୋଇ ବିଶେଷ ଯନ୍ତ୍ରଣା ଭୋଗ କଲେ । ଏହି ଘଟନା ଶ୍ରବଣ କରି ମାଲଙ୍କ ମନରେ ଅତ୍ୟନ୍ତ କୌତୁକ ଓ ଆନନ୍ଦ ଜନ୍ମିଥିବାର କଥିତ ଅଛି । ପୁତ୍ରର ଏତାଦୃଶ କ୍ରୂର ଓ ଦୁଷ୍ଟ ସ୍ୱଭାବ ଦେଖି ଅହଲ୍ୟାଙ୍କ ମନ ଅତ୍ୟନ୍ତ ଚିନ୍ତାଯୁକ୍ତ ଓ ବିଷଣ୍ଣ ହେଲା । ପୁତ୍ର ସର୍ବଦା ତାହାଙ୍କ ଅମଙ୍ଗଳ ବାଞ୍ଛା କରୁଥିଲେହେଁ ସେ କଦାପି ତାହା ପ୍ରତି ବିମୁଖ ନ ଥିଲେ । ମାତ୍ର ପ୍ରତିକ୍ଷଣ ପୁତ୍ରର ରକ୍ଷାନିମନ୍ତେ ସନ୍ମାର୍ଗକୁ ଆଣିବାକୁ ପ୍ରାଣପଣେ ଚେଷ୍ଟା କରୁଥାନ୍ତି । ତାହାଙ୍କର ସମସ୍ତ ଯତ୍ନ ବୃଥା ହେଲା । ମାଲଙ୍କର ଦୁଷ୍ଟସ୍ୱଭାବ ଦିନକୁ ଦିନ ବୃଦ୍ଧି ପ୍ରାପ୍ତ ହୋଇ ପରିଶେଷରେ ବାତୁଳତାରେ ପରିଣତ ହେଲା ଏବଂ କେବଳ ଅକାଳମରଣଦ୍ୱାରା ନିବାରିତ ହେଲା । ଏକମାତ୍ର ପୁତ୍ରର ମୃତ୍ୟୁ ଯୋଗୁଁ ଅହଲ୍ୟାଙ୍କ ମନରେ ଅକଥନୀୟ ଦୁଃଖ ଜାତ ହେଲା । ନିଜ ପତିଙ୍କ ଅକାଳମୃତ୍ୟୁଜନିତ ପ୍ରବଳ ଶୋକାନଳ ନିର୍ବାପିତ ନ ହେଉଣୁ ପୁନର୍ବାର ପୁତ୍ରକୁ ହରାଇଲେ । ଏଣେ ପୁଣି ରାଜ୍ୟର ଦାୟିତ୍ୱ ସମ୍ମୁଖରେ ଉପସ୍ଥିତ । ତାହାଙ୍କର ଦୁହିତାଙ୍କ ପରିଣୟ ଜଣେ ଦେଶୀୟ ନୃପତିଙ୍କ ସହିତ ସମ୍ପାଦିତ ହୋଇ ଯାଇଥିଲା । ଅହଲ୍ୟାଙ୍କର ବର୍ତ୍ତମାନ ଅବସ୍ଥା କେଉଁ ବିଷମ ଥିଲା, ଅନାୟାସରେ ବିବେଚନା କରାଯାଇ ପାରେ । ସେ କାତର ଭାବରେ ବୃଥାରେ କାଳଯାପନ ନ କରି କର୍ତ୍ତବ୍ୟ ପାଳନରେ ସର୍ବଦା ତତ୍ପର ଥିଲେ । ରାଜ୍ୟର ଗୁରୁଭାର ସ୍ୱହସ୍ତରେ ଗ୍ରହଣ କରିବାକୁ ପଡ଼ିଥିଲା ଏବଂ ସେ ପ୍ରଜାପୁଞ୍ଜଙ୍କ ମଙ୍ଗଳବାଞ୍ଛା ସର୍ବଦା ହୃଦୟରେ ରଖି ଅତୀବ କୌଶଳ ଓ ସୁବିଜ୍ଞର ସହକାରେ ପରିପାଳନ କରିଥିଲେ । ଏହି ବୀରାଙ୍ଗନା ଏପରି ବିପଦ୍‌ଗ୍ରସ୍ତ ଥାଇ ସୁଦ୍ଧା ଯେଉଁ ଅଲୌକିକ ସାହସ ଏବଂ ଅସାଧାରଣ ନୈପୁଣ୍ୟର ପରିଚୟ ଦେଇଥିଲେ, ତାହା ଇତିହାସର ପୃଷ୍ଠାରେ ଚିରକାଳଯାଏ ଦେଦୀପ୍ୟମାନ ରହିବ ।

ରାଜକାର୍ଯ୍ୟ ପରିଚାଳନରେ ତାହାଙ୍କର ବିଶେଷ ସ୍ୱାତନ୍ତ୍ର୍ୟ ଥିଲା । ରାଜ୍ୟର କିଏ ବନ୍ଧୁ କିଏ ଶତ୍ରୁ, ସେ ଉତ୍ତମରୂପେ ଚିହ୍ନି ପାରୁଥିଲେ । ଅନୁପଯୁକ୍ତ ବ୍ୟକ୍ତିଙ୍କ ହସ୍ତରେ ସେ କୌଣସି ଭାର ଅର୍ପଣ କରୁ ନ ଥିଲେ । ତାହାଙ୍କର ଏତାଦୃଶ ବ୍ୟବହାର ଦେଖି ଚାଟୁକାରମାନେ ସ୍ୱଭାବତଃ ଘୋର ହତାଶ ହୋଇଥିଲେ । ଏମାନଙ୍କ ମଧ୍ୟରେ ଗଙ୍ଗାଧର ନାମକ ପୁରୋହିତ ପ୍ରଧାନ । ସେ ନିଜର ପୂର୍ବାଧିକାର ହ୍ରାସ ପାଇବାର ଦେଖି ମରହଟ୍ଟା ରାଜା ରାଘବଙ୍କ ସହିତ ନାନା ମନ୍ତ୍ରଣାରେ ପ୍ରବୃତ୍ତ ହେଲେ । ପରେ ସେ ଅହଲ୍ୟାଙ୍କ ନିକଟରେ କେତେକ କାରଣ ଦେଖାଇ ଏକ ପୋଷ୍ୟପୁତ୍ର କରିବା ନିମନ୍ତେ ତାହାଙ୍କୁ ବିଶେଷ ଅନୁରୋଧ କଲେ । ତାହାଙ୍କ ମନରେ ଏପରି ଧାରଣା ଥିଲା ଯେ କେହି ଜଣେ ନୂତନ ବ୍ୟକ୍ତି ଏପରି ନିଯୁକ୍ତ

ହେଲେ ରାଜକୁମାରଙ୍କୁ ସ୍ୱପୁତ୍ର କରି ନେବେ ଏବଂ ଅହଲ୍ୟାଙ୍କୁ ବାର୍ଷିକ ବୃତ୍ତି ପ୍ରଦାନ କରି ପୃଥକ୍ କରି ଦେବେ । ଏପ୍ରକାର ଉପାୟଦ୍ୱାରା ଗଙ୍ଗାଧର ନିଜର ଅଭୀଷ୍ଟ ସାଧନ କରିବାକୁ ମନେ କରିଥିଲେ । ମାତ୍ର ଅହଲ୍ୟା ନିଜ ବୁଦ୍ଧି ବଳରେ ସମସ୍ତ ବିଷୟ ଅବଗତ ହୋଇ ପାରି ନିଃଶଙ୍କଚିତ୍ତରେ ପୁରୋହିତଙ୍କୁ କହିଲେ "ଆମ୍ଭେ ରାଜାଙ୍କ ପତ୍ନୀ ଓ ରାଜାଙ୍କ ମାତା ହୋଇଅଛୁଁ । ଆମ୍ଭ ପୁତ୍ରଙ୍କ ମରଣ ସଙ୍ଗେ ସଙ୍ଗେ ଏହି ରାଜବଂଶ ପ୍ରକୃତରେ ଲୁପ୍ତ ହୋଇଅଛି । ତାହା ରକ୍ଷା କରିବାର ଭାର ଆମ୍ଭ ଉପରେ ନ୍ୟସ୍ତ । ଅତଏବ ଏହି ବିଷୟରେ ଆମ୍ଭେ ଆପଣଙ୍କଠାରୁ କୌଣସି ଉପଦେଶ ଗ୍ରହଣ କରିବା ନିମନ୍ତେ ପ୍ରସ୍ତୁତ ନୋହୁଁ ।" ଏହି କଥାଗୁଡ଼ିକରୁ ଅହଲ୍ୟାଙ୍କର ସ୍ୱାଧୀନଚିତ୍ତତା ପୂର୍ଣ୍ଣ ମାତ୍ରାରେ ଲକ୍ଷିତ ହେଉଅଛି ।

ମରହଟ୍ଟା ରାଜା ରାଘବ ମଧ୍ୟ ଉକ୍ତ ବିଷୟରେ ହସ୍ତକ୍ଷେପ କରିଥିବାର ଏଥି ପୂର୍ବେ କୁହା ଯାଇଅଛି । ରାଘବ ଅହଲ୍ୟାଙ୍କର ଏପରି ଉତ୍ତର ଶୁଣି ନିଜକୁ ଅପମାନିତ ଜ୍ଞାନ କରି ତାହାଙ୍କ ପ୍ରତି ଅତ୍ୟନ୍ତ କ୍ରୁଦ୍ଧ ହେଲେ ଏବଂ ତାହାଙ୍କୁ ଯୁଦ୍ଧରେ ପରାଜିତ କରି ରାଜ୍ୟରୁ ଦୂର କରିବା ନିମନ୍ତେ ଚେଷ୍ଟା କଲେ । ଏହି ଭୟଙ୍କର ସମ୍ବାଦ ଶ୍ରବଣ କରି ଅହଲ୍ୟା କିଛିହେଁ ତ୍ରସ୍ତ ନ ହୋଇ ରାଘବଙ୍କ ନିକଟକୁ ନିମ୍ନଲିଖିତମତେ ପତ୍ର ପ୍ରେରଣ କଲେ:—"ସ୍ତ୍ରୀମାନଙ୍କ ସହିତ ଅକାରଣ କଳହରୁ କ୍ଷାନ୍ତ ହୁଅ । କାରଣ ତଦ୍ୱାରା କେବଳ ନିଷ୍ଠୁରତାର ପ୍ରମାଣ ମିଳେ, ବୀରତ୍ୱ ପ୍ରକାଶ ହୁଏ ନାହିଁ ।" ମାତ୍ର ଏହା କହି ସେ କଦାପି ତୁନି ନ ରହି ନିଜେ ସମରସଜ୍ଜାର ଆୟୋଜନ କରୁଥିଲେ । ସୈନିକବର୍ଗଙ୍କୁ ଏକତ୍ର କରି ତାହାଙ୍କ ପରମ ଭକ୍ତ ହୋଲକାର ନାମକ ଜଣେ ରଣନିପୁଣ ଓ ପରାକ୍ରମଶାଳୀ ବ୍ୟକ୍ତିଙ୍କୁ ଅଧ୍ୟକ୍ଷ ପଦରେ ନିଯୁକ୍ତ କଲେ ଏବଂ ନିଜେ ଅନନର ସହିତ ସଂଗ୍ରାମରେ ଯୋଗ ଦେବାକୁ କୃତସଂକଳ୍ପ ହେଲେ । ସୌଭାଗ୍ୟକ୍ରମେ ଯୁଦ୍ଧ ବନ୍ଦ ହୋଇଗଲା । ରାଘବଙ୍କ ଅସଙ୍ଗତ ଚେଷ୍ଟାରେ ତାହାଙ୍କ ପକ୍ଷର କେହି ହେଲେ ଯୋଗ ଦେଲେ ନାହିଁ, ଏହି କାରଣରୁ ତାହା ଉପେକ୍ଷିତ ହେଲା । ସେ ଯାହାହେଉ ଏହି ସମୟରେ ଅହଲ୍ୟାଙ୍କର ଅସାଧାରଣ ସାହସ ଦେଖି ସମସ୍ତେ ଅବାକ୍ ହୋଇଥିଲେ । ଏହି ଘଟନାରେ ପ୍ରଜାପୁଞ୍ଜଙ୍କର ତାହାଙ୍କ ପ୍ରତି ଆଦର ଓ ସମ୍ମାନ ବହୁପରିମାଣରେ ବର୍ଦ୍ଧିତ ଏବଂ ଶାସନର ଭିତ୍ତିମୂଳ ଦୃଢ଼ୀଭୂତ ହୋଇଥିଲା । ଉକ୍ତ ହୋଲକାର କାଳକ୍ରମେ ଅହଲ୍ୟାଙ୍କର ଅତ୍ୟନ୍ତ ବିଶ୍ୱାସପାତ୍ର ହୋଇ ଉଚ୍ଚ ପଦରେ ନିଯୁକ୍ତ ହେଲେ ଏବଂ ରାଜକାର୍ଯ୍ୟ ପରିଚାଳନାରେ ସେ ଅଣୁମାତ୍ର ତ୍ରୁଟି ପ୍ରଦର୍ଶନ କରୁ ନ ଥିଲେ । ତାହାଙ୍କୁ କାର୍ଯ୍ୟକ୍ଷମ ଦେଖି ଅହଲ୍ୟା ପରମ ସନ୍ତୁଷ୍ଟା ଥିଲେ ।

ହୋଲକାରଙ୍କ ସହାନୁଭୂତିଦ୍ୱାରା ରାଜ୍ୟର ବିଶେଷ ଶ୍ରୀବୃଦ୍ଧି ହୋଇଥିଲା । ଅହଲ୍ୟା କୌଣସି ସମୟରେ ନିୟମ ମାର୍ଗରୁ ବହିର୍ଗତ ହେଉ ନ ଥିଲେ । ପ୍ରତି ଦିନ ସେ ଅତି ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗ କରି ପ୍ରାତଃକ୍ରିୟା ସମାପନପୂର୍ବକ ପୁରାଣ, ଧର୍ମଶାସ୍ତ୍ର କିଛୁ ସମୟ ନିୟମିତରୂପେ ଅଧ୍ୟୟନ କରନ୍ତି । ତହିଁପରେ ସ୍ୱହସ୍ତରେ କେତେ ଜଣ ବ୍ରାହ୍ମଣଙ୍କୁ ଭୋଜନଦ୍ୱାରା ସନ୍ତୁଷ୍ଟ କରାଇ ନିଜେ ଭୋଜନ କରନ୍ତି । ଏହାପରେ ଅଳ୍ପ କାଳ ବିଶ୍ରାମ କରି ରାଜବେଶ ଧାରଣପୂର୍ବକ ସନ୍ଧ୍ୟା ପର୍ଯ୍ୟନ୍ତ ଦରବାର ମଣ୍ଡିତ କରନ୍ତି । ମଧ୍ୟରେ ବିଶ୍ରାମ କରି ପୁନର୍ବାର ରାଜ୍ୟର ଭିତର ବିଷୟମାନ ରାତ୍ର ପ୍ରାୟ ଏକାଦଶ ଘଟିକାଯାଏ ବୁଝି ନେଉଥାନ୍ତି । ରାଜ୍ୟସମ୍ବନ୍ଧୀୟ ସମସ୍ତ ହିସାବ ସୁସ୍ପଷ୍ଟରୂପେ ତାହାଙ୍କଦ୍ୱାରା ରକ୍ଷିତ ହେଉଥିଲା । ରାଜ୍ୟର ସର୍ବପ୍ରକାର ଦାବି ତାହାଙ୍କର ଶ୍ରୁତିଗୋଚର ହେଉଥିଲା, ତାହାଙ୍କ ସୁବିବେଚନାପୂର୍ଣ୍ଣ ଓ ଅପକ୍ଷପାତ ନିଷ୍ପତ୍ତିଦ୍ୱାରା କେହି ଅସନ୍ତୁଷ୍ଟ ନ ଥିଲେ । କୌଣସି ବ୍ୟକ୍ତିକୁ ପ୍ରାଣଦଣ୍ଡ ଦେବାକୁ ହେଲେ ସେ କହୁଥାନ୍ତି,

'ଆମ୍ଭେମାନେ କେବଳ ମାନବ ଏବଂ ଈଶ୍ବର ସୃଷ୍ଟିର ଯାବତୀୟ ପଦାର୍ଥ ନଷ୍ଟ କରିବା ନିମନ୍ତେ ଏକାନ୍ତ ଅକ୍ଷମ । ତାହା ମାନବ କ୍ଷମତାର ବହିର୍ଭୂତ ।' ଏହା ଲେଖୁ ଲେଖୁ ଆମ୍ଭମାନଙ୍କ ସ୍ବର୍ଗୀୟା ମହାରାଣୀ ଭିକ୍ଟୋରିଆଙ୍କର ଗୋଟିଏ ଭୁଲ ବୃତ୍ତାନ୍ତ ସ୍ମରଣ ହେଉଅଛି । ସେ ସିଂହାସନାରୋହଣ କରିବାର ଅଳ୍ପ କାଳ ପରେ ଡିଉକ୍ ଅଫ୍ ୱେଲିଙ୍ଗ୍‌ଟନ ତାହାଙ୍କୁ ଏକ ପ୍ରାଣଦଣ୍ଡାଜ୍ଞା ପତ୍ରରେ ସ୍ବାକ୍ଷର କରିବା ନିମନ୍ତେ ପ୍ରାର୍ଥନା କଲେ । ମହାରାଣୀ ଭିକ୍ଟୋରିଆ ଅତ୍ୟନ୍ତ କାତର ହୋଇ ସେ ବ୍ୟକ୍ତିକୁ କୌଣସି ଉପାୟରେ ରକ୍ଷା କରିବା ନିମନ୍ତେ କହିଲେ । ସେହି ଦିବସାବଧି ଉକ୍ତ ପତ୍ରଗୁଡ଼ିକ ମହାରାଣୀଙ୍କ ସମ୍ମୁଖକୁ ନ ଯିବାର ବନ୍ଦୋବସ୍ତ ହୋଇଥିଲା । ଏଥିରୁ ନାରୀହୃଦୟର କୋମଳତା ସ୍ପଷ୍ଟ ଉପଲବ୍ଧ ହେଉଅଛି ।

ଅହଲ୍ୟାଙ୍କ ସମୟରେ ତାହାଙ୍କର ରାଜ୍ୟ ଅତ୍ୟନ୍ତ ଶାନ୍ତିପୂର୍ଣ୍ଣ ଥିଲା । ପ୍ରଜାବର୍ଗ ପରମ ସୁଖରେ ବାସ କରୁଥିଲେ । ନିକଟବର୍ତ୍ତୀ ଅନ୍ୟାନ୍ୟ ରାଜାଗଣ କେହି ଅହଲ୍ୟାଙ୍କର ଶତ୍ରୁ ନ ଥିଲେ । ସାଧାରଣ ଲୋକହିତକର କାର୍ଯ୍ୟମାନଙ୍କରେ ଅହଲ୍ୟା ଅସଂଖ୍ୟ ମୁଦ୍ରା ବ୍ୟୟ କରିଥିଲେ । କେବଳ ତାହାଙ୍କ ରାଜ୍ୟ ମଧ୍ୟରେ ନୁହେ, ମାତ୍ର ହିମାଳୟଠାରୁ ସେତୁବନ୍ଧ ପର୍ଯ୍ୟନ୍ତ ନାନା ସ୍ଥାନରେ ସେ ଯେଉଁ ସୁନ୍ଦର ମନ୍ଦିର, ପାନ୍ଥାଶ୍ରମ, କୂପ, ସଡ଼କ, ଘାଟ ପ୍ରଭୃତି ନିର୍ମାଣ କରାଇ ଯାଇଅଛନ୍ତି, ସେ ସମସ୍ତ ଆଜି ସୁଦ୍ଧା ତାହାଙ୍କ ଜନହିତୈଷଣା ଓ ବଦାନ୍ୟତାର ମୂକସାକ୍ଷୀ ସ୍ବରୂପ ବିରାଜମାନ । ଦୀନ ଓ ପଥିକମାନଙ୍କ ଦୁଃଖାପନୋଦନ କରିବାରେ ଅହଲ୍ୟା ସର୍ବଦା ତତ୍ପର ଥିଲେ । ତାହାଙ୍କର ସୁଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପିଥିଲା । ବିଭିନ୍ନ ଦେଶର ରାଜାମାନେ ତାହାଙ୍କର ଦରବାରକୁ ଦୂତ ପ୍ରେରଣ କରୁଥିଲେ ଏବଂ ତାହାଙ୍କର ଦୂତମାନେ ମଧ୍ୟ ନାନା ସ୍ଥାନରେ ଦେଖାଯାଉଥିଲେ ।

ଅହଲ୍ୟାଙ୍କୁ ଅନେକ କଷ୍ଟ ସହ୍ୟ କରିବାକୁ ପଡ଼ିଥିଲା । ତାହାଙ୍କ ପୁତ୍ରର ମରଣର ଏକ ବର୍ଷ ପରେ ଦୁହିତା ପତିହୀନା ହେଲେ । ଏହି ଗଭୀର ଦୁଃଖ ଅତିକ୍ରମ କରି ନ ପାରି ସେ ଦୁହିତା ତାହାର ପ୍ରବୋଧ ବାକ୍ୟ ଶ୍ରବଣ ନ କରି ନର୍ମ୍ମଦା ନଦୀ ତୀରରେ ପତିଙ୍କର ଚିତାଗ୍ନିରେ ନିଜ ପ୍ରାଣ ନଷ୍ଟ କରିଥିଲେ । ଏ ଘଟଣାରେ ଅହଲ୍ୟାଙ୍କର ହୃଦୟବିଦାରକ ମନୋବେଦନା ବର୍ଣ୍ଣନାତୀତ । ପୃଥିବୀରେ ଅବଶିଷ୍ଟ ଏକମାତ୍ର ଆଦରର ଧନ ହରାଇ ସେ କିଛି ଦିନ ପର୍ଯ୍ୟନ୍ତ ଆହାର ନିଦ୍ରା ଆଳାପ ତ୍ୟାଗ କରିଥିଲେ । ପରେ ଶାନ୍ତ ଲାଭ କରି ଦୁହିତାଙ୍କ ସ୍ମରଣାର୍ଥ ଗୋଟିଏ ଅତ୍ୟନ୍ତ ମନୋହର ମନ୍ଦିର ନିର୍ମାଣ କରାଇଥିଲେ । ଉକ୍ତ ପ୍ରସିଦ୍ଧ ମନ୍ଦିରର ଶିଳ୍ପନୈପୁଣ୍ୟ ଜଣେ ଇଂରାଜ ଲେଖକଙ୍କର ନିମ୍ନଲିଖିତ ପଦଗୁଡ଼ିକରୁ ପ୍ରତୀୟମାନ ହେବ । "There are few modern temples of more beautiful and finished workmanship than this memorial of maternal love."

ରାଣୀ ଅହଲ୍ୟା ସ୍ବଭାବତଃ କୃଶାଙ୍ଗୀ ଥିଲେ । ସେ ରୂପବତୀ ନ ଥିଲେହେଁ ତାହାଙ୍କ ଶରୀର ଅତ୍ୟନ୍ତ ତେଜଃପୂର୍ଣ୍ଣ ଥିଲା, ଦୁଃଖ ଓ ଆପଦରେ ସୁଦ୍ଧା ତାହାଙ୍କ କ୍ରୋଧ ଓ ମନର ପ୍ରଫୁଲ୍ଲତା ହ୍ରାସ ପ୍ରାପ୍ତ ହେଉ ନ ଥିଲା । ସେ ସର୍ବଦା ଧର୍ମ୍ମ କାର୍ଯ୍ୟରେ ନିଯୁକ୍ତ ଥିଲେ । ସେ ଏଡ଼େ ଦୟାର୍ଦ୍ରହୃଦୟା ଥିଲେ ଯେ ସେହି ଉପରୋକ୍ତ ଇଂରାଜ ଲେଖକ କହଅଛନ୍ତି "The very beasts of the field, the birds of the air and the fish of the river, shared in her compassion." ଅହଲ୍ୟା ଅତ୍ୟନ୍ତ ଗର୍ବଶୂନ୍ୟ ଥିଲେ । ଅଯଥା ପ୍ରଶଂସା ପ୍ରତି ସେ ବିଶେଷ ଘୃଣା ପ୍ରକାଶ କରୁଥିଲେ । ଥରେ କେହି ଜଣେ ତାହାଙ୍କର ଏହିପରି ଅଯଥା ପ୍ରଶଂସା ବ୍ୟକ୍ତ କରି ଖଣ୍ଡିଏ ପୁସ୍ତିକା ଲେଖିବାରୁ ରାଣୀ ତାହା ଶୁଣି ଅବିଳମ୍ବେ ଡିଆଇ ଦେବା ନିମନ୍ତେ ଆଦେଶ ପ୍ରଦାନ କଲେ ।

କଥିତ ଅଛି, ସଂସାରରୁ ପୁଣ୍ୟାତ୍ମାର ଅନ୍ତର୍ଦ୍ଧାନ ଅକ୍ଲେଶରେ ହୁଏ । ଅହଲ୍ୟାଙ୍କ ପୁଣ୍ୟମୟ ଜୀବନରେ ଏହା ପ୍ରମାଣିତ ହୋଇଅଛି । ସେ ଷଷ୍ଟିତମ ବୟଃକ୍ରମରେ ୧୭୯୫ ଖ୍ରୀଷ୍ଟାବ୍ଦରେ ଅକସ୍ମାତ୍ ପ୍ରାଣତ୍ୟାଗ କରିଥିଲେ । ଏହି ଦାରୁଣ ବାର୍ତ୍ତା ଶ୍ରବଣ ମାତ୍ରକେ ଅସଂଖ୍ୟ ମାନବ ଗଭୀର ଶୋକ-ସାଗରରେ ନିମଗ୍ନ ହୋଇଥିଲେ । ଅହଲ୍ୟା ବାଈଙ୍କର ଯଶୋରାଶି ଚିରକାଳଯାଏ ମାନବ ଇତିହାସରେ ଅକ୍ଷୁଣ୍ଣିତରୂପେ ସ୍ୱର୍ଣ୍ଣାକ୍ଷରରେ ମୁଦ୍ରିତ ରହି ଜନସାଧାରଣଙ୍କୁ ପୁଣ୍ୟ କାର୍ଯ୍ୟରେ ଏବଂ କର୍ତ୍ତବ୍ୟ ପାଳନରେ ଉତ୍ସାହିତ କରୁଥିବ ।

ଶ୍ରୀ ଜାହ୍ନବୀଚରଣ ରଥ ।

---

## "ଆମାଦେର ଜ୍ୟୋତିଷୀ ଓ ଜ୍ୟୋତିଷ" । (୨)

ଜ୍ୟୋତିଷ ସଂହିତା ( ଖ୍ରୀ:ପୂ: ୧୨୦୦—୦ ବର୍ଷ )। ଅଧୁନାତ୍ତ ସମୟୁପର ବର୍ଷ ଧର ପ୍ରାଚୀନ କାଳର କୌଣସି ବିଷୟର ସମୟନିର୍ଦ୍ଦେଶ କରିଯାଇ ନ ପାରେ । "ସେ ସମୟର କୌଣସି ବିଷୟର ସମୟ-ନିର୍ଦ୍ଦେଶ କାଳର ପୂର୍ବାପର ସୀମା-ନିର୍ଦ୍ଦେଶ ମାତ୍ର ।" ସୁତରାଂ ପ୍ରାଚୀନ ଆର୍ଯ୍ୟ-ଜ୍ୟୋତିଷସଂହିତାର ସମୟନିର୍ଦ୍ଦେଶ ବିଡ଼ମ୍ବନା ମାତ୍ର । ଅଧ୍ୟାପକ ମହାଶୟ ଆଦି ଜ୍ୟୋତିଷ-ସଂହିତାର ସମୟ ନିର୍ଦ୍ଦେଶ କରିବାକୁ ଯାଇ ତାହାର ପ୍ରଣେତା କିଏ, ସର୍ବପ୍ରଥମେ ଏହି ପ୍ରଶ୍ନର ମୀମାଂସା କରିଅଛନ୍ତି । ତାହାଙ୍କ ମତରେ ପିତାମହ ବ୍ରହ୍ମା ଆଦି ସଂହିତା-ପ୍ରଣେତା । କେହି କେହି କହନ୍ତି ଆମ୍ଭମାନଙ୍କର ବ୍ରହ୍ମା ଏବଂ ମିସରବାସି-ମାନଙ୍କର ତଥା ପାଶ୍ଚାତ୍ୟ ଜାତିର ଜ୍ୟୋତି-ର୍ବିଦ୍ୟାର ଆଦିଗୁରୁ ଅବ୍ରାହାମ୍ ଅଭିନ୍ନ । ଯାହା-ହେଉ ବେଦାଙ୍ଗ-ଜ୍ୟୋତିଷରଚନାର ଅଳ୍ପ କାଳ ପରେ ପୈତାମହ ସଂହିତା ରଚିତ ହୋଇ-ଥିଲା । ପାରାଶର କନ୍ତୁ ଏହି ସଂହିତାର ପରବର୍ତ୍ତୀ ଏବଂ ଗର୍ଗ ତତ୍ପରବର୍ତ୍ତୀ ସଂହିତାଲେଖକ ଅଟନ୍ତି । ଯେଉଁ ଯୁକ୍ତିଦ୍ୱାରା ଏହି ସତ୍ୟଗୁଡ଼ିକ ପ୍ରତିପାଦିତ ହୋଇଅଛି, ତାହା ଅଧ୍ୟାପକ ମହାଶୟଙ୍କର ପ୍ରଗାଢ଼ ପାଣ୍ଡିତ୍ୟର ପରିଚୟ ପ୍ରଦାନ କରୁଅଛି ।

ଜ୍ୟୋତିଷ ସିଦ୍ଧାନ୍ତ (ଖ୍ରୀ ୦—୧୨୦୦)। ପୂର୍ବ କାଳରେ ଅଠର ଜଣ ଜ୍ୟୋତିଷଶାସ୍ତ୍ର-ପ୍ରବର୍ତ୍ତକ ଥିଲେ, ସେମାନଙ୍କର ନାମ ଏହି:—

୧ ସୂର୍ଯ୍ୟ, ୨ ବ୍ରହ୍ମା, ୩ ବ୍ୟାସ, ୪ ବଶିଷ୍ଠ, ୫ ଅତ୍ରି, ୬ ପରାଶର, ୭ କଶ୍ୟପ, ୮ ନାରଦ, ୯ ଗର୍ଗ, ୧୦ ମରୀଚି, ୧୧ ମନୁ, ୧୨ ଅଙ୍ଗିରା, ୧୩ ଲୋମଶ, ୧୪ ପୌଲିଶ, ୧୫ ଚ୍ୟବନ, ୧୬ ଯବନ, ୧୭ ଭୃଗୁ ଓ ୧୮ ଶୌନକ ।

ଏହି ସିଦ୍ଧାନ୍ତ-ପ୍ରବର୍ତ୍ତକମାନଙ୍କ ନାମାନୁସାରେ ସିଦ୍ଧାନ୍ତମାନଙ୍କର ନାମକରଣ ହୋଇଥିଲା । ପୂର୍ବକାଳୀନ ସିଦ୍ଧାନ୍ତମାନଙ୍କ ମଧ୍ୟରୁ ଅଧିକାଂଶ ଅଧୁନା ଦୁଷ୍ପ୍ରାପ୍ୟ, ଅଥବା ପରିବର୍ତ୍ତିତ ବା ପରିବର୍ଦ୍ଧିତ ହୋଇଅଛି; ଯଥା—ପ୍ରଚଳିତ ସୂର୍ଯ୍ୟ-ସିଦ୍ଧାନ୍ତର ପ୍ରଥମରେ ଲିଖିତ ଅଛି ଯେ ସତ୍ୟ-ଯୁଗର ଅଳ୍ପ ଅବଶିଷ୍ଟ ଥିବା ସମୟରେ ସ୍ୱୟଂ ସବିତା ମୟଙ୍କୁ ଗ୍ରହଚରିତ ଦାନ କରିଥିଲେ । ତାହାହେଲେ ସୂର୍ଯ୍ୟସିଦ୍ଧାନ୍ତ ଅନ୍ୟୂନ ୨୨ ଲକ୍ଷ ବର୍ଷର ପୁରାତନ ଗ୍ରନ୍ଥ! ଯାହାହେଉ ପୈତାମହ ସିଦ୍ଧାନ୍ତ ଆଦି ସିଦ୍ଧାନ୍ତ, ବାଶିଷ୍ଠସିଦ୍ଧାନ୍ତ ତତ୍-ପରବର୍ତ୍ତୀ, ବାଶିଷ୍ଠ ପରେ ସୂର୍ଯ୍ୟସିଦ୍ଧାନ୍ତ ରଚିତ ହୋଇଥିଲା । ଆମ୍ଭେମାନେ ସୂର୍ଯ୍ୟସିଦ୍ଧାନ୍ତକୁ ବର୍ତ୍ତମାନ ଯେ ଆକାରରେ ଦେଖୁଅଛୁଁ, ତାହାର ସେହି ଆକାର ଅନ୍ତତଃ ଶକର ଦ୍ୱାଦଶ ଶତାବ୍ଦି-ଠାରୁ ରହିଅଛି । ପ୍ରାୟ ସହସ୍ରାଧିକ ବର୍ଷ ପୂର୍ବେ ଆରବୀୟମାନେ ଆରବୀ ଭାଷାରେ 'ଅର୍କନ୍ଦ' ନାମକ

ଖଣ୍ଡିଏ ସିଦ୍ଧାନ୍ତ ଲେଖିଥିଲେ । ତାହାର ମୂଳ ଯେ "ସୂର୍ଯ୍ୟ ବା ଅର୍କ ସିଦ୍ଧାନ୍ତ" ତାହା ସେମାନେ କେନେ ସ୍ୱୀକାର କରିଅଛନ୍ତି । "ରୋମକସିଦ୍ଧାନ୍ତ" ସୂର୍ଯ୍ୟସିଦ୍ଧାନ୍ତର ବହୁ ପରବର୍ତ୍ତୀ । ବ୍ରହ୍ମଗୁପ୍ତ ଲେଖି ଅଛନ୍ତି ଶ୍ରୀଷେଣ ରୋମକସିଦ୍ଧାନ୍ତ ରଚନା କରିଥିଲେ । ତାଙ୍କର ଥିବ ସାହେବଙ୍କ ମତରେ ଶ୍ରୀଷେଣ ପ୍ରାଚୀନ ରୋମକ ସିଦ୍ଧାନ୍ତ ରଚନା କରି ଭଦ୍ରାମାଲ୍ଲକ ବହୁବିଧ ଗ୍ରନ୍ଥରୁ ଗଣନା ସଂଗ୍ରହ କରି ତହିଁରେ ସନ୍ନିବେଶିତ କରିଥିଲେ । ଅଧ୍ୟାପକ ମହାଶୟଙ୍କ ମତରେ ଏ ସମସ୍ତ ଦୁର୍ବଳ ଅନୁମାନ ମାତ୍ର । "ପୌଲିଶ ସିଦ୍ଧାନ୍ତ"ରେ ଯବନପୁର ବା ଅଲେକ୍‌ଜାଣ୍ଡ୍ରିଆଠାରୁ ଉଜ୍ଜୟିନୀ ବା ବାରଣାସିର ଦେଶାନ୍ତର ପ୍ରଦତ୍ତ ହୋଇଅଛି । ପୁରାତନ ପୌଲିଶ ସିଦ୍ଧାନ୍ତର ରଚୟିତା ସମ୍ବନ୍ଧରେ ମତଭେଦ ଅଛି । ଅଧ୍ୟାପକ ମହାଶୟ ଲେଖିଅଛନ୍ତି "ଅଷ୍ଟାଦଶ ସିଦ୍ଧାନ୍ତ ମଧ୍ୟରୁ କେବଳ ୫ ଖଣ୍ଡର ଉଲ୍ଲେଖ କରାଗଲା । ଏହି ପାଞ୍ଚ ଖଣ୍ଡର ରଚୟିତା ଠିକ୍‌ରୂପେ ନିରୂପିତ ନ ହେଲେହେଁ ପରମ୍ପରାଗତ ନାମ କେବଳ ପରମାଣରେ ଅନୁମିତ ହୋଇଅଛି ।"

ଏଥିଉତ୍ତାରୁ ଅଧ୍ୟାପକ ମହାଶୟ ଆମ୍ଭମାନଙ୍କର ପୁରାତନ ଜ୍ୟୋତିଷୀ ଭୂ-ଭ୍ରମଣ-ମତବାଦୀ ଆର୍ଯ୍ୟଭଟଙ୍କ ନାମୋଲ୍ଲେଖ କରି କହିଅଛନ୍ତି, "ଆମ୍ଭେମାନେ ଏ ପର୍ଯ୍ୟନ୍ତ ଶିଥିଳ ବାଲୁକାମୟ ଭୂମି ଉପରେ ବିଚରଣ କରୁଥିଲୁଁ । ଅନେକ ବିଷୟରେ ଆମ୍ଭମାନଙ୍କୁ ଏକମାତ୍ର ଅନୁମାନ ଉପରେ ନିର୍ଭର କରିବାକୁ ହୋଇଥିଲା । ବର୍ତ୍ତମାନ କ୍ରମଶଃ ସୁଦୃଢ଼ ଶୈଳମୟ ଭୂମିରେ ଜ୍ୟୋତିଷର ଇତିବୃତ୍ତ ପ୍ରତିଷ୍ଠିତ ହେବ ।" ମହାତ୍ମା ଆର୍ଯ୍ୟଭଟ ୩୯୮ ଶକରେ ଜନ୍ମଗ୍ରହଣ କରିଥିଲେ । ୨୩ ବର୍ଷ ବୟଃକ୍ରମ ସମୟରେ ସେ ବ୍ରହ୍ମସିଦ୍ଧାନ୍ତର ବୀଜସଂସ୍କାର କରି ତାହାଙ୍କର ବିଖ୍ୟାତ ତନ୍ତ୍ର ପ୍ରଣୟନ କରିଥିଲେ । କୌଣସି ବିଦେଶୀୟ ଯବନଗ୍ରନ୍ଥ ତାହାଙ୍କର ଭିତ୍ତି ନ ଥିଲା । ତାହାଙ୍କ ସିଦ୍ଧାନ୍ତର ନାମ "ଲଘୁ ଆର୍ଯ୍ୟସିଦ୍ଧାନ୍ତ" । କୁସୁମପୁର ବା ଆଧୁନିକ ପାଟନା ତାହାଙ୍କର ବାସସ୍ଥାନ ଥିଲା । ସେ ନିମ୍ନଲିଖିତ ଶ୍ଳୋକରେ ଭୂ-ଭ୍ରମଣର ଦୃଷ୍ଟାନ୍ତ ଦେଇଅଛନ୍ତି :—

> ଅନୁଲୋମଗତି ନୌସ୍ଥଃ
> ପଶ୍ୟତ୍ୟଚଳଂ ବିଲୋମଗଂ ଯଦ୍ୱତ୍ ।
> ଅଚଳାନିଭାନି ତଦ୍ୱତ୍
> ସମପଶ୍ଚିମଗାନି ଲଙ୍କାୟାମ୍ ।

ତଦନନ୍ତର ୫ମ ଶତାବ୍ଦିରେ ଲଲ୍ଲ ନାମଧେୟ ଜଣେ ଜ୍ୟୋତିଷୀ "ଶିଷ୍ୟଧୀ ବୃଦ୍ଧିଦ" ନାମକ ଖଣ୍ଡିଏ ଜ୍ୟୋତିଷ ତନ୍ତ୍ର ପ୍ରଣୟନ କରିଥିଲେ । ଏ ମହାତ୍ମା ଭୂ-ଭ୍ରମଣ-ବାଦଖଣ୍ଡନର ପ୍ରୟାସୀ ହୋଇଥିଲେ ।

ପ୍ରାୟ ୪୨୭ ଶତାବ୍ଦରେ ବରାହମିହିର ମଗଧ ଦେଶର କାମ୍ପିଲ୍ୟ ନଗରରେ ଦ୍ୱିଜକୁଳରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ସଙ୍କଳିତ 'ପଞ୍ଚସିଦ୍ଧାନ୍ତିକା' ଏବଂ ତାହାଙ୍କ ରଚିତ 'ବୃହତ୍‌ସଂହିତା', 'ଲଘୁ ଜାତକ', 'ବୃହତ୍ ଜାତକ' 'ଯୋଗ ଯାତ୍ରା' ଓ 'ବିବାହପଟଳ' ଅଦ୍ୟାବଧି ବିଦ୍ୟମାନ ଅଛି । ବରାହଙ୍କ ପୁତ୍ର ପୃଥୁଯଶା ମଧ୍ୟ ଜ୍ୟୋତିଷୀ ଥିଲେ । ତତ୍‌ପ୍ରଣୀତ 'ଷଟ୍‌ପଞ୍ଚାଶିକା' ନାମକ ପ୍ରଶ୍ନଗଣନାବିଷୟକ ଫଳଗ୍ରନ୍ଥ ଆଜି ହାଲି ମିଳେ ।

ବରାହମିହିରଙ୍କ ପରେ ଭୂ-ଭ୍ରମଣବାଦବିରୋଧୀ ବ୍ରହ୍ମଗୁପ୍ତ ପ୍ରସିଦ୍ଧି ଲାଭ କରିଥିଲେ । ତତ୍ପ୍ରଣୀତ ଅଧୁନା ଦୁଷ୍ପ୍ରାପ୍ୟ "ବ୍ରହ୍ମସ୍ଫୁଟ ସିଦ୍ଧାନ୍ତ" ଆର୍ଯ୍ୟଭଟୀୟ ପରି ବିଖ୍ୟାତ, ଏ ମହାତ୍ମା ୫୨୦ ଶକରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କର ଖଣ୍ଡିଏ କରଣ ଗ୍ରନ୍ଥ ମଧ୍ୟ ଥିଲା ।

୮୫୪ ଶତାବ୍ଦରେ ମୁଞ୍ଜାଲ ନାମକ ଜନୈକ ଜ୍ୟୋତିଷୀ 'ଲଘୁମାନସ' ନାମକ ଖଣ୍ଡିଏ କରଣ ଗ୍ରନ୍ଥ ରଚନା କରିଥିଲେ । ପ୍ରାୟ ୯୬୧ ଶକରେ ବିଖ୍ୟାତ ଫଳିତଜ୍ୟୋତିଷଗ୍ରନ୍ଥପ୍ରଣେତା ଶ୍ରୀପତି ଭଟ୍ଟ ଜୀବିତ ଥିଲେ । ସେ 'ସିଦ୍ଧାନ୍ତଶେଖର'

ନାମକ ଖଣ୍ଡିଏ ସିଦ୍ଧାନ୍ତ ଲେଖିଅଛନ୍ତି ଏବଂ ତାହାଙ୍କ 'ଜ୍ୟୋତିଷ-ରତ୍ନମାଳା' ଫଳବ୍ୟବସାୟି-ମାନଙ୍କ ନିକଟରେ ସୁପରିଚିତ । ଭୋଜରାଜ ତାହାଙ୍କର ପ୍ରାୟ ସମସାମୟିକ । ଏହାଙ୍କ ଲିଖିତ 'ରାଜମାର୍ତ୍ତଣ୍ଡ' ନାମକ ଫଳଗ୍ରନ୍ଥ ଅଦ୍ୟାବଧି ମିଳେ ।

ଭାସ୍କରାଚାର୍ଯ୍ୟଙ୍କ ଜନ୍ମର କିୟତ୍କାଳ ପୂର୍ବେ ପୁରୁଷୋତ୍ତମ କ୍ଷେତ୍ରବାସୀ ଶତାନନ୍ଦ 'ଭାସ୍ୱତୀ' ନାମକ ଗ୍ରନ୍ଥ ୧୦୨୧ ଶକରେ ରଚନା କରି-ଥିଲେ । ଏହାଙ୍କ ମାତାଙ୍କ ନାମ ସରସ୍ୱତୀ ଏବଂ ପିତାଙ୍କ ନାମ ଶଙ୍କର । ଆଧୁନିକ ଦଶମିକ ଗଣନା ପରି ସେ ଶତାଂଶିକ ସଂଖ୍ୟାର ବହୁଳ ବ୍ୟବହାର କରିଅଛନ୍ତି । "ଭାସ୍ୱତୀ ଗ୍ରହଣେ ଧନ୍ୟା" ବୋଲି ଅଦ୍ୟାପି ଏହି ଗ୍ରନ୍ଥର ସମାଦର ଅଛି । ଭାସ୍ୱତୀର ରଚନାକାଳଠାରୁ ଗୋଟିଏ ଅବ୍ଦ ଗଣିତ ହୁଏ, ତାହାର ନାମ 'ଶାସ୍ତ୍ରାବ୍ଦ' ।

୧୦୩୬ ଶକରେ କର୍ଣ୍ଣାଟ ପ୍ରଦେଶାନ୍ତର୍ଗତ ବିଜ୍ଜଡ଼ବିଡ଼ରେ (ଆଧୁନିକ ବିଜାପୁର) ଜ୍ୟୋତିଷା-କାଶରେ ଭାସ୍କର ସଦୃଶ ଭାସ୍କର ଜନ୍ମଗ୍ରହଣ କରିଥିଲେ । ସେ ୩୬ ବର୍ଷ ବୟଃକ୍ରମକାଳରେ 'ସିଦ୍ଧାନ୍ତଶିରୋମଣି' ନାମକ ପ୍ରସିଦ୍ଧ ଗ୍ରନ୍ଥ ପ୍ରଣୟନ କରିଥିଲେ । ଏହାଙ୍କ ପିତା ଶାଣ୍ଡିଲ୍ୟ ଗୋତ୍ରୀୟ ବ୍ରାହ୍ମଣ ଥିଲେ । ଭାସ୍କରଙ୍କର ବୀଜଗଣିତ ଓ ଲୀଳାବତୀ ନାମକ ପାଟୀଗଣିତ ସର୍ବଜନପ୍ରସିଦ୍ଧ । ସେ 'କରଣକୁତୂହଳ' ନାମକ କରଣ ଗ୍ରନ୍ଥ ଏବଂ 'ସର୍ବତୋଭଦ୍ର ଯନ୍ତ୍ର' ନାମକ କାଳପରିମାଣ-ବିଷୟକ ଆଉ ଖଣ୍ଡିଏ ଗ୍ରନ୍ଥ ଲେଖି ଯାଇଅଛନ୍ତି ।

ଜ୍ୟୋତିଷ-କରଣ ( ଖ୍ରୀ: ୧୨୦୦—୧୯୦୦ । ଅତଃପର ଅଧ୍ୟାପକ ମହାଶୟ କରଣକାଳରେ ପ୍ରବେଶ କରି ଲେଖିଅଛନ୍ତି "ଏହି କାଳକୁ ଆମ୍ଭେମାନେ କରଣକାଳ କହୁଅଛୁଁ । ବସ୍ତୁତଃ ଏହାକୁ କରଣ କାଳ ବା ଅନୁକରଣ କାଳ କହିଲେ ଅତ୍ୟୁକ୍ତି ହେବ ନାହିଁ । ଦ୍ୱାଦଶ ଶତାବ୍ଦୀ-ଠାରୁ ଏହି କାଳର ଆରମ୍ଭ ହୋଇଅଛି; କେବେ ଏହାର ଶେଷ ହେବ, କିଏ ଜାଣେ ?" ତଥା-ଗୁଡ଼ିକ କେତେ ହୃଦୟଗ୍ରାହୀ, ସହୃଦୟ ପାଠକ ମାତ୍ରକେ ଉପଲବ୍ଧି କରିବେ ।

୧୦୯୨ ଶକରେ ମିଥିଳାରାଜ ବଲ୍ଲାଳସେନ କର୍ତ୍ତୃକ ରଚିତ 'ଜ୍ୟୋତିଷସଂହିତା', ଶକର ୧୨ ଶ ଶତାବ୍ଦୀରେ ନର୍ମଦାନଦୀସନ୍ନିହିତ ପ୍ରଦେଶରେ ଆବିର୍ଭୂତ କେଶବାର୍କ କୃତ 'ବିବାହ-ବୃନ୍ଦାବନ' ଏବଂ କେଶବାର୍କଙ୍କ ସମସାମୟିକ କାଳିଦାସଗଣକକୃତ 'ଜ୍ୟୋତିର୍ବିଦାଭରଣ' ଏହି କାଳର ପ୍ରାଚୀନ ଗ୍ରନ୍ଥମାନଙ୍କ ମଧ୍ୟରେ ଉଲ୍ଲେଖଯୋଗ୍ୟ । ତଦନନ୍ତର ଅଧ୍ୟାପକ ମହାଶୟ ଜ୍ୟୋତିଷିମାନଙ୍କ ବଂଶପରମ୍ପରାକ୍ରମେ ଜ୍ୟୋତିଷଚର୍ଚ୍ଚା କରୁଥିବାର କହି କେତେଗୁଡ଼ିଏ ବଂଶର ନାମୋଲ୍ଲେଖ ଏବଂ ସେହି ପ୍ରତ୍ୟେକ ବଂଶର ପ୍ରଧାନ ପ୍ରଧାନ ଜ୍ୟୋତିଷିମାନଙ୍କର ଗ୍ରନ୍ଥ ସହିତ ସେମାନଙ୍କର ନାମ ମଧ୍ୟ ପ୍ରଦାନ କରି ଅଛନ୍ତି । ସେ ସମସ୍ତଙ୍କର ନାମ ଏଠାରେ ପ୍ରଦାନ କରିବା ଅନାବଶ୍ୟକ, ମାତ୍ର ତହିଁରୁ ଅଧ୍ୟାପକ ମହାଶୟଙ୍କର ଯଥେଷ୍ଟ ଅନୁସନ୍ଧାନ ଓ ଗବେଷଣା ପ୍ରତିପନ୍ନ ହୋଇଅଛି । ତଦନନ୍ତର ଅଧ୍ୟାପକ ମହାଶୟ ଲେଖିଅଛନ୍ତି "ଉପରେ କେତେକ ଜଣ ଜ୍ୟୋତିଷୀ ଏବଂ ସେମାନଙ୍କ ଗ୍ରନ୍ଥର ଉଲ୍ଲେଖ କରାଗଲା । ଭାରତ ପ୍ରକାଣ୍ଡ ଦେଶ । ଏହାର ବିଭିନ୍ନ ପ୍ରଦେଶରେ ଆହୁରି ମଧ୍ୟ କେତେ ଜ୍ୟୋତିଷୀ ଥିଲେ, ତାହା ନିର୍ଣ୍ଣୟ କରିବା ଦୁଷ୍କର । ଆମ୍ଭେମାନେ ଅବା କେତେ ଜଣଙ୍କର ନାମ କହି ପାରିଅଛୁଁ ?"

ଏହି ପରିଚ୍ଛେଦର ଉପସଂହାରସ୍ଥଳରେ ତିନି ଜଣ ଆଧୁନିକ ଜ୍ୟୋତିଷିଙ୍କର ନାମୋ-ଲ୍ଲେଖ ହୋଇଅଛି, ଯଥା; ନାଗପୁରର ମହାରାଷ୍ଟ୍ରୀୟ ବ୍ରାହ୍ମଣ ମହାମହୋପାଧ୍ୟାୟ ବାପୂ-ଦେବ ଶାସ୍ତ୍ରୀ ସି. ଆଇ. ଇ., ଏଲାହାବାଦ ବିଶ୍ୱ-ବିଦ୍ୟାଳୟର ସଭ୍ୟସଦ ଶ୍ରୀ ସୁଧାକର ଦ୍ୱିବେଦୀ ଏବଂ ଖଣ୍ଡପଡ଼ାବାସୀ ଆମ୍ଭମାନଙ୍କର ମହାମହୋ ପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ । ଚନ୍ଦ୍ର-

ଶେଖରଙ୍କ ସମ୍ବନ୍ଧରେ ଲେଖିବାକୁ ଅରମ୍ଭ କର ଅଧ୍ୟାପକ ମହାଶୟ କହୁଅଛନ୍ତି "ଦ୍ୱିବେଦୀ ମହାଶୟ ଇଂରେଜୀ ଜ୍ୟୋତିଷ ଶିକ୍ଷା କରିଅଛନ୍ତି । ସୁତରାଂ ଜ୍ୟୋତିଷ ବିଦ୍ୟା ଶିକ୍ଷା କରିବାର ତାହାଙ୍କର ସବିଶେଷ ସୁଯୋଗ ଘଟିଅଛି । କିନ୍ତୁ ଯଦି କେହି ସେହି ପ୍ରାଚୀନ କାଳର ଜ୍ୟୋତିର୍ବିଦ୍ ଦେଖିବାକୁ ଇଚ୍ଛାନ୍ତି ସେ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହଙ୍କ ନିକଟକୁ ଆଗମନ କରିବେ" ।

ଅନ୍ୟ ଦେଖିବାକୁ ଚାହିଁ; ଚନ୍ଦ୍ରଶେଖର ଉତ୍କଳୀୟ ସାଙ୍ଗ କରି ଅଛନ୍ତି ଏବଂ ଉତ୍କଳର ସେହି ଗୌରବରବି ଅସ୍ତମିତ ହୋଇଅଛି !!

କ୍ରମଶଃ

ଶ୍ରୀ ମଧୁସୂଦନ ଦାଶ ।

---

## ଶ୍ୱେତାଶ୍ୱତରୋପନିଷତ୍ ।

ତୃତୀୟ ଅଧ୍ୟାୟ ।

ବିଶ୍ୱ ବ୍ରହ୍ମାଣ୍ଡ ବରଣୀୟ,
ଯେଉଁ ମାୟାରେ ଅଦ୍ୱିତୀୟ
ନିଜ ଶକ୍ତିରେ ନିୟମିତ
କରନ୍ତି ଲୋକଙ୍କ ସହିତ ।
ଜଗତ ସ୍ଥିତି ଉଦ୍ଭବ
ବିନାଶ ଯାଙ୍କ କାର୍ଯ୍ୟ ସବ ।
ତାହାଙ୍କୁ ଜାଣେ ଯେଉଁ ନର,
ନିଶ୍ଚେ ସେ ହୁଅଇ ଅମର ।
ରୁଦ୍ର ଅଟନ୍ତି ଏକମାତ୍ର,
ବିରାଜି ଅଛନ୍ତି ସର୍ବତ୍ର ।
ନିଜ ଶକ୍ତିରେ ଲୋକଗଣେ
ରଖନ୍ତି ନିୟମ ପାଳନେ ।
ଏଥିକୁ ବ୍ରହ୍ମବାଦଗଣ
କରନ୍ତି ତାହାଙ୍କୁ ସ୍ମରଣ ।
ଦ୍ୱିତୀୟ ରୁଦ୍ର ଅସ୍ୱୀକାର
କରନ୍ତି ସର୍ବେ ବାରମ୍ବାର ।
ସର୍ବ ପଶ୍ଚାତେ ଭଗବାନ
ରହିଅଛନ୍ତି ବର୍ତ୍ତମାନ ।
ଜଗତ କରଣ ସୃଜନ,
ପୁଣି ସେ କରନ୍ତି ପାଳନ ।
ଅନ୍ତ କାଳରେ ପୁନର୍ବାର
କରନ୍ତି ସକଳ ସଂହାର ।
ସର୍ବତ୍ର ତାହାଙ୍କ ନୟନ,
ସର୍ବତ୍ର ତାହାଙ୍କ ବଦନ ।
ସର୍ବତ୍ର ତାହାଙ୍କର ବାହୁ,
ସର୍ବତ୍ର ପଦ ଅଛି ଅଉ ।
ସେହି ଯେ ଏକମାତ୍ର ଦେବ,
ତାଠାରୁ ସର୍ବ ଜାତ ହେବ ।
ଆକାଶ ପୃଥ୍ୱୀ ସୃଜନ
କଲେ ସେ ବ୍ରହ୍ମ ସନାତନ ।
ମାନବ ସୃଜିଲେ ପ୍ରତ୍ୟକ୍ଷ,
ପକ୍ଷିଗଣଙ୍କୁ ଦେଲେ ପକ୍ଷ ।
ସୃଜିଣ ଦେବତାମଣ୍ଡଳେ,
ମଣ୍ଡିଲେ ତାଙ୍କୁ ଶକ୍ତି ବଳେ ।
ହିରଣ୍ୟଗର୍ଭ ଉତ୍ପାଦନ
କଲେ ସେ ବ୍ରହ୍ମ ସନାତନ ।
ଆମ୍ଭଙ୍କୁ ବ୍ରହ୍ମ ଭଗବାନ
କରନ୍ତୁ ସୁବୁଦ୍ଧି ପ୍ରଦାନ ।
ହେ ରୁଦ୍ର ଅହେ ବିଶ୍ୱମ୍ଭର,
ଆମ୍ଭମାନଙ୍କୁ କୃପା କର ।
ତୁମ୍ଭର ଅଭୟା ବରଦା
ଯେ ତନୁ ଅଟେ ବରପ୍ରଦା,
ସେ ସୁଖତମା ତନୁ ଯୋଗେ
ଆମ୍ଭଙ୍କୁ ରଖନ୍ତୁ ସୁଯୋଗେ ।
ହେ ଦେବ ହେ ଗିରିରକ୍ଷକ,
ହେଉନ୍ତୁ କଲ୍ୟାଣଦାୟକ ।
ଯେ ବଜ୍ର ବିନାଶ କାରଣ
ହସ୍ତରେ କରିଛ ଧାରଣ,

ତାହାଙ୍କୁ କର ସମ୍ବରଣ,
ତହିଁ ନ ନାଶ ଲୋକଗଣ ।
ଏହି ଜଗତଠାରୁ ଶ୍ରେଷ୍ଠ,
ହିରଣ୍ୟଗର୍ଭରୁ ଗରିଷ୍ଠ ।
ସେହି ଯେ ପରମାତ୍ମା ଜାଣ,
ଶରୀରେ ଅଛନ୍ତି ବର୍ତ୍ତମାନ ।
ସକଳ ଭୂତର ପାଳକ,
ଏ ବିଶ୍ୱ ବ୍ରହ୍ମାଣ୍ଡ ବ୍ୟାପକ ।
ତାହାଙ୍କୁ ଜାଣେ ଯେଉଁ ନର,
ଅବଶ୍ୟ ହୁଏ ସେ ଅମର ।
ଆଦିତ୍ୟବର୍ଣ୍ଣ ସ୍ୱପ୍ରକାଶ,
କରନ୍ତି ଅଜ୍ଞାନତା ନାଶ ।
ବ୍ୟାପ୍ତ ବ୍ରହ୍ମାଣ୍ଡେ ସର୍ବଭାଗେ,
ବିଶେଷ ଜାଣ ତାଙ୍କୁ ଅଗ୍ରେ ।
ତାହାଙ୍କୁ ଜାଣିଣ ସାଧକ,
କରନ୍ତି ଜୀବନ ସାର୍ଥକ ।
ପାଇବା ପାଇଁ ଅମୃତତ୍ୱ
ନାହିଁଟି ଜାଣ ଅନ୍ୟ ପଥ ।
ତାହାଙ୍କ ବିନା ବସ୍ତୁ ନାହିଁ,
ଶ୍ରେଷ୍ଠ ଅଶ୍ରେଷ୍ଠ ଦ୍ରବ୍ୟ ପାଇଁ ।
ଯା ହେଉ କ୍ଷୁଦ୍ର ବା ବୃହତ,
ସକଳ ତାହାଙ୍କ ଆବୃତ ।
ସେହି ଦେବତା ନିରନ୍ତରେ
ବ୍ୟାପ୍ତ ଅଛନ୍ତି ଆକାଶରେ ।
ସେ ମହାପୁରୁଷେ ଜଗତ
ସମ୍ପୂର୍ଣ୍ଣ ଭରିଛି ସମସ୍ତ ।
ସେହି ଦେବତା ଅଦ୍ୱିତୀୟ, !
ପୁଣି ଅନନ୍ତ ଅପ୍ରମେୟ ।
ସେ ଦେବ ଜଗତ ଅତୀତ,
ଅରୂପ ପୁଣି ଦୁଃଖାତୀତ ।
ଯେ ଜାଣେ ତାଙ୍କୁ ଲଭେ ଶାନ୍ତି,
ଅନ୍ୟେ ହୁଅନ୍ତି ଦୁଃଖ ପ୍ରାପ୍ତି ।
ସମସ୍ତ ମୁଖ ଗ୍ରୀବା ତଳ
ଅଟେ ଯେ ସେହି ପ୍ରଭୁଙ୍କର ।

ସକଳ ଭୂତର ହୃଦୟେ
ଅଛନ୍ତି ସକଳ ସମୟେ ।
ତାଙ୍କ ଆଶ୍ରିତ ସର୍ବ ଜୀବ,
ସେ ବ୍ରହ୍ମ ସର୍ବଗତ ଶିବ ।
ସକଳ ଭୂତର ଚାଳକ,
ଅନ୍ତଃକରଣ ପ୍ରବର୍ତ୍ତକ ।
ପରମପଦ ସୁନିର୍ମଳ,
ପ୍ରାପ୍ତିର ହେତୁ ସେ କେବଳ ।
ସେ ପରବ୍ରହ୍ମ ଜ୍ୟୋତିର୍ମୟ,
ନିପୃକ୍ତ ଅଟଳ ଅବ୍ୟୟ ।
ହୃଦୟ ଛିଦ୍ର ପରମାଣେ
ବ୍ୟାପ୍ତ ଅଛନ୍ତି ସର୍ବ ସ୍ଥାନେ ।
ହୃଦୟ ମନେ ପ୍ରକାଶିତ
ହୁଅନ୍ତି ଜଗତ ଅତୀତ ।
ଏପରି କରେ ଯେ ବିଶ୍ୱାସ,
ମୃତ୍ୟୁ ନ ଯାଏ ତାହା ପାଶ ।
ତାହାଙ୍କ ସହସ୍ର ବଦନ,
ସହସ୍ର ନୟନ ଚରଣ ।
ପୃଥିବୀ ଚାରଣ ବେଷ୍ଟନ,
ରହିଅଛନ୍ତି ଅନୁକ୍ଷଣ ।
ଦଶ ଅଙ୍ଗୁଳ ପରିମାଣ
ଉପରେ ଥାନ୍ତି ବିଦ୍ୟମାନ ।
ଦଶ ଅଙ୍ଗୁଳ ଯେ ଆକାର,
ଅଟଇ ଅନନ୍ତ ଅପାର ।
ନାଭି ଉପରେ ଯେ ହୃଦୟ,
ଦଶ ଅଙ୍ଗୁଳ ଅନୁମେୟ ।
ପରମ ବ୍ରହ୍ମ ସେହି ସ୍ଥାନେ
ଅଛନ୍ତି ଜାଣ ଅନୁମାନେ ।
ଯାହା ହୋଇଛି ଯାହା ହେବ,
ସକଳ ମୂଳ ସେହି ଦେବ ।
ହୁଅନ୍ତି ସେହି ଅମରତ୍ୱ,
ଏ କଥା ହେବ ଅବଗତ ।
ଅନ୍ନରେ ଯା ହୁଏ ବର୍ଦ୍ଧିତ,
ସେ ମଧ୍ୟ ତାହାଙ୍କ ଆଶ୍ରିତ ।

ସର୍ବତ୍ର ଯାହାଙ୍କ ବଦନ,
ସର୍ବତ୍ର ଯାହାଙ୍କ ନୟନ ।
କର ଚରଣ କର୍ଣ୍ଣ ଅବ,
ସର୍ବତ୍ର ରହିଛି ଅଚ୍ଛାଦ ।
ଅଟନ୍ତି ସକଳବ୍ୟାପକ,
ଏ ବିଶ୍ୱବ୍ରହ୍ମାଣ୍ଡଚାଳକ ।
ଇନ୍ଦ୍ରିୟ ଶକ୍ତିପ୍ରକାଶକ,
ସକଳ ଅଲୋକ ଅଲୋକ ।
ସକଳ ଇନ୍ଦ୍ରିୟବର୍ଜ୍ଜିତ,
ସକଳ ଆହାଙ୍କ ଆଶ୍ରିତ ।
ଜଗତେ ବ୍ରହ୍ମବାଦଗଣ,
କରନ୍ତି ତାହାଙ୍କୁ ଦର୍ଶନ ।
ସ୍ଥାବର ଜଙ୍ଗମ ସମସ୍ତ,
ଅଟନ୍ତି ଆହାଙ୍କ ଅୟତ୍ତ ।
କରନ୍ତି ଅବଦ୍ୟାକୁ ଧ୍ୱଂସ,
ଏଥିଲୁ ତାଙ୍କ ନାମ ହଂସ ।
ଏହି ଯେ ନବଦ୍ୱାର ପୁରୀ,
ତହିଁ ମଧ୍ୟରେ ଛନ୍ତି ପୂର ।
ପୁରୀ ଅଟଇ ଏହି ଦେହ,
ଯୁଗଳନେତ୍ର, କର୍ଣ୍ଣଦ୍ୱୟ,
ନାସା, ଚରଣ, ହସ୍ତ, ପାୟୁ,
ଉପସ୍ଥ, ମୁଖ ଅଟେ ଆଉ ;
ଏହି ଅଟଇ ନବ ଦ୍ୱାର,
ଶରୀରରୂପ ଅଟେ ଘର ।
ଏହି ଦେହରେ ହୋଇ ଦେହୀ,
କରନ୍ତି ନାନା ଭୋଗ ରହି ।
ସେ ପରମାତ୍ମା ବେଗବାନ,
ନାହିଁଟି ହସ୍ତପାଦମାନ ।
ନାହିଁଟି ତାହାଙ୍କ ନୟନ,
ସମସ୍ତ କରନ୍ତି ଦର୍ଶନ ।
ନୋହି ସେ ମଧ୍ୟ କର୍ଣ୍ଣବନ୍ତ,
ଶ୍ରବଣ କରନ୍ତି ସମସ୍ତ ।
ଜ୍ଞେୟ ବିଷୟ ଜଣା ତାଙ୍କୁ,
ମାତ୍ର ନ ଜାଣେ କେହି ତାଙ୍କୁ ।

ସକଳ ଘଟେ ବିଦ୍ୟମାନ,
ଏ କଥା ଜାଣ ଜ୍ଞାନବାନ ।
ଏପରି ବ୍ରହ୍ମବାଦଗଣେ
ଭାଳନ୍ତି ତାଙ୍କୁ ମନେ ମନେ ।
ହେ ଆତ୍ମା ସୂକ୍ଷ୍ମ ସୂକ୍ଷ୍ମତର,
ମହତଠାରୁ ମହତ୍ତର ।
ବ୍ରହ୍ମାଣ୍ଡ ପ୍ରାଣିଙ୍କ ହୃଦୟେ
ଅଛନ୍ତି ସକଳ ସମୟେ ।
ସାଧକେ ଈଶ୍ୱର ପ୍ରସାଦେ
ଜାଣନ୍ତି ତାଙ୍କୁ ଅପ୍ରମାଦେ ।
ତାହାଙ୍କ ମହିମା ଦର୍ଶନ
କରନ୍ତି ବ୍ରହ୍ମବାଦଗଣ ।
ଅଜର, ପୁରାଣ, ଅନନ୍ତ,
ସର୍ବାତ୍ମ ପୁଣି ସର୍ବଗତ ।
ଯ୍ୟାପି ଅଛନ୍ତି ସର୍ବ ସ୍ଥାନେ,
ଅନନ୍ତ ଆକାଶ ସମାନେ ।
ଜ୍ଞାନଙ୍କୁ ବ୍ରହ୍ମବାଦଗଣ
ବୋଲନ୍ତି ସକଳ କାରଣ ।
ଏଥିଲୁ ଜ୍ଞାନଙ୍କୁ ସେମାନେ
ଭକ୍ତି କରନ୍ତି ସାବଧାନେ ।
ଇତି ତୃତୀୟ ଅଧ୍ୟାୟ ।

---

ଚତୁର୍ଥ ଅଧ୍ୟାୟ ।

ଆତ୍ମଶକ୍ତିରେ ଇଚ୍ଛାମୟ
ସୃଜିଲେ ସକଳ ବିଷୟ ।
ଅନ୍ତ କାଳରେ ଏ ସମସ୍ତ
ହେବ ତାଠାରେ ଉପଗତ ।
ହୋଇ ସେ ଦେବ କୃପାବାନ,
କରନ୍ତୁ ଶୁଭବୁଦ୍ଧି ଦାନ ।
ସେ ଦେବ ଅଗ୍ନି, ସେ ଆଦିତ୍ୟ,
ବାୟୁ, ଚନ୍ଦ୍ରମା ଦୀପ୍ତିମନ୍ତ ।
ନକ୍ଷତ୍ରାବଳ ସେହି ବ୍ରହ୍ମ,
ସେ ପ୍ରଜାପତି ପରମାତ୍ମ ।
ତୁମ୍ଭେ ପୁରୁଷ ତୁମ୍ଭେ ନାରୀ,
ତୁମ୍ଭେହିଁ କୁମାର କୁମାରୀ ।

ତୁମ୍ଭେହିଁ ହୋଇ ଜରଗ୍ରସ୍ତ,
ଚଳ ଯେ ହୋଇ ଦଣ୍ଡହସ୍ତ ।
ବିଶ୍ୱତୋମୁଖ ସନାତନ,
କର ଯେ ଜନମଗ୍ରହଣ ।
ନୀଳ ପତଙ୍ଗ ଅଟ ତୁମ୍ଭେ,
ବ୍ୟାପି ରହିଛ ବିଶ୍ୱ ଭାବେ ।
ତୁମ୍ଭେହିଁ ମେଘ, ଋତୁ, ସିନ୍ଧୁ,
ବିଶ୍ୱଜନଙ୍କ ଅଟ ବନ୍ଧୁ ।
ଅନାଦି ସ୍ୱରୂପରେ ତୁମ୍ଭେ
ବ୍ୟାପି ରହିଛ ବିଶ୍ୱଭବେ ।
ବ୍ରହ୍ମଙ୍କ ଅଙ୍କାରେ ଭୁବନ
ସମସ୍ତ ହୋଇଛି ଉତ୍ପନ୍ନ ।
ଲୋହିତ ଶୁକ୍ଳ କୃଷ୍ଣବର୍ଣ୍ଣି,
ଅନଳ ଜଳ ଅବା ଅନ୍ନ ।
ତ୍ରିଗୁଣ ରଜ ତମ ସତ୍ତ୍ୱ,
ଯହିଁ ଅଛଇ ଏ ସମସ୍ତ ।
ବହୁ ପ୍ରଜାର ଉତ୍ପାଦକା,
ଅଜା ନାମରେ ପ୍ରକାଶିକା ।
ତାହାର ନାମ ଯେ ପ୍ରକୃତି,
ଅଜ ଯେ ଆତ୍ମାର ଆକୃତି ।
ଅଜ ଯେ ସେବକ ଭାବରେ,
ଅଜାକୁ ନିତ୍ୟ ସେବା କରେ ।
ଅନେକ ଆତ୍ମା ମହାଭାଗ,
ଅଜାକୁ ନିତ୍ୟ କରେ ତ୍ୟାଗ ।
ଦୁଇଟି ପକ୍ଷୀ ଏକ ବୃକ୍ଷେ,
ବସିଣ ଅଛନ୍ତି ପ୍ରତ୍ୟକ୍ଷେ ।
ଗୋଟିଏ ପକ୍ଷୀ ଭୁଞ୍ଜେ ଫଳ,
ଅନେକ ଦେଖଇ କେବଳ ।
ପୁରୁଷ ଜୀବ ଏ ଦେହରେ
ନିମଗ୍ନ ଥାଏ ଯେ ଶୋକରେ ।
ସାଧକମାନଙ୍କ ଈଶ୍ୱରେ
ଦେଖିଲେ ରହେ ଆନନ୍ଦରେ ।
ଆକାଶକଳ୍ପ ଶ୍ରେଷ୍ଠତମ,
ଅଟନ୍ତି ପୁରୁଷ ପରମ ।

ବ୍ରହ୍ମାଣ୍ଡ ଦେବତାନକରେ
ଅଛନ୍ତି ତାଙ୍କ ଆଶ୍ରୟରେ ।
ତାହାଙ୍କୁ ଯେ ଲୋକ ନ ଜାଣେ,
କି କାର୍ଯ୍ୟ ଋକ ମନ୍ତ୍ର ଜ୍ଞାନେ ।
ଜାଣେ ଯେ ତାହାଙ୍କ ବୃତ୍ତାନ୍ତ,
ସେ ଲୋକ ହେବ ଯେ କୃତାର୍ଥ ।
ଘୃତାଦି ଯୋଗରେ ସମ୍ପାଦ୍ୟ
କ୍ରତୁ ଏବଂ ବେଦଯଜ୍ଞ ଆଦ୍ୟ ।
ବୃହତ ଯାଗ ସୋମରସେ
କ୍ରତୁଏ, ଏ କଥା ବେଦେ ଘୋଷେ ।
ଯାହା ହୋଇଛି ଯାହା ହେବ,
ତାହାର ନାମ ବ୍ରତଦେବ ।
ଅବଦ୍ଧ ଜୀବ ଯେ ମାୟାରେ,
ଏ ସବୁ କାର୍ଯ୍ୟ କରିବାରେ ।
ମାୟାକୁ ଜାଣିବ ପ୍ରକୃତି,
ମାୟୀ ଅଟନ୍ତି ବିଶ୍ୱପତି ।
ସେହି ଯେ ମାୟିଙ୍କ ଆବୃତ
ହୋଇଛି ସମସ୍ତ ଜଗତ ।
ଯେଉଁ ଦେବତା ଅଦ୍ୱିତୀୟ,
ବିଶ୍ୱବ୍ରହ୍ମାଣ୍ଡବରଣୀୟ ।
ତାଙ୍କଠୁଁ ଜନ୍ମିଛି ଭୁବନ,
ପ୍ରଳୟେ କରିବ ଗମନ ।
ନିୟନ୍ତା ସେହି ବରପ୍ରଦ,
ସାଧକ ଜାଣି ଲଭ ମୋଦ ।
ବିଶ୍ୱ ସଂସାର ପାରସେତୁ,
ଦେବତା ନିତ୍ୟଶକ୍ତି ହେତୁ ।
ହିରଣ୍ୟଗର୍ଭ ରୁଦ୍ରମୂର୍ତ୍ତି,
ଜାଣି ତାହାଙ୍କୁ ଲଭ ମୁକ୍ତି ।
ଆତ୍ମା ଧାମରେ ଦେବେ ଉକ୍ତ,
କରନ୍ତୁ ଶୁଭବୁଦ୍ଧି ମୁକ୍ତ ।
ଦେବତାଗଣ ଅଧିପତି,
ଯାହାଙ୍କ ଆଶ୍ରିତ ନିୟତି ।
ସକଳେ ଯାହାଙ୍କ ଆଶ୍ରିତ,
ଏ ବିଶ୍ୱ ବ୍ରହ୍ମାଣ୍ଡବନ୍ଦିତ ।

ପ୍ରାଣୀ ଦ୍ୱିପଦ ଚତୁଷ୍ପଦ,
ଅଟନ୍ତି ସମସ୍ତ ପ୍ରାଣଦ ।
'ରୁ' ନାମେ ଦେବତା ପ୍ରଧାନ,
ସକଳେ କର ତାଙ୍କୁ ଧ୍ୟାନ ।
ସୂକ୍ଷ୍ମରୁ ସେହୁ ସୂକ୍ଷ୍ମତର,
ଅବିଦ୍ୟା ବିଦ୍ୟାର ଆକର ।
ଅନେକ ରୂପ ବିଶ୍ୱସ୍ରଷ୍ଟା,
ବିଶ୍ୱର ପ୍ରତି ସ୍ଥାନ ଦ୍ରଷ୍ଟା ।
ତାହାଙ୍କୁ ଜାଣିଣ ଗୋଚରେ
ସାଧକ ଶାନ୍ତି ଲାଭ କରେ ।
ସେ ପ୍ରଭୁ ଭୁବନରକ୍ଷକ,
ସମସ୍ତ ବିଶ୍ୱର ପାଳକ ।
ଅଟନ୍ତି ସର୍ବଭୂତପ୍ରାଣ,
ଗୂଢ଼ ରୂପରେ ବର୍ତ୍ତମାନ ।
ବ୍ରହ୍ମର୍ଷି ଦେବତା ସକଳେ
ଅଛନ୍ତି ତାଙ୍କ କୃପାବଳେ ।
ତାହାଙ୍କୁ ଜାଣି ଜ୍ଞାନୀ ଜନ
ଛେଦନ୍ତି ମରଣବନ୍ଧନ ।
ଘୃତ ଉପରେ ମଣ୍ଡ ପରି
ଅଛନ୍ତି ସୂକ୍ଷ୍ମରୂପ ଧରି ।
ସର୍ବ ଭୂତରେ ବିଦ୍ୟମାନ
ଅଛନ୍ତି ପରବ୍ରହ୍ମ ଜାଣ ।
ମଙ୍ଗଳସ୍ୱରୂପ ଈଶ୍ୱର
ବ୍ୟାପିଅଛନ୍ତି ଚରାଚର ।
ତାହାଙ୍କୁ ଜାଣେ ଯେଉଁ ଭକ୍ତ,
ମୃତ୍ୟୁବନ୍ଧନୁ ହୁଏ ମୁକ୍ତ ।
ସେ ବିଶ୍ୱକର୍ମା ଦେବଦେବ
ହେବେ ହୃଦୟେ ଆବିର୍ଭାବ ।
ହୃଦୟ ସଂଶୟରହିତ
ହେଲେ ସେ ହେବେ ପ୍ରକାଶିତ ।
ତାହାଙ୍କୁ ଜାଣେ ଯେଉଁ ନର,
ନିଶ୍ଚୟ ହେବ ସେ ଅମର ।
ହେଲେ ସେ ଜ୍ଞାନର ପ୍ରକାଶ,
ଦିବା ରଜନୀ ଯାଏ ନାଶ ।
ନ ଥାଏ ସତ ବା ଅସତ,
କେବଳ ଥାନ୍ତି ସେ ଜାଗ୍ରତ ।
ବ୍ରହ୍ମରୁ ପ୍ରଜ୍ଞା ପୁରାତନୀ
ପ୍ରକାଶ ଏହା ଥିବ ମଣି ।
ଊର୍ଦ୍ଧ୍ୱ ବା ନିମ୍ନ ବା ମଧ୍ୟରେ,
ନ ପାନ୍ତି ତାଙ୍କୁ ଧରଣରେ ।
ଅସୀମ ତାହାଙ୍କ ମହିମା,
ତାହାଙ୍କ ନାହିଁଟି ପ୍ରତିମା ।
ଦର୍ଶନଯୋଗ୍ୟ ପ୍ରଦେଶରେ
ଦେଖନ୍ତି ନାହିଁ ତାଙ୍କୁ ନରେ ।
ନ ଥାଏ ଆକାର ସାଦୃଶ୍ୟ,
କେହରେ ନ ହୁଅନ୍ତି ଦୃଶ୍ୟ ।
କେବଳ ହୃଦୟ ମନରେ
ଦେଖିବ ତାଙ୍କୁ ପ୍ରତ୍ୟକ୍ଷରେ ।
ହେ ପରବ୍ରହ୍ମ ବିଶ୍ୱଭାବ,
ତୁମ୍ଭେହିଁ ଅଟ ସ୍ୱେ ଅଜାତ ।
ସଂସାରଭୀତ ଲୋକଗଣ
ନିଅନ୍ତି ତୁମ୍ଭରେ ଶରଣ ।
ଅନାଦିଜନକ ଚିନ୍ମୟ,
ତୁମ୍ଭ ସ୍ୱରୂପ ଦୟାମୟ ।
ସେରୂପେ ଅହେ ବିଶ୍ୱମ୍ଭର,
ସର୍ବଦା ମୋତେ ରକ୍ଷା କର ।
ମୋର ଜୀବନ, ପୁତ୍ର, ନାତି,
ଅଶ୍ୱାଦି ଗୋଧନ ସମ୍ପତ୍ତି ।
ଆଉର ଯେତେ ଦାସୀଦାସ,
ତାହାଙ୍କୁ ନ କର ବିନାଶ ।
ହୋମର ଯୋଗ୍ୟ ଦ୍ରବ୍ୟମାନ
ଯୋଜଣ କରୁଛି ଅଜ୍ଞାନ ।

ଇତି ଚତୁର୍ଥ ଅଧ୍ୟାୟ ।

---

## ପଞ୍ଚମ ଅଧ୍ୟାୟ ।

ସେ ବ୍ରହ୍ମ ଅକ୍ଷର ଅନନ୍ତ,
ବିଦ୍ୟା ଅବିଦ୍ୟାଦି ଯାବନ୍ତ

ତାହାଁରେ ରହିଛି ନିହିତ,
ଏ କଥା ବେଦ ଯେ ବଦତି ।
ଅବିଦ୍ୟା ସ୍ୱରୂପକୁ ମଣ
ସଂସାର ଗତିର କାରଣ ।
ବିଦ୍ୟା ଅଟଇ ମୋକ୍ଷହେତୁ,
ସଂସାରସିନ୍ଧୁ ପାର ସେତୁ ।
ଯେ ପରମାତ୍ମା ସନାତନ
ପ୍ରତ୍ୟେକ ଭୂତର କାରଣ ।
ସମସ୍ତ ଜଗ ଅଧିଷ୍ଠାତା,
ଅତ୍ରେ ପ୍ରସୂତ ସର୍ବଜ୍ଞାତା ।
ସେ ଦେବ ଜାଲକୁ ବିସ୍ତାର
କରନ୍ତି ପୁଣି ପ୍ରତ୍ୟାହାର ।
ମରୀଚ୍ୟାଦି ଲୋକପାଳେ
ସୃଜନ କଲେ ପୂର୍ବକାଳେ ।
ଯେମନ୍ତ ସୂର୍ଯ୍ୟର କିରଣ
ବ୍ୟାପଇ ସମସ୍ତ ଭୁବନ ।
ଉର୍ଦ୍ଧ୍ୱ ବା ଅଧ ବା ମଧ୍ୟରେ
ପ୍ରକାଶ ପାଏ କିରଣରେ;
ତେସନେ ସେ ପରମାତ୍ମାଙ୍କ
ସର୍ବତ୍ର ଥାନ୍ତି ବିଦ୍ୟମାନ ।
କାରଣ ସ୍ୱଭାବ ସହିତ
କରନ୍ତି ସର୍ବ ନିୟମିତ ।
ସେ ଦେବ ବିଶ୍ୱର କାରଣ,
ସର୍ବ କରନ୍ତି ନିଷ୍ପାଦନ ।
ପକ୍ୱତାପ୍ରାପ୍ତି ଯୋଗ୍ୟ ଦ୍ରବ୍ୟ
କରନ୍ତି ପରିପାକ ସର୍ବ,
ଏକାକୀ ସମସ୍ତ ଭୁବନ
କରନ୍ତି ନିୟତ ପାଳନ ।
ସତ୍ତ୍ୱ ଇତ୍ୟାଦି ଗୁଣଗ୍ରାମେ,
କରନ୍ତି ଯୁକ୍ତ ନିଜ କର୍ମେ ।
ଯେ ବିଦ୍ୟା ବେଦର ଅଗୀତ
ଉପନିଷଦରେ କଥିତ,
ସେ ବିଦ୍ୟା ବେଦର ଆକାର,
ବ୍ରହ୍ମା ଜାଣନ୍ତି ସମାଚାର ।

ରୁଦ୍ର ପ୍ରଭୃତି ଦେବଗଣ,
ବାମଦେବାଦି ତପୋଧନ,
ଜାଣି ସେ ପରମାତ୍ମା ତତ୍ତ୍ୱ,
ଲଭିଅଛନ୍ତି ଅମରତ୍ୱ ।
ସତ୍ତ୍ୱ ଇତ୍ୟାଦି ଗୁଣତ୍ରୟ,
ସମ୍ପଦ ବିପଦ ନିଚୟ,
କରଣ ସର୍ବ ନିୟମିତ,
କଲେ ଜଗତେ ସଞ୍ଚାରିତ ।
ଧର୍ମ, ଅଧର୍ମ, ଜ୍ଞାନ, ଧନ,
ତ୍ରିମାର୍ଗ ମଧ୍ୟେ ଥିବ ଯେନ,
ନିଜ କର୍ମରେ ଜୀବଗଣି
କରୁଅଛନ୍ତି ସଞ୍ଚରଣ ।
ସଗୁଣ ଆତ୍ମା ଜ୍ୟୋତିମନ୍ତ,
ହୃଦର କିରଣ ଯେମନ୍ତ,
ସଙ୍କଳ୍ପ ବୁଦ୍ଧି ଅହଙ୍କାର,
ତା ଠନ୍ତୁଁ ସକଳ ପ୍ରଚାର ।
ମୋଟେଇକ ଶାଣିତର କୁଣ,
ତାତହିଁ କଳ୍ପିଅଛି ପୁଣ,
କେଶାଗ୍ର ଶତତମ ଭାଗ
ସମାନେ ସୂକ୍ଷ୍ମ ଜୀବବର୍ଗ ।
ଅଥଚ ପ୍ରକାଶେ ମହିମା,
ତା ଅଭିଳାଷ ନାହିଁ ସୀମା ।
ଜୀବାତ୍ମା କହନ୍ତି ଯେ ତାହା,
ପୁରୁଷ, ନପୁଂସକ ଯାହା,
କରଇ ଯେ ଦେହ ଧାରଣ,
କରଇ ସେ ନାମ ଗ୍ରହଣ,
ଜୀବାତ୍ମା ବାସ କରି ଦେହେ,
ସଙ୍କଳ୍ପ ସ୍ପର୍ଶ ଦୃଷ୍ଟିମୋହେ
କ୍ରମଶଃ ଯହିଁ ପାଏ ବୃଦ୍ଧି,
ଜଗତେ ଲଭଇ ପ୍ରସିଦ୍ଧି ।
ଆପଣା କର୍ମ ଅନୁସାରେ
ଭ୍ରମଣ କରେ ଏ ସଂସାରେ ।
ଅନ୍ୟ ଜନରେ ବିଦ୍ୟମାନ
ହୁଏ ବିଶେଷେ କର ଜ୍ଞାନ ।

ଦେଖି ଯେ ଗୁଣ ଅନୁସାରେ,
ପ୍ରାକୃତ ଜନମ ଯଥାରେ,
ସ୍ଥୂଳ ଓ ସୂକ୍ଷ୍ମ ନାନାରୂପେ
ଜଗତେ ବ୍ୟାପିଛି ସ୍ୱରୂପେ ।
ଯାହାଙ୍କ ନାମ ଅଶରୀର,
ବ୍ରହ୍ମାଣ୍ଡେ ରହିଅଛି ସ୍ଥିର,
ଏ ସୃଷ୍ଟି ଲୟର କାରଣ,
ମଙ୍ଗଳରୂପ ସନାତନ ।
ପ୍ରାଣାଦି ଦେହର ସମତା,
ଅଟନ୍ତି ସର୍ବ ସୃଷ୍ଟିକର୍ତ୍ତା ।
ତାହାଙ୍କୁ ଜାଣେ ଯେଉଁ ଲୋକ,
ବିଗତ ହୁଏ ତାର ଶୋକ ।

ଇତି ପଞ୍ଚମ ଅଧ୍ୟାୟ ।

---

## ଷଷ୍ଠ ଅଧ୍ୟାୟ ।

ଥୋକେ ବିଦ୍ୱାନ ହୋଇ ଭ୍ରାନ୍ତ
ବୋଲନ୍ତି ସ୍ୱଭାବ ଯାବନ୍ତ ।
ଅଥବା କାଳ ସନାତନ
ଅଟଇ ବିଶ୍ୱର କାରଣ ।
ମାତ୍ରକ ପରମ ଈଶ୍ୱର
ଅଟନ୍ତି ସକଳ ଆକର ।
ତାଙ୍କ ମହିମା ବିଦ୍ୟମାନ
ଅଛଇ ସର୍ବସ୍ଥାନେ ଜାଣ ।
ସେହି ମହିମା ବଳେ ବିଶ୍ୱ
ଭ୍ରମଣ କରୁଛି କ୍ରମଶ ।
କାଳର କର୍ତ୍ତା ସେ ଈଶ୍ୱର,
ସକଳ ତାହାଙ୍କୁ ଗୋଚର ।
ସେ ପ୍ରଭୁ ପୁଣି ସର୍ବବିଦ,
ବିଶ୍ୱ ମଧ୍ୟରେ ସ୍ୱୟଂସିଦ୍ଧ ।
ପୃଥିବୀ, ଜଳ, ତେଜ, ବାୟୁ,
ଆକାଶ ପଞ୍ଚଭୂତ ଆଉ ।
ସମସ୍ତେ ତାଙ୍କ ନିୟମରେ
ନିଯୁକ୍ତ ଛନ୍ତି ସ୍ୱକାର୍ଯ୍ୟରେ ।

ପୃଥିବୀ, ଜଳ, ଅଗ୍ନି, ବାୟୁ,
ଆକାଶ, ମନ ବୁଦ୍ଧି ଆଉ ।
ଏ ସପ୍ତ ପୁଣି ଅହଙ୍କାର,
ଏ ଅଷ୍ଟ ପ୍ରକୃତି ଆକାର ।
ପ୍ରକୃତିଗଣେ ବିଶ୍ୱକାର୍ଯ୍ୟେ
ନିଯୁକ୍ତ ହେଲେ ବିଶ୍ୱ ସଜ୍ୟେ ।
ସୃଜନ କରି ପ୍ରାଣିଗଣେ,
ସ୍ୱତନ୍ତ୍ରେ ଥାଆନ୍ତି ଆପଣେ ।
ହେଲେ ପ୍ରକୃତି କର୍ମ କ୍ଷୟ,
ସମସ୍ତ ହୁଏଟି ବିଲୟ ।
ସମସ୍ତ ଆଦି ସନାତନ,
ସମସ୍ତ କାରଣକାରଣ ।
ପୁଣି ସେ ତ୍ରିକାଳଅତୀତ,
ସମସ୍ତ କଳାବିରହିତ ।
ତାହାଙ୍କୁ କରି ଉପାସନା
ମୁକ୍ତି ଲଭନ୍ତି ମହାମନା ।
ଯେ ପ୍ରଭୁ ଦେଶକାଳାତୀତ,
ସମସ୍ତ ବିଷୟରହିତ ।
ତାଙ୍କ ଆଜ୍ଞାରେ ବିଶ୍ୱମାନ
ନିତ୍ୟ ହେଉଛି ଭ୍ରାମ୍ୟମାନ ।
ସେହି ଧର୍ମର ଅଧିପତି,
ଦିଅନ୍ତି ଐଶ୍ୱର୍ଯ୍ୟ ସମ୍ପତ୍ତି ।
ଅମୃତସ୍ୱରୂପ ଈଶ୍ୱରେ
ତାହାଙ୍କୁ ଭଜି ହୃଦୟରେ,
ଯେତେ ବିଜ୍ଞାନଉପାସକ
ହୋଇଣ ଥାନ୍ତି ଗତଶୋକ ।
ଯେତେକ ଅଛନ୍ତି ଈଶ୍ୱର,
ସେହି ପରମ ମହେଶ୍ୱର ।
ଯେତେକ ଅଛନ୍ତି ଦେବତା,
ତହିଁରେ ପରମଦେବତା ।
ପ୍ରଭୁମାନଙ୍କ ମଧ୍ୟେ ପ୍ରଭୁ,
ହିରଣ୍ୟଗର୍ଭ ଶ୍ରେଷ୍ଠ ବିଭୁ ।
ଭୁବନେଶ୍ୱର ପୂର୍ଣ୍ଣ ଜ୍ଞାନେ,
ତାହାଙ୍କୁ ଜାଣୁ ଆମ୍ଭେମାନେ ।

ବିରାଜନ୍ତି ସର୍ବଠାଇଁ,
ଦେହ ଇନ୍ଦ୍ରିୟ ତାଙ୍କ ନାହିଁ ।
ସମାନ କେହି ତାହାଙ୍କର,
ଅବା ତାଠାରୁ ଶ୍ରେଷ୍ଠତର,
ଏ ବିଶ୍ୱ ବ୍ରହ୍ମାଣ୍ଡ ମଧ୍ୟରେ
ନାହିଁଟି ଜାଣିବ ମନରେ ।
ତାଙ୍କ ବିଚିତ୍ର ପରାଶକ୍ତି
ବେଦରୁ ହେବ ଅବଗତ ।
ଜଗତେ ପତି ବା ନିୟନ୍ତା,
ତାହାଙ୍କ ନାହିଁଟି ଜଣନ୍ତା ।
ପ୍ରତିମା ତାଙ୍କ ସମାନରେ
କେହିହିଁ ନାହିଁ ଜଗତରେ ।
ତାହାଙ୍କ ନାହିଁ ଜନୟିତା,
ସ୍ୱାମୀ ବା ଅନ୍ୟରୂପ ପିତା ।
ଇନ୍ଦ୍ରିୟେ ଯେ ଦେବେ ଅନନ୍ତ,
ସମସ୍ତ ସେହି ଅଧିପତି ।
ଊର୍ଣ୍ଣନାଭର ସୂତ୍ର ପ୍ରାୟେ,
ବିଶ୍ୱ ବ୍ରହ୍ମାଣ୍ଡ ସମୁଦାୟେ
ହୋଇଅଛନ୍ତି ଆଚ୍ଛାଦିତ,
ତାହାଙ୍କୁ ହେଉନ୍ତୁ ବନ୍ଦିତ ।
ବ୍ରହ୍ମରେ ପ୍ରବେଶ ବିଧାନ
କରନ୍ତୁ ସେହି ଭଗବାନ ।
ସର୍ବ ଭୂତରେ ଗୂଢ଼ରୂପେ
ଅନନ୍ତ ଆତ୍ମାର ସ୍ୱରୂପେ ।
ଅଟନ୍ତି ସର୍ବକର୍ମାଧ୍ୟକ୍ଷ,
ତାହାଙ୍କୁ ଜାଣିବ ପ୍ରତ୍ୟକ୍ଷ ।
ସେ ଦେବ ସର୍ବ ଭୂତସ୍ଥିତ,
ସତ୍ତ୍ୱାଦି ଗୁଣର ଅତୀତ ।
ସକଳ ସାକ୍ଷୀ ଚେତୟିତା,
ସକଳ ଭୂତଜନୟିତା ।
ସେ ପ୍ରଭୁ ଏକ ବୀଜ ସାର,
କରନ୍ତି ବିବିଧ ପ୍ରକାର ।
ତାହାଙ୍କୁ ଜାଣେ ଯେଉଁ ଜ୍ଞାନୀ,
ପାବେ ସେ ଆତ୍ମସୁଖ ଜାଣି ।

ନିତ୍ୟ ମଧ୍ୟରେ ଯେବା ନିତ୍ୟ,
ସତ୍ୟ ମଧ୍ୟରେ ଯେବା ସତ୍ୟ,
ଚେତନ ମଧ୍ୟେ ଯେ ଚେତନ,
ଜୀବ ମଧ୍ୟରେ ଯେ ଜୀବନ,
ଏକାକୀ ସେହି ଭଗବାନ
କରନ୍ତି ସକଳ ବିଧାନ ।
କାରଣରୂପୀ ସେ ଦେବତା,
ଜାଣନ୍ତି ତାଙ୍କୁ ଶୁଦ୍ଧଚେତା ।
ସାଂଖ୍ୟଯୋଗରେ ପ୍ରାପ୍ୟ ଦେବ,
ଏରୂପ ତାଙ୍କୁ ଜ୍ଞାତ ହେବ ।
ତାହାଙ୍କୁ ଜାଣି ଜ୍ଞାନୀଗଣ,
କରନ୍ତି ବନ୍ଧନ ଛେଦନ ।
ବସ୍ତୁତତ୍ତ୍ୱର ଯେ ବିଚାର,
ଜାଣିବ ତାହା ସାଂଖ୍ୟ ସାର,
ସାଧନ ଚିତ୍ତସମାଧାନ,
ତାହାକୁ କହ ଯୋଗ ଜ୍ଞାନ ।
ସୂର୍ଯ୍ୟ ଆପଣା କିରଣରେ
ସେ ବ୍ରହ୍ମେ ପ୍ରକାଶ ନ କରେ ।
ଚନ୍ଦ୍ର ବା ତାରକା ସମସ୍ତ,
ପ୍ରକାଶେ ତାଙ୍କୁ ଅସମର୍ଥ ।
ଏପର ଅଗ୍ନି ଅଛି କାହିଁ
ତାହାଙ୍କୁ ପ୍ରକାଶିବା ପାଇଁ ?
ଯେତେକ ଦୀପ୍ତିମନ୍ତ ଦ୍ରବ୍ୟ,
ତା ଲହୁଁ ପ୍ରକାଶିତ ସର୍ବ ।
କରନ୍ତେ ଅବିଦ୍ୟାକୁ ଧ୍ୱଂସ,
ତାହାଙ୍କ ନାମ ଅଟେ ହଂସ ।
ସାଧକ ଜାଣି ପରବ୍ରହ୍ମ
କରନ୍ତି ମୃତ୍ୟୁ ଅତିକ୍ରମ ।
ଲଭିବା ପାଇଁ ଅମୃତତ୍ୱ
ନାହିଁଟି ଜ୍ଞାନ ଅନ୍ୟ ପଥ ।
ସେ ପରବ୍ରହ୍ମ ବିଶ୍ୱକୃତ,
ସ୍ୱୟମ୍ଭୂ ପୁଣି ବିଶ୍ୱବିତ,
କାଳର କର୍ତ୍ତା ସର୍ବବିତ,
କ୍ଷେତ୍ରଜ୍ଞ ପୁଣି ସର୍ବଜ୍ଞତ,

ସକଳ ଗୁଣର ନିୟନ୍ତା,
ଶରୀରଜ୍ଞାତା କାଳକର୍ତ୍ତା,
ସମସ୍ତ ସ୍ଥିତ ସେ ବନ୍ଧନ,
ସମସ୍ତ ମୋକ୍ଷର କାରଣ,
ବିଶ୍ୱସ୍ୱରୂପ ବିଶ୍ୱମୟ,
ଅମୃତମୟ ଜ୍ୟୋତିର୍ମୟ,
ସର୍ବଭୁବନ-ପାଳୟିତା,
ବିଶ୍ୱରେ ଏକମାତ୍ର ପିତା,
ଜଗତ କରନ୍ତି ଶାସନ,
ତା ବିନା ନାହିଁଟି କାରଣ ।
ସେ ବିଶ୍ୱକର୍ତ୍ତା ପରବ୍ରହ୍ମ
ବ୍ରହ୍ମାଙ୍କୁ ସୃଜିଲେ ପ୍ରଥମ ।
ବେଦସମୂହ ତାଙ୍କୁ ଦାନ
କଲେ ସେ ହୋଇ କୃପାବାନ ।
ସେ ଆତ୍ମଜ୍ଞାନପ୍ରକାଶକେ
ଶରଣ ନେଉନ୍ତୁ ସେବକେ ।
ନିଷ୍କଳ ଶାନ୍ତ ସନାତନ,
ନିର୍ଦ୍ଦୋଷ ବ୍ରହ୍ମ ନିରଞ୍ଜନ,
ସେ ପ୍ରଭୁ ଅମୃତର ସେତୁ,
ଶରଣ ନିଅ ପାରହେତୁ ।

ନ ହେଲେ ପରବ୍ରହ୍ମଜ୍ଞାନ,
ନ ହେବ ଦୁଃଖ ଅବସାନ ।
ଶ୍ୱେତାଶ୍ୱତର ମହାଜ୍ଞାନୀ,
ତପସ୍ୟା ବଳେ ଥିଲେ ଜାଣି ।
ସେ ପରବ୍ରହ୍ମଙ୍କର ତତ୍ତ୍ୱ,
ହେବାକୁ ଲୋକେ ଅବଗତ,
ତେଣୁ ଆଶ୍ରମବାସିଗଣେ
ବୋଇଲେ ଏକଥା କୀର୍ତ୍ତନେ ।
ପୂର୍ବ କଳ୍ପରେ ପ୍ରକାଶିତ,
ବେଦାନ୍ତେ ଯେ ପ୍ରତିପାଦିତ,
ସେ ଗୁହ୍ୟ ବିଦ୍ୟା କଦାଚନେ
ଶିକ୍ଷା ନ ଦେବ ମୂଢ଼ଜନେ ।
ଅଯୋଗ୍ୟ ପୁତ୍ର, ମୂର୍ଖ ଶିଷ୍ୟ,
ତାଙ୍କୁ ନ ଦେବ ଉପଦେଶ ।
ଈଶ୍ୱରେ ଯାର ପରାଭକ୍ତି,
ସେ ଲଭି ପାରିବ ମୁକତି ।
ଏ ବ୍ରହ୍ମବିଦ୍ୟା ତତ୍ତ୍ୱ ସାର,
ଶ୍ରବଣ କର ବାରମ୍ବାର

ଇତି ଷଷ୍ଠ ଅଧ୍ୟାୟ ।
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ଶ୍ରୀ ଫକୀରମୋହନ ସେନାପତି ।

---

## ବିଶୁଦ୍ଧ ଭାଷା ।

(ଉତ୍କଳ ସାହିତ୍ୟ-ସମାଜର ଦ୍ୱିତୀୟ ବର୍ଷର ପ୍ରଥମ ଅଧିବେଶନରେ ପଠିତ ।)

ସଭାପତି ମହାଶୟ ଓ ସଭ୍ୟବୃନ୍ଦ ! ମୁଁ ଯେଉଁ ବିଷୟଟି ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛି, ତାହା ପ୍ରବନ୍ଧ ମଧ୍ୟରେ ପରିଗଣିତ ହେବାର ଯୋଗ୍ୟ ନୁହେଁ। ସମୟ ସମୟରେ ମୁଁ ଯାହା ଭାବିଥିଲି, ତହିଁର ଟିପ୍ପଣୀ ଲେଖି ରଖିଥିଲି । ଏଥିରେ ଗବେଷଣା ବା ଚିନ୍ତାଶୀଳତାର ପରିଚୟ ମିଳିବ ନାହିଁ । ଏହା କେବଳ ଅବତରଣିକା ମାତ୍ର । ଏ ବିଷୟଟି ଉପସ୍ଥାପିତ କରି ଆପଣମାନଙ୍କର ଏ କ୍ଷେତ୍ରରେ ଅନୁଶୀଳନ ପ୍ରାର୍ଥନା କରୁଅଛି ।

ମୋର କେତେକ ପଦ୍ୟ ଓ କାହାଣୀରେ ତୁମେ, ଆମେ, ଗଉଜ, ରଜା, ଲଢେ, ମଢେ, ଦହଚ, କମିଲ, ଉମିତ, ପଠେଇବା, ସପନ ଇତ୍ୟାଦି କେତେଗୁଡ଼ିଏ ଶବ୍ଦ ପ୍ରୟୋଗ ହୋଇଥିବାର ଦେଖି ମୋର ଜଣେ ଶୁଭାକାଂକ୍ଷୀ ଗୁରୁଜନସ୍ଥାନୀୟ ବ୍ୟକ୍ତି ଦିନେ ମତେ କହିଥିଲେ "ଏପରି ଅଶୁଦ୍ଧ ଶବ୍ଦଗୁଡ଼ିଏ ବ୍ୟବହାର କରନ୍ତ କାହିଁକି ? ବାଳକମାନଙ୍କ ନିମନ୍ତେ ଅଭିପ୍ରେତ କାହାଣୀ ବା ନାନାବାୟା ଗୀତରେ ଏପରି ଗୁଡ଼ିଏ ଅପଭ୍ରଷ୍ଟ ଶବ୍ଦ ବ୍ୟବହାର କଲେ ବାଳକାଳକୁ

ବାଳକମାନେ ଏହି ଅଶୁଦ୍ଧଶବ୍ଦଗୁଡ଼ିକ ଶିକ୍ଷା କରିବେ । ଏସବୁ ପୁସ୍ତକଗତ ଭାଷା ନୁହେଁ, ମୁଖପ୍ରଚଳିତ ଭାଷାକୁ ସାହିତ୍ୟରେ ସ୍ଥାନ ଦେବା ଉଚିତ ନୁହେଁ। ଏ ଭାଷାର ବ୍ୟବହାର ନାଟକରେ ମାର୍ଜନୀୟ । କିନ୍ତୁ ଅନ୍ୟ ଲେଖାରେ ଏହା ଆଦୌ ବାଞ୍ଛନୀୟ ନୁହେଁ । ଏ ଶବ୍ଦପ୍ରୟୋଗ ବିଷୟରେ ଗୋଟିଏ ଆଦର୍ଶ ଧରି ଲେଖିବା ଏକାନ୍ତ କର୍ତ୍ତବ୍ୟ। ବର୍ତ୍ତମାନ ଓଡ଼ିଆ ଭାଷା ଗଠନର ସମୟ । ଏ ସମୟରେ ଯେଝା ମନକୁ ଯେ ଗୁଡ଼ାଏ ଅଶୁଦ୍ଧ ଶବ୍ଦ ବ୍ୟବହାର କଲେ ଭାଷାର, ତଥା ସାହିତ୍ୟର ଅମଙ୍ଗଳ ।''

ମୋଦ୍ୱାରା ସଂଗୃହୀତ 'ଉତ୍କଳ-କାହାଣୀ' ୧ମ ଭାଗର ସମାଲୋଚନା ପ୍ରସଙ୍ଗରେ ୧୯୦୧ ମସିହା ଡିସେମ୍ବର ମାସ ୨୧ ତାରିଖ ଉତ୍କଳଦୀପିକାରେ ନିମ୍ନଲିଖିତ ମନ୍ତବ୍ୟ ପ୍ରକାଶିତ ହୋଇଥିଲା:— "ପୁସ୍ତକର ଭାଷା ସରଳ ଏବଂ ହାଟବାଟର ବାଳକମାନେ ସହଜରେ ପଢ଼ି ବୁଝି ପାରିବାର କୌଣସି କଷ୍ଟ ନାହିଁ । ମାତ୍ର ଲେଖକ ଭାଷାକୁ ସମସ୍ତ ବାଳକଙ୍କର ସହଜବୋଧ କରିବାକୁ ଯାଇ ପୁସ୍ତକର ଭାଷାର ଆକାର ଛାଡ଼ି ଶ୍ରେଣୀଲୋକଙ୍କ ପ୍ରଚଳିତ କଥାବାର୍ତ୍ତାର ଭାଷା ସ୍ୱୀକାର କରିଅଛନ୍ତି ତାହା ଆମ୍ଭମାନଙ୍କୁ ଭଲ ଲାଗିଲା ନାହିଁ । କଥା-ଛଳରେ ବାଳକମାନଙ୍କୁ ପ୍ରକୃତଭାଷା ଶିକ୍ଷା ଦେଲେ କି ଏକାର୍ଥରେ ଦୁଇ କ୍ରିୟା ସାଧିତ ହେବାଦ୍ୱାରା ଅଧିକ ଫଳ ଲାଭର ଆଶା ନାହିଁ ? ଲେଖକ, ହଉ, ପିନ, ଛମିତ, ଶୁଖ୍ୟ, ଚେଲଉଣି, ରଜା ଇତ୍ୟାଦି ପୁସ୍ତକର ଅଦ୍ୟପ୍ରାନ୍ତ ବ୍ୟବହାର କରି ତାହାର ଅବୟବକୁ ଦୂଷିତ କରିଅଛନ୍ତି । * * 'ଗଇଁଭ' 'ଗଡ଼' ଏବଂ 'ମଣିଅଁଲା' ଇତ୍ୟାଦି ବ୍ରାହ୍ମଣିଆ କଥାର ମଧ୍ୟ ଅଭାବ ନାହିଁ ।''

ଭାଷାର ଶୁଦ୍ଧତା ଅଶୁଦ୍ଧତା ବିଷୟ ମୁଁ କେତେକ ଦିନ ପୂର୍ବରୁ ପର୍ଯ୍ୟାଲୋଚନା କରି କାହାଣୀ ଏବଂ ନାନାବାୟା ଗୀତରେ ପ୍ରଚଳିତ ଘରେଇ ଭାଷା ବ୍ୟବହାର କରିଥିଲି ଏବଂ ଆଜି ପର୍ଯ୍ୟନ୍ତ ମଧ କରି ଆସୁଅଛି । ମୁଁ ଏ ସମ୍ବନ୍ଧରେ କେତେକ ବିଜ୍ଞ ଓ ବିଦ୍ୱାନ୍ ବ୍ୟକ୍ତିମାନଙ୍କ ସଙ୍ଗେ ପରାମର୍ଶ କରିଥିଲି ଏବଂ କାହାଣୀଗୁଡ଼ିକ ପ୍ରକାଶିତ ହେବା ପରେ କେତେଗୁଡ଼ାଏ ବ୍ୟକ୍ତିଙ୍କଠାରୁ ପତ୍ର ପାଇଥିଲି । ସେମାନେ ମୋ ବ୍ୟବହୃତ ଭାଷା ସପକ୍ଷରେ ମତ ଦେଇଅଛନ୍ତି । ପରେ ପଣ୍ଡିତ ମାକ୍ସମୂଲର୍; ହ୍ୱିଟନୀ, ସେସ ଇତ୍ୟାଦି ପାଶ୍ଚାତ୍ୟ ଭାଷାତତ୍ତ୍ୱବିତ୍ ପଣ୍ଡିତମାନଙ୍କର ଏ ସମ୍ବନ୍ଧୀୟ କେତେକ ମନ୍ତବ୍ୟ ପାଠ କରି ମୋ ଧାରଣା କ୍ରମଶଃ ଦୃଢ଼ୀଭୂତ ହୋଇଅଛି । ମୋ ବ୍ୟବହୃତ ଘରେଇ ଭାଷା ଅଶୁଦ୍ଧ ବା ଦୂଷଣୀୟ ଥିବାର ଉପରୋକ୍ତ ବ୍ୟକ୍ତିମାନଙ୍କର ମତ ନୁହେଁ ।

ବର୍ତ୍ତମାନ ଓଡ଼ିଆ ଭାଷା ଗଠନର କାଳ । ନାନାକାରଣରୁ ଭାଷାରେ ପୁସ୍ତକଗତ ଏବଂ କଥିତ ଭାଷାର ଅତ୍ୟନ୍ତ ବୈଷମ୍ୟ ପରିଲକ୍ଷିତ ହୁଏ । ଏପରି କି ମୁଁ ବାଲ୍ୟକାଳରେ ସ୍ତ୍ରୀମାନଙ୍କଦ୍ୱାରା ଅନୁରୁଦ୍ଧ ହୋଇ କୌଣସି ଓଡ଼ିଆ ଗଦ୍ୟ ପୁସ୍ତକ ସେମାନଙ୍କ ନିକଟରେ ପଢ଼ିବାକୁ ଯାଇ ବାଧ ହୋଇ ପୁସ୍ତକଗତ ଭାଷାକୁ ଯଥାସମ୍ଭବ ଘରେଇ ଭାଷାରେ ପରିବର୍ତ୍ତିତ କରି ପଢ଼ିଅଛି । ଏପରି ନ କଲେ ସ୍ତ୍ରୀମାନେ ଅଧିକାଂଶ ସ୍ଥଳରେ ପୁସ୍ତକଗତ ଭାଷା ବୁଝିବା ବିଷୟରେ ଅପାରଗ ହେଉଥିଲେ । ବର୍ତ୍ତମାନ ଗଦ୍ୟ ପୁସ୍ତକର ଅନେକ ସ୍ଥଳ ସ୍ତ୍ରୀମାନେ ବୁଝି ପାରୁଅଛନ୍ତି । ସ୍ତ୍ରୀଶିକ୍ଷାର ଉନ୍ନତି ଏଥିର କାରଣ; ଅଥବା ଆଜିକାଲିର ସାହିତ୍ୟରେ ଓ ପୁସ୍ତକମାନଙ୍କରେ ଘରେଇ ଶବ୍ଦ ବିଶେଷପରିମାଣରେ ପ୍ରବେଶଲାଭ କରୁଅଛି ବୋଲି ପୁସ୍ତକଗତ ଭାଷା ସ୍ତ୍ରୀମାନଙ୍କର ସହଜବୋଧ ହୋଇଅଛି ଏହା ଆମ୍ଭମାନଙ୍କର ଭାବିବାର ବିଷୟ । ଆଜିପର୍ଯ୍ୟନ୍ତ ପୁସ୍ତକ-ମାନଙ୍କରେ ଗୃହ-ପ୍ରଚଳିତ ଭାଷା ବ୍ୟବହୃତ ହେଉ ନ ଥିଲା ବୋଲି ଏହା ଅଶୁଦ୍ଧ ଏହି ଯୁକ୍ତି ସୁଯୁକ୍ତି ବୋଲି ଆମ୍ଭମାନଙ୍କୁ ବୋଧ ହେଉ ନାହିଁ ।

ସାହିତ୍ୟକୁ ସ୍ଥୂଳତଃ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ:—୧ ଉଚ୍ଚ ସାହିତ୍ୟ (Refined literature) ୨ ସାଧାରଣ ସାହିତ୍ୟ (popular literature) । ନାଟକ ଅବଶ୍ୟ ଉଚ୍ଚ ସାହିତ୍ୟ ମଧ୍ୟରେ ଗଣ୍ୟ । କିନ୍ତୁ ଯେବେ ନାଟକରେ ଘରୋଇ ଭାଷା ବ୍ୟବହୃତ ହେଉଅଛି, ସାଧାରଣ ସାହିତ୍ୟରେ (କାହାଣୀ ଇତ୍ୟାଦିରେ) ସେପରି ଭାଷା ଯେ ଦୋଷାବହ ଏହା କିପରି ବୋଲାଯିବ ? ଘରୋଇ ଭାଷା (homely language) ଓ ଇତରଜନବ୍ୟବହୃତ ଭାଷା (slang) ମଧ୍ୟରେ ଭେଦ ପ୍ରଭେଦ ଅଛି ଏବଂ ଇତରଜନବ୍ୟବହୃତ ଭାଷାକୁ (slang) ସାହିତ୍ୟରେ ପ୍ରବେଶାଧିକାର ଦେବାର ଆମ୍ଭେମାନେ ପକ୍ଷପାତୀ ନୋହୁଁ । କିନ୍ତୁ ସାଧାରଣ ସାହିତ୍ୟରେ ଆମ୍ଭେମାନେ ଘରୋଇ ଭାଷା (homely language) ବ୍ୟବହାର କରିବାର ପୂର୍ଣ୍ଣ ପକ୍ଷପାତୀ ।

ଘରୋଇ ଭାଷା ଆମ୍ଭେମାନେ ବାଲ୍ୟକାଳରୁ ଶୁଣି ଓ ବ୍ୟବହାର କରି ଆସୁଥିବାରୁ ତାହା ସଙ୍ଗରେ ଆମ୍ଭମାନଙ୍କର ଗୋଟିଏ ସହଜ ମମତା (Associatian) ଓ ସ୍ନେହ ଜନ୍ମିଅଛି । ଅତଏବ ସେ ଭାଷା ଆମ୍ଭମାନଙ୍କର ପ୍ରିୟତର ।

କୌଣସି ଉଚ୍ଚ ଓ ମାର୍ଜିତ ସାହିତ୍ୟଗତ ପ୍ରବନ୍ଧରେ ମାର୍ଜିତ ଭାଷା ଓ ଶବ୍ଦ ବ୍ୟବହାର କରିବା ସର୍ବଥା ଉଚିତ । ତାହା ବୋଲି କାହାଣୀ, ନାଟକ, ନାନାବାସ୍ତୁ ଗୀତ ଓ କଥୋପକଥନରେ ଘରୋଇ ଭାଷା ଯେ ଉପେକ୍ଷିତ ହେବ ଏହା ସମୀଚୀନ ବୋଧ ହେଉ ନାହିଁ ।

ଭାଷାର ଶୁଦ୍ଧତା ଅଶୁଦ୍ଧତା ପ୍ରଚଳନ ଉପରେ ନିର୍ଭର କରେ, ଏହା ସାହିତ୍ୟ-ବିଜ୍ଞାନବେତ୍ତାମାନଙ୍କର ମତ । ଉତ୍କଳ ସମାଜର ଉଚ୍ଚସ୍ତରୀୟ ଗୃହସ୍ଥଙ୍କ ଘରେ ହଉ, ଯାହିଚ, ଏଠେଇଁ ଇତ୍ୟାଦି ଶବ୍ଦ ଅବାଧରେ ବ୍ୟବହୃତ ହୁଏ । ଏଗୁଡିକ ଇତର-ପ୍ରଚଳିତ ଭାଷା ହେଲା କିପରି ? ଏଗୁଡିକ ସାହିତ୍ୟ-ଗତ ଭାଷା ନ ହେବ କାହିଁକି ? ଇଂରାଜୀରେ ଉଚ୍ଚ ସାହିତ୍ୟରେ 'Do not' ବ୍ୟବହୃତ ହୁଏ ସତ୍ୟ, କିନ୍ତୁ ସାଧାରଣ ସାହିତ୍ୟରେ ମୁଖପ୍ରଚଳିତ 'Dont'ର ବ୍ୟବହାର ଦୂଷ୍ୟ ବୋଲି ପରିଗଣିତ ହୁଏ ନାହିଁ । ନାଟକ ବା କଥୋପକଥନର ଭାଷାରେ ମୁଖପ୍ରଚଳିତ ଭାଷା ବ୍ୟବହାର ନ କରି ମାର୍ଜିତ ଉଚ୍ଚ ଭାଷା ବ୍ୟବହାର କଲେ ଏହା ଅଡୁଆ ଲାଗିବ । ଅତଏବ ନାଟ୍ୟକାର ବାଧ୍ୟ ହୋଇ ବ୍ୟକ୍ତିମୁଖରେ କଥୋପକଥନର ଭାଷା ବ୍ୟବହାର କରନ୍ତି । ବାଳକ କାହାଣୀରୁ 'ଆମେ' ଓ ଉଚ୍ଚ ସାହିତ୍ୟରୁ 'ଆମ୍ଭେ' ଏ ଦୁଇଟି ବ୍ୟବହାର ଶିଖିଲେ ଏପରି କି ବିଶେଷ କ୍ଷତି ହେବ ତାହା ମୁଁ ବୁଝିପାରୁ ନାହିଁ ।

ନାଟ୍ୟକାର କଥୋପକଥନରେ ମାର୍ଜିତ ଭାଷା ବ୍ୟବହାର କରିବାକୁ ବସିଲେ ଏହା ସାହିତ୍ୟ ପକ୍ଷରେ ଅମଙ୍ଗଳଜନକ ବୋଲିବାକୁ ହେବ । ଏପରି କରିବାଦ୍ୱାରା ପ୍ରାକୃତିକ ଅନୁକରଣରେ ବାଧା ପଡି ନାଟକର ଉଦ୍ଦେଶ୍ୟ ବିଫଳ ହେବ । ଘରୋଇ ଭାଷାକୁ ସାହିତ୍ୟର ଅଙ୍ଗ କରିବା-ନିମନ୍ତେ ଶ୍ରୀଯୁକ୍ତ ଫକୀରମୋହନ ସେନାପତି ଓ ଶ୍ରୀଯୁକ୍ତ ରାମଶଙ୍କର ରାୟଙ୍କ ଚେଷ୍ଟା ଅତ୍ୟନ୍ତ ପ୍ରଶଂସନୀୟ । ଭଦ୍ର ପରିବାର-ପ୍ରଚଳିତ ଭାଷା ସାହିତ୍ୟର ଅଙ୍ଗ ଓ ଶୁଦ୍ଧ ଭାଷା, ଆମ୍ଭେମାନେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛୁଁ ।

ବୁଢ଼ୀମା ଓ ସ୍ତ୍ରୀମାନେ କାହାଣୀ କହିଥାନ୍ତି ଏବଂ ଆମ୍ଭେମାନେ କାହାଣୀଗୁଡିକ ଶିଶୁମାନଙ୍କ ନିମନ୍ତେ ଲେଖିଥାଉଁ, ସୁତରାଂ ତହିଁରେ କଥୟିତ୍ରୀମାନଙ୍କ ଭାଷା ବ୍ୟବହାର ନ କଲେ କାହାଣୀଗୁଡିକର କାହାଣୀତ୍ୱ ନଷ୍ଟ ହୋଇଯିବ ଏଥିରେ ସନ୍ଦେହ ନାହିଁ । ବାଳକବାଳିକାମାନେ ନିଜ ନିଜ ଘରେ ଲୋକମାନଙ୍କ ମୁଖରୁ କାହାଣୀର ଭାଷା ଦିନରାତି ଶୁଣିବାଦ୍ୱାରା ଯେବେ ଅଶୁଦ୍ଧ ଭାଷା ଶିକ୍ଷା କରୁଅଛନ୍ତି ବୋଲି ସ୍ୱୀକାର କରାଯାଏ ତାହାହେଲେ କାହାଣୀରୁ ସେପରି ଭାଷା ପଢି ବିଗିଡି ଯିବେ ଏଥିରେ ସନ୍ଦେହ ନାହିଁ । କିନ୍ତୁ ମୁଁ ଏ ମତ ସମର୍ଥନ କରିବାକୁ ଏକାନ୍ତ ଅକ୍ଷମ ।

ବଙ୍ଗଳାର ଜନୈକ ଖ୍ୟାତନାମା ସାହିତ୍ୟ-ସେବକ ଶ୍ରୀଯୁକ୍ତ ଯୋଗେଶଚନ୍ଦ୍ର ରାୟ M. A. ମହୋଦୟ କେତେକ କାହାଣୀକୁ ବଙ୍ଗୀୟ ଗୃହପ୍ରଚଳିତ ଭାଷାରେ ଲିପିବଦ୍ଧ କରି ବଙ୍ଗଳାର 'ସାହିତ୍ୟ' ପତ୍ରିକାରେ ପ୍ରକାଶିତ କରିଥିଲେ ଓ ତାଙ୍କଦ୍ୱାରା Education Gagette ସେହି କାହାଣୀଗୁଡିକ

ମଧ୍ୟ ଅବିକଳ ତଦ୍ରୂପ ଭାଷାରେ ପ୍ରକାଶିତ କରିଥିଲେ ।

ପୁସ୍ତକଗତ ଭାଷା ଯେପରି ସାହିତ୍ୟର ଗୋଟିଏ ଅଙ୍ଗ, ଘରୋଇ ଭାଷା ସେହିପରି ଆଉ ଗୋଟିଏ ଅଙ୍ଗ । ସେଗୁଡ଼ିକ ଯେତେବେଳେ ଭଦ୍ରବଂଶରେ ଏବଂ ମାର୍ଜିତ ସମାଜରେ ବ୍ୟବହୃତ ହେଉଅଛି, ତାହା ଇତର ବା ଅଶୁଦ୍ଧ ବୋଲାଯାଇ ନ ପାରେ । ବହୁଳ ପ୍ରଚଳିତ ଘରୋଇ ଭାଷା ଓ ଶବ୍ଦ ଲିପିବଦ୍ଧ ହୋଇ ନ ରହିଲେ ଭବିଷ୍ୟତରେ ଉତ୍କଳ-ଭାଷାବିଜ୍ଞାନ ଗବେଷଣା ପଥରେ ବିଶେଷ ବାଧା ଜନ୍ମିବ ଓ ଶବ୍ଦମାନଙ୍କ ଇତିହାସ ସଙ୍କଳନ ବିଷୟ ଜଟିଳତାମୟ ହେବ । ଯେତେ ଅପଭ୍ରଷ୍ଟ ଓ ଘରୋଇ ଶବ୍ଦ ଲିପିବଦ୍ଧ ହୋଇ ରହେ ସାହିତ୍ୟ ଓ ଭାଷାବିଜ୍ଞାନର ସେତିକି ମଙ୍ଗଳ । ଯାହା ପ୍ରଚଳିତ ତାହା ଶୁଦ୍ଧ, ଏହା ସାହିତ୍ୟ-ବିଜ୍ଞାନର ଗୋଟିଏ ପ୍ରଧାନ ନିୟମ ।

ଉତ୍କଳଭାଷୀ ଅଞ୍ଚଳମାନଙ୍କରେ ନାନାଦି ପ୍ରଭାବରୁ ଭାଷା ଓ ଶବ୍ଦ ରାଜ୍ୟରେ ଅନେକ ସ୍ଥାନୀୟ ବିଶେଷତ୍ୱ ପ୍ରବେଶ କରିଅଛି । ମୋ କ୍ଷୁଦ୍ର ମତରେ ସେଗୁଡ଼ିକ ଯଥାଶକ୍ତି ସଂଗ୍ରହ ଓ ଲିପିବଦ୍ଧ କରି ରଖିବା ସାହିତ୍ୟସେବକମାନଙ୍କର ଗୋଟିଏ ପ୍ରଧାନ କର୍ତ୍ତବ୍ୟ । ଏ କ୍ଷେତ୍ରରେ ଶ୍ରୀ ଶ୍ୟାମସୁନ୍ଦର କର, ଶ୍ରୀ ମୃତ୍ୟୁଞ୍ଜୟ ରଥ, ଶ୍ରୀ ଆର୍ତ୍ତତ୍ରାଣ ଶତପଥୀ, ଏମାନଙ୍କର ପରିଶ୍ରମ ପ୍ରଶଂସାର୍ହ । ଯେତିକି ଘରୋଇ ଶବ୍ଦ ଓ ଭାଷା ସଂଗୃହୀତ ହେବ, ଉତ୍କଳର ଭବିଷ୍ୟତ ଶବ୍ଦକୋଷ-ପ୍ରଣେତାଙ୍କ ମାର୍ଗ ସେତିକି ପରିଷ୍କୃତ ଓ ଆଶାପ୍ରଦ ହେଉଥିବ ।

ମୋର କାହାଣୀ ଲେଖିବାର ପ୍ରଥମ ଉଦ୍ଦେଶ୍ୟ ଉତ୍କଳର ନବାଶୋଲୁଣ କାହାଣୀ-ଗୁଡ଼ିକ ଲିପିବଦ୍ଧ କରି ରଖିବା, ଦ୍ୱିତୀୟ ଉଦ୍ଦେଶ୍ୟ ତହିଁସଙ୍ଗେ ସଙ୍ଗେ ଘରୋଇ ଶବ୍ଦଗୁଡ଼ିକ Idiom (ବାକ୍ୟବିଶେଷ) ଯଥାଶକ୍ତି ଲିପିବଦ୍ଧ କରିବା । ଘରୋଇ ଭାଷା ଓ ଶବ୍ଦ ବ୍ୟବହାର କରିବା ପ୍ରଥମେ ଯେତେ ସହଜ ଓ ହେୟ ବୋଲି ମନେ ହୁଏ, ପ୍ରକୃତରେ ତାହା ନୁହେ । ସେଥିରେ ବିଶେଷ ସାବଧାନ ହୋଇ ସୁଦ୍ଧା ଅଭ୍ୟାସ-ଦୋଷରୁ ସ୍ଥାନେ ସ୍ଥାନେ ପୁସ୍ତକଗତ ଭାଷା ଓ ଶବ୍ଦମାନ ରହିଯାଏ ।

ଭାରତର ଆର୍ଯ୍ୟମାନେ ପୂର୍ବେ ସଂସ୍କୃତରେ କଥାବାର୍ତ୍ତା କରୁଥିଲେ, କ୍ରମଶଃ ଦେଶ, କାଳ, ଜଳବାୟୁ ଇତ୍ୟାଦି ନାନା ପ୍ରଭାବରୁ ଭାଷା ପରିବର୍ତ୍ତିତ ହେଲା । ଏହାହିଁ ପ୍ରାକୃତ ଭାଷା ସୃଷ୍ଟିର ମୂଳ କଥା । ଭାଷାର କ୍ରମିକ ପରିବର୍ତ୍ତନ ଅନିବାର୍ଯ୍ୟ । କାଳକ୍ରମେ କଥିତ ଭାଷା ଭିନ୍ନ ଭିନ୍ନ ସ୍ଥାନରେ ହିନ୍ଦୁସ୍ଥାନୀ, ଓଡ଼ିଆ, ବଙ୍ଗଳା, ମହାରାଷ୍ଟ୍ରୀ ରୂପ ଧାରଣ କଲା । ପୁନଶ୍ଚ ଏ ଭାଷାମାନଙ୍କ ମଧ୍ୟରେ ସମୟକ୍ରମେ ଆନ୍ତରିକ ପରିବର୍ତ୍ତନ ଚାଲି ଅଛି । ଏ ଦଶା ସବୁ ଭାଷା ଭୋଗ କରିବାକୁ ବାଧ୍ୟ । ଉଦାହରଣ ସ୍ୱରୂପ:—ଅହମ୍ ସ୍ଥଳରେ ଅହ୍ମେ, ହାମ୍, ଅମ୍ଭେ, ଆମି, ହାମେ, ଆମେ ପ୍ରଚଳିତ ହେଲା । ଏଥିରୁ ଗୋଟିକୁ ଶୁଦ୍ଧ ଓ ଆଉ ଗୋଟିକୁ ଅଶୁଦ୍ଧ କିପରି ବୋଲାଯିବ ? ଯେଉଁ ନିୟମ ଓ କାରଣ ପ୍ରଭାବରୁ ଅହମ୍ ସ୍ଥଳରେ ଅହ୍ମେ ହୋଇଅଛି ସେହି କାରଣରୁ ଅମ୍ଭେ 'ଆମେ' ରେ ପରିବର୍ତ୍ତିତ ହେବା ଆଶ୍ଚର୍ଯ୍ୟ ନୁହେ ଏହା ବରଂ ସ୍ୱାଭାବିକ ।

ଇତିପୂର୍ବେ ୬ଷ୍ଠ ଭାଗ ୫ମ ଓ ୬ଷ୍ଠ (ଭାଦ୍ର ଓ ଆଶ୍ୱିନ) ସଂଖ୍ୟା 'ଉତ୍କଳ-ସାହିତ୍ୟ' ର 'ଦୁଇ ଶ୍ରେଣି ଓଡ଼ିଆ ପୁସ୍ତକ' ଶୀର୍ଷକ ସମାଲୋଚନା-ପ୍ରବନ୍ଧରେ ମୁଁ ଏ ପ୍ରସଙ୍ଗର ଅବତାରଣା କରିଥିଲି, କିନ୍ତୁ ଏପର୍ଯ୍ୟନ୍ତ ସେ ବିଷୟରେ କୌଣସି ପ୍ରକାର ଆଲୋଚନା ହୋଇ ଥିବାର ଦେଖୁ ନାହିଁ । ବିଷୟଟି 'ଉତ୍କଳ-ସାହିତ୍ୟ-ସମାଜ' ରେ ଆଲୋଚିତ ହେବା ଅସଙ୍ଗତ ନୁହେ ମନେ କରି ଆଜି ମୋର କ୍ଷୁଦ୍ର ଅଭିମତ ଓ ଆଲୋଚନାର ଫଳ ମାତ୍ର ଆପଣମାନଙ୍କ ନିକଟରେ ଉପସ୍ଥାପିତ କରିବାକୁ ପ୍ରବୃତ୍ତ ହେଲି । ଯୋଗ୍ୟତର ବ୍ୟକ୍ତିଙ୍କଦ୍ୱାରା ଏ ପ୍ରସଙ୍ଗ ଧାରବାହିକରୂପେ ଆଲୋଚିତ ହେବାର ଦେଖିଲେ ମୋର କ୍ଷୁଦ୍ର ଉଦ୍ଦେଶ୍ୟ ସାର୍ଥକ ହେଲା ବୋଲି ମନେ କରିବି । ପୁନଶ୍ଚ କହି ରଖିଲି ଏହା ପ୍ରବନ୍ଧ ବା ଆଲୋଚନା ନାମର ଯୋଗ୍ୟ ନୁହେ, ଏହା ସୂଚନା ମାତ୍ର ।

ଶ୍ରୀ ଗୋପାଳଚନ୍ଦ୍ର ପହରାଜ

## ସାହିତ୍ୟ-ସମ୍ବାଦ ।

୧ । ନାନା ଅସୁବିଧାରୁ ଭାଦ୍ର ମାସର ଉତ୍କଳ ସାହିତ୍ୟ ପ୍ରକାଶରେ କିଞ୍ଚିତ ବିଳମ୍ବ ଘଟିଅଛି । ଗ୍ରାହକ ମହୋଦୟଗଣ କ୍ଷମା କରିବେ । ଆଗାମୀ ସଂଖ୍ୟାଦ୍ୱୟ (ଆଶ୍ୱିନ ଓ କାର୍ତ୍ତିକ) ଏକତ୍ର ଦୁର୍ଗାପୂଜା ଅବକାଶ ପୂର୍ବରୁ ପ୍ରକାଶିତ । ସମ୍ଭବତଃ ଅକ୍ଟୋବର ୧୦ ତାରିଖ ବେଳକୁ ପତ୍ରିକା ବାହାରିବ । ତତ୍ପୂର୍ବରୁ ବା ଅବ୍ୟବହିତ ପରେ ଯେଉଁମାନେ ସ୍ଥାନାନ୍ତରକୁ ବାହାରି ଯିବେ, ସେମାନେ ସ୍ଥାନୀୟ ପୋଷ୍ଟ ଅଫିସରେ ଠିକଣା ପରିବର୍ତ୍ତନ ଜ୍ଞାପନ କରିଯିବେ, ଏହି ଅନୁରୋଧ ।

୨ । ଆମ୍ଭେମାନେ ଶ୍ରୀଯୁକ୍ତ ଫକୀରମୋହନ ସେନାପତି ମହାଶୟଙ୍କ କୃତ ମହାଭାରତ ବନପର୍ବର ଅନୁବାଦ, ଶ୍ରୀଯୁକ୍ତ ରାମଶଙ୍କର ରାୟ ମହାଶୟଙ୍କ ପ୍ରଣୀତ କାଞ୍ଚନମାଳୀ ନାଟକ ଏବଂ ଅନ୍ୟାନ୍ୟ କେତେ ଖଣ୍ଡି କ୍ଷୁଦ୍ର ପୁସ୍ତକ ସମାଲୋଚନାର୍ଥ ପାଇଥିବାର କୃତଜ୍ଞତାସହକାରେ ପ୍ରକାଶ କରୁଅଛୁଁ । ସ୍ଥାନାଭାବ ପ୍ରଭୃତି ଯୋଗୁଁ ସମାଲୋଚନା ଏ ସଂଖ୍ୟାରେ ପ୍ରକାଶ କରି ନ ପାରି ଦୁଃଖିତ ଅଛୁଁ ।

୩ । ଗତମାସ ୧୯ ତାରିଖରେ ଉତ୍କଳସାହିତ୍ୟସମାଜର ଗୋଟିଏ ଅଧିବେଶନରେ ସଭାପତି ଶ୍ରୀଯୁକ୍ତ ମଧୁସୂଦନ ରାଓ ମହାଶୟ "ଭାଷାଶାସ୍ତ୍ର" ବିଷୟରେ ବକ୍ତୃତା କରିଥିଲେ । ସେ ଏହି ବିଷୟରେ ଅଧିକ ୨।୩ ଗୋଟି ବକ୍ତୃତା କରିବାକୁ ଅଙ୍ଗୀକାର କରିଅଛନ୍ତି । ବକ୍ତୃତା ଓ ଆଲୋଚନାର ସାରାଂଶ ଯଥାସମୟରେ ପ୍ରକାଶିତ ହେବ । ଏହି ଅଧିବେଶନରେ ପରଲୋକଗତ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ ନିମିତ୍ତ ଶୋକପ୍ରକାଶକ ପ୍ରସ୍ତାବ ଧାର୍ଯ୍ୟ ହୋଇଥିଲା ।

୪ । ସାହିତ୍ୟସମାଜର ଅନ୍ତର୍ଗତ ଓଡ଼ିଆ ଶବ୍ଦକୋଷସଂଗ୍ରହ-ସମିତିର କାର୍ଯ୍ୟ ଧୀରେ ଧୀରେ ଅଗ୍ରସର ହେଉଅଛି । ମାତ୍ର ପ୍ରାଚୀନ ପୁସ୍ତକ ସଂଗ୍ରହ ବିଷୟରେ ଏ ପର୍ଯ୍ୟନ୍ତ କିଛି ବ୍ୟବସ୍ଥା ହୋଇ ପାରି ନାହିଁ । ଏହା ବିଶେଷ ବ୍ୟୟସାପେକ୍ଷ । ଏହା ଛଡ଼ା ଓଡ଼ିଆ ସାହିତ୍ୟର ଇତିହାସ ସଙ୍କଳନ ବିଷୟରେ ମଧ୍ୟ ହସ୍ତକ୍ଷେପ କରିବାକୁ ସମାଜ କଳ୍ପନା କରିଅଛନ୍ତି । ସମାଜର ନିୟମିତ ଚାନ୍ଦା ଆଦାୟ ହେବା ଉଚିତ । ଏ ସମସ୍ତ କାର୍ଯ୍ୟ ନିର୍ବାହ ନିମିତ୍ତ ଅର୍ଥ ଆସିବ କାହୁଁ ? ସମାଜର ଅଭିଭାବକ ଓ ବିଶିଷ୍ଟ ସଭ୍ୟମାନଙ୍କ ନିକଟକୁ ପ୍ରାର୍ଥନାପତ୍ର ଇତିମଧ୍ୟରେ ପ୍ରେରିତ ହୋଇଅଛି । ଶ୍ରୀମନ୍ମୟୂରଭଞ୍ଜାଧିପତି ମହୋଦୟ ଇତିହାସ ସଙ୍କଳନ ବିଷୟରେ ଟ୧୦୦୧ ଅଙ୍ଗୀକାର ମାତ୍ର କରି ଅବଶିଷ୍ଟ ସାଧାରଣଙ୍କଠାରୁ ସଂଗ୍ରହ କରିବାକୁ ଉପଦେଶ ଦେଇଅଛନ୍ତି । ଜାତୀୟ ସାହିତ୍ୟର ଗୁରୁତ୍ୱ ଉପଲବ୍ଧି କରିବା ଉତ୍କଳ ପକ୍ଷରେ ସର୍ବକାଳସାପେକ୍ଷ ।

୫ । 'ସଂସ୍କାରକ' ନାମକ ଖଣ୍ଡିଏ ମାସିକ ପତ୍ର ଭମ୍ବା ମର୍ଦ୍ଦରାଜ ପ୍ରେସରୁ ବାହାରୁଅଛି । ଏହା ଶ୍ରୀଯୁକ୍ତ ଶ୍ରୀବତ୍ସ ପଣ୍ଡା ବି. ଏ. ଙ୍କ ଆନୁକୂଲ୍ୟରେ ପ୍ରକାଶିତ । ଏହାର ସମ୍ପାଦକ ପଣ୍ଡିତ ଶ୍ରୀଯୁକ୍ତ ଗଦାଧର ବିଦ୍ୟାଭୂଷଣ । ଆମ୍ଭେମାନେ ପ୍ରଥମ ସଂଖ୍ୟା ପାଇଥିବାର କୃତଜ୍ଞତାସହକାରେ ସ୍ୱୀକାର କରୁଅଛୁଁ ।

## ମୂଲ୍ୟପ୍ରାପ୍ତି ।

### ରାଜସଂସ୍କରଣ ।

୧୯୦୩

| | | | |
|---|---|---|---|
| ଶ୍ରୀଯୁକ୍ତ | ନୀଳମଣି ପଟ୍ଟନାୟକ | ପାରଳାଖେମୁଣ୍ଡି | ଟ ୫ ୲ |
| ,, | ଏ. ଭେ. ଦ୍ୱୈପାୟନ ରାଓ | ,, | ଟ ୫ ୲ |

୧୯୦୪

| | | | |
|---|---|---|---|
| ,, | ଶ୍ୟାମସୁନ୍ଦର ରାଜଗୁରୁ | ପାରଳାଖେମୁଣ୍ଡି | ଟ ୧୦ ୲ |
| ,, | ନରସିଂହ ଦାସ | ପୁରୁଷୋତ୍ତମପୁର | ଟ ୫ ୲ |

### ସାଧାରଣ ସଂସ୍କରଣ ।

୧୯୦୨

| | | | |
|---|---|---|---|
| ଶ୍ରୀଯୁକ୍ତ | ବୈଦ୍ୟନାଥ କର | ଜାଜପୁର | ଟ ୨ ୲ |
| ,, | ବୃନ୍ଦାବନ କର | ବାଲିଅ | ଟ ୧ ୲ |

୧୯୦୩

| | | | |
|---|---|---|---|
| ,, | ରଘୁନାଥ ଦାସ | ଅସ୍ତୁପୁର | ଟ ୧ ୲ |
| ,, | ନାରାୟଣ ଦାସ | କଟକ | ଟ ୧ ୲ |
| ,, | ନଳିଅ ନାଉଡୁ | ସମ୍ବଲପୁର | ଟ ୨ ୲ |
| ,, | ଦୀନବନ୍ଧୁ ପଣ୍ଡା | ଅସିକା | ଟ ୨ ୲ |
| ,, | ଅନନ୍ତଚନ୍ଦ୍ର ମହାନ୍ତି | କଟକ | ଟ ୧ ୲ |
| ,, | କପିଳେଶ୍ୱର ମହାପାତ୍ର | ରମ୍ଭା | ଟ ୨ ୲ |
| ,, | ଧନଞ୍ଜୟ ସିଂହ | ବଲାଙ୍ଗିର | ଟ ୨ ୲ |
| ,, | ଛକଡ଼ି କର | କଟକ | ଟ ୧ ୲ |
| ,, | ଉଗ୍ରସେନ ଦାଶ | ଭିଙ୍ଗାରପୁର | ଟ ୧ ୲ |
| ,, | ମାଧବ ମହାନ୍ତି | ସରଗପାଲି | ଟ ୧ ୲ |

୧୯୦୪

| | | | |
|---|---|---|---|
| ,, | ବ୍ରଜାନନ୍ଦ ଦାସ | କଟକ | ଟ ୨ ୲ |
| ,, | ଅନନ୍ତଚନ୍ଦ୍ର ପଣ୍ଡା | ,, | ଟ ୧ ୲ |
| ,, | ଜଗନ୍ନାଥ ପଟ୍ଟନାୟକ | ,, | ଟ ୧ ୲ |

| | | | |
|---|---|---|---|
| ଶ୍ରୀଯୁକ୍ତ | ପଦ୍ମନାଭ ମହାନ୍ତି | କଟକ | ଟ ୦ ୩ ୲ |
| ,, | ଘନଶ୍ୟାମ ମହାନ୍ତି | ,, | ଟ ୨ ୲ |
| ,, | ଗୋବିନ୍ଦଚନ୍ଦ୍ର ଶୂରଦେଓ | ,, | ଟ ୧ ୲ |
| ,, | ମଧୁସୂଦନ ପାଣିଗ୍ରାହୀ | ମାନ୍ଦ୍ରାଜ | ଟ ୧ ୲ |
| ,, | ରଘୁନାଥ ପାଠୀ | ,, | ଟ ୧ ୲ |
| ,, | ମାଧବଧର କର | ବୋଦ | ଟ ୧ ୲ |
| ,, | ମହମ୍ମଦ ଅକବର | କଟକ | ଟ ୧ ୲ |
| ,, | ହଂସମୁଖୀ ପ୍ରଭୃତି | ,, | ଟ ୧ ୲ |
| ,, | ନାଲିଅ ନାଉଡୁ | ସମ୍ବଲପୁର | ଟ ୨ ୲ |
| ,, | ଦୀନବନ୍ଧୁ ପଣ୍ଡା | ଅସିକା | ଟ ୨ ୲ |
| ,, | ହରିହର ରଥ | କଟକ | ଟ ୧ ୲ |
| ,, | ମଧୁସୂଦନ ଦାଶ | ,, | ଟ ୧ ୲ |
| ,, | ଧନଞ୍ଜୟ ସିଂହ | ବଲାଙ୍ଗିର | ଟ ୨ ୲ |
| ,, | ଗଣେଶ୍ୱର ଦାସ | କଟକ | ଟ ୧ ୲ |
| ,, | ଚୌଧୁରୀ ନରହରି ଦାଶ | ଭିଙ୍ଗାରପୁର | ଟ ୨ ୲ |
| ,, | ରାଧାଚରଣ ଦାସ | ନରସିଂହପୁର | ଟ ୨ ୲ |
| ,, | ସଦାଶିବ ବାବୁ | ସମ୍ବଲପୁର | ଟ ୧ ୲ |
| ,, | ପର୍ଶୁରାମ ପଣ୍ଡା | ରମ୍ଭୋଲ | ଟ ୨ ୲ |

——*!*——

## କୁଷ୍ଠରୋଗୀ ! ହତାଶ ହୁଅ ନାହିଁ !

ଯେବେ ଏହି ଦୁରାରୋଗ୍ୟ ଓ ଅସାଧ୍ୟ କୁଷ୍ଠରୋଗକବଳରୁ ମୁକ୍ତି ପାଇବାର ଆଶା ଥାଏ, ଯେବେ ସୁସ୍ଥ ଶରୀରରେ ଦୀର୍ଘକାଳ ବଞ୍ଚିବାର ଆକାଂକ୍ଷା ଥାଏ; ଯେବେ ତନ୍ତ୍ର-ତନ୍ତ୍ରଯାଁ କରାଇ ଓ ବହୁ ଔଷଧ ସେବନ କରି ମଧ୍ୟ ନିଷ୍ଫଳ ହୋଇଥାଅ, ଯେବେ ଡାକ୍ତର କବିରାଜଙ୍କର ନୈରାଶ୍ୟର ପରିତ୍ୟକ୍ତ ହୋଇଥାଅ, ଯେବେ ସମ୍ପୂର୍ଣ୍ଣରୂପେ ଆରୋଗ୍ୟ ହେବାର ଏକାନ୍ତ ବାସନା ଥାଏ, ତେବେ ଏହି ବିଜ୍ଞାପନକୁ ଅତିରଞ୍ଜିତ ବା ଆଡ଼ମ୍ବରପୂର୍ଣ୍ଣ ମନେ ନ କରି ଶୀଘ୍ର ଆମ୍ଭର ଔଷଧ ସେବନ କର । ହସ୍ତ ପଦର ଅଙ୍ଗୁଳି ବଙ୍କା ବା ଛିନ୍ନ, ନାସିକା, କର୍ଣ୍ଣ ବିକୃତ, ସର୍ବାଙ୍ଗେ ଘର୍ମରହିତ ଓ ଘାଅମାନ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣରୂପେ ଆରୋଗ୍ୟ ଲାଭ କରିବ, ସନ୍ଦେହ ନାହିଁ । ଦୁଇପଇସିଆ ଟିକେଟ ସହ ନିମ୍ନଲିଖିତ ଠିକଣାକୁ ପତ୍ର ଲେଖିଲେ ଅବଶ୍ୟକ ସମସ୍ତ ବିଷୟ ବୁଝି ପାରିବ ।—

| | | |
|---|---|---|
| କୁସୁପୁର<br>କଟକ | } | ଶ୍ରୀ ବାଳକୃଷ୍ଣ ଦାସ<br>କବିରାଜ । |

## ଆୟୁର୍ବେଦୀୟ ଔଷଧାଳୟ ।

କବିରାଜ ଶ୍ରୀ ସାରଦାପ୍ରସାଦ କବିରଞ୍ଜନ —ବାଲୁବଜାର, କଟକ ।

ଏହି ସ୍ଥାନରେ ସୁଲଭ ମୂଲ୍ୟରେ ବିଶୁଦ୍ଧ ମକରଧ୍ୱଜ, ସର୍ବ ପ୍ରକାର ତୈଳ, ଘୃତ, ମୋଦକ, ଚୂର୍ଣ୍ଣ, ବଟିକା ଓ ଦେଶୀୟ ପାଚସା, ସୁନା, ରୂପା, ଲୌହ, ଅଭ୍ର, ମୁକ୍ତା, ବଙ୍ଗ ଭସ୍ମ ବିକ୍ରୟାର୍ଥ ସର୍ବଦା ପ୍ରସ୍ତୁତ ଥାଏ । ଦୁଃସାଧ୍ୟ ଓ କଠିନ ରୋଗଗ୍ରସ୍ତ ବ୍ୟକ୍ତିମାନଙ୍କର ଅବସ୍ଥାସହ ପତ୍ର ଲେଖିଲେ ଅତି ଯତ୍ନପୂର୍ବକ ବ୍ୟବସ୍ଥାସହ ଭିଃ ପିଃ ଡାକରେ ଔଷଧ ପଠାଯାଏ । ଦୁଇ ପଇସାର ଡାକ ଟିକେଟ ପଠାଇଲେ ବିନା ମୂଲ୍ୟରେ ଔଷଧ ତାଲିକା-ପୁସ୍ତକ ପ୍ରେରିତ ହୁଏ ।

---

# କବିରାଜ

ଶ୍ରୀ ଜଗତ ଚନ୍ଦ୍ର କବିରତ୍ନଙ୍କର

ଅନ୍ନପୂର୍ଣ୍ଣା

ଆୟୁର୍ବେଦୀୟ-ଔଷଧାଳୟ, ଚୌଧୁରୀବଜାର

କଟକ ।

### ପ୍ରଦରାରି ବଟିକା ।

(ସ୍ତ୍ରୀ ରୋଗର ଅବ୍ୟର୍ଥ ମହୌଷଧ)

ବାଧକ, ଶ୍ୱେତ ଓ ରକ୍ତ ପ୍ରଦର ପ୍ରଭୃତି ଯାବତୀୟ କଷ୍ଟକର ଓ ଦୁରାରୋଗ୍ୟ ସ୍ତ୍ରୀରୋଗ ପ୍ରତି ଆମ୍ଭ ପ୍ରଦରାରି ବଟିକା ଅବ୍ୟର୍ଥ ମହୌଷଧ । ଋତୁଦୋଷର ଧନ୍ୱନ୍ତରି, ସ୍ତ୍ରୀମାନଙ୍କର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ରକ୍ଷାର ଏପରି ସହଜ ଅଥଚ ଅମୋଘ ଔଷଧ ଆଉ ଦେଖା ଯାଏ ନାହିଁ । ମୂଲ୍ୟ ପ୍ରତି ଡବା ୮୧୮ ମାତ୍ର ।

### ଚ୍ୟବନପ୍ରାଶ ।

ସର୍ବଜନ-ବିଦିତ ପରମ ରସାୟନ ଏହି ମହୌଷଧ ସେବନ କଲେ ସର୍ବପ୍ରକାର ଶ୍ୱାସ କାଶ ଓ ସ୍ୱରଭଙ୍ଗ ନଷ୍ଟପ୍ରାୟ ପ୍ରଶମିତ ହୁଏ । ଦୁର୍ବଳ ଓ କ୍ଷୀଣଧାତୁ ପକ୍ଷରେ ମହର୍ଷି-ପ୍ରବର୍ତ୍ତିତ ଚ୍ୟବନପ୍ରାଶ ପରି ପୁଷ୍ଟିକର ରସାୟନ ଔଷଧ ଏପର୍ଯ୍ୟନ୍ତ ପୃଥିବୀରେ ଅବିଷ୍କୃତ ହୋଇ ନାହିଁ । ମୂଲ୍ୟ ଏକ ମାସ ସେବନୋପଯୋଗୀ ୮୨୮ ଡାକମାଶୁଲାଦି ସ୍ୱତନ୍ତ୍ର ।

### ପ୍ରମେହାନ୍ତକ ବଟିକା ।

ଅତୁଲନୀୟ ମହୌଷଧ; ଏହା ସେବନ କଲେ ଷୋଡଶ ପ୍ରକାର ପ୍ରମେହ ଓ ସମସ୍ତ ଧାତୁଦୌର୍ବଲ୍ୟ, ଶୁକ୍ରତାରଲ୍ୟ ପ୍ରସ୍ରାବ, ମୂତ୍ରାଶୟ ଓ ମୂତ୍ରନଳୀର ଜ୍ୱାଳା, ମୂତ୍ରୀତ୍ୟାଗକାଳୀନ ବେଦନା, ଅଣ୍ଡକୋଷରେ ଅଦାରଣ ପରି ଯନ୍ତ୍ରଣା, ଜ୍ୱର, ତୃଷ୍ଣା, ଅଗ୍ନିମାନ୍ଦ୍ୟ ଅପାକ ଓ ଅରୁଚି, ମଳଭେଦ ବା କୋଷ୍ଠବଦ୍ଧ, ଦେହରୁ ମଳମୂତ୍ର ଓ ବାୟୁର ଅବରୋଧ, ଦୁର୍ବଳତା । ସ୍ୱପ୍ନଦୋଷ, ମୂତ୍ରବେଗ, ଅନିଦ୍ରା, ସର୍ବାଙ୍ଗେ ଅବସାଦ ଓ ମସ୍ତିଷ୍କର ଦୌର୍ବଲ୍ୟାଦି ପ୍ରମେହ-ଜନିତ ଯାବତୀୟ ଉପଦ୍ରବ ନିବାରିତ ହୁଏ । ଏହା ଔପସର୍ଗିକ ମେହର ମହୌଷଧ ।

୩୦ ବଟିକାର ମୂଲ୍ୟ ୮୧୮

# ବିଜ୍ଞାପନ ।

—:o:—

ଶ୍ରୀ ମଧୁସୂଦନ ରାଓ ପ୍ରଣୀତ କବିତା ପୁସ୍ତକ ।

"କୁସୁମାଞ୍ଜଳି"—ମୂଲ୍ୟ ଟ ୦ । ଏହି କବିତା ପୁସ୍ତକର 'ଋଷି ପ୍ରାଣେ' ପ୍ରଭୃତି କେତୋଟି କବିତା ଶ୍ରୀ ରବୀନ୍ଦ୍ରନାଥ ଠାକୁର ପ୍ରଭୃତି କେତେକ ବଙ୍ଗୀୟ ଶ୍ରେଷ୍ଠ କବିଙ୍କ କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ଉତ୍କଳ ଗାଥା"—ମୂଲ୍ୟ ଟ ୦/ କବିବର ରାଧାନାଥ ରାୟ ପ୍ରଭୃତି କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ବସନ୍ତ ଗାଥା"—ମୂଲ୍ୟ ଟ ୦ ୵ ଉତ୍କଳର ସମସ୍ତ ସୁଲେଖକ କର୍ତ୍ତୃକ ପ୍ରଶଂସିତ ।

"ସଙ୍ଗୀତମାଳା"—ମୂଲ୍ୟ ଟ ୦ । ଏଥିରେ ବହୁପ୍ରଶଂସିତ ଏକଶତ ଭକ୍ତିରସର ସଙ୍ଗୀତ ଅଛି ।

"ଅଙ୍କପ୍ରଶ୍ନ ସମାଧାନ"—ମୂଲ୍ୟ ଟ ୦ ୵ ଅଙ୍କ ପୁସ୍ତକରେ ଥିବା କଠିନ ପ୍ରଶ୍ନମାନ ଏଥିରେ କଷା ଯାଇଅଛି ।

☞ ଏହି ୫ ଖଣ୍ଡ ପୁସ୍ତକର ମୂଲ୍ୟ ମୋଟରେ ଟ ।, କିନ୍ତୁ ଏ ପାଞ୍ଚ ଖଣ୍ଡ ଯାକ ନେଲେ ଟ ୦।୵ ମୂଲ୍ୟରେ ଦିଆଯିବ । ମଫସଲବାସିମାନଙ୍କୁ ଡାକଖର୍ଚ୍ଚ ଟ ୦ ୵ ଅଧିକା ଦେବାକୁ ହେବ ।

ଶ୍ରୀ ପ୍ରଶାନ୍ତ ରାଓ
ନିର୍ମଳ ସ୍କୁଲ, କଟକ ।

---

ସଂସ୍କୃତ ମହାଭାରତର ଅବିକଳ ପଦ୍ୟାନୁବାଦ ରାଜା କୃଷ୍ଣ ସିଂହ କୃତ ମହାଭାରତ ଉତ୍ତମରୂପେ ସଂଶୋଧିତ ମୁଦ୍ରିତ ହୋଇ ନିମ୍ନଲିଖିତ ପର୍ବମାନ ଏ ପ୍ରେସରେ ବିକ୍ରୟାର୍ଥ ପ୍ରସ୍ତୁତ ଅଛି । ଅନ୍ୟାନ୍ୟ ପର୍ବମାନ ଯନ୍ତ୍ରସ୍ଥ । ଶୀଘ୍ର ପ୍ରକାଶିତ ହେବ ।

| | | | |
|---|---|---|---|
| ସଭାପର୍ବ | ଟ ୦ ।୵ | କର୍ଣ୍ଣପର୍ବ | ଟ ୦ ୷ |
| ବିରାଟପର୍ବ | ଟ ୦ । | ଶଲ୍ୟାଦି ପର୍ବତ୍ରୟ ଏକତ୍ରେ | ଟ ୦ ୷ |
| ଉଦ୍ୟୋଗପର୍ବ | ଟ ୧ ୧ | | |

କଟକ ପ୍ରିଣ୍ଟିଂ ପ୍ରେସ
କଟକ }

ଶ୍ରୀ ଅଭିନ୍ନ ନାୟକ
ପ୍ରେସ ମେନେଜର ।

---

# ବିଚିତ୍ର ହରିବଂଶ ।

ନାନା ପ୍ରକାର ପ୍ରାଚୀନ ଓଡ଼ିଆ ଛନ୍ଦରେ ଶ୍ରୀ ବାଲୁଙ୍କେଶ୍ୱର ଅଧିକାରୀଙ୍କଦ୍ୱାରା ବିରଚିତ ।

ସମଗ୍ର ପୁସ୍ତକଟି ପ୍ରାୟ ୬୦୦ ପୃଷ୍ଠା ହେବ । ୪୦୦ ପୃଷ୍ଠା ଛପା ସରିଲାଣି । ଆଗାମୀ ଦୁର୍ଗାପୂଜା ବେଳକୁ ପୁସ୍ତକ ବାହାରି ପାରିବ । ଛପା ଶେଷ ହେଲେ ଏହି ବୃହତ୍ ପୁସ୍ତକର ମୂଲ୍ୟ ଅନ୍ତତଃ ଟ ୬। (ଦୁଇ ଟଙ୍କା ଚାରିଅଣା)ରୁ ଊଣା ହେବ ନାହିଁ । ମାତ୍ର ବର୍ତ୍ତମାନ ଯେଉଁମାନେ ପତ୍ର ଲେଖି ଗ୍ରାହକ ହେବେ, ସେମାନଙ୍କୁ ଟ ୧୷ ମୂଲ୍ୟରେ ଦିଆଯିବ । ପୁସ୍ତକ ବାହାରିବା ମାତ୍ରକେ ଭି: ପି: ଡାକରେ ପୁସ୍ତକ ପଠାଇ ଟଙ୍କା ଆଦାୟ କରାଯିବ । ଡାକମାସୁଲ ଓ ଭି: ପି: ଖରଚ ସ୍ୱତନ୍ତ୍ର ।

ବାଲୁବଜାର, କଟକ
୬ । ୮ । ୧୯୦୪ }

ଶ୍ରୀ ଭଗବତପ୍ରସାଦ ନନ୍ଦା
ମ୍ୟାନେଜର, ଉତ୍କଳସାହିତ୍ୟ ପ୍ରେସ ।

୮ ମ ଭାଗ, ଆଶ୍ୱିନ, କାର୍ତ୍ତିକ ୧୩୧୨ । ୬ଷ୍ଠ ୭ମ ସଂଖ୍ୟା ।

# ଉତ୍କଳ-ସାହିତ୍ୟ ।

ମାସିକପତ୍ର ଓ ସମାଲୋଚନ ।

—:o:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—:o:—

THE UTKAL SAHITYA PRESS,
CUTTACK.
1904.

ବାର୍ଷିକ ମୂଲ୍ୟ ଡାକମାସୁଲ ସମେତ ଟ ୵୯ ଏହି ସଂଖ୍ୟାର ମୂଲ୍ୟ ଟ ୦।୵

## ସୂଚୀ ।





# ଉତ୍କଳ ସାହିତ୍ୟ ।

## ଉପନିଷତ୍‌ସଂଗ୍ରହ ।

### ଈଶୋପନିଷତ୍ ।

ମନରେ ଭାଳିବ ଏମନ୍ତ,
ଜଗତ ପଦାର୍ଥ ସମସ୍ତ,
ପରମ ଆତ୍ମା ଆଚ୍ଛାଦନ
କରି ରଖିଛି ଅନୁକ୍ଷଣ ।
ଭୋଗିବ ବସ୍ତୁ ଅସକ୍ତି,
ନଲୋଭେ ପରର ସମ୍ପତ୍ତି ।
ସାଧୁ କର୍ମରେ ଦେଇ ମନ
ଧାରଣ କରିବ ଜୀବନ ।
ବଞ୍ଚିବା ପାଇଁ ଶତ ବର୍ଷ
ଯତନ କରିବ ଅବଶ୍ୟ ।
ଅହେ ମାନବ କର ଜ୍ଞାନ,
ଅନ୍ୟଥ ନାହିଁ ପରିତ୍ରାଣ ।
ଯେ ଆତ୍ମଘାତୀ ଦୁରାଚାର
କରନ୍ତି ଆତ୍ମା ଅସ୍ୱୀକାର,
ସର୍ବଦା ଅବିଦ୍ୟା ବଶରେ
ଭ୍ରମନ୍ତି ଅଜ୍ଞାନ ମାର୍ଗରେ,
ତାହାଙ୍କ ହେଲେକ ଦେହାନ୍ତ,
ଅସୁର ଦେହ ହେବେ ପ୍ରାପ୍ତ ।
ହେଲେହେଁ ବ୍ରହ୍ମ ଯେ ଅଚଳ,
ବ୍ୟାପିଅଛନ୍ତି ସର୍ବ ସ୍ଥଳ ।
ସେହି ଯେ ପରବ୍ରହ୍ମ ଜାଣ,
ମନରୁ ମଧ୍ୟ ବେଗବାନ ।
ଇନ୍ଦ୍ରିୟମାନେ ସହଜରେ
ପ୍ରାପ୍ତ ନୁହନ୍ତି ସେ କ୍ଷଣରେ ।
ଇନ୍ଦ୍ରିୟେ ନ ପାରନ୍ତି ଜାଣି,
ଯେଣୁ ସେ ବ୍ରହ୍ମ ଅଗ୍ରଗାମୀ ।
ସ୍ଥିର ହେଲେହେଁ ପରବ୍ରହ୍ମ,
କରନ୍ତି ସର୍ବ ଅତିକ୍ରମ ।

ବ୍ରହ୍ମରେ ଥାଇ ଅଧିଷ୍ଠିତ
ବାୟୁ ହେଉଛି ପ୍ରବାହିତ ।
ବ୍ରହ୍ମଙ୍କ ଆଜ୍ଞାରେ ପବନ
ଦିଅଇ ପ୍ରାଣିଙ୍କୁ ଜୀବନ ।
ସେ ପରବ୍ରହ୍ମ ନିରନ୍ତରେ
ଅଛନ୍ତି ଦୂରେ ସମୀପରେ
ବାହାରେ ପୁଣି ଅଭ୍ୟନ୍ତରେ
ଅଛନ୍ତି ସକଳ ସ୍ଥାନରେ ।
ଆତ୍ମାରେ ଯେ ଜ୍ଞାନସକଳ
ଦେଖନ୍ତି ବ୍ରହ୍ମାଣ୍ଡମଣ୍ଡଳ,
ବ୍ରହ୍ମାଣ୍ଡ ମଧ୍ୟେ ପରବ୍ରହ୍ମ
କରି ପାରନ୍ତି ହୃଦଙ୍ଗମ ।
ତାହାଙ୍କୁ ସେହି ଜ୍ଞାନବାନ
କରନ୍ତି ନାହିଁ ତୁଚ୍ଛଜ୍ଞାନ ।
ଆତ୍ମା ଯେ ସର୍ବ ବସ୍ତୁରୂପୀ,
ଏ ଜ୍ଞାନ ଜନ୍ମିବ ଯଦ୍ୟପି,
ଏକତ୍ୱଦର୍ଶୀ ଜ୍ଞାନଗଣ
ନୁହନ୍ତି ମୋହେ ଅଚେତନ ।
ସେ ପରମାତ୍ମା ସର୍ବବ୍ୟାପୀ,
ପାପ ନ ସ୍ପର୍ଶଇ କଦାପି ।
ସେ ଜ୍ୟୋତିର୍ମୟ ଅଶରୀରୀ,
ତାହାଙ୍କଠାରେ ସର୍ବ ଶିରୀ ।
ସ୍ୱୟମ୍ଭୂ ମନର ନିୟନ୍ତା,
ସକଳଦର୍ଶୀ ସର୍ବକର୍ତ୍ତା ।
ପ୍ରଜାଙ୍କ ହିତେ ଭଗବାନ
କରନ୍ତି କଲ୍ୟାଣ ବିଧାନ ।
କେବଳ କର୍ମେ ଅନୁରତ
ଥାଅନ୍ତି ଲୋକ ଯେ ସମସ୍ତ,
ଅଥବା ଯେଉଁ ଲୋକମାନେ
ମଗ୍ନ ଥାଅନ୍ତି ଦେବଜ୍ଞାନେ,

ଏପରି ଦୁଇ ଶ୍ରେଣୀ ଲୋକ
ନ ପାନ୍ତି ଜ୍ଞାନର ଆଲୋକ ।
ଦେବତାଜ୍ଞାନ କର୍ମଫଳ,
ପୃଥକ ଜାଣିବ କେବଳ ।
ଦେଖନ୍ତି ପ୍ରତ୍ୟକ୍ଷ ଦର୍ଶନେ,
ବୋଲନ୍ତି ମଧ୍ୟ ଜ୍ଞାନଗଣେ
ଦେବତା ଜ୍ଞାନ କର୍ମ ଦୁଇ,
ପୁରୁଷ କର୍ତ୍ତବ୍ୟ ଅଟଇ ।
କର୍ମେ ମୃତ୍ୟୁରୁ ହୁଏ ମୁକ୍ତ,
ଜ୍ଞାନରେ ଲଭନ୍ତି ଦେବତ୍ୱ ।
ଅବିଦ୍ୟାରୂପିଣୀ ପ୍ରକୃତି
ସେବା କରଇ ଯେ କୁମତି,
ସେ ଲୋକ ମିଳେ ଦେହାନ୍ତରେ
ଅଜ୍ଞାନରୂପ ଅନ୍ଧକାରେ ।
ହିରଣ୍ୟଗର୍ଭ କାର୍ଯ୍ୟ ବ୍ରହ୍ମେ
ଆସକ୍ତ ଥାନ୍ତି ଯେ ଅଧମେ,
ସେମାନେ ମଧ୍ୟ ଅବଶେଷେ
ମିଳନ୍ତି ଅନ୍ଧକାର ଦେଶେ ।
ଜ୍ଞାନୀ ଏହା ବୋଲିଛନ୍ତି,
କାର୍ଯ୍ୟ ଦେବତା ଯେ ପ୍ରକୃତି ।
ପୃଥକ ଉପାସନା ଫଳ
ଲଭନ୍ତି ବିଜ୍ଞାମାସକଳ ।
ହିରଣ୍ୟଗର୍ଭ ଯେ ପ୍ରକୃତି,
ଉଭୟେ ପୂଜେ ଯେ ସୁମତି ।
ପୂଜି ଯେ ହିରଣ୍ୟଗର୍ଭକୁ,
ଜିଣି ପାରନ୍ତି ମରଣକୁ ।
କରି ପ୍ରକୃତି ଉପାସନା
ଅମୃତ ଲଭେ ମହାମନା ।
ଜଗତପୋଷକ ହେ ସୂର୍ଯ୍ୟ !
ଅନନ୍ତ ତୁମ୍ଭର ଐଶ୍ୱର୍ଯ୍ୟ !
ତୁମ୍ଭର ଜ୍ୟୋତିର୍ମୟ ପାତ୍ରେ !
ବ୍ୟାପି ରହିଛି ବିଶ୍ୱଗାତ୍ରେ ।
ଆମ୍ଭଙ୍କୁ ଦେହାନ୍ତୁ ଦର୍ଶନ
ମୋଚନ କର ଆବରଣ ।

ହେ ସୂର୍ଯ୍ୟ ଜଗତପୋଷକ !
ତୁମ୍ଭେହିଁ ଲୋକଙ୍କ ପାଳକ ।
ଏକାକୀ କରଣ ଗମନ
ସଂଯମ କର ପ୍ରାଣିଗଣ ।
ହେ ପ୍ରଜାପତିଙ୍କ ତନୟ !
ଅଟ ଅପଣ ଜ୍ୟୋତିର୍ମୟ ।
ରଶ୍ମିକୁ କରନ୍ତୁ ସଂଯତ,
ତେଜକୁ କରନ୍ତୁ ଅପୃତ୍ତ ।
ତୁମ୍ଭର ଅକୃତି ଶୋଭନ
କରିବି ତେବେ ଦରଶନ ।
ସୂର୍ଯ୍ୟମଣ୍ଡଳେ ଯେ ପୁରୁଷ,
ତାହାଙ୍କୁ କରୁଛି ଗୃହ୍ଣଷ ।
ହେ ସୂର୍ଯ୍ୟ କୃପା କର ଅଜ,
ମୋହର ଏହି ପ୍ରାଣବାୟୁ
ବାୟୁସ୍ୱରୂପ ଅମୃତରେ
ମିଳଇ ଦେହ ପତନରେ ।
ଶରୀର ହେଉ ଭସ୍ମସାତ,
ଆଦେଶ କର ଦିନନାଥ ।
ଆପଣା କୃତକାର୍ଯ୍ୟ ମନ
ବାରେକ କରନ୍ତୁ ସ୍ମରଣ ।
ହେ ଅଗ୍ନି ଦେବ ହେ ଅନଳ,
ଭୁଞ୍ଜିବା ପାଇଁ କର୍ମଫଳ,
ରହଣ ତୁମ୍ଭେ ପୁରୋଭାଗେ
ନେଉନ୍ତୁ ଆମ୍ଭଙ୍କୁ ସୁମାର୍ଗେ ।
ମୋ ମନ୍ତ୍ର ଅହେ ବୈଶ୍ୱାନର !
କୁଟିଳ ପାପ ଦୂର କର ।
ତୁମ୍ଭ ଚରଣେ ବାରମ୍ବାର,
କରୁଛି ଦେବ ନମସ୍କାର ।

ଇତି ଈଶୋପନିଷଦ୍ ।

---

## କେନୋପନିଷଦ୍ ।

କେବଣ ପୁରୁଷ ଅଜ୍ଞା ଅନୁସାରେ ମନ
ଅପଣା ବିଷୟ ପ୍ରତି କରଇ ଗମନ ?

ଶରୀର ମଧ୍ୟରେ ଯେବା ଅତ୍ୟନ୍ତ ପ୍ରଧାନ,
ଯାହା ଆଜ୍ଞାବଶ ହୋଇଥାନ୍ତି ସେହି ପ୍ରାଣ ?
ଯାହାର ଆଜ୍ଞାରେ ଜଗତର ଲୋକଗଣ
କରେଣ ଥାଅନ୍ତି ନିଜ ବାକ୍ୟ ଉଚ୍ଚାରଣ ?
କେଉଁଣ ଦେବତା ବୋଲ ଏହି ନେତ୍ର କର୍ଣ୍ଣେ
ନିଯୁକ୍ତ କରିଅଛନ୍ତି ସ୍ୱକାର୍ଯ୍ୟ ସାଧନେ ?
ଯେ ଦେବ କର୍ଣ୍ଣର କର୍ଣ୍ଣ ମନର ଯେ ମନ,
ବାକ୍ୟର ଯେ ବାକ୍ୟ ଏବଂ ଶକ୍ତିର କାରଣ ।
ଅଟନ୍ତି ସେ ଦେବ ମନ ଆଦ ପ୍ରବର୍ତ୍ତକ,
ପ୍ରାଣର ସେ ପ୍ରାଣ ପୁଣି ନେତ୍ରର ଆଲୋକ ।
ମୁହିଁ କର୍ତ୍ତା, ଏହି ଜ୍ଞାନ ତେଜି ଜ୍ଞାନୀ ନର
ଇହଲୋକ ତ୍ୟାଗ କରି ହୁଅନ୍ତି ଅମର ।
ନେତ୍ରର ନୁହନ୍ତି ଗମ୍ୟ ସେହି ପରବ୍ରହ୍ମ,
ବାକ୍ୟ ପୁଣି ମନର ଯେ ଅଟନ୍ତି ଅଗମ୍ୟ ।
ଆମ୍ଭେମାନେ ତାଙ୍କ କଥା ନ ଜାଣୁ ବିଶେଷ,
କିରୂପ ତା ସେ ଶିଷ୍ୟେ ଦେଉଁ ଉପଦେଶ ?
ଯେତେକ ପଦାର୍ଥ ଅଛି ଜ୍ଞାତ ବା ଅଜ୍ଞାତ,
ସମସ୍ତଙ୍କଠାରୁ ସେହି ବିଭିନ୍ନ ନିତାନ୍ତ ।
ଶୁଣିଅଛୁଁ ପୂର୍ବ ପୂର୍ବ ଆଚାର୍ଯ୍ୟ ସମସ୍ତ
ବ୍ୟାଖ୍ୟା କରିଛନ୍ତି ଏହିପରି ବ୍ରହ୍ମତତ୍ତ୍ୱ ।
ନ ହୁଅନ୍ତି ବାକ୍ୟଦ୍ୱାରା ଯେବା ପ୍ରକାଶିତ,
ଯାହାଙ୍କ ଆଜ୍ଞାରେ ହୁଏ ବାକ୍ୟ ଉଚ୍ଚାରିତ,
ତାହାଙ୍କୁ ଜାଣିବ ତୁମ୍ଭେ ପରବ୍ରହ୍ମ, କିନ୍ତୁ
ଜାଣିବ ନୁହନ୍ତି ବ୍ରହ୍ମ ଉପାସିତ ବସ୍ତୁ ।
ମନ କରି ନ ପାରଇ ଯାହାଙ୍କୁ ମନନ,
ପୁଣି ତାଙ୍କଠାରୁ ଜାତ ହୋଇଅଛି ମନ ।
ବ୍ରହ୍ମବିଦେ ବୋଲିଛନ୍ତି ସେହି ବ୍ରହ୍ମ, କିନ୍ତୁ
ନୁହନ୍ତି ଯେ ବ୍ରହ୍ମ ଏହି ଉପାସିତ ବସ୍ତୁ ।
ଅଜ୍ଞାନେ ଜଡ଼ବସ୍ତୁ କରଣ କଳ୍ପନା
କରିଥାନ୍ତି ପରବ୍ରହ୍ମରୂପେ ଉପାସନା,
ମାତ୍ରକ ନୁହନ୍ତି ବ୍ରହ୍ମ ଜଡ଼ବସ୍ତୁ, ଜାଣ ।
ସେହି ବ୍ରହ୍ମ, ଜ୍ଞାନକୁ ଯେ ଦେଉଛନ୍ତି ଜ୍ଞାନ ।
ଯାହାଙ୍କ ଆଜ୍ଞାରେ ବସ୍ତୁ ଦେଖଇ ନୟନ,
ନୟନ ନ କରିପାରେ ଯାହାଙ୍କୁ ଦର୍ଶନ,
ସେହି ପରବ୍ରହ୍ମ ବୋଲି କର ହୃଦଙ୍ଗମ,
ଉପାସିତ ବସ୍ତୁ କେବେ ନୁହନ୍ତି ଯେ ବ୍ରହ୍ମ ।
ଯାହାଙ୍କ ସ୍ୱରୂପ ଶୁଣି ନ ପାରଇ କର୍ଣ୍ଣ,
ଯାହାଙ୍କ ଆଜ୍ଞାରେ କର୍ଣ୍ଣ କରଇ ଶ୍ରବଣ,
ତାହାଙ୍କୁ ଜାଣିବ ତୁମ୍ଭେ ପରବ୍ରହ୍ମ, କିନ୍ତୁ
ନୁହନ୍ତି ସେ ପରିମିତ ଉପାସିତ ବସ୍ତୁ ।
ନାସିକା ଯାହାଙ୍କୁ କରି ନ ପାରଇ ଘ୍ରାଣ,
ନାସା ତାଙ୍କଠାରୁ ଘ୍ରାଣଶକ୍ତି ପାଏ ଜାଣ,
ଅହେ ବତ୍ସ ! ତାହାଙ୍କୁ ଯେ ବ୍ରହ୍ମ ବୋଲି ଜାଣ,
ନୁହନ୍ତି ଯେ ବ୍ରହ୍ମ ଉପାସିତ ବସ୍ତୁମାନ ।
ଏପ୍ରକାର ତୁମ୍ଭେ ଯେବେ ମନରେ ବିଚାର,
ଅମ୍ଭରେ ପ୍ରତ୍ୟୟ କର ବ୍ରହ୍ମଙ୍କ ଆକାର,
ତେବେ ତ ତୁମ୍ଭର ହୋଇଅଛି ଜ୍ଞାନୋଦୟ,
ବ୍ରହ୍ମର ସ୍ୱରୂପ ଅଳ୍ପ ଜାଣିଛ ନିଶ୍ଚୟ ।
ଦେବତା ମଧ୍ୟରେ ଦେଖ ବ୍ରହ୍ମଙ୍କର କାର୍ଯ୍ୟ,
ଏଥିଲୁ ତୁମ୍ଭର ବ୍ରହ୍ମ ବିଷୟ ବିଚାର୍ଯ୍ୟ ।
ଶିଷ୍ୟ ଆସି ବୋଇଲେ ଯେ ଗୁରୁ ସମୀପକୁ,
ମୁହିଁ କିଛି ଜାଣିଅଛି ବ୍ରହ୍ମ ସ୍ୱରୂପକୁ,
ମାତ୍ରକ ମୋହର ନାହିଁ ଏରୂପ ବିଶ୍ୱାସ,
ପରବ୍ରହ୍ମ ସ୍ୱରୂପକୁ ଜାଣିଛି ବିଶେଷ,
ଏ କଥା ନ ବୋଲିପାରେ ପରବ୍ରହ୍ମେ ଜାଣେ,
କିପରି ବୋଲିବ ତାଙ୍କୁ ବୁଝି ନାହିଁ ଜ୍ଞାନେ ?
ନ ଜାଣେ ବ୍ରହ୍ମଙ୍କୁ ଏହା ବୋଲିବ କିପରି ?
ନ ବୋଲେ ବ୍ରହ୍ମଙ୍କୁ ଅଛୁ ଅମ୍ଭଜ୍ଞାନେ ଧରି ।
ବିଶେଷେ ଏ ବାକ୍ୟ ଅର୍ଥ ଯେଉଁ ଲୋକ ଜାଣେ,
ସେହି ଲୋକ ବୁଝିଅଛି ପରବ୍ରହ୍ମେ ଜ୍ଞାନେ ।
ଯେଉଁ ଲୋକ ବୋଲେ ମୁହିଁ ଜାଣେ ନାହିଁ ବ୍ରହ୍ମ,
ସେହି ଲୋକ କରିଅଛି କିଛି ହୃଦଙ୍ଗମ ।
ଯେ ଲୋକ ବୋଲଇ ମୁହିଁ ପରବ୍ରହ୍ମେ ଜାଣେ,
ନିଶ୍ଚେ ସେହି ବୁଝି ନାହିଁ ପରବ୍ରହ୍ମେ ଜ୍ଞାନେ ।
ବିଶେଷ ଜ୍ଞାନେ ବୋଲିଥାଅନ୍ତି ଏରୂପ,
ଆମ୍ଭେମାନେ ଜାଣୁ ନାହୁଁ ବ୍ରହ୍ମଙ୍କ ସ୍ୱରୂପ ।
ମାତ୍ରକ ଏପରି ବୋଲିଥାଅନ୍ତି ଅଧମେ,
ଆମ୍ଭେମାନେ ବିଶେଷରେ ଜାଣୁ ପରବ୍ରହ୍ମେ ।

ବ୍ରହ୍ମ ପରିବ୍ୟାପ୍ତ ରହିଛନ୍ତି ସର୍ବସ୍ଥାନେ,
ଏ ପ୍ରତ୍ୟୟ ଯାର ସେହି ପରବ୍ରହ୍ମେ ଜାଣେ ।
ଯେଉଁ ଲୋକ ବୁଝିଅଛି ହୃଦେ ଏହି ତତ୍ତ୍ୱ,
ନିଶ୍ଚୟ ସେ ଲାଭ କରିପାରେ ଅମୃତତ୍ୱ ।
ଆତ୍ମସ୍ୱରୂପର ଜ୍ଞାନେ ଲଭ ହୁଏ ଶାନ୍ତି,
ଆତ୍ମବଳଯୁକ୍ତ ଜ୍ଞାନେ ଅମରତ୍ୱଗତି ।
ପରବ୍ରହ୍ମେ ଜାଣିଛନ୍ତି ଯେ ଲୋକ ସକଳ,
ସେମାନଙ୍କ ହୋଇଅଛି ଜନମ ସଫଳ ।
ପରବ୍ରହ୍ମେ ନାହିଁ ଯେଉଁମାନଙ୍କ ବିଶ୍ୱାସ,
ପ୍ରାପ୍ତ ହେବେ ସେହି ଲୋକ ମହାନ ବିନାଶ ।
ଜନ୍ମ, ଜରା, ବ୍ୟାଧି, ମୃତ୍ୟୁ ପୁନଃ ପୁନଃ ଭୋଗ,
ଲଭିବେ ସେ ଅଜ୍ଞ ଲୋକେ ମହାନ ଦୁର୍ଯୋଗ ।
ଅତଏବ ଜ୍ଞାନୀଗଣ ସର୍ବ ପଦାର୍ଥରେ
ଅବସ୍ଥାନ କରୁଛନ୍ତି ବ୍ରହ୍ମ ନିରନ୍ତରେ,
ଉପଲବ୍ଧେ ଏ ସମ୍ବାଦ ହୋଇ ଅବଗତ
କରନ୍ତି ଯେ ଦେହ ଶେଷେ ଲାଭ ଅମୃତତ୍ୱ ।
ବ୍ରହ୍ମ ଦେବତାଙ୍କ ପ୍ରତି ହୋଇଣ ସଦୟ
ଦାନବଗଣଙ୍କୁ ରଣେ କଲେ ପରାଜୟ ।
ମାତ୍ର ଦେବତାଗଣେ କଲେକ ବିଚାର,
ଆମ୍ଭେମାନେ ଦାନବଙ୍କୁ କରିଛୁଁ ସଂହାର ।
ପରବ୍ରହ୍ମ ବିଜୟରେ ଦେବତା ସକଳେ
ମହିମା ପ୍ରକାଶ କଲେ ଜଗତମଣ୍ଡଳେ ।
ଦେବତାଙ୍କ ଅଭିପ୍ରାୟ ହୋଇଣ ବିଦିତ,
ପରବ୍ରହ୍ମ ଆତ୍ମକଥା କଲେ ପ୍ରକାଶିତ ।
ଏପରି ସେ ଦେବଗଣେ ଅଟନ୍ତି ଅଜ୍ଞାନୀ,
ପରବ୍ରହ୍ମ ତତ୍ତ୍ୱ କିଛି ନ ପାରିଲେ ଜାଣି ।
କେଉଁ ଲୋକ ପୂଜ୍ୟତମ ଜଗତମଣ୍ଡଳେ
ନ ଜାଣିଲେ ଏହି ତତ୍ତ୍ୱ ଦେବତାସକଳେ ।
ଦେବଗଣେ ପୃଷ୍ଟ କଲେ ଯାଇ ଅଗ୍ନି ପାଶେ,
କେ ଅଟନ୍ତି ପୂଜନୀୟ ଜାଣିବା ସକାଶେ ।
ଅହେ ଜାତବେଦ ! ତୁମ୍ଭେ ଅଟ ଯେ ସର୍ବଜ୍ଞ,
ତୁମ୍ଭେ ଯାଇଁ ଜ୍ଞାତ ହୁଅ କେବା ପରବ୍ରହ୍ମ ।
ବୋଲନ୍ତେ ଅନଳେ ଏତେ କଥା ଦେବଗଣ,
ଅନଳ ବ୍ରହ୍ମଙ୍କ ପାଁଶେ କଲେକ ଗମନ ।

ପୃଷ୍ଟ କଲେ ପରବ୍ରହ୍ମ, କେ ତୁମ୍ଭେ କେ ଜ୍ଞାନୀ ?
ବୋଇଲେ ଅନଳ ଆମ୍ଭେ ଜାତବେଦ ଅଗ୍ନି ।
ଏହା ଶୁଣି ପରବ୍ରହ୍ମ ପୁଚ୍ଛ କଲେ ପୁଣ,
ବୋଲ ଅହେ ଅଗ୍ନି ! ଅଛି ତୁମ୍ଭର କି ଗୁଣ, ।
ବୋଇଲେ ଅନଳ ଶୁଣ ହୋଇ ସାବଧାନ,
ପୃଥିବୀ ମଧ୍ୟରେ ଅଛି ଯେ ପଦାର୍ଥମାନ,
ଇଚ୍ଛା ମାତ୍ର ତାହା ସବୁ ଦେବୁଁ ଦଗ୍ଧ କରି,
ଅହେ ଦେବ ! ଆମ୍ଭେ ଅଛୁଁ ଏହି ଗୁଣ ଧରି ।
ବୋଇଲେ ଏତେକ ଶୁଣି ପରବ୍ରହ୍ମ ପୁଣ
ଅନଳ ହସ୍ତରେ ଦେଇ କେଶଏକ ତୃଣ ।
ଅହେ ଅଗ୍ନି ! ଏ ତୃଣକୁ ତୁମ୍ଭେ ଦଗ୍ଧ କର,
ବଲ ପ୍ରକାଶିଲେ ଏହା ଶୁଣି ବୈଶ୍ୱାନର ।
ଯେତେକରୂପ ଯତ୍ନ ସେହି କଲେ ପୁଣ ପୁଣ
ଦଗ୍ଧ କରି ନ ପାରିଲେ ସେହି ଗୁଚ୍ଛ ତୃଣ ।
ସେ କାଳରେ ହୃଦେ ହେଲା ତାଙ୍କ ଦିବ୍ୟଜ୍ଞାନ,
ନ ଜାଣେ ମୁଁ କାହା ବଳେ ଅଟେ ବଳୀୟାନ ।
ଏଥିଅନନ୍ତରେ ଏକସଙ୍ଗେ ଦେବଗଣେ
ବୋଇଲେ ବିନୟ କରି ଯାଇଣ ପବନେ,
ଅହେ ବାୟୋ ! ତୁମ୍ଭେ ଯାଇ ଜାଣି ଆସ ଥରେ,
କେ ଅଟନ୍ତି ପୂଜନୀୟ ବ୍ରହ୍ମାଣ୍ଡ ମଧ୍ୟରେ ।
ହେଉ ବୋଲି ଅଙ୍ଗୀକାର କରିଣ ପବନ
ପରମବ୍ରହ୍ମଙ୍କ ପାଶେ କଲେକ ଗମନ,
ପୃଷ୍ଟ କଲେ ବ୍ରହ୍ମ, ତୁମ୍ଭେ କେ ଅଇଲ ଅହ ?
ବୋଇଲେ ପବନ, ଆମ୍ଭ ନାମ ଅଟେ ବାୟୁ,
ଅହେ ଦେବ ! ଆମ୍ଭ ନାମ ଅଟେ ମାତରିଶ,
ଆକାଶ ମଧ୍ୟରେ ତେଣୁ ନିଶ୍ୱାସ ପ୍ରକାଶ ।
ବାୟୁକୁ ପୁଛିଲେ ବ୍ରହ୍ମ, ଅହେ ମହାମତି !
ବୋଲନ୍ତୁ ଆମ୍ଭଙ୍କୁ ଅଛି ତୁମ୍ଭର କି ଶକ୍ତି ?
ପରବ୍ରହ୍ମ ବାକ୍ୟ ଶୁଣି ବୋଇଲେ ପବନ,
ଜଗତ ସମସ୍ତ ଦ୍ରବ୍ୟ କରୁଁ ଯେ ଗ୍ରହଣ ।
ପବନଙ୍କୁ ପରବ୍ରହ୍ମ ବୋଇଲେ ଯେ ପୁଣ
ତାହାଙ୍କ ହସ୍ତରେ ଦେଇ ଏକ ଶୁଷ୍କ ତୃଣ,
କେ ପବନ ! ଏହି ତୃଣ କରନ୍ତୁ ଗ୍ରହଣ,
ଏହା ଶୁଣି ତୃଣ ପାଶେ ଯାଇଣ ପବନ

ବଜ୍ରର ପ୍ରହାରେ ସେହି କଲେହେଁ ଯତନ,
ମାତ୍ର ହରି ନ ପାରିଲେ ତୃଣକୁ ଗ୍ରହଣ ।
ଫେରିଗଲେ କହି ଏହି ଶୁଣ ହେଲା ଅଣି,
ଅଟନ୍ତି ସେ ପୂଜନୀୟ ନ ପାରିଲି ଜାଣି ।
ଏଥିଅନ୍ତେ ଏକତ୍ରିତ ହୋଇ ଦେବଗଣ
ବୋଇଲେ ଇନ୍ଦ୍ରଙ୍କୁ ଯାଇ, ଅହେ ମଘବାନ !
କେ ଅଟନ୍ତି ପୂଜନୀୟ ସେ ମହାପୁରୁଷ,
ତୁମ୍ଭେ ଯାଇ ତାଙ୍କଠାରୁ ତତ୍ତ୍ୱ ଜାଣି ଆସ ।
ସନମତ ହୋଇ ଇନ୍ଦ୍ର ଗଲେ ତାଙ୍କ ପାଶେ,
ତାହାଙ୍କ ମହିମା ତତ୍ତ୍ୱ ଜାଣିବା ସକାଶେ ।
କଲେହେଁ ବାସବ ବହୁ ଯତ୍ନ ଯଥୋଚିତ,
ମାତ୍ର ବ୍ରହ୍ମ ତାଙ୍କ ପାଶୁଁ ହେଲେ ତିରୋହିତ ।
ଆକାଶେ ଦେଖିଲେ ଇନ୍ଦ୍ର ନାରୀସ୍ୱରୂପିଣୀ
ହୈମବତୀ ଉମାଦେବୀ ସୌନ୍ଦର୍ଯ୍ୟଶାଳିନୀ;
ଇନ୍ଦ୍ର ଯାଇ ପୁଚ୍ଛା କଲେ ହୈମବତୀ ପାଶେ,
ପୂଜନୀୟ ବ୍ରହ୍ମତତ୍ତ୍ୱ ଜାଣିବା ସକାଶେ;
ବୋଇଲେ ଇନ୍ଦ୍ରଙ୍କ ମୁଖ ଚାହିଁ ହୈମବତୀ,
ଏହି ପରବ୍ରହ୍ମ ବିଶ୍ୱବ୍ୟାପ୍ତ ହୋଇଛନ୍ତି;
ସେ ବ୍ରହ୍ମପ୍ରଦତ୍ତ ବିଜୟରେ ଦେବଗଣେ
ମହିମାଭୂଷିତ ହୋଇଛନ୍ତି ତ୍ରିଭୁବନେ ।
ଉମାଙ୍କ ବାକ୍ୟରେ ଇନ୍ଦ୍ର ଜାଣିଲେ ନିର୍ଭ୍ରାନ୍ତ,
ବିଶ୍ୱ ବ୍ରହ୍ମାଣ୍ଡର ବୀଜ ସେ ବ୍ରହ୍ମପଦାର୍ଥ ।
ପୂର୍ବକାଳେ ଅଗ୍ନି, ବାୟୁ, ଇନ୍ଦ୍ର ତିନିଜଣ
ନିକଟରେ ଜାଣିଥିଲେ ବ୍ରହ୍ମ ବିବରଣ;
ଏମାନଙ୍କ ଥିବା ଯୋଗୁଁ ପରବ୍ରହ୍ମଜ୍ଞାନ,
ଅନ୍ୟାନ୍ୟ ଦେବତାଠାରୁ ଅଟନ୍ତି ପ୍ରଧାନ;
ସେହି ବ୍ରହ୍ମ ଏହିରୂପେ ହୁଅନ୍ତି ପ୍ରକାଶ,
ତାହାଙ୍କ ଆଜ୍ଞାରେ ହୁଏ ବିଦ୍ୟୁତ ବିକାଶ ।
ନୟନ ନିମିଷପରି ଦେବତାଙ୍କଠାରେ
ବିକଶିତ ହୋଇଥାନ୍ତି ବ୍ରହ୍ମ ବାରେ ବାରେ ।
ଏହା ଅଟେ ଆତ୍ମବିଷୟକ ଉପଦେଶ,
ମନ ଯେହ୍ନେ ତାଙ୍କ କଥା ଜାଣିବ ବିଶେଷ,
ଲଭିବାକୁ ବ୍ରହ୍ମଜ୍ଞାନ ଅଧିକ ବା ଅଳ୍ପ
ନିରନ୍ତର କରୁଥିବ ସାଧକ ସଙ୍କଳ୍ପ;
ସମ୍ଭବରେ ପରବ୍ରହ୍ମ କରିବ କଳ୍ପନା,
ସମ୍ଭବରେ କରିବ ସେ ତାଙ୍କ ଉପାସନା,
ପରବ୍ରହ୍ମେ ଏହିରୂପେ ଜାଣଇ ଯେ ଜ୍ଞାନୀ,
ତାହାଙ୍କୁ କରନ୍ତି ପୂଜା ଜଗତର ପ୍ରାଣୀ ।
ବୋଇଲେ ଆଚାର୍ଯ୍ୟ ତହୁଁ ଶିଷ୍ୟମୁଖ ଚାହିଁ,
ଲୋଡିଥିଲ ବ୍ରହ୍ମତତ୍ତ୍ୱ ଜ୍ଞାନଲାଭପାଇଁ;
ଏ ଉପନିଷଦ ଅଟେ ବ୍ରହ୍ମନିରୂପିଣୀ,
ଏକମାତ୍ର ପ୍ରାଣିଙ୍କର କୈବଲ୍ୟଦାୟିନୀ;
ତପସ୍ୟା ଦମର ସ୍ଥୈର୍ଯ୍ୟ କର୍ମ ବା ବେଦାଙ୍ଗ,
ଉପନିଷତ୍‌ପ୍ରତିପାଦ୍ୟ ବ୍ରହ୍ମବିଦ୍ୟା ଅଙ୍ଗ;
ସତ୍ୟ ଅଟେ ଏହି ଉପନିଷଦ ଆଶ୍ରୟ
ପ୍ରତିଷ୍ଠା ବା ବ୍ରହ୍ମପଦ ଲାଭର ଉପାୟ;
ଏହି ବ୍ରହ୍ମବିଦ୍ୟା ଯେବା ହୁଏ ଅବଗତ,
ନିଶ୍ଚୟ ସେ ସର୍ବପାପୁଁ ହୁଏ ବିମୁକତ;
ଅନନ୍ତ ବ୍ରହ୍ମାଣ୍ଡେ ହୋଇ ସେ ଲୋକ ପୂଜିତ
ସର୍ବଶ୍ରେଷ୍ଠ ସ୍ୱର୍ଗଲୋକେ ହୁଏ ପ୍ରତିଷ୍ଠିତ ।

ଇତି କେନୋପନିଷଦ୍ ସମାପ୍ତ ।

ଶ୍ରୀ ଫକୀରମୋହନ ସେନାପତି ।

---

## ମୁଦ୍ରାରାକ୍ଷସ ।

'ମୁଦ୍ରାରାକ୍ଷସ' ଖଣ୍ଡିଏ ସଂସ୍କୃତ ନାଟକ । ରାଜା ବିଶାଖ ଦତ୍ତ ଏହାର ପ୍ରଣେତା । ଉକ୍ତ ପୁସ୍ତକରୁ ତାଙ୍କର ଏହି ମାତ୍ର ପରିଚୟ ମିଳେ ଯେ ମହାରାଜ ପୃଥୁ ଦତ୍ତ ତାହାଙ୍କର ପିତା ଏବଂ ସାମନ୍ତ ବଟେଶ୍ୱର ଦତ୍ତ ପିତାମହ । ତାଙ୍କର ଅନ୍ୟାନ୍ୟ କଥା ଜାଣିବା ବିଷୟରେ ଆମ୍ଭେମାନେ ସମ୍ପୂର୍ଣ୍ଣ ଅନଭିଜ୍ଞ; ତଥାପି ପୁରାତତ୍ତ୍ୱବିଦ୍‌ମାନେ ଏ ସମ୍ବନ୍ଧରେ ଯାହା ସ୍ଥିର କରିଅଛନ୍ତି ତାହା ଏ ସ୍ଥଳରେ

ଉଲ୍ଲେଖଯୋଗ୍ୟ । ସଂସ୍କୃତଶାସ୍ତ୍ରବିଦ୍ ସୁପଣ୍ଡିତ ଉଇଲସନ୍ ସାହେବ ( H. H. Wilson ) କବିଙ୍କ ସମ୍ବନ୍ଧରେ ଏହା ଅନୁମାନ କରିଅଛନ୍ତି ଯେ "ଇହାଙ୍କ ପିତା ପୃଥୁ ସମ୍ଭବତଃ ଅଜମୀଢ଼ାଧିପତି ଚୌହାନ-କୁଳଶିରୋମଣି, ଯବନଗ୍ରସ୍ତ ଦ୍ୱାଦଶଶତାବ୍ଦୀସ୍ଥ ସେହି ପୃଥୁରାୟ ହେବେ । କାରଣ ରାଜପୁତ୍ର କବି ହେବା ବିଚିତ୍ର ନୁହେ । ନାଟକ ଶେଷରେ ବିଜାତୀୟ ବା ଅପରଲୋକମାନଙ୍କର ବିଜୟ ବର୍ଣ୍ଣିତ ଦେଖି, ଏପରି ଅନୁମାନ ହୁଏ ।" କିନ୍ତୁ ଉଲ୍ଲିଖିତ ମତ ସମ୍ବନ୍ଧରେ ଆମ୍ଭେମାନେ ସନ୍ଦିହାନ । ପ୍ରଥମ ସନ୍ଦେହ ଏହି, ଦତ୍ତୋପାଧିକ ବିଶାଖଙ୍କ ପିତା ରାଜ୍ୟ ନୃପାଧିକ ହେଲେ କିପରି ? ପିତାମହ ମଧ୍ୟ 'ଦତ୍ତ' ଥିଲେ । ଦ୍ୱିତୀୟ ସନ୍ଦେହ, କବିଙ୍କର ଜନ୍ମସ୍ଥାନ ସମ୍ବନ୍ଧରେ ଐତିହାସିକମାନଙ୍କର ମତଭେଦ ଲକ୍ଷିତ ହୁଏ । କର୍ଣ୍ଣେଲ ୱିଲଫୋର୍ଡ (Colonel Wilford ) କହନ୍ତି, ଗୋଦାବରୀ କୂଳରେ ତାହାଙ୍କର ବାସସ୍ଥାନ ଥିଲା । ଯେ ଯାହା କହନ୍ତୁ, କବିଙ୍କ ରଚନାରୁ ଅନୁମାନ ହୁଏ ସେ ରାଜବଂଶୀୟ ଏବଂ ତାହାଙ୍କ ପୂର୍ବପୁରୁଷମାନେ ବୀର ଥିଲେ ।

କବି ଅନ୍ୟାନ୍ୟ ପ୍ରସିଦ୍ଧ କବିମାନଙ୍କ ପନ୍ଥା ଅନୁସରଣପୂର୍ବକ ସ୍ୱନାଟକର ନାମକରଣ କରିଅଛନ୍ତି । କତିପୟ ପ୍ରାଚୀନ କବି ସ୍ୱଗ୍ରନ୍ଥବର୍ଣ୍ଣିତ ବିଷୟର ଗୋଟିଏ ଗୋଟିଏ ସାମାନ୍ୟ ସଙ୍କେତ ଧରି, ସ୍ୱ ସ୍ୱ ନାଟକର ନାମ ନିର୍ଦ୍ଦେଶ କରିଅଛନ୍ତି । ଦୃଷ୍ଟାନ୍ତ ସ୍ୱରୂପ:—ଅଭିଜ୍ଞାନ ଅର୍ଥାତ୍ ସ୍ମାରକଚିହ୍ନ ଦ୍ୱାରା ଶକୁନ୍ତଳାଙ୍କୁ ଗ୍ରହଣ କରିଥିବାରୁ ନାଟକର ନାମ 'ଅଭିଜ୍ଞାନ ଶକୁନ୍ତଳ' ଏବଂ ମୃତ୍ଶକଟିକା ବା ମାଟି ଶଗଡ଼ ଲାଗି ନାୟକଙ୍କ ସମସ୍ତ କଥା ସପ୍ରମାଣ ହୋଇଥିବାରୁ ନାମ 'ମୃଚ୍ଛକଟିକ'; ସେହିପରି ଏଥିରେ ମୁଦ୍ରା (ମୋହର) ଦ୍ୱାରା ରାକ୍ଷସ (ମନ୍ତ୍ରୀ) ପରିଗୃହୀତ ହୋଇଥିବାରୁ ନାମ 'ମୁଦ୍ରାରାକ୍ଷସ' ହେଲା ।

ନାଟକର ବିଶେଷତ୍ୱ:—ରଚନାପ୍ରଣାଳୀ ଓ ବିଷୟନିର୍ବାଚନ ବିଷୟରେ ମୁଦ୍ରାରାକ୍ଷସ ଅନ୍ୟାନ୍ୟ ସଂସ୍କୃତ ନାଟକଠାରୁ ପୃଥକ୍, ଏପ୍ରକାର ନାଟକ ସଂସ୍କୃତ ସାହିତ୍ୟରେ ନାହିଁ କହିଲେ ଚଳେ । ଏଥିରେ ଯୁବକ ଯୁବତୀର ପ୍ରେମମିଳନ ନାହିଁ, କି ବିଶୁଦ୍ଧ ଦାମ୍ପତ୍ୟ ପ୍ରଣୟର ସୁମଧୁର ବର୍ଣ୍ଣନା ନାହିଁ, କିମ୍ବା ପୁରାଣ ପୁରୁଷମାନଙ୍କର ମାହାତ୍ମ୍ୟକୀର୍ତ୍ତନ ନାହିଁ । ଏହା ନାୟିକାଚରିତ୍ରବିହୀନ, ବିଷୟକୂଟ-ନୀତିପୂର୍ଣ୍ଣ ରାଜନୈତିକ ନାଟକ । ନାଟକର ପିଣ୍ଡ ଐତିହାସିକ ଭିତ୍ତି ଉପରେ ଅବସ୍ଥାପିତ । କବି 'ନାଟକଂ ଖ୍ୟାତବୃତ୍ତଂ ସ୍ୟାତ୍ ପଞ୍ଚସନ୍ଧିସମନ୍ୱିତଂ' ପ୍ରତି ଦୃଷ୍ଟି ରଖି ଯୋଗ୍ୟ ବିଷୟ ଅବଲମ୍ବନପୂର୍ବକ ନାଟକକୁ ପାଞ୍ଚ ଅଙ୍କରେ ବିଭକ୍ତ କରିଅଛନ୍ତି ଏବଂ ପ୍ରାରମ୍ଭରେ ଯେପରି ବୀଜ ବପନ କରନ୍ତି, ଶେଷରେ ସେହିପରି ଫଳ ଦେଖାଇଅଛନ୍ତି । ମୁଦ୍ରାରାକ୍ଷସର ରଚନାଶୃଙ୍ଖଳା ବା ଆନୁପୂର୍ବିକ ସଙ୍ଗତି ଅତ୍ୟଳ୍ପ ସଂସ୍କୃତ ନାଟକରେ ଥିବ ।

ଚତୁର କବି ଯୁକ୍ତି ଓ ଦକ୍ଷତା ସହକାରେ ନାଟ୍ୟୋକ୍ତ ବିଷୟକୁ ସୁଶୃଙ୍ଖଳ କରିଅଛନ୍ତି, ଶୃଙ୍ଖଳାବିହୀନ ନାଟକ ତାହାଙ୍କର ଅପ୍ରୀତିକର ହେଉଥିଲା ପରି ଅନୁମାନ ହୁଏ । ନିମ୍ନୋଦ୍ଧୃତ ଉକ୍ତିରୁ କବିଙ୍କର ପରିଶ୍ରମ ଓ ମତର ପ୍ରମାଣ ମିଳିବ । ଯଥା:—'କର୍ତ୍ତା ବା ନାଟକାନାଂ ଇମମନୁଭବତି କ୍ଲେଶମସ୍ମଦ୍ୱିଧୋ ବା—୪ର୍ଥ, 'ତତ୍ କିଂ ନିମିତ୍ତମେତତ୍ କୁନାଟକସ୍ୟେବ ଅନ୍ୟତ୍ ମୁଖେ ଅନ୍ୟତ୍ ନିର୍ବହଣେ'—୬ଷ୍ଠ, ଅର୍ଥାତ୍ ମୂଳରେ ପ୍ରକାରେ, ଶେଷରେ ଅନ୍ୟ ପ୍ରକାରେ । ବୀରରସ ମୁଦ୍ରାରାକ୍ଷସର ଅଙ୍ଗୀ । ଏଥିରୁ ପାଠକମାନେ ନାଟକଲିଖିତ ଭାଷାର ଓଜସ୍ୱିତା ଏବଂ ଦୁର୍ବୋଧତା ନିଶ୍ଚିତ ଅନୁମାନ କରି ପାରିବେ । ଅଧିକନ୍ତୁ ମଧ୍ୟ ବିଷୟ ଯେନ ତଦାଶ୍ରିତ ଭାଷା ବିଭିନ୍ନ ଆକାର ଧାରଣ କରିଥାଏ । ମୁଦ୍ରାରାକ୍ଷସର ନାୟକ ପାତ୍ର ପ୍ରଭୃତି ରାଜା, ରାଜପୁରୁଷ ଓ ରାଜକୀୟ ଭୃତ୍ୟ ।

ଅଭିନ୍ନ ଅନ୍ୟଶ୍ରେଣୀସ୍ଥ ଲୋକମାନଙ୍କର ଚରିତ୍ର ଏଥିରେ ନାହିଁ ।

ସଂକ୍ଷିପ୍ତ କଥା—ମୁଦ୍ରାରାକ୍ଷସର କଥାସ୍ତୁ ଐତିହାସିକ ସତ୍ୟ ଉପରେ ପ୍ରତିଷ୍ଠିତ ଥିଲେହେଁ ସେ ସମ୍ବନ୍ଧରେ ବହୁପ୍ରକାର ଆଖ୍ୟାୟିକା ପ୍ରଚଳିତ ଅଛି । ସେହି ଆଖ୍ୟାୟିକାଗୁଡ଼ିକ କଳ୍ପନାର ଲଳିତ କଳାରେ ରଞ୍ଜିତ ହୋଇ ବିଚିତ୍ରରୂପ ଧାରଣ କରିଅଛି ସତ୍ୟ, କିନ୍ତୁ ମୂଳ୍ଚା ଏକ । ପାଠକମାନଙ୍କ ନିକଟରେ ଏହା ସୁବିଦିତ ଯେ ପୂର୍ବେ ମଗଧଦେଶରେ ନନ୍ଦବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ଉକ୍ତ ରାଜବଂଶର ଶେଷ ରାଜା ନନ୍ଦ । କାହାରି କାହାରି ମତରେ ତାହାଙ୍କ ନାମ 'ମହାପଦ୍ମ' ଏବଂ କାହାରି ମତରେ 'ସୁଧର୍ମ'। ଉକ୍ତ ରାଜାଙ୍କ ମହିଷୀ ସୁନନ୍ଦାଙ୍କ ଗର୍ଭରୁ ନଅଟି ପୁତ୍ର ଜାତ ହୋଇଥିଲେ । କିନ୍ତୁ ସୁନନ୍ଦାଙ୍କ ଅପେକ୍ଷା ମୁରାନାମ୍ନୀ ଗୋଟିଏ ପରମରୂପବତୀ ଶୂଦ୍ରା ରାଜାଙ୍କର ଅଧିକ ପ୍ରୀତିଭାଜନ ହୋଇଥିଲେ । ତାହାଙ୍କ ଗର୍ଭରୁ ମୌର୍ଯ୍ୟକୁଳଚନ୍ଦ୍ର ମହାଯଶା ଚନ୍ଦ୍ରଗୁପ୍ତ ଜନ୍ମଗ୍ରହଣ କରିଥିଲେ । ଚନ୍ଦ୍ରଗୁପ୍ତ ପ୍ରତିଭା ଓ ଧୀମତ୍ତାରେ ଅନ୍ୟାନ୍ୟ ରାଜକୁମାରମାନଙ୍କଠାରୁ ବଳି ପଡ଼ିବାରୁ ତାଙ୍କୁ କେହି ସହି ପାରୁ ନ ଥିଲେ । ଥରେ ରାଜା ପୈତୃକ ଶ୍ରାଦ୍ଧ ନିମିତ୍ତ ଜଣେ ଉପଯୁକ୍ତ ବ୍ରାହ୍ମଣ ବରଣ କରିବାରେ ଚନ୍ଦ୍ରଗୁପ୍ତଙ୍କୁ (କାହାରି କାହାରି ମତରେ ଭୃତ୍ୟ ବିଶେଷ) ନିଯୁକ୍ତ କଲେ । ସେ ବାଟରେ ସର୍ବଶାସ୍ତ୍ରବିଶାରଦ, କୋପନସ୍ୱଭାବ ଚାଣକ୍ୟଙ୍କୁ ଭେଟି, ତାହାଙ୍କୁ ରାଜାଙ୍କ ନିକଟକୁ ଘେନିଗଲେ । ରାଜା ଚାଣକ୍ୟଙ୍କର କୁତ୍ସିତରୂପ ଦେଖି ତାହାଙ୍କୁ ଅପମାନିତ କରିବାରୁ ସେ କ୍ରୋଧଭରରେ ଆସନରୁ ଉଠି ଶିଖା ଉନ୍ମୋଚନ ପୂର୍ବକ ପ୍ରତିଜ୍ଞା କଲେ, 'ଯେପର୍ଯ୍ୟନ୍ତ ନନ୍ଦବଂଶ ଉନ୍ମୂଳନପୂର୍ବକ ଅନ୍ୟକୁ ସିଂହାସନାରୂଢ଼ ନ କରେଁ, ସେପର୍ଯ୍ୟନ୍ତ ଏହି ଶିଖା ମୁକୁଳା ଥିବ । ଯେ ରାଜସିଂହାସନ କାମନା କରେ, ସେ ମୋର ଅନୁଗମନ କରୁ ।' ଏହା ଶୁଣି ଚନ୍ଦ୍ରଗୁପ୍ତ ତାହାଙ୍କ ପଦାନୁସରଣ କଲେ । ଆଉ ଥରେ ଚାଣକ୍ୟ ପ୍ରଥମେ ପର୍ବତେଶ୍ୱର ନାମକ କୌଣସି ଅନାର୍ଯ୍ୟ ରାଜାଙ୍କ ସାହାଯ୍ୟରେ ପୁଷ୍ପପୁରରାଜଧାନୀ ଅବରୋଧ ପୂର୍ବକ ନନ୍ଦରାଜାଙ୍କୁ ନିହତ କଲେ ଏବଂ ଅନନ୍ତର ଚନ୍ଦ୍ରଗୁପ୍ତଙ୍କୁ ସିଂହାସନାରୂଢ଼ କରାଇଲେ । ତତ୍ପରେ ନାନା କୌଶଳ ଓ କୂଟନୀତି ପ୍ରୟୋଗରେ ସନ୍ଧି ବିଶ୍ଳେଷଣପୂର୍ବକ ଶକ, ଯବନ, କିରାତ, କାମ୍ବୋଜ, ପାରସିକ, ବାହ୍ଲୀକ ପ୍ରଭୃତିଙ୍କର ପରାଜୟ ଏବଂ ସାହାଯ୍ୟକାରୀ ପର୍ବତେଶ୍ୱରଙ୍କର ବିନାଶସାଧନ କରି ନନ୍ଦବଂଶର ସମୂଳ ଉଚ୍ଛେଦରେ ପ୍ରବୃତ୍ତ ହେଲେ । ଚନ୍ଦ୍ରଗୁପ୍ତଙ୍କ ରାଜ୍ୟ ନିଷ୍କଣ୍ଟକ ହେଲା ସତ୍ୟ, କିନ୍ତୁ ଭୂତପୂର୍ବ ରାଜାଙ୍କ ପ୍ରଧାନ ମନ୍ତ୍ରୀ, ପ୍ରଭୁଭକ୍ତ ରାକ୍ଷସଙ୍କୁ ହସ୍ତଗତ ନ କଲେ ରାଜ୍ୟ-ଶାସନ ସୁଶୃଙ୍ଖଳ ଓ ଦୃଢ଼ ହେବ ନାହିଁ, ଏହା ହୃଦୟଙ୍ଗମ କରି କୁଟିଳମତି ଚାଣକ୍ୟ ତାଙ୍କୁ ନାନା ଫାନ୍ଦରେ ପକାଇ ଶେଷରେ ଅଗତ୍ୟା ରାକ୍ଷସଙ୍କୁ ସ୍ୱହସ୍ତବର୍ତ୍ତୀ କରିଥିଲେ । ସର୍ବ-ଶେଷରେ ରାକ୍ଷସ ବାଧ୍ୟ ହୋଇ ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରିତ୍ୱ ଗ୍ରହଣ କଲେ । ମହାମତି ଚାଣକ୍ୟ, ସଙ୍କଳ୍ପ-ଦ୍ୱୟ ଅର୍ଥାତ୍ ଚନ୍ଦ୍ରଗୁପ୍ତଙ୍କର ରାଜ୍ୟାଭିଷେକ ଏବଂ ରାକ୍ଷସଙ୍କର ସୁଦ୍‌ମିଳନ ସଫଳ ହେବାର ଦେଖି କକ୍ଷବିଷ୍ଟାରଣପୂର୍ବକ ଏହା କହି ଚରମୁକ୍ତ ଶିଖା ବନ୍ଧନ କଲେ ।

ରାକ୍ଷସେନ ସମଂ ମୈତ୍ରୀ ରାଜ୍ୟେ ଚାରୋପିତା ବୟଂ ।
ନନ୍ଦାଶ୍ଚୋନ୍ମୂଳିତାଃ ସର୍ବେ କିଂ କର୍ତ୍ତବ୍ୟମତଃପରମ୍ ?
ଏବଂ ବାହନଦସ୍ତ୍ରିଭ୍ୟାଂ ମୁଦ୍ୟନ୍ତାଂ ସର୍ବବନ୍ଧନଂ ।
ପୂର୍ଣ୍ଣପ୍ରତିଜ୍ଞେନ ମୟା କେବଳଂ ବଧ୍ୟତେ ଶିଖା ।

ଅର୍ଥାତ୍ ବନ୍ଦୀଠାରୁ ହସ୍ତ୍ୟଶ୍ୱପର୍ଯ୍ୟନ୍ତ ସମସ୍ତଙ୍କୁ ବନ୍ଧନରୁ ମୁକ୍ତି ଦିଆଯାଉ, କେବଳ ମୋହରି ଏହି ମୁକୁଳା ଶିଖା ବନ୍ଧା ହେଉ ।

ଚାଣକ୍ୟ ଓ ଚନ୍ଦ୍ରଗୁପ୍ତ—ଚନ୍ଦ୍ରଗୁପ୍ତ ଭାରତରେ କିପରି ପ୍ରତାପବାନ୍ ରାଜା ଥିଲେ, ତାହା ପାଠକ-ମାନେ ଇତିହାସପାଠରୁ ଜାଣିଥିବେ । ସେ

ଗ୍ରୀକ୍ ବୀର ଆଲେକଜାଣ୍ଡରଙ୍କର ସମସାମୟିକ ଗ୍ରୀକ୍‌ମାନେ ତାହାଙ୍କୁ 'ସନ୍ଦ୍ରକୁପ୍ତ' ନାମରେ ନିର୍ଦ୍ଦେଶ କରିଅଛନ୍ତି । ଗ୍ରୀକ୍‌ମାନଙ୍କ 'ପାଲିବୋଥ୍ର' ଏବଂ ହିନ୍ଦୁମାନଙ୍କ 'ପାଟଳୀପୁତ୍ର' ଏକସ୍ଥାନ । ଗଙ୍ଗାତୀରବର୍ତ୍ତିନୀ ଏହି ନଗରୀ (ଆଧୁନିକ ନାମ 'ପାଟନା') ମୌର୍ଯ୍ୟ ଚନ୍ଦ୍ର-ଗୁପ୍ତଙ୍କର ରାଜଧାନୀ ଥିଲା । ଚନ୍ଦ୍ରଗୁପ୍ତଙ୍କ ଯଶଃସୌରଭ ସେତେବେଳେ ଭାରତବ୍ୟାପୀ ଥିଲା । ଗ୍ରୀକ୍ ଦୂତ ପ୍ରଖ୍ୟାତନାମା ମେଗାସ୍ଥିନିସ୍ ତାଙ୍କର ନିକଟକୁ ପ୍ରେରିତ ହୋଇଥିଲେ ଏବଂ ତଦୀୟ ବିଚିତ୍ରଶାଲ୍ୟ ବା ରାଜକୁଳ ଦେଖିଥିଲେ । ରାଜନୀତିବିଶାରଦ କୁଟିଳମତି ଚାଣକ୍ୟ ଚନ୍ଦ୍ରଗୁପ୍ତଙ୍କର ପରମ ସଖା ଏବଂ ସହାୟ ଥିଲେ । ତାଙ୍କର ପିତା ଚଣକ ନୀତି-ପଣ୍ଡିତ ଥିବାରୁ ସେ ଚାଣକ୍ୟ ନାମରେ ଅଭିହିତ ହେଉଥିଲେ । ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱ ସମୟରେ ବିଷ୍ଣୁଗୁପ୍ତନାମକ ବ୍ରାହ୍ମଣ ପଣ୍ଡିତଙ୍କର ନାମୋଲ୍ଲେଖ ଦେଖାଯାଏ । ଐତିହାସିକମାନେ ବିଷ୍ଣୁଗୁପ୍ତ ଏବଂ ଚାଣକ୍ୟ ଏକ ବୋଲି ନିର୍ଦ୍ଦେଶ କରନ୍ତି । ଏ ସ୍ଥଳରେ ୱିଲସନ୍ ଲେଖିଅଛନ୍ତି "This Brahman was named Vishnu Gupta, and was deeply read in the science of government taught by 'Usanas' (Saturn), and in astronomy; his father a teacher of *niti* or policy, was named 'Chanaka' and hence the son is called Chanakya. କିନ୍ତୁ ଏହି ମତ ସମ୍ପୂର୍ଣ୍ଣ ସତ୍ୟ ନୁହେ । ସଂସ୍କୃତ ଗ୍ରନ୍ଥରେ ଯେଉଁ ସ୍ଥାନରେ ଚାଣକ୍ୟଙ୍କ ନାମୋଲ୍ଲେଖ ଅଛି କୌଣସିଠାରେ ବିଷ୍ଣୁଗୁପ୍ତ ନାମ ପ୍ରାପ୍ତ ନାହିଁ । ତେବେ ମୁଦ୍ରା-ରାକ୍ଷସରେ ଗୋଟିଏ ଦୁଇଟି ସ୍ଥାନରେ ଲେଖା ଅଛି, ଚାଣକ୍ୟ—"ଅନ୍ୟଚ ନନ୍ଦମିବ ବିଷ୍ଣୁଗୁପ୍ତଃ' ୧ମ, ରାକ୍ଷସ—ଭୋ ବିଷ୍ଣୁଗୁପ୍ତ ନଃ ସନ୍ଦେହଃ—୭ମ । ଏଥିରୁ ସପ୍ରମାଣ ହେଉଅଛି, ଚାଣକ୍ୟ ଓ ବିଷ୍ଣୁଗୁପ୍ତ ଏକ । କିନ୍ତୁ ସେ ଜ୍ୟୋତିଃଶାସ୍ତ୍ରଜ୍ଞ ନୁହନ୍ତି । ବିଷ୍ଣୁ ଶର୍ମା ନାମକ ଅପର ଜଣେ ନୀତିବେତ୍ତା ଜ୍ୟୋତିଃ-ଶାସ୍ତ୍ରଜ୍ଞ ବ୍ରାହ୍ମଣ ଚାଣକ୍ୟଙ୍କର ସହାଧ୍ୟାୟୀ ଏବଂ ସଖା ଥିଲେ । ହିତୋପଦେଶପ୍ରଣେତା ସେହି ବିଷ୍ଣୁ ଶର୍ମା ମଧ୍ୟ ଚାଣକ୍ୟଙ୍କ ପରାମର୍ଶାନୁସାରେ ଚନ୍ଦ୍ର-ଗୁପ୍ତଙ୍କ ରାଜତ୍ୱ ଦୃଢ଼ୀକରଣ ବିଷୟରେ ସାହାଯ୍ୟ କରିଥିଲେ । ଶର୍ମା କ୍ଷପଣକ (ବୌଦ୍ଧ ବା ଜୈନ) ବେଶରେ ଶତ୍ରୁପକ୍ଷରେ ମିଳି ସେମାନଙ୍କ ଛିଦ୍ର ନିରୂପଣ କରି ନ ଥିଲେ ଚାଣକ୍ୟଙ୍କର ମନୋରଥ ସଫଳ ହୋଇ ପାରି ନ ଥାନ୍ତା; ଫଳତଃ ସେ ଚାଣକ୍ୟଙ୍କର ଦକ୍ଷିଣ ହସ୍ତ ଥିଲେ । ଏହି ବିଷ୍ଣୁ ଗୁପ୍ତ ଏବଂ ବିଷ୍ଣୁ ଶର୍ମାଙ୍କ ସମ୍ବନ୍ଧରେ ଭାରତୀୟ ପଣ୍ଡିତମାନଙ୍କ ମଧ୍ୟରେ ମଧ୍ୟ ଅଦ୍ୟାବଧି ଭ୍ରାନ୍ତ ଧାରଣା ଅଛି । ନିମ୍ନୋଦ୍ଧୃତ ଉକ୍ତିଟିରୁ ଉକ୍ତ ଭ୍ରାନ୍ତିର କିଞ୍ଚିତ୍ ନିରସନ ହୋଇ ପାରିବ । ଯଥା—'ଚାଣକ୍ୟ—++ ଅସ୍ତି ଚ ଅସ୍ମାକଂ ସହାଧ୍ୟାୟି ମିତ୍ରଂ ବିଷ୍ଣୁଶର୍ମା ନାମ ବ୍ରାହ୍ମଣଃ । ସ ଚ ଔଶନସ୍ୟଦଣ୍ଡନୀତ୍ୟୌ ଚତୁଃ-ଷଷ୍ଟ୍ୟଙ୍ଗେ ଜ୍ୟୋତିଃଶାସ୍ତ୍ରେ ଚ ପରଂ ପ୍ରାବୀଣ୍ୟ-ମୁପଗତଃ । ତତ ମୟା କ୍ଷପଣକ ଲିଙ୍ଗଧାରୀ ନନ୍ଦବଧ-ପ୍ରତିଜ୍ଞାନନ୍ତରମେବ କୁସୁମପୁରମୁପନୀୟ ସର୍ବନନ୍ଦା-ମାତ୍ୟୈଃ ସହ ସଖ୍ୟଂ ଗ୍ରାହିତଃ, ବିଶେଷତଶ୍ଚ ତସ୍ମିନ୍ ରାକ୍ଷସଃ ସମୁତ୍ପନ୍ନବିଶ୍ରମ୍ଭଃ । ତେନ ଇଦାନୀଂ ମହତ୍ପ୍ରୟୋଜନମନୁଷ୍ଠେୟଂ ଭବିଷ୍ୟତି ।" (ମୁଦ୍ରା-୧ମ) । ପ୍ରବଳପ୍ରତାପ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱକାଳରେ ଯେ ଉକ୍ତ ଦୁଇଜଣ ପ୍ରସିଦ୍ଧ ପଣ୍ଡିତ ଥିଲେ ତାହା ନୁହେ, ଅନ୍ୟ ଥିବାର ଅନୁମାନ ହୁଏ । ବୃହତ୍‌କଥା (ନନ୍ଦଚରିତ) ଓ କଥାସରିତ୍‌ସାଗରର ପ୍ରଣେତା ସୋମଶର୍ମା ବା ସୋମଭଟ୍ଟ ମଧ୍ୟ ତଦାନୀନ୍ତନ ବୋଲି ଅନେକ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତ ଅନୁମାନ କରନ୍ତି । କିନ୍ତୁ ପୂର୍ବୋକ୍ତ ବ୍ରାହ୍ମଣପଣ୍ଡିତଦ୍ୱୟଙ୍କ କୌଶଳରେ ଗୋଟିଏ ରାଜ୍ୟର କି ଭୀଷଣ ପରିବର୍ତ୍ତନ ହୋଇଥିଲା ତାହା ଭାବିଲେ ଅବାକ୍ ହେବାକୁ ହୁଏ ।

କବିତ୍ୱ:—ମୁଦ୍ରାରାକ୍ଷସର କବି କାଳିଦାସ ପ୍ରଭୃତି କବିଙ୍କ ପରି ଶକ୍ତିମାନ୍ ଓ ଭାବୁକ ନୁହନ୍ତି, କିନ୍ତୁ ଚତୁରତା ଓ ନୟମାନୁବର୍ତ୍ତିତା ବିଷୟରେ

ଅନ୍ୟାନ୍ୟ କବିମାନଙ୍କ ବଳ ପଡ଼ିବ । ସେ ତାହାଙ୍କ ରଚନାରେ ସୌନ୍ଦର୍ଯ୍ୟ-କଳାର ସୁନ୍ଦର ସ୍ନିଗ୍ଧ ଜ୍ୟୋତି ଦେଖାଇ ପାରି ନାହାନ୍ତି ସତ୍ୟ, କିନ୍ତୁ ଧର୍ମ ଏବଂ ଶୌର୍ଯ୍ୟର ନୟନତର୍ପକ ତେଜଃ ପ୍ରଦାନ କରି ଅଛନ୍ତି । ତାହାଙ୍କ ରଚନା ଯେପରି ତେଜଃପରିପୂରିତ, ଭାଷା ସେହିପରି ଓଜସ୍ୱିନୀ । ସ୍ଥାନେ ସ୍ଥାନେ ବର୍ଣ୍ଣନା ଅତି ମନୋହର ହୋଇଅଛି । ଅରଣ୍ୟରେ ନନ୍ଦବଂଶୀୟ ବୃଦ୍ଧ ସର୍ବାର୍ଥସିଦ୍ଧିଙ୍କର ବିନାଶସାଧନ, ପ୍ରଧାନ କର୍ମଚାରୀ ଶକଟ ଦାସଙ୍କର ଦଣ୍ଡବିଧାନ, ରାକ୍ଷସର ପରମ ମିତ୍ର ଚନ୍ଦନ ଦାସ ନାମକ ସମ୍ଭ୍ରାନ୍ତ ଲୋକର ବନ୍ଧନ, ବିଷକନ୍ୟାଦ୍ୱାରା ପର୍ବତେଶ୍ୱରଙ୍କ ମୃତ୍ୟୁ, ମିଥ୍ୟାପବାଦରେ ରାକ୍ଷସ ଓ ମଳୟକେତୁଙ୍କର ମୈତ୍ରୀଭଙ୍ଗ, ଜାଲମୋହର-ଦ୍ୱାରା ରାକ୍ଷସଙ୍କର ବଳକ୍ଷୟ ଇତ୍ୟାଦି ଯେପରି ଚାତୁରୀ ସହକାରେ ସମ୍ପାଦିତ ହୋଇଅଛି, ତାହା ମୁଦ୍ରାରାକ୍ଷସ ପାଠ କଲେ ପାଠକମାନେ ଉତ୍ତମ-ରୂପେ ଜାଣି ପାରିବେ ଏବଂ କବିଙ୍କର କ୍ଷମତା ଅନୁମାନ କରି ପାରିବେ । ନାଟକର ଆମୂଳାନ୍ତ କେବଳ ସନ୍ଧି ବିଗ୍ରହ, ମନ୍ତ୍ରଣା ଓ କୂଟନୀତିରେ ପୂର୍ଣ୍ଣ । କିନ୍ତୁ ସେହି ସବୁ କୌଶଳ ବା ନୀତି ପ୍ରୟୋଗ ଅନ୍ୟାୟ ଉଦ୍ଦେଶ୍ୟରେ ହୋଇଥିଲେହେଁ ପଢ଼ିଲା ବେଳେ ତାହା ପାଠକଙ୍କୁ ସେତେ ଅନ୍ୟାୟ ବୋଲି ଜଣା ଯାଏ ନାହିଁ । ସେଥିଲାଗି କବି ଯଥେଷ୍ଟ ପ୍ରଶଂସାର୍ହ । ମୁଦ୍ରାରାକ୍ଷସରେ ଚନ୍ଦନଦାସ-ଗୃହିଣୀଙ୍କ ଅବତାରଣା ଭିନ୍ନ ସ୍ତ୍ରୀ-ଚରିତ୍ରର ନାମଗନ୍ଧ ନାହିଁ; ଅନ୍ୟ କୌଣସି ସଂସ୍କୃତ ନାଟକରେ ଏପରି ଦେଖାଯାଏ ନାହିଁ । ଏହି ବିଶେଷତ୍ୱ ସମ୍ବନ୍ଧରେ ୱିଲସନ୍ କହିଅଛନ୍ତି—A Peculiarity that would be scarcely thought possible. in the dramatic literature of Europe.' ଚାଣକ୍ୟଚରିତ୍ର ଟିକିଏ ଅତିରଞ୍ଜିତ ହେଲାପରି ଲାଗେ । ସର୍ବତ୍ର ଚାଣକ୍ୟ ମୁଖରେ ତେଜୋଗର୍ବପୂର୍ଣ୍ଣ କଥା; ଗୋଟିଏ ଦୁଇଟି ଉକ୍ତି ଉଦ୍ଧୃତ ହେଲା—

୧—ଶୋଚନ୍ତୋଽବନତୈର୍ନରାଧିପଭୟା-
ଦ୍ଧିକ୍ ଶବ୍ଦଗର୍ଭୈର୍ମୁଖୈ-
ର୍ମାମଗ୍ର୍ୟାସନତୋଽବକୃଷ୍ଟମବଶଂ
ଯେ ଦୃଷ୍ଟବନ୍ତଃ ପୁରା ।
ତେ ପଶ୍ୟନ୍ତି ତଥୈବ ସମ୍ପ୍ରତି ଜନା
ନନ୍ଦଂ ମୟା ସାନ୍ୱୟଂ
ସିଂହେନେବ ଗଜେନ୍ଦ୍ରମଦ୍ରିଶିଖରାତ୍
ସିଂହାସନାତ୍ ପାତିତମ୍ ।

ଅର୍ଥାତ୍ ରାଜା ମୋତେ ଆସନରୁ ତଡ଼ି ଦେଲା ବେଳେ ଯେଉଁମାନେ ଅତି ଦୁଃଖିତ ହୋଇ ଭୟରେ କିଛି କହି ନ ପାରି ଅଧୋମୁଖ ହୋଇ ଥିଲେ, ସେହିମାନେ ବର୍ତ୍ତମାନ ଦେଖନ୍ତୁ, ସିଂହ ପର୍ବତ ଶିଖରରୁ ବୃହତ୍କାୟ ଗଜକୁ ଗଡ଼ାଇ ଦେଲା ପରି ମୁଁ କିପରି ରାଜାଙ୍କୁ ସବଂଶରେ ସିଂହାସନଭ୍ରଷ୍ଟ କରିଅଛି ।

୨—ଯେ ଯାତାଃ କିମପି ପ୍ରଧାର୍ଯ୍ୟ ହୃଦୟେ
ପୂର୍ବଂ ଗତା ଏବ ତେ
ଯେ ତିଷ୍ଠନ୍ତି ଭବନ୍ତୁ ତେଽପି ଗମନେ
କାମଂ ପ୍ରକାଶୋଦ୍ୟମାଃ ।
ଏକା କେବଳମର୍ଥସାଧନବିଧୌ
ସେନା ଶତେଭ୍ୟୋଽଧିକା
ନନ୍ଦୋନ୍ମୂଳନଦୃଷ୍ଟବୀର୍ଯ୍ୟମହିମା
ବୁଦ୍ଧିସ୍ତୁ ମାଗାନ୍ମମ ।

ଅର୍ଥାତ୍ ସମସ୍ତ ସେନାମାନେ ଯାଆନ୍ତୁ, ଶତସେନା ଅପେକ୍ଷା ଅଧିକତର କାର୍ଯ୍ୟସାଧନକ୍ଷମ ମୋହର ବୁଦ୍ଧି କେବଳ ଥାଉ । କେବଳ ବୁଦ୍ଧି ବଳରେ ମୁଁ ସବୁ ସମ୍ପାଦନ କରି ପାରିବି ।

୩—ଆଲୁଦ୍ୟାରୂଢ଼କୋପସ୍ଫୁରଣବିଷମିତା-
ଗ୍ରାଙ୍ଗୁଳୀମୁକ୍ତଚୂଡ଼ାଂ
ଲୋକପ୍ରତ୍ୟକ୍ଷମୁଗ୍ରାଂ ସକଳରିପୁକୁଳୋ-
ଚ୍ଛେଦଦୀର୍ଘାଂ ପ୍ରତିଜ୍ଞାଂ ।
କେନାନ୍ୟେନାବଲିପ୍ତା ନବନବତି ଶତ
ଦ୍ରବ୍ୟକୋଟୀଶ୍ୱରାସ୍ତେ
ନନ୍ଦାଃ ପର୍ଯ୍ୟାୟଭୂତାଃ ପଶବଇବ ହତାଃ
ପଶ୍ୟତୋ ରାକ୍ଷସସ୍ୟ ।

ଅର୍ଥାତ୍ ମୋ ଛଡ଼ା ଆଉ କଏ ନନ୍ଦବଂଶରୂପ ମହାବୃକ୍ଷକୁ ହର ରାକ୍ଷସ ଅପରେ ଗର୍ବୋନ୍ନତ କୋଟୀଶ୍ୱର ଏହି ନନ୍ଦକୁମାରମାନଙ୍କୁ ପଶୁ ପରି ବଧ କଲା ?

ଉକ୍ତ କୌଟିଲ୍ୟଙ୍କର କୂଟନୀତିରେ ରାଜ୍ୟର ସର୍ବେସର୍ବା ନନ୍ଦବଂଶଭକ୍ତ ପ୍ରବୀଣ ସଚିବ ରାକ୍ଷସଙ୍କର ପରିଣାମ କିପରି ଶୋଚନୀୟ ହୋଇଥିଲା, ତାହା ଏହି ଶ୍ଳୋକଟିରୁ ଅନୁମିତ ହେବ ।

୪—ପୌରୈରଙ୍ଗୁଳିଭିର୍ନବେନ୍ଦୁବଦହଂ
ନିର୍ଦ୍ଦିଶ୍ୟମାନଃ ଶନୈଃ
ଯୋ ରାଜେବ ପୁରା ପୁରାନ୍ନିରଗମଂ
ରାଜ୍ଞାଂ ସହସ୍ରୈର୍ବୃତଃ ।
ଭୂୟଃ ସମ୍ପ୍ରତି ସୋଽହମେବ ନଗରେ
ତତ୍ରୈବ ବନ୍ଧ୍ୟଶ୍ରମୋ
ଜୀର୍ଣ୍ଣୋଦ୍ୟାନକମେଷ ତସ୍କର ଇବ
ତ୍ରାସାଦ୍ ବିଶାମି ଦ୍ରୁତମ୍ ।

ଅର୍ଥାତ୍ ସ୍ୱୟଂ ରାଜାଙ୍କ ସମାନ ବହୁ ରାଜ୍ୟେଶ୍ୱରଙ୍କ ଗହଣରେ ରାଜପୁରରୁ ବାହାରିଲା ବେଳେ ପୁରବାସିମାନେ ନବୋଦିତ ଚନ୍ଦ୍ରଙ୍କୁ ଦେଖିଲା ପରି ଯାହାଙ୍କୁ ଦେଖି ଆନନ୍ଦିତ ହୋଇ ପରସ୍ପର ଅଙ୍ଗୁଳିନିର୍ଦ୍ଦେଶଦ୍ୱାରା ନିରବରେ କୁହାକୁହି ହେଉଥିଲେ, ସେହି ଅଜି ବିଫଳମନୋରଥ ହୋଇ ପ୍ରାସାଦ ତଥା ଭେଣୀକ ଥାଉ, ଚୋର ପରି ଗୋଟାଏ ଛୋଟ ଅରଣ୍ୟରେ ଅଶ୍ରୟ ନେବାକୁ ଯାଉଅଛି । ମୁଦ୍ରାରାକ୍ଷସର ପାତ୍ରମାନଙ୍କ ମଧ୍ୟରେ ରାକ୍ଷସର ଚରିତ୍ର ଅତି ବିଶୁଦ୍ଧ ଏବଂ ପ୍ରଶଂସ୍ୟ । ଏଥିରେ ଅଳଙ୍କାରର ଛଟା ଏବଂ ଚରିତ୍ରୋତ୍କର୍ଷ-ଉପଯୋଗୀ ଉପଦେଶ ଅତି ଅଳ୍ପ ।

ସଭ୍ୟତା ଓ ରାଜନୀତି,—ବର୍ଣ୍ଣିତ ଯୁଗରେ ଅନ୍ୟାନ୍ୟ ଜାତି ଉପରେ ବ୍ରାହ୍ମଣମାନଙ୍କର ପ୍ରଭାବ ଅପ୍ରତିହତ ଥିଲା ପରି ଲାଗେ । ରାଜା ବ୍ରାହ୍ମଣମାନଙ୍କୁ ଅନ୍ତରରେ ଭକ୍ତି କରୁଥିଲେ । ସାଧାରଣ ଶିକ୍ଷାର ଅବସ୍ଥା କିପରି ଥିଲା, ତାହା ଗ୍ରନ୍ଥରୁ ଜଣା ଯିବ ନାହିଁ, ତେବେ ରାଜପୁରୁଷ ତତ୍ସମ୍ପୃକ୍ତ ଲୋକମାନଙ୍କର ଶିକ୍ଷା ନିମିତ୍ତ ବିଦ୍ୟାଳୟାଦି ଥିଲା । କାଗଜ କଲମର ବ୍ୟବହାର ମଧ୍ୟ ଥିଲା; 'ବତ୍ସ! ମସୀଭାଜନଂ ପତ୍ରଞ୍ଚୋପାନୟ' । ଭିନ୍ନ ଭିନ୍ନ କାର୍ଯ୍ୟାଳୟମାନଙ୍କରେ ଅଙ୍କ ନାମ ପତ୍ର ମୁଦ୍ରା ବା ମୋହରମାନ ( seal ) ବ୍ୟବହୃତ ହେଉଥିଲା; "ଅନୟା ମୁଦ୍ରୟା ସ୍ୱାଧିକାରେ ବ୍ୟବହର୍ତ୍ତବ୍ୟଂ ଭବତା ।" 'ଅଦ୍ୟ ଲେଖଃ, ରାକ୍ଷସନାମାଙ୍କିତେୟଂ ମୁଦ୍ରା' । ଯାତ୍ରା ବା ପର୍ବ ଦିବସରେ ନାଗରିକମାନେ ସ୍ୱଦଳବଳ ଓ ଆଡ଼ମ୍ବର ସହିତ ଗୃହରୁ ବହିର୍ଗତ ହୋଇ ରାଜମାର୍ଗ ପରିପୂର୍ଣ୍ଣ କରୁଥିଲେ । ସମ୍ଭ୍ରାନ୍ତ ମହିଳାମାନେ ମଧ୍ୟ ପତି-ପୁତ୍ରାଦିସହ ଯାନ ସମୂହରେ ନଗରଭ୍ରମଣ କରିଥାନ୍ତି । ଶରତ୍କାଳୀନ କୌମୁଦୀ ମହୋତ୍ସବର ଯାତ୍ରାରେ:—

ଧୂର୍ତ୍ତୈରନ୍ୱୀୟମାନାଃ ସ୍ଫୁଟଚତୁରକଥା-
କୋବିଦୈର୍ବେଶନାର୍ଯ୍ୟୋ
ନାଲଂକୁର୍ବନ୍ତି ରଥ୍ୟାଃ ପୃଥୁଜଘନଭରାକ୍ରାନ୍ତ-
ମନ୍ଦୈଃ ପ୍ରୟାତୈଃ ।
ଅନ୍ୟୋଽନ୍ୟଂ ସ୍ପର୍ଦ୍ଧମାନା ନ ଚ ଗୃହବିଭବୈଃ
ସ୍ୱାମିନୋ ମୁକ୍ତଶଙ୍କାଃ ।
ସାକଂ ସ୍ତ୍ରୀଭିର୍ଭଜନ୍ତେ ବିଧିମଭିଲଷିତଂ
ପାର୍ବଣଂ ପୌରମୁଖ୍ୟାଃ ।

ସାଧାରଣ ଲୋକମାନଙ୍କର ମାଟି ଏବଂ ଚାଳ ଘର । ଆଧୁନିକ ଚାଳଘର ସହିତ ତାହାର କିପରି ସାଦୃଶ୍ୟ ଥିଲା, ତାହା ନିମ୍ନଲିଖିତ ଶ୍ଳୋକଟିରୁ ସ୍ପଷ୍ଟ ଜଣା ପଡ଼ିବ ।

'ଉପଲଶକଲମେତଦ୍ଭେଦକଂ ଗୋମୟାନାଂ
ବଟୁଭିରୁପହୃତାନାଂ ବର୍ହିଷାଂ ସ୍ତୋମମେତତ୍ ।
ଶରଣମପି ସମିଦ୍ଭିଃ ଶୁଷ୍ୟମାଣାଭିରାଭିଃ
ବିନମିତପଟଲାନ୍ତଂ ଦୃଶ୍ୟତେ ଜୀର୍ଣ୍ଣକୁଡ୍ୟମ୍ ।

ଅର୍ଥାତ୍ ହେଉଟି ସେ ପୁରୁଣା କୁଡ଼ିଆ ଦିଶୁଛି, ନାଳିବାଡ଼ ଶୁଖି ଚାଳଟା ନଇଁ ଗଲଣି । ହେଉ, ପିଲାମାନେ କୁଶସବୁ ବିଡ଼ା ବିଡ଼ା କରି ଆଣି ରଖିଛନ୍ତି । ଏଗୁଡ଼ାକ ଘସିଭଙ୍ଗା ପଥର ପଡ଼ିଛି ।

ପ୍ରଜାମାନଙ୍କ ମଧ୍ୟରେ କୂଟ କପଟ ଏତେ ପ୍ରବଳଭାବରେ ଚାଲିଥିଲା ଯେ, ରାଜ୍ୟଭୋଗ ରାଜାଙ୍କ ପକ୍ଷରେ ବିଷମ ରୋଗ ହୋଇପଡ଼ିଥିଲା । 'ରାଜ୍ୟଂ ହି ନାମ ରାଜଧର୍ମାନୁବୃତ୍ତିପରତନ୍ତ୍ରସ୍ୟ ନୃପତେର୍ମହଦପ୍ରୀତିସ୍ଥାନଂ' । ଲୋକେ ନାନାପ୍ରକାର ଜାଲ କରି ଅନ୍ୟର ସର୍ବନାଶ କରୁଥିଲେ "କପଟମୁଦ୍ରାମପି ହସ୍ତାଦସ୍ମିତୁଂ ଶଙ୍କନ୍ତି ଧୂର୍ତ୍ତାଃ" ଉକ୍ତିଟି ତହିଁର ଆଂଶିକ ସାକ୍ଷ୍ୟ ପ୍ରଦାନ କରୁଅଛି । ଅର୍ଥଦ୍ୱାରା ରାଜନୀତି ବିପରୀତ କଳଙ୍କିତ ହେଉଥିଲା, ଦେଖନ୍ତୁ—

ମିତ୍ରାଣି ଶତ୍ରୁତ୍ୱମିବାନୟନ୍ତି ମିତ୍ରତ୍ୱମପ୍ୟର୍ଥ-
　　　　ବଶାଚ୍ଚ ଶତ୍ରୂନ୍
ନୀତେର୍ନୟନ୍ତ୍ୟସ୍ମୃତ ପୂର୍ବବୃତ୍ତଂ ଜନ୍ମାନ୍ତରଂ
　　　　ଜୀବତ ଏବ ପୁଂସଃ' ।

ରାଜପୁରୁଷମାନେ ଉତ୍କୋଚ ଗ୍ରହଣପୂର୍ବକ ଅପରାଧୀକୁ ମୁକ୍ତି ଦେଉଥିଲେ । ସୁତରାଂ ରାଜ୍ୟ ମଧ୍ୟରେ ବିଶୃଙ୍ଖଳା ଘଟୁଥିଲା, ଦୁଷ୍ଟମାନଙ୍କୁ ଶାସନ କରିବା ନିମିତ୍ତ ରାଜା ରକ୍ଷିବର୍ଗ ଏବଂ କନ୍ତ୍ରବଧଦେଶଭାଷାବେଶାଚାରସଞ୍ଚାରବେଦିନୋ-ନାନାବ୍ୟଞ୍ଜନାପ୍ରଣିଧୟଃ ( Detictive ) ନିଯୁକ୍ତ କରୁଥିଲେ ଏବଂ ଉକ୍ତ ପ୍ରଣିଧିମାନେ ଦେଶକାଳପାତ୍ରରେ ଉପଯୁକ୍ତ କାର୍ଯ୍ୟ କରି ସ୍ୱକର୍ତ୍ତବ୍ୟ ସମ୍ପାଦନ କରୁଥିଲେ । ବିନା ଟିକଟ୍ ବା ପାର୍ଶ୍ୱରେ ପୁରପ୍ରବେଶ ଓ ନିଷ୍କ୍ରମଣ ନିଷିଦ୍ଧ ଥିଲା । ଯେଉଁମାନେ ରାଜବିଧି ଉଲ୍ଲଂଘନ କରୁଥିଲେ, ରକ୍ଷୀମାନେ ସେମାନଙ୍କୁ ବାନ୍ଧି ମାରି ରାଜକୁଳ ବା କଚେରୀକୁ ଘେନି ଯାଉଥିଲେ । ପ୍ରମାଣ ଏହି:—'କଶ୍ଚୋଽପି ଅମୁଦ୍ରାଲାଞ୍ଛିତୋ ନିଷ୍କ୍ରମିତୁଂ ପ୍ରବେଷ୍ଟୁଂ ବା ଅନୁମୋଦ୍ୟତେ, ଭଦ୍ର ଯଦି ମୁଦ୍ରାଲାଞ୍ଛିତୋଽସି ତଦାଗଚ୍ଛ ବିଶ୍ରବ୍ଧଃ । ଅନ୍ୟଥା ନିବୃତ୍ୟ ନିଭୃତକଣ୍ଠଂ ତିଷ୍ଠ । ମାତ୍ୱଂ ଗୁଲ୍ମସ୍ଥାନାଧିପୈଃ ସଂଯମିତ କରଚରଣୋ ରାଜକୁଳଂ ପ୍ରବେଶ୍ୟସେ ।' 'ଅହମପି ଭାଗୁରାୟଣାତ୍ ପାଟଳିପୁତ୍ରଂ ଗନ୍ତୁଂ ମୁଦ୍ରାଂ ପ୍ରତୀଚ୍ଛାମି' । ଗୁରୁତର ଅପରାଧ ଓ ରାଜବିରୁଦ୍ଧ କର୍ମାଚରଣରେ ଅପରାଧୀମାନେ ସପରିବାର ନିର୍ବାସିତ ବା ଶୂଳାରୋପିତ ହେଉଥିଲେ । 'ରାଜାପଥ୍ୟକାରିଷୁ ତୀକ୍ଷ୍ଣଦଣ୍ଡୋ ରାଜା ।' ରାଜକାର୍ଯ୍ୟରେ କିଛି ତ୍ରୁଟି ହେଲେ ସମ୍ଭବତଃ ରାଜା କର୍ମଚାରୀମାନଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟିପାତ କରୁଥିଲେ । ଏହିପରି ନାନା କାରଣରୁ ରାଜସେବା ସେମାନଙ୍କ ପକ୍ଷରେ ଅତ୍ୟନ୍ତ ଘୃଣାର ବ୍ୟବସାୟ ହୋଇ ପଡ଼ିଥିଲା । ଯଥା:—କଷ୍ଟା ଖଳୁ ସେବାନାମ ।

'ଭେତବ୍ୟଂ ନୃପତେସ୍ତତଃ ସଚିବତୋ
　　　　ରାଜ୍ଞସ୍ତତୋ ବଲ୍ଲଭାତ୍
ଅନ୍ୟେଭ୍ୟଶ୍ଚ ଭବନ୍ତି ଯେଽସ୍ୟ ଭବନେ
　　　　ଲବ୍ଧପ୍ରସାଦା ବିଟାଃ ।
ଦୈନ୍ୟାଦୁନ୍ମୁଖଦର୍ଶନାପଲପନୈଃ
　　　　ପିଣ୍ଡାର୍ଥମାୟସ୍ୟତଃ
ସେବାଂ ଲାଘବକାରିଣୀଂ କୃତଧିୟଃ ସ୍ଥାନେ
　　　　ଶ୍ୱବୃତ୍ତିଂ ବିଦୁଃ ।

ଉପସଂହାର ସ୍ଥଳରେ ବକ୍ତବ୍ୟ ଏହି ଯେ, କବି ନାଟକକୁ ସର୍ବାଙ୍ଗସୁନ୍ଦର କରି ରଚନା କରିବାରେ ବହୁପରିମାଣରେ କୃତକାର୍ଯ୍ୟ ହୋଇ ଅଛନ୍ତି । ନାଟକର ବିଷୟ ଜଟିଳ, ଅଥଚ ଭା । ପ୍ରାଞ୍ଜଳ ନୁହେ । ସୁତରାଂ ପ୍ରଥମ ପାଠକ ପକ୍ଷରେ ତହିଁର ତାତ୍ପର୍ଯ୍ୟ ଗ୍ରହଣ କରିବା ଅତି କଠିନ । କୌଣସି କୌଣସି ପାଠକ ମୋହର 'ମୃଚ୍ଛକଟିକ-ସମାଲୋଚନା' ପାଠ କରି ତୃପ୍ତ ହୋଇଥିବାରୁ ଅନ୍ୟାନ୍ୟ ନାଟକ ଆଲୋଚନା କରିବାକୁ ମୋହର ପ୍ରବୃତ୍ତ ହୋଇଅଛି ।

ଶ୍ରୀ ମୃତ୍ୟୁଞ୍ଜୟ ରଥ ।



## ମିଆଁ ସାହେବଙ୍କ ଶେଜନାମତ୍ । (୫)

ପୂର୍ବ ସଂଖ୍ୟାରେ ସିହାମାନଙ୍କ ମଧ୍ୟରେ 'ଅଂଶଭାଗୀ'ମାନଙ୍କ ବିଷୟ ବୋଲାଯାଇଅଛି । ବର୍ତ୍ତମାନ 'ଅବଶିଷ୍ଟାଂଶଭାଗୀ'ମାନଙ୍କ ବିଷୟ ବୋଲାଯିବ । ପୂର୍ବସଂଖ୍ୟାବର୍ଣ୍ଣିତ ଶ୍ରେଣୀବିଭାଗ ଅନୁସାରେ ଏମାନେ ୨ୟ ଉପଶ୍ରେଣୀର ଅନ୍ତର୍ଗତ ।

ଗୋସାଇଁ ବାପା, ଅଜା, ଅଇ, ଗୋସାଇଁ ମା ଇତ୍ୟାଦିଙ୍କର ଅଂଶ—ମୃତ ବ୍ୟକ୍ତିର ଭାଇ, ଭଉଣୀ କିମ୍ବା ସେମାନଙ୍କର ଔରସମାନଙ୍କ ସହିତ ଏହି ଶ୍ରେଣୀର ଉତ୍ତରାଧିକାରୀମାନେ ତ୍ୟକ୍ତ ସମ୍ପତ୍ତିକୁ ବିଭାଗ କରି ନିଅନ୍ତି । ଏମାନଙ୍କ ସମ୍ବନ୍ଧରେ ଏହି ନିୟମ ଯେ ନିକଟତର ଅଧିକାରୀ ବିଦ୍ୟମାନ ଥିଲେ ଦୂରତର ସମ୍ପର୍କୀୟ ବ୍ୟକ୍ତି ଆଦୌ ତ୍ୟକ୍ତ ସମ୍ପତ୍ତି ପାଇ ପାରିବେ ନାହିଁ । ବାପର ବାପ ଥିଲେ ବାପର ଗୋସାଇଁ ବାପ ତ୍ୟକ୍ତ ସମ୍ପତ୍ତିକୁ ଦାବି କରି ପାରିବେ ନାହିଁ । ପିତୃକୁଳ ଓ ମାତୃକୁଳରେ ସମାନ ସମ୍ପର୍କୀୟ ଦୁଇ ଜଣ ଅଜା ଥିଲେ ଉଭୟଙ୍କର ତ୍ୟକ୍ତ ସମ୍ପତ୍ତିରେ ସମାନ ଅଧିକାର । ଅର୍ଥାତ୍ ପୂର୍ବଶ୍ରେଣୀଲିଖିତ ରକ୍ତସମ୍ପର୍କୀୟ ଉତ୍ତରାଧିକାରୀ କେହି ନ ଥିଲେ ମୃତ ବ୍ୟକ୍ତିର ନିକଟତମ ଅଜା ତ୍ୟକ୍ତ ସମ୍ପତ୍ତିର ଅଂଶ ପାଇବେ ।

ଏହି 'ଅଜା'ଶ୍ରେଣୀର ବ୍ୟକ୍ତିମାନଙ୍କର ଧର୍ମଶାସ୍ତ୍ରରେ କୌଣସି ଅଂଶ ନିର୍ଦ୍ଦିଷ୍ଟ ନାହିଁ—'ଅଂଶଦାର'ମାନେ ସମ୍ପତ୍ତି ପାଇବା ପରେ ବାକି ଯାହା ବଳିବ ସେହି 'ଅବଶିଷ୍ଟାଂଶ'ରେ ଏମାନେ ଅଧିକାରୀ ।

ସମାନ ଦୂରସ୍ଥ ଅଜାମାନଙ୍କ ମଧ୍ୟରେ ବିଭାଗରେ ତଳଲିଖିତ ନିୟମମାନ ପ୍ରବର୍ତ୍ତିବ—

୧ । ମୃତବ୍ୟକ୍ତିର ମାତା ଓ ପିତା ଉଭୟର ପୂର୍ବପୁରୁଷ ବିଦ୍ୟମାନ ଥିଲେ, ମାତାଙ୍କ ପୂର୍ବପୁରୁଷ ପିତାଙ୍କ ପୂର୍ବପୁରୁଷଙ୍କର ଅର୍ଦ୍ଧେକ ପାଇବେ ।

୨ । ପିତାଙ୍କ ଅଜା ଓ ଅଇ ବିଦ୍ୟମାନ ଥିଲେ ଅଜାଙ୍କ ଶେୟର ଅଇଙ୍କ ଶେୟରର ଦୁଇଗୁଣ ହେବ ।

୩ । ମାତାଙ୍କ ଅଜା ଓ ଅଇଙ୍କର ସମାନ ଅଂଶ ।

୪ । ପିତାଙ୍କ ଅଜା ଓ ପିତାଙ୍କ ଔରସ ପୁତ୍ର (ମୃତ ବ୍ୟକ୍ତିର ଭାଇ) ବିଦ୍ୟମାନ ଥିଲେ ଭାଇର ଅଂଶ ଓ ଅଜାଙ୍କ ଅଂଶ ସମାନ ହେବ ।

୫ । ମୃତବ୍ୟକ୍ତିର ଭାଇ ନ ଥାଇ ଭ୍ରାତୃପୁତ୍ର ଥିଲେ ମଧ୍ୟ ସେ ମୃତବ୍ୟକ୍ତିର ଅଜାଙ୍କ ସଙ୍ଗେ ସମାନ ଭାଗ ପାଇବେ ।

ମୃତ ବ୍ୟକ୍ତିର ଭ୍ରାତା କିମ୍ବା ଭ୍ରାତୃପୁତ୍ର ନ ଥିଲେ ଅଜାଶ୍ରେଣୀୟ ବ୍ୟକ୍ତି ତ୍ୟକ୍ତ ସମ୍ପତ୍ତିରେ ଅଧିକାରୀ ହୁଅନ୍ତି । ଅଜାଙ୍କ ଛଡ଼ା ମୃତ ବ୍ୟକ୍ତିର ରକ୍ତସମ୍ପର୍କୀୟ ଅନ୍ୟ କୁଟୁମ୍ବ ନ ଥିଲେ ଓ ସ୍ତ୍ରୀ କିମ୍ବା ସ୍ୱାମୀ ବିଦ୍ୟମାନ ଥିଲେ ତ୍ୟକ୍ତ ସମ୍ପତ୍ତିରୁ ସ୍ୱାମୀ କିମ୍ବା ସ୍ତ୍ରୀଙ୍କର ପ୍ରାପ୍ୟ ଅଂଶ ବାଦ ଯାଇ ଅବଶିଷ୍ଟ ଅଂଶ ଅଜା ପାଇବେ ।

ଭାଇ ଭଉଣୀଙ୍କ ଅଂଶ—ମୁସଲମାନଙ୍କ ମଧ୍ୟରେ ବହୁପତ୍ନୀ ଗ୍ରହଣ କରିବାର ପ୍ରଥା ଥିବାରୁ ଭାଇମାନେ ତିନି ଶ୍ରେଣୀରେ ବିଭକ୍ତ । ୧ ମାତା ପିତା ଉଭୟଙ୍କ ଔରସ ସନ୍ତାନ, ୨ ସହୋଦର ବା ଏକମାତୃକ, ୩ ସରକ୍ତ ବା ଏକପିତୃକ ଭ୍ରାତା ।

ଔରସ ଭ୍ରାତା ଭଗିନୀ ବିଦ୍ୟମାନ ଥିଲେ ସରକ୍ତ ବା ଏକପିତୃକ ଭ୍ରାତା ତ୍ୟକ୍ତ ସମ୍ପତ୍ତିରେ ଅଧିକାରୀ ନୁହନ୍ତି । ଔରସ କିମ୍ବା ଏକପିତୃକ ଭାଇ ଭଉଣୀ ବିଦ୍ୟମାନ ଥିଲେ ମଧ୍ୟ ଏକମାତୃକ ଭାଇ ଭଉଣୀ ତ୍ୟକ୍ତ ସମ୍ପତ୍ତିର ଅଂଶ ପାଇବେ । ଭାଇର ଅଂଶ ଭଉଣୀର ଅଂଶର ଦୁଇ ଗୁଣ । ଭାଇ ବିଦ୍ୟମାନ ଥିଲେ ପୁତୁରାମାନେ ଆଦୌ ସମ୍ପତ୍ତି ପାଇ ପାରିବେ ନାହିଁ ।

୩ୟ ଉପଶ୍ରେଣୀର ଅଧିକାରୀ—ଜେଠା, ଦଦା ଓ ମାମୁଙ୍କ ଅଂଶ—ନିକଟତମସମ୍ପର୍କୀୟ

ପିତୃବ୍ୟ ବା ମାତୁଳ ତ୍ୟକ୍ତ ସମ୍ପତ୍ତି ପାଇବେ ! ପିତାଙ୍କ ଭାଇଙ୍କ ଅଂଶ ମାତାଙ୍କ ଭାଇଙ୍କ ପ୍ରାପ୍ୟ ଅଂଶର ଦୁଇ ଗୁଣ । ମୃତ ବ୍ୟକ୍ତିର ଜଣେ ମାତ୍ର ପିତୃବ୍ୟ ବା ମାତୁଳ ଥିଲେ ଓ ମୃତ ବ୍ୟକ୍ତିର ସ୍ୱାମୀ କିମ୍ବା ସ୍ତ୍ରୀ ବିଦ୍ୟମାନ ଥିଲେ ସ୍ୱାମୀ ବା ସ୍ତ୍ରୀଙ୍କ ପ୍ରାପ୍ୟ ଅଂଶ ବାଦ ଯାଇ ଅବଶିଷ୍ଟ ସମ୍ପତ୍ତି ଉକ୍ତ ପିତୃବ୍ୟ ବା ମାତୁଳ ଏକାକୀ ପାଇବେ । ଏମାନେ କେହି ନ ଥିଲେ ମୃତ ବ୍ୟକ୍ତିର ପିଉସୀପୁଅ ଭାଇ ମଉଳାପୁଅ ଭାଇ, ମାଉସୀପୁଅ ଭାଇ, ଦଦେଇ ପୁଅ ଭାଇ ତ୍ୟକ୍ତ ସମ୍ପତ୍ତିରେ ଅଧିକାରୀ ହେବେ ।

ଅଉଲ—କୋରାନର ବ୍ୟବସ୍ଥାନୁସାରେ ଅଂଶିମାନେ ତ୍ୟକ୍ତ ସମ୍ପତ୍ତିର ଅଂଶ ପାଆନ୍ତି । କିନ୍ତୁ ଏଥିରେ ସମୟ ସମୟରେ ଗୋଳମାଳ ଘଟେ । ସବୁ ଅଂଶଯାକ କୋରାନ ଅନୁସାରେ ବାଣ୍ଟିଲା ବେଳକୁ ଅଂଶଯାକ ମିଶି ୧୬ ପଣରୁ ବେଶି ହୋଇଯାଏ । ଏପରି ସ୍ଥଳରେ ସମସ୍ତ ଉତ୍ତରାଧିକାରୀଙ୍କ ଅଂଶରୁ କିଛି କିଛି କାଟି ଦେବାକୁ ହୁଏ । ଏହି ପ୍ରଣାଳୀକୁ 'ଅଉଲ' ବୋଲାଯାଏ । ଏହା ସୁନ୍ନୀମାନଙ୍କ ମଧ୍ୟରେ ପ୍ରଚଳିତ । କିନ୍ତୁ ସିଆମାନଙ୍କ ମଧ୍ୟରେ ଚଳେ ନାହିଁ । ସିଆ ନିୟମ ଅନୁସାରେ ଶାସ୍ତ୍ରସିଦ୍ଧ ଅଂଶ ଏକତ୍ର ହୋଇ ଯେବେ ୧୬ ପଣରୁ ବେଶି ହୋଇଯାଏ, ତାହାହେଲେ ଉକ୍ତପ୍ରକାର ବେଶି ହୋଇଥିବା ଅଂଶ ମୃତ୍ୟବ୍ୟକ୍ତିର କନ୍ୟା କିମ୍ବା ଭଉଣୀଙ୍କ ପ୍ରାପ୍ୟ ଅଂଶରୁ କଟାଯାଏ । ଉଦାହରଣ ସ୍ୱରୂପ—ମୃତ୍ୟବ୍ୟକ୍ତିର ସ୍ୱାମୀଙ୍କର ଚାରିପଣ; ପିତା ମାତାଙ୍କର ପାଞ୍ଚଅଣା ଚାରିପାହୁଲା; କନ୍ୟାର ଆଠପଣ । କିନ୍ତୁ ଏ ଅଂଶଗୁଡ଼ିକ ମିଶାଇ ଦେଲେ ଷୋଳପଣରୁ ବେଶି ହେବ । ଏହି ବେଶି ଅଂଶତକ କନ୍ୟାର ଅଂଶରୁ କଟାଯିବ । ତାହା ହେଲେ ସ୍ୱାମୀ କା ୦ ।, ପିତା ମାତା କା ୦ ।/୪ ଓ କନ୍ୟା କା ୦ ।୵ ପାଇବେ ।

ଫେରସ୍ତ—ସମୟ ସମୟରେ ଏପରି ମଧ୍ୟ ଦେଖାଯାଏ ଯେ ନିର୍ଦ୍ଦିଷ୍ଟ ଅଂଶ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବାଣ୍ଟି ଦେବା ପରେ କେତେକ ଅବଶିଷ୍ଟ ରହିଯାଏ ଏବଂ ସେହି ଅଂଶ ନେବା ନିମନ୍ତେ କେହି ଅବଶିଷ୍ଟାଂଶଭାଗୀ ନ ଥାନ୍ତି । ସେହିତକ ସମସ୍ତ ଉତ୍ତରାଧିକାରୀମାନେ କିସମତ ଅନୁସାରେ ବାଣ୍ଟି ନଅନ୍ତି । କିନ୍ତୁ ମୃତ୍ୟବ୍ୟକ୍ତିର ସ୍ତ୍ରୀ ଏହି ଫେରସ୍ତ ବଣ୍ଟାରେ ଅଧିକାରୀଣୀ ନୁହନ୍ତି । ଉଦାହରଣ ସ୍ୱରୂପ—ମୃତବ୍ୟକ୍ତିର ସ୍ତ୍ରୀ, ମାତା ଓ କନ୍ୟା ବିଦ୍ୟମାନ ଅଛନ୍ତି; ସ୍ତ୍ରୀଙ୍କର ଦୁଇପଣ ମାତାଙ୍କର ଏକଷଷ୍ଠାଂଶ ବା କା ୦ ୵ ଓ କନ୍ୟାର ଆଠପଣ । ସମୁଦାୟ ମିଶିଲେ ୧୬ ପଣରୁ କା ୦ ୷/୪ କମ ହେଉଅଛି—ଏହି କା ୦ ୷/୪ ମଧ୍ୟରୁ ସ୍ତ୍ରୀ କିଛି ପାଇବେ ନାହିଁ ଓ ଏହି ଅଂଶକୁ ମାତା ଓ କନ୍ୟା ଅନୁପାତ ଅନୁସାରେ ବାଣ୍ଟି ନେବେ ।

ଏ ଗଲା ସିଆମାନଙ୍କ ସମ୍ପତ୍ତି ବିଭାଗ । ଆଗାମୀ ଥର ସୁନ୍ନୀମାନଙ୍କ ସମ୍ପତ୍ତି ବିଭାଗ ବିଷୟ ଲେଖାଯିବ ।

କ୍ରମଶଃ

ଶ୍ରୀ ଦୁର୍ମୁଖ ଶର୍ମା ।

## ସାହିତ୍ୟର କପଟତା ।

ଶଠତା, କପଟତା, ପ୍ରତାରଣା ପ୍ରଭୃତି ଶବ୍ଦମାନଙ୍କର ଆକୃତିଗତ ଓ ପ୍ରକୃତିଗତ ଭେଦ ଲକ୍ଷିତ ହେଲେହେଁ ମୂଳରେ ସେଗୁଡ଼ିକ ଏକ ପଦାର୍ଥ ଏଥିରେ କିଛି ସନ୍ଦେହ ନାହିଁ । ଏଗୁଡ଼ିକ ଯେ ଏକାନ୍ତ ଦୂଷଣୀୟ ଓ ହେୟ ଏକଥା ବୋଲିବା ବାହୁଲ୍ୟ ମାତ୍ର । କିନ୍ତୁ ସଂସାର କପଟତା ଓ ଶଠତାରେ ପୂର୍ଣ୍ଣ । କପଟତାରୂପ ଦୁର୍ଭେଦ୍ୟ ବର୍ମ ଭେଦ କରି ଅସଲ ବା ପ୍ରକୃତ କଥାଟିକୁ ଚିହ୍ନି ନେବା ଆଜିକାଲି ସାଧାରଣଙ୍କର ସାଧ୍ୟ ନୁହେଁ । ଏତଦ୍ୱାରା ସମାଜର ଘୋର ଅନିଷ୍ଟ ସାଧିତ

ହେଉଅଛି । ସମାଜର ନୈତିକ ଭିତ୍ତି କ୍ରମ କ୍ରମେ ତଳକୁ ଦବି ଯାଉଅଛି । ସ୍ରୋତ ଯେପରି ପ୍ରବଳଭାବରେ ବହୁଅଛି, ଆଉ ସେହିପରି କିଛିଦିନ ଗଲେ ଆମ୍ଭମାନଙ୍କର ଜାତୀୟ ଜୀବନ ଏକାବେଳକେ ରସାତଳଗାମୀ ହୋଇଯିବ ।

ବର୍ତ୍ତମାନ ବ୍ୟବସାୟିକ ଶଠତା ସମ୍ବନ୍ଧରେ ପଦେ ଅଧେ କିଛି ମୂଳ କଥାର ଅବତାରଣା କରିବି । ଏହାର ମୂଳରେ ନୀଚ ସ୍ୱାର୍ଥପରତା ଓ ଘୃଣ୍ୟ ଧନ-ଲାଳସା ବଦ୍ଧମୂଳ ହୋଇ ରହିଅଛି । ବ୍ୟବସାୟି-ମାନେ ଅର୍ଥଲାଭ ପାଇଁ ଯେତେପ୍ରକାର ଶଠତାର ଉଦ୍ଭାବନ ପ୍ରତିନିୟତ କରୁଅଛନ୍ତି ତାହା ସମସ୍ତେ ସ୍ୱଚକ୍ଷୁରେ ଦେଖୁଅଛନ୍ତି । କେହି ସତ୍, ସାଧୁ, ପରିଶ୍ରମୀ କର୍ମକାର ଗୋଟିଏ କିଛି ଅସଲ ପଦାର୍ଥ ନିର୍ମାଣ କରି ଜନସାଧାରଣଙ୍କ ନିକଟରେ ପ୍ରଚାର କଲେ ତତ୍କ୍ଷଣାତ୍ ତାହାର ଗୋଟିଏ ନକଲ ପ୍ରସ୍ତୁତ ହୋଇ ସମସ୍ତଙ୍କର ଆଖିରେ ଧୂଳି ପକାଇ ଶୀଘ୍ର ପ୍ରଭାବ ବିସ୍ତାର କରୁଅଛି । ଭାରତର ବହୁମୂଲ୍ୟ ଓ ସୂକ୍ଷ୍ମ କାରୁକାର୍ଯ୍ୟମଣ୍ଡିତ ବସ୍ତ୍ର, ଶାଲ ପ୍ରଭୃତିର ଅନୁକରଣ ବିଦେଶରେ ହେଉଅଛି । ପରିତ୍ୟକ୍ତ, ଜୀର୍ଣ୍ଣ, ମଳିନ, ଛିଣ୍ଡାକନା ସବୁ ଦେଶ ବିଦେଶରୁ ରପ୍ତାନି ହୋଇ ନୂତନ ସହିତ ମିଶୁଅଛି । ଖାଦ୍ୟ ପଦାର୍ଥମାନ ନାନା ଅବିଶୁଦ୍ଧ ଉପାୟରେ ପ୍ରସ୍ତୁତ ହେଉଅଛି । ଘୃତ ତୈଳ ପ୍ରଭୃତି ନାନା ବିକୃତ ପଦାର୍ଥର ସଂମିଶ୍ରଣରେ ପ୍ରସ୍ତୁତ ହୋଇ ବିଷମୟ ଫଳ ଉତ୍ପାଦନ କରୁଅଛି । ସଂକ୍ଷେପରେ କହିବାକୁ ଗଲେ ସ୍ୱାର୍ଥାନ୍ଧ ବ୍ୟବସାୟିଗଣ ଅବିକୃତ, ବିଶୁଦ୍ଧ ପଦାର୍ଥ ପ୍ରସ୍ତୁତ ନ କରି ପ୍ରାୟ ସବୁଥିରେ କିଛି ହେଲେ ଶଠତା ପ୍ରକାଶ କରୁଅଛନ୍ତି । ଏମନ୍ତ କି ଗୋଟିଏ ସାମୟିକ ପତ୍ରିକାରେ ପାଠ କରିଥିଲୁଁ ଯେ ବିଲାତର ବିସ୍କୁଟ-ବାଲାମାନେ ଲଣ୍ଡନର ସହସ୍ର ସହସ୍ର ଡାକ୍ତରଖାନାର ରୋଗିମାନଙ୍କର ପରିତ୍ୟକ୍ତ ପୁଲଟିସ ସବୁ ସଂଗ୍ରହ କରି ବିସ୍କୁଟ ପ୍ରସ୍ତୁତ କରି ଦେଶ ବିଦେଶକୁ ପଠାଇଥାନ୍ତି ! କି ଜଘନ୍ୟ ପ୍ରତାରଣା ! ସଭ୍ୟ ହୋଇଥିଲେ କି ଘୃଣାଜନକ ବିକଟ କାର୍ଯ୍ୟ ! ଆଉ ଉଦାହରଣ ଦେବାର ଅନାବଶ୍ୟକ । ବ୍ୟବସାୟିମାନଙ୍କ ମଧ୍ୟରେ ଘୋର କପଟତା, ଶଠତା, ପ୍ରତାରଣା ପୂର୍ଣ୍ଣମାତ୍ରାରେ ବିଦ୍ୟମାନ, ଏହା ସମସ୍ତେ ଏକବାକ୍ୟରେ ସ୍ୱୀକାର କରିବେ । ଯାହାହେଉ, ସେମାନେ ଅର୍ଥକୁ ବଡ଼ କରି ଜାଣନ୍ତି, ଅର୍ଥ ପାଇଁ ସବୁ କରିଥାନ୍ତି, ମିଥ୍ୟାକୁ ପାପ ବୋଲି ମନେ କରନ୍ତି ନାହିଁ । ଶଠତା, କପଟତା ପ୍ରଭୃତି ସେମାନଙ୍କ ବ୍ୟବସାୟର ମୂଳମନ୍ତ୍ର ବୋଲି ମଣନ୍ତି । ସୁତରାଂ ଏଥିରେ ବିସ୍ମୟର କାରଣ ବେଶି କିଛି ନାହିଁ ।

କିନ୍ତୁ ଯାହା ଉନ୍ନତ ଜାତୀୟ ଜୀବନର ଜନ୍ମ-ଦାତା ଓ ପ୍ରଧାନ ଅବଲମ୍ବନ, ସେହି ପବିତ୍ର ସାହିତ୍ୟକ୍ଷେତ୍ରରେ ଶଠତା, କପଟତା, ପ୍ରତାରଣା ପ୍ରବେଶ କରିବା ଘୋର ଆକ୍ଷେପର ବିଷୟ ! ନିତାନ୍ତ ଘୃଣିତ ଓ ଲଜ୍ଜାଜନକ ! କୌଣସି ବ୍ୟକ୍ତିବିଶେଷ ବା ଜାତିବିଶେଷର କଥା ଏଠାରେ ଲକ୍ଷ୍ୟ ନୁହେ; କିନ୍ତୁ ପ୍ରସଙ୍ଗକ୍ରମେ କେତେକ କଥା ଏହି ଦୀନହୀନ ଉତ୍କଳର ସାହିତ୍ୟସେବକଙ୍କ ପ୍ରତି ସାଧାରଣଭାବରେ ପ୍ରଯୁଜ୍ୟ ହୋଇ ପାରେ । ଏକନିଷ୍ଠତା, ନିଃସ୍ୱାର୍ଥପରତା, ସତ୍ୟପ୍ରୀତି ଅକୃତ୍ରିମ ଆଦର ସାହିତ୍ୟର ନିତ୍ୟ ସହଚର । ଯାହା ମୋହର ନୁହେ, ଯାହା ମୋହର ନାହିଁ, ମୁଁ ଯାହା ନୁହେ, ତାହା ମୋହର ଅଟେ, ତାହା ମୋହର ଅଛି; ତାହା ମୁଁ ଅଟେ ଏହିପରି ଭାବ ଜନସାଧାରଣଙ୍କ ନିକଟରେ ପ୍ରଚାର କରିବା ନାମ କପଟତା ଛଡ଼ା ଆଉ କିଛି ନୁହେ । ଜ୍ଞାନ ଥାଉ ବା ନ ଥାଉ, ପ୍ରବୀଣତା ଥାଉ ବା ନ ଥାଉ, ଭାବଭଙ୍ଗୀ, ମୁଖଗାମ୍ଭୀର୍ଯ୍ୟ ଦ୍ୱାରା ଆପଣାର ବଡ଼ପଣିଆର ଭାବ ଦେଖାଇବା ମଧ୍ୟ କପଟତାର ଏକ ଅଙ୍ଗ ।

ସେହିପରି ସାହିତ୍ୟଜଗତରେ ଯେଉଁ ଭାବ ତୁମ୍ଭର ନୁହେ, ଯେଉଁ ଚିନ୍ତା ତୁମ୍ଭର ନୁହେ, ଯେଉଁ ବିଷୟ ତୁମ୍ଭ ମନରେ କେବେହେଁ,

ଜାତ ହୋଇ ନାହିଁ, ଯାହା ତୁମ୍ଭେ କେବେହେଁ ଆଲୋଚନା କରି ନାହିଁ, କେବେହେଁ ଅନୁଭବ କରି ନାହିଁ, ସେହିରୂପ ଭାବ ଓ ବିଷୟ ଅନ୍ୟର ଲେଖନୀପ୍ରସୂତ, ଚିନ୍ତାସମ୍ଭୂତ, ବହୁ ଗବେଷଣାଲବ୍ଧ ପ୍ରବନ୍ଧରୁ ଅତି ସତର୍କଭାବରେ ଅପହରଣ କରି ନାନା ବାକ୍ୟ ଛଟାରେ ତାହାର ଏକ ବିକଟ ମୂର୍ତ୍ତି ନିର୍ମାଣ କରି, ଆପଣା ବାହାଦୁରୀ ବଢ଼ାଇବାର ଚେଷ୍ଟା କରି ଦେଶର କଳଙ୍କ ବୃଦ୍ଧି କରିବା କଦାପି ଜ୍ଞାନୀ ଲୋକର କାର୍ଯ୍ୟ ନୁହେ । କ ହେଲା ନାହିଁ, ପ୍ରବନ୍ଧଲେଖକ ବା ଗ୍ରନ୍ଥକାର ହେବାକୁ ଖୁବ ମନ ହେଉଅଛି, ତେବେ ଆପଣା ମନରେ ଯେଉଁ ଭାବ ଜାତ ହେଉଅଛି, ଆପଣାର ଯେ ଅଭିଜ୍ଞତା ଅଛି, ଯେତକ ଶକ୍ତି ସାମର୍ଥ୍ୟ ଅଛି, ତାହା ନିୟୋଜିତ କର, ତହିଁରୁ ଲବ୍ଧ ପ୍ରବନ୍ଧ ବା ଗ୍ରନ୍ଥ ବିଦ୍ୱଜ୍ଜନମଣ୍ଡଳୀଦ୍ୱାରା ଆଦୃତ ନ ହେଲେ ମଧ୍ୟ ଏକ ଶ୍ରେଣୀ ଲୋକଙ୍କର ପାଠ୍ୟ ଓ ଉପକାରକ ହେବ, ସନ୍ଦେହ ନାହିଁ । କିନ୍ତୁ ଉପରୋକ୍ତ ଭାବର କପଟତା କେବଳ ଅଯୋଗ୍ୟତାର ନିଦାନ ଏବଂ ନୀଚତା, ଧୃଷ୍ଟତାର ପରିଚାୟକ ।

ଉତ୍କଳରେ 'ଉତ୍କଳ ସାହିତ୍ୟ' ଏକମାତ୍ର ମାସିକ ପତ୍ର ଅଟେ, ତହିଁରେ ଅତି ଅଳ୍ପସଂଖ୍ୟକ ନିୟମିତ ଲେଖକ ଆଗ୍ରହ ପ୍ରକାଶ କରିଥାନ୍ତି । ସମୟ ସମୟରେ ଆମ୍ଭେମାନେ ସେଥିରେ ଏହିପରି ଭାବର ପ୍ରବନ୍ଧମାନ ପ୍ରକାଶିତ ହୋଇଥିବାର ଦେଖି କ୍ଷୁଣ୍ଣ ହୋଇ ଥାଉଁ । ଆମ୍ଭେମାନେ ଜାଣୁ ପତ୍ରିକାର ସମ୍ପାଦକ ମହାଶୟ ବିରକ୍ତିର ସହିତ ଏହିପରି ପ୍ରବନ୍ଧମାନଙ୍କୁ ପ୍ରତ୍ୟାଖ୍ୟାନ କରି ଥାନ୍ତି ଏବଂ ଅତି ସତର୍କଭାବରେ ପତ୍ରିକାରେ ପ୍ରବନ୍ଧମାନ ପ୍ରକାଶ କରନ୍ତି । ସ୍ଥଳବିଶେଷରେ ଏ ବିଷୟରେ ସମ୍ପାଦକଙ୍କର ଯଥେଷ୍ଟ ତୀକ୍ଷ୍ଣଦୃଷ୍ଟି ଓ ନିର୍ଭୀକତାର ପରିଚୟ ପାଉଅଛୁଁ । ତେବେ ସମ୍ପାଦକ କିଛି ସର୍ବଜ୍ଞ ନୁହନ୍ତି । କିନ୍ତୁ ଲେଖକଙ୍କର ଉଚିତ ଯେ ସେ ଯାହାଠାରୁ ଭାବ ଗ୍ରହଣ କରିଥିବେ ତାହାଠାରେ ହୃଦୟର କୃତଜ୍ଞତା ପ୍ରକାଶ କରି ଆପଣାର ସୌଜନ୍ୟର ପରିଚୟ ଦେବେ ।

କାଗଜ ସାହିତ୍ୟରେ ପ୍ରତିଷ୍ଠା ଲାଭ କରିବା କେବଳ କଳ୍ପନା, କୃତୀ ସନ୍ତାନ ପକ୍ଷରେ ସମ୍ଭବପର । ତହିଁରୁ ଯେଉଁ ଆତ୍ମପ୍ରସାଦ ଲାଭ ହୁଏ ତାହା ଅତ୍ୟନ୍ତ ପ୍ରୀତିକର । ନିତାନ୍ତ ନିଗୃହୀତ, ପ୍ରପୀଡ଼ିତ ଲୋକ ମଧ୍ୟ ସାହିତ୍ୟ ଜଗତରେ ପ୍ରତିଷ୍ଠା ଲାଭ କରି ପାରିଲେ ମାନ ମର୍ଯ୍ୟାଦା ଲାଭ କରି ପାରେ । ରାଜା, ମହାରାଜା, ଧନିକଜନମାନଙ୍କ ମଧ୍ୟରେ ଅନେକ ଅକୃତ୍ରିମ ସାହିତ୍ୟସେବୀ ଥାନ୍ତି; କିନ୍ତୁ ଅନେକେ ତହିଁରେ ଘୋର କପଟତା ପ୍ରକାଶ କରିଥାନ୍ତି । ଆମ୍ଭେମାନେ ସମୟ ସମୟରେ ବିଦ୍ୱଜ୍ଜନମାନଙ୍କଦ୍ୱାରା ଲିଖିତ କାବ୍ୟ, ପଦ୍ୟ ବା ପୁସ୍ତିକା ଧନୀ, ରାଜା, ମହାରାଜା, ଜମିଦାର ବା ତଦ୍ରୂପ ବ୍ୟକ୍ତିଙ୍କଦ୍ୱାରା ରଚିତ ବୋଲି ପ୍ରକାଶିତ ହୋଇଥିବାର ଦେଖିଥାଉଁ । ଏଠାରେ ସେହି ବିଦ୍ୱଜ୍ଜନଙ୍କର ଅର୍ଥଲାଳସା ବା ଧନିକଜନଙ୍କର ସାହିତ୍ୟିକ ପ୍ରତିଷ୍ଠାଲାଭର ବାଞ୍ଛା ମୂଳୀଭୂତ କାରଣ ଅଟେ । ପରିତାପର ବିଷୟ ଉତ୍କଳରେ ଏତାଦୃଶ ସାହିତ୍ୟିକ କପଟତାର ଅଭାବ ନାହିଁ ।

କେବଳ ପ୍ରଶଂସା ପାଇବା ଇଚ୍ଛାରେ ଲେଖକ ନାମ ଧାରଣ କରିବାର ଅଭିଳାଷ ଥିଲେ ଚୁପ ରହିବା ଭଲ । କାହିଁକି ନା, ପ୍ରଶଂସା କରିବାର ଲୋକ ଖୁବ ଅଛନ୍ତି, କିନ୍ତୁ ନିରପେକ୍ଷ ସମାଲୋଚକର ଏକାନ୍ତ ଅଭାବ । ମୁଁ ଯାହାତାହା ମନକୁ ଆସିଲା କିଛି ଲେଖିଲି, ମୋହର ଅନ୍ତରଙ୍ଗ ବନ୍ଧୁ ତାହା ଦେଖି ମୋହର ପରାମର୍ଶରେ ମୋତେ ସପ୍ତମ ସ୍ୱର୍ଗକୁ ଚଢ଼ାଇ ଦେଲେ, ମୁଁରିଆଡ଼େ ଭାରି ପ୍ରଶଂସା କଲେ, ସମ୍ବାଦପତ୍ରରେ ଲେଖାଲେଖି କଲେ । ପୁଣି କାଲି ସକାଳେ ତାଙ୍କର କାର୍ଯ୍ୟ ପଡ଼ିଲା, ମୁଁ ତାଙ୍କ ପାଇଁ ମଧ୍ୟ ସେହିପରି କଲି । ଦୈବାତ୍ ଯଦି ଭ୍ରମପ୍ରମାଦ ଭଙ୍ଗ ହୁଏ, ତାହା-

ହେଲେ ସମସ୍ତ ସମସ୍ତଙ୍କର ଭିତର କଥା ଖୋଲି ଭାଙ୍ଗି ବାହାର କରି ଗୋଟାଏ ଘୃଣାଜନକ ଅଭିଯୋଗର ସୂତ୍ରପାତ କରନ୍ତି ।

ଯେବେ କିଛି ନୂତନ ସତ୍ୟ, ନୂତନ ମତ, ନୂତନ ଭାବ ପ୍ରଚାର କରିବାର ଥାଏ ଜନସାଧାରଣଙ୍କର ସର୍ବାଙ୍ଗୀନ ଉନ୍ନତିକାମନାରେ ନୂତନ, ଉନ୍ନତ, ଚିନ୍ତାପୂର୍ଣ୍ଣ ଗ୍ରନ୍ଥ ପ୍ରକାଶ କରିବାର ଶକ୍ତି ଥାଏ, ତାହା ହେଲେ ଲେଖକ ନାମ ଧାରଣ କରିବା ସୁସଙ୍ଗତ ଅଟେ । କେବଳ ଦୁଇ ପଇସା ଲାଭ ପାଇଁ, ବା ବାହାଦୁରୀ ଦେଖାଇବା ପାଇଁ, ଘରେ ବସି ଭାତ ଥାଳି ଗିଣ ପାଖରେ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ପଦାର୍ଥମାନଙ୍କ ସନ୍ନିକଟ ହୋଇ ବଢ଼ା ହୋଇ ଥିଲା ପରି ନାନା ଗ୍ରନ୍ଥକାରଙ୍କର ନାନା ବହି ପକାଇ ଏଥିରୁ କାଟିଏ, ସେଥିରୁ ଧରିଏ ନେଇ ଖଣ୍ଡିଏ ଚଟକ ବହି ପ୍ରକାଶ କରିବାଦ୍ୱାରା ପବିତ୍ର ସାହିତ୍ୟର ନିର୍ମଳ ଭବନକୁ କଳଙ୍କିତ କରିବା କେବେହେଁ ମନୁଷ୍ୟୋଚିତ କାର୍ଯ୍ୟ ନୁହେ । ଉପରୋକ୍ତ ପ୍ରକାରର ସାହିତ୍ୟିକ କପଟତା ଆମ୍ଭମାନଙ୍କର ଉତ୍କଳସାହିତ୍ୟ-କ୍ଷେତ୍ରରେ ବିରଳ ନୁହେ ।

ସଙ୍ଗୀତ କଳା, ଭାସ୍କର ଶିଳ୍ପ ବା କଳା, ସଙ୍ଗୀତଜ୍ଞ ହେଲେ କି ପ୍ରକାର ଶକ୍ତି ଥିବାର ଆବଶ୍ୟକ ଏବଂ କିପରି ସାଧନାର ପ୍ରୟୋଜନ, ଏହାର ଲେଶମାତ୍ର ଜ୍ଞାନ ନାହିଁ, ଅଥଚ ନାନା ପ୍ରକାର ଅସମ୍ବଦ୍ଧ ପ୍ରଳାପବାକ୍ୟ ପ୍ରସ୍ତୁତ କରି ଦେଶହିତୈଷିତାର ପରିଚୟ ପ୍ରଦାନ କରିବା ମଧ୍ୟ ସାହିତ୍ୟିକ କପଟତାର ଏକ ଅଙ୍ଗ ।

ସମାଜରେ ଯାହାର ନିଜର କୌଣସି ବିଶିଷ୍ଟ ସ୍ଥାନ ନାହିଁ, ସମାଜ ସଂସ୍କାର କରିବାକୁ ହେଲେ କି ପ୍ରକାର ତ୍ୟାଗ ସ୍ୱୀକାର ପ୍ରଥମରେ କରିବାକୁ ହେବ ସେଥିପାଇଁ ହୃଦୟର ବଳ ନାହିଁ, ପ୍ରାଚୀନ ଶ୍ରୁତି, ସ୍ମୃତିରେ ସେ ଅଗାଧ ଜ୍ଞାନ ନାହିଁ, ଯଦ୍ଦ୍ୱାରା ଦେଶ, କାଳ, ପାତ୍ର ଭେଦରେ କି ପ୍ରକାର ମତ ପ୍ରବର୍ତ୍ତିତ କରିବାକୁ ହେବ ଏଥିର ସମୁଚିତ ବ୍ୟାଖ୍ୟା ସାଧାରଣଙ୍କ ନିକଟରେ ପ୍ରଚାର କରି ସେମାନଙ୍କୁ ସନ୍ତୁଷ୍ଟ କରି ସ୍ୱମତାବଲମ୍ବୀ କରି ପାରିବେ, ଅଥଚ ନାନା ପ୍ରକାର ସଂସ୍କାର ବାଣୀ ପ୍ରଚାରରେ ଉଦ୍ୟତ । ଏହା ମଧ୍ୟ ସାହିତ୍ୟିକ କପଟତାର ଏକ ଅଙ୍ଗ ।

ଚତୁଷ୍ପାଠୀର ଆଦର ବର୍ତ୍ତମାନ ନାହିଁ, ଚତୁଷ୍ପାଠୀର ଉପଯୁକ୍ତ ଅଧ୍ୟାପକ ମଧ୍ୟ ବାହାନ୍ତି, କିନ୍ତୁ ବଡ଼ ଜୋର ରଘୁବଂଶରୁ ୧ ସର୍ଗ, ବ୍ୟାକରଣର ଶବ୍ଦପ୍ରକରଣ ପର୍ଯ୍ୟନ୍ତ, କୁମାରରୁ ଦୁଇ ସର୍ଗ ଏବଂ କେତେଗୁଡ଼ାଏ ଉଦ୍ଭଟ ଶ୍ଳୋକ ପାଠ କରି ଆଜି ଅନେକେ ବ୍ୟବସ୍ଥାପକ ହୋଇ ବାହାର ଅଛନ୍ତି । ଶ୍ରୁତି, ସ୍ମୃତି, ନ୍ୟାୟ, ବେଦାନ୍ତ ଜାଣିଲା ପରି ଭାବଭଙ୍ଗୀ ପ୍ରକାଶ କରି ଛାତି ଫୁଲେଇ ବୁଲୁ ଅଛନ୍ତି । ଏ ମଧ୍ୟ ସାହିତ୍ୟିକ କପଟତାର ଏକ ପ୍ରଧାନ ଅଙ୍ଗ ।

ନବଦ୍ୱୀପ ଓ କାଶୀ ସଂସ୍କୃତ ଶିକ୍ଷାର କେନ୍ଦ୍ରସ୍ଥଳ । ଉତ୍କଳରୁ ଅନେକେ ଜ୍ଞାନପିପାସୁ ହୋଇ ନାନା ପ୍ରକାର ଆୟୋଜନ କରି ଶିକ୍ଷାର୍ଥ ସେଠାକୁ ଯାଉଥାନ୍ତି । ତିନି ଚାରି ବର୍ଷ ପରେ କେହି ବା ନ୍ୟାୟାଲଙ୍କାର, କେହି ବା ତର୍କାଲଙ୍କାର, କେହି ବା ଶାସ୍ତ୍ରୀ, କେହି ବା ବିଦ୍ୟାଭୂଷଣ ହୋଇ ଫେରି ଆସନ୍ତି । ସୂକ୍ଷ୍ମ ଭାବରେ ପର୍ଯ୍ୟାଲୋଚନା କରି ଦେଖିଲେ ଉପାଧି ଅନୁରୂପ ପାଣ୍ଡିତ୍ୟର ବିଶେଷ କିଛି ସତ୍ତା ନ ଥାଏ ଜଣାଯିବ । କେବଳ କେତେ ଅଧ୍ୟାପକଙ୍କ ସହିତ ଦେଶ ବିଦେଶରେ ନିମନ୍ତ୍ରଣରେ ଯୋଗ ଦେଇ ଥାନ୍ତି, କେହି ବା ଫେରି ଆସିବା ବେଳେ 'ଗଙ୍ଗାକୂଳସ୍ଥ ଉପାଧି' ନେଇ ଆସି ଏଠାରେ ଦିଗ୍ବିଜୟୀର ଭାବ ଦେଖାଇ ସାଧାରଣଙ୍କୁ ପ୍ରତାରଣା କରନ୍ତି । ଅଳ୍ପସଂଖ୍ୟକ ବ୍ୟକ୍ତି ପ୍ରକୃତ ଶିକ୍ଷାଲାଭ କରି ଥାନ୍ତି ।

ଦେଶରେ ପୁଣ୍ୟ ସଜ୍ଜନଙ୍କର ଯେତେବେଳେ ସର୍ବତୋମୁଖୀ ପ୍ରଭା ଥିଲା ସେତେବେଳେ ପୂର୍ବର

ବ୍ରାହ୍ମଣମାନେ କେତେ ରକମରେ ରଜାଙ୍କୁ ସନ୍ତୁଷ୍ଟ କରି କେତେ ପ୍ରକାର ଅଦ୍ଭୁତପୂର୍ଣ୍ଣ ଉପାଧି ପାଉଥିଲେ ଯେ ଆଜି କାଲି ସେରୂପ କେତେକ ଉପାଧିର ମୂଳ ନିର୍ଣ୍ଣୟ କରିବା ଦୁଷ୍କର ଅଟେ । ଶାସ୍ତ୍ରଚର୍ଚ୍ଚା ଯେ ନ ଥିଲା ତାହା ନୁହେଁ, ପାଣ୍ଡିତ୍ୟର ଆଦର ଯେ ନ ଥିଲା ତାହା କହି ଯାଇ ନାହିଁ, ଅଗାଧ ବ୍ୟୁତ୍ପତ୍ତି ପ୍ରଦର୍ଶନ କରି ସଭାସ୍ଥ ଲୋକଙ୍କୁ ଚମତ୍କୃତ କରି ଲୋକେ ମର୍ଯ୍ୟାଦାନୁରୂପ ଉପାଧି ପାଉଥିଲେ, ଏଥିର ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେ । କ୍ରମେ ଏହାର ଅତି ମାତ୍ର ଅନୁକରଣ ହେବାକୁ ଲାଗିଲା, ସାମାନ୍ୟ କଥାରେ ରଜାଙ୍କୁ ଉପଯୁକ୍ତ ସମୟରେ ସନ୍ତୁଷ୍ଟ କରି ଲୋକେ ବଡ଼ ବଡ଼ ପଦ ଲାଭ କରିଥିବାର ଏବଂ ତଦୀୟ ବଂଶଧରମାନେ ଉତ୍ତରାଧିକାର-ସୂତ୍ରରେ ତାହା ଭୋଗ କରୁଥିବାର ଶୁଣାଯାଉ-ଥାଏ । ଏହା କେବଳ ଜ୍ଞାନୀମାନଙ୍କ ନିକଟରେ ଉପହାସର ବିଷୟ ଛଡ଼ା ଅନ୍ୟ କିଛି ନୁହେ ।

ଉପାଧି ଦାନ ଓ ଗ୍ରହଣର ଅସଂଯତ ଲିପ୍ସା ଗଡ଼ଜାତ ଅଞ୍ଚଳରେ ବିଶେଷରୂପେ ଲକ୍ଷିତ ହୁଏ । ଅଦ୍ୟାପି ମଧ୍ୟ ଏହା ରଜାମାନଙ୍କର ଭଣ୍ଡାର ବୃଦ୍ଧି-ମୂଳକ ଅଟେ । ରୂପଟ ସିଂହ, ବଳଥର ସିଂହ, କାଣ୍ଡିଆ ସିଂହ, ଭଣ୍ଡାରଭୂଷଣ, ବାଘ, କୋହାଲ ସିଂହ, ସଣ୍ଢ, ବଳବନ୍ତରାୟ, ପାଖାଲ ସିଂହ, ତାମ୍ବୁଳ-ଭୂଷଣ ପ୍ରଭୃତିରେ ପ୍ରାଚୁର୍ଯ୍ୟ ଲକ୍ଷିତ ହୁଏ । କେହି ବା ଏକଦମରେ ୧୦୦ ହାତ ଦୌଡ଼ିଥିଲା, କେହି ବା ଗୋଟାଏ ହରିଣଛୁଆ ଜଣକୁ ମାରି ଆଣିଥିଲା, କେହି ବା ସଭାରେ ଅନର୍ଗଳ ହାସ୍ୟୋଦ୍ଦୀପକ କଥା କହିକହି ବଳେ ରଜାଙ୍କୁ ସନ୍ତୁଷ୍ଟ କରିଥିଲା । ଦେଖୁଅଛୁଁ ଏହାର ଘୋର ମୋଗଲବନ୍ଦୀ ଆଜିକୁ ବହି ଆସିଲାଣି । କାଳକ୍ରମରେ ଏହା କେଉଁଠାରେ କି କାଣ୍ଡ ଘଟାଇବ ଏହା ଶିକ୍ଷିତମାନଙ୍କର ଭାବିବାର ବିଷୟ । ଯୋଗ୍ୟତାର ବିଚାର ନ କରି, ଅପାତ୍ରରେ ମହାପଣ୍ଡିତୋପଯୋଗୀ ଉପାଧି ବିତରଣ କରିବାର ଅଭିନୟ ଏହାଧିକଥର କୌଣସି କୌଣସି ସ୍ଥାନରେ ଘଟିଥିବାର ଆମ୍ଭେମାନେ ଦେଖିଅଛୁଁ । ଯୋଗ୍ୟ ବ୍ୟକ୍ତିର ଯୋଗ୍ୟତାନୁରୂପ ପୂଜା ହେବା ଶ୍ରେୟସ୍କର, କିନ୍ତୁ ଯାହାର ଯେଉଁ ଯୋଗ୍ୟତା ନାହିଁ, ତାହାକୁ ସେପରି ଗୋଟାଏ ବଡ଼ ପଦରେ ଭୂଷିତ କରିବା ବା ତାହାର ରହସ୍ୟମୟ ମଧୁରବାଣୀରେ ସନ୍ତୁଷ୍ଟ ହୋଇ ତାହାର ନାନାପ୍ରକାର ଅଯଥା ପ୍ରଶଂସା କରିବା ଘୋର କପଟତା ଅଟେ । ଏପ୍ରକାର ଆଦର୍ଶ ଦେଶରେ ବିଶେଷତଃ ଉତ୍କଳରୂପ ଅନୁନ୍ନତ ପ୍ରଦେଶରେ ପ୍ରଚଳିତ ହେବା ଉତ୍କଳ ପକ୍ଷରେ ଘୋର ଦୁର୍ଦ୍ଦଶାର କଥା ଅଟେ । କୌଣସି ଏକ କ୍ଷୁଦ୍ର ସମ୍ମିଳନୀରେ ଏପ୍ରକାର ଏକ କାର୍ଯ୍ୟକୁ ଲକ୍ଷ କରି ସଭାପତି ମହାଶୟ (ଏପ୍ରକାର ଅଭିନୟର ଅନୁଷ୍ଠାତା ସେ ମଧ୍ୟ ନିଜେ ଅଟନ୍ତି) କହିଥିଲେ ଯେ ଏତଦ୍ୱାରା ଉତ୍କଳର ବିଶେଷ ଉନ୍ନତି ହେବ । କିନ୍ତୁ ଆମ୍ଭେମାନେ ଜାଣୁ ତଦ୍ଦ୍ୱାରା ଉତ୍କଳର ଭାବି ଅମଙ୍ଗଳର ଦ୍ୱାର ଉଦ୍ଘାଟିତ ହୋଇଥିଲା । ତାହାର ଅନୁକରଣ ସ୍ଥାନେ ସ୍ଥାନେ ହେବାକୁ ଲାଗିଲାଣି ଏବଂ ହେବ । ତଦ୍ଦ୍ୱାରା ଉତ୍କଳର ଯେ ଘୋର ଅକଲ୍ୟାଣ ସାଧିତ ହେବ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଏହାହିଁ ପ୍ରତ୍ୟେକ ସୂକ୍ଷ୍ମଦର୍ଶୀ ଲୋକଙ୍କର ମତ । ଏହା ସାହିତ୍ୟେ କପଟତାର ଶୀର୍ଷସ୍ଥାନ ଅଧିକାର କରି ରହିଅଛି ।

ସମ୍ମିଳନୀ ଦେଶର ଉନ୍ନତିର ପରି-ପୋଷକ, କିନ୍ତୁ ପ୍ରତ୍ୟେକ କଥାର ସୀମା ଅଛି, ସୀମା ଅତିକ୍ରମ କଲେ ସବୁ କଥା ଦୂଷ୍ୟ । ଉତ୍କଳରେ ସଭାସମିତିର ଯେପରି ପ୍ରାଚୁର୍ଯ୍ୟ ଦେଖା ଯାଉଅଛି, ଆମ୍ଭେମାନେ ଭୟ କରୁଅଛୁଁ ଯେ ସେସବୁଦ୍ୱାରା ଯେପରି ନ ଗୋଟିଏ ଉତ୍କଟ କପଟତାର ଅଭିନୟ ହେଉଅଛି । କାର୍ଯ୍ୟ ସହିତ କିଛି ସମ୍ପର୍କ ନାହିଁ, କେବଳ ପ୍ରସ୍ତାବ, ଅନୁମୋଦନ, ସମର୍ଥନର ଆଡ଼ମ୍ବର ବା ଅସାର ବକ୍ତୃତାରେ ଜନସାଧାରଣଙ୍କୁ ମୋହା-ଭିଭୂତ କରିବା ଘୋର କପଟତା ଛଡ଼ା ଆଉ କଣ ? କପଟ ବୃତ୍ତି ଅନେକ ସଭାସମିତିର ମୂଳରେ ପରିସ୍ଫୁଟରୂପେ ବିଦ୍ୟମାନ ଥାଏ ।

ଏହିପରି ନାନାପ୍ରକାର ସାହିତ୍ୟିକ କପଟତାର ଗତିରୋଧ ଅତ୍ୟନ୍ତ ଅବଶ୍ୟକ। ତାହା ନ ହେଲେ ଅଲକ୍ଷିତ ଭାବରେ ଜାତୀୟ ଜୀବନ ଅଧଃପତିତ ହେବ । କାରଣ ଜାତୀୟ ଜୀବନ ଓ ଜାତୀୟ ସାହିତ୍ୟର ପରସ୍ପର ଘନିଷ୍ଠ ସମ୍ବନ୍ଧ ଅଛି । ଦେଶର ଯେଉଁମାନେ ମୁଖ୍ୟ, ଶିକ୍ଷିତ ଓ କୃତବିଦ୍ୟ, ସେମାନଙ୍କର ଏବଂ ସମ୍ବାଦପତ୍ର ବା ସାମୟିକପତ୍ରମାନଙ୍କର ସମ୍ପାଦକମାନଙ୍କର ଏଥିପ୍ରତି ତୀବ୍ରଦୃଷ୍ଟି ଦେବା ସର୍ବାଗ୍ରେ କର୍ତ୍ତବ୍ୟ ।

ଯେବେ ସେହି ଶିକ୍ଷିତ ବ୍ୟକ୍ତିଗଣ ଓ ସମ୍ପାଦକମାନେ ଏପ୍ରକାର କପଟତାର ପ୍ରଶ୍ରୟ ପ୍ରଦାନ କରନ୍ତି ତାହାହେଲେ ଏହାଠାରୁ ଆଉ କଷ୍ଟ ମର୍ମାନ୍ତିକ ଯାତନାର କଥା ନାହିଁ । ସମ୍ପାଦକମାନେ ଦେଶର ମୁଖ ଅଟନ୍ତି, ସେମାନଙ୍କ ଉପରେ ଦେଶର ଅଭ୍ୟନ୍ତରୀଣ ଉନ୍ନତି ବିଶେଷ ନିର୍ଭର କରେ । ସେମାନେ ସେମାନଙ୍କ କର୍ତ୍ତବ୍ୟକୁ ପବିତ୍ର ମନେ ନ କଲେ ଦେଶର ଅମଙ୍ଗଳ ଛଡ଼ା ମଙ୍ଗଳ ନାହିଁ । ଉତ୍କଳରେ ସମ୍ବାଦପତ୍ରମାନଙ୍କ ସଂଖ୍ୟା ଦିନକୁଦିନ ବଢ଼ୁଅଛି । ଉଚ୍ଚ ଆଦର୍ଶକୁ ସମ୍ମୁଖରେ ରଖି ପତ୍ରିକାକୁ ସୁପରିଚାଳିତ ନ କଲେ ବିପଦର ପୂର୍ଣ୍ଣ ସମ୍ଭାବନା । ଆମ୍ଭେମାନଙ୍କର ଭୟ ଏହି, କାଳେ ସଂବାଦପତ୍ର ପରିଚାଳନ କାର୍ଯ୍ୟ ବଣିକ୍‌ବୃତ୍ତି ମଧ୍ୟରେ ପରିଗଣିତ ହୋଇଯିବ । ତାହାହେଲେ ଆଉ ରକ୍ଷା ନାହିଁ । ସମ୍ପାଦକମାନଙ୍କର ପୂର୍ଣ୍ଣ ଦାୟିତ୍ୱ ଜ୍ଞାନ ଓ କର୍ତ୍ତବ୍ୟଜ୍ଞାନ ଜାଗ୍ରତ ଥିବା ଶ୍ରେୟ । ଏହି ଗୁରୁତର କର୍ତ୍ତବ୍ୟଭାର ଗ୍ରହଣ ପୂର୍ବରୁ ଏହାର ଗୁରୁତ୍ୱ ଏବଂ ସ୍ୱୀୟ ଶକ୍ତି ସାମର୍ଥ୍ୟର ପରିମାଣ ଉତ୍ତମରୂପେ ଆଲୋଚନା କରି ଦେଖିବା ସର୍ବଥା ଆବଶ୍ୟକ ।

ଏହିପରି ନାନା କପଟତା ସାହିତ୍ୟରାଜ୍ୟରେ, ବିଶେଷତଃ ଉତ୍କଳର ସାହିତ୍ୟ କ୍ଷେତ୍ରରେ, ପ୍ରବେଶ କରି ଏହାକୁ କଳଙ୍କିତ କରୁଅଛି । ସତ୍ୟ ସୁନ୍ଦର ଓ ସରଳ ଅଟେ ଏବଂ ସେହି ସତ୍ୟ ସାହିତ୍ୟର ମୂଳସୂତ୍ର । ସତ୍ୟ ସ୍ଥଳେ କପଟତା ଆଶ୍ରୟ କଲେ, ସାହିତ୍ୟ ଚନ୍ଦ୍ରାମଯୋଗ୍ୟ ହେବ ନାହିଁ । ଜୀବନରେ ଯେପରି, ସାହିତ୍ୟରେ ସେହିପରି—କପଟତା ସର୍ବଥା ବର୍ଜନୀୟ ।

ଶ୍ରୀ—

---

## ରଘୁବଂଶର ଦିଲୀପ ।

(କଟକ ପ୍ରତିଷ୍ଠିତ U. Y. M. Associationରେ ପ୍ରଦତ୍ତ ବକ୍ତୃତାର ସାରାଂଶ ।)

ସର୍ବପ୍ରଥମରେ କହି ରଖିବା ଅବଶ୍ୟକ ଯେ ଆମ୍ଭେମାନେ ଦିଲୀପଙ୍କର ଜୀବନଚରିତ ବା ତାଙ୍କ ସମ୍ବନ୍ଧରେ ଐତିହାସିକ ବିବରଣ ଦେବାକୁ ବସି ନାହୁଁ । କବିବର୍ଣ୍ଣିତ ଦିଲୀପଚରିତ୍ରର ସୌନ୍ଦର୍ଯ୍ୟ ଓ ମହତ୍ତ୍ୱର ଅଭାସମାତ୍ର ଦେବା ଆମ୍ଭମାନଙ୍କର ଉଦ୍ଦେଶ୍ୟ । ସୁତରାଂ ସାଧାରଣ ଭାବରେ କବି ଏବଂ ତତ୍ପ୍ରଣୀତ କାବ୍ୟ ସମ୍ବନ୍ଧରେ ଦୁଇ ଚାରି କଥା କହିବା ଅପ୍ରାସଙ୍ଗିକ ହେବ ନାହିଁ—ବରଂ ଏହା ଏକାନ୍ତ ପ୍ରୟୋଜନୀୟ ବୋଲି ବୋଧ ହେଉଅଛି ।

ଜଣେ ଚିନ୍ତାଶୀଳ ଉକ୍ତ ସୁଲେଖକ କବିମାନଙ୍କୁ ଋଷି ସଙ୍ଗରେ ସମାନ କରିଅଛନ୍ତି । ସୂକ୍ଷ୍ମଭାବରେ ଆଲୋଚନା କଲେ କଥାଟିର ଯାଥାର୍ଥ୍ୟ ସହଜରେ ଉପଲବ୍ଧ ହେବ । ଋଷି ଅର୍ଥ ମନ୍ତ୍ରଦ୍ରଷ୍ଟା—ଅର୍ଥାତ୍ ଯେଉଁମାନେ ଧ୍ୟାନଯୋଗରେ ମନ୍ତ୍ର ଜାଣି ପାରୁଥିଲେ—ଆଧ୍ୟାତ୍ମିକ ତତ୍ତ୍ୱର ସାକ୍ଷାତ୍କାର କରି ପାରୁଥିଲେ, ସେହିମାନେ ଋଷିପଦବାଚ୍ୟ । କବି ଦିବ୍ୟଦୃଷ୍ଟିବଳରେ ସୃଷ୍ଟିରାଜ୍ୟରେ ଗଭୀର ସୌନ୍ଦର୍ଯ୍ୟ ଦେଖି ପାରନ୍ତି—ସୃଷ୍ଟିର ଭାବଗତ ପଦାର୍ଥ ମଧ୍ୟରେ

ଏକ ନେତଶକ୍ତିର ଲୀଳା ପ୍ରତ୍ୟକ୍ଷ କରି ପାରନ୍ତି ଏବଂ ଜୀବନ୍ତଭାବରେ ହୃଦୟସ୍ପର୍ଶୀ ଭାଷାରେ ବର୍ଣ୍ଣନ କରି ପାଠକସାଧାରଣଙ୍କୁ ବିମୋହିତ କରି ଦିଅନ୍ତି । କବିମାନଙ୍କର ଦୃଷ୍ଟିଶକ୍ତି ଯେପରି ଅସାଧାରଣ, ଚିତ୍ରଣଶକ୍ତି ସେହିପରି ଅଦ୍ଭୁତ । ଅନ୍ତରରେ ଯାହା ସେମାନେ ପ୍ରତ୍ୟକ୍ଷ କରନ୍ତି, ସେଗୁଡ଼ିକ ସେ ଅପୂର୍ବ ସ୍ୱର୍ଗୀୟ ବର୍ଣ୍ଣରେ ଚିତ୍ରିତ କରନ୍ତି ଯେ ପାଠକସାଧାରଣ ଦେଶକାଳର ସୀମା ଅତିକ୍ରମ କରି ନୂତନ ଦୃଶ୍ୟାବଳୀ ସମ୍ମୁଖରେ ଯାଇ ଉପସ୍ଥିତ ହୁଅନ୍ତି । ସ୍ୱଦେଶ ଏବଂ ବିଦେଶର ଉଚ୍ଚଶ୍ରେଣୀର କବିମାନଙ୍କର କାବ୍ୟାଦି ଆଲୋଚନା କଲେ ଆମ୍ଭେମାନେ ସହଜରେ ଏହା ବୁଝି ପାରିବୁଁ । ମହାକବି କାଳିଦାସ ଭାରତର ସର୍ବପ୍ରଧାନ କବି ଏବଂ ପୃଥିବୀର ଶ୍ରେଷ୍ଠ କବି-ମାନଙ୍କ ମଧ୍ୟରେ ଜଣେ । କି ନିସର୍ଗମାଧୁରୀ, କି ଲୋକଚରିତ୍ର, ଉଭୟର ଚିତ୍ରଣରେ ସେ ଯେଉଁ ଅସାଧାରଣ ଶକ୍ତିର ପରିଚୟ ପ୍ରଦାନ କରିଅଛନ୍ତି ତାହା ଏ ଦୁର୍ବଳ ପ୍ରାଣର ଧାରଣାର ଅତୀତ । ନିର୍ବାକ୍ ନିସ୍ପନ୍ଦଭାବରେ ଅନିମେଷ ନୟନରେ ସେ ଚିତ୍ରଗୁଡ଼ିକ ଆଡ଼କୁ କେବଳ ଅନାଇ ରହିବାକୁ ଇଚ୍ଛା ହୁଏ ।

ପ୍ରତ୍ୟେକ ମନୁଷ୍ୟ ଅଳ୍ପାଧିକ ପରିମାଣରେ କବି । କବିଙ୍କର ଦିବ୍ୟ ଚକ୍ଷୁ ସମସ୍ତଙ୍କର ନ ଥାଏ ସତ୍ୟ, ମାତ୍ର ସୌନ୍ଦର୍ଯ୍ୟ ଉପଲବ୍ଧି କରିବାର ଶକ୍ତି ସାମାନ୍ୟ ପରିମାଣରେ ହେଲେ ସମସ୍ତଙ୍କର ଅଛି । ତାହା ନ ଥିଲେ କାବ୍ୟପାଠ ଆମ୍ଭମାନଙ୍କ ପକ୍ଷରେ ସମ୍ପୂର୍ଣ୍ଣ ନିଷ୍ଫଳ ହୁଅନ୍ତା । ଉଚ୍ଚଶ୍ରେଣୀର କାବ୍ୟ ପାଠଦ୍ୱାରା ଆମ୍ଭେମାନେ ଅନେକ ସମୟରେ ଅଲକ୍ଷିତଭାବରେ ସଂସାରର ଧୂଳିରାଶିରୁ ବହୁ ଊର୍ଦ୍ଧ୍ୱଦେଶକୁ ଉତ୍ତୋଳିତ ହୋଇଥାଉଁ । କବିଙ୍କ ସହିତ ଏକାତ୍ମ ହୋଇ ଆମ୍ଭେମାନେ ତାଙ୍କ ଚକ୍ଷୁର ସୌନ୍ଦର୍ଯ୍ୟରାଶି ସମ୍ଭୋଗ କରିବାକୁ ସମର୍ଥ ହେଉଁ । ସୁକାବ୍ୟ ଯଥାର୍ଥରେ ଆମ୍ଭମାନଙ୍କର ଚିତ୍ତବିକାଶର ଗୋଟିଏ ପ୍ରଧାନ ସହାୟ । ଯାହା ଆମ୍ଭେମାନେ ସାଧାରଣତଃ ଦେଖିବାକୁ ଅକ୍ଷମ, ଅଥଚ ଆମ୍ଭମାନଙ୍କ ଅନୁଭୂତ ବାସ୍ତବରାଜ୍ୟରେ ଯାହାର ଅଭାବ ଦେଖି ପ୍ରାଣ ବ୍ୟାକୁଳ ହେଉଥାଏ, ଯଥାର୍ଥ କବି କାବ୍ୟ-ଚିତ୍ରରେ ତାହା ପ୍ରତିଫଳିତ କରି ଦେଖାଇ ଦିଅନ୍ତି—ସେ ବ୍ୟାକୁଳତା କିୟତ୍ ପରିମାଣରେ ହେଲେ ଦୂର କରି ଦିଅନ୍ତି । ଆମ୍ଭେମାନେ ଏ ସମ୍ବନ୍ଧରେ ଆଉ ଅଧିକ ବାକ୍ୟ ବ୍ୟୟ ନ କରି ପ୍ରକୃତ ପ୍ରସ୍ତାବର ଅବତାରଣା କରିବୁଁ ।

ମହାକବି କାଳିଦାସଙ୍କର ରଘୁବଂଶକୁ ଗୋଟିଏ ଚିତ୍ରପେଟିକା କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ଏଥିରେ ଯେମନ୍ତ କି ମନୋହର ଚିତ୍ରାବଳୀ ଗୋଟିକ ପରେ ଗୋଟିଏ ସୁସଜ୍ଜିତ ହୋଇ ରହିଅଛି । ସେଗୁଡ଼ିକ ଏଡ଼େ ସୁନ୍ଦର, ଏଡ଼େ ହୃଦୟସ୍ପର୍ଶୀ ଯେ ଥରେ ପାଠ କଲେ ହୃଦୟ-ପଟରେ ଅଙ୍କିତ ହୋଇ ରହିଯିବ । ଏହାର ପ୍ରଥମ ଚିତ୍ର ଦଲୀପ । କବିଙ୍କ ବର୍ଣ୍ଣନା ପାଠ କଲେ ମନେ ହୁଏ ଯେପରି ଗୋଟିଏ ସଜୀବ ସୁନ୍ଦର ମନୁଷ୍ୟତ୍ୱର ପ୍ରତିମୂର୍ତ୍ତି ସମ୍ମୁଖରେ ଦଣ୍ଡାୟମାନ । ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ବିକାଶ ଅତି ଉଜ୍ଜ୍ୱଳ ବର୍ଣ୍ଣରେ ଚିତ୍ରିତ ହୋଇଅଛି । ଅତ୍ୟଳ୍ପ କଥା ମଧ୍ୟରେ ଏମନ୍ତ କି ଗୋଟିଏ ଗୋଟିଏ ଶବ୍ଦରେ କବି ନିଗୂଢ଼ ଭାବରାଶି ଅନ୍ତର୍ନିହିତ କରି ରଖିଅଛନ୍ତି । ମହାରାଜ ଦଲୀପଙ୍କର ଶରୀର ବର୍ଣ୍ଣନା ଦେଖନ୍ତୁ—

ବ୍ୟୂଢୋରସ୍କୋ ବୃଷସ୍କନ୍ଧଃ ଶାଳପ୍ରାଂଶୁର୍ମହାଭୁଜଃ ।
ଆତ୍ମକର୍ମକ୍ଷମଂ ଦେହଂ କ୍ଷାତ୍ରୋ ଧର୍ମ ଇବାଶ୍ରିତଃ ॥

ମହିମାମଣ୍ଡିତ ଚରିତ୍ର ବୀରପୁରୁଷର ଦେହର ବିକାଶ ଏଥିରୁ ବଳ ଆଉ କଣ ଆଶା କରି ପାରନ୍ତୁ ? ପୁଣି ଉଗ୍ର ଚରିତ୍ର ତେଜ ସଙ୍ଗରେ ହୃଦୟର କୋମଳତାର ସମ୍ମିଳନ ଅଦ୍ଭୁତ ସୁନ୍ଦର, ଅଦ୍ଭୁତ ମଧୁର:—

ଭୀମକାନ୍ତୈର୍ନୃପଗୁଣୈଃ ସ ବଭୂବୋପଜୀବିନାଂ ।
ଅଧୃଷ୍ୟଶ୍ଚାଭିଗମ୍ୟଶ୍ଚ ଯାଦୋରତ୍ନୈରିବାର୍ଣ୍ଣବଃ ॥

ସଂସାରର ପୂର୍ଣ୍ଣ ସୌଭାଗ୍ୟ ମଧ୍ୟରେ ଦିଲୀପ ଏ ଭାବରେ ଜୀବନଯାପନ କରୁଥିଲେ, ସ୍ୱୀୟ କର୍ତ୍ତବ୍ୟ ଏ ଭାବରେ ନିର୍ବାହ କରୁଥିଲେ ତାହା କବି ଅତ୍ୟଳ୍ପ ସୀମା ମଧ୍ୟରେ ଅତି ସୁନ୍ଦରରୂପେ ଦେଖାଇ ଦେଇଅଛନ୍ତି :—

ଜୁଗୋପାତ୍ମାନମତ୍ରସ୍ତୋ ଭେଜେ ଧର୍ମମନାତୁରଃ ।
ଅଗୃଧ୍ନୁରାଦଦେ ସୋଽର୍ଥମସକ୍ତଃ ସୁଖମନ୍ୱଭୂତ୍ ।
ସ୍ଥିତ୍ୟୈ ଦଣ୍ଡୟତୋ ଦଣ୍ଡ୍ୟାନ୍ ପରିଣେତୁଃ ପ୍ରସୂତୟେ
ଅପ୍ୟର୍ଥକାମୌ ତସ୍ୟାସ୍ତାଂ ଧର୍ମ ଏବ ମନୀଷିଣଃ ।

ଅଧିକ କଥା କଣ ? ଅର୍ଥ ଏବଂ କାମ ଏତଦୁଭୟ ମଧ୍ୟ ତାଙ୍କର ଧର୍ମସାଧନର ଅଙ୍ଗସ୍ୱରୂପ ହୋଇଥିଲେ । ସାଧାରଣତଃ ଦେଖାଯାଏ ସାଧନର ଅପୂର୍ଣ୍ଣତା ବା ଅନ୍ତର୍ଦୃଷ୍ଟିର କ୍ଷୀଣତା ଯୋଗୁଁ ମାନବଜୀବନରେ ଗୋଟିଏ ଗୁଣର ବିକାଶରେ ଅନ୍ୟ ଗୋଟିଏ ସଙ୍କୁଚିତ ହୋଇଯାଏ ଅଥବା ଗୋଟିଏ ଗୁଣର ବୃଦ୍ଧି ସଙ୍ଗେ ସଙ୍ଗେ ଦୋଷଟାଏ ପ୍ରବଳ ହୋଇ ଉଠେ । ମାତ୍ର ଦିଲୀପ ଚରିତ୍ରରେ ଆମ୍ଭେମାନେ କଣ ଦେଖୁଅଛୁଁ ?

ଜ୍ଞାନେ ମୌନଂ କ୍ଷମା ଶକ୍ତୌ ତ୍ୟାଗେ ଶ୍ଲାଘା-
ବିପର୍ଯ୍ୟୟଃ ।
ଗୁଣା ଗୁଣାନୁବନ୍ଧିତ୍ୱାତ୍ ତସ୍ୟ ସପ୍ରସବା ଇବ ।

ସଦ୍‌ଗୁଣଗୁଡ଼ିକ ଏକାଧାରରେ ସହୋଦର ତୁଲ୍ୟ ପ୍ରୀତିରେ ବାସ କରୁଅଛନ୍ତି । ପରନ୍ତୁ ସବୁଗୁଡ଼ିକ 'ଯଶୋର୍ଥି ବିଫଳ' ହୋଇ ରହିଅଛନ୍ତି ।

ନାନା ଐଶ୍ୱର୍ଯ୍ୟରେ ପରିବେଷ୍ଟିତ ହୋଇ ଅଧ୍ୱରର ଦକ୍ଷିଣାସ୍ୱରୂପା ଅନୁଗତା ସୁଦକ୍ଷିଣାଙ୍କୁ ସହଧର୍ମିଣୀରୂପେ ଲାଭ କରି ରାଜା ପରମଶାନ୍ତିରେ କାଳ କଟାଉଅଛନ୍ତି । ଘରେ, ବାହାରେ ସବୁ ଶାନ୍ତ । ତାଙ୍କର ଅମିତ ତେଜ ନିକଟରେ ଶତ୍ରୁଗଣ ଅଭିଭୂତ, ସୁଶାସନଗୁଣରେ ପ୍ରଜାବୃନ୍ଦ ଚିର ଅନୁରକ୍ତ । ହଠାତ୍ ଗୋଟିଏ ବିଷାଦର ଘନ ଅନ୍ଧକାର ରାଜାଙ୍କ ହୃଦୟକୁ ଆଚ୍ଛନ୍ନ କରି ପକାଇଲା । ସେ ବିଷାଦର କାରଣ ଅପତ୍ୟହୀନତା । ପ୍ରସୂତିନିମିତ୍ତ ଯାହାଙ୍କର ପରିଣୟ, ସ୍ୱୟଂ ଯାହାଙ୍କ ପକ୍ଷରେ ଇହ ପର କାଳର କଲ୍ୟାଣହେତୁ, ସନ୍ତାନଲାଭର ସମ୍ଭାବନା ନ ଦେଖି ସେ ଯେ ଗଭୀର ଅବସାଦରେ ନିପତିତ ହେବେ, ଏଥିରେ ବିଚିତ୍ର କଣ ଅଛି ? କବି ଦିଲୀପଙ୍କ ଚରିତ୍ରରେ ଯେ ସମସ୍ତ ଗୁଣର ଉଲ୍ଲେଖ କରିଅଛନ୍ତି, ବର୍ତ୍ତମାନ କାର୍ଯ୍ୟକ୍ଷେତ୍ରରେ ତାହାର ପରୀକ୍ଷାର ପ୍ରୟୋଜନ । ଏହି ପୁତ୍ରାର୍ଥ ଅବସାଦରେ ତାହାର ଆରମ୍ଭ । କାରଣ ନିର୍ଣ୍ଣୟ ଓ ପ୍ରତୀକାରର ସ୍ଥିରୀକରଣ ଅଭିପ୍ରାୟରେ ରାଜଦମ୍ପତି କୁଳଗୁରୁ ବଶିଷ୍ଠଙ୍କ ଆଶ୍ରମକୁ ଯାତ୍ରା କଲେ । ପଥର ବର୍ଣ୍ଣନା ଯେତେ ମଧୁର ସେତେ ପ୍ରୀତିକର । ପ୍ରକୃତିର ରମଣୀୟ ଦୃଶ୍ୟରାଜି ମଧ୍ୟରେ ନିମଜ୍ଜିତ ହୋଇ ସେହି ଅରଣ୍ୟପଥରେ ରଥ ଚଳାଇବାକୁ ଲାଗିଲେ । ଏକପକ୍ଷରେ ପ୍ରକୃତିର ଅକୃତ୍ରିମ ମାଧୁରୀ, ଅପରପକ୍ଷରେ ରାଜଦମ୍ପତିଙ୍କର ଅମାୟିକ ପ୍ରୀତି-ପ୍ରଫୁଲ୍ଲ ଭାବ, ଏସମସ୍ତ ଅତି ମନୋହର । ତପୋବନର ଚିତ୍ର ତତୋଽଧିକ ହୃଦୟଗ୍ରାହୀ । ସେ ସବୁର ଉଲ୍ଲେଖ ନିଷ୍ପ୍ରୟୋଜନ । ଗୁରୁଙ୍କ ନିକଟରେ ଦିଲୀପଙ୍କର ସକରୁଣ ଆତ୍ମନିବେଦନ ପାଠ କଲାବେଳେ କ୍ଷଣକାଳପାଇଁ ଆପଣାର ସକଳ ଦୁଃଖ କଷ୍ଟ ଭୁଲି ଯାଇ ତାଙ୍କର ଦୁଃଖରେ ପ୍ରାଣ ଯେପରି ଅଭିଭୂତ ହୋଇ ପଡ଼େ । କେବଳ ଅପତ୍ୟ ଅଭାବରୁ ସମସ୍ତ ଜୀବନଟା ଯେପରି ଶୂନ୍ୟ ବୋଧ ହେଉଅଛି । କାରଣ ସନ୍ତାନ 'ପରତ୍ରେହ ଚ ଶର୍ମଣେ ।' ଗୋଟିଏ ମାତ୍ର ଶ୍ଲୋକ ଦେଖନ୍ତୁ—

ତୟା ହୀନଂ ବିଧାତର୍ମାଂ କଥଂ ପଶ୍ୟନ୍ନ ଦୂୟସେ ।
ସିକ୍ତଂ ସ୍ୱୟମିବ ସ୍ନେହାତ୍ ବନ୍ଧ୍ୟମାଶ୍ରମବୃକ୍ଷକଂ ॥

କି ଶୋଚନୀୟ ଭକ୍ତିବିନମ୍ର ଅଭିମାନ ! ସ୍ୱହସ୍ତରେ ଯେଉଁ ଆଶ୍ରମବୃକ୍ଷରେ ଜଳସେଚନ କରୁଅଛନ୍ତି ତାହାର ବନ୍ଧ୍ୟତ୍ୱ ଦେଖିଲେ ଯେପରି ଆପଣଙ୍କର କଷ୍ଟ ଅନୁଭୂତ ହୁଏ, ମୋର ଅପତ୍ୟହୀନତା ଦେଖି ଆପଣଙ୍କର ସେହିପରି କଷ୍ଟ ହେଉ ନାହିଁ କିପରି ?

ଯାହାହେଉ, ବଶିଷ୍ଠ ଧ୍ୟାନଦ୍ୱାରା କାରଣ

ନିର୍ଣ୍ଣୟ କରି ରାଜାଙ୍କୁ ଜଣାଇଲେ । ତାହା କଣ ? ଋତୁସ୍ନାତା ସୁଦକ୍ଷିଣାଙ୍କୁ ସ୍ମରଣ କରି ରାଜା ଦିଲୀପ ଇନ୍ଦ୍ରସଭାରୁ ମର୍ତ୍ତ୍ୟକୁ ଆଗମନ କଲାବେଳେ ଅନ୍ୟମନସ୍କ ଭାବରେ ପଥପ୍ରାନ୍ତସ୍ଥିତା କାମଧେନୁ ସୁରଭିଙ୍କୁ ସମ୍ମାନ ପ୍ରଦର୍ଶନ କରି ନ ଥିଲେ, ତେଣୁ ସୁରଭି ରୁଷ୍ଟ ହୋଇ ଅଭିଶାପ ଦେଲେ—ମତେ ଯେଣୁ ଅବଜ୍ଞା କଲ, ତେଣୁ ତୁମ୍ଭର ସନ୍ତାନଲାଭ ନ ହେଉ । କି କଠିନ ସମସ୍ୟା ! ସଂସାରମାର୍ଗ କିପରି କ୍ଷୁରଧାରସଦୃଶ ! ସୁରଭିଙ୍କ ଅବଜ୍ଞାରେ ଦିଲୀପଙ୍କ ଶ୍ରେୟ ଅର୍ଗଳବଦ୍ଧ ହୋଇ ରହିଅଛି; ଯେହେତୁ—

ପ୍ରତିବଧ୍ନାତି ହି ଶ୍ରେୟଃ ପୂଜ୍ୟପୂଜାବ୍ୟତିକ୍ରମଃ ।

କବି ଯେପରି କହୁଅଛନ୍ତି—ଏ ସଂସାରରେ କର୍ତ୍ତବ୍ୟରେ ତ୍ରୁଟି କରି କାହାର ନିସ୍ତାର ନାହିଁ । ଜ୍ଞାନକୃତ ହେଉ ବା ଅଜ୍ଞାନକୃତ ହେଉ, କର୍ତ୍ତବ୍ୟହାନିର ପ୍ରତିଫଳ ଆମ୍ଭମାନଙ୍କୁ ଅବଶ୍ୟ ଭୋଗ କରିବାକୁ ହେବ । ଏ ବିଧି ଅଲଂଘନୀୟ । ସୁତରାଂ ମନୁଷ୍ୟ ପକ୍ଷରେ ଏ ସଂସାରରେ କେତେ ସତର୍କତାର ପ୍ରୟୋଜନ, ତାହା ସହଜରେ ବୁଝାଯାଉଅଛି ।

ବର୍ତ୍ତମାନ ଏହାର ପ୍ରତୀକାର କଣ ? ଗୁରୁ ଆଦେଶ କଲେ—ସୁରଭିଙ୍କ କନ୍ୟା ନନ୍ଦିନୀଙ୍କୁ ସପତ୍ନୀକ ଶୁଚିବ୍ରତ ହୋଇ ସେବା କର । ସେ ପ୍ରୀତ ହେଲେ କାମନା ପୂର୍ଣ୍ଣ କରି ପାରନ୍ତି । ସେବାର ନିୟମ କିପରି କଠିନ ଦେଖନ୍ତୁ—ବନ୍ୟ ଫଳମୂଳାହାରୀ ହୋଇ ନିରବଚ୍ଛିନ୍ନ ଏହାଙ୍କର ଅନୁସରଣ କରିବାକୁ ହେବ । ନନ୍ଦିନୀ ଗମନ କଲେ ତୁମ୍ଭେ ଗମନ କରିବ, ସେ ଦଣ୍ଡାୟମାନ ହେଲେ ତୁମ୍ଭେ ଦଣ୍ଡାୟମାନ ହେବ, ସେ ଉପବେଶନ କଲେ ତୁମ୍ଭେ ଉପବିଷ୍ଟ ହେବ, ସେ ଜଳ ପାନ ନ କରିବା ପର୍ଯ୍ୟନ୍ତ ତୁମ୍ଭେ ଜଳଗ୍ରହଣ କରିବ ନାହିଁ । ବନପ୍ରତ୍ୟାଗମନ ହେଲାରୁ ରାଜପତ୍ନୀ ସୁଦକ୍ଷିଣା ସ୍ୱହସ୍ତରେ ନନ୍ଦିନୀଙ୍କର ପରିଚର୍ଯ୍ୟା କରିବେ । ଏହି ଭାବରେ ଗୋସେବା ଆରମ୍ଭ କରି ସପତ୍ନୀକ ନିଷ୍ଠାସହକାରେ ବ୍ରତ ପାଳନ କରିବାକୁ ଲାଗିଲେ—ଦାସଦାସୀ ବା ଅନ୍ୟ ଆତ୍ମୀୟ ସ୍ୱଜନ କେହି ଏ ସେବାରେ ସହାୟ ନାହିଁ—ଗୋଶାଳା ପରିଷ୍କରଣପର୍ଯ୍ୟନ୍ତ ସ୍ୱହସ୍ତରେ ନିର୍ବାହ କରିବାକୁ ହେବ । ତାହା ନ ହେଲେ ବ୍ରତପାଳନର ମୂଲ୍ୟ କଣ ? ସ୍ୱୟଂ ଦିଲୀପ ଶସ୍ତ୍ରହସ୍ତ ହୋଇ ଏକାକୀ ପ୍ରାତଃକାଳରୁ ସନ୍ଧ୍ୟା ପର୍ଯ୍ୟନ୍ତ ନିବିଡ଼ ଅରଣ୍ୟ ମଧ୍ୟରେ ଛାୟାବତ ନନ୍ଦିନୀଙ୍କର ଅନୁସରଣ କରିବାକୁ ଲାଗିଲେ । ଏହି ଗୋଚାରଣ କାଳରେ କବି ଦିଲୀପଙ୍କର ପୂର୍ବୋଲ୍ଲିଖିତ 'ଭୀମକାନ୍ତ ନୃପଗୁଣ'ର ସୁନ୍ଦର ପ୍ରମାଣ ଦେଖାଇଅଛନ୍ତି । ଏକ ପକ୍ଷରେ ହିଂସ୍ରଜନ୍ତୁଗଣ ତାଙ୍କର ତେଜୋରାଶି ଦର୍ଶନ କରି ଭୟରେ ଅଭିଭୂତ ହୋଇ ରହିଅଛନ୍ତି, ଅପର ପକ୍ଷରେ କମନୀୟ ବପୁରେ ପ୍ରତିଫଳିତ ଅନ୍ତଃକରଣର ଦୟାର୍ଦ୍ର ଭାବ ଅନୁଭବ କରି ହରିଣୀଗଣ ନିର୍ଭୟରେ ନିକଟରେ ବିଚରଣ କରୁଅଛନ୍ତି । ଅନ୍ତରର ଭାବ ବହିରଙ୍ଗରେ କିପରି ପ୍ରତିଫଳିତ ଏବଂ ତାହା କିପରି ପଶୁକୁଳର ସୁଦ୍ଧା ବୋଧଗମ୍ୟ, କବି ସୁନ୍ଦରରୂପେ ଦେଖାଇଅଛନ୍ତି ।

ଏହିପରି ଏକବିଂଶତି ଦିବସ ଅତିବାହିତ ହେଲା । ଏବେ ଦିଲୀପଙ୍କର ଶେଷ ପରୀକ୍ଷା ଉପସ୍ଥିତ । ବାହ୍ୟ ଅନୁଷ୍ଠାନରେ ବିନ୍ଦୁମାତ୍ର ତ୍ରୁଟି ନାହିଁ—ମାତ୍ର ହୃଦୟର ନିଷ୍ଠା ପରୀକ୍ଷା କରିବାର ପ୍ରୟୋଜନ । ସୁତରାଂ ବଶିଷ୍ଠଧେନୁ ଦ୍ୱାବିଂଶ ଦିବସ ସୁକୋମଳ ତୃଣଭକ୍ଷଣବ୍ୟାଜରେ ଗଙ୍ଗାପ୍ରପାତ ସନ୍ନିକଟ ହିମାଳୟ ଗହ୍ୱରକୁ ବାହାରି ଗଲେ । ଧେନୁ ଆନନ୍ଦରେ ତୃଣ ଭକ୍ଷଣ କରୁଅଛନ୍ତି, ରାଜା କିଞ୍ଚିତ୍ ଅନ୍ୟମନସ୍କ ଭାବରେ ହିମାଳୟର ଶୋଭା ସନ୍ଦର୍ଶନ କରୁଅଛନ୍ତି, ଏମନ୍ତ ସମୟରେ ହଠାତ୍ ଗୋଟାଏ ଭୀଷଣ ସିଂହ ନନ୍ଦିନୀଙ୍କୁ ଆକ୍ରମଣ କଲା । ନନ୍ଦିନୀଙ୍କର ଆର୍ତ୍ତନାଦ ଶୁଣି ରାଜା ଦୃଷ୍ଟି ଫେରାଇ ସିଂହବଧ ନିମିତ୍ତ ଶର ଉତ୍ତୋଳନ କରିବାକୁ ଉଦ୍ୟତ ହେଲେ । ମାତ୍ର

ଏ କି ଅଦ୍ଭୁତ କଥା ! ଶର ନିକ୍ଷେପନ କରିବେ କଣ ? ଅଙ୍ଗୁଳିଗୁଡ଼ିକ ଶରସଂଲଗ୍ନ ହୋଇ ଜଡ଼ବତ୍ ନିଷ୍ପନ୍ଦ ହୋଇ ରହିଲା । ରଜା ମନ୍ତ୍ରୌଷଧିରୁଦ୍ଧବୀର୍ଯ୍ୟ ଭୋଗୀ ତୁଲ୍ୟ ଦହ୍ୟମାନ ହେବାକୁ ଲାଗିଲେ । ଏହି ଅବସରରେ ସିଂହ ମନୁଷ୍ୟଭାଷାରେ ଦଳୀପଙ୍କର ବିସ୍ମୟ ବୃଦ୍ଧି କରି ନିଜର ବିବରଣ ପ୍ରକାଶ କଲା । ସେ ବିବରଣ ବଡ଼ କୌତୂହଳଜନକ—ଅର୍ଥାତ୍ ସେ ସାମାନ୍ୟ ସିଂହ ନୁହେ; ସମ୍ମୁଖସ୍ଥ ଦେବଦାରୁ ବୃକ୍ଷଟିକୁ ସ୍ୱୟଂ ସଦାଶିବ ପୁତ୍ରସ୍ନେହରେ ପାଳନ କରି ଆସୁଥିଲେ, ବନ୍ୟହସ୍ତିମାନେ ତାହାର ଦେହ କ୍ଷତ ବିକ୍ଷତ କରିବାରୁ ଅଦ୍ରିତନୟାଙ୍କ ପ୍ରାଣରେ ଦାରୁଣ ଦୁଃଖ ଜାତ ହେଲା, ସୁତରାଂ ସେହି ଅନିଷ୍ଟ ନିବାରଣ ନିମିତ୍ତ ଶୂଳପାଣିଙ୍କ କର୍ତ୍ତୃକ ସେ ପ୍ରହରୀସ୍ୱରୂପ ନିଯୁକ୍ତ ହୋଇଅଛି ଏବଂ କିଙ୍କରାଗତ ପ୍ରାଣୀମାନଙ୍କୁ ଭକ୍ଷଣ କରି ଜୀବନଧାରଣ କରିବାକୁ ଆଦିଷ୍ଟ ହୋଇଅଛି । ବର୍ତ୍ତମାନ ତାହାର ଶୋଣିତପାରଣାସ୍ୱରୂପ ଧେନୁ ଆସି ଉପସ୍ଥିତ, ତାହାକୁ ରକ୍ଷା କରିବାର ଚେଷ୍ଟା ବୃଥା । ଯେହେତୁ—'ନପାଦପୋନ୍ମୂଳନଶକ୍ତିରଂହଃ ଶିଳୋଚ୍ଚୟେ ମୂର୍ଚ୍ଛିତ ମାରୁତସ୍ୟ ।' ସିଂହର ଏହିପରି ମାନାପ୍ରଗଲ୍ଭ ବାକ୍ୟ ଶୁଣି ରଜା କିଂକର୍ତ୍ତବ୍ୟବିମୂଢ଼ ହେଲେ । ଉଭୟ ସଂକଟ ଉପସ୍ଥିତ — ଏଣେ ସଦାଶିବଙ୍କର ନିୟୋଜିତ ସିଂହର କ୍ଷୁଧାନିବୃତ୍ତି, ଅନ୍ୟ ପକ୍ଷରେ ଗୁରୁଙ୍କ ଗୋଧନରକ୍ଷା ଓ କ୍ଷତ୍ରିୟର କର୍ତ୍ତବ୍ୟପାଳନ । ଏପରି ସ୍ଥଳରେ କର୍ତ୍ତବ୍ୟ କଣ? ଉଭୟ କୂଳ ରକ୍ଷା କରିବାର ଗୋଟିଏ ମାତ୍ର ଉପାୟ ସ୍ଥିର କରି ସିଂହକୁ କହିଲେ, "ସନ୍ଧ୍ୟା ସମାଗମ ହେତୁରୁ ବାଳବତ୍ସା ନିମିତ୍ତ ଏହି ଧେନୁ ଅତ୍ୟନ୍ତ ଉତ୍ସୁକ ହୋଇଅଛନ୍ତି, ଏହାଙ୍କୁ ପରିତ୍ୟାଗ କରି ମୋର ଏହି ଦେହରେ ତୁମ୍ଭର କ୍ଷୁଧା ନିବୃତ୍ତ କର ।" ମାତ୍ର ଆମ୍ଭେମାନେ କହିଅଛୁଁ ଏ ସିଂହ ସାମାନ୍ୟ ସିଂହ ନୁହେ—ହିତବାଦନୀତି, ସୁଖବାଦନୀତି ସବୁ ତାକୁ ଜଣା । ସେ ରଜାଙ୍କ ପ୍ରସ୍ତାବ ଶୁଣି ହାସ୍ୟସମ୍ବରଣ କରି ପାରିଲା ନାହିଁ—ନାନା ଯୁକ୍ତିର ଅବତାରଣା କରି ରଜାଙ୍କର ମନ ବଦଳାଇବାକୁ ଚେଷ୍ଟା କଲା । ସେ କହିଲା, "ତୁମ୍ଭର ଏହି ଏକଚ୍ଛତ୍ର ରାଜତ୍ୱ, ନବୀନ ଯୌବନ, ମନୋହର ବପୁ, ଏ ସମସ୍ତ ତୁମ୍ଭେ ଗୋଟାଏ ସାମାନ୍ୟ ଗୋରୁ ପାଇଁ ବିସର୍ଜ୍ଜନ କରିବାକୁ ବସିଅଛ । ଦେଖୁଅଛି, ତୁମ୍ଭେ ନିତାନ୍ତ ମୂର୍ଖ, ଅବିବେକୀ ! ଅତ୍ର ତୁମ୍ଭର ଏ ଭୂତାନୁକମ୍ପା ବା କି ପ୍ରକାର ? ତୁମ୍ଭେ ଜୀବନଦାନଦ୍ୱାରା ଗୋଟିଏ ଗୋରୁକୁ ମାତ୍ର ରକ୍ଷା କରିବ, କିନ୍ତୁ ତୁମ୍ଭେ ଜୀବିତ ରହିଲେ କୋଟି କୋଟି ପ୍ରଜାଙ୍କୁ ପିତୃତୁଲ୍ୟ ସ୍ନେହରେ ପାଳନ କରି ପାରିବ । ଏଥିମଧ୍ୟରୁ କେଉଁଟି ଶ୍ରେୟସ୍କର ? ଗୁରୁଙ୍କୁ ଭୟ କରୁଅଛ ? ଗୋଟିଏ ଧେନୁ ପରିବର୍ତ୍ତରେ କୋଟିଏ ଦେଇ ତାଙ୍କୁ ସନ୍ତୁଷ୍ଟ କରିପାରି, ସେଥି ପାଇଁ ଚିନ୍ତା କଣ ?" ଅନେକ ସମୟରେ ମନୁଷ୍ୟ ସାମୟିକ ଭାବଦ୍ୱାରା ଚାଳିତ ହୋଇ କୌଣସି ମହତ୍ କାର୍ଯ୍ୟରେ ପ୍ରବୃତ୍ତ ହୋଇଥାଏ ଅଥବା ସ୍ୱାର୍ଥ ବିସର୍ଜ୍ଜନ କରିବାକୁ ଉଦ୍ୟତ ହୋଇଥାଏ । ମାତ୍ର ପରେ ଲାଭକ୍ଷତି ଗଣନା କରି ତହିଁରୁ ନିବୃତ୍ତ ହୁଏ । କିନ୍ତୁ ଦଳୀପଙ୍କୁ ସେ ଧାତୁରେ ଗଢ଼ି ନାହାନ୍ତି । ମାନବକର୍ତ୍ତବ୍ୟ ସାଧକ ତାଙ୍କର ଧର୍ମ—ଲାଭକ୍ଷତି ଗଣନା ତାଙ୍କ ହୃଦୟରେ ସ୍ଥାନ ପାଇବ କାହିଁ ? ସିଂହର ଉକ୍ତିରେ ତାଙ୍କର ପ୍ରାଣ କିଞ୍ଚିନ୍ମାତ୍ର ବିଚଳିତ ହେଲା ନାହିଁ । ସେ ବରଂ ପୂର୍ବାପେକ୍ଷା ଅଧିକ ବ୍ୟାକୁଳ ହୋଇ ସିଂହ ନିକଟରେ ତାହାର ପ୍ରାର୍ଥନା କରିବାକୁ ଆରମ୍ଭ କଲେ । ସେ ସଂସାରର ସମସ୍ତ ବିସ୍ମୃତ ହୋଇଗଲେ । ରାଜ୍ୟର ହିତଚିନ୍ତା, ଐହିକ ଓ ପାରତ୍ରିକ ମଙ୍ଗଳର ପ୍ରଧାନ ସାଧନ ଅପତ୍ୟ କାମନା, ପିତୃଋଣମୁକ୍ତିର ଆକାଂକ୍ଷା, ସବୁ କେଉଁଆଡ଼େ ଅନ୍ତର୍ହିତ ହୋଇଗଲା । ବର୍ତ୍ତମାନ ଏକମାତ୍ର ଲକ୍ଷ୍ୟ କ୍ଷତ୍ରିୟଧର୍ମରକ୍ଷା, ଏକମାତ୍ର ଚିନ୍ତା ଗୁରୁଙ୍କର ଗୋଧନରକ୍ଷା । ଏଣେ ଧେନୁର କାତର ଦୃଷ୍ଟି ତାଙ୍କ ପ୍ରାଣକୁ ଅଧିକତର

ବ୍ୟାକୁଳ କରୁଅଛି । ରଜାଙ୍କ କରଗେଳିରେ ହୃଦୟ ମନ ବିଗଳିତ ହୋଇଯାଏ । ସେ କହିଲେ—

କ୍ଷତାତ୍କିଲ ତ୍ରାୟତ ଇତ୍ୟୁଦଗ୍ରଃ
କ୍ଷତ୍ରସ୍ୟ ଶବ୍ଦୋ ଭୁବନେଷୁ ରୂଢ଼ଃ ।
ରାଜ୍ୟେନ କିଂ ତଦ୍ବିପରୀତବୃତ୍ତେଃ
ପ୍ରାଣୈରୁପକ୍ରୋଶମଲୀମସୈର୍ବା ॥

ବିନାଶରୁ ପ୍ରାଣିଗଣଙ୍କୁ ରକ୍ଷା କରିବା କ୍ଷତ୍ରିୟର ଧର୍ମ, ସେ ଧର୍ମ ପାଳନରେ ଯେ ଅକ୍ଷମ ହେଲା, ତାହାର ରାଜ୍ୟରେ କି ପ୍ରୟୋଜନ, ଅଉ ସେ କଳଙ୍କକାଳିମାମୟ ପ୍ରାଣରେ ବା କି ପ୍ରୟୋଜନ ? କ୍ଷତରୁ ରକ୍ଷା କରିବା ତ କ୍ଷତ୍ରିୟର ଧର୍ମ, ତହିଁରେ ପୁଣି ଗୁରୁଧନରକ୍ଷା ବିଶେଷ କର୍ତ୍ତବ୍ୟ-ସ୍ୱରୂପ ଉପସ୍ଥିତ ହୋଇଅଛି । ସମ୍ମୁଖରେ ତାହାର ବିନାଶ ଦେଖି ନିଜେ ଅକ୍ଷତ ଶରୀରରେ କିପରି ଗୁରୁଙ୍କୁ ମୁଖ ଦେଖାଇବି ? ଏହି ଯେ ଏକାନ୍ତ-ବିଧ୍ୱଂସୀ ଭୌତିକ ଦେହ, ଏଥିପ୍ରତି ଆମ୍ଭମାନଙ୍କର ଚିର ଅନାସ୍ଥା । ଏହା ଅପେକ୍ଷା ଉଚିତର ଯେ ଯଶଃଶରୀର ତାହାପ୍ରତି ଦୟାପର ହୋଇ ମୋର ପ୍ରାର୍ଥନା ପୂର୍ଣ୍ଣ କର । ଅବଶେଷରେ ସିଂହର ସମ୍ମତି ଜାଣି ପାରି କର୍ତ୍ତବ୍ୟନିଷ୍ଠ ବୀର ଅକୁତୋଭୟରେ କର୍ତ୍ତବ୍ୟ-ବେଦୀ ନିକଟରେ ସ୍ୱୀୟ ଶରୀରକୁ ମାଂସ ପିଣ୍ଡସ୍ୱରୂପ ଉପସ୍ଥାପିତ କଲେ ଏବଂ ସିଂହର ପ୍ରଚଣ୍ଡ ଉତ୍ପତନକୁ ପ୍ରତୀକ୍ଷା କରି ରହିଲେ । ମାତ୍ର ଏହି ଆତ୍ମବଳିର ଫଳ କଣ ହେଲା ? ମୁହୂର୍ତ୍ତକ ମଧ୍ୟରେ ସିଂହର ଦ୍ୱାର ଉନ୍ମୁକ୍ତ ହେଲା । ସାଧକପ୍ରବର ଦିଲୀପଙ୍କ ମସ୍ତକରେ ବିଦ୍ୟାଧରହସ୍ତମୁକ୍ତ ପୁଷ୍ପବୃଷ୍ଟି ନିପତିତ ହେଲା । ତତ୍ପରେ—

ଉତ୍ତିଷ୍ଠ ବତ୍ସେତ୍ୟମୃତାୟମାନଂ
ବଚୋ ନିଶମ୍ୟୋତ୍ଥିତମୁତ୍ଥିତଃ ସନ୍ ।
ଦଦର୍ଶ ରାଜା ଜନନୀମିବ ସ୍ୱାଂ
ଗାମଗ୍ରତଃ ପ୍ରସ୍ରବିଣୀଂ ନ ସିଂହଂ ॥

ହେ ବତ୍ସ ! ଉଠ, ଏହି ଅମୃତାୟମାନ ବାକ୍ୟ ଶ୍ରବଣ କରି ରାଜା ଦଣ୍ଡାୟମାନ ହୋଇ ଦେଖିଲେ, ସେ ପ୍ରଚଣ୍ଡ ସିଂହ ନାହିଁ—ଅମୃତଧାରାନିସ୍ୟନ୍ଦିନୀ ଜନନୀରୂପିଣୀ ବଶିଷ୍ଠଧେନୁ ନନ୍ଦିନୀ ସମ୍ମୁଖରେ ଛିଡ଼ା ହୋଇଅଛନ୍ତି । ଆଉ ଅଧିକ ବାକ୍ୟବ୍ୟୟ ନିଷ୍ପ୍ରୟୋଜନ । କବି ଏହିଠାରେ ସ୍ୱୀୟ ପ୍ରବୀଣ ହସ୍ତର ଶେଷ ତୂଳିକାସ୍ପର୍ଶରେ ଦିଲୀପଚରିତରୂପ ହୃଦୟହାରୀ ଚିତ୍ରର ପୂର୍ଣ୍ଣତା ସମ୍ପାଦନ କରିଅଛନ୍ତି ଏବଂ କର୍ତ୍ତବ୍ୟ ନିକଟରେ ଆତ୍ମବଳିର ଗୋଟିଏ ଅତୁଳ୍ୟ ଓ ଉନ୍ନତ ଦୃଷ୍ଟାନ୍ତ ଦେଖାଇ ଜଗତକୁ ମହାଶିକ୍ଷା ପ୍ରଦାନ କରିଅଛନ୍ତି ।

ଯଥାର୍ଥରେ କର୍ତ୍ତବ୍ୟପଥ ଏ ସଂସାରରେ ବଡ଼ ସଙ୍କଟପୂର୍ଣ୍ଣ । ସୁଖସ୍ୱାଚ୍ଛନ୍ଦ୍ୟରେ କର୍ତ୍ତବ୍ୟ ସାଧନ କରି ଚାଲିଯିବ, ପାଦରେ କଣ୍ଟକଟିଏ ପର୍ଯ୍ୟନ୍ତ ବିନ୍ଧ ହେବ ନାହିଁ, ଏ ଆଶା ଦୁରାଶା ମାତ୍ର । ଚିତ୍ତର ଏକାଗ୍ରତା ଓ ଦୃଢ଼ତା, କଠୋର ବ୍ରତ-ପରାୟଣତା ଏବଂ ଆତ୍ମୋତ୍ସର୍ଗତତ୍ପରତା ବିନା ଏ ସଂସାରରେ କେହି ସିଦ୍ଧିଲାଭ କରି ପାରି ନାହିଁ, ପାରିବ ନାହିଁ । ଯଥାର୍ଥ ମନୁଷ୍ୟତ୍ୱ ଲାଭ କରିବାକୁ ହେଲେ କର୍ତ୍ତବ୍ୟ ସାଧନ ନିମିତ୍ତ ପ୍ରାଣ ପର୍ଯ୍ୟନ୍ତ ଉତ୍ସର୍ଗ କରିବାକୁ ସର୍ବଦା ପ୍ରସ୍ତୁତ ରହିବାକୁ ହେବ । ଏହାହିଁ ଦିଲୀପଚରିତର ବିଶେଷ ଏବଂ ଅମୂଲ୍ୟ ଶିକ୍ଷା ।

## ସମାଜସଂସ୍କାର ଓ ସ୍ୱଧର୍ମରକ୍ଷା ।

ଅଦ୍ୟକାଲି ସମୟର ଗତି ପ୍ରତି ଦୃଷ୍ଟି ଦେଲେ ସ୍ପଷ୍ଟ ପ୍ରତୀତ ହୁଏ ଯେ ଭାରତର ସମଗ୍ର ହିନ୍ଦୁ-ସମାଜ ନବସଂସ୍କାରର କାର୍ଯ୍ୟକ୍ଷେତ୍ର । ଏ କଥା ସମସ୍ତ ସହୃଦୟ ଶିକ୍ଷିତ ବ୍ୟକ୍ତି ସ୍ୱୀକାର କରିବେ । କାରଣ ଅତି ପ୍ରାଚୀନ କାଳରେ ଭାରତବର୍ଷରେ ଯେପରି ରୀତି ନୀତି ବ୍ୟବହାର ଥିଲା, ତାହା

ବର୍ତ୍ତମାନ କାଳରେ ଅନେକ ପରିମାଣରେ ପରିବର୍ତ୍ତିତ ଓ ପରିତ୍ୟକ୍ତ ହୋଇଅଛି । ଯଦିଓ ଆମ୍ଭେମାନେ ସମସ୍ତେ ସେହି ତ୍ରିକାଳଦର୍ଶୀ ମୁନିମାନଙ୍କର ଉପଦିଷ୍ଟ ପଥରେ ଏବଂ ନିରୂପିତ ନିୟମରେ ଚଳିବାକୁ ବାଧ୍ୟ, ତଥାପି ପ୍ରକାଶ୍ୟ ବା ଅପ୍ରକାଶ୍ୟ ଭାବରେ ଅଗତ୍ୟା ତାହାର ଅନେକାଂଶ ଲଂଘନ କରୁଅଛୁଁ । ତଦ୍ୱାରା ଯେ ଆମ୍ଭମାନଙ୍କର ଅଲକ୍ଷିତ ଭାବରେ ଅଧଃପତନ ହେଉଅଛି, ଏକଥା ସୁନିଶ୍ଚିତ । ଯାହା ନିୟମ ବା ଧର୍ମ ବୋଲି ଅବଧାରିତ ହୋଇଅଛି ଏବଂ ଯହିଁରେ ଲୋକମାନଙ୍କର ପରମ୍ପରାଗତ ଦୃଢ଼ବିଶ୍ୱାସ ଅନୁସ୍ୟୂତ, ତାହା ଲଂଘନ କରିବା ଅହିତକର । କିନ୍ତୁ କୌଣସି ଗୋଟିଏ ପ୍ରଥା ଯଦି କାଳକ୍ରମେ ସମାଜ ମଧ୍ୟରେ ଆଦୃତ ହୋଇ କର୍ତ୍ତବ୍ୟସ୍ୱରୂପ ବିଶିଷ୍ଟ ବ୍ୟକ୍ତିବର୍ଗଦ୍ୱାରା ବିଧିବଦ୍ଧ ହୋଇଯାଏ, ତାହାହେଲେ କେତେ କାଳ ପରେ ମୁନି ବଚନ ପରି ପ୍ରତିପାଳିତ ହୁଏ ।

ବର୍ତ୍ତମାନ ଭାରତବର୍ଷରେ ହିନ୍ଦୁମାନଙ୍କର ସଂଖ୍ୟା ପ୍ରାୟ ୨୨ । ୨୩ କୋଟିରୁ ଅଧିକ ହେବ । ଏମାନଙ୍କ ମଧ୍ୟରେ ଶତ ଶତ ଧର୍ମ ଓ ସହସ୍ର ସହସ୍ର ସମ୍ପ୍ରଦାୟର ସୃଷ୍ଟି ହୋଇଅଛି । କିନ୍ତୁ ପ୍ରାଚୀନ ଭାରତ ଏହି ହିନ୍ଦୁସମାଜକୁ ଘେନି ଯେପରି ପୃଥିବୀ ମଧ୍ୟରେ ଉନ୍ନତିର ଶୀର୍ଷସ୍ଥାନ ଅଧିକାର କରିଥିଲା, ତାହା ଆଜି ଆଉ ଅଛି କି ? ଏହାର କାରଣ ସ୍ୱଧର୍ମର ହ୍ରାସ ଏବଂ ସାମାଜିକ ବିଶୃଙ୍ଖଳା । ଧର୍ମବିନା କୌଣସି ଜାତି ଉନ୍ନତିଲାଭ କରି ନ ପାରେ । ଧର୍ମ ସମାଜର ପ୍ରାଣ ସ୍ୱରୂପ । ଅତି ସାଧାରଣ ଧର୍ମର ନାନାବିଧ ବିଭିନ୍ନତା ଓ ବିବିଧ ସମ୍ପ୍ରଦାୟର ପରସ୍ପର ବିଦ୍ୱେଷ ଯୋଗୁଁ ଏଠାରେ ସମାଜର ବିଶୃଙ୍ଖଳା ସଂଘଟିତ ହେଲା । ସୁତରାଂ ନାନା ମତରେ ନାନା ଧର୍ମର ପ୍ରଚାର ହେବାରୁ ସମସ୍ତଙ୍କର ଧର୍ମ ପ୍ରତି ଏକପ୍ରକାର ଅବିଶ୍ୱାସ ଜନ୍ମି ଅଧୋଗତିର ଦ୍ୱାର ଉନ୍ମୁକ୍ତ ହେଲା । ଫଳ ହେଲା ଭାରତର ପତନ । ସେ ଯାହାହେଉ ବର୍ତ୍ତମାନ ହିନ୍ଦୁସମାଜର ଅବସ୍ଥା ବିଭିନ୍ନ ପ୍ରକାର । ଆଜି ହିନ୍ଦୁମାନେ ବ୍ରିଟିଶ୍ ସାମ୍ରାଜ୍ୟରେ ସୁଶିକ୍ଷା ଲାଭରେ କିଞ୍ଚିତ ଉନ୍ନତ ହୋଇଅଛନ୍ତି । ସମସ୍ତଙ୍କର ନିଜ ନିଜ ଧର୍ମ ଓ ଦେଶୀୟ ଦ୍ରବ୍ୟ ଏବଂ ପୂର୍ବପୁରୁଷଙ୍କ ମହତ୍ତ୍ୱ ପ୍ରତି ଦୃଷ୍ଟି ପଡ଼ିଅଛି । ଦେଖାଯାଏ, ଉଚ୍ଚଶ୍ରେଣୀର ଶିକ୍ଷିତ ହିନ୍ଦୁସନ୍ତାନମାନେ ସମାଜର ଆଧୁନିକ ଅବସ୍ଥା ବୁଝି ନବ ସଂସ୍କାରର ପକ୍ଷପାତୀ ହୋଇଅଛନ୍ତି । ଭଲ କଥା, କିନ୍ତୁ ସମାଜ ମଧ୍ୟରେ ଅଧିକାଂଶ ଅଶିକ୍ଷିତ ଥିବା ହେତୁ ସମାଜ ପଙ୍କିଳ ଓ କୁସଂସ୍କାରାଚ୍ଛନ୍ନ ହୋଇ ଅଛି । ଏପରି କି ଅନେକ ଅଶିକ୍ଷିତ ହିନ୍ଦୁମାନଙ୍କର ବିଶ୍ୱାସ ଯେ ପୂର୍ବରୁ ଆମ୍ଭ ଦେଶରେ ଯୋତା କୁର୍ତ୍ତା ବ୍ୟବହାର ନ ଥିଲା । ବରସ୍ତାନ ରଜା ହେବାରୁ ଏରୂପ ଘଟିଲା । କି କୁସଂସ୍କାର ! ଯାହା ପୁରାକାଳରୁ ଆମ୍ଭ ଦେଶରେ ରହିଅଛି, ବ୍ରାହ୍ମଣାଦି ବର୍ଣ୍ଣ ଯାହା ନିଃସଙ୍କୋଚରେ ବ୍ୟବହାର କରୁଥିଲେ, ଲୋକେ ତାହା କପଟ ବୁଝିଅଛନ୍ତି ! ଧନ୍ୟରେ ସମାଜ ! ଏହି ପ୍ରକାର ଅଶିକ୍ଷିତଙ୍କ ଘେନି ସମାଜର ଉନ୍ନତି କରିବାକୁ ହେବ ! ଏମାନେ ଆମ୍ଭମାନଙ୍କର ଯେ ଭାଇ, ଏ କଥା ତ ନିଶ୍ଚୟ । କଣ କରିବା, ଭାଇଙ୍କ ତ୍ୟାଗ କରି କି ସମାଜ ସଂସ୍କାର କରିବା ? ତାହା ନୁହେ । କିନ୍ତୁ ଏମାନଙ୍କୁ ନେଇ ବୁଝାଇ ସୁଝାଇ କାର୍ଯ୍ୟ କରିବାକୁ ହେବ । ଯଦି କେବଳ ଶିକ୍ଷିତ ଲୋକଙ୍କୁ ଘେନି ସମାଜ ଗଠନ କରୁଁ, ତେବେ ସମାଜ ସଂସ୍କାର ହେବ କିପରି ? ଦୁଃଖର ବିଷୟ ଅନେକ ଶିକ୍ଷିତ ଲୋକେ ଘୃଣାଚକ୍ଷୁରେ ଭ୍ରାତୃତ୍ୟାଗ କରି ଏକମାତ୍ର ଶିକ୍ଷିତ ସମ୍ପ୍ରଦାୟରେ ସମାଜ ସଂସ୍କାର କରିବା ସଙ୍ଗତ ମନେ କରୁଅଛନ୍ତି । ତାହା ନିତାନ୍ତ ଅସଙ୍ଗତ । ସଂସ୍କାର ଶବ୍ଦର ଅର୍ଥ ଶୁଦ୍ଧି, ଅର୍ଥାତ୍ ଦୋଷ ବା କଳଙ୍କ ପରିହାର କରି କାଳୋଚିତ ଅବିରୁଦ୍ଧ ରୀତି ପ୍ରଚଳନ କରିବା । ତେବେ ତାହା କେଉଁମାନଙ୍କଦ୍ୱାରା ନିର୍ବାଚିତ ହୋଇ ପ୍ରଚଳିତ ହେବ ? ଦେଶକାଳର ଅଭିଜ୍ଞ ସୁପଣ୍ଡିତ ଧର୍ମବିଶ୍ୱାସୀ ହିନ୍ଦୁସନ୍ତାନଙ୍କଦ୍ୱାରା । ଦେଶରେ ଏପରି ସନ୍ତାନ

ସମ୍ପ୍ରତି ଅନେକ ରହିଅଛନ୍ତି । ସେମାନଙ୍କଦ୍ୱାରା ସମାଜର ସୁସଂସ୍କାର ସହଜସାଧ୍ୟ । କେବଳ ଜଣେ ଦୁଇଜଣ ବାହାର ସମାଜ ସଂସ୍କାରର ପତାକା ଉଡ଼ାଇ ବୁଲିଲେ ସମସ୍ତଙ୍କର ତାହାପ୍ରତି କର୍ତ୍ତବ୍ୟବୁଦ୍ଧି ଓ ବିଶ୍ୱାସ ଜନ୍ମିବା ଅସମ୍ଭବ । କିନ୍ତୁ ଯେଉଁ ସୁରୁଚିର ବିଷୟ ସମାଜରେ ନୂତନ ଚଳାଇବା ଆବଶ୍ୟକ, ତାହା ସମ୍ବାଦପତ୍ର ସାହାଯ୍ୟରେ ପ୍ରଚାର କରି ସମସ୍ତ ଶିକ୍ଷିତ ବା ଅଶିକ୍ଷିତ ହିନ୍ଦୁସନ୍ତାନଙ୍କ ମତାନୁସାରେ ସମାଜର ମଙ୍ଗଳ ସକାଶେ ଚଳାଇ ନେବା ଅସଙ୍ଗତ ନୁହେ । ନୋହିଲେ ସାତ ପାଞ୍ଚ ଜଣ ଲୋକ ଅପ୍ରଚଳନୀୟ କଥାଟା ଚଳାଇ ନେଲେ କି ସମାଜ ସଂସ୍କାର ହୋଇଯିବ ? ତାଙ୍କଦ୍ୱାରା ବା ସମାଜର କି ଉପକାର ହେବ ? ଯାହା ସର୍ବବାଦିସମ୍ମତ, ତାହାହିଁ ସୁବ୍ୟବହାର । କେହି କେହି କହି ପାରନ୍ତି, ଯାହା ପୂର୍ବରୁ ଧର୍ମଶାସ୍ତ୍ରରେ ଲେଖା ନାହିଁ, ତାହା କିପରି ବା ଚଳିବ ? ସେ ସମ୍ବନ୍ଧରେ କହିବାକୁ ଯଥେଷ୍ଟ ଅଛି । ଯେଉଁ ଆର୍ଯ୍ୟଗଣଙ୍କ ନିୟମାନୁସାରେ ଆମ୍ଭେମାନେ ଚଳୁଅଛୁଁ, ସେମାନେ ମଧ୍ୟ ସମୟୋଚିତ, ପୂର୍ବରୁ ଅପ୍ରଚଳିତ କଥା ଚଳାଇ ଦେଇ ଯାଇଅଛନ୍ତି । ଏହା ସ୍ମୃତିଶାସ୍ତ୍ରରେ ଭୂରି ଭୂରି ପରିଦୃଷ୍ଟ ହୁଏ । ଦେଖ, ହିନ୍ଦୁସମ୍ମତ ମନୁସଂହିତାରେ ବ୍ରାହ୍ମଣର କୃଷିକାର୍ଯ୍ୟ ନିଷିଦ୍ଧ ବୋଲି ଲିଖିତ ଅଛି, କିନ୍ତୁ ପରବର୍ତ୍ତୀ ପରାଶର ସଂହିତାରେ କୃଷିକାର୍ଯ୍ୟ କର୍ତ୍ତବ୍ୟ ବୋଲି ଅବଧାରିତ ହୋଇଅଛି । ପ୍ରାଚୀନ ସ୍ମୃତିକାର କାଞ୍ଜି ଅଭକ୍ଷ୍ୟ ବୋଲି ପ୍ରତିପନ୍ନ କରିଥିଲେ, ନବ୍ୟସ୍ମୃତିକାର ଗଦାଧର ଅସ୍ମଦ୍ଦେଶରେ କାଞ୍ଜିରେ ଫଳ ପକାଇ ଖାଇବା ପ୍ରଥା ଚଳାଇ ନେଲେ । ବ୍ରାହ୍ମଣ ସମାଜରେ କେବଳ କାଳିନବାଦ ଚଳାଇବାର କଥା ମନ୍ୱାଦି ଧର୍ମଶାସ୍ତ୍ରରେ ଲିଖିତ ଅଛି । କିନ୍ତୁ ବଙ୍ଗୀୟ ସ୍ମୃତିକାର ରଘୁନନ୍ଦନ ବ୍ରାହ୍ମଣାଦି ସମସ୍ତ ଜାତିରେ ଉକ୍ତ ପ୍ରଥା ଚଳାଇ ନେଲେ ।

ଏହିପରି ଲେଖିଲେ ତ ଅନେକ ଉଦାହରଣ ଦିଆଯାଇ ପାରିବ । ଦୁଇ ଏକ ଗୋଟି ସାମାନ୍ୟ ପ୍ରମାଣ ଦେଖାଇ ଦେଲୁଁ । ଏକ କଥାରେ କହିବାକୁ ହେଲେ ଏହି ବିରାଟ ହିନ୍ଦୁଜାତିର ସମ୍ମାନିତ ଧର୍ମଶାସ୍ତ୍ରରେ ଯାହା କର୍ତ୍ତବ୍ୟ ଅବଧାରିତ ହୋଇଅଛି, ତାହା ସମସ୍ତ ଆଧୁନିକ ହିନ୍ଦୁସନ୍ତାନ ଜାଣି ଶୁଣି ପାଳନ କରିବାକୁ ଅକ୍ଷମ ହେଉଅଛନ୍ତି । ଯେହେତୁ କାଳର ଅପରିସୀମ ପ୍ରଭାବରୁ ତାହା ଦୁଃସାଧ୍ୟ ହୋଇ ଉଠିଅଛି । ସୁତରାଂ ଲୋକେ ବାଧ୍ୟ ହୋଇ ଅନ୍ୟାୟ ବା ଅଧର୍ମର ଆଶ୍ରୟାଧୀନ ହେଉଅଛନ୍ତି । ଦେଖ, ଆମ୍ଭମାନଙ୍କ ଦେଶର ବ୍ରାହ୍ମଣମାନଙ୍କର ପ୍ରତିଗ୍ରହ, ବେତନ ପ୍ରଭୃତି ଗ୍ରହଣ କରିବା ଯଦିଓ ଶାସ୍ତ୍ରସଙ୍ଗତ ନୁହେ, ତଥାପି ଅଗତ୍ୟା ସେମାନେ ତାହା ଅବଲମ୍ବନ କରନ୍ତି । ଅନ୍ୟାନ୍ୟ କେତେ ଜାତିର ମଧ୍ୟ ଯାହା କୁଳପରମ୍ପରାଗତ ବ୍ୟବହାର ନାହିଁ, ସ୍ୱଭାବତଃ ତାହା ବର୍ତ୍ତମାନ କାଳରେ ଜୀବିକାର ଏକମାତ୍ର ଉପାୟ ହୋଇଅଛି, ତାହା ଚିନ୍ତାଶୀଳ ପାଠକମାନଙ୍କ ଦୃଷ୍ଟିର ଦୂରବର୍ତ୍ତୀ ନୁହେ । ତେବେ ଏଗୁଡ଼ିକ ସମାଜ ମଧ୍ୟରେ କର୍ତ୍ତବ୍ୟ ହୁଏ କି ? କିନ୍ତୁ ଯେଉଁମାନେ ହିନ୍ଦୁ ସମାଜର ରକ୍ଷଣଶୀଳତା ନିୟତ ଚିତ୍ତରେ ରଖିଥାନ୍ତି, ସେମାନଙ୍କର ବିଷୟଗୁଡ଼ିକ ଭାବିବା ଉଚିତ । କାହିଁ ? ରକ୍ଷଣଶୀଳ ହେଲେ ଏତେ ଏତେ କଥା ସ୍ୱଭାବତଃ ଚଳ ଯାନ୍ତା କି ? କେବଳ ରକ୍ଷଣଶୀଳ ବୋଲି ହିନ୍ଦୁମାନଙ୍କର ଶ୍ରାଦ୍ଧ ଛାଡି ବ୍ରତ ବିବାହ ପ୍ରଭୃତି କେତେକ ଏତ ଅବହମାନ କାଳରୁ ଏକପ୍ରକାର ଚଳୁଅଛି ମାତ୍ର । ବର୍ତ୍ତମାନ କହିବାର ତାତ୍ପର୍ଯ୍ୟ ଏହି, ଯାହା ପୂର୍ବେ ଚଳ ନାହିଁ, ସମ୍ପ୍ରତି ତାହା ସ୍ୱୟଂ ଅବାଧଭାବରେ ଚଳି ଯାଉଅଛି ଏବଂ ଯାହା ଚଳିବା ଉଚିତ ବା ପୂର୍ବରୁ ଶାସ୍ତ୍ରାନୁସାରେ ଚଳିବାର ଯୋଗ୍ୟ ବୋଲି ପ୍ରତିପନ୍ନ ହୋଇଅଛି, ତାହା ଏକାବେଳକେ ଉଚ୍ଛିନ୍ନ ହେଉଅଛି । ଏଥିପ୍ରତି ସମାଜର ଲେଶ ମାତ୍ର କଟାକ୍ଷ ନାହିଁ ।

ଏ ସମସ୍ତର କାରଣ ସାମାଜିକ ବିଶୃଙ୍ଖଳା ଭିନ୍ନ ଆଉ କିଛି ନୁହେ । ପୂର୍ବରେ ହିନ୍ଦୁ ରଜାମାନେ ବ୍ରାହ୍ମଣାଦି ଜାତିର ଧର୍ମ ଓ ସମାଜ ନିୟମର ପରିଦର୍ଶକ ଏବଂ ପରିବର୍ତ୍ତକ ଥିଲେ । ସେମାନେ ଦେଶକାଳୋଚିତ ଅନେକ ପ୍ରଥା ନୂତନ କରି ଚଳାଇ ଦେଉଥିଲେ । ସମସ୍ତେ ରଜାଙ୍କର ଅନୁବର୍ତ୍ତୀ ହୋଇ ନବ ନବ ବ୍ୟବହାର ସ୍ୱୀକାର କରୁଥିଲେ । କିନ୍ତୁ ବର୍ତ୍ତମାନ ଆମ୍ଭମାନଙ୍କର ସେହି ଧର୍ମରକ୍ଷକ ହିନ୍ଦୁ ରଜାମାନେ ଥିଲେ ସୁଦ୍ଧା ସେପରି କର୍ତ୍ତବ୍ୟ ଇଚ୍ଛା ଓ ଶକ୍ତିର ଅଭାବ ହୋଇଅଛି । କେନି, ତହିଁପାଇଁ କୌଣସି ଶୋଚନା ନାହିଁ । କିନ୍ତୁ ସମାଜ ତ ରହିଅଛି ! ସମବେତ ଚେଷ୍ଟାରେ ଯାହା ହୋଇପାରେ ତାହା ଜଣେ ଜଣେ ରଜାଙ୍କ କରିବା ଅପେକ୍ଷା ଅଧିକତର । ଦୁଃଖର କଥା, ସମାଜଟିର ଏକପ୍ରକାର କୁମ୍ଭକର୍ଣ୍ଣ ନିଦ୍ରା ଅଦ୍ୟାପି ସୁଦ୍ଧା ଭଙ୍ଗ ହେଉ ନାହିଁ । ନିସ୍ତାବଶୂନ୍ୟତାର ପରାକାଷ୍ଠା ସମାଜର ଉତ୍ତମାଙ୍ଗରେ ପରିଲକ୍ଷିତ ହୁଏ । ଯେଉଁମାନେ ସମାଜର ଶୀର୍ଷସ୍ଥାନୀୟ, ସେହି ବ୍ରାହ୍ମଣ ଜାତି ଯଦି ସମାଜର ସଂସ୍କାର ନ କରନ୍ତି ଏବଂ ଧର୍ମ ରକ୍ଷାର ଉପାୟ କଳ୍ପନା ନ କରନ୍ତି, ଅଥବା ନିଜେ ଆଦର୍ଶରୂପେ ଅପର ଜାତିଙ୍କୁ ଧର୍ମର ପ୍ରଥା ଶିକ୍ଷା ନ ଦିଅନ୍ତି, ତେବେ ହିନ୍ଦୁ ଧର୍ମର ସୁରକ୍ଷା ଅସମ୍ଭବ । ଅତଏବ ହେ ଅଧୁନାତନ ଭାରତର ଶିକ୍ଷିତ ବ୍ରାହ୍ମଣ ଗଣ ! ଆଉ କାଳ ବିଳମ୍ବ କର ନାହିଁ । ସମସ୍ତେ ବଦ୍ଧପରିକର ହୋଇ ନିଜ ନିଜ ଜାତି ମଧ୍ୟରେ ଏକତା ସ୍ଥାପନ କରି ସମୟୋଚିତ ଅବିରୁଦ୍ଧ ଭାବରେ ପ୍ରଚଳନ କରଅ ଏବଂ ନିଜର ଶାସ୍ତ୍ରବିହିତ କର୍ତ୍ତବ୍ୟ କର୍ମ ପ୍ରତି ଆସ୍ଥା ରଖ । ଆମ୍ଭମାନଙ୍କର ଆର୍ଯ୍ୟବର୍ଯ୍ୟ ଋଷିବର୍ଗ ଯାହା ଯାହା ଲେଖି ରଖି ଯାଇଅଛନ୍ତି, ତାହା ତ୍ରିକାଳରେ ସୁଦ୍ଧା ଅସତ୍ୟ ନୁହେ । ସେମାନଙ୍କର ଉପଦିଷ୍ଟ ପଥରେ ପଥିକ ନ ହୋଇ ଆମ୍ଭେମାନେ ଏତାଦୃଶ ଦୁରବସ୍ଥା ଭୋଗ କରୁଅଛୁଁ । ବାସ୍ତବିକ ଆମ୍ଭେମାନେ କେତେଦୂର ଯେ କର୍ତ୍ତବ୍ୟ କର୍ମରେ କୁଠାରାଘାତ କରୁଅଛୁଁ, ଏହା ଚିନ୍ତାଶୀଳ ପାଠକ-ବର୍ଗ ନିଜେ ନିଜେ ବୁଝି ପାରୁଥିବେ । ବିଶେଷତଃ ଆଜିକାଲି କେତେ କେତେ ଇଂରାଜୀ ଶିକ୍ଷିତ ହିନ୍ଦୁସନ୍ତାନ ବହିର୍ଗତ ହୁଅନ୍ତି, ଦୁଃଖର କଥା, ସେମାନେ ଏକାବେଳକେ ସ୍ୱକୀୟ ଧର୍ମ କର୍ମ ଉପରେ ଭସ୍ମ ନିକ୍ଷେପ କରି ଏକପ୍ରକାର ନକଲ ୟୁରୋପୀୟ ବନୁଅଛନ୍ତି । ଅଥଚ ସମସ୍ତ ହିନ୍ଦୁ ସମାଜଟାକୁ ନିଜ ଆଦର୍ଶରେ ଗଠନ କରିବେ ବୋଲି ମଧ୍ୟ ସମୟ ସମୟରେ କୋଳାହଳ କରି-ଥାନ୍ତି । ଏହିପରି କେତେକ ଏ ଅସ୍ମାନଭିଜ୍ଞ ଶିକ୍ଷିତଙ୍କଦ୍ୱାରା ସମାଜର ଅନିଷ୍ଟ ଘଟୁଅଛି । ଏହି ସନାତନ ହିନ୍ଦୁଧର୍ମ ସମୂଳଭାବରେ କଦାଚ ଛିନ୍ନ ହେବ ନାହିଁ ଏବଂ ବିରାଟ ହିନ୍ଦୁଜାତିର ଅଗାଧ ଶାସ୍ତ୍ରାଗାରର କେବେହେଁ ଶୁଷ୍କ ହୋଇ ନ ପାରେ । ବରଂ ଜଗତର ସର୍ବାଂଶ ସମୟରେ ବ୍ୟାପି ଯିବ । ଦେଶର ଲୋକେ ଦେଶର ବିଦ୍ୟା ବୁଝିବାକୁ ନାହାନ୍ତି. ମାତ୍ର ସେମାନେ ଯାହାଙ୍କ ଅନୁକରଣରେ ସମ୍ପ୍ରତି ଗଠିତ ହୁଅନ୍ତି, ସେହି ସୁସଭ୍ୟ ୟୁରୋପୀୟମାନେ ଆମ୍ଭମାନଙ୍କର ଶାସ୍ତ୍ର-ସାଗର ଆଲୋଡ଼ନ କରି କେତେ କେତେ ନୂତନ ତତ୍ତ୍ୱ ଯେ ଆବିଷ୍କାର କରୁଅଛନ୍ତି, ତାହା "ଏସିୟାଟିକ ସୋସାଇଟି"ର ସଭ୍ୟଗଣ ଅବା କିଛି କିଛି ଅବଗତ ଥିବେ । ଏଥିରୁ ବୁଝନ୍ତୁ, ଆଜିକାଲି ହିନ୍ଦୁସନ୍ତାନ ସୁଶିକ୍ଷିତ ହୋଇ ନିଜ ଦେଶୀୟ ପ୍ରାଚୀନ ଶାସ୍ତ୍ରତ ଉପର ଆସ୍ଥା ପ୍ରକାଶ କରିଥାନ୍ତି । କିନ୍ତୁ ବିଦେଶୀୟ ବିଭିନ୍ନ ଧର୍ମାବଲମ୍ବୀମାନଙ୍କଦ୍ୱାରା ପ୍ରଚାରିତ ବିବିଧ ଗ୍ରନ୍ଥମାନଙ୍କୁ ଦେଖି ଅବାକ୍ ହେଉଅଛନ୍ତି । ଯାହାହେଉ, ଆଜି କାଲି ଯେତେ ଯେତେ ଶିକ୍ଷିତ ବାହାରୁଅଛନ୍ତି, ସେମାନେ ପୂର୍ବ-ପୁରୁଷଙ୍କ କ୍ଷମତା ଶୁଣି ସୁଦ୍ଧା ନିଜେ ସେମାନଙ୍କ ଉପଦିଷ୍ଟ ପଥରୁ ପଥଭ୍ରଷ୍ଟ ହୋଇ ତାଙ୍କ ପବିତ୍ର ନାମରେ ବା ଗୋତ୍ରରେ କଳଙ୍କାରୋପ କରୁ-ଅଛନ୍ତି । କି ପରିତାପର ବିଷୟ ?

ବର୍ତ୍ତମାନ ଅମ୍ଭର ଏହି ଉତ୍କଳ ଭୂମିର ଅବସ୍ଥାର କିଛି ଆଲୋଚନା କରି ପ୍ରବନ୍ଧର ଉପସଂହାର କରିବୁଁ । ଏକ ସମୟରେ ଏହି ଉତ୍କଳ ଦେଶ କିପରି ସମଗ୍ର ଭାରତରେ ଖ୍ୟାତି ଲାଭ କରିଥିଲା, ଇତିହାସରେ ତାହାର ଉଦାହରଣ ରହିଅଛି । ପ୍ରତ୍ୟକ୍ଷରେ ମଧ୍ୟ ଦେଖିବାକୁ ଗଲେ ଉତ୍କଳର ନାନା ସ୍ଥାନରେ ପୂର୍ବତନ ଅବସ୍ଥାର ପରିଚାୟକ କୀର୍ତ୍ତିରାଶି ରହିଅଛି । ତାହା ସବିଶେଷ ଦର୍ଶାଇବା ଆବଶ୍ୟକ ନୁହେ । ତେବେ ସେହି ଉତ୍କଳର ଅଧୁନାତନ ସମସ୍ତ ସନ୍ତାନମାନଙ୍କ ଅବସ୍ଥା ଉନ୍ନତିର ପ୍ରତିବନ୍ଧକ ଅନେକ ରହିଅଛି । ଯଥା, ଶିକ୍ଷାର ଅଭାବ, ଅର୍ଥର ଅଭାବ; ଉତ୍ସାହ ଏବଂ ସାହସର ଅଭାବ । ପ୍ରଧାନତଃ ପ୍ରଚଳିତ ଶିକ୍ଷାପଦ୍ଧତିର ମହତ୍ତ୍ୱ ସମସ୍ତ ଅଂଶରେ ବା ସମସ୍ତ ହୃଦୟରେ ଅଙ୍କୁରିତ ହୋଇ ନାହିଁ । ସୁତରାଂ ଭଲମନ୍ଦ ବୁଝି ସାର ସଂଗ୍ରହ କରିବା କଥା ସମଗ୍ର ଉତ୍କଳ ବୁଝି ନାହାନ୍ତି । ସେହି ହେତୁ ଉତ୍କଳ ଅନ୍ୟ ଦେଶ ସହିତ ପ୍ରତିଯୋଗିତାସ୍ଥିତା କରିବ କିପରି ? ପୂର୍ବରୁ କହିଅଛୁଁ ଯେ ଭାରତବର୍ଷରେ ବିବିଧ ଧର୍ମ ଓ ସମ୍ପ୍ରଦାୟ ଭେଦରେ ସମାଜର ବିଶୃଙ୍ଖଳା ଘଟିଅଛି । ତାହା ଯଥାର୍ଥ । ଉତ୍କଳର ଅଧୁନାତନ ଅବସ୍ଥା ତଦ୍ରୂପ । କେତେକ ଜଣଙ୍କ ପ୍ରାଚୀନ ଉଚ୍ଚସ୍ତ ଶ୍ରେଣୀର ସମସ୍ତ ହିନ୍ଦୁ ସନ୍ତାନ ପ୍ରକୃତ ଧର୍ମ ପ୍ରାୟ ଅନେକାଂଶରେ ତ୍ୟାଗ କଲେଣି । ଏପରି କି ନାମମାତ୍ର ହିନ୍ଦୁ ଥାଇ ପ୍ରକୃତ କର୍ତ୍ତବ୍ୟ ତ୍ୟାଗ କରି ସମ୍ପୂର୍ଣ୍ଣ ଅହିନ୍ଦୁର ଆଚରଣ କରନ୍ତି । ତେବେ ଏମାନଙ୍କ ଦ୍ୱାରା ସମାଜ ଯେ କଳଙ୍କିତ, ଏକଥା କହିବା ବାହୁଲ୍ୟ ମାତ୍ର ; ବରଂ ପ୍ରକାଶ୍ୟରେ ଅନ୍ୟ ଧର୍ମ ଗ୍ରହଣ କରିବା ଅପେକ୍ଷା ଗୋପନରେ ଅଧର୍ମ ଆଚରଣ ନିତାନ୍ତ ଅନ୍ୟାୟ । ବର୍ତ୍ତମାନ କୁଳୋଚିତ ଓ କାଳୋଚିତ ନୀତି ବା ଧର୍ମର ସୁପନ୍ଥା ଅବଲମ୍ବନ କରି ଉତ୍କଳ ଯଦି ହୃଦୟରେ ଆଶା ପୋଷଣ କରି ସାହସ ଓ ଉତ୍ସାହ ପ୍ରଦର୍ଶନ କରିପାରନ୍ତି, ତେବେ ପରିଣାମରେ ଶୁଭଫଳ ଫଳିବା ସମ୍ଭବପର ।

ଶ୍ରୀ ଜୟକୃଷ୍ଣ ମିଶ୍ର କାବ୍ୟତୀର୍ଥ

---

## କବି ଗୋପାଳକୃଷ୍ଣ ପଟ୍ଟନାୟକ ।

ଉତ୍କଳଭଣ୍ଡାର ଗୌରବବର୍ଦ୍ଧନକାରୀ ପ୍ରାଚୀନ କବିମାନଙ୍କ ମଧ୍ୟରେ ଗୋପାଳକୃଷ୍ଣ ଜଣେ ଅନ୍ୟତମ ଅଟନ୍ତି । ବଙ୍ଗଦେଶର ଚଣ୍ଡୀଦାସ, ବିଦ୍ୟାପତି, ଗୋବିନ୍ଦ ଦାସଙ୍କ ପରି ଅମ୍ଭମାନଙ୍କ ଗୋପାଳକୃଷ୍ଣ ଜଣେ ବୈଷ୍ଣବ କବି । ଏହାଙ୍କର ପ୍ରାୟ ସମସ୍ତ କବିତା ରାଧାକୃଷ୍ଣଙ୍କ ଲୀଳାଘଟିତ । କବିଙ୍କ ରଚିତ କୌଣସି ଏକ ବିଶେଷ ମହାକାବ୍ୟ ନାହିଁ, ମାତ୍ର ବିବିଧ ରାଗରାଗିଣୀଯୁକ୍ତ ଅସଂଖ୍ୟ ସଙ୍ଗୀତ ଏବଂ ଖଣ୍ଡକାବ୍ୟ ବହୁଳ ପରିମାଣରେ ବିଦ୍ୟମାନ ଅଛି । କବି ଗୋପାଳକୃଷ୍ଣଙ୍କ ପ୍ରପୌତ୍ର ବାବୁ ରାମକୃଷ୍ଣ ପଟ୍ଟନାୟକଙ୍କଠାରୁ ଅମ୍ଭେମାନେ ଦୁଇଖଣ୍ଡି ହସ୍ତଲିଖିତ ପୁସ୍ତକ ଉପହାରସ୍ୱରୂପ ପ୍ରାପ୍ତ ହୋଇଅଛୁଁ । ସେଥିରେ ଅନେକଗୁଡ଼ିଏ ସଙ୍ଗୀତ ସଂଗୃହୀତ ଅଛି । ଶୁଣିଲୁଁ, ଏତଦ୍‌ଭିନ୍ନ କବିଙ୍କର ଆହୁରି ମଧ୍ୟ ଅନେକ ସଙ୍ଗୀତ ଅଛି । କବି ରଚିତ କବିତାମାନ ସ୍ୱହସ୍ତରେ ପୁସ୍ତକାକାରରେ କିଛି ଲେଖି ରଖି ଯାଇ ନାହାନ୍ତି । ସେ କାନ୍ଥରେ କବିତାମାନ ଲେଖି ଦିଅନ୍ତି, ଅନ୍ୟ ଲୋକେ ତାହା ନକଲ କରି ନେଉଥିଲେ । ଏଥିରେ ତାହାଙ୍କ କୃତ ଅନେକ କବିତା ଯେ ବିଲୁପ୍ତ ହୋଇ ଯାଇଥିବ, ଏକଥା ସହଜରେ ଅନୁମେୟ ।

କବି ଗୋପାଳକୃଷ୍ଣ ଶାଳିବାହନ ଅବ୍ଦ ୧୭୦୭ ଆଷାଢ଼ ମାସ ୧୧ ଦିନ ଶୁକ୍ଳ ପ୍ରତିପଦ ଦିବସରେ ଜନ୍ମଗ୍ରହଣ କରିଥିଲେ । ୧୭୭୮ ଅବ୍ଦରେ ପରଲୋକ ପ୍ରାପ୍ତ ହୋଇଅଛନ୍ତି । ସୁତରାଂ ତାହାଙ୍କ

ଜୀବନକାଳ ୬୧ ବର୍ଷ ମାତ୍ର ଅଟେ । ଗୋପାଳକୃଷ୍ଣଙ୍କ ପିତାଙ୍କ ନାମ ବନବାସୀ ପଟ୍ଟନାୟକ; ମାତାଙ୍କ ନାମ ଲଳିତା ଦେବୀ । ବନବାସୀ ଜ୍ୟୋତିଷର ଅସାଧାରଣ ପଣ୍ଡିତ—ଲଳିତା ଦେବୀ ମଧ୍ୟ ସେହିପରି ସାଧ୍ୱୀ ଏବଂ ପତିପରାୟଣା ଥିଲେ । ଆମ୍ଭେମାନେ ପୃଥିବୀସ୍ଥ ଯେ କୌଣସି ଜଣ ମହାପୁରୁଷଙ୍କ ଜୀବନଚରିତ ପାଠ କରିଅଛୁଁ, ପ୍ରାୟ ସମସ୍ତେ ସାଧ୍ୱୀ ପତିପରାୟଣା ଗର୍ଭଜାତ । ଏଥିରୁ ରକ୍ତ ମାଂସର ପବିତ୍ରତା ସହିତ ମାନସିକ ମହତ୍ତ୍ୱର ନିକଟ ସମ୍ବନ୍ଧ ଥିବାର ସ୍ପଷ୍ଟ ପ୍ରତୀୟମାନ ହୁଏ । ଜନନୀର ମାନସିକ ପବିତ୍ର ଭାବନାଚୟରେ ସନ୍ତାନମାନେ ପ୍ରାୟ ଉତ୍ତରାଧିକାରୀ ହୋଇଥାନ୍ତି । ଏଥିରୁ ପୁତ୍ରର ମହତ୍ତ୍ୱ ଏବଂ ଗୌରବ ଜନନୀର ପୁଣ୍ୟାନୁଷ୍ଠାନର ଫଳସମ୍ଭୂତ ବୋଲି ସିଦ୍ଧାନ୍ତ କରିବା ଅସଙ୍ଗତ ନୁହେ । ଗୋପାଳକୃଷ୍ଣ ଏକମାତ୍ର ପୁତ୍ର ଥିବାରୁ ଜନକ ଜନନୀଙ୍କର ଅତ୍ୟନ୍ତ ସ୍ନେହାଧାର ଥିଲେ । ଏହା ନୈସର୍ଗିକ ନିୟମର ପରିଚାୟକ ଅଟେ । ମାତ୍ର ଲଳିତା ଦେବୀଙ୍କର ପୁତ୍ରସ୍ନେହ ଏଠାରେ ମଧ୍ୟ ସୀମା ଲଙ୍ଘନ କରିଥିଲା । ଅଶିକ୍ଷିତା ତଥା ପୁତ୍ରବତ୍ସଳା ଜନନୀମାନେ ସନ୍ତାନମାନଙ୍କୁ ପ୍ରାୟ ଶ୍ରମସାଧ୍ୟ କର୍ମରେ ନିଯୁକ୍ତ କରିବାକୁ ସମ୍ମତ ହୁଅନ୍ତି ନାହିଁ, ପୁଣି ସନ୍ତାନର ବାଲ୍ୟସୁଲଭ ଉଚ୍ଛୃଙ୍ଖଳଜନିତ ଦୋଷ ସଂଶୋଧନରେ ମଧ୍ୟ ଔଦାସୀନ୍ୟ ଅବଲମ୍ବନ କରିଥାନ୍ତି । ଜନକ ଜନନୀଙ୍କର ଅବୋଧଜନୋଚିତ ପୁତ୍ରବାତ୍ସଲ୍ୟ ବାଲ୍ୟକାଳରେ ଗୋପାଳକୃଷ୍ଣଙ୍କର ଅନିଷ୍ଟର କାରଣ ହୋଇ ପଡିଥିଲା । ସେ ଶୈଶବାବସ୍ଥାରେ ଦାଣ୍ଡେ ଦାଣ୍ଡେ ଗ୍ରାମ୍ୟ କୁକର୍ମୀ ଇତର ବାଳକମାନଙ୍କ ସହିତ ଦିନଯାକ କ୍ରୀଡ଼ା କୌତୁକରେ ଯାପନ କରିବାର ବିଶେଷ ସୁଯୋଗ ପ୍ରାପ୍ତ ହୋଇଥିଲେ । ମାତ୍ର ଅନଳ ସାମାନ୍ୟ ଆଚ୍ଛାଦନରେ ଚିରଦିନ ପ୍ରଚ୍ଛନ୍ନ ଅବସ୍ଥାରେ ରହି ପାରେ ନାହିଁ । ସାମାନ୍ୟ ପ୍ରକାର ସୁଯୋଗ ପ୍ରାପ୍ତ ହେଲେ ଅପଣାର ସ୍ୱାଭାବିକ ଧର୍ମ ପ୍ରକାଶ କରିଥାଏ । ଗୋପାଳକୃଷ୍ଣଙ୍କର ସ୍ୱାଭାବିକୀ ପ୍ରତିଭା ଏତେ ଦିନ ପର୍ଯ୍ୟନ୍ତ ଜନକ ଜନନୀଙ୍କର ଔଦାସୀନ୍ୟରୂପ ଆଚ୍ଛାଦନରେ ଆବୃତ ହୋଇଥିଲା, ଘଟନା ବିଶେଷରେ ତାହା ପ୍ରକାଶ ହୋଇ ପଡିଲା । ଦିନକରେ ଗୃହସମୀପସ୍ଥ ବୈରାଗୀ ପଟ୍ଟନାୟକଙ୍କ ମଣ୍ଡପରେ ଏହାଙ୍କର ପିତା କେତେକ ଜଣ ପଣ୍ଡିତଙ୍କ ସହିତ ବସି ବିଦଗ୍ଧମାଧବ ନାଟକ ବ୍ୟାଖ୍ୟା କରୁଥିଲେ, ବାଳକ ଗୋପାଳ କୃଷ୍ଣ ପାଖରେ ବସି ଶ୍ଳୋକାର୍ଥ ଶ୍ରବଣ କରୁଥାନ୍ତି । ସଭା ଭଙ୍ଗ ଉତ୍ତାରେ ଜଣେ ପଣ୍ଡିତ ଗୋପାଳ କୃଷ୍ଣଙ୍କୁ ଲକ୍ଷ କରି କହିଲେ, ଅହୋ କି ପରିତାପର କଥା, ଏପରି ପଣ୍ଡିତର ପୁତ୍ରଟା ମୂର୍ଖ ହୋଇଗଲା । ଉପସ୍ଥିତ ସମସ୍ତ ଲୋକେ ଏ କଥା ଶ୍ରବଣ କଲେ । ସାମୁଦ୍ରିକ ବିଦ୍ୟାବିତ୍ ବାସୁଦେବ ପଟ୍ଟନାୟକ ନାମକ ଜଣେ ଲୋକ ଗୋପାଳକୃଷ୍ଣଙ୍କୁ ଅନାଇ କହିଲେ, "ଦେଖା ତ ବାପା ତୋ ହାତ—ତୋହର ବିଦ୍ୟା ହେବ କି ନାହିଁ ଦେଖିବା ।" ଏଥିଉତ୍ତାରେ ସେ ପିଲାର ହାତ ଦେଖି ପ୍ରକାଶ୍ୟ ଭାବରେ କହିଲେ, ନାହିଁ ନାହିଁ, ଏ ପିଲା କଦାଚ ମୂର୍ଖ ହେବ ନାହିଁ, ଏ ଜଣେ ଅସାଧାରଣ ଲୋକ ହେବ । ଉତ୍କଳ ରାଜ୍ୟରେ ଏହା ନାମରେ ଡିଣ୍ଡିମ ବାଜିବ । ବସ୍ତୁତଃ ଦେଖା ଗଲା, ବାସୁଦେବ ପଟ୍ଟନାୟକ ସାମୁଦ୍ରିକ ବିଦ୍ୟାରେ ବୃଥା ଶ୍ରମ କରି ନ ଥିଲେ । ବାଳକ ଗୋପାଳକୃଷ୍ଣ ସମସ୍ତ କଥା ଶୁଣିଲେ, ତାହାଙ୍କର ହୃଦୟନିହିତ ନୈସର୍ଗିକ ଜ୍ଞାନ ଉଦ୍ରେକିତ ହୋଇ ଉଠିଲା । ଘରକୁ ଆସି ଜନନୀଙ୍କୁ କହିଲେ, ମା! ମତେ ଭାତ ଦିଅ, ମୁଁ ଖାଇ ଚାଟଶାଳୀକୁ ପାଠ ପଢ଼ିବାକୁ ଯିବି । ମାତା ଶୁଣି ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ, ମୋହର ଆଜ ପରମ ସୌଭାଗ୍ୟର ବିଷୟ, ତୋ ମୁହଁରୁ ଏହା ଶୁଣିଲି । ଏଥି ଉତ୍ତାରେ ଜନନୀ ଅତ୍ୟନ୍ତ ଆଦର ଏବଂ ଆହ୍ଲାଦ ସହିତ ପୁତ୍ରକୁ କୋଳରେ ବସାଇ ଭାତ ଖୁଆଇ ଦେଇ ଚାଟଶାଳୀକୁ ପଠାଇ ଦେଲେ । ଯଥାବିଧି ଅଧ୍ୟୟନ ଚାଲିଲା । ଗୋପାଳକୃଷ୍ଣ ଶାଳିବାହନ ୧୭୧୫ ସାଲରେ ଓଡ଼ପାଠ ସମାପ୍ତ

କବି ଗୀତ ଛନ୍ଦ ଏବଂ କାବ୍ୟ ପ୍ରଭୃତି ପଢ଼ିବାକୁ ଲାଗିଲେ ।

ଗୋପାଳକୃଷ୍ଣଙ୍କର ପ୍ରାଥମିକ ସଂସ୍କୃତ ଗୁରୁଙ୍କ ନାମ ବାଇଲୁଲ ମହାପାତ୍ର । ଏହାଙ୍କଠାରୁ ସେ ଅମରକୋଷ ଅଭିଧାନ ଏବଂ ଜୁମର ବ୍ୟାକରଣ ପଢ଼ିଥିଲେ । ୧୭୨୬ ଅବ୍ଦରେ ବ୍ୟାକରଣ ଏବଂ ଅଭିଧାନ ସମାପ୍ତ କରି ଗୋସ୍ୱାମୀକୃତ ଗ୍ରନ୍ଥମାନ ଅଧ୍ୟୟନ କଲେ । ପୂର୍ବ କାଳରେ ଭଦ୍ର ସନ୍ତାନମାନେ ବ୍ୟାୟାମଚର୍ଚ୍ଚାରେ ନିମଗ୍ନ ଥିଲେ; ବିଶେଷତଃ ରାଜପାରିଷଦମାନଙ୍କୁ ଯଥା-ସ୍ଥିତ ବ୍ୟାୟାମ ଶିକ୍ଷା କରିବାକୁ ହେଉଥିଲା । ଗୋପାଳକୃଷ୍ଣ ଉପଯୁକ୍ତରୂପେ ବ୍ୟାୟାମ ଶିକ୍ଷା କରିଥିଲେ । କବି ଗୋପାଳକୃଷ୍ଣ ଭଦ୍ରବଂଶଜ ରାଜାନୁଗୃହୀତ ବିଦ୍ୱାନ୍ ଏବଂ ବଳିଷ୍ଠ ଥିଲେ ମଧ୍ୟ ଅତିଶୟ ଶିଷ୍ଟାଚାରୀ ଓ ନିରହଙ୍କାର ଥିଲେ । ତାହାଙ୍କ ସମୟରେ, ବିଶେଷତଃ ଉଚ୍ଚ ଜାତି ମଧ୍ୟରେ ବାଲ୍ୟବିବାହରୂପ କଦର୍ଯ୍ୟ ପ୍ରଥା ନ ଥିଲା । ଗୋପାଳକୃଷ୍ଣଙ୍କର ୨୫ ବର୍ଷ ବୟସ ସମୟରେ ବିବାହ ହୋଇଥିଲା । ସ୍ତ୍ରୀଙ୍କର ନାମ ସୁଲକ୍ଷଣା । ନାମାନୁସାରେ ଏହି ସ୍ତ୍ରୀ ମଧ୍ୟ ସୁଲକ୍ଷଣା ଏବଂ ଲାବଣ୍ୟମୟୀ ଥିଲେ ।

ଗୋପାଳକୃଷ୍ଣଙ୍କର ଜନ୍ମସ୍ଥାନ ପାରଳାଖିମେଣ୍ଡି, ମାତ୍ର ଏହାଙ୍କ ପୂର୍ବପୁରୁଷମାନଙ୍କ ଆଦିମ ନିବାସ ଯାଜପୁର, ପାରଳା ଖିମିଡିର ପୂର୍ବତନ ମହାରାଜାମାନେ ରାଜକାର୍ଯ୍ୟ ଚଳାଇବା ନିମନ୍ତେ ଯାଜପୁରରୁ ୩ ଜଣ ଶିକ୍ଷିତ କରଣ ନେଇ ଯାଇ ଥିଲେ । ସେହି କର୍ମଚାରୀମାନଙ୍କ ଉପାଧି ପାତ୍ର । ସେହି ତିନି ଜଣ କରଣଙ୍କ ଉତ୍ତରାଧିକାରୀ ଶତାଧିକ ଘର କରଣ ବର୍ତ୍ତମାନ ପାରଳାଖିମିଡିରେ ଶାଖା ପ୍ରଶାଖା ବିସ୍ତାର କରି ବାସ କରୁଅଛନ୍ତି ।

ଅମ୍ଭେମାନେ ଦେଖିଲୁଁ ପାରଳାଖିମିଡି ଅଧିବାସିମାନଙ୍କ ମଧ୍ୟରେ ବ୍ରାହ୍ମଣ, କରଣ ଏବଂ ତେଲଗୁ ଏହି ତିନି ଶ୍ରେଣୀର ଲୋକ ପ୍ରଧାନ । ଏମାନେ ରାଜାନୁଗୃହୀତ ଏବଂ ଅଧିକାଂଶ ରାଜକର୍ମଚାରୀ ଅଟନ୍ତି । ଏମାନେ ନିଶ୍ଚୟ ପାରଳାଖିମିଡିର ଆଦିମନିବାସୀ ନୁହନ୍ତି । ରାଜକାର୍ଯ୍ୟ ଉପଲକ୍ଷରେ ତଥା ରାଜସମ୍ମାନରେ ଆକୃଷ୍ଟ ହୋଇ ଉତ୍କଳ, ମଧ୍ୟପ୍ରଦେଶ ଏବଂ ଦାକ୍ଷିଣାତ୍ୟରୁ ଆସି ପୁରୁଷ-ପରମ୍ପରା ଦୀର୍ଘକାଳ ଯାବତ୍ ବାସିନ୍ଦାରୂପେ ଅଧିବାସ କରୁଅଛନ୍ତି ।

ପାରଳାଖିମିଡିର ପୂର୍ବତନ ମହାରାଜା ପଦ୍ମନାଭ ନାରାୟଣ ଦେଓଙ୍କ ଅଧିକାର ସମୟରେ ରାଜ୍ୟ ମଧ୍ୟରେ ଗୋଟିଏ ବିଦ୍ରୋହ ସଂଘଟିତ ହୋଇଥିଲା । କବି ଗୋପାଳକୃଷ୍ଣ ବିଦ୍ରୋହଲିପ୍ତ ଲୋକମାନଙ୍କ ସହିତ ସମ୍ପର୍କ ରଖୁଥିବା ହେତୁ ରାଜାଙ୍କ ମନରେ ସନ୍ଦେହ ଜାତ ହେଲା । ଏହି ସୂତ୍ରରେ ଅନ୍ୟାନ୍ୟ ୩୦ ଜଣ ଲୋକ ସହିତ ଗୋପାଳକୃଷ୍ଣ ରାଜ୍ୟରୁ ତାଡ଼ିତ ହୋଇଥିଲେ । ବୋଧହୁଏ ରାଜବିଦ୍ରୋହିତା ଅପରାଧରେ ତାହାଙ୍କର ସର୍ବସ୍ୱ ମଧ୍ୟ ଅପହୃତ ହୋଇଥିଲା । କାରଣ ସେ ସମୟରେ ତାହାଙ୍କୁ ଅନ୍ନ ବସ୍ତ୍ର ସକାଶେ ବିଶେଷ ଅସୁବିଧା ଭୋଗ କରିବାକୁ ହୋଇଥିଲା ।

ଗୋପାଳକୃଷ୍ଣ ଏହିପରି ପାରଳାଖିମିଡିରୁ ତାଡ଼ିତ ହୋଇ ଗଞ୍ଜାମ ସହର ନିବାସୀ ବକ୍ରବାକ୍ ଚକ୍ରପାଣି ପଟ୍ଟନାୟକଙ୍କ ଆଶ୍ରୟରେ ବାସ କରିଥିଲେ । ଏକଦା ସାୟାହ୍ନ ସମୟରେ ଉକ୍ତ ବକ୍ରବାକ୍ ଚକ୍ରପାଣି ଗୋପାଳକୃଷ୍ଣ ଏବଂ ଅନ୍ୟାନ୍ୟ କେତେ ଜଣ ଭଦ୍ରଲୋକଙ୍କ ସହିତ ବାୟୁ ସେବନ ନିମନ୍ତେ ଋଷିକୁଲ୍ୟା ନଦୀକୂଳରେ ଭ୍ରମଣ କରୁଥିଲେ । ଏହି ସମୟରେ ନାନାଲଙ୍କାର-ବିଭୂଷିତା ପରମା ସୁନ୍ଦରୀ ଗୋଟିଏ କୁଳବତୀ ଯୁବତୀ ସ୍ତ୍ରୀ ମସ୍ତକୋପରି ଜଳକୁମ୍ଭ ସ୍ଥାପନ କରି ଚାଲିଗଲା । ସେହି ଯୁବତୀକୁ ଲକ୍ଷ କରି ଗୋଟିଏ

କବିତା ରଚନା କରିବାନିମନ୍ତେ ଉକ୍ତ ଚକ୍ରପାଣି ପଟ୍ଟନାୟକ ସମସ୍ତଙ୍କୁ ଅନୁରୋଧ କଲେ । ତଦନୁସାରେ ସମସ୍ତେ ଗୋଟିଏ ଗୋଟିଏ କବିତା ରଚନା କଲେ । ସେଥିମଧ୍ୟରେ ଗୋପାଳକୃଷ୍ଣଙ୍କ କବିତା ସର୍ବୋତ୍କୃଷ୍ଟ ହୋଇଥିଲା । ଗୋପାଳକୃଷ୍ଣଙ୍କର ଏହା ସର୍ବପ୍ରଥମ କବିତା । କବିତା ପାଠ କରି ସମସ୍ତେ ବିମୋହିତ ହୋଇଥିଲେ । ଏହି ସୂତ୍ରରେ ଗୋପାଳକୃଷ୍ଣଙ୍କ ହୃଦୟରେ ଅସାଧାରଣ କବିତ୍ୱ ଶକ୍ତି ନିହିତ ଅଛି ବୋଲି ପ୍ରଥମ ଅନୁମିତ ହେଲା । ଚକ୍ରପାଣି ପଟ୍ଟନାୟକ ଜଣେ ବହୁଦର୍ଶୀ ଏବଂ ଗୁଣଗ୍ରାହୀ ଲୋକ ଥିଲେ ବୋଲି ଜଣାଯାଏ । ଗୋପାଳକୃଷ୍ଣ ଯେ ଜଣେ ଅସାଧାରଣ କବି ହେବେ ପ୍ରଥମ କବିତାଟି ଶୁଣି ସେ ସ୍ପଷ୍ଟ ବାକ୍ୟରେ ପ୍ରକାଶ କରିଥିଲେ ଏବଂ କବିତାଲେଖନ ଅଭ୍ୟାସ କରିବାନିମନ୍ତେ କବିଙ୍କୁ ଅନୁରୋଧ କରିଥିଲେ । ସେ ସମୟଠାରୁ ୭୪ ବର୍ଷ ବୟକ୍ରମ ପର୍ଯ୍ୟନ୍ତ ୬୦ ବର୍ଷ କାଳ ସେ କବିତା ରଚନାରେ ନିଯୁକ୍ତ ଥିଲେ । ଆମ୍ଭେମାନେ ତତ୍କାଳରଚିତ କେତେଗୁଡ଼ିଏ କବିତା ପାଠ କରିଅଛୁଁ । କବିତାଗୁଡ଼ିକ ଯୁବକଯୁବତୀର ପ୍ରଣୟଗୀତି ମାତ୍ର । ସେଥିରେ ଯେ କବିଙ୍କର ନୈସର୍ଗିକ କବିତ୍ୱ ଶକ୍ତି ପ୍ରକାଶ ପାଇଅଛି ସେ ବିଷୟ ଅସ୍ୱୀକାର କରିବାର ଉପାୟ ନାହିଁ; ମାତ୍ର ଦୁଃଖର ବିଷୟ ପ୍ରଣୟଗୀତି ଲେଖିବାକୁ ଯାଇ କବି ଯେମନ୍ତ ସୀମା ଲଂଘନ କରି ଯାଇଅଛନ୍ତି । ଅଦିରସଘଟିତ କବିତା ଲେଖିବା ସମୟରେ କବିଙ୍କୁ ଏତେଦୂର ସ୍ୱାଧୀନତା ଦେବାର ଅନ୍ତତଃ ଆମ୍ଭମାନଙ୍କୁ ଯୁକ୍ତିସଙ୍ଗତ ବୋଲି ବୋଧ ହେଉ ନାହିଁ । ବୋଧକରୁଁ ସୁରୁଚିସମ୍ପନ୍ନ କୌଣସି ଲୋକ ଆମ୍ଭମାନଙ୍କ ଏହି ଉକ୍ତିର ପ୍ରତିବାଦ କରିବାକୁ ସାହାସୀ ହେବେ ନାହିଁ । ଆମ୍ଭମାନଙ୍କର ଘୋର ଆଶଙ୍କା, କେତେଣି ଏହି ସମୟରେ ଏହି ସୁନ୍ଦର କବିତାଗୁଡ଼ିକ ବିଲୁପ୍ତ ହୋଇଛି । କବିଙ୍କ ଶିକ୍ଷା ଅଧିକାଂଶ ବୈଷ୍ଣବଗ୍ରନ୍ଥ, ବିଶେଷତଃ ରାଧାକୃଷ୍ଣଙ୍କ ଲୀଳାଘଟିତ ବିଷୟ । ରାଧାକୃଷ୍ଣଙ୍କ ଲୀଳାବିଷୟକ କବିତା ଯେତେଦୂର ଅଦିରସଘଟିତ ହେଉ ସେଗୁଡ଼ିକୁ ପ୍ରାଚୀନ ହିନ୍ଦୁ ସମାଜ ( ବର୍ତ୍ତମାନ ମଧ୍ୟ କେତେକଲୋକ ) ଧର୍ମଗ୍ରନ୍ଥ ବୋଲି ଗଣ୍ୟ କରୁଥିଲେ । ବିଶେଷରେ ଗୋପାଳକୃଷ୍ଣଙ୍କ ସମୟରେ ଆଦିରସଘଟିତ କବିତା ସର୍ବସାଧାରଣରେ ବିଶେଷ ଆଦରଣୀୟ ଥିଲା । ଏ କ୍ଷେତ୍ରରେ ତାଙ୍କ କବିତା ଲେଖିବା ସମୟରେ ମୁକ୍ତହସ୍ତ ହେବା ସ୍ୱାଭାବିକ ଅଟେ । ଆମ୍ଭମାନଙ୍କ କବି ନିସର୍ଗଦତ୍ତ ସମସ୍ତ ପ୍ରବୃତ୍ତି ଯେ କେବଳ ଆଦିରସ ବର୍ଣ୍ଣନାରେ ଢାଳି ଦେଇ ଯାଇଅଛନ୍ତି, ଏଥିସକାଶେ ଆମ୍ଭେମାନେ ତାହାଙ୍କ ପ୍ରତି ଅନୁଯୋଗ କରିବାକୁ ଇଚ୍ଛୁକ ନୋହୁଁ । ଏହା କେବଳ କବିଙ୍କର ସ୍ୱେଚ୍ଛାଚାରିତାର ଫଳ ନୁହେ, ଅନେକ ପରିମାଣରେ ଯୁଗର ସାଦର ଅହ୍ୱାନ । କବି ଯେଉଁ ଯୁଗରେ ଜନ୍ମଗ୍ରହଣ କରିଥିଲେ ସେ ଯୁଗରେ ଈଦୃଶ କବିତା ସର୍ବସାଧାରଣରେ ଆଦରଣୀୟ ବସ୍ତୁ ଥିଲା । ଏଥିଲାଗି ଆମ୍ଭମାନଙ୍କ ମତରେ ଏପରି ଦୋଷ କବିଙ୍କର ବିକୃତରୁଚିର ପରିଚାୟକ ବୋଲି କହିଲେ କବିଙ୍କପ୍ରତି ଅନ୍ୟାୟ ବ୍ୟବହାର କରିବାର ହେବ । ଦ୍ୱିତୀୟତଃ କବିଙ୍କ ଶିକ୍ଷାପ୍ରଣାଳୀ ପ୍ରତି ମଧ୍ୟ କଟାକ୍ଷପାତ କରିବା ଅସଙ୍ଗତ ନୁହେ । ସେ ଜଣେ ଘୋର ବୈଷ୍ଣବ ଥିଲେ, ତାହାଙ୍କ ଶିକ୍ଷଣୀୟ ବିଷୟ ସଂସ୍କୃତ ଭାଷାର ବୈଷ୍ଣବୀୟ ଗ୍ରନ୍ଥାବଳୀ । ସୁତରାଂ ବିଷୟ ନିର୍ବାଚନ

ସମ୍ବନ୍ଧରେ ତାହାଙ୍କ ଦୃଷ୍ଟି ବହୁବିସ୍ତାରିଣୀ ହେବା ସମ୍ଭବପର ନ ଥିଲା । ବର୍ତ୍ତମାନ ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରୁ ଲୋକମାନଙ୍କ ରୁଚି ଆମୋଦ ପ୍ରମୋଦ ଧର୍ମବିଶ୍ୱାସ ଆଶା ଆକାଙ୍କ୍ଷା ସବୁ ପରିବର୍ତ୍ତିତ ହୋଇ ଯାଇଅଛି । ଏହି ସ୍ରୋତ ବିପରୀତମୁଖ ହେବାର ଅସମ୍ଭବ ଏବଂ ବାଞ୍ଛନୀୟ ମଧ୍ୟ ନୁହେ । ଏ କ୍ଷେତ୍ରରେ ନିରବଚ୍ଛିନ୍ନ ଅନାବୃତ ଆଦିରସଘଟିତ ପଦଗୁଡ଼ିକ ଯଥା କୃଷ୍ଣଙ୍କ ଚରିତ ଓ ଲୀଳା ବୋଲି ଲୋକେ ଧର୍ମବିଶ୍ୱାସରେ ପାଠ କରି ପ୍ରେମରେ ଗାନ ପଢ଼ିବେ ଏ କଥା ବିଶ୍ୱାସ କରିବାକୁ ସାହସ ହେଉ ନାହିଁ । ତଥାପି ଉତ୍କଳ ଭାଷା ଯେ ଗୋପାଳ କୃଷ୍ଣଙ୍କଠାରେ ଅଂଶିକ ଋଣୀ ଏକଥା ଅସ୍ୱୀକାର କରିବାକୁ ଆମ୍ଭମାନଙ୍କର ଅପ୍ରବୃତ୍ତି ନାହିଁ ଏବଂ କବି ଯେଉଁ ପ୍ରତିଭାର ପରିଚୟ ଦେଇ ଯାଇଅଛନ୍ତି ତାହା କସ୍ମିନ୍ କାଳେ ବିଲୁପ୍ତ ହେବାର ସମ୍ଭାବନା ଅଳ୍ପ ।

ମାନବଭାଗ୍ୟ ପରିବର୍ତ୍ତନଶୀଳ । କବି ଗୋପାଳକୃଷ୍ଣ ଗଞ୍ଜାମ ଜିଲ୍ଲାରେ ଥାଉଁ ଥାଉଁ ତାହାଙ୍କର ଅବସ୍ଥାନ୍ତର ଘଟିଲା । ପାରଲାଖେମିଡ଼ିର ତାତ୍କାଳିକ ଗୁଣଗ୍ରାହୀ ମହାରାଜା ଶ୍ରୀ ଶ୍ରୀ ଗଜପତି ଜଗନ୍ନାଥନାରାୟଣ ଦେଓଙ୍କଠାରେ କବି ଗୋପାଳକୃଷ୍ଣଙ୍କର ଗୁଣବତ୍ତା ପ୍ରକାଶିତ ହେବାରୁ ସେ ଅତି ସମ୍ମାନପୂର୍ବକ କବିଙ୍କୁ ଆହ୍ୱାନ କରି ମାସିକ ଏକଶତ ଟଙ୍କା ବେତନରେ ରାଜକାର୍ଯ୍ୟରେ ନିଯୁକ୍ତ କରିଥିଲେ । କବିଙ୍କ ନିଃସ୍ପୃହ ମନୀଷା ଏହି ସମୟରେ କିଛି ପୁରସ୍କାରସ୍ୱରୂପ ପ୍ରାପ୍ତ ହୋଇ-ଥିଲେ ।

କବି ଗୋପାଳକୃଷ୍ଣ ମିତାଚାରୀ ଥିବାରୁ ସୁସ୍ଥ ଶରୀରରେ ଜୀବନ ଯାପନ କରିବାକୁ ସମର୍ଥ ହୋଇଥିଲେ । ସେ ପ୍ରାତ୍ୟହିକ ନିୟମିତ ରାଜ-କାର୍ଯ୍ୟ ସମାଧାନ ଉତ୍ତାରେ ଅବସର ପ୍ରାପ୍ତି ମାତ୍ରକେ ଗ୍ରନ୍ଥ ଅଧ୍ୟୟନ ଓ ରଚନାରେ ନିଯୁକ୍ତ ହେଉ-ଥିଲେ ।

କବି ଗୋପାଳକୃଷ୍ଣଙ୍କର ଦୁଇ ପୁତ୍ର, ଜ୍ୟେଷ୍ଠ ପୁତ୍ରର ନାମ ଗୌରଚନ୍ଦ୍ର, କନିଷ୍ଠର ନାମ କରୁଣାନିଧି । କବିଙ୍କର ଷଷ୍ଟିତମ ବର୍ଷ ବୟସରେ ଜ୍ୟେଷ୍ଠ ପୁତ୍ର ଗୌରଚନ୍ଦ୍ର ମାନବଲୀଳା ସମ୍ବରଣ କରିଥିଲେ । ଠିକ ଏହି ସମୟରେ କବି ହୋଇଲି ରଚନା କରୁଅଛନ୍ତି । ପୁସ୍ତକ ପଣ୍ଡିତ କରୁଣ ଏବଂ ହାସ୍ୟରସରେ ପୂର୍ଣ୍ଣ । ବୋଧହୁଏ ପୁତ୍ର-ଶୋକ ବିସ୍ମୃତ ହେବା ନିମନ୍ତେ କବି ରଚନା କାର୍ଯ୍ୟରେ ମନୋଯୋଗୀ ହୋଇଥିଲେ । ମାନବ ଶୋକ ଏବଂ ଦୁର୍ଭାଗ୍ୟ ହସ୍ତରୁ ରକ୍ଷା ପାଇବା ନିମନ୍ତେ ଯେତେ ଚେଷ୍ଟା କରୁ ପଛକେ ଭବିତବ୍ୟ ଅତିକ୍ରମ କରିବାର ସାଧ୍ୟାତୀତ । ଏକସ୍ୟ ଦୁଃଖସ୍ୟ ନ ଯାବଦନ୍ତଃ—ଶୋକ ଉପରେ ଶୋକ । କବିଙ୍କ ଦ୍ୱିତୀୟ ପୁତ୍ର ମଧ୍ୟ ଶେଷ ଜୀବନରେ ତାହାଙ୍କୁ କନ୍ଦାଇ ଚାଲିଗଲେ । ଏପରି ଅବସ୍ଥାରେ କବିଙ୍କ ପକ୍ଷରେ ଯାହା ଘଟିବାର ଘଟିଲା ।

ମାନବର ପଦ ମର୍ଯ୍ୟାଦା ପୁଣ ସମ୍ପତ୍ତି ଜୀବନ ପର୍ଯ୍ୟନ୍ତ କ୍ଷଣଭଙ୍ଗୁର । ଗୋପାଳକୃଷ୍ଣ ସମସ୍ତ ଘେନି ଚାଲି ଯାଇଅଛନ୍ତି, ମାତ୍ର ସେ ମାତୃଭାଷାକୁ ଯାହା ଦେଇ ଯାଇଅଛନ୍ତି ସେଥି ସକାଶେ ଉତ୍କଳ ଦେଶରେ ଚିରକାଳ ତାହାଙ୍କ ନାମ ଜାଜ୍ୱଲ୍ୟମାନ ଥିବ ।

ଆମ୍ଭେମାନେ କବିଙ୍କ କବିତ୍ୱ ଏବଂ କବିତା ସମ୍ବନ୍ଧରେ କେତେକ କଥା ପ୍ରକାଶ କରିବାକୁ ଇଚ୍ଛୁକ ଥିଲେ ମଧ୍ୟ ଶାରୀରିକ ଅସ୍ୱାସ୍ଥ୍ୟ ନିବନ୍ଧନ କୃତକାର୍ଯ୍ୟ ହୋଇ ପାରୁ ନାହୁଁ । ଏ କ୍ଷେତ୍ରରେ ଭବିଷ୍ୟତ ସମ୍ବନ୍ଧରେ ପ୍ରତିଜ୍ଞାବଦ୍ଧ ହେବା ଅପରିଣାମଦର୍ଶିତାର କାର୍ଯ୍ୟ ଅଟେ । କେବେ ସମୟରେ ସୁଯୋଗ ଘଟିବା ଅସମ୍ଭବ ନୁହେ ।

## କବି ଗୋପାଳକୃଷ୍ଣଙ୍କ ବଂଶାବଳୀ ।




ଶ୍ରୀ ଫକୀରମୋହନ ସେନାପତି ।

---

## ଶୁଆ ଓ କାଉ କଥା ।

ଗୋଟିଏ ଗଛଡାଳରେ ଶୁଆଟିଏ ପୁଣି କାଉଟିଏ ସଙ୍ଗାତ କରିଥିଲେ । ଦୁହିଙ୍କ ଭିତରେ ପାଣି ଗଳୁ ନ ଥାଏ । କେଉଁଠି କେବେ ସାଥି ହୋଇ ଯାନ୍ତି ଫେର ସାଥି ହୋଇ ଆସନ୍ତି । ଦିନେ ଦୁହେଁ ମିଶି ବଣ ଭିତରକୁ କାଠ ଆଣିବାକୁ ଗଲେ । ବଣରୁ ଶୁଆ କଞ୍ଚା କାଠ ବୋଝେ ଆଉ ଶୁଖିଲା କାଠ ବୋଝେ ଧରି ବାହୁଡ଼ି ଆସିଲେ । ତହୁଁ ଆର ଦିନ କାଉ ଖାଇ ପିଇ ସାରି ଶୁଆ ଘରକୁ ବୁଲି ଗଲା ବେଳକୁ ଶୁଆର ମା ଚୁଲି ଫୁଙ୍କି ମରୁଛି । ପୁଅ ତ କଞ୍ଚା କାଠ ଧରି ଆସିଛି, କରିବ କଣ ? ଯେତେ ଫୁଙ୍କିଲେ ଭିତରଯାକ ଧୂଆଁ ଏଡ଼ା । ପକ୍ଷେ ବେଜାର ହୋଇ ପୁଅକୁ ଗାଳି ଦେଉ ଛାଞ୍ଚୁଣି ମୁଣ୍ଡାରେ ବାଡ଼ିଏ ହୋଇଲା । ଶୁଆ କାନ୍ଦି କାନ୍ଦି ନଈ କୂଳକୁ ଗଲା । ଭୋକ ଶୋଷରେ ଜୀବନ ଦହି ଗଲାଣି । ସେଇଠି ଗାଧୁଅ ପାଧୁଅ ହେଲା । ନଈ ପାଣି ଟିକିଏ ପିଇଲା । ତହୁଁ ଉତ୍ତାରୁ ଯାଇ କୂଳ ପାଖ ପଥର ଖୋଲରେ ଶୋଇ ଗୀତ ଗାଉଛି:—

ମୋର ମା ମତେ ମାଇଲା,
ଭୋକେ ଶୋଷେ ପ୍ରାଣ ଗଲା,
ନଈ ଘାଟକୁ ଆଇଲି,
ଗାଧୁଆ ପାଧୁଆ କଲି,
ନଦୀର ଜଳ ପିଇଲି,
ପଥର ଖୋଲରେ ଶୋଇଲି ।

ଲମ୍ବେଇ ଲମ୍ବେଇ ଏମିତି ଗୀତ ଗାଉଛି । ଏତେବେଳକୁ ରଜାଘର ପୋଇଲୀଏ ଗାଧୋଇବାକୁ ସେ ଘାଟକୁ ଆସିଲେ । ଗାଧୁଆ ସାରିଲେ । ଶୁଆର ଗୀତ ଶୁଣି କଣ ବୋଲି ମନରେ ବହୁତ ଭାବିଲେ । ଯାଇଁ ଦେଖିଲାବେଳକୁ କି ସୁନ୍ଦର ଶୁଆଟିଏ ପଥର ଖୋଲରେ ଶୋଇ ଗୀତ ଗାଉଛି । ତାକୁ ପଚାରିଲେ 'ହରେ ଶୁଆ, କାହିଁକି ଏମିତି ହେଉଛୁ ?' ଶୁଆ କହିଲା—'ନା

ମୋର ମା ମୋତେ ମାଇଲା,
ଭୋକେ ଶୋଷେ ପ୍ରାଣ ଗଲା,
ନଈ ଘାଟକୁ ଆଇଲି,
ଗାଧୁଆ ପାଧୁଆ କଲି,
ନଦୀର ଜଳ ପିଇଲି,
ପଥର ଖୋଲରେ ଶୋଇଲି,
ରଜାଘର ପୋଇଲୀ,
ନଈ ଘାଟେ ଦେଖିଲ ।'

ପୋଇଲୀମାନେ ଏ ସବୁ ଦେଖି ଶୁଣି ମନେ ମନେ ଭାରି ଶରଧା କଲେ । ଶୁଆକୁ ବୋଇଲେ 'ଆରେ ଶୁଆ, ଆ ଆମ ନଅରକୁ ଯିବା, ଖାଇବାକୁ ଦେବୁଁ, ପିଇବାକୁ ଦେବୁଁ, ପିନ୍ଧିବାକୁ ଦେବୁଁ, ଲଗାଇବାକୁ ଦେବୁଁ, ଅତି ସୁଖରେ ରଖିବୁଁ, ଆ' । ଶୁଆ ଏକଥା ଶୁଣି ହୁଲୁସି କରି ଫର୍‌କିନା ଯାଇ କୋଳରେ ବସି ପଡ଼ିଲା । ପୋଇଲୀମାନେ ତାକୁ ଧରି ନଅରକୁ ନେଇଗଲେ । ଶୁଆ ଖାଇ ପିଇ ସୁଖରେ ରହିଲା । ଦେଖିଲା ରଜାଘର ନାନାଆଡ଼େ ହୀରା, ମୁକ୍ତା, ମାଣିକ୍ୟ, ପାଟ ଅନେକ ଅଛି । ଶୁଆର ଏ ସବୁ ଦେଖି ଭାରି ଲୋଭ ହେଲା । ତହିଁରୁ ଯେତେ ଗିଳିବାର ଗିଳିଲା, ଯେତେ ଜାକିବାର ଜାକିଲା । ସଞ୍ଜବେଳକୁ ମନ ଦେଖି ବାହାରି ପଡ଼ିଲା । ଘରେ ଯାଇ ପହଞ୍ଚିଲାବେଳକୁ କବାଟ ପଡ଼ିଛି । ମା ମା ବୋଲି ଡାକିବାରୁ ମା ତରତର ହୋଇ କବାଟ ଫିଟାଇଲା । ପୁଅକୁ ମାରି ଦେଲି ଯେ କେଉଁଆଡ଼େ ପଳେଇଲା ବୋଲି ବଡ଼ କଲବଲ ହେଉଥିଲା । ଏବେ ପୁଅ ବାହୁଡ଼ିବାର ଦେଖି ଭାରି ଶରଧା ହେଲା । ପୁଅକୁ କେତେ କଥା ପଚାରିଲା । ତାକୁ କି ଉତ୍ତର ଦେବ, ଥରଥର ହୋଇ କହିଲା 'ମା ମତେ ଯୋଖର ମାଡ଼ୁଛି' । ମା ବୋଇଲା 'ମାଡ଼ିଲେ ଯା, ପଦାରେ ବସି ଆସିବୁ' । ପୁଅ କହିଲା 'କାହିଁ ମୁଁ କୁଆଡ଼େ ଯିବି ନାହିଁ । ତୋହର ପଣନ୍ତକାନି ବିଛେଇ ଦେଲେ ଏଠା ମୁଁ ବସିବି' । ଅଡ଼ୁଆ ଲଗେଇଲାରୁ ମା ତରମର ସେମିତି କଲା । ପୁଅ ତହିଁ ଉପରେ ଝାଡ଼ଝାଡ଼ ହେଲା, ହଗିଲା । ଯେତକ ହୀରା, ମୁକୁତା, ମାଣିକ୍ୟ ରଜାଘରୁ ଜାକିଥିଲା, ଗିଳିଥିଲା, ସବୁ ପଣନ୍ତକାନିରେ କୁଢ଼ ହୋଇଗଲା । ଏ ସବୁ ଦେଖି ମାର ଗୋଡ଼ ଆଉ ତଳେ ପଡ଼ିଲା ନାହିଁ । ପୁଅକୁ ବଡ଼ ଆଦର କଲା । ତାକୁ କହିଲା 'ହରେ ମୋ ସଂଖାଳି । ମୁଁ ମାଟା ଦ'ପଦ କହିଥିଲି ଯେ ଏତେ ରାଗ କରିଥିଲୁ । ତତେ ଘରେ ନ ଦେଖି ମୋର ଆଖି ଫୁଟି ଲୁହ ଲେଉଟି ଯାଉଥିଲା । ଆଉ ଏମିତି ହେବେ ରୁଷିବୁ ନାହିଁ ରେ ବାପ' । ତହିଁ ଆରଦିନ ଶୁଆ ନିକଣିଗୁଣି ହୋଇ ବେକରେ ହୀରା, ମୁକୁତା, ମାଣିକ୍ୟ ମାଳ ଲମ୍ବେଇ ପାଟ ପିନ୍ଧି ସାଙ୍ଗାତ ଘରକୁ ଯାଇ ବହୁତ ଦୁଃଖ ସୁଖ ହୋଇ ଆସିଲା ।

କେତୁଟା ଦିନ ଗଲା । ଆଉ ଥରେ ସେହିପରି ଦୁଇ ସାଙ୍ଗାତ ଯାକ କାଠ ପାଇଁ ଗଲେ । ଏଥର ଶୁଆ ଶୁଖିଲା କାଠ ଆଣିଲା, କାଉ କଞ୍ଚା କାଠ ଆଣିଲା । ତହିଁ ଆରଦିନ ଶୁଆ ଖାଇ ପିଇ ସାରି କାଉଘରକୁ ବୁଲି ଗଲାବେଳକୁ କାଉର ମା ଚୁଲି ଫୁଙ୍କି ଫୁଙ୍କି ମରୁଛି । କାଉର ମା ମଧ କାଉକୁ ଗାଳି ଗୁଲା ଦେଇ ଝାଙ୍କୁଣିମୁଣ୍ଡାରେ ବାଡ଼ଏ ମାରିଲା ।

ତାର୍ ତା ତା ଉଡ ଖଡ ହାଡ଼ିସାଇକୁ ଗଲା । ସେଠେଇଁ ଯେତେ ସବୁ ହାଡ଼ିଗୋଡ଼ି ଟୋକା ଲେଙ୍କଡ଼ା ହୋଇ ପଡ଼ିଥିଲେ ଗିଳ ନାକ ଧରି ଘରକୁ ଆସିଲା । ଘରେ ଆଣି ସବୁ ଗଦା କରିଦେଲା । ପଛେ ହାଡ଼ିସାହି ମାଳ ଗୁଣ୍ଡି ବେକରେ ଲମ୍ବେଇଲା ଟୋକା ହେଲାଯାକ ଗୁଡ଼େଇଦେଲା, ଗଲା ଶୁଆ ଘରକୁ ଦେଖେଇ ହବାକୁ । ଶୁଆର ମା ଏ ବେଶ ଦେଖି ହାଣ୍ଡିରୁ ନାକ ଉଠେଇଁ ଆମର ଏଠୁଣ୍ଡି ଉଠ୍ ନା । ବୋଲି ତାକୁ ମନା କଲା । ତାରୁ ଫେରି ଯାଇ ତାର ମାକୁ ସବୁ କହିଲା । ମା ଲାଜରେ ଚଳ ପୁଅକୁ ଦୁଇ ହାତ ଅଣ୍ଟ କରି ପିଟିଲାରୁ ନାକ୍ ଟି ଭେଙ୍ଗେଇ ମରିଗଲା । ତାର ମା ହେଉ ଡେଉ କଥା କହି ତୋଳି ବାନ୍ଧ ବାନ୍ଧି ହାଲିଆ ହେଲା । ଆଉ କେବେ ଜାଣିବ, ପଛକୁ କାଠ ପରି ରହିଲା । ଗାଧୋଇଲା ପାଧୋଇଲା, ଘରଦ୍ୱାର ଲିପାପୋଛା କଲା, ହାଣ୍ଡିକୁଣ୍ଡି କଲା, କୁଳଲୋକଙ୍କୁ ସବୁ ଶୋଧିଲା, ରହିଲା । ମୋ କଥାଟି ସରିଲା ।

ଶ୍ରୀ ତାରିଣୀଚରଣ ରଥ ।

---

## "ଆମାଦେର ଜ୍ୟୋତିଷୀ ଓ ଜ୍ୟୋତିଷ" । (କ)

ଅଧ୍ୟାପକ ମହାଶୟ ଜ୍ୟୋତିଷିମାନଙ୍କ ବିଷୟ ଶେଷ କରି ଜ୍ୟୋତିଷରେ ପ୍ରବେଶ କରିଅଛନ୍ତି । ସେ ଏହି ବିଷୟକୁ ତିନି ଭାଗରେ ବିଭକ୍ତ କରିଅଛନ୍ତି, ଯଥା—ପୁରାଣର ଜ୍ୟୋତିଷ, ସଂହିତାର ଜ୍ୟୋତିଷ ଏବଂ ସିଦ୍ଧାନ୍ତର ଜ୍ୟୋତିଷ। ପ୍ରଥମ ପ୍ରସ୍ତାବରେ ପୁରାଣର ଜ୍ୟୋତିଷ ଓ ଦ୍ୱିତୀୟ ପ୍ରସ୍ତାବରେ ସଂହିତା ଓ ସିଦ୍ଧାନ୍ତର ଜ୍ୟୋତିଷ ପ୍ରଦତ୍ତ ଅଛି । ଜନସାଧାରଣର ଦୁରବଗାହ ଜ୍ୟୋତିଷ ତତ୍ତ୍ୱଗୁଡ଼ିକ ପୁରାଣରେ ଉପାଖ୍ୟାନ ଓ ରୂପକାଦିର ଆକାର ଧାରଣ କରିଅଛି ଏବଂ ଅତି ଅଳ୍ପସଂଖ୍ୟକ ତତ୍ତ୍ୱ ସ୍ପଷ୍ଟତଃ ବର୍ଣ୍ଣିତ ହୋଇଅଛି । ଲୋକଶିକ୍ଷା ପୁରାଣପ୍ରଣୟନର ଉଦ୍ଦେଶ୍ୟ, ସୁତରାଂ ପାଠକ ଓ ଶ୍ରୋତାମାନଙ୍କର ମତି ଗତି ଓ ରୁଚି ଅନୁସାରେ ପୁରାଣ ରଚିତ । "ଆଧୁନିକ ପାଶ୍ଚାତ୍ୟ ଜ୍ଞାନପୁଷ୍ଟଚିତ୍ତରେ ଏହି ଉଦ୍ଦେଶ୍ୟ ସଫଳ ହେବାର ସମ୍ଭାବନା ନାହିଁ, କିନ୍ତୁ ସେକାଳର ଲୋକମାନଙ୍କ ନିକଟରେ ଏହାର ଫଳ ଅଳ୍ପ ନ ଥିଲା" । ଜଡ଼ବସ୍ତୁରେ ମନୁଷ୍ୟର ସ୍ୱଭାବ ଆରୋପଣ କରିବା ପୌରାଣିକ କଥାର ରୀତି । ସୂର୍ଯ୍ୟ ଭ୍ରମଣ କରୁଅଛନ୍ତି କହି ପୌରାଣିକ କବି ତୃପ୍ତ ହେବେ ନାହିଁ, ତାହାଙ୍କୁ ରଥାରୂଢ଼ କରି ରଥକୁ ଅଶ୍ୱଦ୍ୱାରା ଟାଣିଲେ ତାହାଙ୍କର ତୃପ୍ତି ଜାତ ହେବ । ବିଭିନ୍ନ ସମୟରେ ବିଭିନ୍ନ ଜ୍ଞାନ-ରୁଚିସମ୍ପନ୍ନ ବ୍ୟକ୍ତିର କଳ୍ପନା ବିଭିନ୍ନ ହୁଏ । ସୁତରାଂ ଏକ ବିଷୟ ଅବଲମ୍ବନ କରି ବିଭିନ୍ନ ଗଳ୍ପର ସୃଷ୍ଟି ହୋଇଅଛି । ଅଧ୍ୟାପକ ମହାଶୟ ଅଷ୍ଟାଦଶ ପୁରାଣ ମଧ୍ୟରୁ ବିଷ୍ଣୁପୁରାଣକୁ ଅନୁସରଣ କରି ବାୟୁ, ମତ୍ସ୍ୟ ପୁରାଣମାନଙ୍କ ମଧ୍ୟରୁ ପ୍ରମାଣ ଉଦ୍ଧୃତ କରିଅଛନ୍ତି । ପୌରାଣିକ ଉପାଖ୍ୟାନ ଓ ରୂପକାଦିର ବ୍ୟାଖ୍ୟାରେ ପ୍ରବୃତ୍ତ ହୋଇ ଅଧ୍ୟାପକ ମହାଶୟ ଅଗାଧବିଦ୍ୟାବତ୍ତାର ପରିଚୟ ପ୍ରଦାନ କରିଅଛନ୍ତି, ମାତ୍ର ସବୁ ବ୍ୟାଖ୍ୟାନଗୁଡ଼ିକ ଯେ ଅଭ୍ରାନ୍ତ ସତ୍ୟ ଉପରେ ପ୍ରତିଷ୍ଠିତ, ତାହା ବୋଲିଯାଇ ନ ପାରେ ଏବଂ ଗ୍ରନ୍ଥକର୍ତ୍ତା ମଧ୍ୟ ନିଜେ ତାହା ସ୍ୱୀକାର କରିଅଛନ୍ତି । ପାଶ୍ଚାତ୍ୟ ଜ୍ଞାନବେଧ-ମାନଙ୍କ ପରି ପୁରାଣବର୍ଣ୍ଣିତ ଜ୍ୟୋତିଃଶାସ୍ତ୍ର ଯେ ଅଭ୍ରାନ୍ତ ସତ୍ୟ ତାହା ପ୍ରଦର୍ଶନ କରିବା ମଧ୍ୟ ତାହାଙ୍କର ଅଭିପ୍ରାୟ ନୁହେ । ସେ ଲେଖିଅଛନ୍ତି "ଯାହା ପୁରାଣ, ତାହା ଚିରଦିନ ପୁରାଣ ରହିବ । ସହସ୍ର ବ୍ୟାଖ୍ୟା କଲେ ସୁଦ୍ଧା ତାହା କଦାପି

ସିଦ୍ଧାନ୍ତତୁଲ୍ୟ ହୋଇ ପାରିବ ନାହିଁ ।" ସୁତରାଂ ଅଧୁନାତନ ପାଶ୍ଚାତ୍ୟ ଜ୍ଞାନରେ ଗର୍ବିତ ଲୋକମାନଙ୍କର ସ୍ମରଣ କରିବା ଉଚିତ ଯେ "ମାନବ ଜ୍ଞାନ ଚିରକାଲ ଅପେକ୍ଷିକ" । ଆଜି ଯାହା ଅଭ୍ରାନ୍ତ ସତ୍ୟ ବୋଲି ପ୍ରତିପାଦିତ, ତାହା ଭବିଷ୍ୟତରେ ପୌରାଣିକୀ କଥା ବୋଲି ଯେ ଉପେକ୍ଷିତ ହେବ ନାହିଁ ଏହା କିଏ କହି ପାରେ ?

(୧) ବ୍ରହ୍ମାଣ୍ଡ (୨) ଜମ୍ବୁଦ୍ୱୀପ (୩) ଗ୍ରହ (୪) ନକ୍ଷତ୍ର ଏହି ଚାରିଗୋଟି ବିଭାଗରେ ପୌରାଣିକ ଜ୍ୟୋତିଷକୁ ବିଭକ୍ତ କରି ଗ୍ରହସମ୍ବନ୍ଧୀୟ ପ୍ରସ୍ତାବମାନଙ୍କରେ ସୂର୍ଯ୍ୟ, ଚନ୍ଦ୍ର, ବୁଧ, ମଙ୍ଗଳ, ବୃହସ୍ପତି, ଶୁକ୍ର, ଶନି ସମ୍ବନ୍ଧୀୟ ଜନ୍ମ କଥା ଏବଂ ନାମକରଣ ପ୍ରଭୃତିର ଏବଂ ନକ୍ଷତ୍ର ସମ୍ବନ୍ଧୀୟ ପ୍ରସ୍ତାବରେ ନାନାବିଧ ଉପାଖ୍ୟାନ ଓ ରୂପକାଦିର ବ୍ୟାଖ୍ୟାନ ଅଧ୍ୟାପକ ମହାଶୟ ପ୍ରଦାନ କରିଅଛନ୍ତି । ଦୁଃଖର ବିଷୟ ଯେ ଗ୍ରନ୍ଥଖଣ୍ଡିକ ଇଂରାଜୀ ଭାଷାରେ ରଚିତ ନୁହେଁ । ତାହା ହୋଇ ଥିଲେ ଅଧ୍ୟାପକ ମହାଶୟଙ୍କର ଜ୍ଞାନ ଏବଂ ଯଶର ସୌରଭ ଆଜି ପର୍ଯ୍ୟନ୍ତ ସମସ୍ତ ସଭ୍ୟଜଗତରେ ବିସ୍ତୃତ ନ ହୋଇ ରହି ପାରି ନ ଥାନ୍ତା । ପ୍ରବନ୍ଧ ଅତି ଦୀର୍ଘ ହେବା ଭୟରେ ମୁଁ ଏଠାରେ ସେଗୁଡିକର ସାରାଂଶ ସୁଦ୍ଧା ପ୍ରଦାନ କରି ନ ପାରି ଅତ୍ୟନ୍ତ ଦୁଃଖିତ ହେଲି । ପୌରାଣିକ ଜ୍ୟୋତିଷର ଶେଷଭାଗରେ ବ୍ରତ ପୂଜାଦିର ବିଷୟ ଅଛି ଏବଂ ଏହି ପ୍ରସ୍ତାବଟି ଏଡ଼େ ମନୋମୁଗ୍ଧକର ଯେ ପଢ଼ି ବସିଲେ ମନ ଛାଡ଼େ ନାହିଁ । ଅଧ୍ୟାପକ ମହାଶୟ ଲେଖିଅଛନ୍ତି, ସମୁଦାୟ ପୂଜା ବ୍ରତ ପୁଣ୍ୟକାଳ ଓ ମାସ ଓ ତିଥି ବିଚାର କଲେ ସେ ସମସ୍ତଙ୍କୁ ଚାରିଭାଗରେ ବିଭକ୍ତ କରି ଯାଇ ପାରେ । ଯଥା—

୧ । ସ୍ୱାସ୍ଥ୍ୟରକ୍ଷା—ଆଶ୍ୱିନ ମାସର ଶେଷ ଅର୍ଦ୍ଧେକ ଏବଂ କାର୍ତ୍ତିକ ମାସ ଏହି ସମୟର ନାମ ଯମଦଂଷ୍ଟ୍ରା ବା ଯମବର୍ତ୍ତିନୀ । ଏହି ସମୟରେ ପ୍ରାତଃସ୍ନାନ ଓ ଲଘୁଆହାର ବିଧେୟ । କାର୍ତ୍ତିକରେ ପ୍ରାତଃସ୍ନାନ କଲେ ଶୀତକାଳରେ ସର୍ଦ୍ଦି ଓ କାଶ ଧରେ ନାହିଁ । ମାଘମାସ ଅପର ଋତୁ ପରିବର୍ତ୍ତନର ସମୟ । ବୈଶାଖରେ ପ୍ରାତଃସ୍ନାନ ଶରୀରକୁ ସ୍ନିଗ୍ଧ କରେ ।

୨ । ସମୟୋପଯୋଗୀ ବ୍ୟବସ୍ଥା—ପୌଷମାସରେ ନବାନ୍ନ, ବୈଶାଖରେ ଜଳପୂର୍ଣ୍ଣ ଘଟଦାନ ଇତ୍ୟାଦି । ଦେଶ ବିଶେଷରେ ଏହି ପ୍ରକାର କୃତ୍ୟାଦିର ଇତରବିଶେଷ ଅଛି, ଯଥା—ଆଷାଢ଼ କୃଷ୍ଣପଞ୍ଚମୀରେ ବଙ୍ଗପ୍ରଦେଶରେ ସର୍ପଭୟ ନିବାରଣ ହେତୁ ସିଜୁ ବୃକ୍ଷସ୍ଥିତ ମନସା ଓ ନାଗ ପୂଜା, ପଶ୍ଚିମ ପ୍ରଦେଶରେ ଶ୍ରାବଣ ଶୁକ୍ଳପଞ୍ଚମୀ ଏବଂ ଓଡିଶାରେ ଶ୍ରାବଣ କୃଷ୍ଣପଞ୍ଚମୀରେ ନାଗପୂଜା । ଓଡିଶାରେ ଉକ୍ତ ତିଥିରେ ଅନୁଷ୍ଠିତ ରକ୍ଷାପଞ୍ଚମୀ ପୂଜା ଯେ ସର୍ପଭୟ ଓ ବ୍ୟାଘ୍ରଭୟ ନିବାରଣାର୍ଥ, ତାହା କିଏ ଅସ୍ୱୀକାର କରିବ ?

୩ । ପୁରାଣାନୁସାରେ ପ୍ରସିଦ୍ଧ ଐତିହାସିକ ଓ ପୌରାଣିକ ବ୍ୟକ୍ତିମାନଙ୍କର ଜନ୍ମତିଥିର ଉତ୍ସବ । ଯଥା, କୃଷ୍ଣାଷ୍ଟମୀ, ସୀତାନବମୀ, ରାଧାଷ୍ଟମୀ ଇତ୍ୟାଦି ।

୪ । ଜ୍ୟୋତିଷିକ କାଳ ନିର୍ଦ୍ଦେଶ—ଯଥା:—ସତ୍ୟଯୁଗର ଆରମ୍ଭ ଅକ୍ଷୟତୃତୀୟା, କଳିଯୁଗର ଆରମ୍ଭ ମାଘୀପୂର୍ଣ୍ଣିମା ଇତ୍ୟାଦି ।

ସାଧାରଣ ପୂଜାବିଧି ଛାଡି ଦେଇ କେତେଗୋଟି ବିଶେଷ ପୂଜାବିଧିର ମୂଳ ସମ୍ବନ୍ଧରେ ଅଧ୍ୟାପକ ମହାଶୟ ଲେଖିଅଛନ୍ତି, "ତିନି ପ୍ରକାର ବର୍ଷ ବିଭାଗର ନିଦର୍ଶନ ପୂର୍ବରୁ ମିଳିଅଛି ।

୧ । ଯେଉଁ ସମୟରେ ଅଗ୍ରହାୟଣ ମାସ ବର୍ଷର ପ୍ରଥମ ମାସ ଥିଲା । ତହିଁରେ

ମାର୍ଗଶୀର୍ଷ ଓ ଜ୍ୟେଷ୍ଠପୂର୍ଣ୍ଣିମା ବିଷୁବଦିନ ।
ଫାଲ୍ଗୁନ „ ଦକ୍ଷିଣାୟନ ଶେଷ
ଭାଦ୍ର „ ଉତ୍ତରାୟଣଶେଷ

୨ । ଯେଉଁ ସମୟରେ କାର୍ତ୍ତିକ ପ୍ରଥମ ମାସ ଥିଲା । କେତେବେଳେ କାର୍ତ୍ତିକ ଓ ବୈଶାଖ

ବିଷୁବଦିନ, ମାଘ ଓ ଶ୍ରାବଣ ପୂର୍ଣ୍ଣିମାରେ ଅୟନ ନିବୃତ୍ତି ।

୩ । ଯେଉଁ ସମୟରୁ ଅଶ୍ୱିନ ପ୍ରଥମ ମାସ ହୋଇଅଛି । ଏଥିରେ ଅଶ୍ୱିନ ଓ ଚୈତ୍ର ପୂର୍ଣ୍ଣିମା ବିଷୁବଦିନ, ମାର୍ଗଶୀର୍ଷ ଓ ଜ୍ୟୈଷ୍ଠ ପୂର୍ଣ୍ଣିମାରେ ଅୟନ ନିବୃତ୍ତି । ଯେଉଁ ଯେଉଁ ପୂଜାରେ ହରି ବା କୃଷ୍ଣ ବା ଜଗନ୍ନାଥଦେବଙ୍କର ନାମୋଲ୍ଲେଖ ଅଛି, ସେହି ସେହି ପୂଜାର ଉତ୍ପତ୍ତି କ୍ରାନ୍ତିବୃତ୍ତର ବିଶେଷ ବିଶେଷ ସ୍ଥାନରେ ସୂର୍ଯ୍ୟର ଆଗମନ । ସୂର୍ଯ୍ୟର ଆଗମନ ଉପଲକ୍ଷ କରି ଏହିସବୁ ପୂଜାର ଉତ୍ପତ୍ତି ହୋଇଅଛି । ବିଷ୍ଣୁ ଓ ସୂର୍ଯ୍ୟ ଅଭିନ୍ନ ଏପରି କହିଲେ ଦୋଷ ହେବ ନାହିଁ । ତିଥିତତ୍ତ୍ୱରେ ରଘୁନନ୍ଦନ ଲେଖିଅଛନ୍ତି,

ପୂଜୟେତ୍ ଭାସ୍କରଂ ଦେବଂ ବିଷ୍ଣୁରୂପଂ ସନାତନଂ ।

ଅନ୍ୟତ୍ର

ରବିଶ୍ଚ ବିଷ୍ଣୁରୂପତ୍ୱାତ୍ ପୂଜାକାଲେ ଧ୍ୟେୟଃ ।

ଏହି ଦୁଇ ସ୍ଥଳରେ ଆପାତଦୃଷ୍ଟିରେ ଭାସ୍କର ପୂଜା ତ ଥିଲା, ଅଥଚ ବିଷ୍ଣୁ ରୂପରେ ଭାସ୍କରଙ୍କ ଧ୍ୟାନ ଓ ପୂଜା କରିବାକୁ ବୋଲା ଯାଇଅଛି ।

ଉପସଂହାର ସ୍ଥଳରେ ଅଧ୍ୟାପକ ମହାଶୟ କହିଅଛନ୍ତି "ପୌରାଣିକ କଥାର ନିଃସନ୍ଦିଗ୍ଧ ବ୍ୟାଖ୍ୟା ସମ୍ଭାବ୍ୟ ନୁହେ ।"

ସଂହିତା ଓ ସିଦ୍ଧାନ୍ତର ଜ୍ୟୋତିଷ ଅଧ୍ୟାପକ ମହାଶୟଙ୍କର ପ୍ରାକୃତ ଜ୍ୟୋତିଷବିଷୟକ ପ୍ରସ୍ତାବର ଅନ୍ତର୍ଗତ ।

( ୧ ) ପୃଥିବୀ—ତଥାକଥିତ ପଞ୍ଚସିଦ୍ଧାନ୍ତିକାରୁ ଆର୍ଯ୍ୟ ଆର୍ଯ୍ୟଭଟ ଓ ଭାସ୍କରଙ୍କ କୃତ ସିଦ୍ଧାନ୍ତମାନଙ୍କରୁ ଶ୍ଳୋକ ଉଦ୍ଧୃତ କରି ଅଧ୍ୟାପକ ମହାଶୟ ଦେଖାଇଅଛନ୍ତି ଯେ ପୃଥିବୀ ଗୋଲାକାର ଏବଂ ତାହା ସ୍ୱଶକ୍ତିରେ ନିରାଧାର ହୋଇ ଆକାଶରେ ଅବସ୍ଥାନ କରୁଅଛି । ଭାସ୍କର କହିଅଛନ୍ତି "ପୃଥିବୀର ଆକର୍ଷଣଶକ୍ତିବଶତଃ ଶୂନ୍ୟସ୍ଥିତ ଗୁରୁ ବସ୍ତୁ ପୃଥିବୀ ଆଡ଼କୁ ଆକୃଷ୍ଟ ହୁଏ । ତେଣୁ ବେଳେ ଆମ୍ଭେମାନେ ମନେ କରୁଁ ଯେପରି ବସ୍ତୁଟି ପଡ଼ୁଅଛି; କିନ୍ତୁ ବାସ୍ତବିକ ପୃଥିବୀ କର୍ତ୍ତୃକ ଆକୃଷ୍ଟ ହେଉଅଛି । ପୃଥିବୀର ଚାରି ଦିଗରେ ସମାନ ଆକାଶ, ଏହା କେଉଁଠାରେ ପଡିବ ? ପୃଥିବୀର ଯେଉଁଠାରେ ଯେ ଥାନ୍ତି, ସେ ତାହାଙ୍କୁ ତଳସ୍ଥ ଏବଂ ଆପଣାକୁ ତାହାଙ୍କର ଉପରେ ସ୍ଥିତ ମନେ କରନ୍ତି । ପୃଥିବୀର ବ୍ୟାସର ଦୁଇପ୍ରାନ୍ତରେ ଦୁଇ ମନୁଷ୍ୟ, ନଦୀ ତୀରରେ ଦଣ୍ଡାୟମାନ ପୁରୁଷ ଓ ଛାୟା ସଦୃଶ ଅଧଃଶିରସ୍କ ଭାବରେ ଥାନ୍ତି । ଆମ୍ଭେମାନେ ଏଠାରେ ଯେପରି ଠିଆ ହୋଇଅଛୁଁ, ଅଧଃସ୍ଥିତ ମନୁଷ୍ୟମାନେ ମଧ୍ୟ ସେହିପରି ଅନାକୁଳଭାବରେ ସ୍ଥିର ଅଛନ୍ତି ।" କ୍ରମଶଃ

ଶ୍ରୀ ମଧୁସୂଦନ ଦାସ

---

## ଦୁନଅର ହାଲଚାଲ ।

ସମ୍ପାଦକୀୟ ମନ୍ତବ୍ୟ—କଥାପ୍ରସଙ୍ଗରେ ଜଣେ ବନ୍ଧୁ ଆମ୍ଭମାନଙ୍କ ନିକଟରେ ପ୍ରକାଶ କରିଥିଲେ ଯେ ମାସିକ ପତ୍ରିକାରେ 'କ୍ରମଶଃ' ପ୍ରବନ୍ଧମାନ ପ୍ରକାଶିତ ହେବାର ସେ ବିରୋଧୀ । ଆମ୍ଭେମାନେ ଉକ୍ତ ବିଷୟ କେତେକ ପ୍ରବନ୍ଧଲେଖକଙ୍କୁ ଜଣାଇଥିଲୁଁ । ବର୍ତ୍ତମାନ ଜଣେ ପ୍ରବନ୍ଧଲେଖକ ଏଣିକି ଯୁକ୍ତିପୂର୍ଣ୍ଣ ପଦଚିହ୍ନିତ ଶୀର୍ଷାଙ୍କିତ ପ୍ରବନ୍ଧ ଆମ୍ଭମାନଙ୍କଠାକୁ ପଠାଇଅଛନ୍ତି । ତହିଁରେ ଲେଖିଅଛନ୍ତି ଯେ ଲେଖକ ନିଜେ ମଧ୍ୟ 'କ୍ରମଶଃ'ର ପ୍ରତିକୂଳ, କିନ୍ତୁ ଦୁନଅଟା କ୍ରମଶଃ ହେବାରୁ ତହିଁର ହାଲଚାଲ 'କ୍ରମଶଃ' ହେବାର ସ୍ୱାଭାବିକ । ଅତଏବ ସେ ବାଧ୍ୟ ହୋଇ 'ଦୁନଅର ହାଲଚାଲ'

ସମ୍ବନ୍ଧୀୟ କେତେକ ବିଷୟ 'ସାହିତ୍ୟ'ରେ 'କ୍ରମଶଃ' ଆକାରରେ ଲେଖିବାକୁ ସଙ୍କଳ୍ପ କରିଅଛନ୍ତି ।

———

ଦୁନିଆର ନିୟମ 'ସମ୍ବନ୍ଧମାଭାଷଣପୂର୍ବମାହୁଃ' । ସମ୍ଭାଷଣ ନ ହେଲେ ପ୍ରଣୟ ହେବାର କଷ୍ଟ । ଏ ନିୟମ ବ୍ୟକ୍ତିଗତ ଓ ପ୍ରବନ୍ଧଗତ ଓ ବସ୍ତୁଗତ । ଏହି ଆଭାଷଣ ଅନେକ ପ୍ରକାର । 'ଏଲ ଏଲ ଲୋକସକଳ ଏଲରେ' 'Know all men by these presents.' 'Prologue' 'ପ୍ରସ୍ତାବନା', A B C D ଇତ୍ୟାଦି ଉପାଧି, ତେନେନ୍ନା ବାଜଣା ପୂର୍ବରୁ ତାନମୋଡ଼ା, ସଙ୍ଗୀତ ହେବା ପୂର୍ବରୁ ତାଧିଦ୍ଧିନା, 'ଅସଜନନ୍ଦସ୍ୟ ମେରୁପୃଷ୍ଠର୍ଷିଃ' 'ବୋହିଆମାନଙ୍କର ବଜାରରେ ଉଚ୍ଚଭାବ ଡାକ', 'ଦେବଉପରର ଚର୍ମ' 'sign-'board' ଏଗୁଡ଼ିକ ଭିନ୍ନ ଭିନ୍ନ ରକମର ପ୍ରସ୍ତାବନା । ଏଗୁଡ଼ିକ ନ ହେଲେ ଭିତରର ବସ୍ତୁଟି ହଠାତ୍ ଛାଡ଼ି ଦେଖିବାଟା ଅଭୁଆ ବୋଧ ହୁଏ । ଅତଏବ 'ଦୁନିଆର ହାଲଚାଲ'ର ଟିକିଏ 'ନାନ୍ଦ୍ୟନ୍ତେ ସୂତ୍ରଧାରଃ' ହେବାର ଆବଶ୍ୟକ । ପ୍ରଥମେ ଦେଖିବାର ଉଚିତ ଯେ ଦୁନିଆର ହାଲଚାଲଟା କି କିସମର ଜିନିସ ।—ଏଥିରେ ଆମ୍ଭେମାନେ ଚିରବସନ୍ତଲୀଳାସ୍ପଦ ସ୍ୱର୍ଗପ୍ରସାଦରୁ ଆରମ୍ଭ କରି ଚିରଗ୍ରୀଷ୍ମଗୋଲାସ୍ପଦ ପର୍ଣ୍ଣକୁଟୀ ପର୍ଯ୍ୟନ୍ତ, ମାଂସପିଣ୍ଡବନ୍ନମ୍ର ଗୋବରଗଣେଶଙ୍କଠାରୁ ଜଗଜ୍ଜୀର୍ଣ୍ଣ ଫକୀରଙ୍କ ପର୍ଯ୍ୟନ୍ତ, ହୋଶଲା ପଟାଳଠାରୁ ଖୁସ୍କଗିର୍ ପର୍ଯ୍ୟନ୍ତ, ଉଚ୍ଚତମ ବିଚାରାଳୟଠାରୁ ଗ୍ରାମ ଚୌକିଦାର ଘର ପର୍ଯ୍ୟନ୍ତ, ଦୂରଦେଶର ସମ୍ବାଦଠାରୁ ଘର କଣର ଖବର ପର୍ଯ୍ୟନ୍ତ, ପ୍ରିଭିକାଉନ୍‌ସିଲଠାରୁ ଗ୍ରାମର ପଞ୍ଚାଏତ ସଭା ପର୍ଯ୍ୟନ୍ତ ରାଜନୀତିଠାରୁ ଅର୍ଥନୀତି ପର୍ଯ୍ୟନ୍ତ, ପ୍ରଧାନ ମନ୍ତ୍ରିଙ୍କଠାରୁ ଗାଁ ସାମଲ ପର୍ଯ୍ୟନ୍ତ, କୁପ୍ରଥାଠାରୁ ସୁପ୍ରଥା ପର୍ଯ୍ୟନ୍ତ ବଜାରଠାରୁ ହେଳାବାଟ ପର୍ଯ୍ୟନ୍ତ, ନ୍ୟାୟ ଦର୍ଶନଠାରୁ ରାମଲୀଳା ସୁଆଙ୍ଗପୁସ୍ତକ ପର୍ଯ୍ୟନ୍ତ କେତେକ ବିଷୟର ଆଲୋଚନା କରିବୁଁ । ଏଥିରେ ଅବଶ୍ୟ କେତେକ ଅପ୍ରୀତିକର କଥା ବାହାରିବାର ସମ୍ଭାବନା । ସେଥି ନିମନ୍ତେ ନାମ ଗୋପନ ରଖିବା ଆମ୍ଭେମାନେ ଉଚିତ ବୋଧ କରୁ ନାହୁଁ । କାରଣ ସଂସାର ଶିକ୍ଷାଭୂମି, 'ଦୁନିଆର ହାଲଚାଲ' ବିଷୟରେ ଆମ୍ଭମାନଙ୍କର ଧାରଣା ବା ଆଲୋଚନା ଭ୍ରମମୂଳକ ହୋଇପାରେ । ତାହା କେହି ଦୟାପୂର୍ବକ ସଂଶୋଧନ କରିଦେଲେ ଆମ୍ଭେମାନେ ଭ୍ରମସ୍ୱୀକାର କମ୍ବା ଯୋଡ଼ହସ୍ତରେ କ୍ଷମାଭିକ୍ଷା କରିବାକୁ କୁଣ୍ଠିତ ହେବୁଁ ନାହିଁ । ଆମ୍ଭେମାନେ ସମାଲୋଚକର ଆସନ ଗ୍ରହଣ ନ କରି ଦେଖଣାହାରିଙ୍କ ସ୍ଥାନରେ ଠିଆ ହୋଇ ରହିବୁଁ । ଏ ବିଷୟରେ ଆମ୍ଭେମାନେ ଏହି ସୀମା ନିରୂପଣ କରିଅଛୁଁ ।

———

ଶରତ୍କାଳ ! ଗୃହଣୀ ଘଡ଼ ! ଶନିବାର ! ଆମ୍ଭେମାନେ କଟକପ୍ରବାସୀ କଚେରିଆ ! ସହରିକ ବିଦେଶବାସ ଆଜି ପର୍ଯ୍ୟନ୍ତ ଭଗବାନ୍ କପାଳରେ ଲେଖି ନାହାନ୍ତି । ଅତଏବ ବାଧ ହୋଇ ଶନିବାର, ରବିବାର ଦେଖି ଘରକୁ ଜୀବନ ବଦଳରେ ପଳାଇ ଯାଉଁ । ଯାହାହେଉ ଘଡ଼ି ୧୦ ଟା ବେଳ ଯାଏ କଟକରେ ମୂଳ ଲାଗି ଘଡ଼ି ୧୧ଟା ବେଳେ ଗ୍ରାମକୁ ବାହାରିଲୁଁ । ସିଦ୍ଧେଶ୍ୱରପୁର କଟକଠାରୁ ୧୩ ମାଇଲ ପୂର୍ବରେ । କଟକଠାରୁ ସିଦ୍ଧେଶ୍ୱରପୁରର ବଙ୍ଗଳାଠାରୁ ଗୋଟିଏ ପକ୍କା ରାସ୍ତା ପଡ଼ିଛି । ଗାଡ଼ି, ବଗି, ଘୋଡ଼ା, ଶୂନଗାଡ଼ି, ଷ୍ଟିମର, ଡଙ୍ଗା, ନାଳ, ନଇ ଅଠକାଳ ବାରମାସୀ ସବୁପ୍ରକାର ଯାତାୟତର ସୁବିଧା ଅଛି । ସିଦ୍ଧେଶ୍ୱରପୁର ବଙ୍ଗଳାଠାରୁ ଆମ୍ଭମାନଙ୍କ ଘରକୁ ଯିବାପାଇଁ ୧ କ୍ୱାଟରରୁ କିଛି ବେଶି ବାଟ । କଟକ ଡିଷ୍ଟ୍ରିକ୍ଟ ବୋର୍ଡ ଗୋଟିଏ ମାଟି ସଡ଼କ ପକାଇ ଦେଇ ଅଛନ୍ତି । ଶୁଣିଲାଦିନେ ପ୍ରାୟ ବର୍ଷକ ମଧ୍ୟରେ ୭।୮ ମାସ ସେବାଟେ ଘୋଡ଼ାଗାଡ଼ି ସ୍ୱଚ୍ଛନ୍ଦରେ ଯାଇ

ପାରେ । ଘୋଡ଼ାଗାଡ଼ି ଯାଇ ଅମ ଦୁଆର ମୁହଁରେ ଲାଗେ । ବର୍ଷାଦିନେ ସେ ମାଟିସଡ଼କଟି କର୍ଦ୍ଦମମୟ ହୋଇ ବିଶେଷ ଅସୁବିଧାଜନକ ହୋଇ ପଡ଼େ ! ଗ୍ରାମରେ ଗୋଟିଏ ମାଇନର ସ୍କୁଲ, ଗୋଟିଏ ବାଳିକା ବିଦ୍ୟାଳୟ, ଗୋଟିଏ ଅନ୍ତ୍ୟଜ-ପାଠଶାଳା, ଗୋଟିଏ ସଭା ଓ ତତ୍‌ସଂଲଗ୍ନ ଗୋଟିଏ ସାଧାରଣ ପୁସ୍ତକାଗାର ଅଛି । ପକ୍କା ସଡ଼କ ନିକଟରେ କଟକର ଚାଉଳିଆ ମହାଜନମାନଙ୍କର ଚାଉଳ ଧରିବା କୋଠି ଛ ଗୋଟି ଅଛି । ବର୍ଷକେ ସେ କୋଠିମାନଙ୍କରେ ଲକ୍ଷ ଅଧିକ ଟଙ୍କାର ଚାଉଳ ଧରି ହୋଇ ଭିନ୍ନ ଭିନ୍ନ ସ୍ଥାନକୁ ପଠା ଯାଏ । କ୍ୱାଟର ମାଇଲ ମାଟି ସଡ଼କଟିକୁ କଟକର ଡିଷ୍ଟ୍ରିକ୍ଟ ବୋର୍ଡ଼ଙ୍କ ଦ୍ୱାରା ପକ୍କା କରାଇବା ନିମନ୍ତେ କେତେକ ମେମ୍ବରଙ୍କ ନିକଟରେ ଅନୁସରଣ କରିଅଛୁଁ, ଫଳ ଈଶ୍ୱରାଧୀନ । ଯାହାହେଉ ଦିନକର ସାମାନ୍ୟ ଘଟଣା ଏଠାରେ ଲେଖିବୁଁ । ରାତ୍ର ୧୧ଟା ବେଳେ ଥାର୍ଡ଼କ୍ଲାସ ଘୋଡ଼ାଗାଡ଼ିରେ କଟକଠାରୁ ବାହାରି ହୋଇ ସିଦ୍ଧେଶ୍ୱରପୁର ବଙ୍ଗଳାଠାରେ ରାତ୍ର ୧ଟା ବେଳେ ଓହ୍ଲାଇଲୁଁ । ମୋହର ସହଯାତ୍ରୀ ଜଣେ ବନ୍ଧୁଙ୍କୁ ସେ ବଙ୍ଗଳାଠାରେ ଛାଡ଼ି ଦେଇ ସଙ୍ଗରେ ଲଣ୍ଠନଧାରୀ ଚାକରଟିକୁ ନେଇ ମୁଁ ମାଟିସଡ଼କ ବାଟେ ଗ୍ରାମ ଅଭିମୁଖରେ ଗଲି । ପ୍ରାୟ ୨୦୦ ହାତ ଯାଇଛି, ଏହି ସମୟରେ ବାମପାର୍ଶ୍ୱରେ କ୍ୱାଟର ମାଇଲ ଦୂରରେ ୩।୪ ଗୋଟି ଆଲୁଅ ଦେଖା ଗଲା । ମନେ ମନେ ପ୍ରଥମେ ବିଚାରିଲି ଏହା ଦୂର-ବର୍ତ୍ତୀ ଗୋଶାଳଟସଂଲଗ୍ନ ଆଲୋକ । ମୁଁ ଯେଉଁ ରାସ୍ତାରେ ଯାଉଥିଲି କ୍ୱାଟର ମାଇଲ ବାମପାର୍ଶ୍ୱରେ ସମାନ୍ତର ଭାବରେ ଗୋଟିଏ ପକ୍କା ସଡ଼କ ବନ୍ଦର ପୁରଠାରୁ ତାଳଦଣ୍ଡା ଅଡ଼କୁ ଯାଇଅଛି । ବିଚାରିଲି ସେହି ସଡ଼କରେ ପୂର୍ବଦିଗକୁ ଯାଉଥିବା ଗାଡ଼ିର ଆଲୋକ ଦେଖା ଯାଉଅଛି । ସେଠାରେ ଦଣ୍ଡେ ଠିଆ ହୋଇ ସେହି ଆଲୋକଗୁଡ଼ିକ ନିରୀକ୍ଷଣ

ବେଳେ ଦ୍ରୁତଗତିରେ ଚାଲୁଅଛି, ବେଳେ ବେଳେ ନିସ୍ତବ୍ଧଭାବରେ ରହି ଯାଉଅଛି, ବେଳେ ବେଳେ ନିଭି ଯାଉଅଛି, ବେଳେ ବେଳେ ଉଜ୍ଜ୍ୱଳତର ଭାବରେ ଜଳୁଅଛି । ବେଳେ ବେଳେ ବିପରୀତ ଦିଗରେ ଗତି କରୁଅଛି । ସଙ୍ଗରେ ଯାଉଥିବା ଚାକରଟି ଏକାଲୟରେ ତଳକୁ ଚାହିଁ ଲଣ୍ଠନ ଧରି ଆଗେ ଆଗେ ଚାଲିଛି । ତାକୁ ଡାକି ସେ ଆଲୁଅ-ଗୁଡ଼ିକ ଦେଖାଇ ଦେଲି । ଦୁର୍ଦ୍ଦୈବାତ୍ ଚଳିବାଲ ଠିଆ ହୋଇ ସେଗୁଡ଼ିକୁ ଚାହିଁଲୁ । ଏହା ଦେଖି ଚାକରଟି ଭୟରେ ଅସ୍ଥିର । ଆଉ ୩୦୦ । ୪୦୦ ହାତ ଗଲେ ସିଦ୍ଧେଶ୍ୱରପୁର ମାଇନରସ୍କୁଲ । ମନେ ମନେ ସ୍ଥିର କଲି ଯେ ସ୍କୁଲ ନିକଟକୁ ଯାଇ ସେଠାରେ ଥିବା ହେଡ ମାଷ୍ଟର ଓ ହେଡ଼ ପଣ୍ଡିତଙ୍କୁ ଡାକି ଏଗୁଡ଼ିକ ଦେଖାଇ ଦେବି । ଏହା ବିଚାରି ସ୍କୁଲ ନିକଟକୁ ଅଗ୍ରସର ହେଲି । ସେତେବେଳେ ରାତ୍ର ପ୍ରାୟ ୧୨ ଟା, କୃଷ୍ଣପକ୍ଷ ସପ୍ତମୀ, ଜହ୍ନ ପଡ଼ିଛି । ସ୍କୁଲ ନିକଟରେ ପହଞ୍ଚି ଦେଖିଲି ଯେ ସ୍କୁଲ ଘର ମଧ୍ୟରେ ଗୋଟିଏ ଆଲୁଅ ଜଳୁଛି । ଝରକାଟି ମେଲା ହୋଇଅଛି, ଝରକା ନିକଟରେ ଦେଖିଲି:—ଘରମଧ୍ୟରେ ଗୋଟିକେତେ ବେଞ୍ଚ ଯୋଡ଼ା ହୋଇ ପଲଙ୍କର କାର୍ଯ୍ୟ କରୁଅଛି । ତହିଁ ଉପରେ ଖଣ୍ଡିଏ ବିଛଣା ପଡ଼ିଅଛି । ବେଞ୍ଚକୁ ଲାଗି ଖଣ୍ଡିଏ ଟେବୁଲ ରହିଅଛି, ସେ ଟେବୁଲ ଉପରେ ଗୋଟିଏ ଲଣ୍ଠନ ଥୁଆ ହୋଇଅଛି । ଲଣ୍ଠନ ନିକଟରେ ଜଣେ ଲୋକ ବସି ନିବିଷ୍ଟ ଚିତ୍ତରେ କଣ ଲେଖୁଅଛନ୍ତି । ପୂର୍ବର ଆଲୋକଗୁଡ଼ିକ ଦେଖିଲା ବେଳୁ ନିର୍ଜନ ରାତ୍ରିରେ କଳ୍ପନାଦେବୀ ତ ପୂର୍ବରୁ ଜାଲ ବିସ୍ତାର କରିଥିଲେ । ନିର୍ଜନ ସ୍କୁଲଗୃହମଧ୍ୟରେ ଏକେ ରାତିରେ ଏପରି ଦୃଶ୍ୟ ଦେଖି କଳ୍ପନାଦେବୀ ଅନ୍ତର ଟିକିଏ ସରଗରମ ହୋଇ ଉଠିଲେ । ଅସୀନ ବ୍ୟକ୍ତିଙ୍କର ଅନତି ଦୂରର ଗୋଟିଏ ପାଶ ଦେଖି ହଠାତ୍ ଚିହ୍ନି ପାରିଲି ନାହିଁ । ପଞ୍ଜର ନିକଟରେ ଠିଆ ହୋଇ 'ଅନନ୍ତ

କଲି । ଦେଖିଲି ସେ ଆଲୋକଗୁଡ଼ିକ ବେଳେ ଉଦ୍ଧୋ' ଅଭ୍ୟାସସିଦ୍ଧ ଭାବଟିଏ ଦେଖିଲି । ଧାନ-

ନିକଷ୍ମା ବ୍ୟକ୍ତି ଟିକିଏ ବିରକ୍ତ ହେଲାପରି ବୋଧ ହେଲା, ଧାନପୋଗ ଭାଙ୍ଗି ଗଲା, ସେ ଝରକା ଆଡ଼କୁ ମୁହଁ ଫେରାଇଲେ, ଗୃହଁ ଦେଲ ସ୍କୁଲସମୂହର ସବଇନ୍ସପେକ୍ଟର ଶ୍ରୀଯୁକ୍ତ ବାବୁ ନନ୍ଦକିଶୋର ବଲ ବି.ଏ. । ନନ୍ଦକିଶୋର ବାବୁ ମୋର ପରମ ବନ୍ଧୁ । ଏପରି କି ମୁଁ ଗ୍ରାମରେ ନ ଥିବା ସମୟରେ ସେ ସିଦ୍ଧେଶ୍ୱରପୁର ସ୍କୁଲ ପରିଦର୍ଶନ କରିବାକୁ ଗଲେ ମୋ ଘରଠାକୁ ଯାଇ ପିଲାପିଲିଙ୍କୁ ଖଙ୍କୁଳି ଅସନ୍ତି । ସେ ମୋ ପାଞ୍ଚ ବାର ପାଞ୍ଚ ଗୋଟିଏ ନମସ୍କାର କରି ସ୍କୁଲରୁ ବାହାରିକୁ ଆସିଲେ । ତାହାଙ୍କୁ ସଙ୍ଗରେ ନେଇ ମୁଁ ସ୍କୁଲର ହେଡମାଷ୍ଟର ଓ ହେଡପଣ୍ଡିତଙ୍କୁ ଉଠାଇଲି । ଏବେ ରାତି, ସେଥିରେ ପୁଣି ଶରତ୍‌କାଳର ମଧୁର ଶୀତ! ଏଥିରେ ଗାଢ଼ନିଦ୍ରାଭିଭୂତ । ଏପରି ଅବସ୍ଥାରେ ଡାକ ଶୁଣି ହଠାତ୍ ଧଡ଼କିନା ଉଠିବା କଷ୍ଟ । କିନ୍ତୁ ସେକ୍ରେଟେରୀ ଓ ସ୍କୁଲ ସବଇନ୍ସପେକ୍ଟରଙ୍କ ସମନରେ ହାଜର ନ ହେଲେ ଦୁଆରଣ୍ଟ ବାହାରିବାର ଅବଶ୍ୟମ୍ଭାବୀ, ଏହା ଭାବି ଓ ଅନେକ କାଳର ଗୃହର ପ୍ରତି ଟିକିଏ ବିଶେଷ ମାୟା ରଖି ସେମାନେ ଅଗତ୍ୟା ସୁଖଶଯ୍ୟାରୁ ଉଠି ବାହାରିକୁ ଆସିଲେ । ସମସ୍ତେ ଯାଇ ମାଟିସଡ଼କ ଉପରେ ଠିଆ ହୋଇ ପୂର୍ବବତ୍ ସେହି ଅଲୁଅ-ଗୁଡ଼ିକ ନିରୀକ୍ଷଣ କରିବାକୁ ଲାଗିଲୁଁ । ସେ ଅଲୁଅ ଗୁଡ଼ିକ କେତେବେଳେ ଏକତ୍ର, କେତେବେଳେ ଭିନ୍ନ ଭିନ୍ନ, କେତେବେଳେ ଚପଳଗତିଶୀଳ, କେତେବେଳେ ନିଷ୍ପନ୍ଦ, କେତେବେଳେ ବିଭିନ୍ନ ଜ୍ୟୋତିର୍ବିଶିଷ୍ଟ ହୋଇ ପ୍ରାୟ ଅର୍ଦ୍ଧଘଣ୍ଟା କାଳ ଦେଖାଗଲା । ସେ ସ୍ଥାନକୁ ଯିବା ନିମନ୍ତେ ମଝିରେ ଜଳପୂର୍ଣ୍ଣ ଧାନ୍ୟକ୍ଷେତ୍ର । ଅଗତ୍ୟା ଅମ୍ଭେମାନେ ସେ ଆଲୋକ ଜଳୁଥିବା ଆଡ଼କୁ ଯାଇ ପାରିଲୁ ନାହିଁ । ତାହା ଗାଡ଼ି କିମ୍ବା ମନୁଷ୍ୟ ସଂଲଗ୍ନ ଆଲୋକ ନୁହେ, ଏହା ଆମ୍ଭମାନଙ୍କର ଧାରଣା ହେଲା । ଶେଷକୁ ସେଥିରୁ ଯୋଡ଼ିଏ ଅଲୁଅ ନିଭିଗଲା ଓ ଗୋଟିଏ ଅଲୁଅ ଆମ୍ଭମାନଙ୍କ ଆଡ଼କୁ କିଛିଦୂର ଆସି ଗୋଟିଏ ବାଉଁଶ ବେଢ଼ା ନିକଟରେ ନିଭି ଗଲା । ଅମ୍ଭେମାନେ ଏହି କଥା ଭାବି ଭାବି ସେ ସ୍ଥାନରୁ ଫେରିଲୁଁ । ନନ୍ଦକିଶୋର ବାବୁ ଓ ମାଷ୍ଟର-ଦ୍ୱୟଙ୍କୁ ସ୍କୁଲରେ ଛାଡ଼ି ମୁଁ ଘରକୁ ଗଲି ।

ନନ୍ଦକିଶୋର ବାବୁ ରବିବାର ସକାଳେ କଟକ ଅଭିମୁଖରେ ଯାତ୍ରା କରିବାର ସ୍ଥିର କରିଥିଲେ । କିନ୍ତୁ ଅନୁରୋଧ ଭାଙ୍ଗି ନ ପାରି ରବିବାର ଦିନ ସିଦ୍ଧେଶ୍ୱରପୁରଠାରେ ରହିବାର ସ୍ଥିର କଲେ । ସକାଳ ଓଳି ସେ ମୋ ଘରେ କୁଟୁମ୍ବିତା ହେଲେ ଓ ଦୁହେଁଯାକ ସୁଖେଦୁଃଖେ କ୍ଷୁଧାଦେବୀଙ୍କର ତର୍ପଣ କଲୁଁ ।

ସନ୍ଧ୍ୟା ସମୟରେ ଗ୍ରାମନିକଟସ୍ଥ ଚନ୍ଦ୍ରପୁର ଛକ-ଠାକୁ ନନ୍ଦକିଶୋର ବାବୁଙ୍କ ସଙ୍ଗରେ ବୁଲିବାକୁ ଗଲୁଁ । ନନ୍ଦକିଶୋର ବାବୁଙ୍କ ପରିଧାନ ଲୁଗା, କମିଜ, ଚାଦର, ମୋଜା, ଯୋତା । ନିତାନ୍ତ ଦାୟରେ ନ ପଡ଼ିଲେ ପୋଷାକ ପିନ୍ଧିବାକୁ ମତେ ବିରକ୍ତି ବୋଧ ହୁଏ । ନନ୍ଦକିଶୋର ବାବୁ ସ୍କୁଲ ଇଲାକାର ହାକିମ ଓ ବିଶେଷତଃ ଚନ୍ଦ୍ରପୁର ଛକ ତାଙ୍କର ଅପରିଚିତ ସ୍ଥାନ; ଅତଏବ ସେ ପୋଷାକ ଆଦି ନ ପିନ୍ଧି ପଦାକୁ ବାହାରିବା ଯୁକ୍ତିଯୁକ୍ତ ନୁହେ । କିନ୍ତୁ ମୋ ପକ୍ଷରେ ଏ ନିୟମଗୁଡ଼ିକ ନ ଖଟିବାରୁ ମୁଁ ଖଣ୍ଡିଏ ସାଧାରଣ ଇଞ୍ଚର ମଳଅ ଲୁଗା ପିନ୍ଧି ଓ କାନ୍ଧରେ ଖଣ୍ଡିଏ ଗାମୁଛା ପକାଇ ତାଙ୍କ ସଙ୍ଗେ ସଙ୍ଗେ ଚନ୍ଦ୍ରପୁର ଛକଠାକୁ ଗଲି । ସଙ୍ଗରେ ସିଦ୍ଧେଶ୍ୱରପୁର ସ୍କୁଲର ହେଡ଼ପଣ୍ଡିତ, ସେକେଣ୍ଡ ପଣ୍ଡିତ ଥିଲେ, ବାଟରେ ସିଦ୍ଧେଶ୍ୱରପୁର ସର୍କଲର ଇନ୍ସପେକ୍ଟିଙ୍ଗ ପଣ୍ଡିତ ଆମ୍ଭମାନଙ୍କୁ ଭେଟିଲେ । ଚନ୍ଦ୍ରପୁରରେ ୧୫।୧୨ ବର୍ଷ ତଳେ କେବଳ ଖଣ୍ଡିଏମାତ୍ର ମୁଢ଼ି ଉଖୁଡ଼ା ଦୋକାନ ଥିଲା, ବର୍ତ୍ତମାନ ସେଠାରେ ଗୁହଲଥ ସେଠମାନଙ୍କର ୫।୬ ଗୋଟି କୋଠି, ୨।୪ଟି ବଡ଼ ଦୋକାନ, ୧୦।୧୨ଟି ଛୋଟ ଦୋକାନ ହୋଇଅଛି । ୧୦।୧୫ ବର୍ଷ ତଳେ ଯେଉଁ ସାହୁ ସାହୁ ଗୁଡ଼ିଥର ସେଠାରେ ଖଣ୍ଡିଏ ମୁଢ଼ି ଉଖୁଡ଼ା ଦୋକାନ ଥିଲା, ଆଜି ସେ ସେଠାରେ ଗୋଟିଏ ମଫସଲ ମିଠାଇ ଦୋକାନ ଖୋଲିଅଛି ।

ସାଉଁଟି ସାହୁ ଦୋକାନ ନିକଟରେ ପହଞ୍ଚିଲା ମାତ୍ରେ ସେ ଖଣ୍ଡିଏ ଅଖା ପାଲ ଆଣି କେନାଲ ବନ୍ଧ ଉପରେ ବିଛାଇ ଦେଲା । ଆମ୍ଭେମାନେ ସେହିଠାରେ ବସି ଦୁନିଆର ହାଲଚାଲ କଥାଭାଷା ହେଉଅଛୁଁ, ଏହି ସମୟରେ ଛକ ଉପରେ ଜଣେ ଆସି କହିଲା ଯେ ଜଣେ ଉଚ୍ଚପଦସ୍ଥ ହାକିମ ଏହି ବାଟେ ଚଳଦଗାଡ଼ିରେ ହରିହରପୁର ଅଭିମୁଖରେ ଯାଉଅଛନ୍ତି । ଉପରୋକ୍ତ ହାକିମ ବଙ୍ଗୀୟ ନବାଗତ ବ୍ୟକ୍ତି । କିନ୍ତୁ ସଦାଳାପୀ ଓ ଭଦ୍ର । ତାଙ୍କ ସଙ୍ଗେ କେବେ କେବେ ଦେଖା ପରିଚୟ ହୋଇଅଛି । ସେ ଚଳଦଗାଡ଼ି ମଧ୍ୟରେ ଅନ୍ଧାରରେ ବସିଥିଲେ, ମୁଁ ମଧ୍ୟ ଗାଡ଼ି ପାଖରେ ଅନ୍ଧାରରେ ଠିଆ ହେଲି । ଓଡ଼ିଆଭାଷାରେ ତାଙ୍କୁ ସମ୍ବୋଧନ କରି ଆଜି ରାତିଟା ସିଦ୍ଧେଶ୍ୱରପୁର ପର୍ଣ୍ଣ—ବଙ୍ଗଳାରେ ଅତିବାହିତ କରିବାକୁ ଅନୁରୋଧ କଲି । ଏକେ ଓଡ଼ିଆ କଥା, ତା ଉପରେ ମୋର ଲୁଗା ଗାମୁଛା ପୋଷାକ, ତହିଁରେ ପୁଣି ଅନ୍ଧାର ରାତି । ହାକିମ ମହୋଦୟ ହଠାତ୍ ମତେ ଚିହ୍ନି ନ ପାରି ହିନ୍ଦିରେ ଉତ୍ତର ଦେଲେ 'ତୁମ୍ କୋନ୍ ହୋ' । ମୁଁ ମଧ୍ୟ ଟିକିଏ ରଙ୍ଗ କରିବା ପାଇଁ ଉତ୍ତର ଦେଲି 'ଆଜ୍ଞା, ଜଣେ ଅନୁସରଣିଆ ବ୍ରାହ୍ମଣ' । ସେ ପ୍ରଥମେ ବିରକ୍ତ ହୋଇ ଗାଡ଼ି ଚଳାଇବା ନିମନ୍ତେ ଆଦେଶ ଦେଲେ । ମୁଁ ମୋର ଘନିଷ୍ଠ ପରିଚୟ ଉପରେ ନିର୍ଭର କରି ଗାଡ଼ିକୁ ଓଗାଳିଲି ଏବଂ କହିଲି 'ନା ! ଆପଣଙ୍କୁ ଏଠାରେ ରହିବାକୁ ହେବ' । ଏପରି ଧୃଷ୍ଟତାରେ ବାବୁ ମହୋଦୟ ବିସ୍ମିତ ହୋଇ ଗାଡ଼ିରୁ ବାହାର ଆସି ମତେ ଚିହ୍ନିଲେ ଓ ଟିକିଏ ଲଜ୍ଜିତ ହେବା ପରି ବୋଧ ହେଲା । ଲଜ୍ଜିତ ହେବାର କିଛି କାରଣ ନାହିଁ ବୋଲି ମୁଁ ଆଶ୍ୱାସନା ଦେବାରୁ ସେ ଟିକିଏ ଶାନ୍ତ ହେଲେ ଓ ସେଦିନ ବିଶେଷ ସରକାରୀ କାର୍ଯ୍ୟବଶତଃ ସେ ମୋ ପିତାଙ୍କ ଆତିଥ୍ୟ ଗ୍ରହଣ କରି ପାରିବେ ନାହିଁ ବୋଲି ଦୁଃଖିତ ହୋଇ ମୋଠାରୁ ବିଦାୟ ହେଲେ । ମୁଁ ତାଙ୍କୁ ବିଦାୟ ଦେଇ ସେଠାରୁ ଆସି ନନ୍ଦକିଶୋର ବାବୁ ବସିଥିବା ସ୍ଥାନରେ କେନାଲବନ୍ଧ ଉପରେ ବସି ସାଉଁଟି ସାହୁ ବୁଢ଼ା ସଙ୍ଗେ ଦୁଃଖ ସୁଖ ହେଲି । ଏହି ସମୟରେ ସିଦ୍ଧେଶ୍ୱରପୁର ସ୍କୁଲର ସେକେଣ୍ଡ ମାଷ୍ଟର ଆସି କହିଲେ ଯେ ବୁଅର ଯୁଦ୍ଧର Sir Redvers Buller ସେନାପତିଙ୍କ ନିକଟରେ ସର୍ଦ୍ଦାର ଥିଲା ଏପରି ଜଣେ ଲୋକ ଏଠାରେ ଗୁଡ଼ିଆ ଦୋକାନରେ ବସିଅଛି । ଉପସ୍ଥିତ ସମସ୍ତଙ୍କ ମନରେ କୌତୂହଳ ଜାତ ହେବାରୁ ସେ ଲୋକକୁ ଆମ୍ଭମାନଙ୍କ ନିକଟକୁ ଡକାଇଲୁଁ । ସେ ଲୋକଟିର ବୟସ ପ୍ରାୟ ୫୦ ବର୍ଷ, ଶରୀର ବଳିଷ୍ଠ, ମସ୍ତକ ଲଣ୍ଡା, ବେକରେ ମାଳ ଅଛି । ପରିଧାନ ଖଣ୍ଡେ ଲୁଗା ଓ କାନ୍ଧରେ ଖଣ୍ଡେ ଗାମୁଛା । ସେ ଲୋକଟି ଆମ୍ଭମାନଙ୍କ ନିକଟରେ ଆସି ପହଞ୍ଚି ପ୍ରଥମେ ଓଡ଼ିଆ-ହିନ୍ଦୁସ୍ଥାନୀମିଶ୍ରିତ କଥାବାର୍ତ୍ତା କଲା । କିଛିକ୍ଷଣ ପରେ ପ୍ରକାଶ କଲା ଯେ ସେ ଇଂରାଜୀ ଲେଖା ପଢ଼ା ଜାଣେ ନାହିଁ, କିନ୍ତୁ ଇଂରାଜୀରେ କଥାବାର୍ତ୍ତା କରିପାରେ । ଆମ୍ଭ-ମାନଙ୍କ ସଙ୍ଗେ ଇଂରାଜୀରେ କଥାବାର୍ତ୍ତା କରିବା ନିମନ୍ତେ ତାକୁ ଅନୁରୋଧ କରିବାରୁ ସେ ଇଂରାଜୀରେ କଥାବାର୍ତ୍ତା ଆରମ୍ଭ କଲା । ତାହାର ଇଂରାଜୀ କହିବାର କ୍ଷମତା, ସ୍ୱର, accent, pronunciation, fluency ଦେଖି ଆମ୍ଭେ-ମାନେ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ । ଆମ୍ଭେ-ମାନେ ତାହାର କାହାଣୀ ମଧ୍ୟରେ ଗୋଟିଏ ଲେଖାଏଁ ପ୍ରଶ୍ନ କରୁଥାଉଁ । ସେ କହିବାକୁ ଲାଗିଲା:—

ମୋ ଘର 'ଜଉଶୋଲ' ନାମକ ଗ୍ରାମରେ । (ଏହି ଗ୍ରାମଟି ସିଦ୍ଧେଶ୍ୱରପୁରଠାରୁ ୩୪ ମାଇଲ ହେବ ।) ମୁଁ ପ୍ରଥମେ ଏଠାରୁ 'କୁଲି' ହୋଇ କଲିକତାକୁ ଗମନ କଲି । ସେଠାରୁ ୩ ବର୍ଷର ଏଗ୍ରିମେଣ୍ଟରେ ଆଫ୍ରିକାର ବ୍ରିଟିଶ ଗାଏନାକୁ ଗଲି । ୩ ବର୍ଷ ବଗିଚାରେ କୁଲିଗିରିର Agreement.ର ସମୟ ପୂର୍ଣ୍ଣ ହେବାରୁ କୁଲିଗିରି ଛାଡ଼ି ସାହେବ-

ମାନଙ୍କ ସର୍ଦ୍ଦାର ଗୃହପ ଥିଲି । ଅନେକ ସାହେବଙ୍କ ନିକଟରେ ସର୍ଦ୍ଦାର ( butler ) ସ୍ୱରୂପ କାର୍ଯ୍ୟ କଲି । ଶେଷରେ ସେନାପତି Sir Redvers Bullerଙ୍କର ସର୍ଦ୍ଦାର ହେଲି । ତାଙ୍କ ନିକଟରେ ୧୮ ବର୍ଷ କାଳ ରହିଲି । ସେଠାରେ ମୋର ମାସିକ ଦରମା ଏଠାକାର ଟ ୧୫ ୯ ସଙ୍ଗେ ସମାନ ହେବ । ପ୍ରଥମେ ଟ ୧୨ ୯ ଦରମାରେ ଥିଲି, କିନ୍ତୁ ମୋର କାର୍ଯ୍ୟକୁଶଳତାରେ ସାହେବ ମହୋଦୟ ସନ୍ତୁଷ୍ଟ ହୋଇ ମୋର ବେତନ ବୃଦ୍ଧି କଲେ । ବୁଅର ଯୁଦ୍ଧ ସ୍ଥାନରୁ ଆମ୍ଭମାନଙ୍କ ଧାମ ୨ ମାଇଲ ଦୂରରେ ପଡୁଥାଏ । ସେନାପତିମାନେ ସେଠାରୁ ଆସି ଗୃହ, ଜଳପାନ, ଭୋଜନାଦି କରି ପୁନର୍ବାର ଯୁଦ୍ଧକ୍ଷେତ୍ରକୁ ଯାନ୍ତି । ଏହାଦିନରେ ଥରେ ଇଂରେଜମାନଙ୍କ ପକ୍ଷରୁ ୭୦୦୦ ସୈନ୍ୟ ହତ ହୋଇଥିଲେ । ବୁଲର ସାହେବଙ୍କର ସ୍କନ୍ଧରେ ଗୋଳା ବାଜିବାରୁ ସେ ଆହତ ହୋଇ ବିଲାତ ଗଲେ ଓ ମତେ ସଙ୍ଗରେ British Guina ପର୍ଯ୍ୟନ୍ତ ଆଣି ସେଠାରେ ମୋ ନିମନ୍ତେ କଲିକତା ପର୍ଯ୍ୟନ୍ତ ଜାହାଜଭଡ଼ା ( ଅନୁମାନିକ ଟ ୨୫୦ ୯ ) ଦେଇ ଟିକଟ କରି ଦେଲେ । ମୁଁ ଜାହାଜରେ ଆସି କଲିକତାଠାରେ ପହଞ୍ଚିଲି । ୧୦ ମାସ ହେଲା (ଗତ ପୁଷମାସରେ) ଏଠାକୁ ଆସିଅଛି । ଆଜି ପର୍ଯ୍ୟନ୍ତ Buller ସାହେବଙ୍କ ତରଫ ଲୋକ ମନିଅର୍ଡରଦ୍ୱାରା ମୋଠାକୁ ମାସିକ ଟ ୩ ୯ ଲେଖାଏଁ ପଠାଉଅଛନ୍ତି । ମୁଁ ସେଠାରେ ଜଣେ ନିଗ୍ରୋଜାତୀୟା ସ୍ତ୍ରୀକୁ ବିବାହ କରିଥିଲି । ମୋର ସେଠାରେ ଯୋଡ଼ିଏ ପୁଅ ହୋଇଥିଲେ । ମୁଁ ସେ ସ୍ଥାନ ଛାଡ଼ିଲା ବେଳେ ଗୋଟିକର ବୟସ ୫ ବର୍ଷ ଆଉ ଗୋଟିକର ବୟସ ୧୧ ବର୍ଷ ହୋଇଥିଲା । ମୋ ସ୍ତ୍ରୀକୁ ମୋ ସଙ୍ଗରେ ଏଠାକୁ ଆସିବା ନିମନ୍ତେ ମୁଁ ବିଶେଷ ଅନୁରୋଧ କଲି । ସେ କହିଲା ଯେ ତୁମ ଦେଶର ଜଘନ୍ୟ ଜାତିଭେଦ ପ୍ରଥା ( nasty custom of caste system of your country ) ଯୋଗୁଁ ମତେ ସେଠାରେ ବିଶେଷ କଷ୍ଟ ଭୋଗ କରିବାକୁ ପଡ଼ିବ । ମୋ ପିଲାଙ୍କୁ ମଧ୍ୟ ମୋ ସଙ୍ଗରେ ପଠାଇବାକୁ ସେ ନାରାଜ ହେଲା । ମୁଁ ଏଠାରେ ଆସି ପ୍ରଥମେ ଏକପରିବାର ହୋଇ ରହିଲି; ୨ । ୩ ମାସ ହେବ ପଞ୍ଚଗବ୍ୟ ପ୍ରାୟଶ୍ଚିତ୍ତ ( cow-dung water ) କରାଇ ମତେ ଜାତିରେ ନେଇ ଅଛନ୍ତି । ବୁଅରମାନେ ସେଠାରେ ତାଙ୍କ ସ୍ୱାଧୀନତା ନିମନ୍ତେ ଯୁଦ୍ଧ କରୁଥିଲେ । ଇଂରେଜମାନେ ବୁଅରମାନଙ୍କଠାରୁ କେତେ ଲକ୍ଷ sterling କ୍ଷତିପୂରଣ ଚାହିଁଥିଲେ, କିନ୍ତୁ ବୁଅରମାନେ ସେଥିରେ ନାରାଜ ହେଲେ । ମୁଁ କଟକରେ କେତେକ ଲୋକଙ୍କୁ ଜାଣେ । Mr. * * * * ଯେ କି କଟକର ଜଣେ ପ୍ରଧାନ ଦେଶୀୟ ବ୍ୟକ୍ତି ଅଟନ୍ତି, ସେ ମୋର ପରିଚିତ ବନ୍ଧୁ ( well known friend of mine ) । ବ୍ରିଟିଶ ଗାଏନାରେ ଆମ ଦେଶର ଅନେକ ଲୋକ କୁଲିଗିରି କରନ୍ତି ( There are lots of my people in British-Guina. )"

ମଝିରେ ମଝିରେ Negro ଜାତିସୁଲଭ ଇତର ଭାଷା ମଧ୍ୟ ଉକ୍ତ ଲୋକଟି ବ୍ୟବହାର କରୁଥିଲା । ଉଦାହରଣ ସ୍ୱରୂପ 'I' ସ୍ଥାନରେ 'Me', 'he' ସ୍ଥାନରେ 'she', 'me going', 'me coming' ଇତ୍ୟାଦି । କିନ୍ତୁ ତାହାର କଥାବାର୍ତ୍ତାର ଧାରା ଓ ସ୍ୱରରେ ଆମ୍ଭେମାନେ 'ଚିତ୍ରାର୍ପିତାଇବ' ହୋଇ ରହିଥିଲୁଁ । ବେଶି ସତ ହୋଇ ଯିବାରୁ ସେ ଲୋକଟି ତା ଗୃହକୁ ଯିବାକୁ ଉଦ୍‌ବିଗ୍ନ ହେବାର ଦେଖି ଆମ୍ଭେମାନେ ତାକୁ ବିଦାୟ ଦେଲୁଁ ଓ ପୁନର୍ବାର ଆମ୍ଭମାନଙ୍କ ସଙ୍ଗରେ ଦେଖା କରିବା ନିମନ୍ତେ ଅନୁରୋଧ କଲୁଁ । ତହୁଁ ସେ କହିଲା 'ଯେବେ ତୁମର card ଥାଏ ମତେ ଦିଅ, କିମ୍ବା ତୁମର କଟକ ଠିକଣା ଲେଖିଦିଅ, ମୁଁ ଆଶା କରେଁ ଯେ ମୁଁ ତୁମ୍ଭ ସଙ୍ଗେ କଟକରେ ଦେଖା କରିବି ( I will be glad to meet you at Cuttack ) ।' ଏହା କହି ମୋ ଠିକଣା ଲେଖା ଥିବା କାଗଜ ଖଣ୍ଡିକ ଧରି ସେ ଲୋକଟି ତାହାର

ଗନ୍ତବ୍ୟ ପଥ ଅନୁସରଣ କଲା । ମୋର ବନ୍ଧୁ ନନ୍ଦକିଶୋର ବାବୁ ଉକ୍ତ ଲୋକଟିକୁ ଏଥି ମଧ୍ୟରେ ଥରେ ପଚାରିଥିଲେ 'ତୁମେ ଗୋଟିଏ ପିଲା ଆଣି ତୁମର ସ୍ତ୍ରୀକୁ ଗୋଟିଏ ପିଲା ଦେଇ ଆସିଲ ନାହିଁ କାହିଁକି ?' ସେ ଲୋକଟି ଉତ୍ତର କଲା 'ମୋର ସ୍ତ୍ରୀ ମଧ୍ୟ ବିଦାୟ ଦେବାକୁ ଆପତ୍ତି କଲା ନାହିଁ, କିନ୍ତୁ ସେ ମୋ ସଙ୍ଗରେ ଆସିବାକୁ ନିତାନ୍ତ ନାରାଜ ହେବାରୁ ମୁଁ ବାଧ୍ୟ ହୋଇ ଆସିଲି । ଅଳ୍ପକାଳ ମଝିରେ ମଝିରେ ସେମାନଙ୍କଠାରୁ ମୁଁ ଭାଷା ପାଉଅଛି ।' ଆଉ ଗୋଟିଏ ପ୍ରଶ୍ନର ଉତ୍ତରରେ କହିଲା ଯେ 'ମୁଁ ମୋର ଦେଶର ମାୟା ଛାଡି ନ ପାରି ବାହାରି ଆସିଲି ।' ସେ ଲୋକଟି ଯିବା ପରେ ଆମ୍ଭମାନେ ଆଜି ଦିନଟି ବଡ଼ ସୁଖର ଦିନ ବୋଲି ଭାବିଲୁଁ । ସେ ଲୋକଟିକୁ ଦେଖି ଆମ୍ଭମାନଙ୍କ ମଧ୍ୟରେ ନିମ୍ନଲିଖିତ ବିଷୟଗୁଡିକ ସିଦ୍ଧାନ୍ତ ହୋଇଥିଲା— ଇଂରାଜଙ୍କ ସହବାସରେ ସେ ଲୋକଟିର ମାନସିକ ସ୍ୱାଧୀନତା ଢେର ବଢ଼ିଅଛି । ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ଲୋକେ ଇଂରାଜୀ କଥା କହିବା ବେଳେ ସୁଦ୍ଧା ଆମ୍ଭମାନଙ୍କ ବାକ୍ୟରୁ ଆମ୍ଭମାନଙ୍କ ଭିତର ମାନସିକ ପରାଧୀନତା ଜଣା ପଡ଼େ । କିନ୍ତୁ ଇଂରାଜୀ କଥା କହିଲା ବେଳେ ତାର ସ୍ୱାଧୀନ ଭାବ ଦେଖି ମୁଁ ଓ ନନ୍ଦକିଶୋର ବାବୁ ବିସ୍ମିତ ହୋଇ ବସିଥାଉଁ । ଜଣେ ଓଡ଼ିଆ ଗଉଡ଼ ମୁହଁରୁ ଇଂରାଜୀ ଭାଷାରେ 'lots of my people', Mr. * * is a friend of mine', nasty custom of caste system of your counrty' ଏଗୁଡିକ ଶୁଣିବା ପ୍ରଥମେ ସ୍ୱପ୍ନ ପରି ବୋଧ ହେବ ।

ସେ ମନୁଷ୍ୟଟି ଯିବା ପରେ ଆମ୍ଭମାନଙ୍କ ମନରେ କେତେ ଭାବର ଉଦୟ ହେଲା ଓ ଲୋକଟି ସଙ୍ଗରେ ପୁନର୍ବାର ଦେଖା ହେଲେ ଆଫ୍ରିକା ଦେଶବାସୀ ଓଡ଼ିଆଙ୍କ ଆଚାର ବ୍ୟବହାର ସମ୍ବନ୍ଧରେ ଓ ବୁଅର ଯୁଦ୍ଧ ସମ୍ବନ୍ଧରେ ଉକ୍ତ ଲୋକଟିକୁ ଜଣାଥିବା କେତେକ ବିଷୟ ବୁଝିବୁ ବୋଲି ରହିଲୁଁ ।

ତେବେ ମୋର ବନ୍ଧୁ ନନ୍ଦକିଶୋର ବାବୁଙ୍କର କବିକଳ୍ପନା ଆଗରୁ କେତେଗୁଡିଏ ଚିତ୍ର ଅଙ୍କି ଦେଇଥିବାରୁ ସେଗୁଡିକ ଲେଖି ରଖିବାର ଉଚିତ ବୋଧ କଲୁଁ ।

ଏଠାରୁ ଓଡ଼ିଆମାନେ ଯାଇ ସେଠାରେ ନିଗ୍ରୋମାନଙ୍କ ସଙ୍ଗରେ ବିବାହ କରି ଘର ଦ୍ୱାର କରି ରହନ୍ତି । ବ୍ରିଟିଶ ଗାଏନା କୁଲିମାନଙ୍କ ମଧ୍ୟରେ ହିନ୍ଦୁସ୍ଥାନୀ (ପଶ୍ଚିମା) ଓ ଓଡ଼ିଆ କୁଲି ଅଧିକ । ସେମାନେ ସେଠାରେ ଓଡ଼ିଆ ମିଶା ହିନ୍ଦୁସ୍ଥାନୀ ଭାଷା ସୃଷ୍ଟି କରିଅଛନ୍ତି । ସେମାନେ ସେଠାକୁ ଯାଇ ଖ୍ରୀଷ୍ଟ ଧର୍ମ ଗ୍ରହଣ କରନ୍ତି । ଏ ଦେଶରେ ସାହେବମାନଙ୍କ ସଙ୍ଗେ ଦେଶୀୟମାନଙ୍କର ଯେଉଁ ସମ୍ପର୍କ, ସେଠାରେ ସମ୍ପର୍କ ତାହା ଅପେକ୍ଷା ଘନିଷ୍ଠତର ଓ ଉଚ୍ଚତର ।

ଗୋପାଳଚନ୍ଦ୍ର ପ୍ରହରାଜ

---

## ଜାପାନ ।

ଆଜି ସମସ୍ତ ଜଗତ ଜାପାନର ଶୌର୍ଯ୍ୟ, ବୀର୍ଯ୍ୟ ଓ ପରାକ୍ରମରେ ମୁଗ୍ଧ, ଚକିତ, ବିସ୍ମିତ । ଆମ୍ଭମାନଙ୍କର ଜନ୍ମଭୂମି ଭାରତର ଉତ୍ତରପୂର୍ବ ଦିଗରେ ଏବଂ ଫେନିଳତରଙ୍ଗାୟିତ ପ୍ରଶାନ୍ତ ମହାସମୁଦ୍ରର ଏକପ୍ରାନ୍ତରେ ଅବସ୍ଥିତ ଏକ କ୍ଷୁଦ୍ର ଦ୍ୱୀପ ମହାବିକ୍ରମଶାଳୀ, ବିରାଟଆୟତନବିଶିଷ୍ଟ ରୁଷିଆ ସହିତ ଘୋର ସଂଗ୍ରାମରେ ପ୍ରବୃତ୍ତ ହୋଇ ଦୀର୍ଘକାଳ ପର୍ଯ୍ୟନ୍ତ ବିଶିଷ୍ଟ ପ୍ରଶଂସାସହିତ ଜୟ ଲାଭ କରି ଆସୁଅଛି ଏବଂ ଏପର୍ଯ୍ୟନ୍ତ ପରାଭବ ସ୍ୱୀକାର କରି ନାହିଁ, ଏହାହିଁ ଜାପାନ

ପକ୍ଷରେ ଅସାମାନ୍ୟ ଗୌରବର ବିଷୟ । ପଶ୍ଚାତ୍ତରେ ରୁଷିଆ କିଂକର୍ତ୍ତବ୍ୟବିମୂଢ଼ ଓ ପୁନଃ ପୁନଃ ପରାଭବ ସ୍ୱୀକାର କରି ଲଜ୍ଜିତ ଓ ମ୍ରିୟମାଣ । କିଛିକାଳ ପୂର୍ବେ କେହି ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଯେ କ୍ଷୁଦ୍ର ଜାପାନଠାରେ ଏତେ ଶକ୍ତି ଅନ୍ତର୍ନିହିତ ହୋଇ ରହିଅଛି ଏବଂ ରୁଷିଆ ପରି ଏଡ଼େବଡ଼ ସାମ୍ରାଜ୍ୟ ଗୋଟାଏ କ୍ଷୁଦ୍ର ଦ୍ୱୀପ ସମ୍ମୁଖରେ ଅକିଞ୍ଚିତ୍କର ବୋଲି ପ୍ରତୀୟମାନ ହେବ । ବର୍ତ୍ତମାନ ସମୟରେ ଜାପାନ ସମ୍ବନ୍ଧରେ କିଛି ଆଲୋଚନା କଲେ ପାଠକମାନେ ଏହାକୁ ନିତାନ୍ତ ନୀରସ ଓ ବିଦ୍ୟାଳୟର ଛାତ୍ରୋପଯୋଗୀ ଭୌଗୋଳିକ ବିଷୟ ବୋଲି ଅନାସ୍ଥା ପ୍ରଦର୍ଶନ କରିବେ ନାହିଁ ।

ପର୍ଯ୍ୟାଲୋଚନା କରି ଦେଖିଲେ ଏହା ସ୍ପଷ୍ଟ ଅନୁଭୂତ ହେବ ଯେ ବିଦ୍ୟା, ଶିଳ୍ପ, ବାଣିଜ୍ୟ, ବିକ୍ରମ, ସମରକୌଶଳ ପ୍ରଭୃତି ସକଳ ବିଷୟରେ ଜାପାନ ସମସ୍ତ ଜଗତର ସୁସଭ୍ୟଜାତିର ସମକକ୍ଷ । ଏହାର କ୍ରମିକ ଦ୍ରୁତ ଉନ୍ନତି ବିଷୟ ଚିନ୍ତନୀୟ ଓ ଶିକ୍ଷଣୀୟ ଅଟେ । ସଭ୍ୟଜଗତରେ ଏହା 'ଜାପାନ' ବୋଲି ଅଭିହିତ ଓ ପରିଚିତ । ସ୍ୱୟଂ ଜାପାନୀମାନେ ସେମାନଙ୍କର ଦେଶକୁ 'ନିପନ' [ Nippon ] ବୋଲି ଡାକନ୍ତି । ଉତ୍କର୍ଷ ସୂଚନାର୍ଥ ମଧ୍ୟ କେହି କେହି ଜନ୍ମଭୂମିକୁ Dai Nippon or Great Nippon ବୋଲି କହିଥାନ୍ତି । ଫରାସୀମାନେ ଏହାକୁ 'ଜାପନ' ( Japon ) ବୋଲି କହିଥାନ୍ତି । ଯାହାହେଉ ଜାପାନ ଶବ୍ଦଟି ସମ୍ଭବତଃ ଚୀନସ୍ କିମ୍ବା କୋରିଅନ୍ 'ଜିପ୍‌ଟେନ' ବା 'ଚିବ୍‌ପେଙ୍ଗୋ' (Jhipten or Chibpengo)'' ଶବ୍ଦର ରୂପାନ୍ତର ମାତ୍ର । ଏହାର ଅର୍ଥ 'ପୂର୍ବଦିଗବର୍ତ୍ତୀ ଦେଶ' (The land to the East) ଅଟେ । ଏହା କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପର ସମଷ୍ଟି ମାତ୍ର । ପ୍ରାକୃତିକ ଅବସ୍ଥାନ ଅତି ମନୋହର । ନାନା କ୍ଷୁଦ୍ର କ୍ଷୁଦ୍ର ପାହାଡ଼, ସୁରମ୍ୟ ଉପତ୍ୟକା, ଅଗ୍ନେୟଗିରି, ଗିରିଗହ୍ୱର, ଉଷ୍ଣପ୍ରସ୍ରବଣ, କ୍ଷୁଦ୍ର ସ୍ରୋତସ୍ୱତୀମାନ ଏହାର ସୌନ୍ଦର୍ଯ୍ୟ ସମ୍ପାଦନ କରୁଅଛନ୍ତି । ମୃତ୍ତିକା ଉର୍ବର, ଶସ୍ୟଶାଳୀ; ନାନାବିଧ ସୁନ୍ଦର ବହୁମୂଲ୍ୟ ପ୍ରସ୍ତର ଓ ଧାତୁମାନଙ୍କର ପ୍ରାଚୁର୍ଯ୍ୟ ଲକ୍ଷିତ ହୁଏ । ଦକ୍ଷିଣ ଭାଗଟି ଉତ୍ତରଭାଗ ଅପେକ୍ଷା ଅଧିକତର ଶୋଭନୀୟ । ପଶ୍ଚିମ ଭାଗଟିର ଜଳବାୟୁ ଅତ୍ୟନ୍ତ ଶୀତଳ । ଶୀତକାଳରେ ପ୍ରଚୁର ବରଫ ପତିତ ହୁଏ; ସ୍ଥାନେ ସ୍ଥାନେ କୋଡ଼ିଏ ଫୁଟ ପର୍ଯ୍ୟନ୍ତ ଜମି ଯାଇଥାଏ । ଦକ୍ଷିଣ ଅଂଶଟି ଅପେକ୍ଷାକୃତ ଉଷ୍ଣ । ଭାରତବାସିମାନଙ୍କ ପକ୍ଷରେ ଏପ୍ରିଲମାସର ଶେଷ ଭାଗ ଜାପାନ ପର୍ଯ୍ୟଟନର ଉପଯୁକ୍ତ କାଳ । ମାର୍ଚ୍ଚି ମାସରେ ଏବଂ ଏପ୍ରିଲର ପ୍ରାରମ୍ଭରେ ଭୟଙ୍କର ଶୀତ ଅନୁଭୂତ ହୁଏ । ଉକ୍ତ ସମୟରେ ବୃଷ୍ଟିର ପରିମାଣ ମଧ୍ୟ ଖୁବ କମ ନୁହେ । ଭାରତବାସୀ ପକ୍ଷରେ ଜାପାନ ଭ୍ରମଣରେ ବହିର୍ଗତ ହେଲେ ଯଥେଷ୍ଟ ଶୈତ୍ୟନିବାରକ ବସ୍ତ୍ର ସାଙ୍ଗରେ ନେବା ବିଧେୟ ।(ଫୁଜୁୟାମା)(Fuzuyama) ନାମକ ଏକ ସୁନ୍ଦର ଅଗ୍ନେୟଗିରି ବର୍ତ୍ତମାନ । ପ୍ରକୃତ ନାମଟି "ଫିଉଜୀ" ଅଟେ ଏବଂ 'ୟାମା'ର ଅର୍ଥ ପର୍ବତ । ଜାପାନୀମାନେ ଏହାକୁ 'ଫିଉଜୀସାନ' (Fusisan) ଅର୍ଥାତ୍ "Mr. Mrs. and Miss. Fuji" ବୋଲି ରହସ୍ୟ ଛଳରେ ଡାକିବାକୁ ସୁଖ ମଣନ୍ତି । ଏହାର ଉଚ୍ଚତା ନିତାନ୍ତ କମ ନୁହେ, ପ୍ରାୟ ୧୨୦୦୦ ଫୁଟରୁ ଅଧିକ । ଦେଖିବାକୁ ବଡ଼ ସୁନ୍ଦର ଓ ଚିତ୍ତ-ହର୍ଷକ । ଶୀତକାଳରେ ଏହାର ସମସ୍ତ ଶରୀର ଶିଖରଠାରୁ ପାଦଦେଶ ପର୍ଯ୍ୟନ୍ତ ବରଫାବୃତ ରହିଥାଏ । ଏହାର ଋତୁକାଳୀନ ଶୋଭା ଅତ୍ୟନ୍ତ ମନୋମୁଗ୍ଧକର ।

ପ୍ରାଚୀନ ଗ୍ରୀକ ଓ ହିନ୍ଦୁମାନଙ୍କପରି ଏମାନଙ୍କର ପ୍ରାଚୀନ ଇତିହାସ ନାନାବିଧ କଳ୍ପନାସମ୍ଭୂତ ଗଳ୍ପ ଓ ଅତ୍ୟାଶ୍ଚର୍ଯ୍ୟରେ ପରିପୂର୍ଣ୍ଣ । ସର୍ବପ୍ରଧାନ ପ୍ରାଚୀନ ଗ୍ରନ୍ଥ 'କୋଜିକି' ପ୍ରାୟ ପ୍ରାୟ ୭୧୨ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ ହୋଇଥିଲା । ଏଥିରେ ପ୍ରାୟ ତେରଶତ ବା ଚୌଦଶତ ବର୍ଷ ପୂର୍ବର ଘଟଣାମାନ ବର୍ଣ୍ଣିତ

ହୋଇଅଛି । ସେମାନଙ୍କର ଦେଶ ସର୍ବପ୍ରଥମରେ ସୃଷ୍ଟ ଓ ସର୍ବଶ୍ରେଷ୍ଠ ଏପ୍ରକାର ଭାବ ପ୍ରାଚୀନତମ ଅଧିବାସୀମାନଙ୍କ ମନରେ ବଦ୍ଧମୂଳ ଥିଲା । 'କୋଜିକି' ଗ୍ରନ୍ଥରେ ଏହିପରି ଲିଖିତ ଅଛି ଯେ ସୃଷ୍ଟିର ପ୍ରାକ୍‌କାଳରେ 'ଇଜାନାଗି' ଓ 'ଇଜାନାମି' ଦୁଇ ଦେବବଂଶଧର ଭ୍ରାତା ଓ ଭଗିନୀ ଅମର-ଲୋକରେ ବାସ କରୁଥିଲେ । ଦିନେ ସେମାନେ ନିମ୍ନସ୍ଥ ଅନନ୍ତ ନୀଳ ଜଳରାଶି ପ୍ରତି ଦୃଷ୍ଟିପାତ କରି ସୁଖାନୁଭବ କରୁଥିଲେ । ଇତ୍ୟବସରରେ 'ଇଜାନାଗି' ହସ୍ତସ୍ଥିତ ସୁନ୍ଦର ନାନା କାରୁକାର୍ଯ୍ୟ-ଶୋଭିତ ବର୍ଚ୍ଛାଟି ଜଳ ମଧ୍ୟରେ ପଡ଼ିଗଲା । ପତନ ମାତ୍ରକେ ଉତ୍ତାଳ ତରଙ୍ଗମାଳା ଭେଦ କରି 'ଅଉଅଜି' ନାମକ ଏକ ଦ୍ୱୀପ ସ୍ୱତଃ ପ୍ରକାଶିତ ହେଲା । ଅନନ୍ତର ଉକ୍ତ ଦେବ ଭ୍ରାତା ଓ ଭଗିନୀ ଉକ୍ତ ଦ୍ୱୀପୋପରି ବାସ କଲେ । କ୍ରମେ କ୍ରମେ ସେମାନଙ୍କ ପ୍ରଭାବରେ ତତ୍‌ସନ୍ନିକଟରେ ଆଉ ସାତୋଟି କ୍ଷୁଦ୍ର ଦ୍ୱୀପ ସୃଷ୍ଟ ହୋଇଥିଲା । ଏହାହିଁ ଅଧୁନାତନ ଜାପାନର ଉତ୍ପତ୍ତିସମ୍ବନ୍ଧୀୟ ପୌରାଣିକ ଆଖ୍ୟାନ । ଜାପାନ ସମ୍ରାଟମାନେ ମଧ୍ୟ ଚନ୍ଦ୍ର ଓ ସୂର୍ଯ୍ୟଙ୍କଠାରୁ ସେମାନଙ୍କ ବଂଶର ଉତ୍ପତ୍ତି ନିର୍ଦ୍ଦେଶ କରିଥାନ୍ତି ।

ଯାହାହେଉ ଅତି ପ୍ରାଚୀନକାଳରେ 'ଏଇନସ' (Ainos) ନାମକ ଏକ ଅସଭ୍ୟ ଜାତି ଜାପାନରେ ବାସ କରୁଥିଲେ । କାଳକ୍ରମେ ମଧ୍ୟ-ଆସିଆର ମାଙ୍ଗୋଲିୟମାନେ ଜାପାନରେ ଉପନିବେଶ ସ୍ଥାପନ କରି ବହୁବର୍ଷବ୍ୟାପୀ ଯୁଦ୍ଧଦ୍ୱାରା ଅସଭ୍ୟ ଜାତିମାନଙ୍କୁ ପରାଜିତ ଓ ବିତାଡ଼ିତ କରି ଜାପାନକୁ ସ୍ୱାଧିକାରଭୁକ୍ତ କରିଥିଲେ । ଜାପାନର ଉତ୍ତରାଂଶ 'ଏଇନସ'ଙ୍କଦ୍ୱାରା ଆଜି ପର୍ଯ୍ୟନ୍ତ ଅଧିକୃତ ହୋଇ ରହିଅଛି । କାଳକ୍ରମେ ଯେ କୋରିଆ ଓ ଚୀନରୁ ଔପନିବେଶିକମାନେ ଜାପାନରେ ଆସି ବାସ କରି ନାହାନ୍ତି ଏହା ବୋଲା ଯାଇ ନ ପାରେ । ଅଧୁନାତନ ଜାପାନ ଜାତିର ମୂଳ ନିର୍ଣ୍ଣୟ କରିବା ନିତାନ୍ତ କଷ୍ଟସାଧ୍ୟ । ଅସଭ୍ୟ 'ଏଇନସ'ମାନେ କୌଣସି 'ଆର୍ଯ୍ୟ' ଭାଷାରେ କଥା କହୁ ନ ଥିଲେ-ମଧ୍ୟ, ମୂଳରେ ଯେ ସେମାନେ ଆର୍ଯ୍ୟବଂଶସମ୍ଭୂତ ଏହା କେତେକ ଅନୁମାନ କରାଯାଇ ପାରେ । ଜାପାନୀମାନଙ୍କର ଅଦ୍ଭୁତ ଶାରୀରିକ ଗଠନ ସୂକ୍ଷ୍ମରୂପେ ପର୍ଯ୍ୟାଲୋଚନା କଲେ ଜଣାଯିବ ଯେ କେତେକ ଅଂଶରେ ସେମାନେ ମାଙ୍ଗୋଲିୟମାନଙ୍କଠାରୁ ପୃଥକ୍ । ମାଙ୍ଗୋଲିୟଙ୍କ ପରି ଜାପାନୀଙ୍କର କ୍ଷୁଦ୍ର ପାଦ ଓ ଘନ କୃଷ୍ଣ କେଶ ଥିଲେ ମଧ୍ୟ ସେମାନଙ୍କର ଶ୍ମଶ୍ରୁ ମାଙ୍ଗୋଲିୟଙ୍କ ନିକଟରେ ପୂର୍ଣ୍ଣରୂପେ ନୂତନ ବୋଲି ବିବେଚିତ ହୁଏ । ଦୁଇ ପ୍ରକାର ଲୋକ ଜାପାନରେ ଦୃଷ୍ଟ ହୁଅନ୍ତି । ଏକ ପ୍ରକାର ଦେଖିବାକୁ ଧୂସର ବର୍ଣ୍ଣ ଏବଂ ଅନ୍ୟ ପ୍ରକାର ଦେଖିବାକୁ ଶ୍ୱେତ ବର୍ଣ୍ଣ । ଏଥିରୁ ଅନେକେ ଅନୁମାନ କରିଥାନ୍ତି ଜାପାନରେ ଦୁଇ ଦିଗରୁ ଦୁଇ ଦଳ ଆସି ଉପନିବେଶ ସ୍ଥାପନ କରିଥିବାରୁ ଶରୀରବର୍ଣ୍ଣରେ ଏପ୍ରକାର ପାର୍ଥକ୍ୟ ଲକ୍ଷିତ ହୁଏ । କେହି କେହି କହନ୍ତି ସାଘେଲିଅନ ଓ କାମସ୍କଟକା ପ୍ରଭୃତି ଉତ୍ତରଦିଗବର୍ତ୍ତୀ ଦ୍ୱୀପ-ପୁଞ୍ଜରୁ ଏକ ଦଳ ଆସି ପାରିଥିବେ । ସେମାନଙ୍କ ଭାଷାରୁ ମଧ୍ୟ ଏ ବିଷୟରେ କିଛି ନିର୍ଦ୍ଧାରଣ କରିବା କଠିନ । ଜାପାନର ଭାଷା ପୃଥିବୀର ଅନ୍ୟାନ୍ୟ ଭାଷାଠାରୁ ପ୍ରଚୁର ପରିମାଣରେ ଭିନ୍ନ । ଚୀନ ଦେଶପ୍ରଚଳିତ ଶବ୍ଦମାନଙ୍କର ପ୍ରାଚୁର୍ଯ୍ୟ ଜାପାନୀ ଭାଷାରେ ଲକ୍ଷିତ ହୋଇଥାଏ । ଅନ୍ୟାନ୍ୟ କେତେକ ରୀତି ପରି ମଧ୍ୟ ଜାପାନୀମାନେ ସେମାନଙ୍କର ଲିଖନପ୍ରଣାଳୀ ଚୀନରୁ ଗ୍ରହଣ କରିଅଛନ୍ତି । 'ସୋଗନ ଆଇଯାସୁ' ( Shogun Iyejasu ) ନାମକ ଜନୈକ ପ୍ରସିଦ୍ଧ ଜାପାନୀଙ୍କର ଉଦ୍ୟୋଗ ଓ ଅନୁକୂଳରେ ବୌଦ୍ଧ ଯାଜକ 'କୋବାଦୈଶି'ଙ୍କଦ୍ୱାରା ( Kobadaishy ) ଲିଖନପ୍ରଣାଳୀର ଅନେକ ପରିବର୍ତ୍ତନ ହୋଇଥିଲା ।

ସିଣ୍ଟୋଇଜମ୍ ( Shintoism ) ନାମକ ଧର୍ମ ପ୍ରଣାଳୀ ଅତି ପ୍ରାଚୀନ କାଳରେ ଜାପାନରେ

ଚଳୁଥିଲା, ଶିକ୍ଷିତ ଜାପାନୀମାନେ ଅନେକାଂଶରେ କନଫିଉସିଅସ (Confucius) ମତବାଦୀ । ବୌଦ୍ଧ ଧର୍ମ ବହୁଳ ପରିମାଣରେ ପ୍ରଚଳିତ । ସେମାନଙ୍କର ଧର୍ମର ଅବସ୍ଥା ଅତ୍ୟନ୍ତ ଶୋଚନୀୟ, ନାନା ଧର୍ମମତବାଦୀ ସମ୍ପ୍ରଦାୟରେ ବିଭକ୍ତ, ସାକାରବାଦ ପ୍ରଚଳିତ, ନାନା ଦେବଦେବୀଙ୍କର ପୂଜା ମଧ୍ୟ ଅନୁଷ୍ଠିତ ହୋଇଥାଏ । ବାୟୁ ଦେବତା, ଅଗ୍ନି ଦେବତା, ରନ୍ଧନଶାଳାର ଦେବତା, ବାସ୍ତୁ ଦେବତା ପ୍ରଭୃତି ଅଶୀତି ଲକ୍ଷ ଦେବତାର ଆରାଧନା ପ୍ରଚଳିତ ହୋଇଅଛି । ପ୍ରତ୍ୟେକ ଜାପାନୀର ଘରର ଏକ ଅଂଶରେ ଏକ ଏକ କାଷ୍ଠନିର୍ମିତ ମନ୍ଦିର ଅଛି, ସେଠାରେ ସେମାନେ ମନ୍ତ୍ରୋଚ୍ଚାରଣପୂର୍ବକ ଦେବଦେବୀଙ୍କର ପୂଜା କରିଥାନ୍ତି । ପ୍ରାୟ ଛଅଶତ ବର୍ଷ ପୂର୍ବେ ୧୨୯୫ ସାଲରେ ଭିନିସୀୟ ପର୍ଯ୍ୟଟକ ମାର୍କୋପୋଲୋ ତୋଇଅ ଓ ଚିନ ପର୍ଯ୍ୟନ୍ତ ଭ୍ରମଣ କରିଥିଲେ । ସେ ଜାପାନରେ ଉପସ୍ଥିତ ହୋଇ ପାରି ନ ଥିଲେ। କିନ୍ତୁ ଅନ୍ତର ଅଧିକ ପୂର୍ବ ଅଡ଼କୁ ସମୁଦ୍ରଗର୍ଭ ମଧ୍ୟରେ ଗୋଟିଏ ସ୍ୱାଧୀନ ରାଜ୍ୟ ପ୍ରତିଷ୍ଠିତ ରହି ଅଛି, ଏ ସମ୍ବାଦ ସେ ଇଉରୋପରେ ପ୍ରଚାର କରି ଥିଲେ । ସେ ଆହୁରି ମଧ୍ୟ ପ୍ରଚାର କରିଥିଲେ ଯେ ସେଠାର ଅଧିବାସୀମାନେ ପୌତ୍ତଳିକ ଓ ମନୁଷ୍ୟ-ମାଂସାଶୀ । କିନ୍ତୁ ଏପ୍ରକାର ଉକ୍ତିର ଯାଥାର୍ଥ୍ୟରେ ଆମ୍ଭେମାନେ ସନ୍ଦିହାନ, କାରଣ ସେ ସମୟରେ ଜାପାନରେ ବୌଦ୍ଧ ଧର୍ମର ଅହିଂସାବାଦ ନୀତି ସମ୍ୟକ୍‌ରୂପେ ପ୍ରଚଳିତ ଥିଲା ।

ଜାପାନ ସମ୍ରାଟ ସାଧାରଣତଃ 'ମିକାଡ଼ୋ' (Mikado) ନାମରେ ପରିଚିତ । କିନ୍ତୁ ଜାପାନର ଲୋକେ ସମ୍ରାଟଙ୍କୁ 'ମିକାଡ଼ୋ' ବୋଲି ଡାକନ୍ତି ନାହିଁ । ସେମାନେ ସାଧାରଣତଃ ତାହାଙ୍କୁ 'ଟେନୋ' (Tenno) ବୋଲି କହନ୍ତି । 'ଟେନୋ'ର ଅର୍ଥ 'Ten'='Heaven' and 'No'='of') ସ୍ୱର୍ଗୀୟ ଦେବପୁରୁଷ(Divine one)। ଇଂରାଜୀ ପୁସ୍ତକମାନଙ୍କରେ ଏହି ଶବ୍ଦର ଅର୍ଥ 'Son of Heaven' କରି ହୋଇଥାଏ । କୋଜିକି ଓ ନିହଙ୍ଗି (Kojiki and Nihongi) ନାମକ ଜାପାନର ଦୁଇ ପ୍ରାଚୀନ ପୁରାଣରେ ଏହିପରି ଲିଖିତ ଅଛି ଯେ ଜିମ୍ମୁଟେନୋ (Jimmu Tenno) ମିକାଡ଼ୋ ରାଜବଂଶର ସ୍ଥାପନକର୍ତ୍ତା । କାଳକ୍ରମେ ବୌଦ୍ଧଧର୍ମର ପ୍ରଭାବରେ ମିକାଡ଼ୋ ରାଜକାର୍ଯ୍ୟ ପରିଚାଳନ ପ୍ରଭୃତି ଗୁରୁତର କର୍ତ୍ତବ୍ୟ କାର୍ଯ୍ୟପ୍ରତି ଅବହେଳା ପ୍ରଦର୍ଶନ କରି ନିର୍ଲିପ୍ତ ଭାବରେ ସନ୍ନ୍ୟାସିଙ୍କ ପରି କାଳଯାପନ କରିବାକୁ ଆରମ୍ଭ କଲେ। ଶରୀରଧାରୀ ସାକ୍ଷାତ୍ ପରମେଶ୍ୱର ପରି ଲୋକେ ମିକାଡ଼ୋଙ୍କୁ ସମ୍ମାନ କରୁଥିଲେ । ସାଧାରଣ ପ୍ରଜାମାନେ ଇଚ୍ଛାନୁସାରେ ସମୟ ଓ ଶକ୍ତିର ଅପଚୟ କରିବାକୁ ଲାଗିଲେ । କାଳକ୍ରମରେ ରାଜକାର୍ଯ୍ୟରେ ବିଶୃଙ୍ଖଳା ଦେଖି ବଡ଼ ବଡ ରାଜନୀତିଜ୍ଞମାନେ ପ୍ରାଦୁର୍ଭୂତ ହୋଇ ଥିଲେ । କିଓମୋରି (Kiyomory)ନାମକ ଜଣେ ଏକ ବୃହତ୍ ସୈନ୍ୟଦଳ ଗଠନ କରି ତାହାର ନେତା ହୋଇଥିଲେ। ସେ ବଡ଼ ନିଷ୍ଠୁରପ୍ରକୃତିକ ଲୋକ ଥିଲେ । ପୀଡ଼ନ ଓ ଅତ୍ୟାଚାର ତାହାଙ୍କର ମୂଳମନ୍ତ୍ର ଥିଲା । ଏହାଙ୍କର ପରଲୋକ ଗମନ ପରେ 'ଇଓରିଟୋମୋ' (Yoritomo) ସ୍ୱୀୟ ପ୍ରାଧାନ୍ୟ ବିସ୍ତାର କରିଥିଲେ। ସେ ମିକାଡୋଙ୍କର ବିପକ୍ଷ ନ ଥିଲେ । ମିକାଡୋଙ୍କ ଉପରେ ତାହାଙ୍କର ଅଚଳା ଭକ୍ତି ଥିଲା । ସେ ମିକାଡୋଙ୍କ ପ୍ରତିନିଧିସ୍ୱରୂପ ରାଜ୍ୟସଂକ୍ରାନ୍ତ ସକଳ ବିଷୟରେ ହସ୍ତକ୍ଷେପ କରୁଥିଲେ । ତାହାଙ୍କର କ୍ଷମତା ଏତେଦୂର ଅପ୍ରତିହତ ଗତିରେ ବିସ୍ତୃତ ହୋଇ ଥିଲା ଯେ ମିକାଡୋ ତାହାଙ୍କୁ ରାଜ୍ୟର ନେତା ବୋଲି ସ୍ୱୀକାର କରି Sei-i-tai-shogum (Commander-in-chief against foreigners) ନାମକ ଉଚ୍ଚ ପଦରେ ଭୂଷିତ କରିଥିଲେ। କ୍ରମଶଃ ଏହାଙ୍କର ବଂଶଧରମାନେ ଉତ୍ତରାଧିକାର-ସୂତ୍ରରେ ଏହି ପଦ ଭୋଗ କଲେ । ମିକାଡୋମାନେ କେବଳ ଆଶ୍ରମରେ ବାସ କରି ଧର୍ମ

ଚର୍ଯ୍ୟାରେ ନିଯୁକ୍ତ ଥିଲେ । ଅବଶେଷରେ ମିକାଡୋ ମୁତ୍‌ସୁହିଟୋ (Mikado Mutsuhito) ଷୋଡ଼ଶ ବର୍ଷ ବୟଃକ୍ରମ କାଳରେ ସୋଗନ ୟୋସିମିସୀ (Shogun yoshimisse)ଙ୍କୁ ପଦଚ୍ୟୁତ କରି ଟୋକିଓରେ ସ୍ୱୀୟ ପ୍ରାଧାନ୍ୟ ସ୍ଥାପନ କରିଥିଲେ । ଏଠାରେ ସଂକ୍ଷେପରେ 'ଜାପାନ'ର ପ୍ରାଚୀନ ତତ୍ତ୍ୱ, ଧର୍ମ, ଜାତି, ରାଜନୀତି ସମ୍ବନ୍ଧରେ କିଛି କୁହାଗଲା । ବର୍ତ୍ତମାନ ତାହାର ସାମାଜିକ ରୀତି, ନୀତି ଓ ଶିକ୍ଷା ସମ୍ବନ୍ଧରେ କିଛି ଆଲୋଚନା କରାଯାଉ ।

ଜାପାନୀମାନଙ୍କର ବର୍ଣ୍ଣ ଈଷତ୍ ପୀତ, କେଶ ଘୋର କୃଷ୍ଣବର୍ଣ୍ଣ, ଶ୍ମଶ୍ରୁ ଅଳ୍ପ, ଗଣ୍ଡଦେଶର ଅସ୍ଥି କିଞ୍ଚିତ୍ ଉନ୍ନତ । ସ୍ତ୍ରୀମାନେ ପୁରୁଷମାନଙ୍କ ଅପେକ୍ଷା ସୁନ୍ଦରୀ; ସ୍ୱର କୋମଳ ଓ ଚିତ୍ତାକର୍ଷକ । ଜାପାନୀମାନେ ଖର୍ବକାୟ ହେଲେ ହେଁ ଘୋର କଷ୍ଟସହିଷ୍ଣୁ ଏବଂ ଅତ୍ୟନ୍ତ ଦୁଃସାହସିକ କାର୍ଯ୍ୟ କରିବାରେ କେବେହେଁ କୁଣ୍ଠିତ ହୁଅନ୍ତି ନାହିଁ । ନାନା ପ୍ରକାର କୌଶଳପୂର୍ଣ୍ଣ ବ୍ୟାୟାମରେ ନିପୁଣ, 'ଜିଉଜିଟସୁ' (Jiujitsu) ନାମକ ଏକପ୍ରକାର କଠୋର ବ୍ୟାୟାମରେ ଅଭ୍ୟସ୍ତ । ଉଦରକୁ ବିଶୁଦ୍ଧ ଜଳଦ୍ୱାରା ପୂର୍ଣ୍ଣ କରି, ପୁନଶ୍ଚ ଉଦରରୁ ଜଳକୁ ବହିର୍ନିଃସାରଣ କରିବାଦ୍ୱାରା ସେମାନେ ସେମାନଙ୍କର ସ୍ୱାସ୍ଥ୍ୟର ବହୁଳ ଉନ୍ନତି ସାଧନ କରିଥାନ୍ତି । ବାତବ୍ୟାଧି ଜାପାନରେ ସମ୍ପୂର୍ଣ୍ଣରୂପେ ଅଜ୍ଞାତ । ୧୮୯୯ ସାଲରେ ସେମାନେ ସେମାନଙ୍କର ଖର୍ବାକୃତିକୁ ମାଂସଭକ୍ଷଣର ପ୍ରଚଳନଦ୍ୱାରା ବର୍ଦ୍ଧିତ କରିବାର ଉପାୟମାନ ଉଦ୍ଭାବନ କରିବାକୁ ଗୋଟିଏ ସମିତି ସ୍ଥାପନ କରିଥିଲେ । କିନ୍ତୁ ତହିଁରେ ନାନାପ୍ରକାର ମତଭେଦ ଉପସ୍ଥିତ ହେବାରୁ ଏବଂ ପରିମିତ ଓ ସାଧାରଣ ଆହାର ସ୍ୱାସ୍ଥ୍ୟର ବ୍ୟାଘାତକ ନୁହେ, ଏହା ବିବେଚିତ ହେବାରୁ ଉକ୍ତ ପନ୍ଥା ପରିତ୍ୟକ୍ତ ହୋଇଥିଲା ।

ଜାପାନୀ ବାଳକବାଳିକାଙ୍କର କ୍ରୀଡ଼ା କୌତୁକ ବଡ଼ ନିର୍ଦ୍ଦୋଷ ଓ ଆମୋଦଜନକ । ପ୍ରତିବର୍ଷର ପଞ୍ଚମ ମାସର ପଞ୍ଚମ ଦିବସରେ ନାନାପ୍ରକାର ଆମୋଦଜନକ କ୍ରୀଡ଼ା ଅନୁଷ୍ଠିତ ହୋଇଥାଏ । ସେହି ଦିବସରେ ସେମାନେ ଯୋଦ୍ଧାମାନଙ୍କର ମୂର୍ତ୍ତି ଓ ନାନାପ୍ରକାର ଅସ୍ତ୍ର ଶସ୍ତ୍ର ଘେନି କ୍ରୀଡ଼ାରେ ବ୍ୟାପୃତ ହୋଇଥାନ୍ତି । ପ୍ରତିବର୍ଷର ତୃତୀୟ ମାସର ତୃତୀୟ ଦିବସଟି 'ଖେଳନାର ଉତ୍ସବଦିନ' ବୋଲି ବିଶେଷଭାବରେ ବାଳକବାଳିକାମାନଙ୍କ ଦ୍ୱାରା ବ୍ୟବହୃତ ହୋଇଥାଏ ।

ଜାପାନୀମାନଙ୍କର ସ୍ନାନକ୍ରିୟାରେ ଏକପ୍ରକାର ବିଶେଷତ୍ୱ ଲକ୍ଷିତ ହୋଇଥାଏ । ଆମ୍ଭେମାନେ ଶୀତଳ ଜଳରେ ସ୍ନାନ କରିବାକୁ ପୁଣ୍ୟକର ଏବଂ ଶ୍ରେୟସ୍କର ମଣୁ । ଶୀତଳ ଜଳରେ ସ୍ନାନ ଯେ ଉତ୍କୃଷ୍ଟ ସ୍ନାନ ଏହା ଆମ୍ଭମାନଙ୍କର ଧ୍ରୁବ ଧାରଣା; ଶ୍ଳେଷ୍ମର ଆଧିକ୍ୟ ନ ହେଲେ ଅବା ଜ୍ୱର ପ୍ରଭୃତି ରୋଗଦ୍ୱାରା ଶରୀର ଦୁର୍ବଳ ହୋଇ ନ ଥିଲେ ଆମ୍ଭେମାନେ କେବେହେଁ ଉଷ୍ଣ ଜଳରେ ସ୍ନାନ କରିବାକୁ ଇଚ୍ଛୁକ ହେଉ ନାହିଁ । କିନ୍ତୁ ଜାପାନୀମାନେ ଉଷ୍ଣ ଜଳରେ ପ୍ରାୟ ପ୍ରତ୍ୟହ ଥରେ ହେଲେ ସ୍ନାନ କରନ୍ତି । ସେମାନେ କହନ୍ତି, ଏତଦ୍ୱାରା ଶରୀରର ତାପବୃଦ୍ଧି ହୁଏ, ଅଭ୍ୟନ୍ତରିକ କ୍ରିୟା ଓ ରକ୍ତସଞ୍ଚାଳନ ମଧ୍ୟ କ୍ଷିପ୍ରଗତିରେ ସମ୍ପାଦିତ ହୁଏ । ପ୍ରତ୍ୟେକ ଭଦ୍ରଲୋକର ଘରେ ତାହାର ସ୍ନାନାଗାର ଥାଏ । ସୂର୍ଯ୍ୟାସ୍ତ ପରେ ଜଳ ଗରମ କରିବାକୁ ଆରମ୍ଭ କରନ୍ତି ଏବଂ ତତ୍ପରେ ଗୃହକର୍ତ୍ତାଠାରୁ ଆରମ୍ଭ କରି ସାମାନ୍ୟ ଭୃତ୍ୟ ପର୍ଯ୍ୟନ୍ତ ଥର ଥର ହୋଇ ସମସ୍ତେ ସ୍ନାନ କରନ୍ତି । ପାପକ୍ଷୟାର୍ଥ ପ୍ରାୟଶ୍ଚିତ୍ତ ଉଦ୍ଦେଶ୍ୟରେ ସ୍ନାନ କରିବାକୁ ହେଲେ ଶୀତଳ ଜଳରେ ସ୍ନାନ କରନ୍ତି । ଶୀତଳ ଜଳରେ ସ୍ନାନ ସେମାନଙ୍କର ଧର୍ମ କାର୍ଯ୍ୟ ମଧ୍ୟରେ ପ୍ରୟୋଜନାନୁସାରେ ଅନୁଷ୍ଠିତ ହୁଏ ।

ସାଧାରଣତଃ ଆଧୁନିକ ଜାପାନୀମାନଙ୍କର ପରିଚ୍ଛଦ ଇଂରେଜ ଓ ଫରାସୀ ପରିଚ୍ଛଦର ଅନୁକରଣ ମାତ୍ର । ଜାପାନୀମାନଙ୍କର ରୀତିନୀତି ଓ ପ୍ରକୃତି

ପର୍ଯ୍ୟାଲୋଚନା କର ଦେଖିଲେ ଜଣାଯିବ ସେମାନେ ନୀତ ଅନୁକରଣପ୍ରିୟ ନୁହନ୍ତି । କିନ୍ତୁ ଯେଉଁଠି ଯାହା ଭଲ ଦେଖି ପାରନ୍ତି ତାହା ଆପଣା ମଧ୍ୟରେ ଚଳାଇ ନେଇ-ଥାନ୍ତି । ଗ୍ରୀଷ୍ମକାଳରେ ପଲ୍ଲିଗ୍ରାମର ଦରିଦ୍ର ଲୋକେ ଚର୍ମରୁ ପ୍ରସ୍ତୁତ ହୋଇଥିବା ଏକପ୍ରକାର ବସ୍ତ୍ର ବ୍ୟବହାର କରନ୍ତି, କୃଷକମାନେ ମୋଟା ଅପରିଷ୍କାର ତୁଳାର ଜାମା ପରିଧାନ କରିଥାନ୍ତି ଏବଂ ତୃଣନିର୍ମିତ ଏକପ୍ରକାର ପାଦୁକା ବ୍ୟବହାର କରିଥାନ୍ତି । ବର୍ଷାକାଳରେ ଅସ୍ମମାନଙ୍କ ଦେଶର କଠାଉ ପରି ଏକପ୍ରକାର କାଷ୍ଠନିର୍ମିତ ପାଦୁକା ବ୍ୟବହାର କରନ୍ତି । ବୃଷ୍ଟି ସମୟରେ ଦରିଦ୍ରମାନେ ଏକପ୍ରକାର ଘାସନିର୍ମିତ ପୋଷାକ ପରିଧାନ କରନ୍ତି; ଧନୀମାନେ ତୈଳାକ୍ତ ବସ୍ତ୍ର ଉପରେ ଲମ୍ବା ପରିଚ୍ଛଦ ପରିଧାନ କରିଥାନ୍ତି । ଏକପ୍ରକାର କୋମଳ କାଗଜ ରୁମାଲରୂପେ ବ୍ୟବହାର କରନ୍ତି । ଜାପାନରେ ମନୋହର, ରୁଚିକର, ସୁଦୃଶ୍ୟ ପଙ୍ଖା ବହୁଳ ପରିମାଣରେ ବ୍ୟବହୃତ ହୋଇଥାଏ । କି ସ୍ତ୍ରୀ, କି ପୁରୁଷ ସମସ୍ତେ ଖଣ୍ଡିଏ ଖଣ୍ଡିଏ ପଙ୍ଖା ବ୍ୟବହାର କରନ୍ତି । ସ୍ତ୍ରୀମାନେ କ୍ୱଚିତ୍ ଅଳଙ୍କାର ବ୍ୟବହାର କରନ୍ତି । ସେମାନେ ଅସାଧାରଣରୂପେ କେଶବନ୍ଧନରେ ନିପୁଣ ଏବଂ ଶୟନ କାଳରେ କାଷ୍ଠନିର୍ମିତ ଉପାଧାନ ଉପରେ ଏହି କେଶକୁ ଯତ୍ନରେ ରକ୍ଷା କରିଥାନ୍ତି । ସେମାନେ ଓଷ୍ଠକୁ ରକ୍ତବର୍ଣ୍ଣରେ ରଞ୍ଜିତ କରନ୍ତି ଏବଂ ମୁଖକୁ ପାଉଡରଦ୍ୱାରା ଘର୍ଷିତ କରନ୍ତି । ଛୋଟ ଛୋଟ ବାଳକାଙ୍କର ଟୋପିରେ ଖଣ୍ଡିଏ ଧାତୁଫଳକରେ ସେମାନଙ୍କର ନାମ ଧାମ ସ୍ପଷ୍ଟ-ରୂପେ ଲକ୍ଷିତ ଥାଏ ।

ଭାତ ସେମାନଙ୍କର ପ୍ରଧାନ ଖାଦ୍ୟ । ବୌଦ୍ଧଧର୍ମ ପ୍ରଚଳିତ ହେବା ପୂର୍ବରୁ ଜାପାନୀମାନଙ୍କର ମତ୍ସ୍ୟ ମାଂସ ପ୍ରଧାନ ଖାଦ୍ୟ ଥିଲା । ସେତେବେଳେ ମଧ୍ୟ ଫଳ ମୂଳ ଶାକ ସବଜୀ ଯେ ଖାଉ ନ ଥିଲେ ଏହା ନୁହେ । କିନ୍ତୁ 'ଅହିଂସା ପରମ ଧର୍ମ' ଏହି ନୀତ ଯେତେବେଳେ ବୌଦ୍ଧ ପ୍ରଚାରକ-ମାନେ ଜାପାନରେ ଘୋଷଣା କରିଥିଲେ ସେତେ-ବେଳେ ଦଳ ଦଳ ହୋଇ ଜାପାନୀମାନେ ମତ୍ସ୍ୟ, ମାଂସ ପରିତ୍ୟାଗ କରିଥିଲେ । ମତ୍ସ୍ୟ, ମାଂସ ଭକ୍ଷଣ ସେମାନଙ୍କ ନିକଟରେ ଧର୍ମବିରୁଦ୍ଧ ବୋଲି ବିବେଚିତ ହେଲେ ମଧ୍ୟ ଏହାକେଳକେ ଉଠି ଯାଇ ନାହିଁ । ଅଧିକାଂଶ ଶାକ ସବଜୀପ୍ରତି ବିଶେଷ ଆଦର ଦେଖାଯାଏ । ସେମାନେ ଦିବସରେ ତିନିଥର ଖାଇଥାନ୍ତି । ପଲ୍ଲିଗ୍ରାମରେ ଗହମ, ଯବ, ଭୃଟ୍ଟା ପ୍ରଭୃତି ନିତ୍ୟ ଖାଦ୍ୟଦ୍ରବ୍ୟରୂପେ ପରିଗଣିତ ହୁଏ ଏବଂ ଭାତ ବିଳାସର ସାମଗ୍ରୀ ପରି ବ୍ୟବହୃତ ହୁଏ । ରୋଗୀ, ଦୁର୍ବଳ ଓ ବୃଦ୍ଧମାନେ ଭାତ ଖାନ୍ତି । ଆଳୁ, ସିମ୍ବ, ମଟର, ବାଇଗଣ, ସାଲଗମ ତରକାରୀରୂପେ ବ୍ୟବହୃତ ହୁଏ । ନାନାପ୍ରକାର ତୋରାଣି ଓ ଲେମ୍ବୁ ମଧ୍ୟ ପ୍ରଚୁର ପରିମାଣରେ ମିଳେ । ସେମାନେ ଗୋଦୁଗ୍ଧ ବ୍ୟବହାର କରନ୍ତି ନାହିଁ । ଆଶ୍ଚର୍ଯ୍ୟର ବିଷୟ ଗୋଜାତିର ଉପକାରିତା ବିଷୟରେ ଜାପାନୀମାନେ ସମ୍ପୂର୍ଣ୍ଣ ଅନଭିଜ୍ଞ । ସାମୁଦ୍ରିକ ସକଳ ଜୀବଜନ୍ତୁ ମଧ୍ୟ ସେମାନଙ୍କର ଭକ୍ଷ୍ୟ । ମର୍କଟ, ଭଲ୍ଲୁକ, ବନହଂସ ମଧ୍ୟ ସ୍ଥଳ-ବିଶେଷରେ ଲୋକବିଶେଷଦ୍ୱାରା ଭକ୍ଷିତ ହୋଇଥାଏ । ଗୋଟିଏ ଅନୁଚ୍ଚ ଟେବୁଲ ଉପରେ ଆହାର୍ଯ୍ୟ ଦ୍ରବ୍ୟମାନ ସ୍ଥାପନ କରି ସେମାନେ ଭକ୍ଷଣ କରନ୍ତି । ଝୋଳ ପ୍ରଭୃତି ତରଳ ଖାଦ୍ୟ ଦ୍ରବ୍ୟ-ମାନଙ୍କୁ ଆଣ୍ଠୁ ମାଡ଼ି ବସି ମୁହଁ ଲଗାଇ ଚୋବ ଚୋବ କରି ଶୋଷି ନେଇ ଖାନ୍ତି । ଭାତ ପ୍ରଭୃତି ଖାଦ୍ୟପଦାର୍ଥମାନ ଦୁଇଖଣ୍ଡ କାଠି ସାହାଯ୍ୟରେ ଦକ୍ଷିଣ ହସ୍ତଦ୍ୱାରା ଖାଇଥାନ୍ତି । ଆହାର ଶେଷରେ ଚା ବ୍ୟବହାର କରିଥାନ୍ତି । ଚା ସହିତ ଦୁଗ୍ଧ ମିଶ୍ରିତ ହୁଏ ନାହିଁ । ପ୍ରଥମରେ ପର୍ତ୍ତୁଗୀଜମାନେ ଜାପାନକୁ ତମାଖୁ ଆଣିଥିଲେ; ପ୍ରଥମରେ ଏହା ସେବନରେ ବିଶେଷ ନିଷେଧ ଥିଲା । କିନ୍ତୁ କାଳକ୍ରମେ ଏହା ସର୍ବତ୍ର ପ୍ରଚଳିତ ହୋଇଗଲା । ସିଗାରେଟ ଓ ମଦ୍ୟ ପ୍ରଭୃତି ବହୁଳ ପରିମାଣରେ

ବ୍ୟବହୃତ ହୁଏ ନାହିଁ । ଭଦ୍ରଲୋକଙ୍କୁ ଅଭ୍ୟର୍ଥନା କଲାବେଳେ ପ୍ରଥମରେ ତମାଖୁ ଓ ପରେ ଚା ଦେଇ ସମ୍ମାନ ପ୍ରଦର୍ଶନ କରିଥାନ୍ତି । 'ସାକି' ନାମକ ଧାନ୍ୟରୁ ଉତ୍ପନ୍ନ ମଦ୍ୟ ସାଧାରଣତଃ ଏବଂ ଉତ୍ସବକାଳରେ ପ୍ରଧାନ ପାନୀୟରୂପେ ବ୍ୟବହୃତ ହୁଏ ।

ଶିଶୁମାନଙ୍କର ଜନ୍ମର ସାତ ଦିନ ପରେ ସେମାନଙ୍କର ନାମକରଣ କ୍ରିୟା ଅନୁଷ୍ଠିତ ହୁଏ । ଏକ ମାସ ପରେ ଶିଶୁର ମସ୍ତକ ମୁଣ୍ଡନ କରି, ସ୍ନାନ କରାଇ ଦେଇ ଏବଂ ସୁନ୍ଦର ପରିଚ୍ଛଦରେ ଭୂଷିତ କରି ଧର୍ମ ମନ୍ଦିରରେ ତାହାର କଲ୍ୟାଣାର୍ଥେ ନାନା ପ୍ରକାର ଅନୁଷ୍ଠାନ ବିଧିପୂର୍ବକ ସମ୍ପାଦନ କରି ହୁଏ । ସେମାନଙ୍କର ବିବାହପ୍ରଣାଳୀ କେତେକ ଅଂଶରେ ହିନ୍ଦୁମାନଙ୍କର ବିବାହ-ପ୍ରଣାଳୀ ସଦୃଶ । 'ପିଣ୍ଡାର୍ଥେ ପୁତ୍ର ପ୍ରୟୋଜନ' ଏହି ଧାରଣା ସେମାନଙ୍କର ବଦ୍ଧମୂଳ ଅଟେ । ମୃତ୍ୟୁ ପରେ ପୁତ୍ର ପିଣ୍ଡ ଦାନ ନ କଲେ ମୃତ ବ୍ୟକ୍ତିର ଆତ୍ମା କ୍ଷୁଧା ତୃଷାରେ ଆକୁଳ ହୋଇ ମର୍ତ୍ତ୍ୟରେ ବିଚରଣ କରେ, ଏହି ବଦ୍ଧ ଧାରଣାର ବଶବର୍ତ୍ତୀ ହୋଇ ସେମାନେ ବିବାହ କାର୍ଯ୍ୟ କେବଳ ପୁତ୍ରଲାଭକାମନାରେ ସାଦରରେ ସମ୍ପନ୍ନ କରନ୍ତି । ସାଧାରଣତଃ ବାଳକମାନେ ଷୋଡ଼ଶ ବର୍ଷରେ ଏବଂ ବାଳିକାମାନେ ତ୍ରୟୋଦଶ ବର୍ଷରେ ବିବାହ କରିଥାନ୍ତି । ବିବାହ ପରେ ବାଳକର ନାମ ପରିବର୍ତ୍ତିତ ହୁଏ, ସେ ନୂତନ ନାମ ଗ୍ରହଣ କରେ । ବାଳକ ବା ବାଳିକାର ବିବାହସମୟ ଉପସ୍ଥିତ ହେଲେ ପିତା ମାତାମାନେ ସେ କାର୍ଯ୍ୟର ବନ୍ଦୋବସ୍ତ ନିମନ୍ତେ ଜଣେ ଜଣେ ଉପଯୁକ୍ତ ଘଟକ ନିଯୁକ୍ତ କରି ଦିଅନ୍ତି । ଆମ୍ଭମାନଙ୍କ ଦେଶ ପରି ଘଟକମାନେ ସେତେଦୂର ଅର୍ଥଲୋଭୀ ନୁହନ୍ତି । ବିବାହ ସମ୍ବନ୍ଧ ସ୍ଥିରୀକୃତ ହୋଇ କାର୍ଯ୍ୟରେ ପରିଣତ ହେବା ଦିନଠାରୁ ଘଟକଟି ସେହି ସ୍ତ୍ରୀ ପୁରୁଷଙ୍କର ନିତାନ୍ତ ଆଦରଣୀୟ ବନ୍ଧୁସ୍ୱରୂପ ସମ୍ମାନିତ ହୋଇଥାନ୍ତି । ବିବାହ ଯେପରି ପିତା ମାତାଙ୍କର ମତସାପେକ୍ଷ, ସେହିପରି ମଧ୍ୟ ବାଳକବାଳିକାଙ୍କର ସମ୍ମତି-ସାପେକ୍ଷ । ଥରେ ନିର୍ବନ୍ଧ ହୋଇ ଗଲେ ଆଉ ଭାଙ୍ଗି ଯିବାର କୌଣସି ସମ୍ଭାବନା ନ ଥାଏ । ଶ୍ୱେତ ବର୍ଣ୍ଣର ପୋଷାକ ଜାପାନୀମାନଙ୍କର ଶୋକ-ଚିହ୍ନ ଅଟେ । ଶୁଭପରିଣୟ ଦିବସରେ କନ୍ୟା ଉକ୍ତ ଶୋକସୂଚକ ପରିଚ୍ଛଦ ପରିଧାନ କରନ୍ତି । ଚିର ଦିନପାଇଁ ସ୍ନେହମୟ ପିତୃଭବନ ପରିତ୍ୟାଗ କରିବାକୁ ହେବ ଏହା ଶୋକ ପ୍ରକାଶର ହେତୁ ଅଟେ । କନ୍ୟା ଶ୍ୱଶୁରାଳୟକୁ ପ୍ରସ୍ଥାନ କରିବାର ଅବ୍ୟବହିତ ପରେ ଶବକୁ ଶବଦାହ ସ୍ଥାନକୁ ନେବା ପରେ ଯେପରି ଗୃହ ପରିଷ୍କାର କରନ୍ତି, ସେହିପରି ପିତାମାତାମାନେ ଏ ସମୟରେ ମଧ୍ୟ କରିଥାନ୍ତି । ବିବାହ ଦିବସରେ ପାତ୍ରର ଗୃହରେ ଆତ୍ମୀୟ ବନ୍ଧୁବାନ୍ଧବମାନଙ୍କର ଭୋଜୀ ହୋଇଥାଏ । ତିନୋଟି ମଦ୍ୟପାତ୍ରରୁ ତିନି ଥର ଲେଖାଏଁ ବର କନ୍ୟା ମଦ୍ୟ ପାନ କରନ୍ତି । ଏହାହିଁ ବିବାହର ପ୍ରଧାନ କାର୍ଯ୍ୟ । ଭାରତୀୟ ହିନ୍ଦୁ ମହିଳାମାନଙ୍କ ପରି ଜାପାନୀ ସ୍ତ୍ରୀମାନେ କୁମାରୀ ଅବସ୍ଥାରେ ପିତା ମାତାର, ବିବାହ ପରେ ସ୍ୱାମୀ, ଶ୍ୱଶ୍ରୂ ଓ ଶ୍ୱଶୁରଙ୍କର ଏବଂ ବୈଧବ୍ୟାବସ୍ଥାରେ ପୁତ୍ରର ବାଧ୍ୟ ହୋଇଥାନ୍ତି ।

ଜାପାନର ଆଧୁନିକ ଉନ୍ନତାବସ୍ଥା ପ୍ରତି ସୂକ୍ଷ୍ମ ଦୃଷ୍ଟିପାତ କଲେ ବୁଝାଯିବ ଯେ ତାହା କେବଳ ବିଶେଷ ପରିମାଣରେ ନବପ୍ରଚଳିତ ଶିକ୍ଷାପଦ୍ଧତିର ପରିଣାମ ଅଟେ । ଶିକ୍ଷା ବିଷୟରେ ଜାପାନ ଘୋର ତମସାଚ୍ଛନ୍ନ ଥିଲା, କାଳକ୍ରମେ ସେମାନେ ଶିକ୍ଷାର ମହତ୍ତ୍ୱ ବୁଝି ପାରିଥିଲେ । ଆଧୁନିକ ଜାପାନୀ ଭାଷା ପ୍ରାଚୀନ ଜାପାନୀ ଭାଷା ଓ ଚୀନ ଭାଷାର ମିଶ୍ରଣରେ ଉତ୍ପନ୍ନ । ଚୀନବାସିମାନଙ୍କର ଉଚ୍ଚାରଣରୁ ଏମାନଙ୍କର ଉଚ୍ଚାରଣ ପୃଥକ୍ । ପରସ୍ପର କଥାବାର୍ତ୍ତା କରି ପାରିବେ ନାହିଁ, କିନ୍ତୁ ଚିଠିପତ୍ର ଲେଖାଲେଖି ହେଲେ ଉଭୟ ଜାତି ଉଭୟର ମନୋଗତ ଭାବ ସ୍ପଷ୍ଟରୂପେ ବୁଝି

ପାରବେ । ଅମ୍ଭେମାନେ ଯେଉଁ ଦିଗରୁ ପୁସ୍ତକ ପାଠ କରୁଁ ତାହାର ଠିକ ବିପରୀତ ଦିଗରୁ ସେମାନେ ପୁସ୍ତକ ପାଠ କରନ୍ତି । ଅମ୍ଭମାନଙ୍କର ପୁସ୍ତକର ନାମ ଯେଉଁଠାରେ ଲେଖାଯାଏ ସେମାନଙ୍କର ପୁସ୍ତକର ଉପସଂହାର ସେହି ସ୍ଥାନରେ ଦିଆ ହୋଇଥାଏ । ଅମ୍ଭେମାନେ ଯେଉଁ ପ୍ରଶ୍ନର ଉତ୍ତରରେ 'ହଁ' କହିଥାଉଁ, ସେମାନେ ସେହି ପ୍ରଶ୍ନର ଉତ୍ତରସ୍ୱରୂପ 'ନା' ଅତି ବିନୀତ ଓ ନମ୍ର ଭାବରେ କହିଥାନ୍ତି । ଗୃହକର୍ତ୍ତା ତାଙ୍କର ଭୃତ୍ୟକୁ ଯେବେ କହନ୍ତି "ଆଉ ଏପରି କରିବ ନାହିଁ", ଭୃତ୍ୟଟି ଉତ୍ତର ଦିଏ 'ହଁ' । ନବାଗତ ଭଦ୍ର ବ୍ୟକ୍ତି ଗୃହରେ ପ୍ରବେଶ କରିବା ମାତ୍ରକେ ପ୍ରଥମରେ ଟୋପି ଖୋଲିବା ପରିବର୍ତ୍ତେ ଜୋତା ଗୋଡ଼ରୁ ଖୋଲି ଦିଅନ୍ତି । ଗୃହର ବୈଠକଖାନା ଠିକ ଘର ପଛ ଅଙ୍ଗେ ଅବସ୍ଥିତ ଥାଏ । ସମ୍ମୁଖ ଭାଗରେ ଭୃତ୍ୟମାନଙ୍କର ଆବାସ ନିର୍ଦ୍ଦିଷ୍ଟ ହୋଇଥାଏ । ସାଧାରଣତଃ ଗୃହର ଯାବତୀୟ ଅନ୍ତଃପୁରର କାର୍ଯ୍ୟମାନ ଘରର ସମ୍ମୁଖ ଭାଗରେ ସମ୍ପନ୍ନ ହୋଇଥାଏ । ଘରରୁ ପ୍ରଥମରେ ଧୂଳିଯାକ କାଢ଼ି ନେଇ ପରେ ଓଳାନ୍ତି । ଚିଠି-ପତ୍ରରେ ପ୍ରେରକର ନାମ ଧାମ ଲଫାପା ଉପରେ ଲିଖିତ ହୁଏ ।

ସଭ୍ୟଜଗତରେ ପ୍ରଚଳିତ ରୀତି ନୀତି ସମସ୍ତ ସହିତ ଜାପାନର ରୀତି ନୀତି ତୁଳନା କରି ଦେଖିଲେ ଜଣାଯାଏ ଅନେକ ବିଷୟରେ ଜାପାନୀମାନେ ସେମାନଙ୍କର ଠିକ ଓଲଟା । ମିଷ୍ଟର Chamberlain ସାହେବଙ୍କ 'Things Japanese' ନାମକ ପୁସ୍ତକରେ ଲିଖିତ ଅଛି ଯେ "It has often been remarked that the Japanese do many things in a way that runs directly counter to European ideas of what is natural and proper.' ଟୋକିଓ ନଗରର ଜଣେ ଭଦ୍ରମହିଳା ଜଣେ ବୈଦେଶିକଙ୍କୁ ବିସ୍ମିତ ହୋଇ ପଚାରିଥିଲେ, "Why foreigners did so many things 'topsytruvy', instead of doing them naturally after the manner of country-people.

ଜାପାନର ଆଦିଗ୍ରନ୍ଥ 'କୋଜିକି' ରଚିତ ହେବାର ଅଳ୍ପକାଳ ପରେ 'ନିହଙ୍ଗୀ' ନାମକ ଏକ ଐତିହାସିକ ଗ୍ରନ୍ଥ ଲିଖିତ ହୋଇଥିଲା । ପ୍ରାୟ ୭୬୦ ଖ୍ରୀଷ୍ଟାବ୍ଦରେ ଜାପାନର ପ୍ରାଚୀନ କବିତା ସମସ୍ତ ସଂଗୃହୀତ ହୋଇ ଏକ ବୃହତ୍ ଗ୍ରନ୍ଥ ପ୍ରସ୍ତୁତ ହୋଇଥିଲା । ଏହି ସମୟରୁ କାବ୍ୟ ରଚନାର ସୂତ୍ରପାତ ହୋଇଥିଲା । ଭାଷାରେ ଶବ୍ଦର ଅଳ୍ପତାବଶତଃ ବୋଧହୁଏ ମିତ୍ରାକ୍ଷର ଛନ୍ଦରେ କବିତା ଲିଖିତ ନ ହୋଇ ବିଶେଷ-ଭାବରେ ଅମିତ୍ରାକ୍ଷରରେ ରଚିତ ହୋଇଥାଏ ।

ସ୍ତ୍ରୀଶିକ୍ଷା ଏଠାରେ ଉତ୍ତମରୂପେ ପ୍ରଚଳିତ ଅଛି । ରମଣୀମାନଙ୍କଦ୍ୱାରା ଲିଖିତ ପୁସ୍ତକ ବହୁଳ ପରିମାଣରେ ଦୃଷ୍ଟିଗୋଚର ହୋଇଥାଏ । ଜାପାନର ସର୍ବଶ୍ରେଷ୍ଠ ଲେଖକ ଦୁଇଶତ ନବେ ଖଣ୍ଡ ଗ୍ରନ୍ଥ ଲେଖିଅଛନ୍ତି । ଦେଶର ଶିକ୍ଷାବିସ୍ତାର ସଙ୍ଗେ ସଙ୍ଗେ ବିଦେଶୀୟ ଗ୍ରନ୍ଥମାନଙ୍କର ଅନୁବାଦ ଆରମ୍ଭ ହୋଇଥିଲା । Smiles' Self-help' Spencer's Philosophical works, ପ୍ରଭୃତିର ଅନୁବାଦ ମଧ୍ୟ ଦୃଷ୍ଟ ହୋଇଥାଏ ।

୧୮୭୧ ଖ୍ରୀଷ୍ଟାବ୍ଦ ପୂର୍ବରେ ଜାପାନରେ ଖଣ୍ଡିଏ ସୁଦ୍ଧା ସମ୍ବାଦପତ୍ର ନ ଥିଲା; କ୍ରମେ କ୍ରମେ ଏ ବିଷୟରେ ଏତେ ଅଭାବନୀୟ ଉନ୍ନତି ହୋଇଅଛି ଯେ ପ୍ରାୟ ୨୮ ବର୍ଷ ମଧ୍ୟରେ ଜାପାନରେ ୮୧୪ ଖଣ୍ଡି ସମ୍ବାଦପତ୍ର ପ୍ରଚାରିତ ହୋଇଅଛି ।

ଜାପାନରେ ବାଳକମାନେ ସାଧାରଣତଃ ଛ ବର୍ଷ ଛ ମାସ ଛ ଦିନରେ ବିଦ୍ୟାରମ୍ଭ କରିଥାନ୍ତି । ସେମାନଙ୍କର ପ୍ରତ୍ୟେକ ଅକ୍ଷର ଗୋଟିଏ ଗୋଟିଏ ଶବ୍ଦ । ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ କେବଳ ବୌଦ୍ଧ ଧର୍ମଯାଜକମାନଙ୍କଠାରେ ଶିକ୍ଷାର ଭାର ନ୍ୟସ୍ତ ଥିଲା । ସେମାନେ ଧର୍ମମନ୍ଦିରରେ ଧର୍ମ

ପୁସ୍ତକ ସବୁ ପାଠ୍ୟରୂପେ ବ୍ୟବହାର କରୁଥିଲେ । ୧୮୬୭ ଖ୍ରୀଷ୍ଟାବ୍ଦରେ ବୈଦେଶିକ ବଣିକମାନେ ଗୋଟିଏ ଉନ୍ନତ ବିଦ୍ୟାଳୟ ସ୍ଥାପନ କରିଥିଲେ ।

ଏହାପରେ ସମୟରେ ୧୮୬୮ ଖ୍ରୀଷ୍ଟାବ୍ଦରେ ସମ୍ରାଟଙ୍କ ଦୃଷ୍ଟି ଶିକ୍ଷା ଉପରେ ପତିତ ହୋଇଥିଲା । ଦେଶର ଉନ୍ନତି ସହିତ ଶିକ୍ଷାବିସ୍ତାରର ଘନିଷ୍ଠ ସମ୍ବନ୍ଧ ରହିଅଛି, ଏକଥା ସେ ସମ୍ୟକ୍‌ରୂପେ ହୃଦୟଙ୍ଗମ କରିଥିଲେ । ଟୋକିଓ ନଗରରେ ଏହି ଶିକ୍ଷାବିସ୍ତାରର ପ୍ରସଙ୍ଗ ଆଲୋଚନା କରିବାନିମିତ୍ତ ଏକ ବିରାଟ ସମିତି ଆହୂତ ହୋଇଥିଲା । ଏଥିରେ ସମ୍ରାଟ ପ୍ରଚାର କରିଥିଲେ "All knowledge necessay to form officers, mechanics, artisns, physicians &c for their respective vocations is acquired by learning. It is intended that education shall be so diffused that there may not be a village with an ignorant family or a family with an ignorant member" ସେହି ଦିନଠାରୁ ଶିକ୍ଷାପ୍ରତି ଲୋକଙ୍କର ଏପରି ପ୍ରଗାଢ଼ ସ୍ନେହ ଜାତ ହୋଇଅଛି ଯେ ଅଳ୍ପକାଳ ଜାପାନରେ ପ୍ରାୟ ଶତକଡ଼ା ୮୦ ଜଣ ଲୋକ ଶିକ୍ଷିତ । ସରକାରୀଖଜଣାରୁ ପ୍ରଚୁର ଅର୍ଥ ଶିକ୍ଷାର ଉନ୍ନତି ନିମିତ୍ତ ବ୍ୟୟିତ ହେଉଅଛି । ପ୍ରାଥମିକ ବିଦ୍ୟାଳୟ ସକଳ ଦେଶର ଧନୀ ଲୋକଙ୍କଦ୍ୱାରା ପ୍ରଦତ୍ତ ଅର୍ଥରେ ପରିଚାଳିତ ହୋଇଥାଏ । ତହିଁରେ କୃଷିସମ୍ବନ୍ଧୀୟ ବିଜ୍ଞାନ ଆଲୋଚିତ ହୋଇଥାଏ । ତତ୍ପରେ ମଧ୍ୟ ଓ ଉଚ୍ଚ ବିଦ୍ୟାଳୟ ଯଥାକ୍ରମେ ସ୍ଥାପିତ ହୋଇ ରହିଅଛି । ମଧ୍ୟ ବିଦ୍ୟାଳୟମାନଙ୍କରେ ଇଂରାଜୀ ପ୍ରତି ବିଶେଷ ଦୃଷ୍ଟି ରଖାଯାଏ ଏବଂ ଗଣିତ ଓ ଇତିହାସ ଅପେକ୍ଷା ବ୍ୟାୟାମର ଚର୍ଚ୍ଚା ଅଧିକ ହୋଇଥାଏ । ମଧ୍ୟ ଓ ଉଚ୍ଚ ବିଦ୍ୟାଳୟରେ ଶିକ୍ଷା ସମାପ୍ତ ହେଲେ ଛାତ୍ରମାନେ ବିଶ୍ୱବିଦ୍ୟାଳୟରେ ପ୍ରବିଷ୍ଟ ହୁଅନ୍ତି । ଟୋକିଓ ଏବଂ କିଓଟୋରେ ଦୁଇ ଗୋଟି ଆଦର୍ଶ ବିଶ୍ୱବିଦ୍ୟାଳୟ ରହିଅଛି । ଏହି ବିଶ୍ୱବିଦ୍ୟାଳୟମାନଙ୍କରେ ଜର୍ମନିର ଆଦର୍ଶ ଅନୁସୃତ ହୋଇଥାଏ । ଛାତ୍ରବୃନ୍ଦମାନଙ୍କ ମଧ୍ୟରୁ ଏକାଂଶ ମୌଳିକ ଅନୁସନ୍ଧାନରେ ପ୍ରବୃତ୍ତ ହୁଅନ୍ତି, ଭୂୟାଂଶ ସରକାର ଅଧୀନରେ ବିବିଧ କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି । ବିଶ୍ୱବିଦ୍ୟାଳୟମାନଙ୍କରେ ସର୍ବ ପ୍ରକାର ଶିଳ୍ପବିଦ୍ୟା ଶିକ୍ଷା ଦିଆଯାଏ । ବାଣିଜ୍ୟ, ଶିଳ୍ପ, କୃଷି ସମ୍ବନ୍ଧରେ ମଧ୍ୟ ବିଭିନ୍ନ ବିଦ୍ୟାଳୟମାନ ପ୍ରତିଷ୍ଠିତ ହୋଇଅଛି । କୃଷିଶିକ୍ଷା ପ୍ରତି ସମଧିକ ଆଦର ଅଛି ।

ପ୍ରଥମରେ ଶିକ୍ଷା ଦେବା ନିମନ୍ତେ ବିଦେଶରୁ ଉଚ୍ଚବେତନପ୍ରାପ୍ତ ଶିକ୍ଷକମାନଙ୍କୁ ଅଣା ହେଉଥିଲା । କିନ୍ତୁ କ୍ରମେ କ୍ରମେ ତାହାର ସଂଖ୍ୟା କମି ଗଲାଣି । ଦେଶର ଶିକ୍ଷିତଙ୍କ ସଂଖ୍ୟା ବୃଦ୍ଧି ସଙ୍ଗେ ସେମାନଙ୍କ ହେତୁରେ ଉଚ୍ଚ ଶିକ୍ଷକମାନଙ୍କ କାର୍ଯ୍ୟମାନ ପ୍ରଦତ୍ତ ହୋଇଥାଏ । ଏହାପରି ପ୍ରାଚୀନ ଶିକ୍ଷାପଦ୍ଧତିରେ ଆମୂଳ ପରିବର୍ତ୍ତନ କରି ନୂତନ ଶିକ୍ଷାପଦ୍ଧତିର ପ୍ରଚଳନଦ୍ୱାରା ଦେଶର ପ୍ରକୃଷ୍ଟ ଉନ୍ନତି ସାଧିତ ହୋଇଅଛି । ବର୍ତ୍ତମାନ ଜାପାନର ଶିକ୍ଷାପ୍ରଣାଳୀ ପୃଥିବୀବ୍ୟାପୀ ଖ୍ୟାତି ପ୍ରାପ୍ତ ହୋଇଅଛି ।

ମୃତ୍ୟୁ ପରେ ଶବଦେହକୁ ଜାପାନୀମାନେ କୌଣସି ବୌଦ୍ଧ ଧର୍ମମନ୍ଦିର ନିକଟରେ ପ୍ରୋଥିତ କରି ରଖନ୍ତି । ସମାଧି ଉପରେ ଗୋଟିଏ ପ୍ରସ୍ତରରେ ମୃତବ୍ୟକ୍ତିର ନାମ ଧାମ ଲେଖା ହୋଇ ରହେ । ଶବଦାହ ପ୍ରଥା ମଧ୍ୟ ଏହି ସମୟରେ ପ୍ରଚଳିତ ଥିଲା, କିନ୍ତୁ ପରେ ସମ୍ପୂର୍ଣ୍ଣରୂପେ ପରିତ୍ୟକ୍ତ ହୋଇଅଛି । ହିନ୍ଦୁମାନଙ୍କ ପରି ସେମାନେ ଅଶୌଚ ପାଳନ କରନ୍ତି । ନିରାମିଷ ଭୋଜନ, ଶୁକ୍ଳବସ୍ତ୍ର ପରିଧାନ ଓ ଆମୋଦପ୍ରମୋଦ ତ୍ୟାଗ ଉକ୍ତ ଅଶୌଚପାଳନର ପ୍ରଧାନ ଅଙ୍ଗ ।

ଜାପାନୀମାନେ ଧୀର, ଶାନ୍ତ, ବିନମ୍ର ଓ ଭଦ୍ର । ଏମାନଙ୍କର ନାଟ୍ୟଶାଳା ଅଛି, ତହିଁରେ ପ୍ରାଚୀନ ଧର୍ମସଂକ୍ରାନ୍ତ ବିଷୟମାନ ଅଭିନୀତ ହୋଇଥାଏ । ନାଟ୍ୟଶାଳାମାନଙ୍କର ଏହି ବିଶେଷତ୍ୱ ଯେ ତହିଁରେ ସ୍ତ୍ରୀମାନେ ଅଭିନୟ କରନ୍ତି ନାହିଁ । ଉଚ୍ଚ ଶ୍ରେଣୀର ଲୋକମାନେ ରୁଚି କଳୁଷିତ ହେବା ଭୟରେ ଅଭିନୟ ଦର୍ଶନ କରନ୍ତି ନାହିଁ । ପୁନଶ୍ଚ ଗାୟିକାଦଳ ମଧ୍ୟ ସେଠାରେ ଲୋକଚିତ୍ତରଞ୍ଜନାର୍ଥେ ନୃତ୍ୟ ଗୀତ

କରଥାନ୍ତି । ବର୍ତ୍ତମାନ ସମ୍ରାଟ୍ ସକଳ ପ୍ରକାର ଅଶ୍ଳୀଳ ନୃତ୍ୟ ଆଇନଦ୍ୱାରା ରହିତ କରି ଦେଇ ଅଛନ୍ତି । ଜାପାନର ବାରବିଳାସିନୀମାନଙ୍କ ସଂଖ୍ୟା ଅଧିକ । ଶତ୍ରୁ ହସ୍ତରେ ମୃତ୍ୟୁ ଅପେକ୍ଷା ଆତ୍ମହତ୍ୟାକୁ ଜାପାନୀମାନେ ଶ୍ଳାଘାର ବିଷୟ ବୋଲି ମନେ କରନ୍ତି । ପ୍ରଜାମାନେ ଅସାଧାରଣ ସାହସୀ । ଶିଳ୍ପକାର୍ଯ୍ୟରେ ସେମାନଙ୍କର ନୈପୁଣ୍ୟ ଜଗତ୍‌ପ୍ରସିଦ୍ଧ ଅଟେ । ସେମାନଙ୍କର ବାସଗୃହ-ସକଳ କାଷ୍ଠଦ୍ୱାରା ନିର୍ମିତ । ପ୍ରାଚୀର ଓ କାନ୍ଥସବୁ ଏକପ୍ରକାର କାଗଜଦ୍ୱାରା ନିର୍ମିତ । ଗୃହର ଭିତ୍ତି ପ୍ରସ୍ତରଦ୍ୱାରା ଗଠିତ । ଗୃହର ଛାତସବୁ କାଷ୍ଠ ବା ଟାଇଲଦ୍ୱାରା ନିର୍ମିତ ହୋଇଥାଏ । ପ୍ରାଚୀନ ଗୃହର ଛାତସବୁ ତୃଣାଚ୍ଛାଦିତ । ବଡ଼ ବଡ଼ ସହରରେ ଇଷ୍ଟକ ବା ପ୍ରସ୍ତରରେ ନିର୍ମିତ ଗୃହ ଦେଖାଯାଏ ।

ସ୍ୱଦେଶାନୁରାଗ ସେମାନଙ୍କର ସର୍ବୋତ୍କୃଷ୍ଟ ଗୁଣ । ସ୍ୱଦେଶ ନିମନ୍ତେ ସେମାନେ ଅକାତରରେ ଧନ ମାନ ପ୍ରାଣ ବିସର୍ଜନ କରି ପାରନ୍ତି, ସର୍ବପ୍ରକାର ଦାରୁଣ କଷ୍ଟ ଅମ୍ଳାନବଦନରେ ସହ୍ୟ କରି ପାରନ୍ତି । ଏହାର ଜ୍ୱଳନ୍ତ ନିଦର୍ଶନ ଆଉ ପାଠକମାନଙ୍କୁ ଏଠାରେ ଦେବାକୁ ହେବ ନାହିଁ । କାରଣ, ପ୍ରାୟ ସମସ୍ତେ ବର୍ତ୍ତମାନ 'ରୁଷ-ଜାପାନ' ଯୁଦ୍ଧ ବିଷୟ ସମ୍ୟକ୍‌ରୂପେ ଜାଣନ୍ତି । ବର୍ତ୍ତମାନ ଜାପାନର ଶୌର୍ଯ୍ୟ, ବୀର୍ଯ୍ୟ, ସ୍ୱଦେଶାନୁରାଗ ଏକାବେଳକେ ଉପସ୍ଥିତ କ୍ଷେତ୍ରରେ ଫୁଟି ବାହାରି ପଡ଼ିଅଛି । ପ୍ରାଚ୍ୟ ଶକ୍ତି ନିକଟରେ ପାଶ୍ଚାତ୍ୟ ଶକ୍ତି ବର୍ତ୍ତମାନ ସମ୍ୟକ୍‌ରୂପେ ମ୍ରିୟମାଣ । 'ରୁଷ-ଜାପାନ' ଯୁଦ୍ଧରେ ଜାପାନୀମାନେ ଅକାତରରେ ଆପଣାର ସମସ୍ତ ଶକ୍ତି ନିୟୋଜିତ କରୁଅଛନ୍ତି । ଯୁଦ୍ଧର ବ୍ୟୟ ନିର୍ବାହାର୍ଥ ସେମାନେ ଯେପରି ଜ୍ୱଳନ୍ତ ସ୍ୱାର୍ଥତ୍ୟାଗର ନିଦର୍ଶନ ଦେଖାଉଅଛନ୍ତି ତାହା ଶୁଣିଲେ ହୃଦୟ ଏକାବେଳକେ ବିସ୍ମୟରସରେ ଦ୍ରବୀଭୂତ ହୋଇ ଯିବ । ସ୍କୁଲଛାତ୍ର ସ୍କୁଲର ନିୟମିତ କାର୍ଯ୍ୟ ସମ୍ପାଦନ କରି ଯୁଦ୍ଧର ବ୍ୟୟ ନିର୍ବାହାର୍ଥ ରାଜପଥରେ ପିଷ୍ଟକ ବିକ୍ରୟ କରିଥିବାର ଶୁଣାଯାଇଅଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସଭ୍ୟତାର ଉତ୍କୃଷ୍ଟ ନୀତିମାନଙ୍କର ସଂମିଶ୍ରଣରେ ଜାପାନର ଆଧୁନିକ ସଭ୍ୟତା ଗଠିତ । ଏକ ଦିଗରେ ଶାନ୍ତିନୀତି ଅନ୍ୟ ଦିଗରେ ଶାନ୍ତିନୀତିର ଅଭୂତ ନିଦର୍ଶନ ଦେଖାଇ ଜାପାନ ଆଜି ଜଗତକୁ ଚମତ୍କୃତ କରିଅଛି ଏବଂ ପ୍ରାଚ୍ୟ ଦେଶମାନଙ୍କରେ ଏକ ଜୀବନୀ ଶକ୍ତି ଜାଗ୍ରତ କରି ଦେଇଅଛି । ତୀକ୍ଷ୍ଣଦର୍ଶୀ, ସମରକୁଶଳ, ନୌସେନାପତି Togo ଆପଣାର ବୀରତ୍ୱ, କୌଶଳ ଓ ଚାତୁର୍ଯ୍ୟଦ୍ୱାରା ସମଗ୍ର ୟୁରୋପକୁ ଚମକିତ କରିଅଛନ୍ତି । Togo ଙ୍କର ଶାରୀରିକ ଗଠନରେ ମାଙ୍ଗୋଲିଆନର କୌଣସି ଲକ୍ଷଣ ନାହିଁ । ଏହା ସିଦ୍ଧାନ୍ତ କରା ହୋଇଅଛି ଯେ Togo ଙ୍କଠାରେ ବଙ୍ଗାଳୀ ଜାତିର ଶାରୀରିକ ଗଠନର ସାଦୃଶ୍ୟ ପୂର୍ଣ୍ଣମାତ୍ରାରେ ବିଦ୍ୟମାନ ଅଛି । କୌଣସି ନୃତତ୍ତ୍ୱବିତ୍ କାଜାନି କହୁଅଛନ୍ତି ଯେ ଜାପାନର ସଭ୍ୟତା ଅନେକ ଅଂଶରେ ବଙ୍ଗଦେଶରୁ ଆଗତ । ଏକଥା ପ୍ରମାଣସ୍ୱରୂପ କଥିତ ହୁଏ ଯେ ଜାପାନର ଧର୍ମଗ୍ରନ୍ଥମାନ ଗୌଡ଼ୀୟ ଅକ୍ଷରରେ ଲିଖିତ ଏବଂ ସମଗ୍ର ଜଗତରେ ବଙ୍ଗାଳୀ ଓ ଜାପାନୀଙ୍କ ବ୍ୟତିରେକେ ଆଉ ସମସ୍ତଙ୍କର ଜାତୀୟ ପଗଡ଼ୀ ଅଛି । ଅଧିକନ୍ତୁ ମଧ୍ୟ ଜାପାନରେ ଅନେକ ଲୋକ ଅଛନ୍ତି, ଯେଉଁମାନେ ଦେଖିବାକୁ ବଙ୍ଗାଳୀମାନଙ୍କ ପରି । ଏହିପରି ନାନା କଥାରୁ ଏହା ସମ୍ୟକ୍‌ରୂପେ ଅନୁମାନ କରାଯାଉଅଛି ଯେ ଉପରୋକ୍ତ ସିଦ୍ଧାନ୍ତ ଭ୍ରାନ୍ତ ନୁହେ । Count Okuma ଜାପାନର ଆଧୁନିକ ପ୍ରତିଭା ଓ ରୁଷ-ଜାପାନ ଯୁଦ୍ଧକୁ ଲକ୍ଷ କରି କହୁଅଛନ୍ତି, "The Japanese stand upon liberty, humanty and justice" ଜାପାନର ଆଉ ଜଣେ ପ୍ରସିଦ୍ଧ ରାଜନୀତିଜ୍ଞ ଲେଖିଅଛନ୍ତି "The Japanese have a noble ambition to bring back the Orientals to life and activity." କଥାଗୁଡ଼ିକ ଅକ୍ଷରେ ଅକ୍ଷରେ ସତ୍ୟ । ଜାପାନର ଜୟରେ ସମଗ୍ର ଏସିଆର ଆନନ୍ଦ ଓ ସମ୍ମାନ । ଜାପାନର ସଭ୍ୟତାର କ୍ରମିକ ବିକାଶ ଓ ଏହାର କ୍ରମିକ ଦ୍ରୁତ ଉନ୍ନତି ସମଗ୍ର ଜଗତର ବିଶେଷତଃ ଭାରତପରି ଦେଶ ପକ୍ଷରେ ସର୍ବଥା ପରିଶୀଳନ-

ଯୋଗ୍ୟ । ବର୍ତ୍ତମାନ ଏ ସ୍ଥଳରେ ଜାପାନର ବର୍ତ୍ତମାନ ଯୁଦ୍ଧୋପଯୋଗୀ ରଚିତ ଜାତୀୟ ଗୀତରୁ କେତେକ ଅଂଶ ଉଦ୍ଧୃତ କରି ପ୍ରବନ୍ଧର ଉପସଂହାର କଲି ।

"Break the ramparts of Port Arthur,
Tear the walls of Harbin down !

On the heights of Ural mountains
Float the banner of the Sun !

Drive the Slav into the forests;
Let him hide within their shade.
Ancient Moscow be his refuge,

There his bloody hand be stayed !
Then unto our Sovereign's glory
Praises sound and never cease

While our hearts unite, rejoicing
In a great and world-wide peace."

ଶ୍ରୀ ଚନ୍ଦ୍ରଶେଖର ନନ୍ଦ ।

---

## କ୍ଷୁଦ୍ର କ୍ଷୁଦ୍ର କବିତା ।

### ଗଉଡ଼ା ଟେଂଢା ।

ଭଦଭଦଳିଆ ଚଢ଼େଇ ! କେଣେ ଯାଉଛୁ ଉଡ଼ି,
ପଡ଼ ଗଲା ପକ୍ଷି ଯୋଡ଼ିଏ ଦେଲୁ ଦେହରୁ ଝାଡ଼ି,
ପକ୍ଷି ଯୋଡ଼ିକ ମୁଁ ପାଇଲି କଲି ବଡ଼ ଆଦର,
ଗୋଟି ଲଣା ଛଡ଼ା ଦାନ୍ତରେ ଖୋସି ଦେବ ମାଉର ।
ବାନ୍ଧିବ ଧୁଡ଼ୁକ ଛତାରେ କନ୍ଦାଉବ ଝରଁଶି,
ଭଦଭଦଳିଆ ନାଆଁରେ ଗୀତ ଗାଇବ ବସି ।
ଭଦଭଦଳିଆ ଭାଇରେ ପକ୍ଷି ତୋର ରଙ୍ଗିଆ,
ପକ୍ଷିଯାକ ଖୋସି ଛତାରେ ଦେବ ନବରଙ୍ଗିଆ ।
ବାଟ ଭୁଲେ କାହୁଁ ଅଇଲୁ, କାହିଁ ତୋହର ବସା,
ପିଲା ମୋର କେତେଗୋଟି ଯେ, କିଏ ମୋର ଭରସା ।
ଭଦଭଦଳିଆ ଚଢ଼େଇ ! ବୁଢ଼ା ହୋଇବୁ ଯେବେ,
କିଏ ତୋତେ ବସି ପୋଷିବ କାମ ନ କଲେ କେବେ ?
ଜାଣିଲି ଜାଣିଲି ଭାଇରେ ମୋର ସାହା ଈଶ୍ୱର,
ମୋର ଆଉ କେହି ନାହିଁଟି ହରିଭରସା ସାର ।

ଗୋପାଳଚନ୍ଦ୍ର ପ୍ରହରାଜ

---

### ସାଧ୍ୱୀ ।

କୃଷ୍ଣା ଚତୁର୍ଦ୍ଦଶୀ ନିଶି ଗଗନ ଅନ୍ଧାରବୋଳା,
ଗମ୍ଭୀର ଶ୍ୟାମଳାଚ୍ଛାଦନେ ମଣ୍ଡିତ ପ୍ରକୃତିବାଳା,
ନାହିଁ ଖଦ୍ୟୋତର ଜ୍ୟୋତି ଶୁଭ୍ର ଛଟା ଝଂକାର,
ଯେଠାରେ ନୟନ ପଡ଼େ ମାତ୍ର ଘୋର ଅନ୍ଧକାର,
ଶୁଭୁଛି ବିଶାଳ ବନେ କ୍ଷୀଣ ଝିଲ୍ଲି ଝାର ସ୍ୱର,
ମୋହି ଦେଉ ମାନବର ଉଦ୍ବସିତ ହୃଦପୁର ।
ମୃତ ପତି କୋଳେ ଯେନ ବସିଣ ରହିଛି ବାଳା,
ଝୁରୁଛି ନୃପଜ ଭାଳ କଠୋର ବୈଧବ୍ୟଜ୍ୱାଳା ।
ଆସନ୍ତୁ ପତିର ଆତ୍ମା ଘେନବାକୁ ଦେବଗଣ,
କେବେହେଁ ନ ଦେବ ମୁହିଁ ମୋହର ଜୀବନଧନ ।
ଅଟଳ ପ୍ରତିଜ୍ଞା ଏହି କରି ସତୀ ନିଜ ମନେ,
ରହିଲେ ନମ୍ରନେତ୍ରେ ବସି ନିଶିରେ ଗମ୍ଭୀର ବନେ ।
ରଖିଲେ ପ୍ରତିଜ୍ଞା ତାଙ୍କ ତୁଷ୍ଟଚିତ୍ତେ ଧର୍ମ୍ମସାଇଁ,
ଫେରି ଦେଲେ ମୃତପତି ସତୀଙ୍କ ସମ୍ମାନପାଇଁ ।

ଶ୍ରୀମତୀ ନଗେନ୍ଦ୍ରବାଳା ସରସ୍ୱତୀ

---

### ଭୀମ ସିଂହ ।

ଶୌର୍ଯ୍ୟ ବୀର୍ଯ୍ୟେ ଧିକ ତୋର ରେ ନୃଶଂସ ନର !
ଶତ ଧିକ ପୁଣି ତୋର ଜନ୍ମ ରାଜ-ବଂଶେ !
ତୋହ ପରି କାପୁରୁଷ ଅଟେ ରେ ପାମର !
ଜନମିବେ ନାହିଁ କେବେ ଏ ଭାରତବର୍ଷେ ।
କୁଯଶଃ-ପତାକା ତୁହି ଉଡ଼ାଇ ଅତର
ରଖିଲୁ କୁଖ୍ୟାତି ଭବେ, କହ କେଉଁ ମୁଖେ
ନିଜ ହସ୍ତେ ଛେଦ ନିଜ ଆଶା-ତରୁବର
ଲେପିଅଛୁ ଭସ୍ମ ପୁଣି ନିଜେ ନିଜ ମୁଖେ ?
ରାଜସ୍ଥାନ-କମଳିନୀ କୃଷ୍ଣା ସୁକୁମାରୀ,
କନ୍ୟା ଅଟେ ସେହୁ ତୋର, କହ କେଉଁ ଆଶ
ବିଷପାନ କରାଇ ତୁ, ଅଧର୍ମ-ଆଗ୍ରହୀ !
ଅକାଳେ ଅବଳା-ପ୍ରାଣ କଲୁ ରେ ବିନାଶ ?
ମୋର ହାତେ ପ୍ରାଣ ଦେଲା ଅକ୍ଳେଶେ ଲଳନା,
କାନ୍ଦୁ କିପାଁ ପଛେ ? ଧିକ ତୋ ଛଳ-ଭାବନା !

ଶ୍ରୀ ପଦ୍ମଚରଣ ନାୟକ

## ସଂକ୍ଷିପ୍ତ ସମାଲୋଚନା ।

୧ । ମହାଭାରତ—ବନପର୍ବ । ଶ୍ରୀ ଫକୀରମୋହନ ସେନାପତିଙ୍କ କର୍ତ୍ତୃକ ମୂଳ ସଂସ୍କୃତର ଅନୁବାଦ—ମୂଲ୍ୟ ୫୲ । ମୂଳଗ୍ରନ୍ଥ ଏବଂ ସେନାପତି ମହାଶୟଙ୍କ ଅନୁବାଦ ଏଥି ମଧ୍ୟରୁ କାହାର କି ପ୍ରଶଂସା କରିବୁଁ ? ଯେଉଁମାନେ ପୂର୍ବରୁ ସେନାପତି ମହାଶୟଙ୍କ ଅନୁବାଦର ମାଧୁରୀ ଓ ସରସତା ଉପଲବ୍ଧି କରି ନାହାନ୍ତି, ସେମାନେ "ଉତ୍କଳସାହିତ୍ୟ'ରେ ପ୍ରକାଶିତ ଉପନିଷତ୍-ସଂଗ୍ରହରୁ ତାହା ସହଜରେ ବୁଝି ପାରୁଥିବେ । ଏ ବୃଦ୍ଧବୟସରେ ତାଙ୍କର ଅନନ୍ୟସାଧାରଣ ଉତ୍ସାହ ଓ ଅଧ୍ୟବସାୟ ଦେଖି ଆମ୍ଭେମାନେ ଅବାକ୍ ହୋଇଅଛୁଁ । ଆମ୍ଭେମାନେ ଜାଣୁ, ସମଗ୍ର ମହାଭାରତର ଅନୁବାଦ ସମାପ୍ତ ହୋଇଅଛି ଏବଂ ପ୍ରକାଶ ନିମିତ୍ତ ଉପଯୁକ୍ତ ହସ୍ତରେ ଅର୍ପିତ ହୋଇଅଛି । ମାନନୀୟ ଖଲ୍ଲିକୋଟ-ଅଷ୍ଟଦୁର୍ଗାଧୀଶ୍ୱର ମହୋଦୟ ପ୍ରକାଶଭାର ଗ୍ରହଣ କରିଥିବା ସ୍ଥଳେ ଯଥାସମ୍ଭବ ଅଳ୍ପକାଳ ମଧ୍ୟରେ ଅପରାପର ପର୍ବଗୁଡ଼ିକ ମୁଦ୍ରିତ ଆକାରରେ ଦେଖିବାର ଆଶା ସମ୍ପୂର୍ଣ୍ଣ ସ୍ୱାଭାବିକ ଅଟେ ।

୨ । କାଞ୍ଚନମାଳୀ (ନାଟକ)—ଶ୍ରୀ ରାମଶଙ୍କର ରାୟ ପ୍ରଣୀତ । ମୂଲ୍ୟ ଆଠ ଅଣା ମାତ୍ର । ନାଟକ ରଚନାରେ ରାମଶଙ୍କର ବାବୁଙ୍କ ଉତ୍ସାହ ଓ ଅଧ୍ୟବସାୟ ଉତ୍ତରୋତ୍ତର ବର୍ଦ୍ଧିତ ହେଉଥିବାର ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦିତ ହୋଇଅଛୁଁ ଏବଂ ତାହାଙ୍କୁ ଆନ୍ତରିକ ଧନ୍ୟବାଦ ପ୍ରଦାନ କରୁଅଛୁଁ । ଉତ୍କଳର ଅତ୍ୟଳ୍ପସଂଖ୍ୟକ ଅନୁରାଗୀ ସାହିତ୍ୟସେବକଙ୍କ ମଧ୍ୟରେ ରାମଶଙ୍କର ବାବୁ ଜଣେ ଏବଂ ସେ ଗୋଟିଏ ବିଶିଷ୍ଟ ବିଭାଗ ଅଧିକାର କରିଅଛନ୍ତି; ସୁତରାଂ ଅନେକ ପାଠକ ତାଙ୍କ ଲେଖନୀ ପ୍ରତି ଉଦ୍‌ଗ୍ରୀବ ଦୃଷ୍ଟିରେ ଅନାଇଥାନ୍ତି । ଇହିଁରେ ପୁଣି ସେ ବହୁକାଳ ହେଲା ସମାଜ ପ୍ରତି ବିଶେଷଭାବରେ ଦୃଷ୍ଟି ଦେଇଅଛନ୍ତି । 'ଯୁଗଧର୍ମ'ରେ ଆମ୍ଭେମାନେ ତାଙ୍କର ବର୍ତ୍ତମାନ ଆଦର୍ଶର ଆଭାସ ପାଇଅଛୁଁ । ସମାଲୋଚ୍ୟ ନାଟକରେ ସେହି ଆଦର୍ଶର ଅଭିବ୍ୟକ୍ତି ଦେଖାଇବାକୁ ଗ୍ରନ୍ଥକାର ଚେଷ୍ଟା କରିଅଛନ୍ତି । ସ୍ଥୂଳରେ କହିବାକୁ ଗଲେ ଆଦର୍ଶଟି ଖୁବ ଉଚ୍ଚ ଏବଂ ଅସଙ୍କୁଚିତ ଭାବରେ ତାହା ଜନସାଧାରଣଙ୍କ ନିକଟରେ ଉପସ୍ଥାପିତ କରି ରାମଶଙ୍କର ବାବୁ ଯଥେଷ୍ଟ ସାହସିକତାର ପରିଚୟ ଦେଇଅଛନ୍ତି । ସେ ଆଦର୍ଶ ନିକଟରେ ତମସାଚ୍ଛନ୍ନ ଅଧିକାଂଶ ଉତ୍କଳୀୟଙ୍କ ଚକ୍ଷୁ ଯେ ଝଲସି ଯିବ ଏବଂ ସେଥିପାଇଁ ଯେ ଗ୍ରନ୍ଥକାର ଅନେକଙ୍କର ବିଷଦୃଷ୍ଟିରେ ପତିତ ହେବେ, ଏହା ସହଜରେ ଅନୁମାନ କରା ଯାଇପାରେ । ମାତ୍ର ସେହି କାରଣରୁ ତାଙ୍କ ପ୍ରତି ଆମ୍ଭମାନଙ୍କର ଶ୍ରଦ୍ଧା ଓ ସହାନୁଭୂତି ବହୁପରିମାଣରେ ବର୍ଦ୍ଧିତ ହୋଇଅଛି ଏବଂ ସେହି କାରଣରୁ ପୁସ୍ତକରେ ନାଟକୀୟ ଭାବରେ ଯେ ସମସ୍ତ ଗୁରୁତର ତ୍ରୁଟି ଲକ୍ଷିତ ହେଉଅଛି, ସେଗୁଡ଼ିକ ଉପରେ ସମାଲୋଚନାର ତୀବ୍ର ଅସ୍ତ୍ରାଘାତ କରିବାକୁ ସହଜରେ ପ୍ରବୃତ୍ତି ହେଉ ନାହିଁ । ମାତ୍ର କର୍ତ୍ତବ୍ୟ ବଡ଼ କଠୋର-ହୃଦୟ ପ୍ରଭୁ । ତାହାର ଭ୍ରୂକୁଟିକୁ ଉପେକ୍ଷା କରିବାର ଶକ୍ତି ଆମ୍ଭମାନଙ୍କର ନାହିଁ । ଆମ୍ଭେମାନେ ତାହାର ଶାସନ ଶିରୋଧାର୍ଯ୍ୟ କରି ଅତି ସଂକ୍ଷେପରେ ନାଟକଖଣ୍ଡିକର ସମାଲୋଚନା ଶେଷ କରିବୁଁ ।

ସ୍ଥୂଳରେ ନାଟକର ଗଳ୍ପାଂଶ ଏହି—କାଞ୍ଚନମାଳୀ ଗୋଟିଏ କୋଳଅ ଝିଅ; ବିଦ୍ୟା, ବୁଦ୍ଧି, ତେଜସ୍ୱିତା, ଜନହିତୈଷଣା ପ୍ରଭୃତିରେ ସେ ଖୁବ୍ ଉନ୍ନତ ଅବସ୍ଥାକୁ ଉଠିଅଛି; ସେ ରାଜା ପ୍ରତାପରୁଦ୍ରଙ୍କର ବିଶେଷ ଅନୁଗ୍ରହପାତ୍ରୀ ଏବଂ ତାଙ୍କର ଏକମାତ୍ର କନ୍ୟା ଚନ୍ଦ୍ରକଳାର ସଙ୍ଗାତ । ଦିନେ ବାପ ସଙ୍ଗରେ କାଠ ଆଣିବାକୁ ଯାଇଥିଲା, ଏକାକିନୀ ସେଠାରେ ଅବସ୍ଥାନ କରୁଥିବା ବେଳେ ଦୁଇଜଣ ଚୋରଙ୍କଦ୍ୱାରା ଆକ୍ରାନ୍ତ ହେଲା; ଦୈବାତ୍ ସୂର୍ଯ୍ୟମଣି ନାମକ ଜଣେ ଶିକ୍ଷିତ କରଣସନ୍ତାନ ଆସି ସେଠାରେ ଉପସ୍ଥିତ ହୋଇ ତାହାର ସହାୟତା କରିବାରୁ ଚୋରଙ୍କ ଆକ୍ରମଣରୁ ରକ୍ଷା ପାଇଲା । ସେହିଠାରେ ସୂର୍ଯ୍ୟମଣି ଓ କାଞ୍ଚନମାଳୀର ପ୍ରଥମ ପରିଚୟ । ସୂର୍ଯ୍ୟମଣି ଉତ୍କଳସମ୍ମିଳନୀର ସ୍ୱେଚ୍ଛାବ୍ରତ,

ରାଜା ମହାରାଜାଙ୍କଠାରୁ କେଳା କେଳୁଣୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ସମ୍ମିଳନୀର ଉଦ୍ଦେଶ୍ୟ ବୁଝାଇ ଉତ୍କଳର ସର୍ବଶ୍ରେଷ୍ଠ ହିନ୍ଦୁ ସାଧନବ୍ରତରେ ଦୀକ୍ଷିତ କରିବା ନିମିତ୍ତ ଜୀବନ ଉତ୍ସର୍ଗ କରିଅଛନ୍ତି । ଉଭୟେ କାଠଗୋଷ୍ଠ ମୃ ଶ୍ରେଣ ସହରକୁ ଆସିଲେ। ଉଭୟଙ୍କ ମଧ୍ୟରେ ଖୁବ୍ ସଦ୍ଭାବ ବଢ଼ିଲା । ଏଣେ ଗୌରାଙ୍ଗ ଦାସ ନାମକ ଜଣେ ବୈଷ୍ଣବ ନବ ଚୈତନ୍ୟ-ଦୀକ୍ଷା ପ୍ରଚାର କରି ଲୋକଙ୍କୁ ଏକାକାର ଓ ଦେଶହିତବ୍ରତରେ ଉଦ୍ବୋଧିତ କରୁଅଛନ୍ତି। କ୍ରମେ ରାଜା ପ୍ରତାପରୁଦ୍ର ସୁମନ୍ତ୍ରୀ ଜ୍ଞାନଚନ୍ଦ୍ରଙ୍କ ପରାମର୍ଶରେ ଏବଂ ନୃପଶେଖର ଉଭୟ ଦଳର ଅଲକ୍ଷିତ ପ୍ରଭାବରେ ସ୍ୱଭାବସିଦ୍ଧ ଆଳସ୍ୟ, ଔଦାସୀନ୍ୟ ଓ ଅବସାଦ ପରିହାର କରି ଦିନକୁ ଦିନ ନବ ଭାବରେ ଅଗ୍ରସର ହେଉଅଛନ୍ତି । କେବଳ କଳି ନନ୍ଦ ଓ ତଦୀୟ କ୍ଷୁଦ୍ର ଦଳ ନାନା ସ୍ଥାନରେ ବୁଲି ନାନା ଉପାୟରେ ଏମାନଙ୍କ କାର୍ଯ୍ୟରେ ବାଧା ଦେଉଅଛନ୍ତି । ଶେଷରେ ରାଜାଙ୍କ ଘୋଷଣାରେ ରାଜ୍ୟର ଲୋକେ ଦଳକୁ ଦଳ ଚୈତନ୍ୟ ଦୀକ୍ଷା ଗ୍ରହଣ କରି ସମ୍ମିଳନୀର ଜାତୀୟ ଯାଗ ପିଣ୍ଡ ଜାତୀୟ ଉନ୍ନତି ସାଧନରେ ପ୍ରବୃତ୍ତ ହେଲେ । ବୋଲଥଣ୍ଡିଅ କାଞ୍ଚନମାଳୀ ସହିତ ତରୁଣ ସୂର୍ଯ୍ୟମଣିଙ୍କର ବିବାହ ସମ୍ପନ୍ନ ହେଲା—ଯୋଗ୍ୟରେ ଯୋଗ୍ୟରେ ମିଳିତ ହୋଇ ଦେଶସେବାରେ ରତ ହେଲେ ।

ପ୍ରଧାନ ଚରିତ୍ରଗୁଡ଼ିକ ବିଶ୍ଳେଷଣ କରି ଦେଖାଇବାକୁ ଗଲେ ଗୋଟିଏ ଦୀର୍ଘ ପ୍ରବନ୍ଧ ହେବ, ବର୍ତ୍ତମାନ ଆମ୍ଭେମାନେ ତାହା କରିବାକୁ ଏକାନ୍ତ ଅକ୍ଷମ । ତେବେ ଠିକେ ଠିକେ କେତେ କଥା ନ କହିଲେ ନ ଚଳେ । ସ୍ଥୂଳରେ ବକ୍ତବ୍ୟ ଏହି ଯେ ନାଟକର ଆଦ୍ୟରୁ ଶେଷ ପର୍ଯ୍ୟନ୍ତ ପ୍ରାୟ ସର୍ବତ୍ର realityର ( ବାସ୍ତବତା ? ) ଏକାନ୍ତ ଅଭାବ ଲକ୍ଷିତ ହେଲା । ଚରିତ୍ରଗୁଡ଼ିକ ଯେପରି ଅତି ମନଗଢ଼ା । କବି ଏବଂ ନାଟ୍ୟକାରଙ୍କର ପ୍ରଧାନ ସହାୟ କଳ୍ପନା ଏ କଥା ସତ୍ୟ, ମାତ୍ର ଚରିତ୍ରଗୁଡ଼ିକର ମୂଳ ବାସ୍ତବ ରାଜ୍ୟରେ ଅବସ୍ଥିତ ଥାଏ । ପାଠକମାନଙ୍କୁ ନିତାନ୍ତ ଆକାଶକୁ ଅନାଇ ରହିବାକୁ ହୁଏ ନାହିଁ । ପ୍ରଥମ କଥା, ସମ୍ମିଳନୀର ସଫଳତା—ଜାତୀୟ ଜୀବନରେ ଏତାବତ୍ ଏହାର ପ୍ରତିଷ୍ଠା ଏବଂ କାର୍ଯ୍ୟକାରିତା ଆମ୍ଭେମାନେ ଖୋଜି ପାଉ ନାହୁଁ । —ସମଗ୍ର ବ୍ୟାପାରଟି ଏପର୍ଯ୍ୟନ୍ତ ଗୋଟିଏ ସ୍ୱପ୍ନ ରୂପରେ ଅବସ୍ଥିତ । ତାହା କେଉଁ ସୁଦୂରବର୍ତ୍ତୀ ପଦାର୍ଥବିଶେଷରୁ ଆଗତ ଏବଂ ଦେଶୀ କି ବିଦେଶୀ ଅଥବା କେତେ ଅଂଶ ଦେଶୀ ଏବଂ କେତେ ଅଂଶ ବିଦେଶୀ ଆଉ ଏହାର ସୀମା କେତେ ଦୂର ପ୍ରସାରିତ ହେବା ଉଚିତ, ଏ ସମସ୍ତ ତତ୍ତ୍ୱ ନେତାମାନଙ୍କ ମଧ୍ୟରୁ ଅନେକଙ୍କର ହୃଦ୍ଗତ ହୋଇଅଛି କି ନାହିଁ, ଗଭୀର ସନ୍ଦେହର ବିଷୟ । ସାଧାରଣଙ୍କ ଭିତରେ ଏହାର କାର୍ଯ୍ୟକାରିତା ଦେଖିବା ପୂର୍ବରୁ ଦେଶବ୍ୟାପୀ ଓ ଯୁଗବ୍ୟାପୀ ପ୍ରଚୁର ଶିକ୍ଷା ଓ ସାଧନାର ପ୍ରୟୋଜନ । ତାହାର ସୂଚନା ମାତ୍ର ନ ହେଉଣୁ ବିଶୁଦ୍ଧ କଳ୍ପନା-ରାଜ୍ୟର ଗୋଟିଏ ସ୍ୱପ୍ନ ଦର୍ଶନରେ ଜୟଜୟକାର କରିବା ସୁବିବେଚନାର କାର୍ଯ୍ୟ ନୁହେ । ସମ୍ମିଳନୀର ସଫଳତାଟାକୁ ଏତେ ସହଜ ବୋଲି ପ୍ରଚାର କରିବାଦ୍ୱାରା ସମ୍ମିଳନୀର ଆଦର୍ଶଟାକୁ କିଯତ୍-ପରିମାଣରେ ଖର୍ବ କରା ହୋଇ ନାହିଁ କି ? ଦ୍ୱିତୀୟ କଥା, ନବ ଚୈତନ୍ୟ-ଦୀକ୍ଷା—ଏହା ମଧ୍ୟ ବିଶୁଦ୍ଧ କଳ୍ପନା ରାଜ୍ୟର ଅନ୍ୟତର ସ୍ୱପ୍ନ ମାତ୍ର । ଉତ୍କଳ ସୂର୍ଯ୍ୟାଲୋକରେ ବାସ୍ତବ ଜଗତର ଦୃଶ୍ୟମାନ ଧ୍ରୁବ ପଦାର୍ଥକୁ ନ ଧରି ଅନ୍ଧକାର ଘଡ଼ରେ କଳ୍ପନାସମ୍ଭୂତ ଗୋଟିଏ ମୂର୍ତ୍ତିର ପଶ୍ଚାଦ୍ଦେଶରେ ଧାବିତ ହେଲା ପରି ଗ୍ରନ୍ଥକାର ବୃଥା ଶକ୍ତି ଓ ସମୟ କ୍ଷୟ କରିଅଛନ୍ତି । ପରନ୍ତୁ ରାଜଘୋଷଣା ଶ୍ରବଣମାତ୍ରକେ ଦଳକୁ ଦଳ ନବ-ଦୀକ୍ଷା ଗ୍ରହଣ କରିବାଟା ଧର୍ମ ପକ୍ଷରେ ବଡ଼ ଗୌରବର କଥା ନୁହେ—ବରଂ ଏହାଦ୍ୱାରା ଧର୍ମର ମହିମା ଖର୍ବୀକୃତ ହୋଇଅଛି । ପ୍ରକୃତ କଥା ଏହି ଯେ ନବଯୁଗର ଆଦର୍ଶକୁ ଚୈତନ୍ୟ ଧର୍ମ ସହିତ ମିଳାଇବାକୁ ଯାଇ ଗ୍ରନ୍ଥକାର ଅଜ୍ଞାତ-ଭାବରେ ଲକ୍ଷ୍ୟଭ୍ରଷ୍ଟ ହୋଇ ପଡ଼ିଅଛନ୍ତି । ତୃତୀୟ କଥା, ଆଦର୍ଶ ନାରୀଚରିତ୍ର—ଏ କ୍ଷେତ୍ରରେ ମଧ୍ୟ ଆମ୍ଭେମାନେ ଅନେକ ପରିମାଣରେ ନିରାଶ ହୋଇଅଛୁଁ । ତାଙ୍କର ଆଦର୍ଶନାରୀ କାଞ୍ଚନ-ମାଳୀର ଚରିତ୍ରରେ ଦେଶୀ ବିଦେଶୀ ଉଭୟର

ସାମଞ୍ଜସ୍ୟ ରକ୍ଷା କରିବାକୁ ଗ୍ରନ୍ଥକାର ଚେଷ୍ଟା କରିଅଛନ୍ତି । ମାତ୍ର କାଞ୍ଚନମାଳୀକୁ ଉତ୍କଳ ରମଣୀ ବୋଲି କେହି ଚିହ୍ନି ପାରିବେ କି ? ଉତ୍କଳ ରମଣୀ କାହିଁକି, ଭାରତର କୌଣସି ପ୍ରଦେଶର ରମଣୀ ବୋଲି ଚିହ୍ନିବା ଦୁଷ୍କର । ଆମ୍ଭେମାନେ କାଞ୍ଚନମାଳୀର ଦେହରେ ରମଣୀସୁଲଭ କୋମଳତା ବା ମାଧୁର୍ଯ୍ୟ କୌଣସିଠାରେ ନ ପାଇ ଦୁଃଖିତ ହେଲୁଁ । ସୂର୍ଯ୍ୟମଣିଙ୍କ ସହିତ କାଞ୍ଚନମାଳୀର ପ୍ରଥମ ପରିଚୟରେ ଏବଂ ଦ୍ୱିତୀୟ ଥର ସମୁଦ୍ର ତୀରରେ ଭେଟ ହେବା ସମୟରେ ତାହାର କଥାବାର୍ତ୍ତା ଓ କବିତା ଆବୃତ୍ତି ଆମ୍ଭମାନଙ୍କୁ ବଡ଼ ଅଦ୍ଭୁତ ଲାଗିଲା । ସେଥିରେ ଯେ କଳ୍ପନାମାତ୍ର ଅପବିତ୍ର ଭାବର ସ୍ପର୍ଶ ହୋଇଅଛି, ତାହା ଆମ୍ଭେମାନେ କହୁ ନାହୁଁ । ଗ୍ରନ୍ଥକାର ସେ ବିଷୟରେ ଯେପରି ତୀକ୍ଷ୍ଣଦୃଷ୍ଟି ରଖିଅଛନ୍ତି, ତାହା ଅତ୍ୟନ୍ତ ପ୍ରଶଂସନୀୟ । ମାତ୍ର ସେଗୁଡ଼ିକ ଦେଶୀ ବିଦେଶୀ କୌଣସି ଭଦ୍ରତ୍ୱର ( Etiquette ) ଅନୁମୋଦିତ ବୋଲି ବୋଧ ହେଲା ନାହିଁ— ପରନ୍ତୁ ନାୟିକାଠାର ଶୋଭନ ଲଜ୍ଜାଶୀଳତାର ବୈପରୀତ୍ୟ ଏବଂ ପ୍ରଗଲ୍ଭତାର ପରିଚାୟକ । ତତ୍ପରେ ରାଜଗୃହରେ ଜେମାରୂପରେ 'ଠା'ରେ ବସିବା, ରାଣୀଙ୍କ ପଲଙ୍କରେ ବସିବା, ସଂସ୍କୃତ କବିତା ରଚନା କରି ସଭାର ମଥାମଣି ପୁରସ୍କାର ପାଇବା, ଉଚ୍ଚ ଶିକ୍ଷିତ ବ୍ୟକ୍ତିମାନଙ୍କ ସହିତ ମିଳିତ ହୋଇ ଶିକ୍ଷାବିସ୍ତାର ପ୍ରବୃତ୍ତିରେ ଶକ୍ତି ନିୟୋଗ କରିବା ଇତ୍ୟାଦି କାର୍ଯ୍ୟସହିତ ବଣରୁ କାଠ ଗୋଟାଇବା, ଗୋଷ୍ଠ ବହି ଆଣିବା ଓ ମାଛ ଟୋକେଇ ମୁଣ୍ଡାଇବାର ସଂଯୋଗ କାହିଁକି ? ଏହାର ପ୍ରୟୋଜନୀୟତା ବା ସଙ୍ଗତି କିଛି ବୁଝି ପାରିଲୁଁ ନାହିଁ । ମନୁଷ୍ୟର ଶକ୍ତିପ୍ରୟୋଗର ଗୋଟାଏ ସୀମା କଣ ନାହିଁ ? ତେବେ କଣ ଗ୍ରନ୍ଥକାରଙ୍କର ଉଦ୍ଦେଶ୍ୟ ଏହି ଯେ କୋଲଅଣୀ ଚିରକାଳ କୋଲଅଣୀ ଥିବ ? ତାହାହେଲେ କରଣସନ୍ତାନ ସହିତ ତାହାର ବିବାହ ଘଟାଇବାର ଉଦ୍ଦେଶ୍ୟ କଣ ?

ନାଟକ ଖଣ୍ଡିକରେ ଏହି ୬ ଗୋଟି ମୂଳସୂତ୍ର । ଏହି ୬ ଗୋଟି ମଧ୍ୟରୁ କୌଣସିଟିରେ ଗ୍ରନ୍ଥକାରଙ୍କ ସହିତ ଆମ୍ଭମାନଙ୍କର ଅନୈକ୍ୟ ନାହିଁ । ସମାଜର ଜଡ଼ତା, ଅନ୍ଧତା, ସଙ୍କୀର୍ଣ୍ଣତା ଓ ଔଦାସୀନ୍ୟ ଦୂର ନ ହେଲେ ଆମ୍ଭମାନଙ୍କର ସକଳ ଚେଷ୍ଟା ବ୍ୟର୍ଥ ହୋଇଯିବ । ପ୍ରକାଶ୍ୟ ଭାବରେ ଯୁଗୋଚିତ ଆଦର୍ଶ ଅନୁସରଣ ନ କଲେ ସମାଜ ମଧ୍ୟରେ କପଟତା ପ୍ରବେଶ କରି ତାହାକୁ ଛାରଖାର କରି ପକାଇବ । ବସ୍ତୁତଃ ତାହାହିଁ ଘଟୁଅଛି । ସୁତରାଂ ସମାଜର ଆମୂଳ ସଂସ୍କାର ଏକାନ୍ତ ଆବଶ୍ୟକ । ମାତ୍ର ସମାଜର ଆଦର୍ଶକୁ ନାଟକର ବିଷୟୀଭୂତ କରିବାକୁ ହେଲେ ନାଟକର ନାଟକତ୍ୱ ରକ୍ଷା କରିବା ବିଷୟରେ ସମୁଚିତ ଦୃଷ୍ଟି ଦେବା ଉଚିତ । ଦୁଃଖର ବିଷୟ, ଗ୍ରନ୍ଥକାର ଆଦର୍ଶ ଧରିବାକୁ ଯାଇ ବାଟ ବଣା ହୋଇଅଛନ୍ତି ଏବଂ ନାଟକର ନାଟକତ୍ୱ ମଧ୍ୟ ରକ୍ଷା କରି ପାରି ନାହାନ୍ତି । ନାଟକର ଚରିତ୍ରବିକାଶ ପ୍ରତି ସମୁଚିତ ଦୃଷ୍ଟି ନ ଦେଇ ସମାଜସଂସ୍କାର ସମ୍ବନ୍ଧୀୟ ନାନା ମତ କ୍ଷୁଦ୍ର ସୀମା ମଧ୍ୟରେ ଏକୀଭୂତ କରିବାକୁ ଅଧିକ ପ୍ରୟାସୀ ହୋଇଅଛନ୍ତି । ଆଉ କେତେକ ସ୍ଥଳରେ ବ୍ୟକ୍ତିଗତ ମତଗୁଡ଼ିକୁ ଟାଣି ଓଟାରି ଛିଡ଼ା କରିବାକୁ ଚେଷ୍ଟା କରିଅଛନ୍ତି । ଦୃଷ୍ଟାନ୍ତସ୍ୱରୂପ — ଦେଶମିଶ୍ରଣସମ୍ବନ୍ଧୀୟ ମତଭେଦ ପ୍ରତି ତୀବ୍ର କଟାକ୍ଷପାତ କାହିଁକି ? କବିତାରେ ହିପଥାମିଳନ କଥାଟା ବା ଆସିଲା କାହିଁକି ? ସମ୍ମିଳନୀର ଗୋଟାଏ ବିରୋଧୀ ଦଳ ଛିଡ଼ା କରିବାର ହେତୁ କଣ ? ନାଟକ ଭିତରେ ଯୁକ୍ତି ତର୍କର ଅବତାରଣା ଦେଖିଲେ କିପରି ଟିକିଏ ଅସ୍ୱାଭାବିକ ବୋଧ ହୁଏ । ସମାଲୋଚ୍ୟ ନାଟକରେ ତାହାର ମାତ୍ରା ଟିକିଏ ବଳି ପଡ଼ିଅଛି ଏବଂ ସେହି କାରଣରୁ ନାଟକୀୟ କୌଶଳ-ରକ୍ଷାରେ ଅତ୍ୟନ୍ତ ବାଧା ଘଟିଅଛି । ନାଟକର ଅବାନ୍ତର ଚରିତ୍ରଗୁଡ଼ିକ ମଧ୍ୟରେ କେତେଗୁଡ଼ାଏ ବେଶ୍ ସ୍ୱାଭାବିକ ହୋଇଅଛି । ଯଥା—କେଳା କେଳୁଣୀ, ଗଜଭୃତ୍ୟ, କୋଲଅଣୀ, ଗ୍ରାମ୍ୟ ଜନସାଧାରଣ ଇତ୍ୟାଦି । କିନ୍ତୁ ପ୍ରଧାନ ଚରିତ୍ରଗୁଡ଼ିକରେ ପ୍ରାୟ ଅଳ୍ପାଧିକ ପରିମାଣରେ କୃତ୍ରିମତାର ଆଭାସ ରହିଅଛି ।

ଆମ୍ଭେମାନେ ପୂର୍ବରୁ କହିଅଛୁଁ, ନାଟକୀୟ ଚରିତ୍ରଗୁଡ଼ିକ ବିଶ୍ଳେଷଣ କରି ଦେଖାଇବାର ସ୍ଥାନ ଆମ୍ଭମାନଙ୍କର ବର୍ତ୍ତମାନ ନାହିଁ । ସ୍ଥୂଳରେ ପ୍ରଧାନ କଥା ଗୁଡ଼ିକ ଦେଖାଇଲୁଁ । ମୂଳ ବିଷୟରେ ମତର ଐକ୍ୟ ଅଛି ବୋଲି ଏବଂ ରାମଶଙ୍କର ବାବୁଙ୍କ ଲେଖନୀରୁ ଆମ୍ଭେମାନେ ଉଚ୍ଚତର ଚିତ୍ର ପ୍ରତ୍ୟାଶା କରୁଁ ବୋଲି ଏତେ କଥା କହିଲୁଁ । ନତୁବା ଦୁଇଗୋଟି ପଂକ୍ତିରେ ବକ୍ତବ୍ୟ ଶେଷ କରି ପାରିଥାନ୍ତୁ । ଆଶା କରୁଁ ଗ୍ରନ୍ଥକାର ମହାଶୟ ସ୍ଥିରଚିତ୍ତରେ ଆମ୍ଭମାନଙ୍କ ଉକ୍ତିଗୁଡ଼ିକ ବିଚାର କରି ଦେଖିବେ ।

ନାଟକର ଭାଷା ସମ୍ବନ୍ଧରେ ବକ୍ତବ୍ୟ ଏହି ଯେ ଅନେକ ସ୍ଥଳରେ ବ୍ୟକ୍ତି ଓ ବିଷୟ ଅନୁସାରେ ଭାଷାର ସମତା ରକ୍ଷିତ ହୋଇ ପାରି ନାହିଁ । ଆଉ ଓଡ଼ିଆ ଭାଷାର ରୀତି ପ୍ରତି ମଧ୍ୟ ସମୁଚିତ ଦୃଷ୍ଟି ଦିଆ ଯାଇ ନାହିଁ । କେଳା ମୁହଁରେ 'ଏହି ହେବାନଟା' ଠିକ୍ ହେଲା କି ? ସାଧାରଣ ଲୋକେ 'ଦଅନ' ବା 'ଦୁଅନ' କହନ୍ତି । ବଢ଼େଇ ମୁହଁରେ 'ସଭାରେ ବସି ବସି ସଙ୍ଗ ହୋଇ ଖାଇବା' ଅପେକ୍ଷା 'ଏକା ସାଙ୍ଗରେ' ଭଲ ନୁହେଁ କି ? ଏହିପରି ଅନେକ ସ୍ଥଳ ଅଛି । 'ସେ କି ବୁଝିଛନ୍ତି' 'ମୁଁ କି କହିବି' 'ଚାର ଘରକୁ', 'ବିଦ୍ୟାଳୟର କଥା ଶୁଣି', 'ସ୍ତ୍ରୀଲୋକ' 'ସଙ୍ଗ ହୋଇ ବୁଲିବାକୁ ଦେଖିଛି', ଇତ୍ୟାଦି ଠିକ୍ ଓଡ଼ିଆ ହେଲା କି ? ଅଧିକ ଦୃଷ୍ଟାନ୍ତ ଦେଖାଇବାର ପ୍ରୟୋଜନ ନାହିଁ । ଏହା ରାମଶଙ୍କର ବାବୁ କାହିଁକି, ଦୁଃଖର କଥା, ଆଜି କାଲି ଅନେକ ଓଡ଼ିଆ ଲେଖକଙ୍କ ଦୃଷ୍ଟିରେ ଏସବୁ ଦୋଷ ପଡ଼ିବାକୁ ନାହିଁ ।

୩ । ଜନନୀ-ବିୟୋଗ—ଶ୍ରୀ ଉଦୟନାଥ ମିଶ୍ର ପ୍ରଣୀତ । ଲେଖକଙ୍କର ମାତୃଭକ୍ତି ପ୍ରଶଂସନୀୟ ଏବଂ ରଚନାରେ ନବୀନ ଲେଖକଙ୍କ ପକ୍ଷରେ ପ୍ରଶଂସାର କଥା ମଧ୍ୟ ଅନେକ ଅଛି ।

୪ । ପୁରୀ ରଥୋତ୍ସବ—ଶ୍ରୀ ଯୋଗେନ୍ଦ୍ର ମିଶ୍ର କାବ୍ୟବିଶାରଦଙ୍କ କର୍ତ୍ତୃକ ବିରଚିତ । ମୂଲ୍ୟ ଏକ ଅଣା । ପଦ୍ୟରେ ବିଗତ ବର୍ଷର ରଥଯାତ୍ରା ବର୍ଣ୍ଣିତ । ବ୍ୟକ୍ତିଗତ ସ୍ତୁତି ମଧ୍ୟ ଯଥେଷ୍ଟ ।

୫ । ଉପାସନା ତତ୍ତ୍ୱଲେଶ—ଶ୍ରୀ ଭବଗ୍ରାହୀ ଦାସଙ୍କଦ୍ୱାରା ରଚିତ । ମୂଲ୍ୟ ଦୁଇ ପଇସା । ରଚନା ସରଳ ଓ ସାଧାରଣଙ୍କ ପକ୍ଷରେ ଉପଯୋଗୀ ହୋଇଅଛି ।

୬ । ପଦ୍ୟାମୃତ—ଶ୍ରୀ ରଘୁନାଥ ପ୍ରଧାନଙ୍କଦ୍ୱାରା ବିରଚିତ । ମୂଲ୍ୟ ଏକ ଅଣା । ପାଞ୍ଚୋଟି ଭିନ୍ନ ଭିନ୍ନ ପଦ୍ୟ ଅଛି । ରଚନା ସରଳ । ବିଭୁପ୍ରେମ ଛଡ଼ା ଅପର ଗୋଟି ପଦ୍ୟରେ ଲେଖକ ସମାଜର ଅନେକ କୁପଥ ଓ କୁସଂସ୍କାର ଉପରେ ତୀବ୍ର କଟାକ୍ଷପାତ କରିଅଛନ୍ତି । ଦୁଃଖର ବିଷୟ, ଆଜି କାଲି ଅନେକେ ସେସବୁ ଦେଖି ସୁଦ୍ଧା ଦେଖୁ ନାହାନ୍ତି । ଯେଉଁମାନେ ସମାଜର ଦୃଷ୍ଟି ସେଣିକି ଆକର୍ଷଣ କରୁଅଛନ୍ତି, ସେମାନେ ଧନ୍ୟବାଦାର୍ହ ।

୭ । ଚନ୍ଦନଚମ୍ପୂ କାବ୍ୟମ୍—ଶ୍ରୀ ଲୋକନାଥ ମହାପାତ୍ର କାବ୍ୟତୀର୍ଥଙ୍କଦ୍ୱାରା ବିରଚିତ । ମୂଲ୍ୟ ଦୁଇ ଅଣା । ଲେଖକଙ୍କର ସଂସ୍କୃତରେ ଗଦ୍ୟ ପଦ୍ୟ ରଚନା କରିବାର ଶକ୍ତି ଥିବାର ବେଶ୍ ପରିଚୟ ମିଳୁଅଛି ।

୮ । ଉତ୍କଳ ସମ୍ମିଳନୀ ସଭାର କାର୍ଯ୍ୟ ବିବରଣ । ଏଥିରେ ସମ୍ମିଳନୀର ସୂଚନା, ତାହାର ଉଦ୍ଦେଶ୍ୟ ବିଶଦରୂପେ ବର୍ଣ୍ଣିତ ହୋଇଅଛି ଏବଂ ସମ୍ମିଳନୀର ପ୍ରଥମ ଅଧିବେଶନରେ ସଭାପତି ମହୋଦୟଙ୍କ ବକ୍ତୃତା ଓ ନିର୍ଦ୍ଧାରିତ ପ୍ରସ୍ତାବସମୂହ ଏବଂ ତଦନୁକୂଳ କେତେକ ବକ୍ତାର ମର୍ମ ପ୍ରଦତ୍ତ ହୋଇଅଛି । ତଥାପି ପୁସ୍ତକ ଖଣ୍ଡି ପୂର୍ଣ୍ଣାଙ୍ଗ ହୋଇ ନାହିଁ । କାରଣ, ଏଥିରେ ସମ୍ମିଳନୀସଂପୃକ୍ତ ପ୍ରଦର୍ଶନୀର କୌଣସି ବିବରଣ ନାହିଁ । ଶୁଣିଅଛୁଁ, ତାହା ସ୍ୱତନ୍ତ୍ର ପୁସ୍ତକାକାରରେ ଶୀଘ୍ର ପ୍ରକାଶିତ ହେବ । ଯାହା ହେଉ ପ୍ରକାଶିତ କାର୍ଯ୍ୟବିବରଣ ସମଗ୍ର ଉତ୍କଳଖଣ୍ଡରେ ପ୍ରଚାରିତ ହେବା ବିଷୟରେ ଯଥେଷ୍ଟ ଆୟୋଜନ ଲାଗିଅଛି । ସଭାପତିଙ୍କ ବକ୍ତୃତାଟି ବିଶେଷ ଭାବରେ ମନନଯୋଗ୍ୟ ।

ସ୍ଥାନାଭାବବଶତଃ କେତେକ ଖଣ୍ଡି ପୁସ୍ତକର ସମାଲୋଚନା ଏଥର ଦିଆ ଯାଇ ପାରିଲା ନାହିଁ । ସଂ:

## ମୂଲ୍ୟପ୍ରାପ୍ତି ।

### ରାଜସଂସ୍କରଣ

୧୯୦୩

ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ବୋଷ — ଅଲଣ୍ଡ — ଟ ୫୲
" ବଳଭଦ୍ର ଦେବ — ବାମଣ୍ଡା — ଟ ୫୲
" ବିକ୍ରମଦେବ ବର୍ମା — ଉତ୍କଳଗାପଟନ — ଟ ୫୲

୧୯୦୪

ଶ୍ରୀଯୁକ୍ତ ରାଜାସାହେବ — ଗଡ଼ଜେଓମୁଣ୍ଡି — ଟ ୫୦୲
" ବଳଭଦ୍ର ଦେବ — ବାମଣ୍ଡା — ଟ ୫୲
" ବିକ୍ରମ ଦେବ ବର୍ମା — ଉତ୍କଳଗାପଟନ — ଟ ୫୲
" ଲକ୍ଷ୍ମୀନାରାୟଣ ପଟ୍ଟନାୟକ — ବରଗଡ଼ — ଟ ୧୦୲

### ସାଧାରଣ ସଂସ୍କରଣ ।

୧୯୦୩

ଶ୍ରୀଯୁକ୍ତ ଯୋଗେଶଚନ୍ଦ୍ର ଦାସ ବାମଣ୍ଡା ଟ ୨୲
" ଆର୍ତ୍ତତ୍ରାଣ ମିଶ୍ର ମଉଦା ଟ ୨୲
" ଶ୍ରୀରାମ ମଲ୍ଲିକ, ବଲାଙ୍ଗିର ଟ ୨୲
" ଦ୍ୱାରକାନାଥ ପଣ୍ଡା ସୋନପୁର ଟ ୨୲
" ଅନନ୍ତରାମ ପାଣ୍ଡେ ରାମୁଗଡ଼ ଟ ୨୲

୧୯୦୪

ଶ୍ରୀଯୁକ୍ତ ଯୋଗେଶଚନ୍ଦ୍ର ଦାସ ବାମଣ୍ଡା ଟ ୨୲
" ସୁଦାମଚରଣ ନାୟକ କଟକ ଟ ୨୲
ଶ୍ରୀମତୀ ନଗେନ୍ଦ୍ରବାଲା ସରସ୍ୱତୀ ଜାମାଲପୁର ଟ ୨୲
ଶ୍ରୀଯୁକ୍ତ ନରସିଂହଚରଣ ଦାସ ବାରିପଦା ଟ ୧୲
" ମଦନମୋହନ ମହାନ୍ତି " ଟ ୧୲
" ଧର୍ମାନନ୍ଦ ପଟ୍ଟନାୟକ କଟକ ଟ ୧୲
" ଦଧିବାମନ ଦାସ " ଟ ୦୪
" ଚନ୍ଦ୍ରମଣି ପଣ୍ଡା " ଟ ୧୲
" ନିଙ୍ଗରାଜ ଗୁରୁ ସମ୍ବଲା ଟ ୨୲
" ବଂଶୀଧର ବେହେରା ଦେଗାଁ ଟ ୨୲
" ଧୋବାଇ ଭୋଇ ଅଗଲପୁର ଟ ୨୲
" ମାର୍କଣ୍ଡ ବେହେରା ଲୁଇସିଙ୍ଗା ଟ ୨୲
" ଜନାର୍ଦ୍ଦନ ପାଢ଼ୀ ପିପର୍ଡ଼ୀ ଟ ୨୲
" ଅଗଣୁ ସେଠ ସାଲେଭଟା ଟ ୨୲
" ନିରଞ୍ଜନ ପଣ୍ଡା ଯୋଗିସରଡ଼ା ଟ ୨୲
" ନିତ୍ୟାନନ୍ଦ ପଣ୍ଡା ବଲାଇସରଡ଼ା ଟ ୨୲

ଶ୍ରୀଯୁକ୍ତ ଦାଶରଥି ଗୁରୁ ତୋଡ଼ନା ଟ ୨୲
" ଯଦୁନାଥ ହୋତା ଉରମୁନା ଟ ୨୲
" ବୈଦ୍ୟନାଥ ଚନ୍ଦ ଚନ୍ଦନଭାଟି ଟ ୨୲
" କୈଳାସ ପଣ୍ଡିଆ ମହମୁଣ୍ଡା ଟ ୨୲
" ହରିହର ପଧାନ ଜରସିଙ୍ଗା ଟ ୨୲
" ଲକ୍ଷ୍ମୀଧର ଚୌଧୁରୀ ଭଇସା ଟ ୨୲
" ଧରଣୀଧର ସାହୁ ପାଟନା ଟ ୨୲
" ପରୀକ୍ଷିତ ସରାପ ଚଙ୍ଗମୁଣ୍ଡା ଟ ୨୲
" ଶ୍ରୀବତ୍ସ ମିଶ୍ର ସିନ୍ଦେକେଲା ଟ ୨୲
" ଦୁର୍ଗାଚରଣ ମହାନ୍ତି ଅଠମଲ୍ଲିକ ଟ ୨୲
" ସମ୍ପାଦକ ଜ୍ଞାନବର୍ଦ୍ଧିନୀ
ନାଇବ୍ରେରୀ ବରଗଡ଼ ଟ ୧୲
" ଶ୍ରୀରାମ ମଲ୍ଲିକ ବଲାଙ୍ଗିର ଟ ୨୲
" ରାଧାକୃଷ୍ଣ ପଟ୍ଟନାୟକ
ପୁରୁଷୋତ୍ତମପୁର ଟ ୨୲
" ଯଦୁମଣି ସେନ ହବିରପୁର ଟ ୧୲
" ଲକ୍ଷ୍ମୀନାରାୟଣ ପଟ୍ଟନାୟକ
ବ୍ରହ୍ମପୁର ଟ ୧୲
" ନାଲାଦ୍ରି ପାଟଯୋଶୀ ସମ୍ବଲପୁର ଟ ୧୲

୧୯୦୫

ଅଗ୍ରିମ

ଶ୍ରୀଯୁକ୍ତ ଦୁର୍ଗାଚରଣ ମହାନ୍ତି ଅଠମଲ୍ଲିକ ଟ ୨୲

—୦୫୫୦—

# ବିଜ୍ଞାପନ ।

## ଉତ୍କଳ ପାରିବାରିକ ଫଣ୍ଡ ।

ଏହି ଫଣ୍ଡ ମଧ୍ୟମ ଶ୍ରେଣୀର ଲୋକ ଓ ଦୀନମାନଙ୍କ ନିମନ୍ତେ ସ୍ଥାପନ କରାଯାଇଅଛି । ଉକ୍ତ ଫଣ୍ଡରେ ଅନେକ ଜମିଦାର, ଧନୀ ରଜାମାନେ ଯୋଗ ଦେଇଥିବାରୁ ଫଣ୍ଡର ସକଳ କାର୍ଯ୍ୟ ଉକ୍ତ ମହାଜନମାନଙ୍କ ଦୃଷ୍ଟିଗୋଚରରେ ନିର୍ବାହ କରାଯିବ । ପ୍ରତିମାସ ନ ୧ ମ୍ବର ଗ୍ରାହକର ଟ ୧୯ ନ ୨ ମ୍ବର ଗ୍ରାହକର ଟ ୦ ୫ ଏହି କ୍ରମରେ ୬୦ ମାସର ଚାନ୍ଦା ଦେଲାଉତ୍ତାରୁ ଗ୍ରାହକର ମରଣାନନ୍ତର ତାହାଙ୍କର ଉତ୍ତରପଟ୍ଟାଦାର ଅଧୀନରେ ପ୍ରାପ୍ୟବିଭାଗ ଟଙ୍କା ଫଣ୍ଡରୁ ଦିଆଯିବ । ଉତ୍କଳଦେଶର ପ୍ରତି ନଗର ଓ ପ୍ରଧାନ ପ୍ରଧାନ ଗ୍ରାମମାନଙ୍କରେ ଫଣ୍ଡ ସମ୍ବନ୍ଧ ନିୟମମାନଙ୍କୁ ସୁଗମରୂପେ ବୋଧ କରାଇ ଗ୍ରାହକମାନଙ୍କ ଅଯୋଜନ କରିବା ନିମନ୍ତେ ଏଜେଣ୍ଟମାନେ ଅବଶ୍ୟକ । ଉକ୍ତ ଏଜେଣ୍ଟମାନଙ୍କ ଉତ୍କୃଷ୍ଟ କମିଶନ କିମ୍ବା ବେତନ ଦେବାର ନିଶ୍ଚିତ ହୋଇଅଛି । ଏଜେଣ୍ଟପଦରେ ନିଯୁକ୍ତ ହେବାକୁ ଇଚ୍ଛା କରିବା ବ୍ୟକ୍ତିମାନେ ନିମ୍ନଲିଖିତ ଠିକଣାକୁ ଅଧଅଣା ଡାକଟିକଟ ସହିତ ମେନେଜରଙ୍କ ନାମରେ ଦରଖାସ୍ତ କରି ଲେଖିଲେ ସେମାନଙ୍କୁ ନିଯୁକ୍ତି ଆଦେଶ ଓ ଫଣ୍ଡର ନିୟମାବଳୀ ପୁସ୍ତକ ପଠାଯିବ । ପ୍ରକୃତକାର୍ଯ୍ୟରେ ଯେଉଁମାନେ ମନୋଯୋଗ କରି କାର୍ଯ୍ୟର ଉନ୍ନତି ଦେଖାଇ ପାରିବେ ସେମାନଙ୍କୁ ୧୦ ଟଙ୍କାଠାରୁ ୧୦୦ ଟଙ୍କା ପର୍ଯ୍ୟନ୍ତ କମିଶନ ଲାଭ ହୋଇ ପାରିବ ।

ଭଙ୍ଗାଭଟ୍ଲା ଗୁନ୍ନୟ୍ୟ ଶାସ୍ତ୍ରୀ
ମେନେଜର, ଉତ୍କଳ ପାରିବାରିକ ଫଣ୍ଡ ।
BERHAMPUR, GANJAM.

---

## ବିଜ୍ଞାପନ

ଅସ୍ମମାନଙ୍କର ଏଠାରେ ନାନା ପ୍ରକାରର ପୁସ୍ତକମାନ ବିକ୍ରୟାର୍ଥ ପ୍ରସ୍ତୁତ ଅଛି । କେହି ମୋଫସଲରୁ ଗ୍ରାହକ କୌଣସି ପ୍ରକାର ପୁସ୍ତକ ନିମନ୍ତେ ପତ୍ର ଲେଖିଲେ ଭି: ପି: ଦ୍ୱାରା ପଠାଇବୁଁ ।

ଶ୍ରୀ ଜନାର୍ଦ୍ଦନ ସାହୁ
ଉତ୍କଳ-ସାହିତ୍ୟ ପ୍ରେସ, ବାଲୁବଜାର, କଟକ ।

---

## କୁଷ୍ଠରୋଗୀ ! ହତାଶ ହୁଅ ନାହିଁ !

ଯେବେ ଏହି ଦୁରାରୋଗ୍ୟ ଓ ଅସାଧ୍ୟ କୁଷ୍ଠରୋଗକବଳରୁ ମୁକ୍ତ ହୋଇବାର ଆଶା ଥାଏ, ଯେବେ ସୁସ୍ଥ ଶରୀରରେ ଦୀର୍ଘକାଳ ବଞ୍ଚିବାର ଆକାଂକ୍ଷା ଥାଏ; ଯେବେ ବହୁ ଚିକିତ୍ସା କରାଇ ଓ ବହୁ ଔଷଧ ସେବନ କରି ମଧ୍ୟ ନିଷ୍ଫଳ ହୋଇଥାଅ, ଯେବେ ଡାକ୍ତର କବିରାଜଙ୍କର ଚିକିତ୍ସାର ପରିତ୍ୟକ୍ତ ହୋଇଥାଅ, ଯେବେ ସମ୍ପୂର୍ଣ୍ଣରୂପେ ଆରୋଗ୍ୟ ହେବାର ଏକାନ୍ତ ବାସନା ଥାଏ, ତେବେ ଏହି ବିଜ୍ଞାପନକୁ ଅତିରଞ୍ଜିତ ବା ଆଡ଼ମ୍ବରପୂର୍ଣ୍ଣ ମନେ ନ କରି ଶୀଘ୍ର ଆମ୍ଭର ଔଷଧ ସେବନ କର । ହସ୍ତ ପଦର ଅଙ୍ଗୁଳ ବକ୍ର ବା ଛିନ୍ନ, ନାସିକା, କର୍ଣ୍ଣ ବିକୃତ, ସର୍ବାଙ୍ଗ ସ୍ପର୍ଶରହିତ ଓ ଘାଆମାନ ହୋଇଥିଲେ ମଧ୍ୟ ସମ୍ପୂର୍ଣ୍ଣରୂପେ ଆରୋଗ୍ୟ ଲାଭ କରିବ, ସନ୍ଦେହ ନାହିଁ । ଦୁଇପଇସିଆ ଟିକେଟ ଦେଇ ନିମ୍ନଲିଖିତ ଠିକଣାକୁ ପତ୍ର ଲେଖିଲେ ଅବଶ୍ୟକ ସମସ୍ତ ବିଷୟ ବୁଝି ପାରିବ ।—

ଭୁବନପୁର } ଶ୍ରୀ ବାଳକୃଷ୍ଣ ଦାସ
କଟକ } କବିରାଜ ।

## ଆୟୁର୍ବେଦୀୟ ଔଷଧାଳୟ ।

**କବିରାଜ ଶ୍ରୀ ସାରଦାପ୍ରସାଦ କବିରଞ୍ଜନ —ବାଲୁବଜାର, କଟକ ।**

ଏହି ସ୍ଥାନରେ ସୁଲଭ ମୂଲ୍ୟରେ ବିଶୁଦ୍ଧ ମକରଧ୍ୱଜ, ସର୍ବ ପ୍ରକାର ତୈଳ, ଘୃତ, ମୋଦକ, ଚୂର୍ଣ୍ଣ, ବଟିକା ଓ ଦେଶୀୟ ସାଲସା, ସୁନା, ରୂପା, ଲୌହ, ଅଭ୍ର, ମୁକ୍ତା, ବଙ୍ଗ ଭସ୍ମ ବିକ୍ରୟାର୍ଥ ସର୍ବଦା ପ୍ରସ୍ତୁତ ଥାଏ । ଦୁଃସାଧ୍ୟ ଓ କଠିନ ରୋଗଗ୍ରସ୍ତ ବ୍ୟକ୍ତିମାନଙ୍କର ଅବସ୍ଥାସହ ପତ୍ର ଲେଖିଲେ ଅତି ଯତ୍ନପୂର୍ବକ ବ୍ୟବସ୍ଥାସହ ଭି: ପି: ଡାକରେ ଔଷଧ ପଠାଯାଏ । ଦୁଇ ପଇସାର ଡାକ ଟିକଟ ପଠାଇଲେ ବିନା ମୂଲ୍ୟରେ ଔଷଧ ତାଲିକା-ପୁସ୍ତକ ପ୍ରେରିତ ହୁଏ ।

# କବିରାଜ

**ଶ୍ରୀ ଜଗନ୍ନାଥ କର କବିରତ୍ନଙ୍କର**
**ଅନ୍ନପୂର୍ଣ୍ଣା**
**ଆୟୁର୍ବେଦୀୟ-ଔଷଧାଳୟ, ଚୌଧୁରୀବଜାର**
**କଟକ ।**

### ପ୍ରଦରାରି ବଟିକା ।

(ସ୍ତ୍ରୀ ରୋଗର ଅବ୍ୟର୍ଥ ମହୌଷଧ)

ବାଧକ, ଶ୍ୱେତ ଓ ରକ୍ତ ପ୍ରଦର ପ୍ରଭୃତି ଯାବତୀୟ କଷ୍ଟକର ଓ ଦୁଃସାଧ୍ୟ ସ୍ତ୍ରୀରୋଗ ପ୍ରତି ଆମ୍ଭ ପ୍ରଦରାରି ବଟିକା ଅବ୍ୟର୍ଥ ମହୌଷଧ । ଋତୁଦୋଷର ଧନ୍ୱନ୍ତରି, ସ୍ତ୍ରୀମାନଙ୍କର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ରକ୍ଷାର ଏପରି ସହଜ ଅଥଚ ଅମୋଘ ଔଷଧ ଆଉ ଦେଖା ଯାଏ ନାହିଁ । ମୂଲ୍ୟ ପ୍ରତି ଡବା ଟ ୧ ୮ ମାତ୍ର ।

### ଚ୍ୟବନପ୍ରାଶ ।

ସର୍ବଜନ-ବିଦିତ ପରମ ରସାୟନ ଏହି ମହୌଷଧ ସେବନ କଲେ ସର୍ବପ୍ରକାର କାସ ଶ୍ୱାସ ଓ ସ୍ୱରଭଙ୍ଗ ନିଶ୍ଚୟ ପ୍ରଶମିତ ହୁଏ । ଦୁର୍ବଳ ଓ କ୍ଷୀଣଧାତୁ ପକ୍ଷରେ ମହର୍ଷି-ପ୍ରବର୍ତ୍ତିତ ଚ୍ୟବନପ୍ରାଶ ପରି ପୁଷ୍ଟିକର ରସାୟନ ଔଷଧ ଏପର୍ଯ୍ୟନ୍ତ ପୃଥିବୀରେ ଆବିଷ୍କୃତ ହୋଇ ନାହିଁ । ମୂଲ୍ୟ ଏକ ମାସ ସେବନୋପଯୋଗୀ ଟ ୨ ୮ ଡାକମାସୁଲ ସ୍ୱତନ୍ତ୍ର ।

### ପ୍ରମେହାନ୍ତକ ବଟିକା ।

ଅତ୍ୟୁତ୍କୃଷ୍ଟ ମହୌଷଧ; ଏହା ସେବନ କଲେ କୋଡ଼ିଏ ପ୍ରକାର ପ୍ରମେହ ଓ ସପୂୟ ଧାତୁନିର୍ଗମ, ଖଡ଼ିଜଳବତ୍ ସ୍ରାବ, ମୂତ୍ରାଶୟ ଓ ମୂତ୍ରନଳୀର ଜ୍ୱାଳା, ସ୍ତ୍ରୀବେଶ୍ୟାଦିକୃତ ବେଦନା, ଅଣ୍ଡକୋଷରେ ଦାରୁଣ ପରି ଯନ୍ତ୍ରଣା, ଜ୍ୱର, ତୃଷ୍ଣା, ଅମ୍ଳୋଦ୍ଗାର ଅଜୀର୍ଣ୍ଣ ଓ ଅରୁଚି, ମଳଭେଦ ବା କୋଷ୍ଠବଦ୍ଧ ହେତୁ ମଳମୂତ୍ର ଓ ବାୟୁର ଅବରୋଧ, ଦୁର୍ବଳତା, ସ୍ୱପ୍ନଦୋଷ, ମୂତ୍ରବେଗ, ଅନିଦ୍ରା, ସର୍ବଶରୀରର ଅବସାଦ ଓ ମସ୍ତିଷ୍କର ଦୌର୍ବଲ୍ୟାଦି ପ୍ରମେହ-ଜନିତ ଯାବତୀୟ ଉପଦ୍ରବ ନିବାରିତ ହୁଏ । ଏହା ଔପସର୍ଗିକ ମେହର ମହୌଷଧ ।

୩୦ ବଟିକାର ମୂଲ୍ୟ ଟ ୧୮

# ବିଜ୍ଞାପନ ।

——:o:——

ଶ୍ରୀ ମଧୁସୂଦନ ରାଓ ପ୍ରଣୀତ ଛନ୍ଦପଦ୍ୟ ପୁସ୍ତକ ।

"କୁସୁମାଞ୍ଜଳି"—ମୂଲ୍ୟ ଟ ୦। ଏହି କବିତା ପୁସ୍ତକର 'ଋଷି ପ୍ରାଣେ' ପ୍ରଭୃତି କେତୋଟି କବିତା ଶ୍ରୀ ରବୀନ୍ଦ୍ରନାଥ ଠାକୁର ପ୍ରଭୃତି କେତେକ ବଙ୍ଗୀୟ ଶ୍ରେଷ୍ଠ କବିଙ୍କ କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ଉତ୍କଳ ଗାଥା"—ମୂଲ୍ୟ ଟ ୦/ କବିବର ରାଧାନାଥ ରାୟ ପ୍ରଭୃତି କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ବସନ୍ତ ଗାଥା"—ମୂଲ୍ୟ ଟ ୦୶ ଉତ୍କଳର ସମସ୍ତ ସୁଲେଖକ କର୍ତ୍ତୃକ ପ୍ରଶଂସିତ ।

"ସଙ୍ଗୀତମାଳା"—ମୂଲ୍ୟ ଟ ୦। ଏଥିରେ ବହୁପ୍ରଶଂସିତ ଏକଶତ ଭକ୍ତିରସର ସଙ୍ଗୀତ ଅଛି ।

"ଅଙ୍କପ୍ରଶ୍ନ ସମାଧାନ"—ମୂଲ୍ୟ ଟ ୦୳ ଅଙ୍କ ପୁସ୍ତକରେ ଥିବା କଠିନ ପ୍ରଶ୍ନମାନ ଏଥିରେ କଷା ଯାଇଅଛି ।

☞ ଏହି ୫ ଖଣ୍ଡ ପୁସ୍ତକର ମୂଲ୍ୟ ମୋଟରେ ଟ ୧।, କିନ୍ତୁ ଏ ପାଞ୍ଚ ଖଣ୍ଡଯାକ ନେଲେ ଟ ୦୴୶ ମୂଲ୍ୟରେ ଦିଆଯିବ । ମଫସଲବାସିମାନଙ୍କୁ ଡାକଖର୍ଚ୍ଚ ଟ ୦୶ ଅଧିକା ଦେବାକୁ ହେବ ।

ଶ୍ରୀ ପ୍ରଶାନ୍ତ ରାଓ
ନର୍ମାଲ ସ୍କୁଲ, କଟକ ।

---

ସଂସ୍କୃତ ମହାଭାରତର ଅବିକଳ ପଦ୍ୟାନୁବାଦ ରାଜା କୃଷ୍ଣ ସିଂହ କୃତ ମହାଭାରତ ଉତ୍ତମରୂପେ ସଂଶୋଧିତ ମୁଦ୍ରିତ ହୋଇ ନିମ୍ନଲିଖିତ ପର୍ବମାନ ଏ ପ୍ରେସରେ ବିକ୍ରୟାର୍ଥ ପ୍ରସ୍ତୁତ ଅଛି । ଅନ୍ୟାନ୍ୟ ପର୍ବମାନ ଯନ୍ତ୍ରସ୍ଥ । ଶୀଘ୍ର ପ୍ରକାଶିତ ହେବ ।

| | | | |
|---|---|---|---|
| ସଭାପର୍ବ | ଟ ୦୳୶ | କର୍ଣ୍ଣପର୍ବ | ଟ ୦ ୴ |
| ବିରାଟପର୍ବ | ଟ ୦ ୳ | ଶଲ୍ୟାଦି ପର୍ବତ୍ରୟ ଏକତ୍ରେ | ଟ ୦ ୴ |
| ଉଦ୍ୟୋଗପର୍ବ | ଟ ୧ ୧ | | |

ଜଗଦୀଶ ପ୍ରେସ
କଟକ

ଶ୍ରୀ ଅଭିନ୍ନ ନାୟକ
ପ୍ରେସ ମେନେଜର

---

ଦାଦୁର ଅବ୍ୟର୍ଥ ମହୌଷଧ ।

ଏହା ସର୍ବପ୍ରକାର ଦାଦୁରୋଗର ଅବ୍ୟର୍ଥ ମହୌଷଧ । ଜ୍ୱାଳା ଯନ୍ତ୍ରଣା ନାହିଁ । ସହସ୍ର ସହସ୍ର ଲୋକ ଆରୋଗ୍ୟ ଲଭି ପ୍ରଶଂସା କରୁଅଛନ୍ତି ।

ମୂଲ୍ୟ ଏକ ଡବା ଟ ୦।୶ ତିନି ଡବା ଟ ୧ ୧ ଛ ଡବା ୧ ୴ ବାର ଡବା ଟ ୩ ୧

କାଛୁର ମହୌଷଧ ।

କାଛୁ, କୁଣ୍ଡିଆ, ନାନା ପ୍ରକାର ଚର୍ମରୋଗର ଔଷଧ । କୌଣସି ପ୍ରକାର ଯନ୍ତ୍ରଣା ହୁଏ ନାହିଁ, ଲଗାଇବାର ସୁନ୍ଦର ଉପାୟ ବ୍ୟବସ୍ଥାପତ୍ରରେ ବର୍ଣ୍ଣିତ ହୋଇଅଛି । ଉପରୋକ୍ତ ରୋଗ ସବୁରେ ଏ ଔଷଧ ଲଗାଇଲେ ଦୁଇ ଦିନ ମଧ୍ୟରେ ମନ୍ତ୍ରଶକ୍ତି ପ୍ରାୟ ରୋଗ ହଟିଯାଏ ।

ମୂଲ୍ୟ ଏକ ଡବା ଟ ୦ ୳ ତିନି ଡବା ଟ ୧।୶ ଛ ଡବା ଟ ୨ ୳ ବାର ଡବା ଟ ୪ ୧

ସମସ୍ତେ ନାମ, ଗ୍ରାମ, ଡାକଘର, ଜିଲ୍ଲା ଓ କେଉଁ ଔଷଧ କେତେ ଡବା ନେବେ ଭଲରୂପେ ପତ୍ରରେ ତାହା ଉଲ୍ଲେଖ କରି ଲେଖିବେ ।

ଏକମାତ୍ର ପ୍ରାପ୍ତିସ୍ଥାନ—
ଶ୍ରୀ ରାମତାରକ ସେନ
ଦେଶ ଉତ୍କଳ ପ୍ରେସ, ବାଲେଶ୍ୱର

୮ ମ ଭାଗ, ମାର୍ଗଶିର ୧୩୧୨ । ୮ମ ସଂଖ୍ୟା ।

# ଉତ୍କଳ-ସାହିତ୍ୟ

ମାସିକପତ୍ର ଓ ସମାଲୋଚନ ।

—:o:—

ଶ୍ରୀ ବିଶ୍ୱନାଥ କର ଦ୍ୱାରା ସମ୍ପାଦିତ ।

Ram Chundar Bebarta

—:o:—

THE UTKAL SAHITYA PRESS.
CUTTACK.
1904.

ବାର୍ଷିକ ମୂଲ୍ୟ ଡାକମାସୁଲ ସହିତ ଟ / ୧   ପ୍ରତି ସଂଖ୍ୟାର ମୂଲ୍ୟ ଟ ୦ ।/

## ସୂଚୀ ।








ଡାକ୍ତର ଜେମସ ସାହେବଙ୍କର ବିଶ୍ୱବିଖ୍ୟାତ ସେହି

# ଇଲେକ୍ଟ୍ରୋ-ସାଲସା ।

ଚିକିତ୍ସାଜଗତରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଅଛି ।

ରକ୍ତ ମାନବ ଦେହର ଜୀବନୀଶକ୍ତି । ଧାତୁଗତଶକ୍ତି ଜୀବନୀଶକ୍ତିର ମୂଳ । ପ୍ରତିଦିନ ନାନାପ୍ରକାରରେ ବିଶେଷତଃ ଆହାର ବିହାରରେ, ଅତ୍ୟାଚାର ଅନାଚାରରେ, ନିଶ୍ୱାସ ପ୍ରଶ୍ୱାସରେ ମାନବଦେହରେ ବିଷ ପ୍ରବେଶ କରୁଥାଏ । ଏହି ବିଷ କ୍ରମେ କ୍ରମେ ରକ୍ତ ସହିତ ମିଶ୍ରିତ ହୋଇ ଦେହାଭ୍ୟନ୍ତରସ୍ଥ ଧାତୁଗତଶକ୍ତି ହ୍ରାସ କରେ ଏବଂ ପରିଣାମରେ ସାଧାରଣତଃ ଶୁକ୍ର ଓ ଶୋଣିତ ସମ୍ବନ୍ଧୀୟ ପୀଡ଼ା ଉତ୍ପନ୍ନ ହୁଏ । ଯେଉଁ ଔଷଧ ଏହି ରକ୍ତଦୁଷ୍ଟିର ବିଷ ନଷ୍ଟ କରି ହ୍ରାସପ୍ରାପ୍ତ ବୈଦ୍ୟୁତିକ ଶକ୍ତିର ସାମଞ୍ଜସ୍ୟ ସମ୍ପୂର୍ଣ୍ଣରୂପ ରକ୍ଷା କରିପାରେ, ସେହି ପ୍ରକୃତ ଔଷଧ; ଏହି—

"ଇଲେକ୍ଟ୍ରୋ-ସାଲସା" ତାହାର ଏକମାତ୍ର ଆଦର୍ଶ ।

---

ଏହା କଣ ? ଚିକିତ୍ସା-ବିଜ୍ଞାନ-ସମ୍ମତ ଶୁକ୍ର ଓ ଶୋଣିତର ଦୋଷ-ସଂଶୋଧକ ଏବଂ
ଧାତୁଗତଶକ୍ତିପ୍ରବର୍ଦ୍ଧକ କେତୋଟି ଦୁଷ୍ପ୍ରାପ୍ୟ କାର୍ଯ୍ୟକାରୀ ଉଦ୍ଭିଜ୍ଜରୁ—
ନିଉ ୟର୍କ ନଗରବାସୀ ଖ୍ୟାତନାମା ଡାକ୍ତର :—
ଜେମସ ମେଜର ଏମ. ଏ. ଏମ. ଡି

ମହୋଦୟଙ୍କର ଅନୁଷ୍ଠିତ,— ନୂତନ ରସାୟନିକ ପ୍ରକ୍ରିୟାରେ ବିନିଃସୃତ ନିର୍ଯ୍ୟାସ ।
ମାନବଦେହରେ ଏହାର କ୍ଷମତା ଅସୀମ, ଗୁଣ ଅନନ୍ତ, କ୍ରିୟା ସ୍ଥାୟୀ ।

ଏଥିରେ ଯେ କେତୋଟି କାର୍ଯ୍ୟକାରୀ ଭେଷଜ ପଦାର୍ଥ ଅଛି, ତାହା ଅନ୍ୟ କୌଣସି ଔଷଧରେ ନାହିଁ ଏବଂ ଏହି ଗବେଷଣାଲବ୍ଧ ମହାଗୁଣଶାଳୀ ଦୁଷ୍ପ୍ରାପ୍ୟ ଭେଷଜ ଏହାର ଏରୂପ ଅସାଧାରଣ ଗୁଣାବଳୀର ମୂଳକାରଣ ।

ଏଥିରେ କେଉଁ କେଉଁ ରୋଗ ଆରୋଗ୍ୟ ହୁଏ ? ସର୍ବପ୍ରକାର କାରଣଜାତ ଶୁକ୍ର ଓ ଶୋଣିତର ବିକୃତି, ସ୍ନାୟୁଦୌର୍ବଲ୍ୟ, ଦେହର ବିଭିନ୍ନ ଯନ୍ତ୍ରର କ୍ରିୟା-ଘଟିତ କ୍ଷୀଣତା, ଶୁକ୍ରମେହ, ଶୁକ୍ରତାରଲ୍ୟ, ନୂତନ ପୁରାତନ ମେହ, ପ୍ରମେହ, ସ୍ୱପ୍ନଧାତୁ ନିର୍ଗମ, ଅନିଚ୍ଛାରେ ବା ଅଳ୍ପ ଉତ୍ତେଜନାରେ ଶୁକ୍ରକ୍ଷରଣ, ସମ୍ପୂର୍ଣ୍ଣ ବା ଅଂଶିକ ପୁରୁଷତ୍ୱହୀନ, ପ୍ରସ୍ରାବରେ ଯନ୍ତ୍ରଣା, ଲୁଗାରେ ଦାଗଲଗା,

ସ୍ୱପ୍ନଦୋଷ, ଶୁକ୍ରରେ ସନ୍ତାନ ଉତ୍ପାଦିକା ଶକ୍ତିର ଅଭାବ, ମଳ ବା ମୂତ୍ରତ୍ୟାଗ ସମୟରେ ପ୍ରକାଶ୍ୟରେ ବା ଅଲକ୍ଷରେ ଶୁକ୍ରକ୍ଷରଣ, ମୂତ୍ରକୃଚ୍ଛ୍ରତା, ମୂତ୍ରମେହ୍ୟ ପ୍ରସ୍ରାବ, ଜନନେନ୍ଦ୍ରିୟର ଦୁର୍ବଳତା, ସ୍ମୃତିଶକ୍ତିର ବିଲୋପ, ମସ୍ତିଷ୍କ କ୍ଲାନ୍ତ, ଦୃଷ୍ଟିଶକ୍ତିର କ୍ଷୀଣତା, ଶିରଃଘୂର୍ଣ୍ଣନ, ଶ୍ରୋତ୍ରଶକ୍ତିର ବଧିରତା, ଶରୀର ଓ ମନର ଅବସାଦ, ଚିଡ଼ଚିଡ଼ା ସ୍ୱଭାବ, ଯୌବନୋଚିତ ସାମର୍ଥ୍ୟର ଅଭାବ, ନିର୍ଜନପ୍ରିୟତା, ହୃତ୍‌ପିଣ୍ଡର କଷ୍ଟଦାୟକ ସ୍ପନ୍ଦନ, ଅଧ୍ୟୟନରେ ବା ସାଂସାରିକ କାର୍ଯ୍ୟରେ ଅନିଚ୍ଛା ଓ ସାମର୍ଥ୍ୟହୀନତା, ଅକାରଣରେ ଉଦ୍‌ବେଗ, ଶୋଣିତର ସ୍ୱଳ୍ପତା, ପାରଦ ଓ ଉପଦଂଶାଦିଘଟିତ ଶୋଣିତ-ବିକୃତ, ବାତରକ୍ତ, ଆମବାତ, ଗଣ୍ଡମାଳ, ବାଗୀ, ଉପଦଂଶର ଘା, ନାକ ଓ ମୁଖର ଭିତରେ ଘା, ନାଲି ଘା, ଶୋଥ ହେବା, କାଛୁ କୁଣ୍ଡିଆ, ଭଗନ୍ଦର, କୁଷ୍ଠ ପ୍ରଭୃତି ନାନାପ୍ରକାର ଚର୍ମରୋଗ, ଶୁକ୍ର ବା ଶୋଣିତ ବିକାରଜ ଘଟିତ ସର୍ବପ୍ରକାର ଦୁର୍ଦମନୀୟ ବାତ, ଜଙ୍ଘ, ଜାନୁ, କଟି, ହସ୍ତ, ପଦ ଓ ହାଡ଼ଗଣ୍ଠିର ଗୁରୁତ୍ୱ; ବେଦନା, ଥକ୍ ଥକ୍ କରିବା, ମୋଡ଼ିହେବା, ଶରୀରର ନାନା ସ୍ଥାନରେ ବିବର୍ଣ୍ଣ ପ୍ରକୃତିର ପାଣ୍ଡୁ ବା ଉପଦଂଶାଦିର ଚିହ୍ନ ପ୍ରକାଶ, ହସ୍ତ ଓ ପଦ ତଳର ଚମଡ଼ା ଫାଟିବା, ଧଳା ବା କୁତୁସିତ ଦାଗ ଉଠିବା, ଧବଳ କୁଷ୍ଠାଦିର ପୂର୍ବଲକ୍ଷଣ, କୁଣ୍ଡାଇ ହୋଇ ହୋଇ ଫୁଲିଉଠିବା, ଚକ୍ଷୁରୁ ଜଳ ପଡ଼ିବା, ଅକାଳବାର୍ଦ୍ଧକ୍ୟ, ମୁଣ୍ଡରୁ ବାଳ ଝଡ଼ିପଡ଼ିବା, କେଶର ଅକାଳପକ୍ୱତା, ଶରୀରର ସାଧାରଣ ଦୌର୍ବଲ୍ୟ ଇତ୍ୟାଦି ଶୁକ୍ର ଓ ଶୋଣିତ ସଂକ୍ରାନ୍ତ ସର୍ବପ୍ରକାର ବ୍ୟାଧି ଓ ତାହାର ସହସ୍ରାଧିକ ଉତ୍କଟ ଉପସର୍ଗ ସମୂଳରେ ବିନଷ୍ଟ କରି ସ୍ୱାସ୍ଥ୍ୟ ବୃଦ୍ଧି କରିବାକୁ, କୋଷ୍ଠ ପରିଷ୍କାର ରଖିବାକୁ ଏବଂ ଦୁର୍ବଳ ଓ ଜରାଜୀର୍ଣ୍ଣ ଦେହ ସବଳ ଓ କାର୍ଯ୍ୟକ୍ଷମ କରିବାକୁ ଏହା ଅତୁଳନୀୟ; ସେଥିପାଇଁ—

## ଡାକ୍ତର ମେକରଙ୍କର ଇଲେକଟ୍ରୋ-ସାଲସା

ଆଜି ଭାରତର ସର୍ବତ୍ର ସମାଦୃତ ଓ ପରିବ୍ୟାପ୍ତ । ପ୍ରକୃତ ଗୁଣ ଅଛି ବୋଲି ଏହାର ବିକ୍ରୟ ଏତେ ଅଧିକ—ବିକ୍ରୟବାହୁଲ୍ୟ-ହେତୁରୁ ଆଜି ବହୁ ନକଲର ସୃଷ୍ଟି ! କ୍ରେତାଗଣ ସାବଧାନ !!

"ଇଲେକ୍‌ଟ୍ରୋ-ସାଲସା"—ସକଳ ଦେଶର ସକଳ ଋତୁରେ ଉଲ୍ଲିଖିତ ରୋଗସମୂହର ସକଳ ଅବସ୍ଥାରେ ଅବାଳ-ବୃଦ୍ଧବନିତା, ରୋଗୀ, ଅରୋଗୀ ସମସ୍ତେ ନିର୍ବିଘ୍ନରେ ସେବନ କରି ପାରନ୍ତି ।

ଇଲେକ୍‌ଟ୍ରୋ-ସାଲସାର ମୂଲ୍ୟାଦି,—ସର୍ବପ୍ରକାର ଭାଷାରେ ବ୍ୟବସ୍ଥାପତ୍ରସମ୍ବଳିତ ୮ ଦିନ ସେବନୋପଯୋଗୀ ପ୍ରତ୍ୟେକ ଶିଶିର ମୂଲ୍ୟ ଟ ୨ ୧, ୩ ଶିଶି ମୂଲ୍ୟ ଟ ୫୳, ୬ ଶିଶି ଟ ୧୦୳, ଡଜନ ଟ ୨୦ ୧, ପ୍ୟାକିଂ ଓ ଡାକମାସୁଲ ଇତ୍ୟାଦି ଯଥାକ୍ରମେ ଟ ୦ ୳, ଟ ୦ ୳୶, ଟ ୧, ଟ ୧୳ ।

ଅସଂଖ୍ୟ, ଅଯାଚିତ ପ୍ରଶଂସାପତ୍ର ଏହାର ଅବ୍ୟର୍ଥତା, ଅଲୌକିକତା ଓ ଅକୃତ୍ରିମତାର ଜ୍ୱଳନ୍ତ ପ୍ରମାଣ, ଜ୍ୱଳନ୍ତ ସାକ୍ଷ ଦେଉଅଛି ।

୧ । ପାଟଣାର ମହାରାଜା ଦଳଗଞ୍ଜନ ସିଂହ ମହୋଦୟ ଲେଖିଅଛନ୍ତି:—

"ମହାଶୟଗଣ ! ମୋହର ପରିବାରସ୍ଥ ଏକ ବ୍ୟକ୍ତିର ଅତି କଠିନ ପୀଡ଼ାରେ ଡାକ୍ତର ମେକରଙ୍କର ଇଲେକ୍‌ଟ୍ରୋ ସାଲସାର ବିସ୍ମୟଜନକ ଶୁଭଫଳ ଦର୍ଶନ କରି ମୁଁ ଡାକ୍ତର ସାହେବଙ୍କର ଔଷଧର ଗୁଣପ୍ରତି ଏତେ ପକ୍ଷପାତୀ ହୋଇଅଛି ଯେ, ଆପଣମାନଙ୍କର ପ୍ରସ୍ତୁତ ମହୌଷଧି ରୋଗକ୍ଲିଷ୍ଟ ମାନବମଣ୍ଡଳୀର ମହୋପକାରୀ ଏ କଥା କହିବାକୁ ମୁଁ ଅଣୁମାତ୍ର ଦ୍ୱିଧା ବୋଧ କରୁ ନାହିଁ । ଆପଣମାନଙ୍କର ମହୌଷଧର ଗୁଣର ନିଦର୍ଶନସ୍ୱରୂପ ମୁଁ ଆପଣମାନଙ୍କୁ ଗୋଟିଏ ସ୍ୱର୍ଣ୍ଣପଦକ ଉପହାର ପ୍ରଦାନ କଲି । ଏହି ସାମାନ୍ୟ ଉପହାର ଆପଣମାନଙ୍କର ଅତୁଳନୀୟ ଓ ଅମୂଲ୍ୟ ଇଲେକ୍‌ଟ୍ରୋ-ସାଲସାର ଗୁଣର ତୁଳନାରେ ଯେତେ ଅକିଞ୍ଚିତ୍‌କର ହେଲେହେଁ ଏହା ମୋହର ହୃଦୟର କୃତଜ୍ଞତାର ନିଦର୍ଶନ ବୋଲି ଗ୍ରହଣ କଲେ କୃତାର୍ଥ ହେବି । ତା ୧୫।୧୦।୧୯୦୩"

୨ । ମହାମାନ୍ୟ ମହାରାଜା ସାର ସୁଢ଼ଲ ଦେଓ ବାମଣ୍ଡାରୁ ଲେଖିଅଛନ୍ତି :—
"* * * ମୁଁ ନିଃସନ୍ଦେହରୂପେ କହିପାରେଁ ଯେ "ଇଲେକଟ୍ରୋ-ସାଲସା" ଦୂଷିତରକ୍ତ ପରିଷ୍କାର କରିବା ଓ ରକ୍ତଦୁଷ୍ଟିହେତୁ ବିବିଧ ରୋଗ ଆରୋଗ୍ୟ କରିବାପକ୍ଷରେ ସର୍ବୋତ୍କୃଷ୍ଟ ।"

୩ । ମହାମାନ୍ୟ ମହାରାଜା ଗଭିରଚନ୍ଦ୍ର ଦେଓ ରେଢ଼ାଖୋଲରୁ ଲେଖିଅଛନ୍ତି—
"* * * ବିଜ୍ଞାପନର ମୋହରେ ପଡି "ଡ୍ୟାନଙ୍କନ" ଔଷଧ ମଗାଇଲି; ଉପକାର ହେବା ଦୂରେ ଥାଉ ଅନୁପକାର ହେଲା, ସେଥିରେ ପାରା ଅଛି ବୋଲି ଜଣାପଡ଼ିଲା । କିନ୍ତୁ ଆପଣମାନଙ୍କର ଇଲେକ୍‌ଟ୍ରୋ-ସାଲସା'ର ଗୁଣ ମୁଁ ବୁଝିପାରିବି ନାହିଁ । ମୋତେ ଆଉ ୩ ଡଜନ ପଠାଇଦେବେ ।"

୪ । ମହାମାନ୍ୟ ମହାରାଜା ହରିହର ମର୍ଦ୍ଦରାଜ ଦେଓ ଖଲ୍ଲିକୋଟରୁ ଲେଖିଅଛନ୍ତି—
"ରକ୍ତ ପରିଷ୍କାର କରି ବଳବୀର୍ଯ୍ୟ ବୃଦ୍ଧି କରିବାକୁ ଇଲେକଟ୍ରୋ-ସାଲସାର କ୍ଷମତା ଅସୀମ ଅଟେ ।"

୫ । ଗୋପାଳପୁର ପ୍ରଦେଶାଧିପତି ମହାରାଜାଧିରାଜ ରଘୁନାଥ ରାଓ ହରଚର ମୁସିର—ଅଲ-ଖାସ ବାହାଦୁର ଲେଖିଅଛନ୍ତି :—ଅନୁଗ୍ରହକରି ଆଉ ୩ ଶିଶି ଔଷଧ ଆମ୍ଭ ନିକଟକୁ ପଠାଇ ଦିଅନ୍ତୁ । ୨୫ ତାରିଖ ଜୁଲାଇ, ୧୯୦୩ ।

୬ । ଡାକ୍ତର ଜ. ଓପ୍ୟାକାର ( କର୍ଣ୍ଣେଲ ) ଅଇ. ଏମ. ଏସ. ପ୍ରୋଫେସର ମେଡିକାଲ କଲେଜ, ମାନ୍ଦ୍ରାଜଠାରୁ ଲେଖିଅଛନ୍ତି :—"ପାରା ଓ ଉପଦଂଶାଦିଜନିତ ରକ୍ତଦୁଷ୍ଟି ରୋଗରେ ଆପଣମାନଙ୍କର ଇଲେକଟ୍ରୋ-ସାଲସାର କ୍ରିୟା ଦେଖି ଅସୀମ ଆନନ୍ଦ ଭୋଗ କରିଅଛି । ୧୩ ଜାନୁୟାରି, ୧୯୦୨ ।"

୭ । କଲିକତା ମେଡିକାଲ ବୋର୍ଡର ପ୍ରେସିଡେଣ୍ଟ ରାୟବାହାଦୁର ସୂର୍ଯ୍ୟକୁମାର ସର୍ବାଧିକାରୀ ଜ. ଏମ. ସି. ବି. ମହୋଦୟ ଲେଖିଅଛନ୍ତି :—"ରକ୍ତଦୁଷ୍ଟିଜାତ କେତୋଟି ରୋଗୀଙ୍କୁ ଆପଣମାନଙ୍କର ଇଲେକ୍‌ଟ୍ରୋ-ସାଲସା ବ୍ୟବହାର କରାଇ ସନ୍ତୋଷଜନକ ଫଳ ପ୍ରାପ୍ତ ହୋଇଅଛି ।"

ଡାକ୍ତର ମେଜର ସାହେବଙ୍କର

# ହାଇଡ୍ରୋସିଲ-ଇଲିକ୍‌ସାର

ବା ହୋଦବୃଦ୍ଧିର ଔଷଧ ।

ପ୍ରତିବର୍ଷ ୫ ହଜାରରୁ ଅଧିକ ରୋଗୀ ଆରୋଗ୍ୟ ଲାଭ କରୁଅଛନ୍ତି । ଆମ୍ଭେମାନେ ପ୍ରତିଜ୍ଞା କରି କହିପାରୁଁ, ଏହି ପ୍ରଲେପ ନିୟମିତରୂପେ କେତେକ ସପ୍ତାହ ବ୍ୟବହାର କଲେ ଏକଶିରା ବା କୋରଣ୍ଡ ଯେତେ ବଡ଼ ହେଉ, ଯେତେ ପୁରାତନ ହେଉ ପଛକେ ନିଶ୍ଚୟ ଆରୋଗ୍ୟ ହେବ । ଯେଉଁମାନେ ଏହି କୁତ୍ସିତ ରୋଗ ଓ ତାହାର ବିବିଧ ଯନ୍ତ୍ରଣାଦାୟକ ଉପସର୍ଗାଦିରୁ ନିର୍ବିଘ୍ନରେ ବିନା ଯନ୍ତ୍ରଣାରେ ଅଥଚ ଗୋପନରେ ଆରୋଗ୍ୟ ଲାଭର ବାସନା କରନ୍ତି, ସେମାନେ ଏହି ମହୌଷଧ ପରୀକ୍ଷା କରି ଦେଖନ୍ତୁ । ପ୍ରଥମ ଦିନ ବ୍ୟବହାରରେ ଏହାର ଆଶ୍ଚର୍ଯ୍ୟ ଉପକାରିତା ବୁଝାଯାଏ । ତତ୍ପରେ କ୍ରମେ କ୍ରମେ ଆକାର ଓ ଗୁରୁତ୍ୱ କମିଯାଏ । ଯେଉଁମାନେ ଆରୋଗ୍ୟ ହେବା ବିଷୟରେ ହତାଶ ହୋଇଅଛନ୍ତି, ସେମାନେ ଏହି ଔଷଧ ପ୍ରତି ସମ୍ପୂର୍ଣ୍ଣ ନିର୍ଭର କରନ୍ତୁ । ବ୍ୟବହାରରେ ଜ୍ୱାଳା-ଯନ୍ତ୍ରଣା ବା କଷ୍ଟକର ନିୟମ ନାହିଁ । ମୂଲ୍ୟ ପ୍ରତି ଶିଶି ଟ ୧ ୳, ତିନି ଶିଶି ଏକତ୍ରରେ ଟ ୪ ୲ । ୬ ଶିଶି ଟ ୭୳ ଡଜନକୁ ଟ ୧୪୲ ମାସୁଲ ସ୍ୱତନ୍ତ୍ର ।

ଡାକ୍ତର ମେଜର ସାହେବଙ୍କର

# ହେୟାର ଲାଇନ

କେଶର ପରିପୋଷଣ, ପରିବର୍ଦ୍ଧନ ଓ ଶୈତ୍ୟସମ୍ପାଦନକାରୀ ସୁଗନ୍ଧି କେଶତୈଳ ।




କେତୋଟି ଭେଷଜଗୁଣାନ୍ୱିତ ସଦ୍ୟ ପ୍ରସ୍ଫୁଟିତ, ସୁଗନ୍ଧଯୁକ୍ତ, ଅନାଘ୍ରାତ, ପୁଷ୍ପର ସାର, ବୈଜ୍ଞାନିକ ପ୍ରଣାଳୀରେ ଏକତ୍ରିତ କରି ବିଶୁଦ୍ଧ କେଶପୋଷକ ତୈଳର ସଂଯୋଗରେ ଏହି କେଶ ତୈଳ ପ୍ରସ୍ତୁତ ହୋଇଅଛି । ଆପଣ ଏହା ଲଗାଇବାକୁ ଆରମ୍ଭ କରନ୍ତୁ, ଅପୂର୍ବ ସୌରଭରେ ଗୃହଯାକ ମହକି ପଡ଼ିବ । ମସ୍ତିଷ୍କ ସୁଶୀତଳ ହେବ । ନିକଟସ୍ଥ ଲୋକେ ମନୋହର ସୁଗନ୍ଧରେ ମୁଗ୍ଧ ହେବେ । ଆପଣଙ୍କର ମନେ ହେବ ଯେପରି ପ୍ରସ୍ଫୁଟିତ ଫୁଲ-ବଗିଚାକୁ ଆସିଅଛନ୍ତି ।

"ହେୟାର-ଲାଇନ" ଲଗାଇ କେଶ ବିନ୍ୟାସ କଲେ ୨୪ ଘଣ୍ଟା ପର୍ଯ୍ୟନ୍ତ ଗନ୍ଧ ସମ ଭାବରେ ଥାଏ । ସ୍ନାନ ପରେ ଦେହରେ ଯେତେ ପବନ ଲାଗେ, ହେୟାର-ଲାଇନର ଗନ୍ଧ ସେତେ ବାହାରୁଥାଏ, ଯେପରି ସୌରଭର ଭଣ୍ଡାର ଖୋଲିଦିଏ । ଅତି ମୂଲ୍ୟବାନ୍ ଅତର ଓ ବିଦେଶୀୟ ମ୍ୟାକେଶାର ତୈଳ ପ୍ରଭୃତି ଏହାର ସୌରଭ ଓ ଗୁଣ ନିକଟରେ ପରାଜିତ ।

"ହେୟାର-ଲାଇନର" ରଙ୍ଗ ଅତି ମନୋହର, ସ୍ୱଭାବତଃ ଉଜ୍ଜ୍ୱଳ ଓ ସ୍ୱଚ୍ଛ । ଏଥି ନିମନ୍ତେ କେଶରେ ଅଠା ଧରେ ନାହିଁ ।

"ହେୟାର-ଲାଇନ" କେବଳ ସୌଖୀନ ଜିନିଷ ନୁହେ, ମୁଣ୍ଡବିନ୍ଧା, ମୁଣ୍ଡବୁଲା, ହିଷ୍ଟିରିଆ ପ୍ରଭୃତି ଶିରରୋଗର ମହୌଷଧ । ହସ୍ତ ପାଦର ଜ୍ୱାଳା, ଗାତ୍ରଦାହ, ଛାତି ଧଡ଼ପଡ଼ହେବା, ପ୍ରାଣର ଆକୁଳିଭାବ, ସ୍ନାୟବୀୟ ଦୌର୍ବଲ୍ୟ, ଦୂରପଡ଼ିବା ପ୍ରାୟ ବୋଧହେବା, ଅନିଦ୍ରା, ଚିତ୍ତ-ଚାଞ୍ଚଲ୍ୟ ପ୍ରଭୃତି ଉପସର୍ଗ ଦୂରୀକରଣରେ ଏହା ତୁଲ୍ୟ ଶମତାପନ୍ନ ଔଷଧ ଆଉ ନାହିଁ ।

"ହେୟାର-ଲାଇନ" ବ୍ୟବହାରଦ୍ୱାରା କେଶ ଉପୁଡ଼ିବା ବନ୍ଦ ହୁଏ, କେଶର ମୂଳ ଶକ୍ତ ହୁଏ, କେଶ ପ୍ରଚୁର ପରିମାଣରେ ବଢ଼େ ଏବଂ କଳା ଓ ଚିକ୍କଣ ହୁଏ, ମସ୍ତିଷ୍କ ଥଣ୍ଡା ରହେ । ଅନେକ ଦିନ ବ୍ୟବହାର କଲେ ଟାକର ରୋଗ ନଷ୍ଟ ହୁଏ, ମଣ୍ଡରୂପୀ ପ୍ରଭୃତି ନଷ୍ଟ ହୁଏ; କେଶ ଘନ, କୋମଳ ଓ ସୁଦୃଶ୍ୟ ହୁଏ, ଦେହର ଦୁର୍ଗନ୍ଧ ଦୂର ହୁଏ, ଚର୍ମ କୋମଳ ଓ କାନ୍ତିଯୁକ୍ତ ହୁଏ, ମନର ସ୍ଥୈର୍ଯ୍ୟ ଧୈର୍ଯ୍ୟ ବଢ଼େ, ସ୍ମୃତିଶକ୍ତି ବୃଦ୍ଧି ହୁଏ ।

ମୂଲ୍ୟ ପ୍ରତି ବଡ଼ ଅଂ ଶିଶି ଟ ୨୲; ୩, ୬, ୧୨ ଶିଶି କ୍ରମାନ୍ୱୟରେ ଟ ୫୲, ଟ ୧୦୲, ଟ ୨୦୲; ପ୍ୟାକିଂ ଓ ଡାକମାଶୁଲ ସ୍ୱତନ୍ତ୍ର ।

ପ୍ରାପ୍ତିସ୍ଥାନ—ଡାକ୍ତର, ମେଜର ଏଣ୍ଡ କୋଂ

ହେଡ୍ ଅଫିସ,—୧୨ ନମ୍ବର ୱେଲିଂଟନ ଷ୍ଟ୍ରିଟ, କଲିକତା ।

# ଉତ୍କଳ-ସାହିତ୍ୟ ।

## ରାମରସାମୃତ-ପ୍ରଣେତା କାହ୍ନୁ ଦାଶ ।

ଗଞ୍ଜାମ ଅଞ୍ଚଳରେ ରାମରସାମୃତ ନାମକ ଦୁଇ ଖଣ୍ଡି ଓଡ଼ିଆ ପଦ୍ୟକାବ୍ୟ ପ୍ରଚଳିତ ଥିବାର ଦେଖାଯାଏ । ଖଣ୍ଡିଏ ସ୍ୱନାମଧନ୍ୟ ଦାର୍ଢ୍ୟତା-ଭକ୍ତିରସାମୃତ-ରଚୟିତା ରାମ ଦାଶଙ୍କଦ୍ୱାରା ରଚିତ; ଅପରଟି କାହ୍ନୁ ଦାଶକର୍ତ୍ତୃକ ଲିଖିତ । ପ୍ରଥମୋକ୍ତ କବିଙ୍କ ସଂକ୍ଷିପ୍ତ ଜୀବନୀ ଏଥି ପୂର୍ବେ ପ୍ରକାଶିତ ହୋଇଅଛି । ଶେଷୋକ୍ତ କବିଙ୍କ ଯତ୍ସାମାନ୍ୟ ପରିଚୟ ନିମ୍ନରେ ବିବୃତ ହେଲା ।

କାହ୍ନୁ ଦାଶ ଧରାକୋଟ ରାଜ୍ୟାନ୍ତର୍ଗତ ଋଷିକୁଲ୍ୟା ନଦୀର ଉତ୍ତର ପାର୍ଶ୍ୱବର୍ତ୍ତୀ ମଙ୍ଗଳପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତାଙ୍କ ନାମ ରଘୁନାଥ ମହାପାତ୍ର । ସେ ଜାତିରେ ବ୍ରାହ୍ମଣ ଥିଲେ । ପୂର୍ବୋକ୍ତ ଗ୍ରାମରେ କବିଙ୍କ ବଂଶୀୟ ଲୋକେ ଗଣ୍ୟମାନ୍ୟ ଥିଲେ । କବି କହିଅଛନ୍ତି :—

ସେ ରଘୁନାଥ ମହାପାତ୍ର ।
ବ୍ରାହ୍ମଣ ବଂଶରେ ପବିତ୍ର ।
ବଶିଷ୍ଠ କୁଳସିନ୍ଧୁ ସୋମ ।
ମୁଁ ତାଙ୍କ ଅଟଇ ନନ୍ଦନ ।
ନୀଳାଦ୍ରି ପଶ୍ଚିମ ପାଶର ।
ଉତ୍କଳ ଦେଶେ ଜନ୍ମ ମୋର ।
ରାଜ୍ୟର ଧରାକୋଟ ନାମ ।
ମଙ୍ଗଳପୁର ଗ୍ରାମ ନାମ ।
ରାଜ୍ୟରେ ଅଟଇ ସେ ପାଟ ।
ଗ୍ରାମମାନଙ୍କର ସେ ଶ୍ରେଷ୍ଠ ।
ଅତି ପ୍ରାଧାନ୍ୟ ଅମ୍ଭେ ତହିଁ ।
ସେ ସେ ଅମ୍ଭର ଜନ୍ମଭୂଇଁ ।

ଉପରୋଦ୍ଧୃତ ପଦ୍ୟାଂଶରୁ ଜଣାଯାଏ କବିଙ୍କ ପିତା 'ମହାପାତ୍ର' ସଂଜ୍ଞା ଧାରଣ କରିଥିଲେ । ପିତା ଓ ପୁତ୍ରଙ୍କର ଉପାଧି କି ହେତୁ ଭିନ୍ନ ହୋଇଅଛି ତାହାର କୌଣସି ପ୍ରମାଣ କବିଙ୍କ ଗ୍ରନ୍ଥରୁ ମିଳଇ ନାହିଁ; ଅଥଚ ତାହାଙ୍କ ପାରମ୍ପରିକ ସଂଜ୍ଞା ସମ୍ବନ୍ଧରେ ଦୁଇ ଗୋଟି ବିଷୟ ଅନୁମିତ ହୋଇ ପାରେ । "ବ୍ରାହ୍ମଣ କୁଳେ ଜନ୍ମ ହୋଇ । ପାଠ ପଠନ ମୋର ନାହିଁ ।" ବୋଲି ଗ୍ରନ୍ଥର ଏକାଧିକ ସ୍ଥାନରେ କବି ନିଜର ପରିଚୟ ଦେଇ ଅଛନ୍ତି । ଯଦି ଗୁଣିଗଣସୁଲଭ ନମ୍ରତାର ପ୍ରଭାବରୁ କବି ଉପରୋକ୍ତରୂପେ କହି ନ ଥାନ୍ତି ତେବେ କହାଯାଇ ପାରେ ଯେ ବହୁସଂଖ୍ୟକ ବ୍ରାହ୍ମଣମାନଙ୍କ ପରି କବିଙ୍କ ପାରମ୍ପରିକ ସଂଜ୍ଞା 'ଦାଶ' ଥିଲା । ମାତ୍ର ରଘୁନାଥଙ୍କ ଗୁଣାତିଶଯ୍ୟ ହେତୁ ସମ୍ମାନ ସୂଚନ ସକାଶେ 'ମହାପାତ୍ର' ଉପାଧି ତତ୍କାଳୀନ କୌଣସି ରାଜା ବା ସମାଜଦ୍ୱାରା ତାହାଙ୍କୁ ପ୍ରଦତ୍ତ ହୋଇଥିବ । କବି ପିତାଙ୍କ ତୁଲ୍ୟ ଯୋଗ୍ୟ ନ ଥିବା ଯୋଗୁଁ ତାହାଙ୍କ ବିଶିଷ୍ଟ ଉପାଧି ପରିତ୍ୟାଗ କରି ସାଧାରଣ ପାରମ୍ପରିକ ଉପାଧି ପୁନରାୟ ଗ୍ରହଣ କରିଥିଲେ । ଦ୍ୱିତୀୟତଃ ଉତ୍କଳରେ ଅନେକ କବି 'ଦାଶ' ସଂଜ୍ଞାଧାରୀ ଅଟନ୍ତି । ଯଥା :—ଶାରଳାଦାସ, ଜଗନ୍ନାଥଦାଶ, ଦୀନକୃଷ୍ଣଦାସ । ସମ୍ଭବତଃ କବି ଏମାନଙ୍କର ଅନୁକରଣ କରି ପୈତୃକ ମହାପାତ୍ର ଆଖ୍ୟା ବିସର୍ଜନପୂର୍ବକ ଦାଶ ଉପାଧି ଗ୍ରହଣ କରିଥିବେ । ଯାହା ହେଉ ଉପରୋକ୍ତ ଉଭୟ ମତରୁ କେଉଁଟି ଗ୍ରହଣଯୋଗ୍ୟ ନିର୍ଦ୍ଧାରଣ କରିବା କଷ୍ଟସାଧ୍ୟ ।

ପ୍ରମାଣାଭାବରୁ କାହ୍ନୁ ଦାଶଙ୍କ ପାରିବାରିକ ସଂଜ୍ଞା

ନିର୍ଦ୍ଧାରଣ କରିବା ଯେମନ୍ତ ସହଜ ନୁହେ, ସ୍ତୋକ ଓ ଅସ୍ପଷ୍ଟ ଅର୍ଥ୍ୟାନ୍ତରଣ ନିଦର୍ଶନରୁ ତାହାଙ୍କ ସମୟ ନିରୂପଣ କରିବା ମଧ୍ୟ ସେମନ୍ତ ସୁଲଭ ନୁହେ । ସେ ଲେଖିଅଛନ୍ତି :—

ନରେନ୍ଦ୍ର ମୁକୁନ୍ଦଦେବଙ୍କ ।
କୁଶଳ ପଞ୍ଚବିଂଶ ଅଙ୍କ ।
ଶ୍ରାବଣ ମାସାଦ୍ୟ ପକ୍ଷରେ ।
ଏକାଦଶମୀ ରବିବାରେ ।
ରଜନୀ ସପ୍ତଦଶ ପୂର୍ଣ୍ଣେ ।
ମୋର ଜନମ ଶୁଭଲଗ୍ନେ ।

କବିଙ୍କ କଥାନୁରୂପ ମୁକୁନ୍ଦଦେବଙ୍କ ରାଜତ୍ୱ ସମୟରେ ତାହାଙ୍କ ଜନ୍ମ । କିନ୍ତୁ ଜଣ ମୁକୁନ୍ଦ ଦେବ ପୁରୀ ସିଂହାସନାରୋହଣ କରିଥିଲେ । ତନ୍ମଧ୍ୟରୁ ଏକ ଜଣଙ୍କର ମାତ୍ର ପଞ୍ଚବିଂଶାଧିକ ଅଙ୍କ ଥିଲା । ସେ ଖ୍ରୀଷ୍ଟାବ୍ଦ ୧୬୬୨—୧୬୯୦ ସାଲ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । ଅତଏବ ପ୍ରଚଳିତ ଅଙ୍କ ଗଣନା ଅନୁସାରେ ତାହାଙ୍କର ମାତ୍ର ତେତ୍ରିଂଶ ଅଙ୍କ ଥିଲା । ସୁତରାଂ ଏହି ମୁକୁନ୍ଦ ଦେବଙ୍କ ସମୟରେ କବିଙ୍କ ଜନ୍ମ ।

ସ୍ଥାନାନ୍ତରରେ ଲେଖା ହୋଇଅଛି :—

ତ୍ରିଂଶ ଅବଧି ବୟସ ।
କାଳରେ ଏ ଗ୍ରନ୍ଥ ପ୍ରକାଶ ।
କଲି ସଂସାର ଜନହିତେ ।
ଶୁଣି ହରଷ ଲଭ ଚିତ୍ତେ ।
ଶ୍ରୀଦିବ୍ୟସିଂହ ଦେବରାଜେ ।
ଗଜପତିଙ୍କ ଶୁଭରାଜ୍ୟେ ।
ବିଜୟ ତ୍ରୟୋଦଶ ଅଙ୍କେ ।
ଆଷାଢ଼ ମାସ ଶୀତ ପକ୍ଷେ ।
ତୃତୀୟା ଶ୍ରୀଗୁଣ୍ଡିଚା ଦିନ ।
ଏ ରସରସାମୃତ ପୂର୍ଣ୍ଣ ।

ଏ ପ୍ରବନ୍ଧ ରଚନା ଦିବ୍ୟସିଂହଦେବଙ୍କ ତ୍ରୟୋଦଶ ଅଙ୍କରେ ଶେଷ ହୋଇଥିଲା ଏବଂ ତତ୍ସମୟରେ କବିଙ୍କ "ତ୍ରିଂଶ ଅବଧି" ବୟଃକ୍ରମ ହୋଇ ଥିଲା । ତ୍ରିଂଶ ଶବ୍ଦର ପ୍ରକୃତ ଅର୍ଥ ଘଟିବ । ପୂର୍ବୋକ୍ତ ମୁକୁନ୍ଦଦେବଙ୍କ ଉତ୍ତାରୁ ଖ୍ରୀଷ୍ଟାବ୍ଦ ୧୬୯୦—୧୭୧୩ ପର୍ଯ୍ୟନ୍ତ ଏକ ଦିବ୍ୟସିଂହ ଦେବ ରାଜତ୍ୱ କରିଥିଲେ । ୧୭୨୩—୧୭୯୧ ପର୍ଯ୍ୟନ୍ତ ଅନ୍ୟ ଏକ ଦିବ୍ୟସିଂହଦେବ ପୁନଶ୍ଚ ରାଜା ଥିଲେ । କୌଣସି ଦିବ୍ୟସିଂହଙ୍କ ତ୍ରୟୋଦଶ ଅଙ୍କ ସମୟରୁ କବିଙ୍କ ବୟସ ଗଣନା କଲେ ୬୦ ହେଉ ନାହିଁ । କିନ୍ତୁ "ଅଙ୍କ" ଗଣନାର ପ୍ରକୃତ ନିୟମ ପ୍ରତି ଦୃଷ୍ଟି ନ ରଖି ଧାରାବାହିକରୂପେ ଗଣି ନେଲେ ମୁକୁନ୍ଦଦେବଙ୍କ ଅବଶିଷ୍ଟ ନଅ ଅଙ୍କ ଓ ତାହାଙ୍କ ଅବ୍ୟବଧାନ ପର ରାଜା ଦିବ୍ୟସିଂହଦେବଙ୍କ ତ୍ରୟୋଦଶ ଅଙ୍କ ମିଳି ଦ୍ୱାବିଂଶ ଅଙ୍କ ହେଉଥିବା ହେତୁ କବି ଏପରି ଭ୍ରାନ୍ତ ଗଣନାରେ ପଡ଼ି ଦ୍ୱାବିଂଶବର୍ଷ ଅତିକ୍ରମପୂର୍ବକ ତ୍ରୟୋବିଂଶ (ଅର୍ଥାତ୍ ୨୩) ବର୍ଷ ବୟଃକ୍ରମ ବୋଲି ସମ୍ଭବତଃ ପରିଚୟ ଦେଇ ଅଛନ୍ତି । ଏଥିରୁ ବୋଧ ହୁଏ ରସରସାମୃତ କବିଙ୍କ ପ୍ରଥମୋଦ୍ୟମର ଫଳ । ଉକ୍ତ ଗ୍ରନ୍ଥ ପାଠ କଲେ ପ୍ରତୀତ ହୁଏ କାହ୍ନୁଦାସ ଜଣେ ସ୍ୱଦେଶଭାଷାନୁରାଗୀ ଥିଲେ ଓ ସେ ଦେଶୀୟ ଭାଷାରେ ପ୍ରବନ୍ଧ ଲେଖିବାର ପ୍ରୟୋଜନୀୟତା ଉତ୍ତମରୂପେ ଉପଲବ୍ଧି କରି ପାରିଥିଲେ । ଏହି ଗ୍ରନ୍ଥରେ ସେ ଲେଖିଅଛନ୍ତି:—

ପ୍ରାକୃତ ଭାଷା ରସ ପଦ ।
ସବୁର ଶ୍ରବଣକୁ ମୋଦ ।
ହୋଇବ ସର୍ବପ୍ରାଣୀ ପ୍ରୀତି ।
ବିଚିତ୍ର ଚିତ୍ର ସୁଭାରତୀ ।
ସର୍ବାଙ୍ଗ ଅଙ୍ଗ ଜ୍ଞାନୀ ପୁଣି ।
ଆନନ୍ଦ ହେବେ କର୍ଣ୍ଣେ ଶୁଣି ।

କାହ୍ନୁ ଦାସଙ୍କ ସମୟରେ ବଳରାମଦାସକୃତ ପ୍ରାକୃତ ରାମାୟଣ ଜନସାଧାରଣରେ ଆଦୃତ ଥିଲା । ମାତ୍ର ଉକ୍ତ ରାମାୟଣ ପ୍ରକାଣ୍ଡ ଥିବାହେତୁରୁ ଅବସରହୀନ ଲୋକଙ୍କ ସୁବିଧା ନିମିତ୍ତ ରାମରସାମୃତ ନାମକ ସଂକ୍ଷିପ୍ତ ପ୍ରବନ୍ଧ ରଚନାରେ ସେ ପ୍ରବୃତ୍ତ ହୋଇଥିଲେ । କବି କହନ୍ତି:—

ଯାହା ସେ ବଳରାମ ଦାସ ।
ପ୍ରାକୃତେ କଲେକ ପ୍ରକାଶ ।

ଆଦି, ଅଯୋଧ୍ୟା, ଅରଣ୍ୟକ ।
କିଷ୍କିନ୍ଧ୍ୟା, ସିନ୍ଧୁଗଡ ଲଙ୍କା ।
ଉତ୍ତର କାଣ୍ଡ ଯେ ସପତ ।
ଖଣ୍ଡରେ ଅପୂର୍ବ ଚରିତ ।
ଶୁଣିଲେ ଲଭା ଦେବ ବୋଲି ।
ମୁଁ ଏଥା ଏକ ଖଣ୍ଡ କଲି ।

ସୁତରାଂ ବର୍ଣ୍ଣିତ ବିଭାଗରେ କବି ସାଧାରଣ ନିୟମ ଅବଲମ୍ବନ କରି ନାହାନ୍ତି । ସେ ରାମରସାମୃତ ଅଷ୍ଟୋତ୍ତରଶତ ଅଧ୍ୟାୟରେ ବିଭକ୍ତ କରି ପ୍ରତ୍ୟେକ ଅଧ୍ୟାୟରେ ଅଷ୍ଟାଧିକଶତ ପଦ ଯୋଜନା କରିଅଛନ୍ତି ।

ପୂର୍ବେ କହାଯାଇଅଛି ରାମରସାମୃତ କବିଙ୍କ କିଶୋର ବୟସର ରଚନା । କିଶୋର ବୟସରେ ସାଧାରଣତଃ କଳ୍ପନା ଶକ୍ତି ଅତ୍ୟନ୍ତ ଅପଟୁ ଥାଏ । ସୁତରାଂ ବର୍ଣ୍ଣନାଗୁଡ଼ିକରେ କୌଣସି ବିଶେଷତ୍ୱ ପରିଲକ୍ଷିତ ହୁଏ ନାହିଁ; ବରଂ ସ୍ଥାନେ ସ୍ଥାନେ ଅସ୍ୱାଭାବିକତା ଦୃଷ୍ଟିଗୋଚର ହୁଏ । ମାତ୍ର କବିଙ୍କ ଭାଷା ଅତ୍ୟନ୍ତ ସରଳ ଓ ସହଜବୋଧ । ନମୁନା ଦେଖନ୍ତୁ ।

ପଥେ ଯେ ନ ଦିଶଇ କ୍ରୋଧେ ।
ମିଳିଲେ ଲକ୍ଷ୍ମଣ ସନ୍ନିଧେ ।
ଦେଖିଲେ ପଡ଼ିଛି ସୌମିତ୍ରୀ ।
ଫୁଟି ରହିଛି ବ୍ରହ୍ମଶକ୍ତି ।
ଦେଖିଣ ଶ୍ରୀରାମ ବିକଳ ।
ନୟନୁ ବହେ ଅଶ୍ରୁଜଳ ।

* * *

ଭାଇକି କୋଳରେ ବସାଇ ।
ଗଳାକୁ ଗଳା ଯେ ଲଗାଇ ।
ଚିନ୍ତେଣ କରନ୍ତି ରୋଦନ ।
ଆହା ମୋ ସୋଦର ଲକ୍ଷ୍ମଣ ।
ଦୁଃଖର ସଙ୍ଗୀ ମୋର ବାପ ।
ଧର୍ମିକମଣି ଗୁଣରୂପ ।
ଜଣାରେ ଧନୁ ଧରି ହସ୍ତେ ।
କାନନେ ଜଗି ଥାଉ ମତେ ।
ଜଗାଉ ଥିଲ ରାତିମାନେ ।
ତୁ ମୋର ଦୁଃଖେ ଦୁଃଖୀ ବନେ ।
ଘରକୁ ଗଲେ ମୁହିଁ ଦୋଷୀ ।
ମାଏ ଯେ ପଚାରିବେ ଆସି ।
କି ବୋଲି କହିବି ରେ ଭାଇ ।
ତୋ ଅଗେ ନ ମଲି କି ପାଇଁ ।
ଘରୁ ଅଇଲୁଁ ଜଣ ଦୁନି ।
ଏକା ରହିଲି ଗଲେ ତୁନି ।
ଆଉ କି ଯିବି ମୁଁ ବାହୁଡ଼ି ।
ମରିବି ଜଳଧିରେ ବୁଡ଼ି ।
ରାଜ୍ୟଭୋଗ ସ୍ନେ ଗୁଡ଼ି ଭାଇ ।

ମୋ ସଙ୍ଗେ ଅଇଲୁ ଗୋଡ଼ାଇ ।
ଚଉଦ ବରଷ ଯେ ମୋତେ ।
ସେବିଣ ରହିଲୁ ବନସ୍ତେ ।
ଦୁଃଖକୁ ବିମୁଖ ଯେ ନୋହୁ ।
ମୋତେ ଯେ ବୁଦ୍ଧି କହିଦେଉ ।

ମୋ ଆଜ୍ଞା ଯେ ନ ଭାଙ୍ଗୁ ତୁହି ।
ମୋତେ ଯେ ଡର ଥାଉ ଭାଇ ।
ତୋହର ଯେତେ ଗୁଣ ସବୁ ।
କହିଲେ ନ ସରିବ ବାବୁ ।
କେମନ୍ତ ମୂର୍ଚ୍ଛିବୁ ରେ ବାପ ।
ରେ କହ କଲି ମୁଁ କି ପାପ ।
ରାଜ୍ୟ ବିନଷ୍ଟ ମନେ କଷ୍ଟ ।
ପତ୍ନୀ ବିଚ୍ଛେଦ ଭ୍ରାତା ନଷ୍ଟ ।
ଏ ଦୁଃଖ ବହିଲୁ କି ପାଇଁ ।
ତୋର ତ ଶତ୍ରୁ ମୁଁ ନୁହଇ ।
କିମ୍ବାଦ ବିଧି ରାଜଯୋଗ ।
ମତେ କରଇଥିଲୁ ଅଗ ।
ଏବେ ମରିବା ବେଳେ ପୁଣ ।
ଆଗ କରନ୍ତି ଯେ ଲକ୍ଷ୍ମଣ ।
ଏଣୁ ତୁ ବଡ଼ ଅଧାର୍ମିକ ।
ଅଜ୍ଞାନ ମୂଢ଼ ଅବିବେକ ।

* * *

ତବ ଏହି ଗ୍ରନ୍ଥକୁ "ସମରସାମୃତସିନ୍ଧୁ-ସମାପୃଣ ନାମରେ ଅନେକଠାରେ ଅଭିହିତ କରିଅଛନ୍ତି । ଏହା ଛଡ଼ା ଆଉ କେ କେ ଗ୍ରନ୍ଥ ସେ ରଚନା କରିଅଛନ୍ତି ଜାଣିବାର ବାସନା ରହିଲା ।

ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ।

## ଓଡ଼ିଶାର ଅଧମ ଜାତି—୧ ଜୁଆଙ୍ଗ ।

ପାଲଲହଡ଼ା ଓଡ଼ିଶାର ଅନ୍ୟତମ କରଦ ରାଜ୍ୟ, ନାନା କାରଣରୁ ଏହା ଅନେକାଂଶରେ ଅଧମ ଅବସ୍ଥାରେ ରହିଅଛି । ମଧ୍ୟପ୍ରଦେଶ ଓ ଓଡ଼ିଶାର ଏହା ମଧ୍ୟସ୍ଥ ରାଜ୍ୟ, ଏକ ଅଡ଼େ ମଧ୍ୟପ୍ରଦେଶର ବାମଣ୍ଡା, ଅନ୍ୟ ଅଡ଼େ ଓଡ଼ିଶାର କେନ୍ଦୁଝର, ଢେଙ୍କାନାଳ, ତାଳଚେର ଏହାକୁ ଘେରି ରହିଛନ୍ତି । ଏହା ଉପରେ ମଧ୍ୟପ୍ରଦେଶର ପ୍ରଭାବ ଊଣା ନୁହେ, କିନ୍ତୁ ରାଜନୈତିକ ଓଡ଼ିଶାର ଅନ୍ତର୍ଗତ ବୋଲି ସେ ପ୍ରଭାବ ବିସ୍ତାରର ସୁବିଧା ନାହିଁ । ଓଡ଼ିଶାର ଅନ୍ତର୍ଗତ ହେଲେହେଁ ଏକପ୍ରାନ୍ତରେ ଅବସ୍ଥିତ, ରାଜଧାନୀ ସହିତ ପ୍ରାକୃତିକ ସଂଯୋଗବିହୀନତା ଓଡ଼ିଶାର ପ୍ରଭାବକୁ କ୍ଷୀଣ କରିଅଛି । ମଧ୍ୟପ୍ରଦେଶ ସହିତ ମିଳିବା ଏଠା ରାଜବଂଶୀୟମାନେ ଗୌରବ ମନେ କରନ୍ତି, ପ୍ରଜାଏ କିନ୍ତୁ ଓଡ଼ିଶାର ଓଡ଼ିଆ ବୋଲି ପରିଚିତ ହେବାକୁ ଲାଳାୟିତ । ରାଜା ଓଡ଼ିଆ, ପ୍ରଜା ଓଡ଼ିଆ, ମାତୃଭାଷା ଓଡ଼ିଆ, କିନ୍ତୁ ଜାତି ପଚାରିଲେ କହିବେ, ସେ ଓଡ଼ିଆ ଗଉଡ଼, ଓଡ଼ିଆ ପାଇକ; ବଂଶଗୌରବ ବା ଜାତିଗୌରବ ଦେଖାଇବାକୁ ଯାହାର ଇଚ୍ଛା ସେ ଓଡ଼ିଆ ହେବାକୁ ନାରାଜ । କାର୍ଯ୍ୟତଃ ଦୁଇ ନାରେ ଗୋଡ଼ ଦେଇ, ମଧ୍ୟପ୍ରଦେଶ ପରି ବା ଓଡ଼ିଶା ପରି ଉନ୍ନତ ହେବାକୁ ସମର୍ଥ ହୋଇ ନାହିଁ । କୌଣସି ପ୍ରଧାନ ବ୍ୟବସାୟବହୁଳ ସ୍ଥାନ ସହିତ ନୈସର୍ଗିକ ବା କୃତ୍ରିମ ସଂଯୋଗ ନ ଥିବାରୁ ଉନ୍ନତିରେ ବାଧା ଘଟୁଅଛି । ଦେଶଜାତଦ୍ରବ୍ୟ ପଦାକୁ ବାହାର କରି ନେବାର ସୁଗମ ଉପାୟ ନାହିଁ, କାର୍ଯ୍ୟତଃ ନିବିଡ଼ କାନନମୟ ହୋଇ ରହିଅଛି । ଯେଉଁଆଡ଼େ ଚାହିଁ, କେବଳ ଦୃଷ୍ଟିରୋଧୀ ଅରଣ୍ୟାନୀ, ପାଞ୍ଚ ସାତ ମାଇଲ ବ୍ୟବଧାନରେ ଗୋଟିଏ ଗୋଟିଏ ଗ୍ରାମ, ଗ୍ରାମଗୁଡ଼ିକ ଅତି କ୍ଷୁଦ୍ର, ଗୋଟିଏ ଘରରେ ଗୋଟିଏ ଗ୍ରାମ ପାଲଲହଡ଼ା ଭଳି ସ୍ଥଳରେ ଅସମ୍ଭବ ନାହିଁ, ପାଞ୍ଚ ସାତ ମାଇଲ ବାଟ ଗଲେ ବସତିର ଦଗରୁ କୌଣସି ଲୋକ ଥିବାର କ୍ୱଚିତ୍ ଦେଖାଯାଏ— ଲୋକସଂଖ୍ୟା ଏତେ ବିରଳ ।

ଏହିସବୁ କାରଣରୁ ସଭ୍ୟତାଲୋକର ତୀବ୍ର ତାପରେ ଏଠାରୁ ଏପର୍ଯ୍ୟନ୍ତ ଆଦିମ ଅନାର୍ଯ୍ୟଜାତି ପୋଡ଼ି ଯାଇ ନାହାନ୍ତି । ଏଠାରେ ବିଂଶ ଶତାବ୍ଦୀରେ ମଧ୍ୟ ପତ୍ରପରିହିତା, ପ୍ରକୃତିର ଦୁହିତା ଜୁଆଙ୍ଗ ରମଣୀ ଅଛନ୍ତି, ଅରଣ୍ୟଜାତ ଶାଳପତ୍ର ପିନ୍ଧି ସରଳ ସ୍ୱଚ୍ଛନ୍ଦଭାବରେ ସଂସାର ଯାତ୍ରା ନିର୍ବାହ କରୁଅଛନ୍ତି । ଏମାନଙ୍କ ଭାବଭଙ୍ଗୀରେ ବିଳାସର ଲେଶ ଥିବାର ବା ପାପର କାଳିମା ଛୁଇଁଥିବାର ବୋଧ ହୁଏ ନାହିଁ ।

ପୁରୁଷମାନେ ଭଲ ଓଡ଼ିଆ କହନ୍ତି, ସ୍ତ୍ରୀମାନେ ଭଲ ପାରନ୍ତି ନାହିଁ । ସେମାନଙ୍କର ମାତୃଭାଷା ସ୍ୱତନ୍ତ୍ର, ସ୍ତ୍ରୀ ପୁରୁଷ ସମସ୍ତେ ଘରେ ଜୁଆଙ୍ଗ ଭାଷାରେ କଥାବାର୍ତ୍ତା କରନ୍ତି । ଯୋର ଯାହାର ମୂଳକ ତାହାର, ଓଡ଼ିଆ ଭାଷା ସେମାନଙ୍କ ଉପରେ ଆଧିପତ୍ୟ ପ୍ରକାଶ କଲାଣି, ସେମାନଙ୍କ ଦୈନିକ ବ୍ୟବହାର୍ଯ୍ୟ ଉପକରଣ ଓ ଭାଷା ମଧ୍ୟରେ ଓଡ଼ିଆ କଥା ପଶିଲାଣି । ଏମାନେ ପ୍ରକୃତିର ସ୍ୱାଧୀନ ସନ୍ତାନ । ଯେଉଁଠି ଜୁଆଙ୍ଗ ସେଠାରେ ତାହି, ଏହା ନ କହି ଯେଉଁଠି ତାହି ସେଠାରେ ଜୁଆଙ୍ଗ କହିବା ସଙ୍ଗତ (ତାହି ଏକପ୍ରକାର ଆଦିମ କୃଷି,

ଏହା କଥା ପରେ କହିବ); ଜୁଆଙ୍ଗ ଭାଷାରେ ସୁନ୍ଦରଙ୍ଗ ଘରର ପ୍ରତିଶବ୍ଦ ଡାହି । ତଳେ କେତେଗୁଡ଼ିଏ ଓଡ଼ିଆ କଥାର ଜୁଆଙ୍ଗ ପ୍ରତିଶବ୍ଦର ଉପହାର ଦେଉଅଛୁ, ଆଶା କରେ ପାଠକମାନଙ୍କୁ ଅଲଣା ଲାଗିବ ନାହିଁ ।

| | |
|---|---|
| ଘର = ଡାହି | ପଥର = ଏଗେଡ଼ |
| ପାଣି = ଡାଉ | ଭାତ = ସଅନ |
| ନଅଁ = ଲାଲ | ପତ୍ର = ଅଲାକ |
| ବାପ = ବା | ମାଟି = ଲୋଟ |
| ମା = ବଉ | ଗାଈ = ଅଡ଼େଠ |
| ଭାଇ = ଦା | ଛେଳି = ମେରମ |
| ଭଉଣୀ = ବୋକରଇ | ବାଘ = କୁଡ଼ |
| ଭାଉଜ = ଗବଲେ | ଭାଲୁ = ବଣାଇ |

ଜୁଆଙ୍ଗମାନେ ନୃତ୍ୟପ୍ରିୟ, ସ୍ତ୍ରୀପୁରୁଷ ବାଳକ ବାଳିକା ମିଶି, ଗୁଙ୍ଗୁ ବଜାଇ ନାଚନ୍ତି; ଦୋଳପୂର୍ଣ୍ଣିମା ସମୟରେ ମାରୱାଡ଼ିମାନେ ଯେଉଁ ବାଜା ବଜାଇ ଆମୋଦ କରନ୍ତି, ଗୁଙ୍ଗୁ ସେହିପରି ବାଜା । କିନ୍ତୁ ଜୁଆଙ୍ଗଭାଷା ଗୀତର ଉପଯୋଗୀ ନୁହେ । ବୋଧ ହୁଏ ସେଥିପାଇଁ ଜୁଆଙ୍ଗଭାଷାରେ ଗୀତ ନାହିଁ, ଓଡ଼ିଆ ଗୀତ ବୋଲି ନାଚନ୍ତି, ପୁରୁଷମାନେ ଗୁଙ୍ଗୁ ବଜାନ୍ତି, ସ୍ତ୍ରୀମାନେ ଜଣେ ଜଣେ ହୋଇ ଏକାଠି ଛିଡ଼ା ହୋଇ ନାଚନ୍ତି. ଗୀତରୁ ଯେ କିଛି ବୁଝନ୍ତି ଏପରି ବୋଧ ହୁଏ ନାହିଁ । ଓଡ଼ିଆ ଗୀତ କେଉଁଠୁ ଶିଖିଲ ପଚାରିବାରୁ କହିଲେ, ଯେଉଁଠୁ ଶୁଣିଲୁ ସେଠୁ ଶିଖିଲୁ । ଗୀତର ଅର୍ଥ ମୂଳ କିଛି ନାହିଁ କହିଲେ ହେଲା । ଗୀତର ନମୁନା ଏହି—

ମା ପାଟ ଭଉଣୀକି ଶରଣ<br>
ଜୁହାରୁଛି ତୋ ଚରଣ । ଘୋଷା ।<br>
ଗଲୁଣି ଛାଡ଼ି ଅନ ପୀରତି କରି<br>
ଯେବେ ତୁ ଯିବୁ ଯିବି ବିଦେଶ କରି ।<br>
କେବକେ ଦେବି ଦଉଡ଼ି,<br>
ଝୁରି ମରିବି ଲୋ ପୀରତିକରି,<br>
ଡାକି ମରିବି ଲୋ ପୀରତି କରି,<br>
ପିନ୍ଧିଲା ବସ୍ତ୍ର ତୋର ରହିଲା ପାଶେ ମୋର,<br>
ଜାତିରେ ଦେବି ପକାଇ,<br>
ସଙ୍ଗରେ ଦେବି ପକାଇ,<br>
ଚନ୍ଦ୍ରୋଟ ଦେବି ଲୋ ଅନ ପୀରତିକରି ।

ଏହି ଗୀତ ବୋଲି ମା, ବାପ, ଝିଅ, ପୁଅ, ମାମୁଁ, ଭଣଜା, ଝିଅଙ୍କ ଏକାଠି ନାଚନ୍ତି ।

ବିବାହ ଦେବାର ହେଲେ କନ୍ୟାପକ୍ଷର ଲୋକ ଯାଇ ବରପକ୍ଷ ଗ୍ରାମରେ କହି ଆସେ "ଉଆ ଜାନଅ ପିତୁକି" (ଆସ କନ୍ୟା ଖୋଜିବ) । ବରପକ୍ଷ ଲୁଗା ଦିଖଣ୍ଡ, ଚାଉଳ ଦିଖଣ୍ଡି, ଧାନ ଦିଖଣ୍ଡି, ମଦ ଭାରେ ଦଶ ଅଣା ପଇସା ଘେନି କନ୍ୟା ଘରକୁ ଆସନ୍ତି; ଲୁଗା ପଇସା ଆଗେ ନ ଥିଲା ଏବେ ହେଲା । ଆଜିକାଲି ପୁରୁଷମାନେ ଲୁଗା ପିନ୍ଧିଲେଣି, ସ୍ତ୍ରୀମାନେ ଅପମୃତ୍ୟୁ ଭୟରେ ଲୁଗା ପାଖକୁ ଯାଇ ନାହାନ୍ତି, ମାଙ୍କେଷ୍ଟର ପାଖରେ ଏପର୍ଯ୍ୟନ୍ତ ଧାରୁଆ ହୋଇ ନାହାନ୍ତି । ଯେଉଁଠାରେ ଅର୍ଥବଳ ନାହିଁ ସେଠାରେ ସ୍ତ୍ରୀ ପୁରୁଷର ମନ ମିଳିଲେ ବିଭା ହୋଇ ପଡ଼ିଲେ, କିଛି ଅଡୁଆ ନାହିଁ । ବର କନ୍ୟା କନ୍ୟାଘରେ ଦିନେ ଦିନ ରହି ଚଉଠି ଦିନ ଚାଉଳ ଦିଖଣ୍ଡି, ଚାଉଳ ପିଠା ଭାରେ ଘେନି ବର ଘରକୁ ଯାନ୍ତି, ସେଠାରେ ଦିନେ ରହି, ପୁଣି ବର କନ୍ୟା କନ୍ୟାଘରକୁ ଆସନ୍ତି, କନ୍ୟାଘରେ ଦିନେ ଓଳି ଖାଇ ପୁଣି ବରଘରକୁ ଯାନ୍ତି । ଦଶ ଦିନ ପରେ ପୁଣି ବର କନ୍ୟା କନ୍ୟାଘରକୁ ଆସନ୍ତି, ଏଥର ପ୍ରଥମ ଭୋଜନ ପାଇଁ ନଷ୍ଟ କୁକୁଡ଼ାଟାଏ ରନ୍ଧା ହେବ, ସମସ୍ତେ ଖାଇବେ, ଦିନେ ଦୁଇଦିନ ରହି ପୁଣି ବିଦା ହୋଇ ଯିବେ । ଏଥର ଆସିବାବେଳେ ଯେପରି ଜିନିଷ ଆଣିଥିବେ, ଗଲାବେଳକୁ ସେପରିଭାବରେ ନେବେ, ଏଥର ପ୍ରାୟ ବର ଘର ସ୍ତ୍ରୀମାନେ ସଙ୍ଗରେ ଆସନ୍ତି, କନ୍ୟାଘର ସ୍ତ୍ରୀମାନେ ବର ଘରକୁ ଯାନ୍ତି; ଏଣିକି ଯିବା ଆସିବା ଇଚ୍ଛା ଉପରେ ନିର୍ଭର ।

ପିଲା ଜନ୍ମିଲେ ଜୁଆଙ୍ଗ ଭାଷାରେ "ଜନମିଅ-

କଟୁଅ'' କହନ୍ତି, ବିଶେଷ କିଛି ବିଧିବିଧାନ ନାହିଁ, ଯାହାର ବଳ ପାଏ, ସେ ତିନିଙ୍କୁ ପାଞ୍ଚ ଦିନ ବା ସାତ ଦିନ ଭାତ ଖାଇବାକୁ ଦିଏ ।

ସେହି ମଡ଼ାଗଲେ ଶ୍ମଶାନକୁ ନେଇ ଦାହ କରନ୍ତି, ହୋଲିଙ୍କ ପରି ଓଲଟଲେ ପୋଡ଼ନ୍ତି ନାହିଁ । ବସନ୍ତରେ, ପ୍ରସୂତ ଅବସ୍ଥାରେ ମଲେ ନ ପୋଡ଼ି ପୋତି ପକାନ୍ତି । ଶୁଦ୍ଧିର ଧରାବନ୍ଧା ଦିନ ନାହିଁ, କିଏ ତିନି ପାଞ୍ଚ ଦିନେ ଶୁଦ୍ଧ ହୁଏ, ଯେ ନ ପାରେ ସେ ଦଶ ଏଗାର ଦିନେ ମଧ୍ୟ ଶୁଦ୍ଧ ହୁଏ, ମୋଟରେ ଏହା ଆର୍ଥିକ ଅବସ୍ଥା ଓ ଚଳପାରିବା ଉପରେ ନିର୍ଭର କରେ । ପ୍ରଥମରେ ମାମୁଁକୁ (ମନ୍ଦୁଡ଼ା) ଡକା ହୁଏ, ଜାତି କୁଟୁମ୍ବ ଆସନ୍ତି, ଶ୍ମଶାନରୁ ଅଙ୍ଗାର ପୋଷାଡ଼ି ଦେଇ, ଦାହ ସ୍ଥାନ ପରିଷ୍କାର କରି, ଗାଧୋଇ ଆସନ୍ତି, ମାମୁଁ ରହିବା ଘରେ କୁକୁଡ଼ାଟାଏ ବଳି ଦିଆଯାଏ, ଯାହାର ବଳ ପାଏ ସେ ଘୁଷୁରିଟାଏ ବଳି ଦିଏ, ଇନ୍ଦାବଡ଼ା କରି ସମସ୍ତେ ଖିଆପିଆ କରନ୍ତି । ମୃତାଶୌଚକୁ 'ଗଢୋଅ' କହନ୍ତି । ଅଶୌଚ ସମୟରେ ମାଛ, ମାଂସ, ଲୁଣ ଖାନ୍ତି ନାହିଁ, ଅଲଣା ଖାଇବାପାଇଁ ଚଖିଲ ଚଖିଲ ଶୁଦ୍ଧ ହୋଇ ପଡ଼ନ୍ତି ।

ପ୍ରବାସୀ ।

---

## ମୁଁ ହାଟବାହୁଡ଼ା ।

ଦେଖିଲି ସଂସାରେ ବସିଛି ହାଟ,
ଲୋକଗହଳରେ ନ ମିଳେ ବାଟ ।
ଦୋକାନ ପସରା ଧାଡ଼ିକି ଧାଡ଼ି
ବାଟ ଦୁଇ ପାଶ ବସିଛି ମାଡ଼ି ।
ବୁଲାଇବାପାଇଁ ଗହକି ମନ
ହାଟୁଆଙ୍କ ଦେଖ କେଡ଼େ ଯତନ ।
ହାଟୁଆ ବାଟୁଆ ଅଛନ୍ତି ଧାଇଁ
ହାଟେ କିଣାବିକା କରିବାପାଇଁ ।
ହାଟ କରିବାକୁ ବଳିଲା ମନ,
ମାତ୍ରକ ନାହିଁ ତ ହାତରେ ଧନ ।
ବାହାରିଲି ହାଟ ଦେଖିବାପାଇଁ,
ଦୋକାନମାନଙ୍କୁ ଦେଖିଲି ଚାହିଁ ।
ପାଟି କରୁଛନ୍ତି ଦୋକାନମାନେ,
ଆସ ଗହକିଏ ମୋହ ଦୋକାନେ ।
ଅଳପ ଲାଭରେ ଛାଡ଼ୁଛୁ ମାଲ,
ଭଣ୍ଡାଭଣ୍ଡି ନାହିଁ ଚିଜ ଅସଲ ।
ବୁଲି ବୁଲି ହାଟେ ମୁଁ କ୍ରମେ କ୍ରମେ
ଗୋଟାଏ ଦୋକାନେ ଗଲି ପ୍ରଥମେ ।
ଏହି ଦୋକାନଟା ଭାରି ଗହଳ,
ଧାଇଁଛନ୍ତି ଲୋକ ଦଳକୁ ଦଳ ।

ହାତେ ଝଣାକାଠି ଦୋକାନୀ ଧରି
ବସିଛନ୍ତି ଯମରାଜାଙ୍କ ପରି ।
ଦୋକାନରେ ମାଲ ନ୍ୟାୟବିଚାର,
କିଣେ ସେ କପାଳ ଫାଟେ ଯାହାର ।
ଦୋକାନୀ କହନ୍ତି ନ କହେ କଥା,
ବସିଛନ୍ତି ପୋତି ତଳକୁ ମଥା ।
ଯୋଡ଼ାଏ ଗହକି ଅଛନ୍ତି ଧାଇଁ
ଦୋକାନୀଙ୍କଠାରୁ ସଉଦାପାଇଁ ।
ଦୁଇ ଦଣ୍ଡିଦାର ଛୁରା ଆଗରେ,
ଛଡ଼ା ପାଉଛନ୍ତି ଭାରି ଉଚରେ ।
ସଉଦା ଯେ ନେବ ଇହାଣ ଭୂନ
ଦଣ୍ଡିଦାରକଥା ଯାଉଛି ଶୁଣି ।
ଦୋକାନୀ ପ୍ରଭୁ ତ ନିଜ ବୁଦ୍ଧିରେ
ତଉଲିଲେ ମାଲ ଲଥ ନଜରେ ।
ତଉକରେ ବସି କଲେ ପ୍ରଚାର,
ଏହି ନଥ ମାଲ ନ୍ୟାୟବିଚାର ।
ଜଣେ ଦେଇ ଶାଏ ଟଙ୍କା କୋର୍ଟଫିସ୍,
କିଣିଲା ବିଚାର ତହିଁ ଡିସମିସ୍ ।
ଜଣେ କରି ଘରଦ୍ୱାର ବିକରି
ମାଲ କିଣି ଘରେ ନେଲା ଡିକର ।

ଦଣ୍ଡିଦାର ଥାଏ ପଛରେ ଧାଇଁ
ବକସିସ ଫିସ ନେବାର ପାଇଁ ।

* * *

ଦେଖିଲି ଗୋଟାଏ ଗୃହ ଦୋକାନ,
ଦୋକାନର ନାମ ଯେ ଅବଧାନ ।
ଦେଶୀ ସସ୍ତା ମାଲ ବହଇ ସେହି,
ପିଲାଏ କିଣନ୍ତି ପଇସା ଦେଇ ।
ଦେଶୀ ମାଲ ନାହିଁ ତା ଗୁଣ କହୁ,
ଦୋକାନୀ ବାହୁଡ଼ା ଯାଚି ଦେଉଛୁ ।
ସନ୍ଧ୍ୟା ସହିତ ଲାଭ ଦୋକାନୀ
ଦୁଇ ଗୁଣ ବେଶି କରଇ ଟାଣି ।

※ ※ ※

ପାଖେ ଅଛି ଆଉ ଗୋଟେ ଦୋକାନ,
ପଶିଛି ଦୋକାନୀ କୋଟ ପେଣ୍ଟଲୁନ ।
ମାଷ୍ଟର ପଣ ସେ ଦୋକାନ ନାମ
ପାଠଶାଳା ଅଟେ ତାହାର ଧାମ ।
ବିଲାତି ମାଲ ଯେ ବିକଇ ସେହି,
କିଣୁଛନ୍ତି ପିଲା ପଇସା ଦେଇ ।
ଏହି ମାଲ ଦାମ ବହୁତ ଚଢ଼ା
ଅଚ୍ଛା ଚଟକା ନୁହେ ପଞ୍ଚ ସସ୍ତା ।
କଗଦାକଗଡ଼ି ଦେଇ ବହୁତ
କିଣୁଛନ୍ତି ପିଲା ଉଡ଼ୁଡ଼ା ପଡ଼ି ।
ଦେଖିଲି ବୁଝିଲି ଏହି ଦୋକାନ
କେବଳ ନୁହେଁଟି ପିଲାଭଣ୍ଡାଣ ।
ସୁନ୍ଦର ପାଚିଲା ଫଳ ବହୁତ
ଦୋକାନ ଭିତରେ ଅଛି ମଜୁଦ ।
ବାଇରଣ ପୋପ ସେକ୍ସପିୟର
ୱାଡ଼ସ୍ୱାର୍ଥ ମିଲଟନ ହୋମର ।
ହ୍ୟସଟଲୀ ଫିଲସଫି ବୋଟାନି,
ବିଲାତୁ ହୋଇଛି ଏ ଆମଦାନି ।
ପିଲାଏ ଖାଆନ୍ତି ଏସବୁ ଫଳ,
ବାପ ଟଙ୍କା ଗଣି ଦିଏ କେବଳ ।
ଏସବୁ ଫଳର ଗୁଣ ଓଲଟା,
ହୁଏ ଦେହ ହଳୁ ବୁଦ୍ଧି ମୋଟା ।
ମାନବ ହଜମ ଯେ କରି ଜାଣେ,
ଜଗତ ଜିଣେ ସେ ଆପଣା ଜ୍ଞାନେ ।
ଅଳପ ଖାଇଲେ ଘଟେ ଜଞ୍ଜାଳ,
ବହୁତ ଖାଇଲେ ଫିଟେ କପାଳ ।

* * *

ତାହା ପାଖେ ବସି ଗୋଟେ ଦୋକାନୀ,
ହାତରେ ଧରିଛି ସେ ନାସଦାନ ।
ଅଣ୍ଟୁଲୁନ୍ ସାନ ଲୁଗା ସେ ପିନ୍ଧେ,
ପୁରୁଣା ଗାମୁଛା ପଡ଼ିଛି କାନ୍ଧେ ।
ଦେଖିଲି ଦୋକାନେ ମାଲ ସକଳ,
ନାହାଇ ପୁରୁଣା ଶୁଖିଲା ଫଳ ।
ଶୁଖିଲା କଡ଼ିଆ ଫଳ ବିଶ୍ୱାସ,
ଉପରଟା କଡ଼ା ଭିତର ରସ ।
ମାନବ ଦୋକାନୀ କରନ୍ତି ଯନ୍ତି,
ସଜାଡ଼ି ରଖିଛି ଶବଦ ଯନ୍ତି,
କାଳିଦାସ ଭବଭୂତି ଶ୍ରୀହର୍ଷ
ତାହା ଗୋଦାମର ମାଲ ସର୍ବସ୍ୱ ।
ଘଟତ୍ୱ ପଟତ୍ୱ ବେଦାନ୍ତ ବହି
ଦେଖି କ ପତ୍ରରେ ଗରଖ କେହି ।
ଢୋର ଦେଇ ରଖିଅଛି ଗମ୍ଭୀରେ,
ପୋକ ପଡ଼ିଲାଣି ମୂଷାମାଟିରେ ।
ଦେବାପାଇଁ ସେହି ଗୋଦାମ ଝୁଡ଼ି
ଭୁଷଟାରେ ମାଲ ଦେଉଛି ଖଡ଼ି ।
ପୁରୁଣା ମାଲକେ ଶରଧା ନାହିଁ,
କିଏ ଯେନି ଯିବ ତାହା ବସାଇଁ ?
ମାନବ ଦେଖିଣ ଫଳ ପାଚିଲା "
ଯେନି ଗଲେ ଥୋକେ ବ୍ରାହ୍ମଣ ପିଲା ।

* * *

ଦେଖିଲି ହାଟରେ କେତେ ମୋଟିଆ,"
କେହି ବସିଅଛି କେହି ବା ଠିଆ ।
କେହି ଲୋକ ଯେବେ ଡାକିବ ଜଣେ
ଦରଖାସ୍ତ ଧରି ଧାଇଁବେ ପଣେ ।
ମୋଟିଆଙ୍କ ନାମ ଅଟେ ଅମଲା,
ସବେ ସତେ ତାଙ୍କ ବଶ ଅମଲା ।

*  *  *

ଆଉ ଏକଭଳି ଅଛନ୍ତି ଦୋକାନୀ,
ସେମାନଙ୍କ ନାମ ଅଟେ କରଣୀ ।
ମୁଣ୍ଡ ଗୁଞ୍ଜି ଲେଖୁଥାଆନ୍ତି ବସି,
କେଉଁ ନାହିଁ କଥା କହିବେ ହସି ?
ଯାହା ସେ ପାଆନ୍ତି ଅଳପ ମୂଲ,
ଘରଖରଚକୁ ନୁହଇ ତୁଲ ।
ପନ୍ଦର ଦିନରେ ସରଇ ଭାତ,
କରଜ ସକାଶେ ବଢ଼ାନ୍ତି ହାତ ।
ପାଆନ୍ତି ସେ କଷ୍ଟ ଉପରି ବଟା,
ହେଡ଼କରଣୀଙ୍କ ଦାନ୍ତନକଟା ।

*  *  *

କେତେ ଜଣ କରନ୍ତି ଜୀବିକା,
ତାହାଙ୍କ ବେଉସା ଯେ କଥାକହା ।
ପଇସା ପାଇଲେ କହନ୍ତି କଥା,
ବଛବଚ୍ଛ ନାହିଁ ସତ ବା ମିଥ୍ୟା ।
ତାଖେ ଯାଉଛନ୍ତି ଲଥ ନଜୀର,
ଡାକିବାମାତ୍ରକେ ହେବେ ହାଜର ।
ବଡ଼ ହୁସିଆର ସେହି ଦୋକାନୀ,
ଅଚ୍ଛା ଦିପଇସା ନଥାଇ ଟାଣି ।

*  *  *

ପଇସା ପାଇବେ କରି ଭରସା,
ଖବରକାଗଜ ଲେଖା ବେଉସା
ଧରି ବସିଛନ୍ତି କେତେ ଦୋକାନୀ,
ଦେଖିଲି ସେଗୁଡ଼ା ଛାର ଅଜ୍ଞାନୀ ।
ଯାଚି ଯାଚି ମାଲ ଦିଅନ୍ତି ଢାଳ,
ଟଙ୍କା ମାଗି ଯାଇ ଖାଆନ୍ତି ଗାଳି ।
ଏପରି ଗହକ ଥୋକେ ଅଛନ୍ତି,
ଆଗ ମୂଲ ଦେଇ ମାଲ ନିଅନ୍ତି ।
ଅଦ୍ଭୁତ ଦେଖିଲି ସବୁ କଥାରେ
ଉଗ ମରିଥାନ୍ତି ଲୋକଙ୍କଠାରେ ।
ମାହଙ୍ଗ ସେ ବଟେ ବିଲାତି ମାଲ,
ଖାଇ ପିଇ ତାର ଫୁଲିଛି ଗାଲ ।

ତାଙ୍କୁ ଡର ଥାନ୍ତି ବହୁତ ଲୋକ,
କାଳେ ବୋଲିଦେବ ଯଥାପଦକ ।
ଦେଖି ଲାଗିଲାଣି ଖଟଙ୍ଗା ମୋତେ,
ଦେଶୀ ବିଲାତିରେ ପ୍ରଭେଦ ଏତେ !

*  *  *

ଦୋକାନ ଦୁଆରେ କେହି ରୂପସୀ
ଆପଣା ସଉଦା କରୁଛି ବସି ।
ହସି ହସି ପ୍ରେମସଙ୍ଗୀତ ଗାଇ
ଗହକମାନଙ୍କୁ ନେଏ ଭୁଲାଇ ।
କୁତସିତ ବ୍ୟାଧି ଜନ୍ମା ଅଧର୍ମ
ମାଲ ବିକିବାର ତାହାର କର୍ମ ।
ବାପ ଅରଜିଲା କଡ଼ିକୁ ଦେଇ
କିଣୁଛି ସେ ମାଲ ଭେଣ୍ଡିଆ କେହି ।

*  *  *

ଦୋକାନ ମେଲିଛି ଗୋଟାଏ ଲୋକ,
ପୁରୋହିତ ସେହି ଧର୍ମଯାଜକ ।
ଦହି ଚୂଡ଼ା ଭୋଜ କଞ୍ଚା ଦକ୍ଷିଣା
ମୂଲ ଦେଲେ ହେବ ତା ମାଲ କିଣା ।
ତା ଦୋକାନ ମାଲ ଯେବେ ନ ଅଣି
ସବୁ ଅଟକିବ ବାହା ପୁଦାଣି ।
ଅଦ୍ଭୁତ ତା ମାଲ ଯେ ପିଣ୍ଡବଢ଼ା
ପିତୃଲୋକପାଇଁ ବହୁତ ଲୋଡ଼ା ।
ଦେଖିଲି ତା ପାଶେ ଦୋଇଣ ଠିଆ ।
ଦନୁ ଦନୁ ହୁଏ ମାଲ ପଡ଼ିଆ ।

*  *  *

ଦେଖିଲି ବସିଛି ଗୋଟେ ଦୋକାନୀ,
ଅନୁମାନ କଲି ହେବ ସେ ଜ୍ଞାନୀ ।
ବୁଝାଟା ଦେଉଛି ସେ ଥରୁ ଥରୁ,
ପଚ୍ଚର ଜାଣିଲି ତା ନାମ ଗୁରୁ ।
ଶାସ୍ତ୍ରକଥା କହା ତାହାର କାମ,
ପୁଣି ସେ କହଇ ଶ୍ରୀହରି ନାମ ।
ମାଲ ଛାଡ଼ି ଦିଏ ଅଳ୍ପ ମୂଲରେ
ଗହକ ଅଳପ ତାହା ପାଖରେ ।

*  *  *

ହାଟେ ବୁଲି ବୁଲି କଲୁଁ ଜ୍ଞାନ,
ମୁଁ ମଧ୍ୟ ମେଲିଲି ଗୋଟେ ଦୋକାନ ।
ଅରଜୁଅଛନ୍ତି ଲୋକେ ପଇସା,
ମୁଁ ମଧ୍ୟ ପାଇବି କଲି ଭରସା ।
ଝାଡ଼ ଝୁଡ଼ ଦେଇ ଦୋକାନ ଘର,
ଗୋଦାମେ ଭରିଲି ସାହିତ୍ୟ ମାଲ ।
ବିଲାତି ମାଲକୁ ନାହିଁ ତ ପୁଞ୍ଜି,
ଦେଶୀ ମାଲ ଦେଲି ଗୋଦାମେ ଗୁଞ୍ଜି ।
ଛପାଖାନାଠାରୁ ଆଣିଲି ଢାଳି,
ଲାଭ ହେଲେ ଶୁଝି ଦେବି ମୁଁ ଭାଳି ।
କାଢ଼ିଆ ମାଲରେ ବହୁତ ଦୋଷ,
କଳନ୍ତର ବଳି ବୁଡ଼େ ସର୍ବସ୍ୱ ।
ଭୁଲାଇବା ପାଇଁ ଗାହକ ମନ,
ଟାଙ୍ଗି ଦେଲି ହାଟେ ସେ ବିଜ୍ଞାପନ ।
ପାଟି କରି ଦ୍ୱାରେ ଡାକିଲି ବସି,
ଭଲ ମାଲ ଭାଇ ନିଅ ହେ ଆସି ।
ଅଇଲେ ଗାହକ ଶୁଣି ମୋ ଡାକ,
ପଚାରିଲେ ତୁମ୍ଭେ କି ଫଳ ବିକ ?
ବୋଇଲି ମୁଁ ଅନୁବାଦ ପୁରାଣ,
ଅଛି ମିଠ ଫଳ ଏହାକୁ ଜାଣ ।
ବୋଇଲା ମୋ କଥା ଶୁଣି ଗରାଖ,
ହରକ୍ରିରେ ବଡ଼ ଅଳପ ରାଗ ।
ଏଗୁଡ଼ା ସବୁ ତ ପଚା ପୁରୁଣା,
ଏସବୁର ମୂଲ ନାହାଣି ଉଣା ।
ଯେବେ ଦେବ ତୁମ୍ଭେ ବଜାମୂଲରେ
କୃପା କରି ନେଇ ଗୃହିବୁଁ ଥରେ ।
ଦେଖାଇଲି ତାକୁ ନେଇ ନଭେଲ,
ବୋଇଲା ସେ କଥା ପୁଚୁରା ହେଲ ।
ପୁଣି ଦେଖାଇଲି ତାକୁ କବିତା,
ବୋଇଲା ଏଗୁଡ଼ା ନାହାଁଣି ପିତା ।
ଗରାଖ ମୁଖରୁ ଏ କଥା ଶୁଣି,
ନିଶ୍ୱାସ ପକାଇ ହେଲି ମୁଁ ତୁନି ।
ଭାଳିଲି ମୋହର ସରିଲା ପାଠ ।
ଅଉ କରିବି ମୁଁ କଥଣ ହାଟ ।

ବେଭାର ଦେଖୁଛୁ ଯେ ଲୋକଙ୍କର,
ଦେଶୀ ଜିନିଷରେ ନାହିଁ ଆଦର ।
ହେବେ ଲୋକ ଟଙ୍କା ପଇସା ଦେଇ
ଯାଆନ୍ତି ବିଲାତି ଜିନିଷ ନେଇ ।
ଅଛୁରି ଶୁଣନ୍ତୁ ଗୋଟାଏ ମଜା,
ମାଲ କାଳ ନେଲେ ଯୋଡ଼ାଏ ଭଜା ।
ଯେଉଁମାନେ ନେଲେ ମାଲ କାଢ଼ିଆ,
ଅବଶ୍ୟ ସେମାନେ ଜାତି ଓଡ଼ିଆ ।
ତୁନିତାନି ହୋଇ ରହିଲେ ଘରେ,
ଚିଠିରେ ଉତ୍ତର ନ ଦେଲେ ଥରେ ।
ଏଡ଼େ ହାଟଟାରେ ଦେଖିଲି ଜଣେ,
ଗରାଖ ବୋଲି ମୁଁ ତାହାକୁ ଗଣେ ।
ଜାଣିଲି ପଚା ମୁଁ ସେହି ଚନଗ୍ର,
ଚିହ୍ନନ୍ତି କେ ନାଚ କେଉଁଟା ଘାଗ୍ର ।
ବାଛୁ ବାଛୁ ନେଲେ ଗୋଟାଏ ଫଳ,
ବଦନ କଲି ମୁଁ ଏଟା ହେବଲ ।
ଲୋକ ତ ଶୁଣନ୍ତୁ ଏହି ବାରତା,
ଲାଭ ଲୋକସାନ କପାଳ କଥା ।
ଛପାଖାନା ଡରେ ଲାଭ ନ ଲୋଡ଼ି,
ମୂଲେ ମୂଲେ ଦେଲି ମାଲକୁ ଛାଡ଼ି ।
ହେଲେ ହେଉ ପଛେ ବହୁତ ତ୍ରୁଟି,
ଛପାଖାନା ଏଣେ ଯତାଛୁ ଛୋଟି ।
ତ୍ରୁଟି ସହି ମାଲ ବିକିଲେ ବନେ,
ଏଥିରେ କି ଭାଇ ବଣିଜ ଚଳେ ?
ଦେଶୀ ସାହିତ୍ୟ ଯେ ବଣିଜ କଳା,
ଜାଣିଥିବ ସେହି ଲୋକଟା ମଲା ।
ଲାଭ କଥା ଭାଇ ଥାଉ ପଛକୁ,
ବୁଡ଼ାଇ ବସିବ ନିଜ ମୂଳକୁ ।
ଭାଳିଲି ହାଟରେ ଥିବି କେପାଠ ?
ଦେଲି ବେଳେ ବୃଦ୍ଧ ଅଡ଼କୁ ଚାହିଁ ।
ଗୋଟାଏ ପସରା ବୋଝ ମୁଣ୍ଡାଇ,
ଘରମୁହାଁ ହୋଇ ଗଲି ପଳାଇ ।
ଝାଡ଼ଝୁଡ଼ ମାଲ ରଖିଲି ଘରେ,
ପଚାରିବ ଦନେ କେହି ବା ଥରେ ।

ଏଣେ ତ ବୁଡ଼ିଲା ସବୁ ଭରସା,
ଆହୁରି କପାଳେ ଅଛି ଦୁର୍ଦ୍ଦଶା ।
କାଲି ଦୁଆରକୁ ଆସି ପ୍ରିଣ୍ଟର,
କରିବ ବହୁତ ସେ ହରବର ।
ଛାପାଠାରୁ ମାଲ ଆଣିଛି କାଲି,
ନ ପାଇଲେ ଟଙ୍କା ଦେବ ସେ ଗାଳି ।
ଛପାଖାନା ଲୋକ କହାଉ ମନ୍ଦ,
ପଇସା ସକାଶେ ଲଗାନ୍ତି ଦ୍ୱନ୍ଦ ।
ଲେଖିବ କବିତା ଦେବୁ ଛପାଇ,
ପଇସା କପାଇଁ ନେବୁ ହେ ଭାଇ ?
ନାହାଉ ତୁ ଯଦି ଛଡ଼ିବୁ ନାହିଁ,
ରହି ବସି ଦେବ କଲ କପାଇଁ ?
ଲାଗିଛି ସଂସାର ମଧ୍ୟରେ ହାଟ,
ମାହକ ମୋହର ପଡ଼ିଲା ବାଟ ।
ନାହିଁ ଦେବେ ବଳ ହେଲିଣି ବୁଢ଼ା,
ମୋହ ନାମ ହୁଇ ହାଟବାହୁଡ଼ା ।

ଶ୍ରୀ—

## ପ୍ରବାଳଶ୍ରେଣୀ ।

ଅମ୍ଭମାନଙ୍କ ମଧ୍ୟରେ ଯେଉଁ ସମସ୍ତ ପ୍ରବାଳ ସାଧାରଣତଃ ବ୍ୟବହୃତ ହୁଏ ତାହା ପ୍ରବାଳକୀଟ ନାମକ ନିମ୍ନତମ ଶ୍ରେଣୀସ୍ଥ ଏକ ସାମୁଦ୍ରିକ ଜୀବର କଙ୍କାଳରୁ ପ୍ରସ୍ତୁତ ହୋଇଯାଏ । ସମୁଦ୍ର ଗର୍ଭରେ ନାନାବିଧ ପ୍ରବାଳ ଦେଖାଯାନ୍ତି । ଏହି କୀଟଗୁଡ଼ିକ କୌଣସି ଏକସ୍ଥାନରେ ସଶୀକୃତ ହୋଇ ବାସ କରନ୍ତି । ଏହି କାରଣରୁ ଯେଉଁ ଯେଉଁଠାରେ ଏମାନଙ୍କ ବାସସ୍ଥାନ ସେଠି, ପାହାଡ଼ ପ୍ରଭୃତି ପରି ସମୁଦ୍ର ମଧ୍ୟରେ ଦେଖାଯାଏ । ଏ ସମସ୍ତ ଏକତାର ଶୃଙ୍ଖଳ ପ୍ରମାଣସ୍ୱରୂପ ଅନେକ ବକ୍ତା ଓ ଲେଖକଙ୍କଦ୍ୱାରା ଉଲ୍ଲିଖିତ ହୁଅନ୍ତି । ଏଗୁଡ଼ିକର ବର୍ଣ୍ଣବୈଚିତ୍ର୍ୟ ଓ ଶିଳ୍ପକୌଶଳ ପ୍ରତି ଦୃଷ୍ଟିପାତ କଲେ [illegible] ମନ ବିମୋହିତ ହୋଇଯାଏ । ଗୋଟିଏ ଅଣୁବୀକ୍ଷଣିକ ଜୀବ କର୍ତ୍ତୃକ ଏପ୍ରକାର ପ୍ରକାଣ୍ଡ ଓ ମନୋହର ବସ୍ତୁ ନିର୍ମିତ ହୁଏ, ଏହା ମହାନ୍ ପରମେଶ୍ୱରଙ୍କ ଅଦ୍ଭୁତ ସୃଷ୍ଟିକୌଶଳର ଚିହ୍ନ ବିନା ଆଉ କଣ କହାଯାଇପାରେ ?

ପ୍ରବାଳ କୀଟର ଶାରୀରିକ ଅବୟବ ନିରୂପଣ କରିବା ଅତ୍ୟନ୍ତ କଠିନ ବ୍ୟାପାର । ଏମାନେ ସ୍ୱନିର୍ମିତ କଙ୍କାଳ ଉପରେ ଥାଇ ଶରୀରକୁ କେତେବେଳେ ପ୍ରସାରିତ ଓ କେତେବେଳେ ସଙ୍କୁଚିତ କରନ୍ତି । ଏମାନଙ୍କ ମସ୍ତକର ଚତୁର୍ଦ୍ଦିଗରେ ଅନେକଗୁଡ଼ିଏ ବାହୁ ଥାଏ ଏବଂ ଏମାନେ ଉକ୍ତ ମସ୍ତକ ବାହୁଯୁକ୍ତ ଶରୀରର ଏହି ଭାଗ ବାହାର କରି ବାହୁ ସାହାଯ୍ୟରେ କ୍ଷୁଦ୍ର କ୍ଷୁଦ୍ର କୀଟାଦି ଭକ୍ଷ୍ୟ ବସ୍ତୁ ଧରି ଖାଆନ୍ତି । ଭକ୍ଷିତ ବସ୍ତୁ ପାକସ୍ଥଳୀରେ ଜୀର୍ଣ୍ଣ ହେଲା ପରେ ଯାହା ଅବଶିଷ୍ଟ ଅସାର ପଦାର୍ଥ ଅପକ୍ୱ ହୋଇ ରହିଯାଏ, ତାହା ବାହୁନିମ୍ନସ୍ଥିତ ଛିଦ୍ର ବାଟେ ନିର୍ଗତ ହୁଏ । ପ୍ରବାଳ କୀଟମାନଙ୍କର ପୁନରୁତ୍ପତ୍ତି ନିୟମ ଅନ୍ୟାନ୍ୟ ଜନ୍ତୁମାନଙ୍କ ପରି ନୁହେ । ଏମାନଙ୍କ ସନ୍ତାନମାନେ ଏମାନଙ୍କ ଶରୀର ଉପରେ ବ୍ରଣପରି ଜାତ ହୋଇ କ୍ରମରେ ସମ୍ପୂର୍ଣ୍ଣ ଅବୟବ ପ୍ରାପ୍ତ ହୁଅନ୍ତି । କିଛି କାଳ ପରେ ସନ୍ତାନ-କୀଟର ଶରୀରରୁ ମଧ୍ୟ ସେହି ପ୍ରକାରେ ନୂତନ କୀଟ ଜନ୍ମେ । ଏହିରୂପେ ଏମାନେ ପରସ୍ପର ଏକତ୍ର ସଂଯୁକ୍ତ ହୋଇ ରହିଥାନ୍ତି । ନିମ୍ନଶ୍ରେଣୀସ୍ଥ ଅନ୍ୟାନ୍ୟ ଜୀବମାନଙ୍କ ମଧ୍ୟରେ ପୁଣି ଏହି ପ୍ରକାର ପୁନରୁତ୍ପତ୍ତିର ପ୍ରମାଣ ମିଳେ । ଜୀବବିଜ୍ଞାନରେ ଏହି ନିୟମ କଢ଼ନିର୍ଗମନ (budding) ବୋଲି କଥିତ ହୁଏ । ଉକ୍ତ କଢ଼ନିର୍ଗମନର ଅନୁକ୍ରମର ବିଭିନ୍ନତା ଯୋଗୁଁ ପ୍ରବାଳ ନାନା ଆକାର ଧାରଣ କରିଥାଏ । ପ୍ରବାଳ କୀଟ ସମୁଦ୍ର ଗର୍ଭରୁ ଅବଶ୍ୟକ ପଦାର୍ଥ ଗ୍ରହଣ

କଠିନ କଙ୍କାଳ ନିର୍ମାଣ କରେ । କଙ୍କାଳ ଚୂର୍ଣ୍ଣପ୍ରସ୍ତର (lime-stone ବା carbonate of lime) ନାମକ ପଦାର୍ଥରେ ନିର୍ମିତ ହୋଇଥାଏ । ପ୍ରବାଳକଙ୍କାଳର ବର୍ଣ୍ଣ ମଧ୍ୟ ନାନା ପ୍ରକାର ଅଟେ । କେତେଗୁଡ଼ିକର ବର୍ଣ୍ଣବୈଚିତ୍ର୍ୟ ଓ ଶିଳ୍ପକୌଶଳ ଏତେଦୂର ପର୍ଯ୍ୟନ୍ତ ଥିବାର ଦେଖାଯାଏ ଯେ ତାହା ପୃଥିବୀର ଶ୍ରେଷ୍ଠତମ ଚିତ୍ରକର ବା ଶିଳ୍ପୀଙ୍କର ସର୍ବୋତ୍କୃଷ୍ଟ କାର୍ଯ୍ୟକୁ ମଧ୍ୟ ପରାଜିତ କରେ । ସ୍ଥୂଳତଃ ପ୍ରବାଳର ଆକାର ଦୁଇ ପ୍ରକାର ଅଟେ । ଗୋଟିଏ ପ୍ରବାଳରୁ ଅନ୍ୟ ଗୋଟିଏ ବାହାରି ଏହିପରି ଏକ ପତ୍ରଶୂନ୍ୟ କ୍ଷୁଦ୍ର ବୃକ୍ଷ ପରି ହୋଇଥାଏ ଅଥବା ସେ ସମସ୍ତ ପରସ୍ପର ପ୍ରାୟ ସମ ସରଳ ଭାବରେ ସଂଶ୍ଳିଷ୍ଟ ରହି ବୃହତ୍ ପ୍ରସ୍ତରାକାର ଧାରଣ କରିଥାଏ । ନିମ୍ନରେ ଅସଂଖ୍ୟ ପ୍ରବାଳମାନଙ୍କ ମଧ୍ୟରୁ କତିପୟ ଉଦାହରଣ ପ୍ରଦତ୍ତ ହେଲା । କୋରାଲିୟମ୍ ( Corallium ) ନାମକ ଏକ ରକ୍ତବର୍ଣ୍ଣର ପ୍ରବାଳକୁ ରକ୍ତପ୍ରବାଳ ବୋଲି ମଧ୍ୟ କହାଯାଏ । ଏହିପରି ବର୍ଣ୍ଣାନୁସାରେ ଅଣ୍ଟିପାଥେରିଆ (Antipatheria) ଓ ହେଲିଓ-ପରା ( Heliopora ) ନାମକ ପ୍ରବାଳଗୁଡ଼ିକ କଳା ଓ ନୀଳ ବୋଲି ପରିଚିତ ଅଟନ୍ତି । ଆକାର ଅନୁସାରେ ମଧ୍ୟ କେତେକ ପ୍ରବାଳ ଅଭିହିତ । ଟ୍ୟୁବିପୋରା ( Tubipora ) ଓ ଗାର୍ଗୋନିଆ ( Gargonia ) ନାମକ ପ୍ରବାଳକୁ ବେଣୁ ଓ ପକ୍ଷୀ ପ୍ରବାଳ ବୋଲାଯାଏ । ଉପରୋକ୍ତ ପ୍ରାୟ ସମସ୍ତ ପ୍ରବାଳଗୁଡ଼ିକର ଗଠନପ୍ରଣାଳୀ ପୂର୍ବକଥିତ ପତ୍ରଶୂନ୍ୟ ବୃକ୍ଷ ପରି ଅଟେ । ପ୍ରକାଣ୍ଡ ପ୍ରସ୍ତରାକାର ପ୍ରବାଳମାନଙ୍କ ମଧ୍ୟରେ ଡିସ୍କସମା (Disco-soma) ନାମକ ପ୍ରବାଳ ପ୍ରଧାନ ଅଟେ ।

ବିଶେଷତଃ ଏହାଯୋଗୁଁ ସମୁଦ୍ରଗର୍ଭରେ ପ୍ରକାଣ୍ଡ ସେତୁ, ପାହାଡ଼, ଏମନ୍ତ କି କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପମାନ ମଧ୍ୟ ନିର୍ମିତ ହୋଇଥାଏ । ପ୍ରଥମରେ ପ୍ରବାଳ-ପଂକ୍ତି ସମୁଦ୍ରତଳରେ ଦୀର୍ଘ ଅସ୍ତିତ୍ୱ ବ୍ୟାପି ଜାତ ହୁଅନ୍ତି । କାଳକ୍ରମେ ଏହି କୀଟଗୁଡ଼ିକ ମରିଯାନ୍ତି ଏବଂ ସେମାନଙ୍କ ଶୂନ୍ୟ କଙ୍କାଳଭିତରେ ନାନାପ୍ରକାର ପଦାର୍ଥ ସ୍ଥାନ ପାଏ । ତହିଁ ଉପରେ ଏହି ମୃତ ପ୍ରବାଳଶ୍ରେଣୀ ଉପରେ ପୁନର୍ବାର ପୂର୍ବ ପରି ଏକ ନୂତନ ଦଳ ଜନ୍ମି ବାସ କରନ୍ତି ଏବଂ କାଳକ୍ରମେ ପୂର୍ବପୁରୁଷମାନଙ୍କ ଦଶା ଲଭନ୍ତି । ଏହି ଅନୁକ୍ରମ ପୁନଃ ପୁନଃ ଘଟିତ ହୋଇ କଥିତ ଦ୍ୱୀପ, ସେତୁ ପ୍ରଭୃତି ଜନ୍ମାଏ ।

ପ୍ରବାଳପୁଞ୍ଜର ଏକପ୍ରକାର ଘନୀକରଣଦ୍ୱାରା ସମୁଦ୍ରମଧ୍ୟରେ ତିନପ୍ରକାର ଆକାର ନିର୍ମିତ ହୋଇ-ଥାଏ । ପ୍ରଥମରେ ପ୍ରବାଳଦ୍ୱୀପ । ପ୍ରଶାନ୍ତ ମହାସାଗରରେ ଏହିପରି ଅନେକ ଦ୍ୱୀପ ଦେଖା-ଯାଏ । ଅନ୍ୟାନ୍ୟ ଦ୍ୱୀପମାନଙ୍କ ପରି ଏଗୁଡ଼ିକ ଉପରେ ମଧ୍ୟ ମନୁଷ୍ୟ ଓ ଇତର ଜୀବ ଜନ୍ତୁ-ମାନେ ବାସ କରନ୍ତି । ଦ୍ୱିତୀୟରେ ପ୍ରବାଳସେତୁ ( Barrier Reef ) । ଏଗୁଡ଼ିକ ପ୍ରବାଳଗଠିତ ପ୍ରକାଣ୍ଡ ସେତୁ ଅଟନ୍ତି । ଅଷ୍ଟ୍ରେଲିଆ ମହାଦେଶର ପୂର୍ବୋତ୍ତରସ୍ଥିତ କୁଇନ୍ସଲଣ୍ଡ ( Queensland ) ନାମକ ଦେଶର ଉତ୍ତରଭାଗର ସମୁଦ୍ରାପ୍ତ ପୂର୍ବ ଦିଗରେ ୧୨୫୦ ମାଇଲ ବ୍ୟାପି ଗୋଟିଏ ପ୍ରବାଳସେତୁ କୂଳରୁ ୩୦ ମାଇଲ ଦୂରରେ ସମସରଳଭାବରେ ବିଦ୍ୟମାନ । ଏହା ପୃଥିବୀର ଏପ୍ରକାର ସମସ୍ତ ସେତୁମାନଙ୍କ ମଧ୍ୟରେ ଅତ୍ୟନ୍ତ ଦୀର୍ଘ ଓ ବିଶାଳ ହୋଇଥିବା ଯୋଗୁଁ ବୃହତ୍ ପ୍ରବାଳସେତୁ ( The Great Barreir Reef ) ନାମରେ ଖ୍ୟାତ ଅଟେ ; ତୃତୀୟ ଓ ଶେଷ ଆକାର ବିଚ୍ଛିନ୍ନ ପ୍ରବାଳପାହାଡ଼ ( Fringing Reef ) । ଏଗୁଡ଼ିକ କ୍ଷୁଦ୍ର କ୍ଷୁଦ୍ର ପାହାଡ଼ାକାରରେ ବିଚ୍ଛିନ୍ନ ହୋଇ ସମୁଦ୍ର ମଧ୍ୟରେ ବିସ୍ତୃତ ହୋଇଥାନ୍ତି । ପ୍ରଶାନ୍ତ ମହାସାଗରରେ ଉପରୋକ୍ତ ଦ୍ୱୀପପୁଞ୍ଜ ଛଡ଼ା ଏ ପାହାଡ଼ମାନ ମଧ୍ୟ ଅନେକ ବିଦ୍ୟମାନ ।

ପୃଥିବୀର ପ୍ରାୟ ସମସ୍ତ ସାଗରରେ ପ୍ରବାଳ ଦେଖାଯାନ୍ତି । ଅଧିକାଂଶ ସମୁଦ୍ର ଉପକୂଳରେ ଜୁଆର ଗମନାଗମନ ସୀମାମଧ୍ୟରେ ବାସ କରନ୍ତି ଏବଂ କେତେକ ମଧ୍ୟ ଅତ୍ୟନ୍ତ ଗଭୀର ଜଳରେ ଥାନ୍ତି । ୬୦ ଫୁଟଠାରୁ ପ୍ରାୟ ୧୨୫୦୦ ଫୁଟ ପର୍ଯ୍ୟନ୍ତ ସମୁଦ୍ରର ବିଭିନ୍ନ ଗଭୀରସ୍ଥାନରେ ଏମାନେ ଥିବାର ଦେଖାଯାଇଅଛି ।

ଶ୍ରୀ ତାରିଣୀଚରଣ ରଥ ।

# ଧର୍ମ ଓ ଜୀବନ ।

ସଂସାରକୁ ମାନବର କର୍ମକ୍ଷେତ୍ରରୂପରେ ଯଦି ମୁହୁର୍ମୁହୁଃ କେହି ଭାଳିବାର ଥାଏ ତେବେ ତାହା ତାହାର ଧର୍ମ ଓ ଜୀବନର ବିଷୟ । ଏହି ସଂସାରଟା ଏତେ ଜଟିଳ ଓ ପ୍ରଲୋଭନପୂର୍ଣ୍ଣ ଯେ ସକଳ ସମୟରେ ପ୍ରକୃତ ଧର୍ମ ଅବଧାରଣ କରିବା ମାନବ ପକ୍ଷରେ ସୁକଠିନ ହୋଇ ଉଠେ । ସୁତରାଂ ଜୀବନକୁ ଧର୍ମାନୁମୋଦିତ ମାର୍ଗରେ ପରିଚାଳିତ କରିବା ମଧ୍ୟ ଅସମ୍ଭବ ହୋଇ ଉଠେ । ପୃଥିବୀର ଗଣି ଗଣି ଧର୍ମଗ୍ରନ୍ଥ ବିପଥଗାମୀ ନରନାରୀଙ୍କୁ ସନ୍ମାର୍ଗବର୍ତ୍ତୀ କରିବା ନିମିତ୍ତ ରଚିତ । ଧର୍ମଗ୍ରନ୍ଥ କହିଲେ ଅମ୍ଭେମାନେ କେବଳ କୋରାନ, ବାଇବେଲ, ବେଦ ବା ଜେନ୍ଦାବେସ୍ତାକୁ ଲକ୍ଷ କରୁ ନାହୁଁ । ଯେଉଁଥିରେ ମାନବର କର୍ତ୍ତବ୍ୟାକର୍ତ୍ତବ୍ୟ ବିଷୟରେ ଯାହା ମାତ୍ର ଉପଦେଶ ନିହିତ ଅଛି ତାହାକୁହିଁ ଅମ୍ଭେମାନେ ଧର୍ମଗ୍ରନ୍ଥ ଆଖ୍ୟା ଦେବାକୁ ପ୍ରସ୍ତୁତ । ମାନବ ବୁଦ୍ଧିର ବିକାଶ ସଙ୍ଗେ ସଙ୍ଗେ ଅବଶ୍ୟ ତାହାର କର୍ତ୍ତବ୍ୟଜ୍ଞାନର ମଧ୍ୟ ବିକାଶ ହେଉଅଛି ଏବଂ ତନ୍ନିମିତ୍ତ ଧର୍ମଗ୍ରନ୍ଥମାନଙ୍କର ମଧ୍ୟ ପରିବର୍ତ୍ତନ ସାଧିତ ହେଉଅଛି । ସୁତରାଂ ଅମ୍ଭମାନଙ୍କର ଜୀବନ ପରିଚାଳନର ବ୍ୟବସ୍ଥା ଯେ କ୍ରମେ କଣ୍ଟକରୁ କଣ୍ଟକିତର ହେଉଅଛି ତାହା ନିଶ୍ଚିତ । ସେ କଥା ନେଇ ବାଦ ପ୍ରତିବାଦ କରିବା ଏହି କ୍ଷୁଦ୍ର ପ୍ରବନ୍ଧର ଉଦ୍ଦେଶ୍ୟ ନୁହେ । ଅମ୍ଭେମାନେ ଅମ୍ଭମାନଙ୍କର ଅମୂଲ୍ୟ ଜୀବନକୁ କେତେଦୂର ପ୍ରକୃତମାର୍ଗଗାମୀ କରୁଅଛୁଁ କେବଳ ତାହାହିଁ ଆଲୋଚନା କରି ଦେଖିବା ଏହାର ଉଦ୍ଦେଶ୍ୟ ଅଟେ ।

ଅମ୍ଭମାନଙ୍କର କ୍ଷୁଦ୍ର ସୀମାବଦ୍ଧ ଜ୍ଞାନରେ ଅମ୍ଭେମାନେ ମାନବ ସୃଷ୍ଟିକୁ ଈଶ୍ୱରଙ୍କର ସର୍ବଶ୍ରେଷ୍ଠ ସୃଷ୍ଟି ବୋଲି ସ୍ଥିର କରିଥାଉଁ । ଏହି ପ୍ରକାଣ୍ଡ ବ୍ରହ୍ମାଣ୍ଡ ମଧ୍ୟରେ ମାନବଠାରୁ ବଳି ଶ୍ରେଷ୍ଠତର ଜୀବ ପୃଥିବୀ ଛଡ଼ା ଅନ୍ୟ କୌଣସିଠାରେ ଅଛି କି ନାହିଁ ତାହା ଅମ୍ଭମାନଙ୍କର କ୍ଷୁଦ୍ର ବୁଦ୍ଧିର ଅଗୋଚର । ସେ ଯାହା ହେଉ, ମନୁଷ୍ୟହିଁ ଏହି ପୃଥିବୀର ଶ୍ରେଷ୍ଠ ଜୀବ ଏବଂ ମନୁଷ୍ୟତ୍ୱହିଁ ଜୀବତ୍ୱର ଉଚ୍ଚତମ ବିକାଶ । ଏପ୍ରକାର ସୁଦୁର୍ଲଭ ଜୀବନ ଲାଭ କରି ଅମ୍ଭେମାନେ ତାହାର କିପ୍ରକାର ସଦ୍‌ବ୍ୟବହାର କରୁଥାଉଁ ତାହା ଆଲୋଚନା କରି ଦେଖିବା ଯେ ପ୍ରତ୍ୟେକ ମାନବର ଅବଶ୍ୟ କର୍ତ୍ତବ୍ୟ ତହିଁରେ ଦ୍ୱିରୁକ୍ତି ହୋଇ ନ ପାରେ । ଏବମ୍ବିଧ ଆଲୋଚନାଦ୍ୱାରା ଯେଉଁ ସୁଫଳ ଲବ୍ଧ ହୁଏ ତାହା ଅମ୍ଭମାନଙ୍କ ଜୀବନର ମାର୍ଗକୁ ଆଲୋକିତ କରିଦିଏ ଏବଂ ଅମ୍ଭେମାନେ ସନ୍ମାର୍ଗରେ ଚାଲିବାର ସୁବିଧା ପାଇ ଧନ୍ୟ ହୋଇଥାଉଁ ।

ଧର୍ମ କଣ ଆଗେ ତାହା ବୁଝିବା ଉଚିତ । ଧର୍ମର ଯେଉଁ ସାମାନ୍ୟ ପ୍ରଚଳିତ ଅର୍ଥ ଅଛି ଅମ୍ଭମାନଙ୍କ ଅର୍ଥ ତହିଁରୁ ବିଭିନ୍ନ ଅଟେ । ଯାହା ମନୁଷ୍ୟର ବିଶେଷ ଗୁଣ ବା ଶକ୍ତି, ଯାହା ମନୁଷ୍ୟକୁ ଧାରଣ କରେ, କ୍ରମୋନ୍ନତ କରେ, ଆଦର୍ଶ ଆଡ଼କୁ ନେଇ ଯାଏ, ତାହାହିଁ ପ୍ରକୃତ ଧର୍ମ । ଅମ୍ଭମାନଙ୍କ ଦେଶରେ ପୁରାକାଳରେ ମନ୍ୱାଦି ମହର୍ଷିଗଣଙ୍କଦ୍ୱାରା ପ୍ରଣୀତ ଧର୍ମଶାସ୍ତ୍ରମାନଙ୍କରେ ଧର୍ମର ଯେଉଁ ଲକ୍ଷଣମାନ ପ୍ରଦତ୍ତ ହୋଇଛି ସେଗୁଡ଼ିକ ଆଜିକାଲି ଅମ୍ଭମାନଙ୍କ ନିକଟରେ ସଙ୍କୀର୍ଣ୍ଣ ବୋଲି ବୋଧ ହେଉଅଛି । ପରବର୍ତ୍ତୀ କାଳରେ ଉଚ୍ଚ ନୀତିର ଲକ୍ଷଣଗୁଡ଼ିକ ଅପେକ୍ଷାକୃତ ପ୍ରଶସ୍ତ ଏବଂ ପୂର୍ଣ୍ଣ । ଏମନ୍ତ କି କୌଣସି କୌଣସି ପଣ୍ଡିତ ଗୀତୋକ୍ତ ପ୍ରଣାଳୀକୁ ପୂର୍ଣ୍ଣ ମନୁଷ୍ୟତ୍ୱ ବିକାଶର ଶ୍ରେଷ୍ଠ ପ୍ରଣାଳୀ ବୋଲି କହି ଅଛନ୍ତି । ସେମାନଙ୍କ ମତ କେତେଦୂର ସମୀଚୀନ ଅମ୍ଭେମାନେ କହି ନ ପାରୁଁ । ଅମ୍ଭମାନଙ୍କର ବିଶ୍ୱାସ ଗୀତୋକ୍ତ ଆଦର୍ଶଠାରୁ ପୂର୍ଣ୍ଣତର ଆଦର୍ଶ ପ୍ରକାଶିତ ହୋଇଅଛି ଏବଂ ଉକ୍ତ ଆଦର୍ଶାନୁଯାୟୀ

ଅବତାର ମଧ୍ୟ ଜନ୍ମଗ୍ରହଣ କରି ଅଛନ୍ତି । ଶ୍ରୀକୃଷ୍ଣଚନ୍ଦ୍ରଙ୍କଠାରେ ଯେଉଁମାନେ ମନୁଷ୍ୟତ୍ୱର ପୂର୍ଣ୍ଣ ବିକାଶ ଦେଖନ୍ତି ସେମାନଙ୍କ ସହିତ ମଧ୍ୟ ଅମ୍ଭମାନଙ୍କର ମତାନୈକ୍ୟ ଅଛି । ଆମ୍ଭେମାନେ କହୁଁ, ପୂର୍ଣ୍ଣ ମନୁଷ୍ୟତ୍ୱର ବିକାଶ ଏପର୍ଯ୍ୟନ୍ତ ପୃଥିବୀରେ ହୋଇ ନାହିଁ କେବାର କାଲ ମଧ୍ୟ ଉପସ୍ଥିତ ହୋଇ ନାହିଁ । ସମଗ୍ର ମାନବ ଜାତି ପୂର୍ଣ୍ଣତା ଅଭିମୁଖେ ଧାବିତ ହେଉଅଛି ମାତ୍ର । ସେହି ଆକାଂକ୍ଷିତ ପୂର୍ଣ୍ଣତା ଉପସ୍ଥିତ ହେଲେ ପୃଥିବୀରେ ସ୍ୱର୍ଗରାଜ୍ୟ ପ୍ରତିଷ୍ଠିତ ହେବ—ସତ୍ୟଯୁଗର ଆବର୍ତ୍ତନ ହେବ । ସେହି ପୂର୍ଣ୍ଣତା ଅଭିମୁଖେ ଲକ୍ଷ ରଖି ଉପସ୍ଥିତ ଘଟନାବଳୀ ସହିତ ମାନବ-ପ୍ରକୃତିର ସର୍ବାଙ୍ଗୀନ ସାମଞ୍ଜସ୍ୟ ସଂସ୍ଥାପନହିଁ ପ୍ରକୃତ ମାନବଧର୍ମ ନାମରେ ଅଭିହିତ ହେବାର ଯୋଗ୍ୟ । ଏହି ପ୍ରକାରେ ଅମ୍ଭମାନଙ୍କ ଜୀବନର ଗତିକୁ ପରିଚାଳିତ କରି ପାରିଲେ ଯେ ଆମ୍ଭେମାନେ ପ୍ରକୃତ ମନୁଷ୍ୟତ୍ୱ ଲାଭ କରିବାକୁ ସର୍ବଥା କ୍ଷମ ହୋଇ ପାରିବୁଁ ଏଥିରେ ଦ୍ୱିରୁକ୍ତି ମାତ୍ର ହୋଇ ନ ପାରେ । ପୃଥିବୀରେ ଏପ୍ରକାର ସଫଳ ବିକାଶର ଉଦାହରଣ ଏକାନ୍ତ ବିରଳ ନୁହେ । ସୁତରାଂ ସାଧୁ ଚେଷ୍ଟାର ସଫଳତା ବିଷୟରେ ଅମ୍ଭମାନଙ୍କର ଏକାନ୍ତ ହତାଶ ବା ହତୋତ୍ସାହ ହେବାର କୌଣସି କାରଣ ନାହିଁ । ତେବେ ମାନବମଣ୍ଡଳୀର ଏତେ ଦୁର୍ଦ୍ଦଶା କାହିଁକି ? କାହିଁକି ଘୋର କଳିଯୁଗ ଏବେ ସର୍ବକାଳ ପୃଥିବୀପୃଷ୍ଠରେ ଅକ୍ଷୁଣ୍ଣ ରାଜ୍ୟ ବିସ୍ତାର କରି ରହି ଅଛି ? ମାନବମଣ୍ଡଳୀର ଏହି ମହାକଷ୍ଟ କି କୌଣସି କାଳେ ଦୂରୀଭୂତ ହେବ ନାହିଁ? ସତ୍ୟ-ଯୁଗର କ୍ଷୀଣ ଆଲୋକପାତ ଯେ ସ୍ଥାନେ ସ୍ଥାନେ ହେଲାଣି ତାହା ଚକ୍ଷୁଷ୍ମାନ୍ ବ୍ୟକ୍ତି ମାତ୍ରକେ ବୁଝି ପାରୁଅଛନ୍ତି । କେବଳ କଳିଯୁଗର ଘୋର କୃଷ୍ଣବର୍ଣ୍ଣ ମେଘାଡ଼ମ୍ବର ଭଙ୍ଗି ଗଲେ ଏହି ଶୁଭ୍ରାଲୋକ କ୍ରମେ କ୍ରମେ ଆପଣାର ନିର୍ମଳ ପ୍ରଭା ବିସ୍ତାର କରିବ ।

ଧର୍ମ-କ୍ଷେତ୍ର ଭାରତଭୂମିର ଆଜି କି ଘୋର ଦୁର୍ଦ୍ଦଶା ! ଧର୍ମଚର୍ଚ୍ଚାର ଲୀଳାକ୍ଷେତ୍ର, ପ୍ରାଚୀନ ଋଷିମାନଙ୍କର ପ୍ରିୟ ଜନ୍ମଭୂମି, ଜ୍ଞାନ-କର୍ମ-ଭକ୍ତିର ପବିତ୍ର ଯଜ୍ଞ-କ୍ଷେତ୍ରର ଘୋର ଦୁର୍ଦ୍ଦଶା ଦେଖି ପ୍ରାଣରେ ଘୋର ଅବସାଦ ଉପସ୍ଥିତ ହୁଏ । ଧର୍ମ-ଧନ ଏକ ସମୟରେ ଯେଉଁ ପୁଣ୍ୟଭୂମିର ମହାଧନ ଥିଲା, ଯାହାକୁ ଘେନି ବୌଦ୍ଧ ଶ୍ରମଣମାନେ ଏକସମୟରେ ପୃଥିବୀର ନାନାଦେଶରେ ପ୍ରଚାର କରି ବୁଲିଥିଲେ, ସେହି ମହାଧନ ଆଜି ଅମ୍ଭ-ମାନଙ୍କର ମହା ଅଭାବରେ ପରିଣତ ! ଅହୋ ! କି ଶୋଚନୀୟ ଅବସ୍ଥା ! ଭାରତବାସିଙ୍କୁ ଧର୍ମଶିକ୍ଷା ଦେବା ନିମନ୍ତେ ନାନାଦେଶରୁ ଭିନ୍ନଧର୍ମାବଲମ୍ବୀ ମହାତ୍ମାମାନେ ଆସି ଆଜି ତାହାର ବକ୍ଷରେ ଲୁଣ୍ଠ ହୋଇଅଛନ୍ତି । ଏହାହିଁ ଅମ୍ଭମାନଙ୍କର ଧର୍ମଭାବ-ହୀନତାର ପ୍ରକୃଷ୍ଟ ପ୍ରମାଣ । ଯେ ଯାହା କହନ୍ତୁ ପଛକେ, ମୁସଲମାନ ଓ ଖ୍ରୀଷ୍ଟିୟାନ ପ୍ରଚାରକମାନେ ଆସି ଅମ୍ଭମାନଙ୍କୁ ଯେ ବହୁମୂଲ୍ୟ ଶିକ୍ଷା ପ୍ରଦାନ କରିଅଛନ୍ତି ଓ କରୁଅଛନ୍ତି ତାହା କେହି ଅସ୍ୱୀକାର କରି ପାରିବେ ନାହିଁ । ହାୟ ଭାରତବାସି ! ଏକ ସମୟରେ ତୁମ୍ଭର ପୂର୍ବପୁରୁଷମାନେ ସେମାନଙ୍କର ଶିକ୍ଷାଗୁରୁ ଥିଲେ, ତାହା ଅବଶ୍ୟ ସ୍ୱୀକାର୍ଯ୍ୟ; ମାତ୍ର ତାହା ବୋଲି ବର୍ତ୍ତମାନ ସେମାନଙ୍କଠାରୁ ଆମ୍ଭେମାନେ ଯେଉଁ ଅମୂଲ୍ୟ ଶିକ୍ଷା ପାଉଅଛୁଁ, ସେଥି ସକାଶେ କୃତଜ୍ଞ ନ ହେଲେ ଅବଶ୍ୟ ଅମ୍ଭମାନଙ୍କୁ ପ୍ରତ୍ୟବାୟଭାଗୀ ହେବାକୁ ହେବ । ସେହିମାନେ କି ତୁମ୍ଭମାନଙ୍କୁ ଶ୍ରୀ ଚୈତନ୍ୟ ଓ ଶ୍ରୀ ରାମମୋହନ ଦାନ କରି ନାହାନ୍ତି ? ଆମ୍ଭେମାନେ ଯେ ବର୍ତ୍ତମାନ ସେମାନଙ୍କର ପ୍ରତିବାଦ କରିବାକୁ ସମର୍ଥ ହୋଇ ଥାଉଁ ତାହା କେବଳ ସେହିମାନେ ଅମ୍ଭମାନଙ୍କୁ ଶିକ୍ଷା ଦେଇଅଛନ୍ତି । ଆମ୍ଭେମାନେ ବର୍ତ୍ତମାନ ଅମ୍ଭମାନଙ୍କର ଶାସ୍ତ୍ର ପାଠ କରୁଁ ଇଂରାଜୀରେ । ଅମ୍ଭମାନଙ୍କର ଦର୍ଶନ, ଜ୍ୟୋତିଷ ଓ ଅନ୍ୟାନ୍ୟ ଶାସ୍ତ୍ରମାନ ଆରବୀରୁ ଭାଷାନ୍ତରିତ ହୋଇ ଅମ୍ଭ-

ମାନଙ୍କ ନିକଟରୁ ଆସିଅଛି । ଜଗନ୍ନାଥ-କ୍ଷେତ୍ରର ଜାତିଭେଦଶୂନ୍ୟତାଟାକୁ ଇତିହାସ ବୌଦ୍ଧ-ଯୁଗରେ ପକାଇ ଦେଇଅଛି । ମାତ୍ର ସେଥିରେ ମୁସଲମାନମାନଙ୍କର ହସ୍ତ ଥିଲା କି ନାହିଁ ଥରେ ଚିନ୍ତା କରି ଦେଖ । ନାନାପ୍ରକାରେ ଆମ୍ଭେମାନେ ସେମାନଙ୍କ ନିକଟରେ ଋଣୀ । ନତମସ୍ତକରେ ସେମାନଙ୍କ ନିକଟରେ ହୃଦୟର ଗଭୀର କୃତଜ୍ଞତା ଅର୍ପଣ ଛଡ଼ା ଆମ୍ଭମାନଙ୍କର ଗତ୍ୟନ୍ତର ନାହିଁ । ସେମାନେ ଅନ୍ୟପ୍ରକାରେ ଆମ୍ଭମାନଙ୍କ ଉପରେ ନାନା ଅତ୍ୟାଚାର ଉତ୍ପୀଡ଼ନ କରିଥିଲେହେଁ ଏ ବିଷୟରେ ଯେ ଆମ୍ଭମାନଙ୍କର ପରମବନ୍ଧୁ ତାହା ସ୍ୱୀକାର କରିବାକୁ ଆମ୍ଭେମାନେ ଏକାନ୍ତ ବାଧ୍ୟ । ସେମାନଙ୍କର ଅସଂଖ୍ୟ ତ୍ରୁଟି ଓ ଅନ୍ୟାୟାଚରଣ ପ୍ରତ୍ୟକ୍ଷ କରି ସୁଦ୍ଧା, ଆସ, ଆମ୍ଭେମାନେ ସେମାନଙ୍କ ନିକଟରେ ନତମସ୍ତକ ହେବା । ଶ୍ରୀ ମହମ୍ମଦଙ୍କର ଜ୍ୱଳନ୍ତ ଧର୍ମ-ବିଶ୍ୱାସ ଏବଂ ଶ୍ରୀ ଯିଶୁଙ୍କ ଅମୃତମୟ ପ୍ରେମ ଆମ୍ଭମାନଙ୍କ ଭିତରେ ସଞ୍ଚର ହେଉ ।

ଅତି ପ୍ରାଚୀନ ଗୌରବର ବୃଥା ମାହାତ୍ମ୍ୟ କୀର୍ତ୍ତନ କରି ସମୟ ନଷ୍ଟ କର ନାହିଁ । ହିନ୍ଦୁର ଜୀବନ ଏକ ସମୟରେ କେବଳ ଧର୍ମମୟ ଥିଲା, ତାହାର ପ୍ରତ୍ୟେକ କ୍ଷୁଦ୍ର କାର୍ଯ୍ୟ ସୁଦ୍ଧା ଧର୍ମ ସହିତ ଅନୁସ୍ୟୁତ ଥିଲା । ଏ ସବୁ ଶୁଣି ଶୁଣି କର୍ଣ୍ଣ ବଧିର ହୋଇ ଗଲାଣି । ବର୍ତ୍ତମାନ କେବଳ "ହିନ୍ଦୁ ଧର୍ମ-ଛଡ଼ା—ଧର୍ମ-ଛଡ଼ା—ଧର୍ମ-ଛଡ଼ା" ଏହି ଅପବାଣୀ ଚତୁର୍ଦ୍ଦିଗରେ ତାରସ୍ୱରରେ ଘୋଷିତ ହେଉଅଛି । କର୍ଣ୍ଣ ଥିଲେ ଶୁଣ, ମର୍ମଭେଦୀ ଅନୁତାପାଗ୍ନିରେ ଦଗ୍ଧ ହୁଅ ଏବଂ ସୁପ୍ରବୃତ୍ତିର ସୁଶୀତଳ ବାରି ଅନ୍ୱେଷଣ କର । ପୂର୍ବେ ଯାହା ଥିଲା ବର୍ତ୍ତମାନ ତାହା ଲାଭ କରି ଜଗଦ୍ୱାସିଙ୍କୁ ଦେଖାଅ । ବୃଥା ଗଣ୍ଡଗୋଳ କର ନାହିଁ । ପ୍ରାଚୀନ-ଗୌରବ-ସ୍ମୃତି-ଜନିତ ଦମ୍ଭକୁ ମହୋଦଧି ଜଳରେ ନିକ୍ଷେପ କରି ଜୀବନ୍ତ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୁଅ । ପ୍ରକୃତ ଶାନ୍ତି ସେହିଠାରେ । ପୁଣି ଜଗତର ଧର୍ମଗୁରୁର ଆସନ ଲାଭ କରିବାର ଆକାଙ୍କ୍ଷା । ଯଦି ଥାଏ ତେବେ କାର୍ଯ୍ୟଦ୍ୱାରା ଯୋଗ୍ୟତା ପ୍ରତିପାଦନ କରିବାର ଚେଷ୍ଟା କର, ନିଜ ଅଭ୍ୟୁଦୟର ଆୟୋଜନ କର । ତାହା ନ କଲେ ଚିରକାଳ ମେଘାଚ୍ଛନ୍ନ ହୋଇ ଜଗତସମ୍ମୁଖରେ କୃପାପାତ୍ରରୂପେ ଗଣିତ ଓ ଦଳିତ ହୋଇ ପଡ଼ି ରହିଥିବ । କୌଣସିକାଳେ ତୁମ୍ଭର ବିଡ଼ମ୍ବନାର ଶେଷ ହେବ ନାହିଁ ।

ଶିକ୍ଷିତ ହୁଅ । ଜ୍ଞାନାଲୋକ ସର୍ବୋନ୍ନତିର ମୂଳାଧାର । ଶିକ୍ଷାବିସ୍ତାର ନ ହେଲେ ଜୀବନ ଉନ୍ନତ ହେବ ନାହିଁ, ଧର୍ମ-ଜୀବନ ଗଠିତ ହେବ ନାହିଁ । ଥରେ ଭାବି ଦେଖ, ତୁମ୍ଭ ଦେଶରେ ଶତକରା ୯୦ ଜଣ ପୁରୁଷ ଘୋର ଅଜ୍ଞାନାନ୍ଧକାରରେ ମଗ୍ନ ଏବଂ କେବଳ ଶତକରା ଦୁଇ ଜଣ ମାତ୍ର ସ୍ତ୍ରୀ ଅଳ୍ପ ଅଳ୍ପ ଲେଖି ପଢ଼ି ପାରନ୍ତି !! କି ଘୋର ମୂର୍ଖତା ! ଏଥିରେ ତୁମ୍ଭେ କେଉଁ ସାହସରେ ନିର୍ଲଜ୍ଜ ଭାବରେ ପ୍ରାଚୀନ ଗୌରବ ଘେନି ଜଗତ ସମ୍ମୁଖରେ ବଡ଼ାଇ କରିବାକୁ ଯାଅ ! ଜ୍ଞାନନର ଓ ପ୍ରଗତିର ସୁଯନ୍ତ୍ରମାନ ଆବିଷ୍କାର କର । ଦେଶରୁ ଅନ୍ଧକାର ଦୂର ହୋଇ ଯାଉ—ନରନାରୀ ଆପଣା ଆପଣାର ସ୍ୱତ୍ୱ ଏବଂ ସ୍ୱାଧୀନତା ଉପଲବ୍ଧି କରିବାକୁ କ୍ଷମ ହେଉନ୍ତୁ । ତାହା ହେଲେ ଅଧର୍ମ, ଅପଧର୍ମ ବିନଷ୍ଟ ହୋଇ ଧର୍ମରାଜ୍ୟ ପ୍ରତିଷ୍ଠିତ ହେବ ଏବଂ ଜୀବନର ଗତି ସୁନିୟମିତ ହେବ ।

ଆମ୍ଭେମାନେ ବର୍ତ୍ତମାନ ପରାଧୀନ ଜାତି । ଅଳ୍ପାଧିକ ପରିମାଣରେ ସକଳ ବିଷୟରେ ପରଙ୍କର ମୁଖାପେକ୍ଷୀ । ଶିକ୍ଷା ବିଷୟରେ ମଧ୍ୟ ତଦ୍ରୂପ । ମାତ୍ର ତାହା ବୋଲି ଏକାବେଳକେ ଅଧିକାରଶୂନ୍ୟ ନୋହୁଁ । ସକଳ ବିଷୟରେ ଆମ୍ଭମାନଙ୍କର ପରିମିତ ସ୍ୱାଧୀନତା ଅଛି । ଜଣେ କ୍ଷମତାଶାଳୀ ରାଜପୁରୁଷ ଆମ୍ଭମାନଙ୍କର ଉଚ୍ଚଶିକ୍ଷା ମୂଳରେ କୁଠାରଘାତ କରିଥିବାରୁ ଆମ୍ଭେମାନେ ତାଙ୍କର ନିନ୍ଦାରେ ଗଗନ ଫଟାଇ ଦେଉଅଛୁଁ । ମାତ୍ର ଚେଷ୍ଟା କଲେ ଆମ୍ଭେମାନେ ଯେ ଅଭାବର ପୂରଣର ଚେଷ୍ଟା କରି ପାରୁଁ ତାହା ଭୁଲ୍

ନାହିଁ । ଧନ ଓ ଶକ୍ତି ଦେଶରେ ଯଥେଷ୍ଟ ପଡ଼ି ରହିଅଛି । କେବଳ ପ୍ରୟୋଗ-ବ୍ୟବସ୍ଥାର ଅଭାବ । ସେ ଦିନ ସମ୍ବାଦପତ୍ରରେ ପାଠ କଲୁଁ କୌଣସି ଦେଶୀୟ ରାଜା ଆପଣାର ଶୟନାଗାର ଓ ବୈଠକଖାନା ନିମିତ୍ତ ରୂପାର ପଲଙ୍କ, ଚୌକି, ଟେବୁଲ ପ୍ରଭୃତି ନାନା ସାମଗ୍ରୀ ସକାଶେ ଇଂଲଣ୍ଡର ସେଫିଲଡ଼ ନଗରସ୍ଥିତ ଏକ ବିଖ୍ୟାତ କାରଖାନାକୁ ଲକ୍ଷ ଲକ୍ଷ ଟଙ୍କାର ବରାଦ ପଠାଇ ଅଛନ୍ତି । ଦ୍ରବ୍ୟଗୁଡ଼ିକ ପ୍ରାୟ ପ୍ରସ୍ତୁତ । ଇଂରେଜମାନେ ସେଗୁଡ଼ିକୁ ଦେଖି ଚମତ୍କୃତ ଓ ଅବାକ୍ ହୋଇ ଯାଉଅଛନ୍ତି । ବଙ୍ଗଳାର କୌଣସି କୌଣସି ସୁପୁତ୍ର ଜମିଦାର ବିରଡ଼ୀ ବିବାହରେ ହଜାର ହଜାର ଟଙ୍କା ଅପବ୍ୟୟ କରିଥିବାର ଶୁଣା ଯାଉଅଛି । ଦୁଇ ଭ୍ରାତା-ଜମିଦାରଙ୍କ ଦୁଇ ଗୃହର ଥରେ ନିଦ୍‌ରେ ହଜାରରୁ ଏକ ହଜାର ଟଙ୍କା ମୂଲ୍ୟରେ ଗୋଟିଏ ବୋଇତକଣାରୁ କିଣିଥିବାର ତାହାର କାହାରକୁ ବିଦିତ ଥିବ । ତେବେ ପୁଣି ତୁମ୍ଭେ କହିବ ଦେଶରେ ଧନର ଅଭାବ ଅଛି ? ପ୍ରଜାର ଧନ ଶୋଷଣ କରି ପ୍ରଜାର ହିତ ନିମନ୍ତେ ଯଥୋଚିତ ପରିମାଣରେ ବ୍ୟୟ କରୁ ନ ଥିବାର କହି ଅମ୍ଭେମାନେ ଭାରତ ଗବର୍ଣ୍ଣମେଣ୍ଟଙ୍କର ନିନ୍ଦାରେ ମେଦିନୀ କମ୍ପାଇ ଦେଉଥାଉଁ । କିନ୍ତୁ ଉପରୋକ୍ତ ଅପବ୍ୟୟଗୁଡ଼ିକ ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ପଡ଼େ କି ? ଏହି ସଙ୍ଗେ କି ପ୍ରଜାର ରକ୍ତର କୌଣସି ସମ୍ବନ୍ଧ ନାହିଁ ? ଗବର୍ଣ୍ଣମେଣ୍ଟଙ୍କ ଅପବ୍ୟୟ କଥା ଆଲୋଚନା କରିବାର ସ୍ଥାନ ଏ ନୁହେ । ଦେଶୀୟ ଧନକୁବେରମାନେ ଅପବ୍ୟୟ ବନ୍ଦ କରି ଦେଶହିତକର କାର୍ଯ୍ୟରେ ବ୍ରତୀ ହେଲେ ଅଚିରେ ଦେଶର ଅବସ୍ଥା ପରିବର୍ତ୍ତିତ ହୋଇଯିବ । ଦେଶର—ପ୍ରିୟ ଜନ୍ମଭୂମିର ଘୋର ଦୁରବସ୍ଥା ପ୍ରତି ଦୃଷ୍ଟି କରି ଏଣୁ କାଲ ନିମିତ୍ତ ପ୍ରତ୍ୟେକ ସମ୍ପତ୍ତିଶାଳୀ ଓ ଶକ୍ତିମାନ୍ ବ୍ୟକ୍ତି ଯଦି କେବଳ ଶିକ୍ଷା-ପାଇଁ କଷ୍ଟପରିକର ହୁଅନ୍ତି ତାହା ହେଲେ ନିଶ୍ଚୟ ଅଭୀପ୍ସିତ ଫଳ ଲାଭ ହେବ । ଈଶ୍ୱର ଆମ୍ଭମାନଙ୍କର ସହାୟ ହେବେ । ଉନ୍ନତ ଦେଶମାନଙ୍କର ଅଭ୍ୟୁଦୟର ମୂଳ କାରଣ ଏହି ଶିକ୍ଷାବିସ୍ତାର । ନାନ୍ୟଃ ପନ୍ଥା ।

ଚରିତ୍ର ଲାଭ କର । ଶିକ୍ଷାର ଦୋଷ ଗୁଣ ଉଭୟ ଅଛି । ପ୍ରତ୍ୟେକର ଜୀବନରେ ତାହା ସୁପରିସ୍ଫୁଟ । ଜାତୀୟ ଜୀବନରେ ମଧ୍ୟ ସେହିପରି । ମୋଟାମୋଟି ଶିକ୍ଷାର ସୁଗୁଣକୁ ଆମ୍ଭେମାନେ ଏଠାରେ ଚରିତ୍ରର ସଙ୍ଗୀ ବୋଲି ଅଭିହିତ କରିବୁଁ । କେବଳ ଗୁଡ଼ାଏ ପାଣ୍ଡିତ୍ୟ ଲାଭ କଲେ କିଛି ହେବ ନାହିଁ । ଆମ୍ଭମାନଙ୍କ ଦେଶରେ ସେପ୍ରକାର ଅସାଧାରଣ ପାଣ୍ଡିତ୍ୟାଭିମାନର ଉଦାହରଣ ଆମ୍ଭେମାନେ ଯଥେଷ୍ଟ ଦେଖିଅଛୁଁ । ଏହି ସଙ୍ଗେ ସଙ୍ଗେ ଚରିତ୍ରବଳର ଉଦାହରଣ ମଧ୍ୟ ଅଳ୍ପ ଦେଖି ନାହୁଁ । ଉଭୟକୁ ତୁଳନା କଲେ ଚରିତ୍ରବଳର ଶ୍ରେଷ୍ଠତା ଯେ ପ୍ରକୃତ ଉନ୍ନତିର ଏକମାତ୍ର ସହାୟ ତାହା ଆମ୍ଭେମାନେ ବେଶ୍ ବୁଝି ପାରିବୁଁ । ସଭ୍ୟ ଦେଶମାନଙ୍କ ଆଡ଼କୁ ଥରେ ଚାହିଁ ଦେଖ । ଚରିତ୍ରବଳ ସେଠାରେ ଜାତୀୟ ଜୀବନରେ କି ଅଦ୍ଭୁତ କାର୍ଯ୍ୟ କରିଅଛି ତାହା ସ୍ପଷ୍ଟ ବୁଝି ପାରିବ । କେବଳ ଧର୍ମର ଉଚ୍ଚ ଉଚ୍ଚ ସୂତ୍ରଗୁଡ଼ିକ ମୁଖରେ ଉଚ୍ଚାରଣ କରି ବୁଲିଲେ କିଛି ଫଳ ହେବ ନାହିଁ । ଯେଉଁ ଯୋଗୀ ଋଷିମାନେ ତୁମ୍ଭମାନଙ୍କ ଦେଶରେ ଉକ୍ତ ଧର୍ମସୂତ୍ରଗୁଡ଼ିକ ପ୍ରଚାର କରିଥିଲେ ସେମାନେ କିପ୍ରକାର ଅସାମାନ୍ୟ ଚରିତ୍ରବଳଦ୍ୱାରା ସେମାନଙ୍କ ଜୀବନକୁ ସୁଗଠିତ କରି ଜଗତରେ ସମ୍ମାନର ଯୋଗ୍ୟ କରିଥିଲେ ତାହା ଆଲୋଚନା କରି ଦେଖିଅଛ କି ? ଭାରତ ଯେ ଧର୍ମସକାଶେ ଜଗତରେ ଚିରବିଖ୍ୟାତ, ତାହାର କାରଣ କଣ ? ଶିକ୍ଷା ଓ ଚରିତ୍ରର ସୁସାମଞ୍ଜସ୍ୟହିଁ ଆମ୍ଭମାନଙ୍କର ପ୍ରାଚୀନ ଜାତୀୟ ଜୀବନକୁ ଆଦର୍ଶସ୍ଥାନୀୟ କରିଥିଲା । ଭାଇ ! ଥରେ ଆମ୍ଭମାନଙ୍କର ଚରିତ୍ରଗୌରବର କଥା ସ୍ମରଣ କର । କି ଧର୍ମକାର୍ଯ୍ୟରେ

କି ସାମାଜିକ ଅନୁଷ୍ଠାନରେ କି ରାଜନୀତି-କ୍ଷେତ୍ରରେ ସକଳ ସ୍ଥାନରେ ଆମ୍ଭେମାନେ ଚରିତ୍ର-ହୀନତା ଦେଖୁଅଛୁ । ଅମ୍ଭମାନଙ୍କ ଧର୍ମମନ୍ଦିର-ଗୁଡ଼ିକ ନରକର ଲୀଳାକ୍ଷେତ୍ର । ସମାଜ ଘୋର କୁସଂସ୍କାରର ଆବର୍ଜନାରାଶିରେ ପୂର୍ଣ୍ଣ । ଧର୍ମାଧି-କରଣଗୁଡ଼ିକ ସାକ୍ଷାତ ମିଥ୍ୟା ପ୍ରବଞ୍ଚନା ଜାଲ ଜୁଆଚୋରିର ଜୀବନ୍ତ ଲୀଳାଭୂମି ! ଅହୋ ! କି ଦୁର୍ଗତି ! ଜାତୀୟ ଜୀବନର କି ଘୋର ଅଧଃପତନ ! ! ଏହି ଘୋର ଦୁର୍ଦ୍ଦଶାର ରିଷ୍ଣୁମୋଚନ ହେବ କିପରି ? ଚରିତ୍ରବଳଦ୍ୱାରା ନବଜୀବନ ଲାଭ କରି ନ ପାରିଲେ ଆଉ ଅମ୍ଭ-ମାନଙ୍କର ଉଦ୍ଧାରର ଦ୍ୱିତୀୟ ଉପାୟ ନାହିଁ । ଭାଇ ଭାରତବାସୀ ! ସମସ୍ତ ପୂଜୋପକରଣ ସଂଗ୍ରହ କରି କେବଳ ଚରିତ୍ର-ପୂଜାରେ ଧ୍ୟାନ-ମଗ୍ନ ହୋଇ ବସି ଯାଅ । ତୁମ୍ଭର ସମସ୍ତ ଦୁର୍ଗତି ଖଣ୍ଡନ ହେବ !

ସାଧନା ଆବଶ୍ୟକ । ସାଧନା ବ୍ୟତୀତ ସିଦ୍ଧି ଏକାବେଳକେ ଅସମ୍ଭବ । ସାଧନାକ୍ଷେତ୍ର ଘୋର ସଂଗ୍ରାମମୟ । ଶିକ୍ଷାଭିମାନ ଏବଂ ଚରିତ୍ରବଳ ସମ୍ପୂର୍ଣ୍ଣ ନିରର୍ଥକ ହୋଇ ଯିବ ଯଦି ତୁମ୍ଭେ ସାଧନା-କ୍ଷେତ୍ରରେ ସେମାନଙ୍କର ସମ୍ୟକ୍ ବ୍ୟବହାର ନ କର । ସାଧନାର ଆବଶ୍ୟକତା ଓ ସାଫଲ୍ୟ ସମ୍ବନ୍ଧରେ ତୁମ୍ଭମାନଙ୍କୁ ବେଶି ବୁଝାଇବାକୁ ହେବ ନାହିଁ । ଅମ୍ଭମାନଙ୍କ ପ୍ରାଚୀନ ଶାସ୍ତ୍ରାଦିରେ ଭୂରି ଭୂରି ପ୍ରମାଣ ଓ ଉଦାହରଣ ରହିଅଛି । ଚରିତ୍ର ପରିସ୍ଫୁଟନ ନିମିତ୍ତ ଅମ୍ଭମାନଙ୍କର ପ୍ରାତଃସ୍ମରଣୀୟ ପୂର୍ବପୁରୁଷମାନେ କି କଠୋର ସାଧନାରେ ପ୍ରବୃତ୍ତ ହେଉଥିଲେ, ଇତିହାସ ଆଲୋଚନା କରି ଦେଖ । ପ୍ରତ୍ୟେକ ବିଭାଗରେ ଅବସ୍ଥାପିତ ନରନାରୀଙ୍କ ଜୀବନରେ କଠୋର ସାଧନାର ସାଫଲ୍ୟ ଦେଖି ପାରିବ । ଜ୍ଞାନର ସାଧନା, କର୍ମର ସାଧନା, ଭକ୍ତିର ସାଧନା—କେବଳ ସାଧନା ଏବଂ ସାଧନା । ଜଣେ ଜଣେ ଯୁଗ-ପ୍ରବର୍ତ୍ତକ ମହାତ୍ମା ବିଶାଳ ଭାରତର ଖଣ୍ଡ-ବିଶେଷରେ ଆବିର୍ଭୂତ ହୋଇ ବିଶେଷ ବିଶେଷ ସାଧନାର ଜ୍ୱଳନ୍ତ ଉଦାହରଣ ରଖି ଯାଇଅଛନ୍ତି । ସେ କାଳରେ ସାମାନ୍ୟ ଗୃହସ୍ଥମାନେ ମଧ୍ୟ ସାଧନାରେ ପ୍ରବୃତ୍ତ ହେଉଥିଲେ ଏବଂ କୃତ-କାର୍ଯ୍ୟତା ଲାଭ କରି ପାରୁଥିଲେ । ତାହାର ମଧ୍ୟ ଏକାନ୍ତ ଉଦାହରଣାଭାବ ନାହିଁ । କୃତ୍ତନିଷ୍ଠ ଗୃହସ୍ଥମାନଙ୍କର ଯେଉଁ ମନୋହର ଚିତ୍ର ଅମ୍ଭ-ମାନଙ୍କ ପ୍ରାଚୀନ ସାହିତ୍ୟାଦିରେ ପ୍ରତିଫଳିତ ଅଛି ତାହା ଜୀବନବ୍ୟାପୀ କଠୋର ସାଧନାର ଫଳ ନୁହେ ତ ଆଉ କଣ ? ପଶ୍ଚାଦ୍ଦେଶରେ ଅମ୍ଭ-ମାନଙ୍କର ଅତୀତ ଆଦର୍ଶର ଏହିପରି ବର୍ଣ୍ଣନୀୟ ଚିତ୍ର । ସମ୍ମୁଖ ଅଦର୍ଶ ମଧ୍ୟ ହୀନତର ନୁହେ । ଅଧୁନା ଆମ୍ଭେମାନେ ପାଶ୍ଚାତ୍ୟ ସଭ୍ୟତାର ସମ୍ମୁଖୀନ । ତାହା ଅମ୍ଭମାନଙ୍କ ନିକଟରେ ଜୀବନର ଅନେକ ନୂତନ ବିଭାଗ ଖୋଲି ଦେଇ ନୂତନତର ଆଦର୍ଶମାନ ସ୍ଥାପନ କରୁଅଛି । ଜୀବନକୁ ଧର୍ମାନୁ-ମୋଦିତ ମାର୍ଗରେ ପରିଚାଳିତ କରିବାକୁ ହେଲେ ସେଗୁଡ଼ିକୁ ଉପେକ୍ଷା କଲେ ଚଳିବ ନାହିଁ । ବରଂ ତୁଳନାରେ ଅନେକ ସ୍ଥଳରେ ପ୍ରାଚୀନ ପ୍ରାଚ୍ୟ ଆଦର୍ଶର ଅସମ୍ପୂର୍ଣ୍ଣତା ଉପଲବ୍ଧି କରି ଅଧିକତର-ରୂପେ ଏହି ନବ ଆଦର୍ଶକୁ ଗ୍ରହଣ କରିବାକୁ ପଡ଼ିବ । କେବଳ ଗ୍ରହଣ ନୁହେ । ବ୍ୟକ୍ତିଗତ, ସାମାଜିକ ଏବଂ ଜାତୀୟ ଜୀବନରେ କଠୋର ସାଧନାଦ୍ୱାରା ତାହାକୁ ପ୍ରତିଫଳିତ କରିବାକୁ ହେବ । ତାହା ହେଲେ ଅମ୍ଭମାନଙ୍କର ଧର୍ମ-ଜୀବନ ଏବଂ ଜାତୀୟ ଜୀବନର କ୍ରମ-ବିକାଶ ସୁସାଧିତ ହେବ । ନିରାଶ ହୁଅ ନାହିଁ । କ୍ଷୁଦ୍ର ଓ ବର୍ବର ଜାପାନର ଅବସ୍ଥା ସ୍ମରଣ କର । ତୁମ୍ଭେ କି ମନେ କର, ଜାପାନ କେବଳ ଶାରୀରିକ ବଳରେ ଆଜି ଜଗତର ବିସ୍ମୟ ଓ ଶ୍ରଦ୍ଧା ଆକର୍ଷଣ କରିବାକୁ କ୍ଷମ ହୋଇଅଛି ? ଧର୍ମବଳ ତାହାର ନ୍ୟୂନ ? କଦାପି ନୁହେ । ପ୍ରଚୁର ଧର୍ମବଳରେ ବଳୀୟାନ୍ ନ ହେଲେ କୌଣସି ଜାତି ଏ ପ୍ରକାର ଅଦ୍ଭୁତ ଉନ୍ନତିର ଅଧିକାରୀ ହୋଇ ନ ପାରେ । ଜାପାନର ଅତୀତ ଇତିହାସ ସହିତ ଆମ୍ଭେମାନେ

ସମ୍ୟକ୍ ପରିଚିତ ନୋହୁଁ । ମାତ୍ର ଏହା ଉତ୍ତମରୂପେ ଅବଗତ ଯେ ଜାପାନ ଅଳ୍ପଦିନ ସମୟ ମଧ୍ୟରେ ପାଶ୍ଚାତ୍ୟ ସଭ୍ୟତାକୁ ଆଦର୍ଶ କରି କଠୋର ସାଧନାଦ୍ୱାରା ଜାତୀୟଜୀବନ ଗଠନ କରିଅଛି ଏବଂ ବର୍ତ୍ତମାନ ଗୋଟିଏ ସମୃଦ୍ଧିଶାଳୀ ଜାତିରୂପେ ପରିଗଣିତ ହେଉଅଛି । ଆସ, ଆମ୍ଭେମାନେ ମଧ୍ୟ ଜାପାନର ପଥାନୁସରଣ କରି ଶିକ୍ଷା, ଚରିତ୍ର ଏବଂ ସାଧନାଦ୍ୱାରା ଆମ୍ଭମାନଙ୍କର ଜାତୀୟଜୀବନ ଗଠନ କରିବା । ସ୍ମରଣ ରଖ, ଆମ୍ଭମାନଙ୍କ ପଶ୍ଚାତରେ ମହାଗୌରବମୟ ଭାରତୀୟ ଆଦର୍ଶ, ସମ୍ମୁଖରେ ମହୀୟାନ୍ ପାଶ୍ଚାତ୍ୟସଭ୍ୟତାର ଶୁଭ୍ରାଲୋକ ଏବଂ ମସ୍ତକୋପରି ସର୍ବମଙ୍ଗଳାଧାର ବିଭୁକୃପା । ନିରାଶ ହୁଅ ନାହିଁ, ସବଳ ହୃଦୟ, ଆଳସ୍ୟ ପରିତ୍ୟାଗ କରି ଆତ୍ମଦର୍ପରେ ସଂଗ୍ରାମକ୍ଷେତ୍ରରେ ଅବତୀର୍ଣ୍ଣ ହୁଅ । ମଙ୍ଗଳମୟ ବିଧାତାଙ୍କ ଚିର ଜାଗ୍ରତ କୃପାବଳରେ ଜୟ ତୁମ୍ଭର ସହଗାମୀ ହେବ ।

ଶ୍ରୀ କୃଷ୍ଣପ୍ରସାଦ ଚୌଧୁରୀ ।



## ମିଆଁସାହେବଙ୍କ ରୋଜନାମଚା ।

### ସୁନ୍ନୀମାନଙ୍କ ମଧ୍ୟରେ ସମ୍ପତ୍ତିବିଭାଗ ।

ମୃତ ବ୍ୟକ୍ତିଙ୍କ ସମ୍ପତ୍ତିରୁ ପ୍ରଥମେ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦିତ ହେବାର ବିଧି । ତତ୍ପରେ ତାଙ୍କ ଋଣପରିଶୋଧ, ତତ୍ପରେ ସେ ଉଇଲପତ୍ର ( ଉଇଲ୍ ) ଦ୍ୱାରା ଯେବେ କିଛି ସମ୍ପତ୍ତି ଦାନ କରି ଯାଇଥିବେ ତାହା ଦିଆଯିବ । କିନ୍ତୁ ଋଣପରିଶୋଧ ହେବା ପରେ ଯାହା ଅବଶିଷ୍ଟ ରହେ, ମୃତ ବ୍ୟକ୍ତିଙ୍କର କେହି ଉଆରସ ନ ଥିଲେ ସମୁଦାୟ ଅବଶିଷ୍ଟ ସମ୍ପତ୍ତିକୁ ମୃତ ବ୍ୟକ୍ତି ଉଇଲଦାନ କରି ଯାଇଥିଲେ ସେହି ଉଇଲଦାନ କାର୍ଯ୍ୟରେ ପରିଣତ ହେବ । କିନ୍ତୁ ମୃତ ବ୍ୟକ୍ତିଙ୍କର ଉଆରସ ବା ଉତ୍ତରାଧିକାରୀ ବିଦ୍ୟମାନ ଥିଲେ ସେ ଯଦି ସମୁଦାୟ ଅବଶିଷ୍ଟ ସମ୍ପତ୍ତିକୁ ଉଇଲଦାନ କରି ଯାଇଥାନ୍ତି ତାହାହେଲେ ମଧ୍ୟ ଅବଶିଷ୍ଟ ସମ୍ପତ୍ତିର ଏକତୃତୀୟାଂଶରୁ ଅଧିକ ଉଇଲଦାନ-ଗ୍ରହୀତାମାନେ ପାଇ ପାରିବେ ନାହିଁ । ଉଇଲଦାନ-ଗ୍ରହୀତାମାନେ ଉପରୋକ୍ତ ଭାବରେ ପାଇବା ପରେ ତ୍ୟକ୍ତ ସମ୍ପତ୍ତିରୁ ଯାହା ଅବଶିଷ୍ଟ ରହିବ ତାହା ଉଆରସମାନଙ୍କ ମଧ୍ୟରେ ବିଭକ୍ତ ହେବ । ଉଆରସମାନେ ନ ଥିଲେ ମୃତବ୍ୟକ୍ତି ଚୁକ୍ତିଦ୍ୱାରା ଯାହାଙ୍କୁ ନିଯୁକ୍ତ କରି ଯାଇଥିବେ ସେମାନେ ତ୍ୟକ୍ତ ସମ୍ପତ୍ତି ପାଇବେ । ଏପରି କେହି ଚୁକ୍ତି-ଉଆରସ ନ ଥିଲେ ମୃତ ବ୍ୟକ୍ତି ଯାହାଙ୍କୁ ଆପଣାର କୁଟୁମ୍ବ ବୋଲି ସ୍ୱୀକାର କରି ଯାଇଥିବେ ସେ ତ୍ୟକ୍ତ ସମ୍ପତ୍ତିରେ ମାଲିକ ହେବେ । ଏମାନେ କେହି ନ ଥିଲେ ତ୍ୟକ୍ତ ସମ୍ପତ୍ତି ସରକାରୀ ମାଲଖାନାକୁ ଯିବ ।

ଉଆରସମାନେ ତିନି ଶ୍ରେଣୀରେ ବିଭକ୍ତ । ୧ମ—ଅଂଶଭାଗୀ, ୨ୟ—ଅବଶିଷ୍ଟାଂଶଭାଗୀ, ୩ୟ—ଦୂର କୁଟୁମ୍ବ । ପ୍ରଥମେ ତ୍ୟକ୍ତ ସମ୍ପତ୍ତିରୁ ଅଂଶଭାଗୀ ଉଆରସମାନେ ସେମାନଙ୍କର ଶାସ୍ତ୍ରସିଦ୍ଧ ଅଂଶ ପାଇବେ । ସେମାନେ ଅଂଶ ପାଇବା ପରେ ଯାହା ଅବଶିଷ୍ଟ ରହିବ ତାହା ୨ୟ ଶ୍ରେଣୀର ଉଆରସ ଅର୍ଥାତ୍ ଅବଶିଷ୍ଟାଂଶଭାଗୀମାନେ ପାଇବେ । ଯେବେ ୧ମ ଶ୍ରେଣୀର କେହି ନ ଥାନ୍ତି ତେବେ ୨ୟ ଶ୍ରେଣୀର ଉଆରସମାନେ ପାଇବେ । ୧ମ ଓ ୨ୟ ଶ୍ରେଣୀର କେହି ଉଆରସ ନ ଥିଲେ ୩ୟ ଶ୍ରେଣୀର ଉଆରସମାନେ ପାଇବେ । ୧ମ ଶ୍ରେଣୀର ଉଆରସମାନଙ୍କ ମଧ୍ୟରୁ ମୃତବ୍ୟକ୍ତିଙ୍କର ସ୍ୱାମୀ ବା ସ୍ତ୍ରୀ ବିଦ୍ୟମାନ ଥିଲେ ମଧ୍ୟ ୨ୟ ଶ୍ରେଣୀର କେହି ନ ଥିଲେ

ସ୍ୱାମୀ ବା ସ୍ତ୍ରୀଙ୍କ ଅଂଶ ବାଦ ବାକି ଯାହା ରହିବ ତାହା ତୃତୀୟ ଶ୍ରେଣୀର ଉଅରସ ଅର୍ଥାତ୍ ଦୂର କୁଟୁମ୍ବମାନେ ପାଇବେ । ନିକଟତମ ଉଅରସ ବିଦ୍ୟମାନ ଥିଲେ ଦୂରତର ବ୍ୟକ୍ତିମାନେ ସମ୍ପତ୍ତି ପାଇ ପାରିବେ ନାହିଁ । ଉଦାହରଣ ସ୍ୱରୂପ, ମୃତବ୍ୟକ୍ତିର ଭାଇ ଏବଂ ପୁତୁରା ବିଦ୍ୟମାନ ଅଛନ୍ତି । ଭାଇ ଥାଉଁ ଥାଉଁ ପୁତୁରା ସମ୍ପତ୍ତିରେ ମାଲିକ ହୋଇ ପାରିବେ ନାହିଁ । ମୃତବ୍ୟକ୍ତିର ୩ ଭାଇ ମଧ୍ୟରୁ ଦୁଇଜଣ ଭାଇ ଜୀବିତ ଅଛନ୍ତି ଓ ଏକଜଣ ଭାଇ ମରିଯାଇଅଛି ଓ ତାହାର ଦୁଇଟି ପୁଅ ଅଛନ୍ତି । ଏପରିସ୍ଥଳରେ ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ତାହାର ଦୁଇଭାଇ ମାଲିକ ହେବେ, କିନ୍ତୁ ପୁତୁରାମାନେ ଅଦୌ କିଛି ପାଇବେ ନାହିଁ । ମାତ୍ର ହିନ୍ଦୁମାନଙ୍କ ମଧ୍ୟରେ ଏପରି ଘଟଣା ହେଲେ ମୃତବ୍ୟକ୍ତିର ସମ୍ପତ୍ତି ୩ ଭାଗରେ ବିଭକ୍ତ ହୋଇ ଜୀବିତ ୨ ଭାଇ ଦୁଇ ଅଂଶ ପାଇଥାନ୍ତେ ଓ ମୃତଭାଇର ପୁଅମାନେ ଏକ ଅଂଶ ପାଇଥାନ୍ତେ । ପୁଅ ଥାଉଁ ଥାଉଁ ସୁନ୍ନୀମାନଙ୍କ ଆଇନ ଅନୁସାରେ ନାତି ସମ୍ପତ୍ତିରେ ଭାଗୀ ହୋଇ ପାରିବ ନାହିଁ କିନ୍ତୁ ହିନ୍ଦୁମାନଙ୍କ ମିତାକ୍ଷର ଶାସ୍ତ୍ର ଅନୁସାରେ ବାପ ଥାଉଁ ଥାଉଁ ପୁଅର ସମ୍ପତ୍ତିରେ ଅଧିକାର ହୁଏ । ଯେଉଁ ଉଅରସ ସଙ୍ଗେ ମୃତବ୍ୟକ୍ତିର ଦୁଇ ସମ୍ପର୍କ ଥାଏ ଓ ଯେଉଁ ଉଅରସ ସଙ୍ଗେ ମୃତବ୍ୟକ୍ତିର ଏକ ସମ୍ପର୍କ ଥାଏ ଏପରି ଉଅରସମାନଙ୍କ ମଧ୍ୟରେ ଦୁଇସମ୍ପର୍କଯୁକ୍ତ ଉଅରସମାନଙ୍କୁ ସମ୍ପତ୍ତିରେ ଅଧିକାର ହୁଏ । ଉଦାହରଣ ସ୍ୱରୂପ, ମୃତବ୍ୟକ୍ତିଙ୍କ ପିତା ଯୋଡ଼ିଏ ବିବାହ କରିଅଛନ୍ତି । ପ୍ରଥମ ବିବାହିତା ସ୍ତ୍ରୀଙ୍କ ଗର୍ଭରୁ ମୃତବ୍ୟକ୍ତି ଓ ଆଉ ଏକଭାଇ ଜନ୍ମ ହୋଇଥିଲେ । ୨ୟ ସ୍ତ୍ରୀଙ୍କ ଗର୍ଭରୁ ଏକପୁଅ ଜନ୍ମ ହୋଇଥିଲେ । ଏପରି ସ୍ଥଳରେ ମୃତବ୍ୟକ୍ତି ମରିବା ସମୟରେ ଏକ ନିଜର ଭାଇ ଓ ଏକ ସାବତ ଭାଇ ଛାଡ଼ି ମରିଅଛନ୍ତି । ନିଜ ଭାଇ ସଙ୍ଗେ ମୃତବ୍ୟକ୍ତିଙ୍କର ଦୁଇ ସମ୍ପର୍କ ଅଛି ଅର୍ଥାତ୍ ଏକପିତୃକ ସମ୍ପର୍କ ଓ ଏକମାତୃକ ସମ୍ପର୍କ । ସାବତ ଭାଇଙ୍କ ସଙ୍ଗେ ମୃତ ବ୍ୟକ୍ତିଙ୍କର ଏକ ସମ୍ପର୍କ ଅଛି ଅର୍ଥାତ୍ କେବଳ ଏକପିତୃକ ସମ୍ପର୍କ । ଏପରି ସ୍ଥଳରେ ମୃତ ବ୍ୟକ୍ତିଙ୍କ ତ୍ୟକ୍ତ ସମ୍ପତ୍ତିରେ ନିଜ ଭାଇଙ୍କର ଅଧିକାର ରହିବ । ସାବତ ଭାଇର ଅଧିକାର ରହିବ ନାହିଁ । ସମାନ ଦୂରବର୍ତ୍ତୀ ଉଅରସମାନଙ୍କ ମଧ୍ୟରେ ସ୍ତ୍ରୀ ପୁରୁଷ ଉଭୟ ବିଦ୍ୟମାନ ଥିଲେ ପୁରୁଷ ଉଅରସର ଅଂଶ ସ୍ତ୍ରୀ ଉଅରସର ପ୍ରାପ୍ୟ ଅଂଶର ଦୁଇ ଗୁଣ ହେବ । ଉଦାହରଣ ସ୍ୱରୂପ, ମୃତବ୍ୟକ୍ତିର ପୁତ୍ର ଓ କନ୍ୟା ବିଦ୍ୟମାନ ଥିଲେ ଜଣେ ପୁତ୍ରର ଅଂଶ ଜଣେ କନ୍ୟାର ପ୍ରାପ୍ୟ ଅଂଶର ଦୁଇ ଗୁଣ ହେବ । ସୁନ୍ନୀମାନଙ୍କ ମଧ୍ୟରେ ଜ୍ୟେଷ୍ଠାଂଶ ପ୍ରଥା ପ୍ରଚଳିତ ନାହିଁ । ପୂର୍ବେ ବୋଲାଯାଇଅଛି ଯେ ମୁସଲମାନଙ୍କ ମଧ୍ୟରେ ସ୍ଥାବର ଅସ୍ଥାବର ସମ୍ପତ୍ତିର ପ୍ରଭେଦ ନାହିଁ । ସ୍ଥାବର ସମ୍ପତ୍ତି ପ୍ରତି ଯେଉଁ ନିୟମ, ଅସ୍ଥାବର ସମ୍ପତ୍ତି ପ୍ରତି ସେହି ନିୟମ । ମଧ୍ୟ ପୈତୃକ ଓ ସ୍ୱୋପାର୍ଜିତ ସମ୍ପତ୍ତି ମଧ୍ୟରେ ପ୍ରଭେଦ ନାହିଁ ।

ପୂର୍ବରେ କୁହାଯାଇଅଛି ସୁନ୍ନିମାନଙ୍କ ମଧ୍ୟରେ ଉଅରସମାନେ ୩ ଶ୍ରେଣୀରେ ବିଭକ୍ତ; ୧. ଅଂଶଭାଗୀ, ୨. ଅବଶିଷ୍ଟାଂଶଭାଗୀ, ୩. ଦୂର କୁଟୁମ୍ବ ।

୧ମ — ଅଂଶଭାଗୀ ଉଅରସଙ୍କ ସଂଖ୍ୟା ବାର; ଯଥା:— ୧. ମୃତବ୍ୟକ୍ତିଙ୍କ ପିତା, ୨. ସତ୍ୟ ଅଜା, ୩. ଏକମାତୃକ ଭାଇ, ୪. ସ୍ୱାମୀ, ୫. ସ୍ତ୍ରୀ, ୬. କନ୍ୟା, ୭. ପୁଅର ଝିଅ ନାତୁଣୀ, ୮. ଏକପିତୃକ ଓ ଏକମାତୃକ ଭଉଣୀ, ୯. ଏକପିତୃକ ଭଉଣୀ, ୧୦. ଏକମାତୃକ ଭଉଣୀ, ୧୧. ମା, ୧୨. ସତ୍ୟ ଅଈ । ମୁସଲମାନଙ୍କ ମଧ୍ୟରେ ସତ୍ୟ ଅଜା ଓ ମିଥ୍ୟା ଅଜା ଏପରି ଦୁଇ ଶ୍ରେଣୀର ଅଜା ଏବଂ ସତ୍ୟ ଅଈ ଓ ମିଥ୍ୟା ଅଈ ଏପରି ଦୁଇ ଶ୍ରେଣୀର ଅଈ ଅଛନ୍ତି । ଯେଉଁ ଅଜାଙ୍କ ସଙ୍ଗେ ମୃତବ୍ୟକ୍ତିଙ୍କର ଏପରି ସମ୍ପର୍କ ଅଛି ଯେ ସେ ଦୁହିଁଙ୍କ ମଧ୍ୟରେ କୌଣସି ସ୍ତ୍ରୀ ବ୍ୟବଧାନ ନାହିଁ ଏପରି ଅଜାଙ୍କୁ ସତ୍ୟ ଅଜା

ବୋଲାଯାଏ । ଅର୍ଥାତ୍ ପିତାମହ, ପ୍ରପିତାମହ, ବୃଦ୍ଧପ୍ରପିତାମହ ଏମାନେ ସତ୍ୟ ଅଜ୍ଞା । କିନ୍ତୁ ଯେଉଁ ଅଜ୍ଞା ମଧ୍ୟରେ ସ୍ତ୍ରୀ ବ୍ୟବଧାନ ଅଛନ୍ତି ସେ ମିଥ୍ୟା ଅଜ୍ଞା । ଯଥା, ମାତାମହ, ପିତାଙ୍କ ମାତାମହ, ମାତାଙ୍କ ପିତାମହ ଇତ୍ୟାଦି । ସେହିପରି ଯେଉଁ ଅଣ୍ଟିଙ୍କ ମଧ୍ୟରେ କୌଣସି ସ୍ତ୍ରୀ ବ୍ୟବଧାନ ନାହିଁ ସେ ସତ୍ୟ ଅଣ୍ଟି ଓ ଯେଉଁଠାରେ ସ୍ତ୍ରୀ କିମ୍ବା ମିଥ୍ୟା ଅଜ୍ଞା ବ୍ୟବଧାନ ଅଛନ୍ତି ସେ ମିଥ୍ୟା ଅଣ୍ଟି । ଯଥା— ପିତାମହୀ, ପ୍ରପିତାମହୀ ଏମାନେ ସତ୍ୟ ଅଣ୍ଟି । ମାତାମହୀ, ପିତାଙ୍କ ମାତାମହୀ, ମାତାଙ୍କ ପିତାମହୀ ଏମାନେ ମିଥ୍ୟା ଅଣ୍ଟି । ନାତୁଣୀ ସମ୍ବନ୍ଧରେ ଏହିପରି ଗୋଟିଏ ନିୟମ ଅଛି । ପୁଅର ଝିଅ, ପୁଅର ପୁଅର ଝିଅ, ପୁଅର ପୁଅର ପୁଅର ଝିଅ ଏହି ନାତୁଣୀମାନେ ଉତ୍ତରସ, କିନ୍ତୁ ମଝିରେ କନ୍ୟା ବ୍ୟବଧାନ ଥିଲେ ସେ ନାତୁଣୀମାନେ ଉତ୍ତରସ ହୋଇ ପାରିବେ ନାହିଁ; ଯଥାଃ—ଝିଅର ଝିଅ, ପୁଅର ଝିଅର ଝିଅ ଏମାନେ ଉତ୍ତରସ ନୁହନ୍ତି ।

ଅଂଶଭାଗୀମାନଙ୍କ ପ୍ରାପ୍ୟ ଅଂଶ ।

ପିତା—ମୃତ ବ୍ୟକ୍ତିଙ୍କ ପୁଅ କିମ୍ବା ନିମ୍ନତର ଉତ୍ତରସ ବିଦ୍ୟମାନ ଥିଲେ ମୃତବ୍ୟକ୍ତିର ପିତା ତ୍ୟକ୍ତ ସମ୍ପତ୍ତିର ଏକ ଷଷ୍ଠାଂଶ ଅର୍ଥାତ୍ ଦୁଇ ଅଣା ଅଠ ପାହୁଲା ପାଇ ପାରିବେ । ମୃତବ୍ୟକ୍ତିଙ୍କର କନ୍ୟା କିମ୍ବା ପୁତ୍ରର କନ୍ୟା ବିଦ୍ୟମାନ ଥିଲେ ପିତା ତ୍ୟକ୍ତ ସମ୍ପତ୍ତିର ଏକଷଷ୍ଠାଂଶ ପାଇବେ ଓ ଅନ୍ୟ ଉତ୍ତରସମାନେ ସେମାନଙ୍କ ନିରୂପିତ ଅଂଶ ପାଇବା ପରେ ଅବଶିଷ୍ଟ ଯାହା ରହିବ ତାହା ମଧ୍ୟ ମୃତବ୍ୟକ୍ତି ପିତାର ପାଇବେ । କିନ୍ତୁ ଯଦି ମୃତବ୍ୟକ୍ତିଙ୍କର କେହି ଔରସ ନ ଥାନ୍ତି ତାହା ହେଲେ ପିତା ଅଂଶଭାଗୀ ସ୍ୱରୂପ ଏକଷଷ୍ଠାଂଶ ପାଇବେ ନାହିଁ, କିନ୍ତୁ ଅନ୍ୟ ଅଂଶଭାଗୀମାନଙ୍କର ଅଂଶ ଦିଆ ହେଲେ ଯାହା ଅବଶିଷ୍ଟ ରହିବ ତାହା ପିତା ପାଇବେ ।

ମାତା—ମୃତ ବ୍ୟକ୍ତିର କେହି ଏକବଂଶଜ ଔରସ ଥିଲେ କିମ୍ବା ମୃତବ୍ୟକ୍ତିର ଦୁଇ ବା ତତୋଧିକ ଭାଇ ଭଉଣୀ ଥିଲେ ତ୍ୟକ୍ତ ସମ୍ପତ୍ତିରେ ମାତାଙ୍କର ଏକଷଷ୍ଠାଂଶ ବା ଦୁଇଅଣା ଅଠ ପାହୁଲା । ମୃତବ୍ୟକ୍ତିର କେହି ଏକବଂଶଜ ଔରସ ନ ଥିଲେ କିମ୍ବା ଭାଇ ଭଉଣୀଙ୍କ ସଂଖ୍ୟା ଏକରୁ ଅଧିକ ନ ଥିଲେ ଓ ମୃତବ୍ୟକ୍ତିଙ୍କର ପିତା ଓ ସ୍ୱାମୀ ବା ସ୍ତ୍ରୀ ଏମାନଙ୍କ ମଧ୍ୟରୁ କେହି ନ ଥିଲେ ମାତା ଏକତୃତୀୟାଂଶ ବା ପାଞ୍ଚ ଅଣା ଚାରି ପାହୁଲା ପାଇବେ । ଉପରୋକ୍ତ ଉଦାହରଣରେ ଯେବେ ମୃତବ୍ୟକ୍ତିର ପିତା ମାତା ଓ ସ୍ୱାମୀ ବା ସ୍ତ୍ରୀ ଜୀବିତ ଥାନ୍ତି ତେବେ ସ୍ୱାମୀ ବା ସ୍ତ୍ରୀର ଅଂଶ ବାଦ ଅବଶିଷ୍ଟାଂଶରୁ ମାତା ଏକତୃତୀୟାଂଶ ବା ପାଞ୍ଚ ଅଣା ଚାରି ପାହୁଲା ପାଇବେ । କିନ୍ତୁ ଉପରୋକ୍ତ ଉଦାହରଣରେ ପିତା ନ ଥାଇ ଯେବେ ମିଥ୍ୟା ଅଜ୍ଞା ଥାନ୍ତି ତାହା ହେଲେ ମାତା ସମୁଦାୟ ସମ୍ପତ୍ତିର ଏକତୃତୀୟାଂଶ ପାଇବେ । ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ସାବତ ମାଙ୍କର କୌଣସି ସ୍ୱତ୍ୱ ନାହିଁ ।

କନ୍ୟା—ମୃତବ୍ୟକ୍ତିର ପୁତ୍ର ନ ଥିଲେ ଓ ଗୋଟିଏ ମାତ୍ର କନ୍ୟା ଥିଲେ ସେହି କନ୍ୟା ସମ୍ପତ୍ତିର ଅର୍ଦ୍ଧେକ ପାଇବ ଓ ଏକାଧିକ କନ୍ୟା ଥିଲେ ସେମାନେ ସମସ୍ତେ ସମ୍ପତ୍ତିର ଦୁଇତୃତୀୟାଂଶ ବା ଦଶ ଅଣା ଅଠ ପାହୁଲା ପାଇବେ । କିନ୍ତୁ ମୃତବ୍ୟକ୍ତିଙ୍କର ପୁତ୍ର ବିଦ୍ୟମାନ ଥିଲେ କନ୍ୟା 'ଅଂଶଭାଗୀ' ରୂପେ ସମ୍ପତ୍ତିରୁ ଭାଗ ନ ପାଇ ଭାଇ ସଙ୍ଗେ 'ଅବଶିଷ୍ଟାଂଶଭାଗୀ' ହୁଅନ୍ତି ଏବଂ ତ୍ୟକ୍ତ ସମ୍ପତ୍ତିରୁ ଜଣେ ପୁଅର ଯାହା ଅଂଶ, ଜଣେ କନ୍ୟା ତାହାର ଅର୍ଦ୍ଧେ ପାନ୍ତି ।

ସାବତ ଝିଅର ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ଝିଅପରି ଅଂଶ ନାହିଁ ।

ସ୍ୱାମୀ ଓ ସ୍ତ୍ରୀ—ମୃତବ୍ୟକ୍ତିର ଔରସ ପୁତ୍ର କିମ୍ବା ଔରସ ପୁତ୍ରର ପୁତ୍ର ନ ଥିଲେ ସ୍ୱାମୀ ତ୍ୟକ୍ତ ସମ୍ପତ୍ତିର ଅର୍ଦ୍ଧେକ ପାଇବେ । କିନ୍ତୁ ଔରସ ବିଦ୍ୟମାନ ଥିଲେ ସ୍ୱାମୀ ତ୍ୟକ୍ତ ସମ୍ପତ୍ତିର ଚାରି ଭାଗରୁ ଏକଭାଗ ପାଇବେ । ମୃତବ୍ୟକ୍ତିର ଔରସ

ନ ଥିଲେ ସ୍ତ୍ରୀ ବ୍ୟକ୍ତିସମ୍ପତ୍ତିର ଚାରିଭାଗରୁ ଏକ ଭାଗ ପାଇବେ ଓ କେହି ଔରସ ଥିଲେ ସ୍ତ୍ରୀ ବ୍ୟକ୍ତି ସମ୍ପତ୍ତିର ଆଠଭାଗରୁ ଏକଭାଗ ପାଇବେ । ମୃତ ବ୍ୟକ୍ତିଙ୍କର ଏକାଧିକ ସ୍ତ୍ରୀ ବର୍ତ୍ତମାନ ଥିଲେ ଉପରୋକ୍ତ ଅଂଶକୁ ସବୁ ସ୍ତ୍ରୀମାନେ ସମାନ ଭାଗରେ ବାଣ୍ଟି ନେବେ ।

ସତ୍ୟ ଅଜା—ମୃତବ୍ୟକ୍ତିର ବାପ ବଞ୍ଚିଥିଲେ ଅଜା କିଛି ପାଇବେ ନାହିଁ । ବାପ ନ ଥିଲେ ଅଜା ବାପଙ୍କ ପ୍ରାପ୍ୟ ଅଂଶ ପାଇବେ ।

ଏକମାତୃକ ଭାଇ ଭଉଣୀ—ଏ ଶ୍ରେଣୀର ଭାଇ ଭଉଣୀଙ୍କ ଅଂଶ ସେମାନଙ୍କ ମଧ୍ୟରେ ସମାନ ଭାଗରେ ବଣ୍ଟାଯାଏ, ମୃତବ୍ୟକ୍ତିଙ୍କର ଜଣେ ଭାଇ ବା ଭଉଣୀ ଥିଲେ ସେ ସମ୍ପତ୍ତିର ଛ ଭାଗରୁ ଏକଭାଗ ପାଇବେ । ଭାଇ ଭଉଣୀ ଏକାଧିକ ଥିଲେ ସମସ୍ତେ ମିଶି ବ୍ୟକ୍ତିସମ୍ପତ୍ତିର ତିନିଭାଗରୁ ଏକଭାଗ ପାଇବେ । ମୃତବ୍ୟକ୍ତିର ଔରସ କିମ୍ବା ବାପ କିମ୍ବା ସତ୍ୟ ଅଜା ବର୍ତ୍ତମାନ ଥିଲେ ଏ ଶ୍ରେଣୀର ଭାଇ ଭଉଣୀମାନେ ବ୍ୟକ୍ତି ସମ୍ପତ୍ତିରୁ କିଛିମାତ୍ର ପାଇ ପାରିବେ ନାହିଁ ।

ପୁଅର ଝିଅ—ଜଣେ ଥିଲେ ବ୍ୟକ୍ତିସମ୍ପତ୍ତିରୁ ଅର୍ଦ୍ଧେ ପାଇବେ । ଜଣକରୁ ବେଶି ଥିଲେ ସମସ୍ତେ ମିଶି ତିନି ଭାଗରୁ ଦୁଇ ଭାଗ ପାଇବେ । ମୃତ ବ୍ୟକ୍ତିର ପୁଅ, କିମ୍ବା ଏକାଧିକ ଝିଅ କିମ୍ବା ନିକଟତର ସମ୍ପର୍କୀୟ ନାତି ବର୍ତ୍ତମାନ ଥିଲେ ନାତୁଣୀମାନେ କିଛି ପାଇବେ ନାହିଁ । ମୃତବ୍ୟକ୍ତିର ଜଣେ ମାତ୍ର ଝିଅ ଥିଲେ, ପୁଅର ଝିଅ ସମ୍ପତ୍ତିର ଛ ଭାଗରୁ ଏକଭାଗ ପାଇବେ । ମୃତବ୍ୟକ୍ତିର ସମଦୂରବର୍ତ୍ତୀ ନାତି ଓ ନାତୁଣୀ ଉଭୟ ଥିଲେ ନାତିର ଅଂଶ ନାତୁଣୀ ଅଂଶର ଦୁଇ ଗୁଣ ହେବ ।

ଏକପିତୃମାତୃକ ଭଉଣୀ—ମୃତବ୍ୟକ୍ତିର ବାପ, ସତ୍ୟ ଅଜା, ପୁଅ କିମ୍ବା ପୁଅର ପୁଅ ନାତି ବର୍ତ୍ତମାନ ଥିଲେ ମୃତବ୍ୟକ୍ତିର ଏକପିତୃମାତୃକ ଭଉଣୀ ବ୍ୟକ୍ତି ସମ୍ପତ୍ତିରୁ କିଛି ପାଇବେ ନାହିଁ । ଏ ଶ୍ରେଣୀର ଜଣେ ଭଉଣୀ ଥିଲେ ସେ ବ୍ୟକ୍ତି ସମ୍ପତ୍ତିର ଅର୍ଦ୍ଧେକ ପାଇବେ । ଏକାଧିକ ଥିଲେ ସମସ୍ତେ ମିଶି ତିନି ଭାଗରୁ ଦୁଇ ଭାଗ ପାଇବେ । କିନ୍ତୁ ଏମାନଙ୍କ ସଙ୍ଗେ ଯେବେ ଏହି ଶ୍ରେଣୀର ଜଣେ ଭାଇ ଥାଏ ତାହାହେଲେ ପ୍ରତ୍ୟେକ ଭଉଣୀର ଅଂଶ ପ୍ରତ୍ୟେକ ଭାଇର ଅଂଶର ଅର୍ଦ୍ଧେକ ହେବ । ମୃତବ୍ୟକ୍ତିର ଏହି ଶ୍ରେଣୀର କେହି ଭାଇ ନ ଥାଇ ଯେବେ ଝିଅ ଏବଂ ପୁଅର ଝିଅ ନାତୁଣୀ ଥାନ୍ତି ତାହାହେଲେ ଝିଅ ଓ ନାତୁଣୀଙ୍କ ପ୍ରାପ୍ୟ ଅଂଶ ବାଦ ବାକି ଅବଶିଷ୍ଟ ଯାହା ରହିବ ତାହା ଏହି ଶ୍ରେଣୀର ଭଉଣୀ ପାଇବେ ।

ଏକପିତୃକ ଭଉଣୀ—ବାପ, ସତ୍ୟ ଅଜା, କିମ୍ବା ଔରସ କିମ୍ବା ଏକପିତୃମାତୃକ ଭଉଣୀ କେହି ନ ଥିଲେ ଓ ଏକ ବାପଠାରୁ ଜାତ ଜଣେ ଭଉଣୀ ଥିଲେ ସେ ବ୍ୟକ୍ତି ସମ୍ପତ୍ତିର ଅର୍ଦ୍ଧେ ପାଇବେ; ଏକରୁ ଅଧିକ ଭଉଣୀ ଥିଲେ ସମସ୍ତେ ମିଶି ବ୍ୟକ୍ତି ସମ୍ପତ୍ତିର ତିନିଭାଗରୁ ଦୁଇ ଭାଗ ପାଇବେ । ଏହି ଶ୍ରେଣୀର ଭାଇ ବର୍ତ୍ତମାନ ଥିଲେ ଜଣେ ଭାଇର ଅଂଶ ଜଣେ ଭଉଣୀର ଅଂଶର ଦୁଇ ଗୁଣ ହେବ । ବାପ, ସତ୍ୟ ଅଜା, ଔରସ କେହି ନ ଥିଲେ ଓ ଜଣେ ଏକପିତୃମାତୃକ ଭଉଣୀ ଥିଲେ ଏହି ଶ୍ରେଣୀର ଭଉଣୀମାନେ ସମସ୍ତେ ମିଶି ବ୍ୟକ୍ତି ସମ୍ପତ୍ତିର ଛ ଭାଗରୁ ଏକଭାଗ ପାଇବେ । ବାପ, ସତ୍ୟ ଅଜା, ବା ଔରସ କେହି ନ ଥାଇ ଯେବେ ଏକପିତୃମାତୃକ ଭଉଣୀ ଏକରୁ ଅଧିକ ଥାନ୍ତି ତାହାହେଲେ ଏ ଶ୍ରେଣୀର ଭଉଣୀମାନେ କିଛି ପାଇବେ ନାହିଁ । ଏକପିତୃମାତୃକ ଭାଇ ଥିଲେ ଏ ଶ୍ରେଣୀର ଭଉଣୀମାନେ କିଛି ପାଇବେ ନାହିଁ ।

ସତ୍ୟ ଆଈ—ଜଣେ କିମ୍ବା ସମଦୂରସ୍ଥ ଏକାଧିକ ଆଈ ଥିଲେ ସେମାନଙ୍କର ଅଂଶ ବ୍ୟକ୍ତି ସମ୍ପତ୍ତିର ଛ ଭାଗରୁ ଏକ ଭାଗ । ନିକଟ ସମ୍ପର୍କୀୟ ଆଈ ଥିଲେ ଦୂର ସମ୍ପର୍କୀୟ ଆଈ ବ୍ୟକ୍ତି ସମ୍ପତ୍ତିରୁ କିଛି ପାଇବେ ନାହିଁ । ମା

ଅଦ୍ୟମାନ ଥିଲେ ଆଉ କିଛି ପାଇବେ ନାହିଁ ।

ମନ୍ତବ୍ୟ--ମୁସଲମାନଙ୍କ ଶାସ୍ତ୍ରଲିଖିତ ଉପରୋକ୍ତ ଅଂଶ ଅନୁସାରେ ବ୍ୟକ୍ତ ସମ୍ପତ୍ତିକୁ ବାଣ୍ଟିବାକୁ ଗଲେ ଅନେକ ସ୍ଥଳରେ ଦେଖାଯାଏ ଯେ ଶାସ୍ତ୍ରଲିଖିତ ଅଂଶଗୁଡ଼ିକ ମିଶାଇ ଦେଲେ ଷୋଳ ଅଣରୁ ବଳି ପଡ଼େ । ଏପରି ସ୍ଥଳରେ ଅଂଶୀଦାରମାନଙ୍କ ଅଂଶରୁ ଯଥୋଚିତରେ କିଛି କିଛି କଟି ଯାଇ ଯୋଗର ସମୁଦାୟ ଅଂଶ ମିଶାଇଲେ ଷୋଳ ଅଣ ହେବ ସେହିପରି କରା ଯାଏ । ଏହି ଯଥୋଚିତ ହିସାବ ଭଗ୍ନାଂଶ ଅନୁସାରେ କଷିବାକୁ ହୁଏ । ଉଦାହରଣ ସ୍ୱରୂପ :—ଜଣେ ମୃତ ସ୍ତ୍ରୀର ସ୍ୱାମୀ, ପିତା, ମାତା ଏବଂ ଗୋଟିଏ କନ୍ୟା ଅଛନ୍ତି, ଶାସ୍ତ୍ର ଅନୁସାରେ କନ୍ୟାର ଅଂଶ ଅର୍ଦ୍ଧେ (ବାର ଭାଗରୁ ଛ ଭାଗ), ବାପଙ୍କ ଅଂଶ ଛ ଭାଗରୁ ଏକ ଭାଗ (ବାର ଭାଗରୁ ଦୁଇ ଭାଗ), ମାଙ୍କ ଅଂଶ ଛ ଭାଗରୁ ଏକ ଭାଗ (ବାର ଭାଗରୁ ଦୁଇ ଭାଗ) ଓ ସ୍ୱାମୀର ଅଂଶ ଚାରି ଭାଗରୁ ଏକ ଭାଗ (ବାର ଭାଗରୁ ତିନି ଭାଗ) । କିନ୍ତୁ ଏସବୁ ଅଂଶଗୁଡ଼ିକ ମିଶାଇ ଦେଲେ ତେର ଭାଗ ହେଉଅଛି । ଏମନ୍ତସ୍ଥଳରେ ସମ୍ପତ୍ତିକୁ ବାର ଭାଗ ନ କରି ତେର ଭାଗ କରାଯିବ ଓ ସେଥିରୁ ଝିଅ ଛ ଭାଗ, ବାପ ଦୁଇ ଭାଗ, ମା ଦୁଇ ଭାଗ ଓ ସ୍ୱାମୀ ତିନି ଭାଗ ପାଇବେ । ଏହି ପ୍ରଣାଳୀକୁ 'ଅଉଲ' ବା ବୃଦ୍ଧି ବୋଲାଯାଏ । ଜଣେ ମୃତ ବ୍ୟକ୍ତିର ସ୍ତ୍ରୀ, ଦୁଇ କନ୍ୟା ଓ ପିତା ମାତା ଜୀବିତ ଅଛନ୍ତି । ଦୋରାକ ଅନୁସାରେ ସ୍ତ୍ରୀର ଅଂଶ ଆଠ ଭାଗରୁ ଏକ ଭାଗ ( ଚବିଶ ଭାଗରୁ ତିନି ଭାଗ ), ଦୁଇ କନ୍ୟାଙ୍କର ଅଂଶ ତିନି ଭାଗରୁ ଦୁଇ ଭାଗ (ଚବିଶ ଭାଗରୁ ଷୋଳ ଭାଗ), ବାପଙ୍କର ଅଂଶ ଛ ଭାଗରୁ ଏକ ଭାଗ ( ଚବିଶ ଭାଗରୁ ଚାରି ଭାଗ ) । ଏ ଭାଗଗୁଡ଼ିକ ମିଶାଇଲେ ୨୭ ଭାଗ ହେଉଅଛି । କିନ୍ତୁ ସମ୍ପତ୍ତି ୨୪ ଭାଗ ହେଲେ ସମସ୍ତେ ଅଂଶ ପାଇବା ନିମନ୍ତେ ତିନି ଭାଗ କମ ହୋଇ ପଡ଼ିବ । ଏପରି ସ୍ଥଳରେ ସମୁଦାୟ ସମ୍ପତ୍ତିକୁ ୨୭ ଭାଗ କରି ସ୍ତ୍ରୀର ୩ ଭାଗ, କନ୍ୟାଙ୍କର ୧୬ ଭାଗ, ବାପର ୪ ଭାଗ ଓ ମାର ୪ ଭାଗ କରି ବାଣ୍ଟିବାକୁ ହେବ ।

ପକ୍ଷାନ୍ତରେ ଏପରି ମଧ୍ୟ ଅନେକ ସ୍ଥଳରେ ଘଟେ ଯେ ଅଂଶଭାଗିମାନେ ଆପଣା ଆପଣା ନିର୍ଦ୍ଦିଷ୍ଟ ଅଂଶ ନେଇ ସାରିବା ପରେ ସୁଦ୍ଧା ସମ୍ପତ୍ତି ଅବଶିଷ୍ଟ ରହେ, ଅଥଚ ସେହି ଅବଶିଷ୍ଟ ସମ୍ପତ୍ତି ପାଇବା ନିମନ୍ତେ କେହି ଅବଶିଷ୍ଟାଂଶଭାଗୀ ଉତ୍ତରାଧିକାରୀ ନ ଥାନ୍ତି । ଏପରି ସ୍ଥଳରେ ସ୍ୱାମୀ ଓ ସ୍ତ୍ରୀଙ୍କ ଛଡ଼ା ଅନ୍ୟ ଅଂଶଭାଗୀ ଉତ୍ତରାଧିକାରୀମାନେ ଆପଣା ଅଂଶର ଅନୁପାତ ଅନୁସାରେ ଅବଶିଷ୍ଟ ସମ୍ପତ୍ତି ପାଇବେ । ଏହି ପ୍ରଣାଳୀକୁ ଅରଦ ବା ପ୍ରତ୍ୟାବର୍ତ୍ତନ କହନ୍ତି । ଏହା ଅଉଲର ବିପରୀତ । କିନ୍ତୁ ଅଂଶଭାଗୀମାନଙ୍କ ମଧ୍ୟରୁ ସ୍ୱାମୀ ଓ ସ୍ତ୍ରୀ ପ୍ରତ୍ୟାବର୍ତ୍ତିତ ଅଂଶ କିଛି ପାଇବେ ନାହିଁ । ଅବଶିଷ୍ଟ ସମ୍ପତ୍ତିକୁ ଦୂରବର୍ତ୍ତୀ ଉତ୍ତରାଧିକାରୀମାନେ ପାଇବେ । କେହି ଦୂରବର୍ତ୍ତୀ କୁଟୁମ୍ବ ନ ଥିଲେ ଅଗତ୍ୟା ସ୍ୱାମୀ ସ୍ତ୍ରୀ ଅବଶିଷ୍ଟ ସମ୍ପତ୍ତି ପାଇବେ ।

ଅବଶିଷ୍ଟାଂଶଭାଗୀ ଓ ଦୂର କୁଟୁମ୍ବମାନଙ୍କ ବିଷୟ ପରେ ବୋଲାଯିବ ।

ଶ୍ରୀ ଦୁର୍ମୁଖ ଶର୍ମା ।

## ହିଦାପୃମାନ ପ୍ରାଚ୍ୟଶକ୍ତି ।

"The East bowed low before the blast
In patient deep disdain,
She left the legions thunder past,
Then plunged in thought again"

*Mathew Arnold.*

ଇତିମଧ୍ୟରେ ରୁଷ-ଜାପାନ ଯୁଦ୍ଧର କୌଣସି ପ୍ରକାର ସ୍ଥିର ମୀମାଂସା ହୋଇଯିବ ବୋଲି ଆମ୍ଭେମାନେ ମନେ କରିଥିଲୁଁ । କିନ୍ତୁ ବର୍ତ୍ତମାନ ତାହା ହେବାର ନୁହେ ବୋଲି ଅନୁମାନ ହେଉଅଛି । ଅଳ୍ପଦିନ ତଳେ ଦୁଇ ତିନି ସ୍ଥାନରେ ମହାସଂଗ୍ରାମ ଘଟି ଯାଇଅଛି । ସବୁଥିରେ ଜାପାନ ଏତେବେଳପର୍ଯ୍ୟନ୍ତ ସ୍ୱୀୟ 'ହିଦାପୃମାନ ପ୍ରାଚ୍ୟ ଶକ୍ତି'କୁ ଅକ୍ଷୁଣ୍ଣ ରଖିଅଛି । ଉଭୟପକ୍ଷରେ ଅଜସ୍ର ଲୋକକ୍ଷୟ, ଅର୍ଥନାଶ ଘଟିଅଛି । ଉଭୟ ପକ୍ଷରୁ କେତେ ମହାପ୍ରାଣୀ ଯେ ସ୍ୱଦେଶର ମାନ ଓ ସ୍ୱଦେଶର ଗୌରବ ବର୍ଦ୍ଧନ ନିମିତ୍ତ ଅକାତରରେ ପ୍ରାଣ ବିସର୍ଜନ କରି ଦେଇଅଛନ୍ତି, ଚିନ୍ତାଏ ସ୍ଥିରଭାବରେ ଆଲୋଚନା କଲେ ସ୍ତମ୍ଭିତ ହେବାକୁ ହେବ । ଅଳ୍ପଦିନ ହେଲା 'ସାହୋ' (Shaho) ନଦୀ କୂଳରେ ଉଭୟପକ୍ଷର ଯେଉଁ ଭୀଷଣ ଆହବ ସଂଘଟିତ ହୋଇ ଯାଇଅଛି ତାହା ସମସ୍ତ ଇତିହାସରେ ଏକ ଅତୁଳନୀୟ ସ୍ଥାନ ଅଧିକାର କଲା । ଭୀଷଣତାରେ ପୂର୍ବର କୌଣସି ଯୁଦ୍ଧ ଏହାକୁ ଅତିକ୍ରମ କରିବ ନାହିଁ । ଜାପାନ ଜୟଲାଭ କରିଅଛି ସତ୍ୟ, କିନ୍ତୁ ତାହାର ସେ ବିଜୟୋଲ୍ଲାସ ନାହିଁ । ସେ ସ୍ୱୀୟ ପକ୍ଷର ଓ ଶତ୍ରୁ ପକ୍ଷର ଶୋଣିତପାତ ସନ୍ଦର୍ଶନ କରି ବିଷଣ୍ଣ । ପ୍ରାଚ୍ୟ ଜାତି ଅକାତରରେ ପରକୀୟମସ୍ତକେ ଅମୃବଳ ପ୍ରଦାନ କରି ପାରେ, ଆତ୍ମୋତ୍ସର୍ଗ କରି ପାରେ, କିନ୍ତୁ ପରଦୁଃଖ, ଅନ୍ୟର ଯନ୍ତ୍ରଣା, କଷ୍ଟ ଓ ମୃତ୍ୟୁ ଦେଖିଲେ ବ୍ୟଥିତ ହୁଏ । ମୃତ୍ୟୁ ପ୍ରାଚ୍ୟ ଜାତି ନିକଟରେ ଭୀଷଣ ନୁହେ । ଅନ୍ୟ କେହି ମରିବାର ଦେଖିଲେ ପ୍ରାଚ୍ୟଜାତିର ହୃଦୟ ବିଗଳିତ ଓ କାତର ହୁଏ । ଅସାଧାରଣ ନୈତିକ ବଳ ଓ ଅଦ୍ଭୁତ କଷ୍ଟସହିଷ୍ଣୁତା ଗୁଣରେ ଆଜି ଜାପାନ ସୈନ୍ୟମାନେ ଅସାଧ୍ୟ ସାଧନ କରିଅଛନ୍ତି । ଅଦ୍ଭୁତ ସମରକୌଶଳ ଆଜି ପାଶ୍ଚାତ୍ୟ ଜଗତ ତାହାଠାରୁ ଶିକ୍ଷା କଲା । ନିଜ ପକ୍ଷର ହେଉ ବା ଶତ୍ରୁପକ୍ଷର ହେଉ, ଆହତ ସୈନ୍ୟର ଚିକିତ୍ସା, ସେବା, ଶୁଶ୍ରୂଷା କରିବାରେ ଜାପାନୀମାନେ ହୃଦୟର ଅଦ୍ଭୁତ କୋମଳତାର ନିଦର୍ଶନ ଦେଖାଇ ଅଛନ୍ତି । ଏକ ପକ୍ଷରେ ଏପ୍ରକାର କୋମଳତା, ଅନ୍ୟ ପକ୍ଷରେ ଅସାଧାରଣ ଦୃଢ଼ତା ଓ କଠୋରତା ଦେଖିଲେ ସହଜରେ ଉପଲବ୍ଧ ହେବ, ସମସ୍ତ ପ୍ରାଚ୍ୟଜାତି ମଧ୍ୟରେ ଜାପାନ କେବଳ ପ୍ରାଚ୍ୟ ପ୍ରତୀଚ୍ୟର ସମ୍ମିଶ୍ରଣରୁ ଅପୂର୍ବ ଫଳ ଲାଭ କରିଅଛି । ଅଟଳ କର୍ତ୍ତବ୍ୟନିଷ୍ଠା ଓ ସର୍ବୋପରି ପ୍ରବଳ ସ୍ୱଦେଶାନୁରାଗ ହେତୁରୁ ସେମାନେ ଏତେକାଳ ପର୍ଯ୍ୟନ୍ତ ଏ ନିଷ୍ଠୁର ଶୋଣିତପାତ ଦର୍ଶନ କରି ମଧ୍ୟ ଅବିଚଳିତ ଭାବରେ ଅଗ୍ରସର ହେଉଅଛନ୍ତି ।

ଜାପାନର ଏହି ବିପୁଳ ଉନ୍ନତିର ମୂଳୀଭୂତ କାରଣ କେଉଁଠାରେ ? ଏ ପ୍ରଶ୍ନର ଉତ୍ତର ସହଜ ନୁହେ । ତେବେ ସମୁନ୍ନତ ଭିତ୍ତିଉପରେ ପ୍ରତିଷ୍ଠିତ ଶିକ୍ଷାପଦ୍ଧତି ଅଧିକ ପରିମାଣରେ ଏହାର କାରଣ ବୋଲି ନିର୍ଦ୍ଦେଶ କରାଯାଇ ପାରେ । ଅତି ପ୍ରାଚୀନ କାଳରେ ଏହାର ଶିକ୍ଷାପଦ୍ଧତି ଅତ୍ୟନ୍ତ ନିକୃଷ୍ଟ ଥିଲା । କାଳକ୍ରମେ ସେମାନେ ଶିକ୍ଷାର ଶ୍ରେଷ୍ଠତା ଅନୁଭବ କରି ଉନ୍ନତ ଦେଶମାନଙ୍କର ଆଦର୍ଶ ଅନୁକରଣ କରି ଶିକ୍ଷାବିସ୍ତାରରେ ପ୍ରୟାସୀ ହେଲେ । ଶିକ୍ଷାବିସ୍ତାରର ଆନୁସଙ୍ଗିକ ଉପକରଣ

ଓ ସାମର୍ଥ୍ୟ ଆପଣାଠାରେ ନାହିଁ । ସୂକ୍ଷ୍ମଦୃଷ୍ଟି ସଞ୍ଚାଳନ କରି ବିଦେଶରେ ଯେଉଁ ଯେଉଁଠାରେ ଯାହା ଯାହା ଶିଖିବାକୁ ହେବ, ସମସ୍ତ ବାଧାବିଘ୍ନ ଅତିକ୍ରମ କରି ତାହା ଶିଖିବାକୁ ଅଗ୍ରସର ହେଲେ । ବିଦେଶକୁ ଯାଇ ନାନା ବିଦ୍ୟା ଶିକ୍ଷା କରିବାକୁ ହେଲେ ବହୁତ ଅର୍ଥର ପ୍ରୟୋଜନ । କିନ୍ତୁ ଯେଉଁ ଯୁବକମାନେ ଏହି ଦୁଃସାହସିକ କାର୍ଯ୍ୟରେ ବ୍ରତୀ ହୋଇଥିଲେ ସେମାନଙ୍କର ଅବସ୍ଥା ସେତେଦୂର ସନ୍ତୋଷଜନକ ନ ଥିଲା । ଏକ କପର୍ଦ୍ଦକ ମାତ୍ର ଦେଶଠାରୁ ପ୍ରତ୍ୟାଶା ନ କରି, କେବଳ ଦେଶର ସର୍ବବିଧ ମଙ୍ଗଳକାମନାରେ ପ୍ରାଣୋଦିତ ହୋଇ ବିଦେଶକୁ ଯାତ୍ରା କଲେ । ସେଠାରେ ଜାପାନୀ ଯୁବକମାନେ ଯେଉଁ ଅଭୂତ ସଂଯମର ଦୃଷ୍ଟାନ୍ତ ଦେଖାଇ ଶିକ୍ଷାଲାଭ କରିଅଛନ୍ତି, ତାହା ସେମାନଙ୍କ ପକ୍ଷରେ ଅତ୍ୟନ୍ତ ଗୌରବର ବିଷୟ ଅଟେ । ସମସ୍ତ ଭୋଗସ୍ପୃହା, ଆକାଂକ୍ଷା, ଆଳସ୍ୟକୁ ଏକାବେଳକେ ସଂଯମିତ କରି ବିଦେଶରେ ନିତାନ୍ତ ସାମାନ୍ୟ କାର୍ଯ୍ୟ କରି, କେହି ବା କୁଲି କାର୍ଯ୍ୟ, କେହି ବା ମୂଲିଆ କାର୍ଯ୍ୟ, କେହି ବାସନ ମାଜିବା କାର୍ଯ୍ୟ ପର୍ଯ୍ୟନ୍ତ ସ୍ୱୀକାର କରି ବିଦେଶରେ ଶିକ୍ଷାର ବ୍ୟୟଭାର ବହନ କରିଅଛନ୍ତି । ଏ ଅସାମାନ୍ୟ ତ୍ୟାଗସ୍ୱୀକାର ଓ କଠୋର ବ୍ରହ୍ମଚର୍ଯ୍ୟ ବ୍ରତପାଳନର ଅମୃତମୟ ଫଳ ସେମାନେ ଭୋଗ କରିଅଛନ୍ତି । ଯେବେ ଭାରତର କାହାକୁଠାରୁ କିଛି ଶିକ୍ଷା କରିବାକୁ ଅଛି, ସର୍ବାଦୌ ସେ ଏହି ଜାପାନୀ ଯୁବକମାନଙ୍କର ସାଧନା ଶିକ୍ଷା କରୁ, ତାହା ହେଲେ ତାହାର ସିଦ୍ଧିଲାଭ ନିତାନ୍ତ ଦୂରବର୍ତ୍ତୀ ହେବ ନାହିଁ । ଭାରତରେ ଅଦ୍ୟ ଏତେ ଅର୍ଥ ସଂଗ୍ରହ, ଏତେ ସମାଜ, ଏତେ ସମ୍ମିଳନୀର ହେତୁ ପ୍ରୟୋଜନୀୟତା ରହିବ ନାହିଁ ।

'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ' ଏ ସୁଧାମୟ ବାଣୀ ପ୍ରତ୍ୟେକ ଜାପାନୀ ଯୁବକର ହୃଦୟରେ ସ୍ୱର୍ଣ୍ଣାକ୍ଷରରେ ଲିଖିତ ଅଛି । ହୃଦୟରେ ନିତ୍ୟ ସ୍ୱଦେଶାନୁରାଗର ସତ୍ତା ବିଦ୍ୟମାନ ନ ଥିଲେ କୌଣସି ଜାତିର ଅଭ୍ୟୁତ୍ଥାନ ସମ୍ଭବପର ନୁହେ । ସ୍ୱଦେଶ ନିମିତ୍ତ ଅନଳ ମଧ୍ୟରେ ପ୍ରବେଶ କରି ପାରନ୍ତି, ଗରଳ ସେବନ କରି ପାରନ୍ତି, ଏପ୍ରକାର ଦୃଢ଼ତାର ନିଦର୍ଶନ ବୋଧ ହୁଏ କୌଣସି ପ୍ରାଚ୍ୟଜାତି ଜାପାନ ପରି ଦେଖାଇ ନାହିଁ । ସମ୍ପ୍ରତି ଯେଉଁ ରୁଷ ଜାପାନ ଯୁଦ୍ଧ ଲାଗି ଅଛି ତଦୁପଲକ୍ଷରେ ଜାପାନୀମାନେ ଯୁଦ୍ଧର ଆନୁଷଙ୍ଗିକ ବ୍ୟୟ ବହନାର୍ଥ ଯେ ପ୍ରକାର ତ୍ୟାଗସ୍ୱୀକାର କରିଅଛନ୍ତି ସେଥିର କେତେଗୁଡ଼ିଏ କାହାଣୀ ନିମ୍ନରେ ପ୍ରଦତ୍ତ ହେଲା । ତହିଁରୁ ପାଠକମାନେ ସେମାନଙ୍କର ଅନ୍ତର୍ନିହିତ ସ୍ୱଦେଶାନୁରାଗର ପରିମାଣ ସ୍ୱତଃ ଉପଲବ୍ଧି କରି ପାରିବେ ।

ଜାପାନ ବିଦ୍ୟାଳୟର ଜଣେ ଛାତ୍ର ନିରୂପିତ ସମୟରେ ବିଦ୍ୟାଳୟର ଶିକ୍ଷା ସମାପ୍ତ କରି ରାଜପଥରେ କେତେଗୁଡ଼ିଏ ସ୍ୱହସ୍ତନିର୍ମିତ ପିଷ୍ଟକ ବିକ୍ରୟ କରୁଥିବାର ଲୋକେ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । କିନ୍ତୁ ପରକ୍ଷଣରେ ଯେତେବେଳେ ସେମାନେ ଜାଣି ପାରିଲେ ଯେ ବାଳକଟି ଯୁଦ୍ଧର ବ୍ୟୟ ନିର୍ବାହାର୍ଥ ଏପ୍ରକାର ସାମାନ୍ୟ ବ୍ୟବସାୟ ସ୍ୱୀକାର କରିଅଛି, ସେମାନେ ତାହାକୁ ଆନ୍ତରିକ ଧନ୍ୟବାଦ ପ୍ରଦାନ ନ କରି ରହି ପାରି ନ ଥିଲେ ।

ରମଣୀମାନେ ସ୍ୱୀୟ କେଶଗୁଚ୍ଛ ବିକ୍ରୟ କରି ଯୁଦ୍ଧ ବ୍ୟୟ ନିମିତ୍ତ ଅର୍ଥ ସଂଗ୍ରହ କରୁଥିଲେ ।

ଜାପାନର ଏହିପରି ଗୋଟିଏ ନିୟମ ପ୍ରଚଳିତ ଅଛି ଯେ ଯେଉଁମାନଙ୍କର ଗୃହରେ ବୃଦ୍ଧ ପିତା ମାତା ଥିବେ, ସେମାନେ ଯୁଦ୍ଧରେ ଯୋଗଦାନ କରି ପାରିବେ ନାହିଁ । ଜନୈକ ଯୁବକ ପୁତ୍ରକୁ ଯୁଦ୍ଧରେ ଯୋଗଦାନ କରିବାରେ ସମର୍ଥ କରିବାକୁ ବୃଦ୍ଧା ମାତା ସ୍ୱୀୟ ବକ୍ଷରେ ଛୁରିକାଘାତ କରିଥିବାର ସମ୍ବାଦ ପ୍ରାପ୍ତ ହୋଇଅଛୁଁ ।

ସ୍ୱାମୀ ଅନ୍ତିମ କାଳରେ ତାହାର ବିପୁଳ ସମ୍ପତ୍ତି ସ୍ୱଦେଶର ସେବାରେ ନିୟୋଜିତ କରିବାକୁ

ତାଙ୍କର ପତ୍ନୀଙ୍କୁ ଉପଦେଶ ପ୍ରଦାନ କରିଥିଲେ । ସ୍ତ୍ରୀ ବର୍ତ୍ତମାନ ସେ ସମସ୍ତ ଅମ୍ଳାନବଦନରେ ଯୁଦ୍ଧର ବ୍ୟୟ ନିର୍ବାହାର୍ଥ ପ୍ରଦାନ କରି ନିଜେ ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି ବୁଲୁଅଛି ।

ଏଣ୍ଡୋ ନାମକ ଜଣେ ସୂତ୍ରଧର ଦସ୍ୟାପରାଧରେ ଲିପ୍ତ ଥିବାରୁ ପ୍ରାଣଦଣ୍ଡରେ ଦଣ୍ଡିତ ହୋଇଥିଲା । ଶେଷ ସମୟରେ କର୍ତ୍ତୃପକ୍ଷମାନେ ତାହାଙ୍କୁ ଜଣାଇ ଦେଇ ଥିଲେ ଯେ ତାହାର ଆତ୍ମୀୟମାନେ ତାହା ନିମନ୍ତେ କିଞ୍ଚିତ ଅର୍ଥ ଦେଇ ଯାଇଅଛନ୍ତି । ସେଥିରେ ସେ ତାହାର ଇଚ୍ଛାନୁସାରେ କିଛି ସୁଖାଦ୍ୟ ଖାଇ ପାରେ । କିନ୍ତୁ ସେହି ସ୍ୱଦେଶାନୁରାଗୀ ସୂତ୍ରଧରଟି ଆଗରୁ ଶୁଣିଥିଲା ଯେ ରୁଷିଆ ବିପକ୍ଷରେ ଯୁଦ୍ଧ ଉଦ୍‌ଘୋଷିତ ହୋଇଅଛି । ରସନାତୃପ୍ତି ଅପେକ୍ଷା ସ୍ୱଦେଶର ହିତସାଧନ ଶ୍ରେୟସ୍କର ମଣି ସେ ପ୍ରକାଶ କରିଥିଲା ଯେ ମୋହର ଏହି ଅର୍ଥ ଯୁଦ୍ଧାର୍ଥ ବ୍ୟୟିତ ହେଉ । କିନ୍ତୁ କର୍ତ୍ତୃପକ୍ଷମାନେ କହିଲେ, ପ୍ରାଣଦଣ୍ଡରେ ଅଭିଯୁକ୍ତ ଲୋକ ପକ୍ଷରେ ଦେଶର ହିତାର୍ଥେ ଅର୍ଥ ଦାନ କରିବା ନିୟମବିରୁଦ୍ଧ ଅଟେ । ନିତାନ୍ତ ହତାଶ ଓ ବ୍ୟଥିତ ହୋଇ ସେ କହିଲା, ତେବେ ଯୁଦ୍ଧରେ ଦେଶର ହିତାର୍ଥେ ପ୍ରାଣ ବିସର୍ଜନ କରିଥିବା କୌଣସି ଦୁଃସ୍ଥ ପରିବାରର ଭରଣପୋଷଣ ନିମନ୍ତେ ମୋହର ଏହି ଅର୍ଥ ବ୍ୟୟିତ ହେଉ ଏବଂ ଶରୀରବିଦ୍ୟା ଶିକ୍ଷା କରୁଥିବା ଛାତ୍ରମାନଙ୍କର ଶିକ୍ଷାର୍ଥ ମୋହର ମୃତଶରୀର ଛେଦିତ ହେଉ । କର୍ତ୍ତୃପକ୍ଷମାନେ ଏଥିରେ ସ୍ୱୀକୃତ ହେବାରୁ ସେ ପ୍ରଶାନ୍ତବଦନରେ ବଧ୍ୟଭୂମିକୁ ଯାଇଥିଲା ।

ଦିନେ 'ନାକାଓ' ନାମକ ଜଣେ ଜାପାନୀ ତାହାର ଜଣେ ବନ୍ଧୁଙ୍କୁ ସେନାପତିଙ୍କ ନିକଟକୁ ଟାଣି ନେଇ ଆସି କହିଲା, "I am a bachelor, I can go without any anxiety while my friend has a wife and three children dependent on him. Let me go in his stead". କିନ୍ତୁ ତାହାର ବନ୍ଧୁଟି ସେ କଥା ଶୁଣିବ ନାହିଁ, ସେ କହେ "It is true that Nakao is a bachelor, but he is an only son and his parents have no one but him to care for them. I will go rather than let him leave his parents".

ବାହୁଲ୍ୟଭୟରୁ ଏଠାରେ ଆଉ ଅପର ଗଳ୍ପମାନ ଉଲ୍ଲେଖ କରିବାରୁ କ୍ଷାନ୍ତ ହେଲୁଁ । ଯେଉଁ ଜାତିର ସ୍ୱଦେଶାନୁରାଗ ଏତେ ଉଚ୍ଚ ଏବଂ ଯେଉଁମାନେ ସ୍ୱଦେଶାର୍ଥ ଧନ ପ୍ରାଣ ବିସର୍ଜନ କରିବାକୁ ଅଣୁମାତ୍ର କୁଣ୍ଠିତ ନୁହନ୍ତି, ସେମାନଙ୍କର ଜୟ ଅବଶ୍ୟମ୍ଭାବୀ । ଏ କ୍ଷୁଦ୍ର ସ୍ୱାର୍ଥତ୍ୟାଗ ଭାରତର ସର୍ବାଗ୍ରେ ଶିକ୍ଷଣୀୟ । ଯେଉଁ ଭାରତବାସୀ ଟିକିଏ ପଦାକୁ ବାହାରିବାକୁ ସଙ୍କୁଚିତ ସେ ଯେ କେତେବେଳରେ ଏପ୍ରକାର ନିର୍ଭୀକତା ଶିକ୍ଷା କରିବ ତାହା ବର୍ତ୍ତମାନ ବୋଲି ଯାଇ ନ ପାରେ । ସାନଠାରୁ ବଡ଼ପର୍ଯ୍ୟନ୍ତ ସମସ୍ତଙ୍କର ଏ ପ୍ରକାର ଭାବ ହୃଦୟରେ ପୋଷିତ ହୋଇ ରହିଅଛି ଯେ ଦେଶ ନିମନ୍ତେ ସ୍ୱାର୍ଥତ୍ୟାଗ ଆମ୍ଭମାନଙ୍କର ସୁଖଶାନ୍ତିର ନିଦାନ ଅଟେ ଏବଂ ଏହାହିଁ ଜାପାନର ପ୍ରଭବ ଓ ଉନ୍ନତିର ଅନ୍ୟତମ କାରଣ ଅଟେ । ଭୋଗବାସନା ପରିତୃପ୍ତ କରିବା କିମ୍ବା ମାଦକଦ୍ରବ୍ୟ ସେବନ କରି ଯୁଦ୍ଧାବସାନରେ ବିଜୟୋଲ୍ଲାସରେ ଉନ୍ମତ୍ତ ହୋଇ ଶକ୍ତିର ଅପଚୟ କରିବାର ଦୃଷ୍ଟାନ୍ତ ଜାପାନ ସୈନ୍ୟମାନଙ୍କ ମଧ୍ୟରେ ଆଦୌ ଦେଖାଯାଇ ନାହିଁ । ଜାପାନରୁ ଜଣେ ପତ୍ରପ୍ରେରକ ଲେଖିଥିଲେ "I did not see a single drunken man at Yakohama". ପ୍ରାଚ୍ୟ ଜାତିର ଏ ଅଦ୍ଭୁତ ସଂଯମ ଅଦ୍ୟ ପର୍ଯ୍ୟନ୍ତ ପାଶ୍ଚାତ୍ୟ ଜାତି ଶିକ୍ଷା କରି ନାହିଁ । ଏ ବିଷୟରେ ପ୍ରାଚ୍ୟ ଜାତି ଉଚ୍ଚ ଗୌରବପୂର୍ଣ୍ଣ ଆସନରେ ଆସୀନ ।

ଜାପାନ ସୈନ୍ୟମାନଙ୍କ ଅଲୌକିକ ନୈତିକ ବଳ ସେମାନଙ୍କର ଉନ୍ନତିର ସର୍ବଶ୍ରେଷ୍ଠ କାରଣ ବୋଲି ଏକମୁଖରେ ସମସ୍ତେ ସ୍ୱୀକାର କରନ୍ତି । ସ୍ୱାର୍ଥତ୍ୟାଗ—ବ୍ୟକ୍ତିଗତ ସ୍ୱାର୍ଥତ୍ୟାଗ—ଆଉ କିଛି

ଉଦ୍ଦେଶ୍ୟ ସାଧନ ନିମିତ୍ତ ନୁହେ, କେବଳ ସ୍ୱଦେଶର ଗୌରବ ଓ ଶ୍ରୀବୃଦ୍ଧି ନିମିତ୍ତ—ଜାପାନୀ ଜୀବନର ମୂଳମନ୍ତ୍ର ଅଟେ । ଅକାରଣ ପ୍ରାଣନାଶକୁ ସେମାନେ ଭଲ ପାନ୍ତି ନାହିଁ । ଦେଶର କଲ୍ୟାଣ ଯେବେ ସାଧିତ ନ ହେଲା ତେବେ ସେ ପ୍ରାଣ-ବିସର୍ଜନ, ସେ ମୃତ୍ୟୁରେ କିଛି ଗୌରବର କଥା ନାହିଁ, କିମ୍ବା ସେ ମୃତ୍ୟୁ ବାଞ୍ଛନୀୟ ନୁହେ । ଏହା ଜାପାନୀମାନଙ୍କ ମତ । ଜାପ ସେନାପତି 'ୟୁସା' (Yuasa) ଏହି ସମ୍ବନ୍ଧରେ କହିଥିଲେ "It is a mistaken idea of valour to court death needlessly. Death is not our object but success and we die in vain if we do not achieve success" ଏହାହିଁ ପ୍ରାଚ୍ୟ ସଭ୍ୟତାର ମୂଳମନ୍ତ୍ର ଅଟେ ଏବଂ ଅଧୁନା ଜାପାନ 'ପ୍ରାଚ୍ୟ ସଭ୍ୟତାର ଦର୍ପଣ' ( The mirror of Asiatic civilisation ) ବୋଲି ଯଥାର୍ଥ ଅଭିହିତ ହୋଇଅଛି ।

ଜାପାନର ସାମରିକ ଶକ୍ତି ଅସାଧାରଣ ଅଟେ । ଏଥିରେ ମଧ୍ୟ ନୈତିକଶକ୍ତି ପୂର୍ଣ୍ଣ ମାତ୍ରାରେ ଅନ୍ତର୍ନିହିତ ଅଛି । ଦଳ ଦଳ ହୋଇ ଜାପାନୀ ଯୁବକମାନେ ଯୁଦ୍ଧକ୍ଷେତ୍ରକୁ ପ୍ରସ୍ଥାନ କରୁଅଛନ୍ତି, ସ୍ତ୍ରୀ, ପୁତ୍ର, କନ୍ୟା ଓ ଆତ୍ମୀୟମାନଙ୍କୁ ପରିତ୍ୟାଗ କରୁଅଛନ୍ତି, କ୍ରନ୍ଦନର ରୋଳ ନାହିଁ, ଦୀର୍ଘ-ନିଶ୍ୱାସ ନାହିଁ, ଶୋକପ୍ରକାଶ ନାହିଁ, କେବଳ ନୀରବତା, ନୀରବରେ ସମସ୍ତ ମାୟାବନ୍ଧନ ଛିନ୍ନ କରି ଧୀରେ ଧୀରେ ଗୃହ ପରିତ୍ୟାଗ କରି ଚାଲି ଯାଉଅଛନ୍ତି ।

ଏହି ପ୍ରାଚ୍ୟଶକ୍ତିର ଅଭ୍ୟୁତ୍ଥାନ କାଳରେ ସମଗ୍ର ୟୁରୋପରେ ଆତଙ୍କ ଉପସ୍ଥିତ ହୋଇଥିଲା, ଆତଙ୍କ କ୍ରମେ କ୍ରମେ ବିସ୍ମୟରେ ପରିଣତ ହେଲା । ଅନେକ ବିଜ୍ଞ ଲୋକେ କହିବାକୁ ଲାଗିଲେ ଏହା କିଛି ନୁହେ, ସାମାନ୍ୟ ସାମୟିକ ଉତ୍ତେଜନା ମାତ୍ର । କିନ୍ତୁ ଏହା ସେମାନଙ୍କର ଭ୍ରାନ୍ତ ଧାରଣା ଅଟେ । ଏହାର ଅନ୍ତିମ ଫଳ ୟୁରୋପ ପକ୍ଷରେ ଶୁଭକର ନୁହେ । ୟୁରୋପର ମୂଳମନ୍ତ୍ର କ୍ରମେ କ୍ରମେ ବିଫଳ ହେବ । ଆଉ ଏସିଆ ୟୁରୋପର ଲୀଳାଭୂମି ହୋଇ ପାରିବ ନାହିଁ । ୟୁରୋପର ସର୍ବଗ୍ରାସିନୀ ଶକ୍ତି ଖର୍ବ ହୋଇଯିବ । ତାହାର ନୀଚ ସ୍ୱାର୍ଥ-ପରତା ଓ ଜୟଲାଳସା ମଧ୍ୟ କ୍ରମେ ସଂଯମିତ ହେବ । ଉଭୟ ୟୁରୋପ ଓ ଏସିଆର ପରିଣାମରେ ମଙ୍ଗଳ ସାଧିତ ହେବ । ଏଣୁ ପ୍ରାଚ୍ୟଶକ୍ତିର ଅଭ୍ୟୁତ୍ଥାନ କେବେହେଁ ହେୟ ବା ଅବଜ୍ଞେୟ ନୁହେ ।

ପାଶ୍ଚାତ୍ୟମାନେ ବିସ୍ମିତ ହୋଇ ପ୍ରଶ୍ନ କରନ୍ତି ଯେ ଯେଉଁ ପ୍ରାଚ୍ୟ ଜାତିମାନେ ଉନ୍ନତ ନୀତି ଓ ଶ୍ରେଷ୍ଠ ଆଧ୍ୟାତ୍ମିକ ତତ୍ତ୍ୱରେ ବଳୀୟାନ୍, ସେମାନେ କାହିଁକି ଏତେ ଅବସନ୍ନ, ପରପଦାନତ ଓ ପ୍ରପୀଡିତ ? ତାହାର ଉତ୍ତର ଏହି ଯେ ଯେତେ ଦିନ ପର୍ଯ୍ୟନ୍ତ ପ୍ରାଚ୍ୟ ଜାତି ପାଶବିକ ଶକ୍ତିର ଶ୍ରେଷ୍ଠତ୍ୱ ସ୍ୱୀକାର କରି ନାହାନ୍ତି ଏବଂ ଯେତେ ଦିନ ପର୍ଯ୍ୟନ୍ତ ସେହି ଜାତିମାନଙ୍କ ମଧ୍ୟରେ ସାମରିକ ଶକ୍ତିର ସଞ୍ଚାର ହୋଇ ନାହିଁ ସେତେ ଦିନ ପର୍ଯ୍ୟନ୍ତ ସେମାନଙ୍କର ଅଭ୍ୟୁତ୍ଥାନ ନାହିଁ । ଜାପାନର ଅଭ୍ୟୁତ୍ଥାନ ନିଶ୍ଚିତରୂପେ ସେହି ନିଷ୍କର୍ଷ ଉପରେ ପ୍ରତିଷ୍ଠିତ । ପ୍ରାଚ୍ୟ ଜାତିର ଏହି ଅଭାବ କାଳକ୍ରମେ ଜାପାନର ଆଦର୍ଶରେ ଦୂରୀଭୂତ ହୋଇ ଯିବାର ଆଶା କରାଯାଏ । ତାହା ହେଲେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ପ୍ରାଚ୍ୟ ନିଶ୍ଚୟ ନୈତିକ ଓ ଆଧ୍ୟାତ୍ମିକ ଏହି ଦୁଇ ଅତିରିକ୍ତ ଶକ୍ତିର ପ୍ରଭାବରେ ଶ୍ରେଷ୍ଠ ଓ ଉଚ୍ଚତମ ସୋପାନରେ ଅଧିରୂଢ଼ ହେବ । ଫ୍ରାନ୍ସ ହେଉ ବା ଜର୍ମାନୀ ହେଉ ବା ଇଂରାଜ ହେଉ, କୌଣସି ପାଶ୍ଚାତ୍ୟ ଶକ୍ତି ଅବା ରୁସିଆର ଶକ୍ତିକୁ ଖର୍ବ କରିବାକୁ ସାହସୀ ହୋଇ ନାହିଁ । କିନ୍ତୁ ପ୍ରାଚ୍ୟ ଜାପାନ ଯାହା କରିଅଛି ତାହା ସମସ୍ତେ ତୁଳନା କରି ଦେଖି ଅଛନ୍ତି । ଆଉ ଅଧିକ କହିବା ନିଷ୍ପ୍ରୟୋଜନ । ଏହା ଜାପାନ କାହିଁକି, ଭାରତ ମଧ୍ୟ ଏହି ସମ୍ବନ୍ଧରେ ସୁବିଧା ପାଇଥିଲେ ଶିକ୍ଷ-

ମାନେ ମଧ୍ୟ ଏହି ପରାକ୍ରମଶାଳୀ ରୁଷୀୟର ଶକ୍ତିକୁ ଧ୍ୱଂସ କରି ପାରିଥାନ୍ତେ । ଜଣେ ସୂକ୍ଷ୍ମଦର୍ଶୀ ରାଜନୈତିକ କହିଅଛନ୍ତି "Three Asiatic soldiers, the Turk, the Sikh and the Japanese have adopted European arms and discipline and no man can say if either of the three encountered Russian armies which would be the victor"

ଏହି ଉଦୀୟମାନ ପ୍ରାଚ୍ୟ ଜାପ ଶକ୍ତିର ମହତ୍ତ୍ୱ ପ୍ରତ୍ୟେକ ଭାରତବାସିର ପର୍ଯ୍ୟାଲୋଚନା କରିବା କର୍ତ୍ତବ୍ୟ । ସ୍ୱଦେଶାନୁରାଗର କାହାଣୀ ଶ୍ରବଣ କରିବା ମାତ୍ରେ ନିତାନ୍ତ ନିର୍ମମ ଲୋକର ପ୍ରାଣରେ ମଧ୍ୟ ଆହ୍ଲାଦ ଶକ୍ତି ପ୍ରାଦୁର୍ଭୂତ ହୁଏ । କିନ୍ତୁ ସ୍ୱାଧୀନତାବିରହିତ, ଦାସତ୍ୱଜର୍ଜ୍ଜରିତ ଜାତି ପକ୍ଷରେ ତାହା ଫଳଦାୟକ ହେବ ନାହିଁ । ଜାପାନର ଏତାଦୃଶ ଉତ୍କର୍ଷର ଅନ୍ତର୍ନିହିତ କାରଣ କଣ, ଏ ପ୍ରଶ୍ନ ପ୍ରତ୍ୟେକ ହୃଦୟବାନ୍ ଲୋକର ହୃଦୟରେ ଉଦ୍ଭୂତ ହେଉଅଛି । ନାନା ପ୍ରକାର ଆନୁସଙ୍ଗିକ କାରଣମାନ ବିଦ୍ୟମାନ ଥିଲେ ମଧ୍ୟ, ମୈତ୍ରୀ, ଭ୍ରାତୃଭାବ, ଏକତା ଏ ସବୁର ପ୍ରଧାନ କାରଣ ବୋଲି ନିଃସନ୍ଦେହରେ ନିର୍ଦ୍ଦେଶ କରାଯାଇ ପାରେ । ଜାତୀୟ କାର୍ଯ୍ୟରେ ଛିଦ୍ରାନ୍ୱେଷଣ, ମତଭେଦ ଓ ବିବାଦ ସିଦ୍ଧିର ପ୍ରଧାନ ଅନ୍ତରାୟ ଅଟେ । ଝଣ୍ଡିଏ ସାମୟିକ ପତ୍ରିକାରେ ଏ ବିଷୟକୁ ଲକ୍ଷ କରି ଯାହା ଲିଖିତ ଅଛି ତାହା ଏଠାରେ ଉଦ୍ଧୃତ ହେଲା "With all our efforts we cannot infuse life into our institutions if we are not ready to forget each other's faults when national welfare is concerned. Internal quarrels ruin a family—internal dissensions pull down a government—internal warfare blasts the peace of a country. Unity is strength. A nation divided against itself can never rise." ବର୍ତ୍ତମାନ ଉତ୍କଳର ଅବସ୍ଥା ପ୍ରତି ଦୃଷ୍ଟିପାତ କଲେ ଏହା ସମସ୍ତେ ସ୍ୱୀକାର କରିବେ ଯେ ଉପରୋକ୍ତ ବାକ୍ୟ ସବୁକୁ ଉତ୍କଳବାସୀ ପ୍ରତ୍ୟେକେ ହୃଦୟରେ ଧାରଣ କରି ଅଗ୍ରସର ନ ହେଲେ ତାହାର ପ୍ରିୟତମ "ସମ୍ମିଳନୀ"ରୂପ ଅନୁଷ୍ଠାନଟି ହେବେହେଁ ସଫଳ ହେବ ନାହିଁ ।

ସେ ଯାହାହେଉ, ଏହି ଉଦୀୟମାନ ପ୍ରାଚ୍ୟ ଶକ୍ତିର ବିଷୟ ଅନୁଧାବନ କଲେ ସ୍ପଷ୍ଟରୂପରେ ସଂକ୍ଷେପରେ ଏହି ଭାବ ହୃଦୟରେ ଜାତ ହେଉଅଛି ଯେ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସମ୍ମିଶ୍ରଣହିଁ ଜାପାନର ସମସ୍ତ ଉତ୍କର୍ଷର ପ୍ରଧାନ କାରଣ ଏବଂ ଅଲକ୍ଷିତ ଭାବରେ ଏହି ପ୍ରଶ୍ନ (New Indiaର ଭାଷାରେ କହିବାକୁ ଗଲେ) ଉଦ୍ଭୂତ ହେଉଅଛି ଯେ "And my country ! Will it not also come up ahead ?"

ଶ୍ରୀ ଚନ୍ଦ୍ରଶେଖର ନନ୍ଦ ।

## ଓଡ଼ିଆ ବିଭକ୍ତି ।

ଓଡ଼ିଆ 'ତେର' ଓ 'ମେର' ସଂସ୍କୃତ 'ତୁହ' ଓ 'ମହ'ରୁ ଅପିଅଚାର ପୂର୍ବେ ଲେଖା ହୋଇଅଛି । ଏହାହିଁ ପ୍ରକୃତ ସିଦ୍ଧାନ୍ତ ପରି ବୋଧ ହୁଏ । କାରଣ 'ତେର', 'ମେର' ଓଡ଼ିଆରେ ସମ୍ବନ୍ଧାର୍ଥରେ ବ୍ୟବହୃତ ହେବାର ଅନେକଠାରେ ଦେଖାଯାଏ, ଯଥାः—ମେର ଗୁରୁ କଥାଟି ଅଛି (ଅର୍ଥାତ୍ ମୋହର ଗୁରୁ); ମେର ପାଖେ ଯାଇ ଟଙ୍କା କାଢ଼ (ଅର୍ଥାତ୍ ମୋର ପାଖ ଟଙ୍କା); ମେର ଅଛି ଧରନା (ଅର୍ଥାତ୍ ମୋର ଅଛି); ରାମ ମେର ଭାଇ ହେବ (ଅର୍ଥାତ୍ ମୋର) ଇତ୍ୟାଦି । ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ, ପ୍ରଥମେ 'ତେର', 'ମେର' କେବଳ ସମ୍ବନ୍ଧ ଅର୍ଥରେ ବ୍ୟବହୃତ ହେଉଥିଲା; କ୍ରମଶଃ ଏହା କର୍ମକାରକର ସ୍ଥାନ ଅଧିକାର କରିଅଛି ।

ସର୍ବନାମ ଉତ୍ତମ ଓ ମଧ୍ୟମ ପୁରୁଷ ଷଷ୍ଠୀ ଏକବଚନରେ 'ତୋ' ବା 'ମୋ' ପ୍ରୟୋଗ

ହୋଇଥାଏ, ଯଥା:—ମୋହୋ ବା ମୋହ ସଙ୍ଗେ, ତୋହୋ ବା ତୋହ ସଙ୍ଗେ । ପ୍ରାକୃତରେ ମଧ୍ୟ ଏପରି ପ୍ରୟୋଗ ଦେଖାଯାଏ:—

ହୋସ୍ସମାଙସଃ : ଅତ ଉତ୍ତରସ୍ୟ ଙସଃ ସ୍ଥାନେ ହୋ, ସୁ, ସ୍ସ ଭବନ୍ତି, ଯଥା:—ରୁକ୍ଖହୋ, ରୁକ୍ଖସୁ, ରୁକ୍ଖସ୍ସ—ଜୁମର : ପ୍ରାକୃତପାଦ ।

ସମ୍ବନ୍ଧାର୍ଥରେ ଷଷ୍ଠୀ ବିଭକ୍ତିରେ 'ଘର' ପ୍ରତ୍ୟୟ ପ୍ରୟୋଗ ହେବାର ଅନେକଠାରେ ଦେଖାଯାଏ, ଯଥା:—ବାଣଘର ଝିଅ, ରଜାଘର କଥା, ଇତ୍ୟାଦି । ଏହି 'ଘର' ପ୍ରତ୍ୟୟ ପ୍ରାକୃତ ଷଷ୍ଠୀ ପ୍ରତ୍ୟୟ 'ହୋ' ଓ ଓଡ଼ିଆ ଷଷ୍ଠୀ ପ୍ରତ୍ୟୟ 'ର' ମିଶି ହୋଇଅଛି । 'ହୋ' 'ହ' ହୋଇ ପରିଶେଷରେ 'ଘ'ରେ ପରିଣତ ହୋଇ ଯାଇଅଛି । 'ହ' ଠାରେ 'ଘ' ହେବାର ଅନେକ ସ୍ଥଳରେ ଦେଖାଯାଏ, ଯଥା:—ସଂହାର, ସଂଘାର, ସିଂହ, ସିଂଘ ।

'ଘର' ଗୋଟିଏ ସ୍ୱତନ୍ତ୍ର ଶବ୍ଦ ବୋଲି ବିଚାର କରି ଅନେକେ 'ତାଙ୍କଘର ଗାଈ', 'ଯାଙ୍କଘର ଝିଅ', ଏପରି ବ୍ୟବହାର କରିଥାନ୍ତି । କିନ୍ତୁ ଏଥିରେ କେତେଗୁଡ଼ିଏ ପ୍ରତ୍ୟୟ ଗୁମ୍ଫିତ ହୋଇଅଛି କେହି ଜାଣନ୍ତି ନାହିଁ ବା ଜାଣିବା ସକାଶେ ଚେଷ୍ଟା କରନ୍ତି ନାହିଁ ।

ତତ୍, ଯତ୍, କିମ୍ ଶବ୍ଦମାନଙ୍କ ଉତ୍ତର ଷଷ୍ଠୀ ଏକବଚନରେ ଯେଉଁ 'ହା' ପ୍ରୟୋଗ ହୁଏ, ତାହା ପ୍ରାକୃତ ପ୍ରତ୍ୟୟ 'ହୋ'ର ରୂପାନ୍ତର ପରି ଅନୁମାନ ହୁଏ । ପୂର୍ବବର୍ତ୍ତୀ ବର୍ଣ୍ଣ ଅକାରାନ୍ତ ଥିବାରୁ ପରବର୍ତ୍ତୀ ବର୍ଣ୍ଣ (ହୋ) ମଧ୍ୟ ଅକାରାନ୍ତ ହୋଇ ଯାଇଥିବ ।

କୌଣସି କୌଣସିଠାରେ ଷଷ୍ଠୀ ଏକବଚନ ଓ ବହୁବଚନରେ କେବଳ 'ତା', 'ଯା', 'କା', 'ଅମ୍ଭ', 'ତୁମ୍ଭ' ଇତ୍ୟାଦି ପ୍ରୟୋଗ ହୋଇଥାଏ:—ତା ପୁସ୍ତକ, କା ଘର । ପ୍ରାକୃତରେ ମଧ୍ୟ ଏପରି ପ୍ରୟୋଗ ସ୍ଥାନେ ସ୍ଥାନେ ଦେଖାଯାଏ, ଯଥା:—

କେଅଲା ଜାସଗ ଦୁଙ୍କା ଣାସନ୍ତୋ—ପିଙ୍ଗଳ
କାଣପାଣି କଣ୍ଟି ଏବ୍ଭ ସୋଉ ତୁଜ୍ଝ ପୁଖେ ଦେଉ—
ପିଙ୍ଗଳ

ନିମ୍ନଶ୍ରେଣୀ ଲୋକେ ଦ୍ୱିତୀୟା ବହୁବଚନରେ "ଅମନ୍ତଙ୍କ" (ଅମ୍ଭମାନଙ୍କୁ), 'ତୁମନ୍ତଙ୍କ' (ତୁମ୍ଭମାନଙ୍କୁ) ଇତ୍ୟାଦି ବ୍ୟବହାର କରିଥାନ୍ତି । ଏଥିରେ ତିନି ଗୋଟି ପ୍ରତ୍ୟୟ ଲକ୍ଷିତ ହୁଏ, ଯଥା:—ଅନ୍ତ, ଇ ଓ କ । 'ଅନ୍ତ' ସଂସ୍କୃତ 'ଅନ୍'ର ରୂପାନ୍ତର । 'ଇ' ପ୍ରାକୃତ ଦ୍ୱିତୀୟା ବିଭକ୍ତି ପ୍ରତ୍ୟୟ 'ଇଁ'ର ଅପଭ୍ରଂଶ । "କ୍ଲୀବେ ବର୍ତ୍ତମାନା ନାମ୍ନଃ ପରଯୋ ଜଶଶସୋଃ ଇଁ ଇତ୍ୟାଦେଶୋ ଭବତି : ବନ ଗଣ୍ଡାଇଁ ମହନ୍ତି" (ହେମଚନ୍ଦ୍ର) । 'କ' ଓଡ଼ିଆ ଦ୍ୱିତୀୟା ବିଭକ୍ତିର ପ୍ରତ୍ୟୟ । ପ୍ରାକୃତରେ 'ଅମ୍ଭନ୍ତିକ', 'ତୁମ୍ଭନ୍ତିକ', ହେବାର ଥିଲା । କିନ୍ତୁ ନିମ୍ନ ଶ୍ରେଣୀ ଲୋକଙ୍କ ତୁଣ୍ଡରେ ଅନୁସ୍ୱାରବର୍ଜିତ ହୋଇ 'ଅମନ୍ତିକ' 'ତୁମନ୍ତିକ' ହୋଇଅଛି ।

କର୍ମ ଓ ସଂପ୍ରଦାନ କାରକରେ ବଳରାମଦାସ 'କଇ' ପ୍ରତ୍ୟୟ ପ୍ରୟୋଗ କରିଥିବାର ଇତିପୂର୍ବେ ଲେଖା ହୋଇଅଛି । କେହି କେହି ଅନୁମାନ କରନ୍ତି ଏହି 'କଇ' ପ୍ରତ୍ୟୟ ତେଲଙ୍ଗୀ ଚତୁର୍ଥୀ ବିଭକ୍ତି ପ୍ରତ୍ୟୟ 'କୈ'ରୁ ଆସିଅଛି ।

ଓଡ଼ିଆ ପଦ୍ୟକାବ୍ୟରେ କୌଣସି କୌଣସି ଠାରେ ଦ୍ୱିତୀୟା ବିଭକ୍ତି ପରିବର୍ତ୍ତେ ସପ୍ତମୀ ବିଭକ୍ତି ପ୍ରୟୋଗ ହୋଇଥାଏ, ଯଥା:—ବୋଲନ୍ତି ମନ୍ଦୋଦରେ ଶୁଣି ଜୁଲୁପାଙ୍କରେ; ରଘୁନାଥର ଅମୃତେ; ଯାହାରେ ଦେଖିଲୁ ମନ । ବୀମ୍ସ ସାହେବ କହନ୍ତି ଏହି 'ରେ' ପ୍ରୟୋଗ ପ୍ରାଚୀନ ହିନ୍ଦି ଦ୍ୱିତୀୟା ବିଭକ୍ତି ପ୍ରତ୍ୟୟ 'କେ'ରୁ ଆସିଅଛି । ଏହା କେତେ ଯୁକ୍ତିସଙ୍ଗତ ବୋଧ ହୁଏ ନାହିଁ । 'ରେ' ଛଡ଼ା, ଅନ୍ୟ କେତେକ ସପ୍ତମୀ ବିଭକ୍ତି ପ୍ରତ୍ୟୟ ମଧ୍ୟ ଦ୍ୱିତୀୟାର୍ଥରେ ବ୍ୟବହୃତ ହେବାର ଦୃଷ୍ଟ ହୁଏ, ଯଥା:—ରାମ ମୋ ଅନ୍ତେ ଗୃହିଲା, ଅର୍ଥାତ୍ ମୋତେ ଗୃହିଲା, "ଯେ ଲେଖି ପୁତ୍ରପଟ ସମର୍ପିଲ କାଣେ" ଇତ୍ୟାଦି । ଏହି ପ୍ରୟୋଗସବୁ ପ୍ରାକୃତର ଅନୁକରଣ । ପ୍ରାକୃତରେ ମଧ୍ୟ ଦ୍ୱିତୀୟାର୍ଥରେ ସପ୍ତମୀ ବିଭକ୍ତି ବ୍ୟବହୃତ ହେବାର ଲକ୍ଷିତ ହୁଏ : "କର୍ମକରଣନିମିତ୍ତେସୁ ସତ୍ତମୀ, ଯଥା:—ସୁନଗରେସୋ ଇମେ ଅଜାବକା ଭିକ୍ଖୁସୁ ଅଭିବାଦେନ୍ତି" (ପାଲିବ୍ୟାକରଣ) ।

ସମସ୍ତ ସମୟରେ ପ୍ରଥମା ବିଭକ୍ତି ପରିବର୍ତ୍ତେ ଷଷ୍ଠୀ ବିଭକ୍ତି ପ୍ରୟୋଗ ହୋଇଥାଏ; ଯଥାଃ— ଆମର ପୂଜା କଲେ, ତୁମର କଲେ ?; ସର୍କାରଙ୍କର ଜିଣିଲେ; ସମସ୍ତେ କଲେ କିନ୍ତୁ କାହାର ହେଲା ନାହିଁ । ଏ ପ୍ରଦେଶରେ 'ସେ' ପରିବର୍ତ୍ତରେ ଗୌରବାର୍ଥରେ କେହି କେହି 'ତାଙ୍କେ' ଓ 'ଯୁଙ୍କେ' ବ୍ୟବହାର କରିଥାନ୍ତି । ଷଷ୍ଠୀ ବିଭକ୍ତିର 'ତାଙ୍କ' ଓ 'ଯୁଙ୍କ' ସହିତ ବହୁବଚନ ପ୍ରତ୍ୟୟ 'ଏ' ଲାଗି 'ତାଙ୍କେ' ଓ ଯୁଙ୍କେ' ହୋଇଥିବାର ଅନୁମାନ ହୁଏ ।

ସଂସ୍କୃତ ବୈୟାକରଣମାନେ ଷଷ୍ଠୀ ବିଭକ୍ତିକୁ ସମ୍ବନ୍ଧଷଷ୍ଠୀ, କର୍ତ୍ତୃଷଷ୍ଠୀ ଓ କର୍ମଷଷ୍ଠୀରେ ବିଭକ୍ତ କରିବାର ଦେଖିଲେ, ଷଷ୍ଠୀ ସହିତ ପ୍ରଥମାର ଘନିଷ୍ଠ ସମ୍ପର୍କ ଥିବାର ସ୍ପଷ୍ଟ ପ୍ରତୀତ ହୁଏ । ଏଣୁ 'ତେ ଗନ୍ତବ୍ୟଂ' ପରିବର୍ତ୍ତେ କେହି କେହି 'ତାହାର ଯିବାର ଅବଶ୍ୟକ' ଓ କେହି କେହି 'ସେ ଯିବାର ଅବଶ୍ୟକ' ବା 'ତାହାକୁ ଯିବାକୁ ହେବ' ଏପରି ପ୍ରୟୋଗ କରିଥାନ୍ତି ।

ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ।

## କ୍ଷୁଦ୍ର କ୍ଷୁଦ୍ର କବିତା ।

### ନବବଧୂ ଆହ୍ୱାନ ।

ବଙ୍ଗଳାଣୀ ।

ଆସ ରେ ଆସ ରେ ନୟନପ୍ରତିମା
ନେବି ମୁଁ କୋଳେ ବସାଇ,
ଆହା ! ଆହା! ଆହା! ଦୁଃଖିନୀ ମାତାକୁ
ଆସିଅଛୁ ତୁ କନାଇ ।
କେଉଁ ଦେବତାର କନ୍ୟା ତୁ ରେ ଝିଅ
କେଉଁ ଚାନ୍ଦର ଜ୍ୟୋତି,
କେଉଁ ଚନ୍ଦ୍ରମାର ବିମଳ କୌମୁଦୀ
ହୋଇଅଛୁ ମୂର୍ତ୍ତିମତୀ ।
ଦୟା ମାୟା ସ୍ନେହ ଲାବଣ୍ୟ ମାଧୁରୀ
ତୁହି କି ରେ ରୂପାନ୍ତର ?
ଅଭିଶାପଗ୍ରସ୍ତା ଅରେ ମୋ ଦଙ୍ଗାଳ
ତୁ କି ତ୍ରିଦିବ ଅପ୍ସର ?
ତୁ କି ରେ ମୋହର ପ୍ରଦୋଷ ଗଗନ-
ପ୍ରାଙ୍ଗଣରେ ସୁଖତାର,
ହେବୁ କି ମୋହର ଅନ୍ଧର ଲଉଡ଼ି
ସମସ୍ତ ସନ୍ତାପହର ?
ହିରଣ୍ୟର ପ୍ରଭା ସୁମନର ଶୋଭା
ତୁ କି ମାଣିକ୍ୟର ଦ୍ୟୁତି ?
ତୁ କି ପଦ୍ମାସନା ଗୋଲୋକବାସିନୀ
କ୍ଷୀରାବ୍ଧି ତନୟା ମୂର୍ତ୍ତି ?
ବସନ୍ତମାଳତୀ ଫୁଲ୍ଲ କୁମୁଦିନୀ
ତୁ କି ଶାରଦା ମଲ୍ଲିକା ?
କେଉଁ ତପୋବନେ ପାଳିଛି ରେ ତୋତେ
କୁଳବଧୂ ପ୍ରାଣାଧିକା ।
ଆଶୀର୍ବାଦ କରେଁ ଅରେ ମୋ କଲ୍ୟାଣି
ସୁଖେ ରହ ମୋହ ଘରେ,
କରୁଛୁ କାମନା ତୋହ ପରି ବଧୂ
ପାଏ ଜନ୍ମଜନ୍ମାନ୍ତରେ ।

ଶ୍ରୀ ଫକୀରମୋହନ ସେନାପତି ।

### ପାଷାଣୀ ।

( ଭୁବନେଶ୍ୱରସ୍ଥ ପାର୍ବତୀ ମୂର୍ତ୍ତି )

୧

ଜୟ ଗୋ ଭୁବନେଶ୍ୱରୀ ତ୍ରିପୁରତାରିଣୀ
ବନ୍ଦେ ଦକ୍ଷସୁତା ସତୀ ଶଙ୍କରଗୃହିଣୀ ।
ଜ୍ଞାନେ ପ୍ରୀତ ବ୍ରହ୍ମ ମାୟା ପୁରୁଷେ ପ୍ରକୃତି
ନରେ ନାରୀରୂପେ ସ୍ଥିତା ଛନ୍ଦରେ ପାର୍ବତୀ ।
ଦକ୍ଷଯଜ୍ଞେ ଦେଖି ସତୀ ପତି-ଅପମାନ
ବର୍ଜିଲ ଅନଳରେ ବର ଅପଘନ ।
ତବ ଯୋଗୀ ଶମ୍ଭୁ ପ୍ରେମେ ହୋଇଥିଲ ବାଇ
ଅପାର ବିଭବେ ତେଣୁ ବଞ୍ଚାଇଲ ନାହିଁ ।
ଏତେ ବଡ଼ ଦେବତାର ହେଲୁ ଗୋ ଘରଣୀ
ଯୋଗିଶ୍ରେଷ୍ଠେ ବାନ୍ଧି ପ୍ରେମେ, ଧନ୍ୟ ତୋ କରଣୀ ।
ଗିରିରାଜସୁତା ବାଳା ପିନାକୀଙ୍କ ଜାୟା,
ଅନ୍ନଦା ପାର୍ବତୀ କାଳୀ ଦୁର୍ଗା ମହାମାୟା,
ତ୍ରିଶୂଳୀ ଶଙ୍କରଙ୍କର ଅର୍ଦ୍ଧଲକ୍ଷ୍ମୀ ସତୀ,
ସଂହାରକର୍ତ୍ତାଙ୍କ ପ୍ରିୟା କ୍ଷମାଦୟାବତୀ,
ଧାର୍ମିକ ଦୁଃଖିର ଚିରଦୁଃଖ କ୍ଲେଶ ନାଶ,
ମହିଷମର୍ଦ୍ଦିନୀ ଦୁର୍ଗା ପାପିଜନତ୍ରାସ ।

କେଉଁ ଯୁଗେ ଥିଲ ! ସତ୍ୟ ଅଥବା କଳ୍ପନା
କବିର କବିତ୍ୱପୀଠେ ଅରୂପସ୍ଥାପନା ।

୨

ପ୍ରତ୍ୟକ୍ଷେ ଦେଖିଛୁ କନ୍ତୁ ପାଷାଣୀପ୍ରତିମା,
ମୃତସଞ୍ଜୀବନ ମନ୍ତ୍ର କେଉଁ ବିଶ୍ୱକର୍ମା
ପଢ଼ି ଜୀବନ୍ୟାସ ଦେଲା ଶିଳା-ଅପଘନେ !
ସୁପ୍ତୋତ୍ଥି ଜାଗ୍ରତ ହୋଇ ନବ ଶୁଭ୍ରାନନେ ।
ଏଡ଼େ ବଡ଼ ମନ୍ଦିରର ଅଟୁ ଶ୍ରେଷ୍ଠ ମୂର୍ତ୍ତି,
କେତେ ଯୁଗ ଅଛୁ ଚିହ୍ନ ଧରି ଦିବ୍ୟସ୍ଫୂର୍ତ୍ତି ।
କେତେ ପଣ୍ଡା ପଢ଼ି ଅଛି କେତେ ପୁରୋହିତ
ଋତ୍ୱିକ ବ୍ରାହ୍ମଣେ ତବ ଚରଣେ ଅଶ୍ରିତ ।
କେତେ ଦିଗ ଦିଗନ୍ତର ଦେଶଦେଶାନ୍ତର —
ଦର୍ଶକ-ଯାତ୍ରିଙ୍କ ଦେଖୁଅଛୁ ଗୋ ଅନ୍ତର ।
ବକ୍ଷେ ଉଚ୍ଚ କୁଚଯୁଗ୍ମ ପୀନ ସଞ୍ଚ ଘଞ୍ଚ
କଳଣ କରଣ୍ଡି ପାଖ ଦିଶଇ ସୁସଞ୍ଚ ।
ସରୁ କଟି ମିହି ଶାଢୀ ପିନ୍ଧିତ ନିତମ୍ବ
ଜଘନଯୁଗଳ ତଳେ ଉରୁରମ୍ଭାସ୍ତମ୍ଭ ।
ହାତେ ବାଜୁବନ୍ଧ କରେ ସୁଚାରୁ ବଳୟ
ସୂକ୍ଷ୍ମ ଶିଳ୍ପ ଭଳି ନାହିଁ ଯୁଗାନ୍ତେ ବିଳୟ ।
ଏ ପାଷାଣୀ ମୂର୍ତ୍ତି ଦେଖି ଯୁଗାନ୍ତରସ୍ମୃତି
ଅହଲ୍ୟା ମୂରତି ସ୍ମୃତି-ନଭେ ସମୁଦିତ ।
କେଉଁ ମର୍ତ୍ତ୍ୟ ବିଶ୍ୱକର୍ମା ଗଢ଼ିଲା ମୂରତି,
ଈଶ୍ୱର ମନ୍ଦିରେ ଶ୍ରେଷ୍ଠ ପ୍ରତିମା ପାର୍ବତୀ ।
କଳାପାହାଡ଼ର ଦୃଷ୍ଟି ଏଡ଼ି ସର୍ବଶିଳା
ମୋହିନୀ ମୂରତି ପ୍ରତି ସ୍ୱଭାବେ ପଡ଼ିଲା ।
କେତେ ସର୍ବ ଅପରୂପ ପ୍ରତିମା ପଠାଣ
ଛୁଇଁ ଭାର୍ଯ୍ୟା ମୂର୍ତ୍ତି ଭାଙ୍ଗି ଦେଲା ଶିବ ଟାଣ ।
ନିଖିଳ ଉତ୍କଳବାସି-ଗୃହ-ଲକ୍ଷ୍ମୀ ସତୀ
ସମସ୍ତଙ୍କ ପ୍ରତିମୂର୍ତ୍ତି ଏ ଦେବୀ ପାର୍ବତୀ ।
ଏହାଙ୍କ ମହତ୍ତ୍ୱ ନେଇ ଗଲା ସେ ଯବନ,
ଲକ୍ଷ୍ମୀ ଛାଡ଼ି ଗଲେ ତେଣୁ ଉତ୍କଳଭୁବନ ।
ସେହି ଦିନୁ ଉତ୍କଳର ଭାଗ୍ୟରବି ଅସ୍ତ,
ଶୌର୍ଯ୍ୟ ବୀର୍ଯ୍ୟ ଶିଳ୍ପକଳା ଗଲା ରେ ସମସ୍ତ ।
ଯାଇଛୁ ଦେବତା ପଡ଼ିଅଛୁ ରେ ପ୍ରତିମା,
ଅଛନ୍ତି ମନୁଷ୍ୟ, ନାହିଁ ସେ ଗୁଣଗରିମା ।

ଶ୍ରୀ ନନ୍ଦକିଶୋର ବଳ ।

---

ଟୁକୁମୁଷି ।

ଟୁକୁମୁଷି ରେ ଟୁକେଇମୁଷି,
ଧାନଭରଣକ ଖାଉଥା ଗଷି,
ତୁ ଥା ମୁଁ ଯାଉଛୁ ଲୁଷି ॥
କାଳିଆ ବଳଦ ଗଲା,
ହାଣ୍ଡିକୁଣ୍ଡେଇ ସମ୍ଭାଳ ଥିବୁଟି
ହାଣ୍ଡି ଧୁଡୁ ଧୁଡୁ କଲା ॥
ଧଳିଆ ବଳଦ ଭାରି ଉତ୍କଟ,
ନିତି ଭାଙ୍ଗଇ ଗାଟି କବାଟ;
ମୋ ହାତରେ ଥାଏ ଖଣ୍ଡିଏ ଛାଟ,
ପିଲାଙ୍କୁ ଦେଖିଲେ ହଗାଲେ ବାଟ ।
ବାପା ରଖିଗଲେ ଧାନଭରଣେ,
ଅମାରରେ ଏବେ ନାହିଁ ତ ମାଣେ,
ଚପୁ ଗଦା ହେଲା ଅମାରକଣେ,
ଗୃହିଲଯାକ ତ ଗଲାଣି କେଣେ ॥
ଟୁକୁମୁଷି ରେ ଦଶ ତ ସାନ,
ମାସକେ ଖାଇଲୁ ଭରଣେ ଧାନ,
କପଟ ହୋଇଲା ପେଟରେ ଥାନ,
ହୋଡ଼ମେଇଁ ତୋର ପେଟ ସମାନ ॥
ଲୁଷି କରି ବାପା ଛାଡ଼ିଲେ ଘର,
ମାଆକୁ କଲଣି ଏକୁଆ କର,
ଟୁକେଇମୁଷିଟି କରିଛୁ ଘର,
ଭୁଷ କରୁଅଛୁ ଧାନ ଅମାର ॥

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ।

---

ଅଶୋକବନେ ସୀତା ।

ବିଷଣ୍ଣା ସୀତା ଦେବୀ ଅଶୋକକାନନେ,
ବାସନ୍ତୀ ଚନ୍ଦ୍ରମା କିବା ନୀଳିମ ଗଗନେ ।
ଅଶୋକ ଶାଖାକୁ ଧରି ରହିଛନ୍ତି ଉଭା,
ବିଶ୍ୱଶିଳ୍ପୀ ସୌନ୍ଦର୍ଯ୍ୟର ସମବେତ ପ୍ରଭା ।
କମଳନୟନ ପୂରିଅଛି ଅଶ୍ରୁଜଳେ,
ଲମ୍ବାପତ ଜଟା ହୋଇଅଛି ପଦତଳେ ।
ଚେଡ଼ୀବୃନ୍ଦ ବୋଲୁଛନ୍ତି ତାହାଙ୍କୁ ବୁଝାଇ,
ଦଶାସ୍ୟେ ଭୋଳଇ କେହି, କେ ଭୟ ଦେଖାଇ,

ଭକ୍ତ ଦେବ ଲକ୍ଷ୍ମଣରେ, ମାତ୍ର ସୁଲୋଚନା
ନ ଶୁଣି ସେ କଥା ରହିଅଛନ୍ତି ବିମନା ।
ଦେବାଙ୍କୁ ପ୍ରହାର କେହି କଲା କ୍ରୋଧଭରେ,
ତଥାପି ସେ ଧ୍ୟାନମଗ୍ନ ଅଛନ୍ତି ନିଶ୍ଚିନ୍ତରେ ।
ଚିତ୍ରକର କଲା ଏହା ପ୍ରସ୍ତରେ ଅଙ୍କିତ,
ଯୁଗଯୁଗାନ୍ତରେ ତାହା ଥିବ ବିରାଜିତ ।

ଶ୍ରୀମତୀ ନଗେନ୍ଦ୍ରବାଳା ସରସ୍ୱତୀ ।

—:୦*୦:—

## କାହିଁ ସେ ରତନ !

'The little innocent soul flitted away.'

ଅହା ! ବିଧି ! ଧିକ ମୁହିଁ ! ଧିକ ମୋ ଜୀବନ !
ଚାଲି ଯାଉ ଯେବେ କୋଳେ
ଅବିରମ ପ୍ରେମ-ଭୋଳେ
ଦେଉଥିଲି କପୋଳରେ ସହସ୍ରେ ଚୁମ୍ବନ;
ହରାଇ ବସିଲି ଆଜ, କାହିଁ ସେ ରତନ ।
ହରାଇ ବସିଲି ଆଜ, କାହିଁ ସେ ରତନ,
ଯାର ମୃଦୁ ପ୍ରେମହାସେ
ନବ ଆଶା ପରକାଶେ,
ଲଭଇ ପଲକେ ହୃଦ ନବୀନଚେତନ,
ଯାର ପୁଣ୍ୟରୁ ଆନନ
କରି ସୁଖେ ନିରୀକ୍ଷଣ,
କରିଥିଲି ଧରାଧାମେ ସାର୍ଥକ ଜୀବନ;
ହରାଇ ବସିଲି ଆଜ, କାହିଁ ସେ ରତନ ।
ହରାଇ ବସିଲି ଆଜ, କାହିଁ ସେ ରତନ,
ପ୍ରଣୟୀର ପ୍ରେମଆଶା,
ସେ ଦମ୍ପତି ସୁତ୍ରା-ଭାଷା,
କୋମଳ ଯୁଗଳ ତାର ସୁନ୍ଦର ନୟନ,
ପୁଣି ତା ହୃଦୟ-ସିନ୍ଧୁ—
ଆହ୍ଲାଦନ-ପୂର୍ଣ୍ଣ-ଇନ୍ଦୁ,
ଅଦୃଶ୍ୟ ଅବାଧେ କେବଣ କଲା ରେ ଗମନ;
ହରାଇ ବସିଲି ଆଜ, କାହିଁ ସେ ରତନ ।
ହରାଇ ବସିଲି ଆଜ, କାହିଁ ସେ ରତନ,
ଆହା ମୋ ନୟନ-ତାରା,
ଅବିରମ ଅଶ୍ରୁଧାରା
ବହୁଥିଲା ନୟନରୁ ହେର ନିରୀକ୍ଷଣ,
ପୁଣି କେତେ ପ୍ରେମଭରେ
ଶୁଣୁଥିଲି ଆନନ୍ଦରେ
କୋମଳ ମଧୁର ତାର ଅସ୍ଫୁଟ ବଚନ;
ହରାଇ ବସିଲି ଆଜ, କାହିଁ ସେ ରତନ ।
ହରାଇ ବସିଲି ଆଜ, କାହିଁ ସେ ରତନ,
ସ୍ୱର୍ଗ, ମର୍ତ୍ତ୍ୟ, ରସାତଳ,
ଜଳଧି-ଅଚଳ-ତଳ,
ହ୍ରଦ, ଉପତ୍ୟକା, ଗିରି, ଗହ୍ୱର, କାନନ,
ନଦ, ନଦୀ, ଉପବନ,
ପ୍ରବେଶିଲି ନାନା ସ୍ଥାନ,
ନ ପାଇଲି, ଆହା ! ଯେତେ କଲି ଅନ୍ୱେଷଣ;
ହରାଇ ବସିଲି ଆଜ, କାହିଁ ସେ ରତନ ।

ଶ୍ରୀ ପଦ୍ମଚରଣ ନାୟକ ।

## ସଂକ୍ଷିପ୍ତ ସମାଲୋଚନା ।

୧ । ପଦ୍ମାବତୀ-ପରିଣୟ ବା କାଞ୍ଚୀ-କନ୍ୟା—ଶ୍ରୀ ଭାଗୀରଥି ରଥଙ୍କ କର୍ତ୍ତୃକ ପ୍ରଣୀତ । ମୂଲ୍ୟ ପାଞ୍ଚ ଅଣା । ଉତ୍କଳର ପ୍ରସିଦ୍ଧ ଐତିହାସିକ ଘଟଣା ସେହି କାଞ୍ଚୀବିଜୟ ବୃତ୍ତାନ୍ତ ଏହି କ୍ଷୁଦ୍ର କାବ୍ୟର ବିଷୟ । ସୁତରାଂ ପାଠକମାନଙ୍କୁ ତାହାର ବିବରଣ ଦେବା ଅନାବଶ୍ୟକ । ଉତ୍କଳାଧିପତିଙ୍କ ଦିଗ୍-ବିଜୟଯାତ୍ରାଠାରୁ ପଦ୍ମାବତୀଙ୍କ ପରିଣୟ ପର୍ଯ୍ୟନ୍ତ ସଂକ୍ଷେପରେ ବର୍ଣ୍ଣିତ ହୋଇଅଛି । ଘଟଣାଟି ଉତ୍କଳର ଉନ୍ନତ ଓ ଗୌରବପୂର୍ଣ୍ଣ ଅବସ୍ଥାର ପରିଚାୟକ । ପୁସ୍ତକରେ ତାହାର ଆଭାସ ରହି-ଅଛି । ନାନା ସ୍ଥାନର ବର୍ଣ୍ଣନାରୁ ଲେଖକଙ୍କର ପ୍ରଚ୍ଛନ୍ନ ଶକ୍ତିର ସୁନ୍ଦର ପରିଚୟ ମିଳୁଅଛି—ଉପଯୁକ୍ତ ଅନୁଶୀଳନ ଅଭାବରୁ ସେ ଶକ୍ତି ଯେମନ୍ତ ନ ଫୁଟି ପାରି ନାହିଁ । ଯୁଦ୍ଧ ବର୍ଣ୍ଣନା

ଅନେକ ପରିମାଣରେ ଜୀବନ୍ତ ହୋଇଅଛି । ପୁସ୍ତକର ପ୍ରଧାନ ଦୋଷ କ୍ଲିଷ୍ଟତା—ଏ ଦୋଷ କିଞ୍ଚିତ ଅଧିକ ହୋଇଅଛି ଏବଂ ସେହି କାରଣରୁ ଅନେକ ସ୍ଥଳ ଦୁର୍ବୋଧ ହୋଇଅଛି । ଆଜିକାଲି ଏ ଦୋଷ ଏକାନ୍ତ ପରିହାର୍ଯ୍ୟ ।

୨ । ଯଜ୍ଞଭସ୍ମ ( ବଙ୍ଗଳା )—ଶ୍ରୀ ବିଜୟଚନ୍ଦ୍ର ମଜୁମଦାରଙ୍କ ପ୍ରଣୀତ । ମୂଲ୍ୟ ଏକଟଙ୍କା ମାତ୍ର । ପୁସ୍ତକଖଣ୍ଡି ପାଠ କରି ଆମ୍ଭେମାନେ ଅତ୍ୟନ୍ତ ପ୍ରୀତି ଲାଭ କରିଅଛୁଁ । ପୁସ୍ତକର 'ଯଜ୍ଞଭସ୍ମ' ନାମ ସାର୍ଥକ ହୋଇଅଛି—ପାଠ କଲାବେଳେ ଯଥାର୍ଥରେ ପ୍ରାଣ ପବିତ୍ର ହୋମ ଗନ୍ଧରେ ଆମୋଦିତ ହୋଇ ଉଠେ । ବିଜୟ ବାବୁ ଉଚ୍ଚଶ୍ରେଣୀର ଭାବୁକ କବି—ଚିନ୍ତାଶୀଳ ଲେଖକ, ପୁସ୍ତକର ପ୍ରତ୍ୟେକ କବିତା ତାହାର ସାକ୍ଷ୍ୟ ଦେଉଅଛି । କି ଭାବସମ୍ପଦରେ କି ରଚନା-ମାଧୁର୍ଯ୍ୟରେ ପୁସ୍ତକ ଖଣ୍ଡି ଅତ୍ୟନ୍ତ ଉପାଦେୟ ହୋଇଅଛି । ପୁସ୍ତକାନ୍ତର୍ଗତ ଯୁଗପୂଜା ଖଣ୍ଡରେ କବି ମାନବସମାଜରେ ଧର୍ମଭାବର ଅଭିବ୍ୟକ୍ତି ଅତି ସରସଭାବରେ ଓ ଦକ୍ଷତା ସହକାରେ ଦେଖାଇଅଛନ୍ତି । ସେଥିରୁ ତାଙ୍କର ପ୍ରଗାଢ଼ ଚିନ୍ତାଶକ୍ତି ଓ ଗଭୀର ସୂକ୍ଷ୍ମ ଦୃଷ୍ଟିର ଯଥେଷ୍ଟ ପରିଚୟ ମିଳୁଅଛି । ଏହା କେବଳ ପଠନର ବିଷୟ ନୁହେ, ମନନର ବିଷୟ । ଏତେ କଠିନ ଆଧ୍ୟାତ୍ମିକ ଓ ଦାର୍ଶନିକ ତତ୍ତ୍ୱକୁ ଏପରି ସରସ କରି ଲେଖିବା ସାମାନ୍ୟ ଶକ୍ତିର କାର୍ଯ୍ୟ ନୁହେ । ବଙ୍ଗଳା କବିତା ଓଡ଼ିଆ ଅକ୍ଷରରେ ମୁଦ୍ରିତ କରିବା ଆମ୍ଭମାନଙ୍କର ଇଚ୍ଛା ନୁହେ—ସେଥିରେ କବିତାର ସୌନ୍ଦର୍ଯ୍ୟହାନି ଅନିବାର୍ଯ୍ୟ । ସୁତରାଂ ପାଠକମାନଙ୍କୁ କୌଣସି ଅଂଶ ଉପହାର ଦେଇ ନ ପାରି ଆମ୍ଭେମାନେ ଦୁଃଖିତ ।

୩ । ଭାରତବର୍ଷୀୟ ଶିଶୁଶିକ୍ଷା—ମୂଲ୍ୟ ଅଠ ଅଣା । ଏହି ପୁସ୍ତକ ଖଣ୍ଡି ମାନ୍ଦ୍ରାଜ ପ୍ରେସିଡେନ୍ସି ଅନ୍ତର୍ଗତ ଦକ୍ଷିଣ ଓ ମଧ୍ୟ ଜିଲ୍ଲାସ୍ଥ ବାଳିକାସ୍କୁଲ-ସମୂହର ପରିଦର୍ଶନକାରିଣୀ Mrs. Brander ଙ୍କ କୃତ The Indian Kindergarten, Part I ନାମକ ଇଂରାଜୀ ପୁସ୍ତକର ଉତ୍କଳାନୁବାଦ; ଅନୁବାଦକ ବ୍ରହ୍ମପୁରର ସ୍କୁଲ ସବ-ଇନସ୍ପେକ୍ଟର ଶ୍ରୀଯୁକ୍ତ ଭଗବତୀଚରଣ ଚଟ୍ଟୋପାଧ୍ୟାୟ । ପୁସ୍ତକ ଖଣ୍ଡି ବାଳିକାଶିକ୍ଷା ବିଷୟକ ଉପଦେଶରେ ପୂର୍ଣ୍ଣ । ବିଷୟବିନ୍ୟାସ ମନ୍ଦ ହୋଇ ନାହିଁ । ଅନୁବାଦର ଭାଷା ସରଳ ଓ ଶୁଦ୍ଧ ।

୪ । ପ୍ରହ୍ଲାଦଚରିତ— ମୂଲ୍ୟ ୦/୬ ପାଇ । ବିଷ୍ଣୁପୁରାଣାନ୍ତର୍ଗତ ପ୍ରହ୍ଲାଦ-ଉପାଖ୍ୟାନବିଷୟକ ଶ୍ଳୋକଗୁଡ଼ିକର ଉତ୍କଳ ପଦ୍ୟାନୁବାଦ । ଅନୁବାଦକ ଢେଙ୍କାନାଳ ହାଇ ସ୍କୁଲର ଶିକ୍ଷକ ଶ୍ରୀ କେଶବଚନ୍ଦ୍ର ମିଶ୍ର । ଅନୁବାଦର ଭାଷା ସରଳ ହୋଇଅଛି ।

୫ । ତ୍ରିଗୁଣ-ଗୀତା— ଶ୍ରୀ ଚିନ୍ତାମଣି ପ୍ରହରାଜଙ୍କ ଦ୍ୱାରା ସମ୍ପାଦିତ ଓ ପଦ୍ୟାନୁବାଦ ସହ ପ୍ରକାଶିତ । ଗୀତାର ନାନା ସ୍ଥାନରୁ ଶ୍ଳୋକଗୁଡ଼ିକ ସଂଗୃହୀତ ହୋଇଅଛି । ଅନୁବାଦ ସାଧାରଣଙ୍କ ବୋଧଗମ୍ୟ ହେବାର ଆଶା କରାଯାଏ ।

୬ । ଶ୍ରୀ ଭକ୍ତିଗୀତା— ଶ୍ରୀମତୀ ସରୋଜିନୀ ଦାସୀଙ୍କ ଦ୍ୱାରା ପ୍ରକାଶିତ । ଏଥିରେ ଭକ୍ତିବିଷୟକ କେତେଗୁଡ଼ିଏ ଶ୍ଳୋକ ସଂଗୃହୀତ ହୋଇଅଛି ଏବଂ ଶ୍ଳୋକ ଗୁଡ଼ିକର ସରଳ ପଦ୍ୟାନୁବାଦ ପ୍ରଦତ୍ତ ହୋଇଅଛି ।

୭ । ମଙ୍ଗଳ ସଙ୍ଗୀତ, ଦ୍ୱିତୀୟ ଭାଗ— ରାଜା ଶ୍ରୀ ସାଧୁଚରଣ ମାନସିଂହ ହରିଚନ୍ଦନ ମହାପାତ୍ରଙ୍କ ଦ୍ୱାରା ସଂଗୃହୀତ ଓ ପ୍ରକାଶିତ । ପ୍ରଥମ ଭାଗର ସମାଲୋଚନାରେ ଆମ୍ଭେମାନେ ଯାହା କହିଅଛୁଁ, ତାହା ଉପରେ ଆଉ ଅଧିକ କିଛି କହିବାର ନାହିଁ । ଏ ଶ୍ରେଣୀର ପୁସ୍ତକମାନଙ୍କରୁ ଓଡ଼ିଶାର ରାଜବଂଶପ୍ରଚଳିତ କେତେକ ରୀତି ନୀତି ପ୍ରଭୃତିର ଆଭାସ ମିଳିବ । ଏହି ଭାବରେ ଏହାର ଟିକିଏ ବିଶେଷତ୍ୱ ଅଛି ।

୮ । The History of the Bhuyan Family of Garpada, publised by Raja Baikunthanath De Bahadur, ସରକାରୀ

କାଗଜପତ୍ରରୁ ଏବଂ ଜନଶ୍ରୁତିରୁ ଇତିହାସପ୍ରସିଦ୍ଧ ବାଲେଶ୍ୱର ଜିଲ୍ଲାନ୍ତର୍ଗତ ଗଡ଼ପଦାର ଭୂୟାଁ-ବଂଶର ପୂର୍ବ ବିବରଣ ସଂଗୃହୀତ ହୋଇ ଏ କ୍ଷୁଦ୍ର ପୁସ୍ତିକାରେ ପ୍ରକାଶିତ ହୋଇଅଛି । ପୁସ୍ତିକା ଖଣ୍ଡି କ୍ଷୁଦ୍ର ହେଲେହେଁ ଐତିହାସିକ ତତ୍ତ୍ୱରେ ଏହା ବିଶେଷ ମୂଲ୍ୟବାନ୍ । ଉତ୍କଳଖଣ୍ଡରେ ପ୍ରକାଶଯୋଗ୍ୟ ଏହିପରି ଅନେକ ବିବରଣ ଅଛି । ସେସବୁ ସଂଗ୍ରହ କରିବ କିଏ, ପ୍ରକାଶ କରିବ କିଏ ? ରାଜାବାହାଦୂର ଏହିପରି ଅନ୍ୟାନ୍ୟ କେତେକ ବଂଶବିବରଣ ପ୍ରକାଶ କରିବାକୁ ସଙ୍କଳ୍ପ କରିଥିବାର ଜାଣି ଆମ୍ଭେମାନେ ସୁଖୀ ହୋଇଅଛୁଁ । ପୁସ୍ତିକାଲିଖିତ ବିବରଣଟିର ସାରାଂଶ ଆଗାମୀ ସଂଖ୍ୟାରେ ପ୍ରକାଶ କରିବାର ଇଚ୍ଛା କରୁଅଛୁଁ । ଆମ୍ଭମାନଙ୍କର ଜଣେ ବନ୍ଧୁ ଲେଖକଭାର ଗ୍ରହଣ କରିଅଛନ୍ତି ।

୯ । ସନାତନ ଧର୍ମ ପ୍ରଶ୍ନୋତ୍ତରୀ—କାଶୀ ହିନ୍ଦୁ କଲେଜ କମିଟି ଦ୍ୱାରା ପ୍ରକାଶିତ ଇଂରାଜୀ ପୁସ୍ତକର ଉତ୍କଳାନୁବାଦ—ଶ୍ରୀ ରଙ୍ଗାଭଟ୍ଟ ଗୁନ୍ପଥି ଶାସ୍ତ୍ରୀଙ୍କ ଦ୍ୱାରା ପ୍ରକାଶିତ । ମୂଲ୍ୟ ଏକ ଅଣା । ପୁସ୍ତକ ଖଣ୍ଡି ବାଳକ ବାଳିକାମାନଙ୍କର ଧର୍ମ ଶିକ୍ଷା ଉଦ୍ଦେଶ୍ୟରେ ଲିଖିତ । ଏପରି ଜଟିଳ ବିଷୟରେ ପ୍ରଶ୍ନୋତ୍ତର ମୁଖସ୍ଥ କରିବା ଦ୍ୱାରା ଯଥାର୍ଥ ଧର୍ମଶିକ୍ଷା କେତେ ଦୂର ହେବ, ଆମ୍ଭେମାନେ କହି ନ ପାରୁଁ ।

୧୦ । ପଦ୍ୟମାଳା— ବୃନ୍ଦହୁଖେମୁଣ୍ଡ ନିବାସିନୀ ଶ୍ରୀମତୀ ଅନ୍ନପୂର୍ଣ୍ଣାଙ୍କ ଦ୍ୱାରା ରଚିତ ଏବଂ ଖଲ୍ଲିକୋଟ-ଅଷ୍ଟଦୁର୍ଗାଧୀଶ୍ୱରୀ ଶ୍ରୀମତୀ ପଞ୍ଚୁ-ମହାଦେବୀଙ୍କ ସାହାଯ୍ୟରେ ପ୍ରକାଶିତ । ଏଥିରେ ପ୍ରାର୍ଥନା, ଗୋଧନ ବାହୁଡ଼ା ପୂଜା, ପତିପତ୍ନୀଙ୍କ ପ୍ରାର୍ଥନା, ବିଧବାର ପ୍ରାର୍ଥନା, ଜୀବରେ ଦୟା ଏହି ଛଟି ପଦ୍ୟ ପ୍ରକାଶିତ ହୋଇଅଛି । ପଦ୍ୟ ଗୁଡ଼ିକର ରଚନା ସରଳ ଏବଂ ପ୍ରତ୍ୟେକରେ ବିଷୟ ଗୋଟିଏ ଅକୃତ୍ରିମ ମାଧୁର୍ଯ୍ୟ ରହିଅଛି । ସର୍ବୋପରି ଏଥିରେ କୋମଳ ହୃଦୟର ଯେଉଁ ସରଳ ଧର୍ମ-ବିଶ୍ୱାସ ଓ ଈଶ୍ୱରାନୁରାଗ ପ୍ରତିଫଳିତ ହୋଇଅଛି, ତାହା ଅତ୍ୟନ୍ତ ମନୋହର । ପରଲୋକଗତା ସୁଲକ୍ଷଣା ଦେବୀଙ୍କ ପରେ ଶ୍ରୀମତୀ ଅନ୍ନପୂର୍ଣ୍ଣା ଆମ୍ଭମାନଙ୍କୁ ଏ ଶ୍ରେଣୀର କବିତା ଶୁଣାଇଲେ । ସାହିତ୍ୟକ୍ଷେତ୍ରରେ ଆମ୍ଭେମାନେ ତାଙ୍କୁ ସାଦର ସମ୍ଭାଷଣ ଜଣାଉଅଛୁଁ । ଅବଶ୍ୟ ବିବେଚନାରେ ରଚନାର ନାନା ପ୍ରକାର ଦୋଷ ତ୍ରୁଟି ମାର୍ଜନୀୟ । ଖଲ୍ଲିକୋଟ-ଅଷ୍ଟଦୁର୍ଗାଧୀଶ୍ୱରୀ ମହୋଦୟା ଏହି ନାରୀକବିଙ୍କର ପୃଷ୍ଠପୋଷକତା କରିବାକୁ ଅଗ୍ରସର ହୋଇଥିବାର ଦେଖି ଆମ୍ଭେମାନେ ଆନନ୍ଦିତ ହୋଇଅଛୁଁ । ସାଧାରଣଙ୍କଠାରୁ ଉତ୍ସାହ ପାଇବାର ଦେଖିଲେ ଅଧିକତର ଆନନ୍ଦ ଅନୁଭବ କରିବୁଁ ।

---

# ମୂଲ୍ୟପ୍ରାପ୍ତି ।

## ରାଜସଂସ୍କରଣ ।

୧୯୦୩

| | | |
|---|---|---|
| ଶ୍ରୀଯୁକ୍ତ ରାଜା ସାହେବ | ହିନ୍ଦୋଳ | ଟ ୫ ୧ |
| „ ରାଜା ସାହେବ | ମୟୂରଭଞ୍ଜ | ଟ ୬ ୧ |

୧୯୦୪

| | | |
|---|---|---|
| ଶ୍ରୀଯୁକ୍ତ ରାଜା ସାହେବ | ହିନ୍ଦୋଳ | ଟ ୫ ୧ |
| „ ରାଜା ସାହେବ | ମୟୂରଭଞ୍ଜ | ଟ ୫୧ |

## ସାଧାରଣ ସଂସ୍କରଣ ।

୧୯୦୩

ଶ୍ରୀଯୁକ୍ତ ବୈଦ୍ୟନାଥ ମିଶ୍ର କଟକ ଟ ୧ ୧

„ ବାଳକୃଷ୍ଣ ମହାପାତ୍ର „ ଟ ୧ ୧

„ ଜଗନ୍ନାଥ ସତ୍ପଥୀ ଜଗତସିଂହପୁର ଟ ୦ ୳

„ ନୃସିଂହଚରଣ ମହାନ୍ତି କଟକ ଟ ୦ ୳

୧୯୦୪

ଶ୍ରୀଯୁକ୍ତ ବେଞ୍ଜାମିନ୍ ମହାନ୍ତି କଟକ ଟ ୧ ୧

„ ଗୋପାଳଚରଣ ନାୟକ ସମ୍ବଲପୁର ଟ ୧ ୧

„ ଭାରଣୀଚରଣ ରଥ ମାନ୍ଦ୍ରାଜ ଟ ୧ ୧

„ ମଥୁରାମୋହନ ବେହେରା ବାଲେଶ୍ୱର ଟ ୧ ୧

„ ଲକ୍ଷ୍ମୀନାରାୟଣ ମହାପାତ୍ର ପାରଳାଖେମୁଣ୍ଡି ଟ ୧ ୧

„ ନରସିଂହ ପଟ୍ଟନାୟକ ମାଣିକପୁର ଟ ୨ ୧

„ ରାମକୃଷ୍ଣ ପଟ୍ଟନାୟକ ପାରଳାଖେମୁଣ୍ଡି ଟ ୧ ୧

ଶ୍ରୀଯୁକ୍ତ ଦାମୋଦର ପଟ୍ଟନାୟକ ଯୋରନ୍ଦା ଟ ୨ ୧

„ ବାମନ ଦାସ ମୟୂରପୁର ଟ ୧ ୧

„ ନନ୍ଦକିଶୋର ମହାନ୍ତି ଫକୀରାବାଦ ଟ ୨ ୧

„ ଚନ୍ଦ୍ରଶେଖର ମହାପାତ୍ର ସୁନାଗଡ଼ ଟ ୨ ୧

„ ରାମକୃଷ୍ଣ ରାଉ କଟକ ଟ ୧ ୧

„ ମଣି ବରାଳ ଶାସ୍ତ୍ରପୁର ଟ ୧ ୧

„ ଗୋପାଳଚରଣ ମହାନ୍ତି ବଡ଼ନଦୀ ଟ ୧ ୧

„ ସଦାଶିବ ବିଦ୍ୟାଭୂଷଣ ବ୍ରହ୍ମପୁର ଟ ୨ ୧

„ ପଦ୍ମଚରଣ ଦେବଚନ୍ଦ୍ର ହିଞ୍ଜଳିକାଟୁ ଟ ୨ ୧

„ କୃପାସିନ୍ଧୁ ଦୋରା କଟକ ଟ ୦ ୳

„ ଛଦ୍ମଚରଣ ନାୟକ ଦୋଳସାହି ଟ ୧

# ବିଜ୍ଞାପନ ।

—:o:—

ଶ୍ରୀ ମଧୁସୂଦନ ରାଓ ପ୍ରଣୀତ ଲବ୍ଧପ୍ରତିଷ୍ଠ ପୁସ୍ତକ ।

"କୁସୁମାଞ୍ଜଳି"—ମୂଲ୍ୟ ଟ ୦ । ଏହି କବିତା ପୁସ୍ତକର 'ଋଷି ପ୍ରାଣେ' ପ୍ରଭୃତି କେତୋଟି କବିତା ଶ୍ରୀ ରବୀନ୍ଦ୍ରନାଥ ଠାକୁର ପ୍ରଭୃତି ଲବ୍ଧପ୍ରତିଷ୍ଠ ବଙ୍ଗୀୟ ଶ୍ରେଷ୍ଠ କବିଙ୍କ କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ଉତ୍କଳ ଗାଥା"—ମୂଲ୍ୟ ଟ ୦/ କବିବର ରାଧାନାଥ ରାୟ ପ୍ରଭୃତି କର୍ତ୍ତୃକ ବିଶେଷରୂପେ ପ୍ରଶଂସିତ ।

"ବସନ୍ତ ଗାଥା"—ମୂଲ୍ୟ ଟ ୦।୵ ଉତ୍କଳର ସମସ୍ତ ସୁଲେଖକଙ୍କ କର୍ତ୍ତୃକ ପ୍ରଶଂସିତ ।

"ସଙ୍ଗୀତମାଳା"—ମୂଲ୍ୟ ଟ ୦ । ଏଥିରେ ବହୁପ୍ରଶଂସିତ ଏକଶତ ଭକ୍ତିରସର ସଙ୍ଗୀତ ଅଛି ।

"ଅଙ୍କପ୍ରଶ୍ନ ସମାଧାନ"—ମୂଲ୍ୟ ଟ ୦୵ ଅଙ୍କ ପୁସ୍ତକରେ ଥିବା କଠିନ ପ୍ରଶ୍ନମାନ ଏଥିରେ କଷା ଯାଇଅଛି ।

☞ ଏହି ୫ ଖଣ୍ଡ ପୁସ୍ତକର ମୂଲ୍ୟ ମୋଟରେ ଟ ୧।, କିନ୍ତୁ ଏ ପାଞ୍ଚ ଖଣ୍ଡଯାକ ନେଲେ ଟ ୦।୷ ମୂଲ୍ୟରେ ଦିଆଯିବ । ମଫସଲବାସୀମାନଙ୍କୁ ଡାକଖର୍ଚ୍ଚ ଟ ୦୵ ଅଧିକା ଦେବାକୁ ହେବ ।

ଶ୍ରୀ ପ୍ରଶାନ୍ତ ରାଓ
ନର୍ମାଲ ସ୍କୁଲ, କଟକ ।

---

ସଂସ୍କୃତ ମହାଭାରତର ଅବିକଳ ପଦ୍ୟାନୁବାଦ ରାଜା କୃଷ୍ଣ ସିଂହ କୃତ ମହାଭାରତ ଉତ୍ତମରୂପେ ସଂଶୋଧିତ ମୁଦ୍ରିତ ହୋଇ ନିମ୍ନଲିଖିତ ପର୍ବମାନ ଏ ପ୍ରେସରେ ବିକ୍ରୟାର୍ଥ ପ୍ରସ୍ତୁତ ଅଛି । ଅନ୍ୟାନ୍ୟ ପର୍ବମାନ ଯନ୍ତ୍ରସ୍ଥ । ଶୀଘ୍ର ପ୍ରକାଶିତ ହେବ ।

| | | | |
|---|---|---|---|
| ସଭାପର୍ବ | ଟ ୦।୷ | କର୍ଣ୍ଣପର୍ବ | ଟ ୦ ୷ |
| ବିରାଟପର୍ବ | ଟ ୦। | ଶଲ୍ୟାଦି ପର୍ବଚତୁଷ୍ଟୟ ଏକତ୍ରେ | ଟ ୦ ୷ |
| ଉଦ୍ୟୋଗପର୍ବ | ଟ ୧ ୧ | | |

ଜଗଦୀଶ ପ୍ରେସ
ବଉଦ

ଶ୍ରୀ ଅନନ୍ତ ନାୟକ
ପ୍ରେସ ମେନେଜର

---

ଯାଦୁର ଅବ୍ୟର୍ଥ ମହୌଷଧ ।

ଏହା ସର୍ବପ୍ରକାର ଯାଦୁରୋଗର ଅବ୍ୟର୍ଥ ମହୌଷଧ । ଜ୍ୱାଳା ଯନ୍ତ୍ରଣା ନାହିଁ । ସହସ୍ର ସହସ୍ର ଲୋକ ଆରୋଗ୍ୟ ଲଭି ପ୍ରଶଂସା କରୁଅଛନ୍ତି ।

ମୂଲ୍ୟ ଏକ ଡବା ଟ ୦।୵ ତିନି ଡବା ଟ ୧ ୧ ଛ ଡବା ୧ ୷ ବାର ଡବା ଟ ୩ ୧

କାଛୁର ମହୌଷଧ ।

କାଛୁ, କୁଣ୍ଡିଆ, ନାନା ପ୍ରକାର ଚର୍ମରୋଗର ଔଷଧ । କୌଣସି ପ୍ରକାର ଯନ୍ତ୍ରଣା ହୁଏ ନାହିଁ, ଲଗାଇବାର ନିୟମ ଉପାୟ ବ୍ୟବସ୍ଥାପତ୍ରରେ ବର୍ଣ୍ଣିତ ହୋଇଅଛି । ଉପରୋକ୍ତ ରୋଗ ସବୁରେ ଏ ଔଷଧ ଲଗାଇଲେ ଦୁଇ ଦିନ ମଧ୍ୟରେ ମନ୍ତ୍ରଶକ୍ତି ପ୍ରାୟ ରୋଗ ହଟିଯାଏ ।

ମୂଲ୍ୟ ଏକ ଡବା ଟ ୦। ତିନି ଡବା ଟ ୧।୵ ଛ ଡବା ଟ ୨। ବାର ଡବା ଟ ୪ ୧ ।

ସମସ୍ତେ ନାମ, ଗ୍ରାମ, ଡାକଘର, ଜିଲ୍ଲା ଓ କେଉଁ ଔଷଧ କେତେ ଡବା ନେବେ ଭଲରୂପେ ପଢ଼ିହେବା ଭଳି ସ୍ପଷ୍ଟ କରି ଲେଖିବେ ।

ଔଷଧ ପ୍ରାପ୍ତିସ୍ଥାନ—
ଶ୍ରୀ ରାମଭଜନ ସେନ
ଦେଶୀ ଉତ୍କଳ ପ୍ରେସ, ବାଲେଶ୍ୱର

୮ ମ ଭାଗ, ପୌଷ ୧୩୧୨ । ୯ମ ସଂଖ୍ୟା ।

# ଉତ୍କଳ-ସାହିତ୍ୟ ।

ମାସିକପତ୍ର ଓ ସମାଲୋଚନ ।

—:o:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

Ram Chundar Bebarta

—:o:—

THE UTKAL SAHITYA PRESS.
CUTTACK.
1904.

ବାର୍ଷିକ ମୂଲ୍ୟ ଡାକମାସୁଲ ସମେତ ଟ ୨ ୷ ପ୍ରତି ସଂଖ୍ୟାର ମୂଲ୍ୟ ଟ ୦ ।୰

## ସୂଚୀ ।

# ସ୍ୱାଗତସମ୍ଭାଷଣ ।



ଉତ୍କଳ ସମ୍ମିଳନୀର ଦ୍ୱିତୀୟ ବାର୍ଷିକ ଅଧିବେଶନ ଉପଲକ୍ଷରେ ସମଗ୍ର ଉତ୍କଳଖଣ୍ଡରୁ ସକଳ ଶ୍ରେଣୀର ପ୍ରତିନିଧିବର୍ଗ ଆଜି କଟକନଗରୀର ବକ୍ଷରେ ଉପଗତ ହୋଇଅଛନ୍ତି । ଉତ୍କଳ ସାହିତ୍ୟସମାଜର ବାର୍ଷିକ ଉତ୍ସବରେ ଯୋଗ ଦେବା ନିମିତ୍ତ ମଧ୍ୟ ନାନା ସ୍ଥାନର ପ୍ରତିନିଧିବର୍ଗ ସମାଗତ ହୋଇଅଛନ୍ତି । ସମସ୍ତଙ୍କ ପ୍ରାଣ ପୁଲକରେ ପୂର୍ଣ୍ଣ—ବଦନମଣ୍ଡଳ ଆଶାର ଉଜ୍ଜ୍ୱଳ ଜ୍ୟୋତିରେ ଉଦ୍ଭାସିତ । ବର୍ତ୍ତମାନର ହୀନତା ଓ ମଳିନତା ମଧ୍ୟରେ ଉତ୍କଳର ଅତୀତ ଓ ଭବିଷ୍ୟତର ସୁରଞ୍ଜିତ ଚିତ୍ର ଆଜି ଦେଶେ ପ୍ରାଣକୁ ଉଦ୍ବେଳିତ କରୁଅଛି । ଏହି ଶୁଭ ମୁହୂର୍ତ୍ତରେ ଦୀନ "ଉତ୍କଳ ସାହିତ୍ୟ" ବିନୀତ ଅନ୍ତରରେ ସମସ୍ତଙ୍କୁ ସ୍ୱାଗତସମ୍ଭାଷଣ ନିବେଦନ କରୁଅଛି ଏବଂ ଉତ୍କଳଖଣ୍ଡରେ ଜାତୀୟଜୀବନର ଗଭୀରତା ଓ ପ୍ରସାର କାମନା କରି ମଙ୍ଗଳନିୟନ୍ତା ବିଶ୍ୱପତିଙ୍କ ଶ୍ରୀଚରଣ ତଳେ ଭକ୍ତିପୂର୍ଣ୍ଣହୃଦୟରେ ପ୍ରଣତି ହେଉଅଛି ।



# ଉତ୍କଳ ସାହିତ୍ୟ ।

## ସତୀ ଲୁକ୍ରେସିୟା ।

ସମ୍ଭ୍ରାନ୍ତକୁଳଜାତା ସତୀ ଲୁକ୍ରେସିୟା ଇଟାଲୀର ସୁପ୍ରସିଦ୍ଧ ରଣବୀର କୋଲେଟିନଙ୍କ ଧର୍ମପତ୍ନୀ। ପିତାଙ୍କ ନାମ ଷ୍ଟ୍ରିୟୁସ । ସେ ମଧ୍ୟ ଜଣେ ସୁପ୍ରସିଦ୍ଧ ଯୋଦ୍ଧା ଥିଲେ ।

ସତୀ ଲୁକ୍ରେସିୟା ସର୍ବଗୁଣବିଭୂଷିତା ପରମା ସୁନ୍ଦରୀ ବୋଲି ଇଟାଲୀରେ ସୁବିଖ୍ୟାତା । ଲୁକ୍ରେସିୟାଙ୍କ ସ୍ୱାମୀ ଏବଂ ପିତା ଦୁଇ ଜଣ ଯୁଦ୍ଧ-ବିଶେଷରେ ବ୍ୟାପୃତ ଥିବା ସମୟରେ ଶୂନ୍ୟ ଗୃହ ଦେଖି ଇଟାଲି ଦେଶର ନୃପତି ଟାର୍କୁଇନ ବଂଶଜ ଯୁବରାଜ ସେକ୍ସଟସ ବଳପୂର୍ବକ ଲୁକ୍ରେସିୟାଙ୍କ ସତୀତ୍ୱ ହରଣ କରିବାରୁ ସତୀ ପତ୍ରଦ୍ୱାରା ସ୍ୱାମିଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇ ଆତ୍ମଘାତିନୀ ହୋଇଥିଲେ । ସେକ୍ସଟସ ସହିତ କୋଲେଟିନଙ୍କର ବିଶେଷ ବନ୍ଧୁତ୍ୱ ଥିଲେ ମଧ୍ୟ ସେ ବିଶ୍ୱାସଘାତୀ ହୋଇ ଈଦୃଶ ମହାପାପରେ ଲିପ୍ତ ହେବାରୁ ରାଜବଂଶକୁ ଉଚିତ ପ୍ରତିଫଳ ଭୋଗ କରିବାକୁ ହୋଇଥିଲା, ବର୍ଣ୍ଣନା କରିବା ବାହୁଲ୍ୟ ମାତ୍ର । କେବଳ ଯେ ରାଜବଂଶ ଚିରକାଳ ପାଇଁ ଉତ୍ସନ୍ନ ହୋଇଥିଲେ ଏମନ୍ତ ନୁହେ, ଅସଂଖ୍ୟ ନରଶୋଣିତରେ ରୋମହ୍ରଦପ୍ରବାହିନୀ ଟାଇବାର ନଦୀର ସ୍ରୋତ ରକ୍ତବର୍ଣ୍ଣ ଧାରଣ କରିଥିଲା । ଏହି ଘଟନା ଉପଲକ୍ଷରେ ନିମ୍ନଲିଖିତ କ୍ଷୁଦ୍ର ପଦ୍ୟଟି ଲିଖିତ ହେଲା । ଏହାକୁ ଇଟାଲି ଦେଶର ସଂକ୍ଷିପ୍ତ ରାମାୟଣ ବୋଲିବାକୁ ହେବ ।

ସମରକୁଶଳୀ ସ୍ୱାମୀ ଜନକ ଯଶସ୍ୱୀ,
ସତୀ ସାଧ୍ୱୀ ଲୁକ୍ରେସିୟା ଅତୁଳ ରୂପସୀ ।
ଧନେ ମାନେ କୁଳେ ଶୀଳେ ପଦମର୍ଯ୍ୟାଦାରେ
ସମସ୍ତ ଇଟାଲିବାସୀ ହେଲେ ଟିନଠାରେ ।
ଜଗତସୁନ୍ଦରୀ ଜାୟା ଇଟାଲିବାସିନୀ,
ଲୁକ୍ରେସିୟା ଗୁଣବତୀ ନାମ୍ୱସିମନ୍ତିନୀ ।
ଛନ୍ତି ପିତା ସ୍ୱାମୀ ଦୁହେଁ ସମରକ୍ଷେତ୍ରରେ,
ନିଦ୍ରା କରୁଛନ୍ତି ସତୀ ବସି ଅଳିନ୍ଦରେ ।
ସଂଶୟ ଉଦ୍‌ବେଗ ଭୟ ଆଶା ଯୁଗପତ
କରୁଅଛି ଲୁକ୍ରେସିୟା ହୃଦ ଇତସ୍ତତ ।
ଭକ୍ତିଭାବେ ପ୍ରଭୁପଦେ ପଦ୍ମା ଲଲନା
ସ୍ୱାମିଙ୍କ ମଙ୍ଗଳ କରୁଅଛନ୍ତି କାମନା ।
ଦେବଦେବ ଜୁପିଟର* ତବ କୃପାବଳେ
ଆସନ୍ତୁ ବାଞ୍ଛିତ ସ୍ୱାମୀ ପିତୃର କୁଶଳେ ।
ହେବା ଜାଣି ଲୁକ୍ରେସିଆ ଛନ୍ତି ବାଟ ଚାହିଁ
ସମର କୁଶଳବାର୍ତ୍ତା ପାଇବାର ପାଇଁ ।
ଚମକି ପଡ଼ିଲେ ଅପରୂପ ଦେଖି ସତୀ,
ସମ୍ମୁଖରେ ହଠା ଆସି ଇଟାଲି ନୃପତି ।
ନ ଜାଣନ୍ତି ସତୀ ଦୁଷ୍ଟ ମନ ଅଭିଳାଷ,
ବହୁତ ସମ୍ମାନ କରି ବସାଇଲେ ପାଶ ।
ପୁଚ୍ଛିଲେ ବିନୟେ ଆଜ୍ଞା କରନ୍ତୁ ରାଜନ,
କିପାଇଁ ଅଧିନା ଗୃହେ ହେଲା ଆଗମନ ?
କାମୁକ ପାଷଣ୍ଡ ଯାହା ଆତ୍ମା କଳୁଷିତ,
ଧର୍ମାଧର୍ମ ଲାଜ ଭୟ ନ ଥାଏ କିଞ୍ଚିତ ।
ବହୁତ ବିନୟେ ନଷ୍ଟ ବାକ୍ୟ ରଟୁଥାଇ
ଆପଣାର ଅଭିପ୍ରାୟ ବୋଇଲା ବୁଝାଇ ।
ତୁମର ପ୍ରଣୟପ୍ରାର୍ଥୀ ଅଟେ ସୁଲୋଚନା,
ମୋହ ପ୍ରତି ବେଳେ ମାତ୍ର କରନ୍ତୁ କରୁଣା ।

* ଇଟାଲି ଦେଶର ବଜ୍ରାଧାରୀ ଇନ୍ଦ୍ର ଦେବତା ।

ଦେବ ଅର୍ଦ୍ଧ ରାଜ୍ୟ ସ୍ୱତ୍ତ ଅତୁଳ ସମ୍ପତ୍ତି,
କେବଳେ ମାତ୍ର ପାଇଁ ସିବେ ତୁମ୍ଭର ସମ୍ମତ ।
ଜାଣ ତ ମୁଁ ଚକ୍ରବର୍ତ୍ତୀ ଇଟାଲି ରାଜ୍ୟରେ,
କେଶୋ ଦାସ ପରି ଥିବ ତୁମ୍ଭ ଶୀପପୁରେ ।
ଲୁକ୍ରେସିୟା ଶୁଣି ସେକ୍ସଟସ କଥାମାନ
ରହିଲେ ସ୍ତମ୍ଭିତ ହୋଇ ପ୍ରତିମା ସମାନ ।
ଘୃଣା ଲଜ୍ଜା ଭୟେ କିଛି ନ ଦେଲେ ଉତ୍ତର,
ନ ଦିଶିଲା ବୁଦ୍ଧି ତାଙ୍କୁ କମ୍ପିତ ମାଉର ।
ଧୈର୍ଯ୍ୟ ଧରି କ୍ଷଣପରେ ବୋଇଲେ କ୍ରୋଧରେ,
କିପରି ଆଣିଲ ରାଜା ଏକଥା ମୁଖରେ ?
ଆସିଅଛ କେଉଁ କୁଳେ ଦେବାପାଇଁ କାଳ,
ବିଚାର ନ କଲ ମନେ ଥରେ ମାତ୍ର ଭାଳ ।
ଟାର୍କୁଇନ ବଂଶେ ଜନ୍ମିଅଛୁ କୁଳାଙ୍ଗାର,
ନିର୍ମଳ ବଂଶର ଲଜ୍ଜାହୀନ ଦୁରାଚାର ।
ଅଛୁ ପର ସ୍ୱାମୀ ସଙ୍ଗେ ତୋର ମିତ୍ରପଣ,
ରେ ପାପିଷ୍ଠ ଏହି କିରେ ତାର ନିଦର୍ଶନ ?
ରୋମର ପବିତ୍ର କୁଳେ ମୋହର ଜନମ,
ଭୁଲିଗଲୁ ଏହାବେଳେ ଅରେ ନରାଧମ !
ରୋମଦେଶ କନ୍ୟା ମୁହିଁ ରୋମୀୟ ମୋ ସ୍ୱାମୀ,
କରିବେ ଅବଶ୍ୟ ରକ୍ଷା ମୋତେ ଅନ୍ତର୍ଯ୍ୟାମୀ ।
ସ୍ୱାମୀ ଦୂର ଦେଶେ କିବା ହୋଇବ ଅଧିକ,
ଦେଖାଇ ଦିଅନ୍ତୁ ଥରେ କେତେ ତୁ ରସିକ ।
କାପୁରୁଷ ଦୁରାଚାର ଅରେ ଅର୍ବାଚୀନ,
ହୋଇ କି ପାରନ୍ତି ଲୋକ ଏତେ ଲଜ୍ଜାହୀନ !
ତେଜସ୍ୱିନୀ ପତିବ୍ରତା କେଶରୀପ୍ରେୟସୀ,
ଥିବ ଥିବ ହୋଇଅଛୁ ଶୃଗାଳ ପ୍ରୟାସୀ !
ବୋଲୁଅଛୁ ଦେବୁ ରାଜ୍ୟ ଅର୍ଦ୍ଧେକ ସମ୍ପତ୍ତି,
ସତୀତ୍ୱର ମୂଲ୍ୟ କାହୁଁ ଜାଣିବୁ ଦୁର୍ମତି ?
ସତୀତ୍ୱ ସ୍ୱର୍ଗୀୟ ବସ୍ତୁ ହେବ କି ରେ ତୁଲ,
କରୁ ଯେବେ ପୃଥିବୀର ସର୍ବ ଧନ ଠୁଳ ।
କର୍କଶରେ ଏତେ କଥା ବୋଲି ସେକ୍ସଟସ୍‌କୁ
କ୍ରୋଧଭରେ ଚାଲିଗଲେ ଗମ୍ଭୀରା ମଧ୍ୟକୁ ।
ଦ୍ୱାର କିଳି ଦେଇ ସତୀ ବସି ନିର୍ଜନରେ
ସମସ୍ତ ବୃତ୍ତାନ୍ତ ସେତ ଲେଖିଲେ ପତ୍ରରେ ।

ଜଣାଇବ ସ୍ୱାମିଙ୍କୁ ସେ ସବୁ ସମାଚାର
ଏହି କଥା ସତୀ କରି ମନରେ ବିଚାର ।
ଧୀରେ ଧୀରେ ଯାଇ କଲେ ଶଯ୍ୟାରେ ଶୟନ,
ମାତ୍ରକ କଲେହେଁ ଯେତେ ପ୍ରକାରେ ଯତନ
ଦୁଶ୍ଚିନ୍ତାରେ ଘଡ଼ି ଗୋଟା ନିଦ ହେଲା ନାହିଁ,
ବିଛଣାରେ ପଡ଼ି ପଡ଼ି ରାତି ଗଲା ପାହି ।
ଏଣେ ଦୁଷ୍ଟ ସେକ୍ସଟସ ପାଇ ଅପମାନ
ବାହୁଡ଼ି ଆଇଲା ଧୀରେ ଧୀରେ ନିଜସ୍ଥାନ ।
ନିର୍ଜନରେ ବସି କଲା ମନରେ ବିଚାର,
ଦେଖିବ ସେ ରମଣୀର କେତେ ଅହଙ୍କାର ।
ତାରେତ ନିରାଶ ହୋଇ ଯାଇବାର ନାହିଁ,
ନିଶ୍ଚୟ ନିଶ୍ଚୟ ଏହା କାପୁରୁଷ କାର୍ଯ୍ୟ ।
କେତେଥର କେତେସ୍ଥାନେ ପାଇଛି ପ୍ରମାଣ ।
ପ୍ରଥମେ କରନ୍ତି ନାରୀମାନେ ମୁହଁଟାଣ ।
ଥରେ ଯେବେ ତାଙ୍କୁ କରି ପାରିବି ଆୟତ୍ତ,
ଚିରକାଳ ପଦେ ଲୋଟିଥିବ ଦାସୀବତ ।
ଯୁବରାଜ ବୋଲି ଆପେ ଏହି କଥାମାନ
କ୍ଷଣେ ମାତ୍ର ତୁନି ହୋଇ ବସି କଲା ଧ୍ୟାନ ।
ଆନନ୍ଦ ମନରେ ପୁଣି ବୋଇଲା ଉଚ୍ଚରେ
ଭଲ କଥାଟାଏ ପଡ଼ି ଗଲା ତ ମନରେ ।
ତାହାର ସତୀତ୍ୱ ନାଶ କରିବି ବଳରେ,
ଭାଙ୍ଗିଯିବ ତାହା ଗର୍ବ କେତେ ସହଜରେ ।
ନ ପାରିବ କାହାକୁ ସେ କହି ଲୋକଲାଜେ,
ମୋହର ଆୟତ୍ତ ହୋଇ ରହିବ ସହଜେ ।
ଏତେ କଥା ଭାଳି ସେହି ଦୁରାତ୍ମା ମନରେ,
ବିଚରଣ କଲା ପୁରୀ ମଧ୍ୟେ ଆନନ୍ଦରେ ।
ଏଣେ ଲୁକ୍ରେସିୟା ବସିଅଛନ୍ତି ଅଗାରେ,
ଅସ୍ଥିର ସନ୍ତପ୍ତ ମନ ନାନା ଦୁଶ୍ଚିନ୍ତାରେ ।
ଏହିକାଳେ ଦୂତ ଏକ ଆସି ଗଲା କହି,
ବାହୁଡ଼ିବେ ସ୍ୱାମୀ ହୋଇ ସମରବିଜୟୀ ।
ଏପ୍ରକାର ଦୂତମୁଖୁଁ ପାଇ ସମାଚାର,
ହୃଦେ ତାଙ୍କ ଜାତ ହେଲା ଆନନ୍ଦ ଅପାର ।
କିନ୍ତୁ ତ ଆନନ୍ଦ ଆଶା ପଡୁଛି ନିଷ୍ଫଳ,
ବାଟ ଚାହିଁ ବସିଛନ୍ତି ହୋଇନପିଭୁଳୀ ।

ପିତା ସ୍ୱାମୀ ଦୁଇଜଣ କାଲି ପ୍ରଭାତରେ
ଉଡ଼ାଇ ବିଜୟବାନା ମିଳିବେ ରୋମରେ ।
ଅବେ ଦେବ ଜୁପିଟର, ହେଉନ୍ତୁ ସଦୟ,
ଅସନ୍ତୁ ବାହୁଡ଼ି ସ୍ୱାମୀ କରି ରଣଜୟ ।
ଘଣ୍ଟା ଯନ୍ତ୍ର ବାରମ୍ବାର ଦେଉଛନ୍ତି ଜଣା,
ଅର୍ଦ୍ଧରାତ୍ରି ଅତି ଦୀର୍ଘ ପରି ଗଲା ଜଣା ।
ଏପରି ଭାବିବେ ପିତା ଚରଣ ବନ୍ଦନ,
ସ୍ୱାମୀଙ୍କୁ କରିବେ କେତେ ପ୍ରେମେ ଆଲିଙ୍ଗନ ।
କେଉଁ ବସ୍ତ୍ର ପିନ୍ଧିବେ ସେ କାଲି ପ୍ରଭାତରେ
ସଜାଡ଼ି ରଖିଲେ ଅଙ୍ଗ ରାତ୍ରିରେ ଯତ୍ନରେ ।
ନିତ୍ୟକର୍ମ ସାରି ରାତ୍ରି ପ୍ରହରେକ ଅନ୍ତେ
ଶୟନ କଲେକ ଯାଇ ଶେଯରେ ନିଶ୍ଚିନ୍ତେ ।
ଶୟନ ପୂର୍ବରେ ସତୀ ହୋଇ ସାବଧାନ
କଲ ଦେଇଛନ୍ତି ଶଯ୍ୟାଗୃହ ଦ୍ୱାରମାନ ।
କେତେରୂପ ଆଶା କରି ମନରେ ପୋଷଣ
କରିଛନ୍ତି ଲୁକ୍ରେସିଆ ସୁଖରେ ଶୟନ ।
କେତେ କଥା ହୃଦେ କରୁଛନ୍ତି ଆନ୍ଦୋଳନ,
କେତେରୂପ ଦେଖୁଛନ୍ତି ସୁଖର ସ୍ୱପନ ।
ସବୁ ଦୁଃଖ ହେବ ଦୂର ପାହିଲେ ରଜନୀ,
ବାହୁଡ଼ି ଆସିବେ ରଣଜୟୀ ଗୁଣମଣି ।
ଭବିଷ୍ୟତ ଅନ୍ଧ ଜୀବ ଜାଣି ସେ ନ ପାରେ
କି ଦଶା ଘଟିବ ଆସି ମୁହୂର୍ତ୍ତ ଭିତରେ ।
ଯେ ଲୋକ ବସିଛି ହୋଇ ରାଜ୍ୟ-ଅଧିକାରୀ,
ମୁହୂର୍ତ୍ତକେ ହୋଇ ପାରେ ଦାଣ୍ଡର ଭିକାରୀ ।
କାଳାନ୍ତକ ଯମ ଆସି ରହିଛି ଆକ୍ରୋଶି,
ନ ଜାଣନ୍ତି ଘୁଣାକ୍ଷରେ ଏକଥା ରୂପସୀ ।
ଅର୍ଦ୍ଧରାତ୍ରି ଗତପ୍ରାୟ ନିସ୍ତବ୍ଧ ରଜନୀ,
କ୍ଷଣେ କ୍ଷଣେ ଶୁଭୁଅଛି ପେଚକର ଧ୍ୱନି ।
ମଦ୍ୟପ, ତସ୍କର, ରାଜପ୍ରହରୀନିକରେ
ଅନ୍ଧାରେ ଭ୍ରମନ୍ତି ରୋମନଗରୀମାର୍ଗରେ ।
ନଗରବାସିଙ୍କ ଆଉ ଗତିବିଧି ନାହିଁ,
ଅନ୍ଧକାର ହିଂସ୍ର ପ୍ରାଣୀ ତସ୍କରଙ୍କ ପାଇଁ ।
ବାହାରିଲା ସେକ୍ସଟସ ଅର୍ଦ୍ଧ ରଜନୀରେ
ଲୁକ୍ରେସିଆ ଶଯ୍ୟାତଳୁ ଧୀରେ ଅତି ଧୀରେ ।

ସାବଧାନେ ଦେଖିଲା ସେ ଗୃହଅନ୍ତେ ଚାହିଁ
ଛୋଟ ବଡ଼ ଅଟ୍ଟାଳରେ ଶବ୍ଦ ମାତ୍ର ନାହିଁ ।
ଦେଖିଲା ସେ ଏକଧାରେ ଚାହିଁ ଦୁଷ୍ଟମତି,
ସ୍ଥିରଭାବେ ଶୋଇଛନ୍ତି ଲୁକ୍ରେସିଆ ସତୀ ।
ଶୋଇଛନ୍ତି ସତୀ ସାଧ୍ୱୀ କୋମଳ ଶେଯରେ,
ଶ୍ୱେତପଦ୍ମାସନା ଲକ୍ଷ୍ମୀ କ୍ଷୀରୋଦସାଗରେ ।
ଧୀର ଧୀର ହୋଇ ଚାଲିଯାଏ ସତୀ ପାଶେ,
ପୁଣି କି ବିଚାରି ପଛଘୁଞ୍ଚା ଦେଇ ଆସେ ।
ପୁଣି ଧୀରେ ଅତି ଧୀରେ ଅତି ସାବଧାନେ
ମିଳିଲା ପାମର ସତୀ ଶଯ୍ୟା ସନ୍ନିଧାନେ ।
ଧୀରେ ଧୀରେ କଲା ସତୀ ହସ୍ତକୁ ଧାରଣ,
ଶାର୍ଦ୍ଦୁଳ କି କଲା ସୁପ୍ତମୃଗୀ ଆକ୍ରମଣ !
ସେହି ପାମରର କଳୁଷିତ ହାତ ବାଜି,
ଚମକି ପଡ଼ିଲେ ସତୀ, ନିଦ ଗଲା ଭାଙ୍ଗି ।
ଉପୁଙ୍କର କାଣ୍ଡ ଦେଖି ମଣିଲେ ବିସ୍ମୟ,
ସ୍ୱପନ କି ସତ୍ୟ କରି ନ ପାରିଲେ ଥୟ ।
ନିମେଷମାତ୍ରକେ ସବୁ କଥା ଗଲା ଜଣା,
ସଂଶୟ କି ଥାଏ ଯାହା ପ୍ରତ୍ୟକ୍ଷ ଘଟଣା ।
ଘୃଣା ଲଜ୍ଜା ଭୟ ଅପମାନ କ୍ରୋଧଭରେ,
ରହିଗଲେ କିଛି କାଳ ମୃତ ସମାନରେ ।
ହୃଦୟ ଯାଉଛି ଫାଟି ନେତ୍ରୁ ବହେ ଜଳ,
ଛଡ଼ାଇ ନେବାକୁ ହାତ ଦେହେ ନାହିଁ ବଳ ।
କହିଲେ କ୍ରୋଧରେ କରି ଭୀଷଣ ଗର୍ଜ୍ଜନ,
ଛାଡ଼ ଛାଡ଼ ହାତ ଛାଡ଼ ପାପିଷ୍ଠ ଦୁର୍ଜନ ।
କି ସାହସେ ଆସି ତୁହି ଧଇଲୁ ମୋ ହାତ,
ନ ଜାଣୁ ଏ ପାପେ ହେବୁ ସବଂଶେ ନିପାତ ।
ହେ ରାଜନ ତୁମ୍ଭେ ପରା ଧର୍ମରକ୍ଷାକାରୀ,
କେତେ କାର୍ଯ୍ୟ କରୁଅଛ କିଛି ନ ବିଚାରି ।
ଛାଡ଼ ଦଅ ଯୁବରାଜ ଧରୁଛି ଚରଣ,
ଆପଣାର ରାଜକାର୍ଯ୍ୟେ ଯାଇ ଦଅ ମନ ।
ଧର୍ମଭ୍ରଷ୍ଟ ହୁଅ ନାହିଁ, କହିଲେ ବାରମ୍ବାର,
ଏହି ପାପେ କେତେ ବଂଶ ହେବେ ଛାରଖାର ।
ଭାଳିଛ ମନରେ ପରା କେହି ଦେଖୁ ନାହିଁ,
ଆକାଶରେ ରହିଛନ୍ତି ଜୁପିଟର ଚାହିଁ ।

ପୁନର୍ବାର ହେ ସଜ୍ଜନ ଧରୁଛି ଚରଣ,
ନାଶ କର ନାହିଁ ମୋର ପତିବ୍ରତା ଧନ ।
ସ୍ୱର୍ଗୀୟ ସତୀତ୍ୱ ଧନ ପୃଥିବୀଲୋକରେ,
ଫେରନ୍ତ ନ ଅଟେ ଯେବେ ନଷ୍ଟ ଯାଏ ଥରେ ।
ଅହେ ଦେବ ଜୁପିଟର ଜଗତର ନାଥ,
ସଙ୍କଟ କାଳରେ କେବେ ହେଲ ନାହିଁ ସାଥ ।
ଏହି କଥା ବୋଲୁଁ ବୋଲୁଁ ଚେତା ଗଲା ହଜି,
ଶରୀର ଅବଶ, ଆଖି ପତାଇଲେ ବୁଜି ।
ଯେ ପାଷଣ୍ଡ ଦୁରାଚାର କାମରେ ମୋହିତ,
ତାର ନାହିଁ ଜ୍ଞାନ ଧର୍ମାଧର୍ମ ହିତାହିତ !
ଲଲନାକୁ ଦୁରାଚାର ଦେଲା ଯେଉଁ ବ୍ୟଥା,
କହି ଅବା ଲେଖି ହେବ ନାହିଁ ସେହି କଥା ।
କେତେ କ୍ଷଣ ପରେ ସତୀ ପାଇଲେ ଚେତନା,
ଜଗତ ସଂସାର ଶୂନ୍ୟ ପରି ଗଲା ଜଣା ।
କଳଙ୍କିତ ଦେହ ମନ ଗୃହ କଳଙ୍କିତ,
ବ୍ରହ୍ମାଣ୍ଡ ହୋଇଛି କଳଙ୍କରେ ଆଚ୍ଛାଦିତ ।
କେପରି ଛୁଇଁବେ ସ୍ୱାମୀ କଳଙ୍କି ଶରୀର,
ଆତ୍ମଘାତୀ ହେବା ପାଇଁ ମନେ କଲେ ସ୍ଥିର ।
ଲେଖିଲେ ସମସ୍ତ କଥା ପତ୍ରେ ସବିସ୍ତାର,
ଯାହା ଯାହା କରି ଯାଇଅଛି ଦୁରାଚାର ।
ଅବଶେଷେ କରି ସ୍ୱାମୀ ଚରଣଦର୍ଶନ
ସ୍ୱାମୀ ସାକ୍ଷାତରେ ତ୍ୟାଗ କରିବେ ଜୀବନ ।
ପଶ୍ଚିମ ଆକାଶେ ଅସ୍ତ ଗଲେ ନିଶାକର,
ପାହିଲା ରଜନୀ ଉଦେ ହେଲେ ଦିବାକର ।
ହେବା ପାଇଁ ଲୋକଙ୍କର ଧର୍ମାଧର୍ମସାକ୍ଷୀ,
ଦେଖୁଛନ୍ତି ଦିବାକର ଅବା ମେଲି ଆଖି ।
ସ୍ପୁରିୟସ କୋଲେଟିନ ପ୍ରଭାତ କାଳରେ
ହଠାତ ବନ୍ଧୁସହ ଆସି ମିଳିଲେ ରୋମରେ ।
ଆଶ୍ଚର୍ଯ୍ୟ ମଣିଲେ ଦେଖି ସତୀ ଲୁକ୍ରେସିୟା
ନାହାନ୍ତି ଯେ ଅଙ୍ଗନରେ ଦ୍ୱାରଦେଶେ ଠିଆ ।
ଦେଖିଲେ ପ୍ରବେଶି ଗୃହେ ଲୁକ୍ରେସିୟା ଭାର୍ଯ୍ୟା,
ଦାସମାନେ ହେଲେ ପୁଣି ଅଧିକ ଆଶ୍ଚର୍ଯ୍ୟ ।
ବିକଳମନରେ ବସିଛନ୍ତି ମହାଦେଈ,
ସ୍ଥିରଭାବେ ନତାସ୍ୟେ ଗାଲେ ହାତ ଦେଇ ।
ନ ଚାହିଁ ସ୍ୱାମିଙ୍କ ପ୍ରତି ବିକଳମନରେ
ଦେଲେ ପୂର୍ବଲେଖା ଲିପି ସ୍ୱାମିଙ୍କ ହସ୍ତରେ ।
ଫେରନ୍ତେ ସେ ଲିପି ଖଣ୍ଡ ପଢ଼ିବା ସକାଶେ,
ସତୀ ସାଧ୍ୱୀ ଲୁକ୍ରେସିୟା ଏହି ଅବକାଶେ
ଗୁଣ୍ଠାଇ ଛୁରୀ ଖଣ୍ଡେ ହସ୍ତେ ଧରି ବଳେ
ବିଦ୍ଧ କରି ଦେଲେ ଆପଣାର ବକ୍ଷସ୍ଥଳେ ।
ଆହା ଆହା ! ଏ କି ଏ କି ବୋଲି ବାରମ୍ବାର
କୋଲେଟିନ କଲେ ମହାଭୀଷଣ ଚିତ୍କାର ।
ଆଉ କିବା ହେବ ଯାଇ ସତୀ ହାତ ଧରି,
କେତେବେଳେ ସବୁ କଥା ଯାଇଥିଲା ସରି ।
ସେହି ଭୟାନକ ଦୃଶ୍ୟ ନୁହେ ବର୍ଣ୍ଣିବାର,
ଦେଖିଲ ସମସ୍ତେ କରୁଛନ୍ତି ହାହାକାର ।
ତାଙ୍କ ପାଇଁ ଯତ୍ନ କଲେ କିବା ହେବ ଆଉ,
କେତେବେଳେ ଉଡ଼ି ଯାଇଥିଲା ପ୍ରାଣବାୟୁ ।
ପଡ଼ି ଲୋଟୁଅଛି ତଳେ କାଞ୍ଚନଶରୀର,
ଦେହୁଁ ଅନର୍ଗଳ ବହି ଯାଉଛି ରୁଧିର ।
ବିକଳମନରେ କାନ୍ଦୁଛନ୍ତି ସ୍ପୁରିୟସ, *
ଆହା ବିଧି କଷ୍ଟ ଦେଲୁ ଏ ବୃଦ୍ଧ ବୟସେ ।
ବିକଳମନରେ କାନ୍ଦୁଛନ୍ତି କୋଲେଟିନ,
କ୍ଷଣେ କ୍ଷଣେ ହୋଇ ଯାଉଛନ୍ତି ସଂଜ୍ଞାହୀନ ।
ଅବଶେଷେ ପତ୍ର ଖଣ୍ଡେ ଘେନି ବେନି ଜଣେ,
ପଢ଼ିଲେ ସମସ୍ତ କଥା ବିଷାଦିତ ମନେ ।
କାନ୍ଦିଲେ ଉଚ୍ଚରେ ପୁଣି ସ୍ପୁରିୟସ ବୀର,
ହୃଦୟ ତାହାର ହେଲା ଅତ୍ୟନ୍ତ ଅସ୍ଥିର ।
ବୃଦ୍ଧବୟସରେ କନ୍ୟାବିରହ-ଯନ୍ତ୍ରଣା,
ବଜ୍ରାଘାତଠାରୁ ଅଧିକରେ ଯାଏ ଜଣା ।
ମହାତ୍ମା ବ୍ରୁଟସ ※ ପାଇ ଏହି ସମାଚାର
ଆଇଲେକ ଧାଇଁ ତହିଁ କରି ହାହାକାର ।

* ଲୁକ୍ରେସିଆଙ୍କ ପିତା । ※ ଏହି ମହାତ୍ମା ମାର୍କସ ଜୁନିୟସଙ୍କ ପୁତ୍ର, ଜୁନିୟସଙ୍କୁ ଟାର୍କୁଇନ ହତ୍ୟା କରନ୍ତେ ବ୍ରୁଟସ ବାତୁଳ ପ୍ରାୟ ହୋଇଥିଲେ । ବ୍ରୁଟସଙ୍କ ଓଜସ୍ୱିନୀ ବକ୍ତୃତାରେ ଉତ୍ତେଜିତ ହୋଇ ରୋମୀୟମାନେ ଟାର୍କୁଇନ ବଂଶକୁ ଦୂର କରି ଦେଇଥିଲେ ।

କୋଲେଟିନ ସ୍ତ୍ରୀୟୁଷେ ଦେଇ ଅଶ୍ଳୀସନା
ବୋଇଲେ ବିଳାପ କରିବାର ବଡ଼ମନା ।
ଆସ ହେ ବର୍ତ୍ତମାନ ଲୋଡ଼ୁଁ ପ୍ରତିକାର,
ପ୍ରତିହିଂସା ପ୍ରତିହିଂସା ପ୍ରତିହିଂସା ସାର ।
ସେ ବ୍ରୁଟସ ସତୀ ଶବ ଧରଣି କୋଳରେ
ପ୍ରବେଶିଲେ ସାଧାରଣ ବକ୍ତୃତାଗୃହରେ ।
ଇଟାଲି ମଧ୍ୟରେ ପଡ଼ିଗଲା ଗଣ୍ଡଗୋଳ,
ନଗରବାସିଏ ଆସି ତହିଁ ହେଲେ ଠୁଳ ।
ହସ୍ତ ହୋଇ ସେ ବ୍ରୁଟସ ବୋଇଲେ ଉଚ୍ଚରେ,
ଶୁଣ ଭାଇ ଭଗ୍ନୀ ରୋମବାସୀ ନାରୀନରେ—
ଆହେ ଭାଇମାନେ ସର୍ବେ ଦେଖନ୍ତୁ ଅନାଇ,
ସତୀ ସାଧ୍ୱୀ ଲୁକ୍ରେସିୟା ପୃଥିବୀରେ ନାହିଁ ।
ନରପତି ରକ୍ଷାକାରୀ ପ୍ରଜାଙ୍କ ଭରସା,
ତାହା ଯୋଗେ ଘଟିଅଛି ଏପରି ଦୁର୍ଦ୍ଦଶା ।
ଶୁଣିଣ କି କେବେ ଏପ୍ରକାର ଅତ୍ୟାଚାର ?
କରିବ କି ନାହିଁ ତୁମ୍ଭେମାନେ ପ୍ରତିକାର ?
ପବିତ୍ରଚରିତ୍ରା ସତୀ ଇଟାଲିଲଳନା
ସହି ନ ପାରନ୍ତି କେବେ କଳଙ୍କଗଞ୍ଜନା ।
ତେଜନ୍ତି କଳଙ୍କଭୟେ ଆପଣା ଜୀବନ,
ସତୀ ସାଧ୍ୱୀ ଲୁକ୍ରେସିୟା ତାର ନିଦର୍ଶନ ।
ସ୍ୱାଧୀନତା ପରାକ୍ରମ ନ୍ୟାୟବୃଦ୍ଧିବଳେ
ପବିତ୍ର ଇଟାଲି ଖ୍ୟାତ ଜଗତମଣ୍ଡଳେ ।
ଦୁରାଚାର ସେକ୍ସଟସ କଳଙ୍କର କାଳି
ଦେଇଅଛି ସେ ଇଟାଲି ଦେଶମୁଖେ ଢାଳି ।
ବୋଲିବେ କି ନାହିଁ ଇଉରୋପ ନୃପକୁଳ
ଇଟାଲିରାଜ୍ୟରେ ନାହିଁ ସତୀତ୍ୱର ମୂଲ ?
ତୁମ୍ଭର ତ ଛନ୍ତି ମାତା ଭଗ୍ନୀ କନ୍ୟାମାନେ,
କି କରନ୍ତି ଆଜି ସେମାନଙ୍କ ଅପମାନେ ?
ଆଜି ଅତ୍ୟାଚାର ହେଲା କୋଲେଟିନ ଘରେ,
ରହିବେ କି ତୁମ୍ଭ ମାତା ଭଗ୍ନୀ ନିଶ୍ଚିନ୍ତରେ ?
ଆପଣା ମନରେ ଭାଳିଅଛି ପାପମନା,
ତାହା ଭୋଗ ପାଇଁ ସର୍ବ ଇଟାଲିଲଳନା ।

ପାପିଷ୍ଠା ଟୁଲିୟା * କଥା ଜାଣ ଭାଇ ସର୍ବେ,
କି ଦାରୁଣ କାର୍ଯ୍ୟ କଲା ପତିଧନଲୋଭେ,
ପିତା ରକ୍ତେ ପାଦ ଧୋଇ ଅକମ୍ପିତମନେ
ବସିଅଛି ସ୍ୱାମୀ ସଙ୍ଗେ ରାଜସିଂହାସନେ ।
ସ୍ୱହସ୍ତରେ ବଧ କଲା ପ୍ରଥମ ପତିକୁ,
ରାଜରାଣୀ ବୋଲୁଅଛି ସେହି ଅସତୀକୁ ।
ଅସତୀ ରାକ୍ଷସୀ ଦୁଷ୍ଟା ଯାହାର ଜନନୀ,
ତୁମ୍ଭମାନଙ୍କର ସେ କି ହେବ ମୁଣ୍ଡମଣି ?
କି ବୋଲିବ ଆଉ ଆହେ ରୋମବାସିଗଣ,
ଜାଣ ତ ସେକ୍ସଟସ ପିତାମହ ବିବରଣ ।
ଦୁରାଚାର ଟାର୍କୁଇନ ତାହାର ଜନକ,
ପାପର ସେ ପ୍ରତିମୂର୍ତ୍ତି ସାକ୍ଷାତ ନରକ ।
ତାହାର ଜନନୀ ଦୁଷ୍ଟା ଟୁଲିୟା ପାପିନୀ,
ନରକୁଳେ ଜନ୍ମିଅଛି କାଳଭୁଜଙ୍ଗିନୀ,
ଜନ୍ମିଛି ପାପିଷ୍ଠା ଗର୍ଭୁ ପାପିଷ୍ଠ ସନ୍ତାନ,
ରାଜା ବୋଲି ତାକୁ କି ହେ କରିବ ସମ୍ମାନ ?
ଧାର୍ମିକ ବିବେକୀ ଜ୍ଞାନୀ ରୋମବାସିଗଣେ,
ନୁଆଁଇବ ଶିର କି ହେ ପାପିଷ୍ଠ ଚରଣେ ?
ଏ ବଂଶରେ ଜନ୍ମିଅଛି ଯେଉଁ କୁଳାଙ୍ଗାର,
କି ବିଚିତ୍ର କରିବ ସେ ମହା ଅତ୍ୟାଚାର !
ରୋମବାସୀ ଭାଗ୍ୟଚକ୍ର ହେବ ସେ ଚାଳକ ।
ସେହି ହେବ ପରା ପ୍ରଜାମାନଙ୍କ ପାଳକ ।
ବୁଝ ନାହିଁ ସରିଗଲା ସବୁ ଏତିକରେ,
ଆଉ କି ଘଟିବ ତାହା ନ ଆସେ ବୁଦ୍ଧିରେ ।
ଯାହା ଦେହେ ଅଛି କିଛି ମାତ୍ର ପୁରୁଷତ୍ୱ,
ଯେବେ କିଛି ଜଣା ଥାଏ ସତୀତ୍ୱ ମହତ୍ତ୍ୱ,
ଲେଶମାତ୍ର ଯାହାଠାରେ ଅଛି ଧର୍ମଜ୍ଞାନ,
ଯେବେ କିଛି ବୋଧ ଥାଏ ମାନ ଅପମାନ,
ଦେଉଅଛି ମାତା ଭଗ୍ନୀ କନ୍ୟାଙ୍କ ଦୋହାଇ,
ଆସ ହେ ଧର ଖଡ୍ଗ ମିଳି ସର୍ବ ଭାଇ ।
ଶୁଣ ଶୁଣ ଶୁଣ ଭାଇ ରାଜସେନାଗଣ,
ଜାଣ କି ହେ ଖାଉଅଛ କାହାର ବର୍ତ୍ତନ ?

* ରୋମଦେଶର ନୃପତି ସାର୍ବ୍ୱିୟସ୍ ଟୁଲିୟସ ଏହାର ପିତା । ଏହି ପାପୀୟସୀ ରାଜ୍ୟଲୋଭରେ ଆପଣାର ପ୍ରଥମ ସ୍ୱାମୀ ଏବଂ ପିତାଙ୍କୁ ବଧ କରି ସିଂହାସନରେ ବସିଥିଲା ।

ରାଜା ଯେ ଜର୍ମନ ଟଙ୍କା ଦେଇଛନ୍ତି ଆଣି,
ଅରକ୍ଷିଅଛନ୍ତି ତାହା ହାତେ ଚୋର ହାଣି ?
ପ୍ରଜାମାନେ ମୁଣ୍ଡ ଝାଳ ପକାଇ ଗୋଡ଼ରେ
ଅର୍ଜିଲା ଟଙ୍କା ପୂରୁଅଛି ଗନ୍ତାଘରେ ।
ଦେଖ ଏତେଦିନ ଖାଇଅଛ ଯାହା ଲୁଣ,
ଆଜିବେଳ ପଡ଼ିଅଛି ମାନ ତାଙ୍କ ଗୁଣ ।
ଭାଇମାନେ ମିଳି ଅସ୍ତ୍ର ଶସ୍ତ୍ର ଧରି ଆସି
ପବିତ୍ର ରୋମରୁ ଛୁଟି ଦିଅ ପାପରାଶି ।
ବୋଲି ଜୟ ଜୟ ଜୟ ରୋମାନର ଜୟ
ଜୟ ରୋମାନର ଯତୋଧର୍ମ ସ୍ତତୋଜୟ ।
ଓଲ୍ଗର ଖାପରୁ ଖଣ୍ଡା ବକ୍ରମୁଷ୍ଟି ଧରି
ବୋଇଲେ ସେ ସଭାସଦେ ସମ୍ବୋଧନ କରି ।
ଏହି ଖଡ୍ଗେ ବିନାଶିବ ହୋଲେଟିନ ବଂଶ,
ଇଟାଲିର ରାଜପୁତ୍ର କରି ଦେବ ଧ୍ୱଂସ ।
ଶୁଣ ଭାଇମାନେ ବୋଲୁଅଛି ବାରଂମ୍ବାର,
ପ୍ରତିହିଂସା ପ୍ରତିହିଂସା ପ୍ରତିହିଂସା ସାର ।
ମାରିବ ସେ ପାପିଷ୍ଠଙ୍କୁ ଶୁଣ ଭ୍ରାତାଗଣ,
ନ ରଖିବ ଟାର୍କୁଇନ ବଂଶେ ଏକଜଣ ।
ମାରିବ ତାହାର ବନ୍ଧୁ ଭାଇ ପୁତ୍ର ନାତି
ନ ରଖିବ କୁଳେ ଜଣେ ଦେବାପାଇଁ ବତି ।
ସାଧାରଣ ପ୍ରଜାତନ୍ତ୍ର କରିବ ସ୍ଥାପନ,
ପ୍ରଭୁ ଜୁପିଟର ସାକ୍ଷୀ ମୋର ଏହି ପଣ ।
ବ୍ରୁଟସଙ୍କ ବାକ୍ୟ ଶୁଣି ରୋମବାସିଗଣ
ଉଠିଲେ ସକଳେ କରି ଭୀଷଣ ଗର୍ଜନ ।
ବିଦ୍ୟୁତ ବେଗରେ ହେଲା ସମ୍ବାଦ ପ୍ରଚାର,
କେବଳ ଶୁଭୁଛି ଶବ୍ଦ ମାର ମାର ମାର ।
ମାର ମାର ଶବ୍ଦ ଛଡ଼ା ଆନ କଥା ନାହିଁ,
ରାଜପୁରୀ ଲକ୍ଷ କରି ସର୍ବେ ଛନ୍ତି ଧାଇଁ ।
ମଧୁଚକ୍ର ଭାଙ୍ଗିଦେଲେ ମଧୁମକ୍ଷିଗଣ
ଶତ୍ରୁଙ୍କୁ କରନ୍ତି ଯେସନେ ଧାଇଁ ଆକ୍ରମଣ,
ତେସନେ ସକଳେ ମିଳି ଖଡ୍ଗ ଧରି କରେ
ପ୍ରବେଶିଲେ ସର୍ବେ ଯାଇଁ ରାଜାଙ୍କ ନଅରେ ।

ଧାଇଁ ଯାଇ ଜଣେ ପୁରାତନ ବୃଦ୍ଧ ଦାସ
ଜଣାଇଲା ସବୁ କଥା ନୃପତିଙ୍କ ପାଶ ।
ଜନାବାଟ ଦେଇ ଟାର୍କୁଇନ ଦେଲେ ଚାହିଁ,
ପଙ୍ଗପାଳ ପରି ଲୋକମାନେ ଛନ୍ତି ଧାଇଁ ।
ଧର ଧର ମାର ମାର ବୋଲି ବାରମ୍ବାର
କରୁଛନ୍ତି ଲୋକମାନେ ଭୀଷଣ ହୁଙ୍କାର ।
ଶାଣିତ ଭୀଷଣ ଖଡ୍ଗ ହସ୍ତେ ଉତ୍ତୋଳକ,
ସୂର୍ଯ୍ୟ ତେଜ ଲାଗି ଦିଶୁଅଛି ଜକଜକ ।
ଜୟ ରୋମାନର ଜୟ ବିଜୟୀ ରୋମାନ,
ଏହି ଶବ୍ଦେ ହେଉଅଛି ପୂର୍ଣ୍ଣ କର୍ଣ୍ଣମାନ ।
ସେକ୍ସଟସ ଦେଖି ଏହି ସର୍ବ କଥା,
ହଜି ଗଲା ଜ୍ଞାନ ଘୂରି ଗଲା ମଥା ।
ଭାଳିଲା ନିର୍ବୋଧ ଆପଣା ମନରେ,
ମାରିବ ଶତ୍ରୁଙ୍କୁ ଅସି ଧରି କରେ ।
ସମ୍ମୁଖସଂଗ୍ରାମେ ବଧି ଶତ୍ରୁଗଣ,
କଲଙ୍କିତ ପ୍ରାଣ ଦେବ ବିସର୍ଜ୍ଜନ ।
ମାନବ ଯାହାର କୁକର୍ମରେ ମତି,
ସେ ଲୋକର ନାହିଁ ସାହସ ବା ଶକ୍ତି ।
ଯେମାନଙ୍କ ଆତ୍ମା ପାପରେ ମଳିନ,
ସହଜେ ସେ ସର୍ବଲୋକ ଶକ୍ତିହୀନ ।
ପୁଣି ସେ ବିଚାର କଲା ମନେ ମନେ,
ସହସ୍ର ମଧ୍ୟରେ ମୁହିଁ ଏକା ଜଣେ;
ଦେଖୁଛି ବିଶ୍ୱାସୀ ପ୍ରହରୀ ଯେତେକ,
ମଲେଣି ତ ଶତ୍ରୁହସ୍ତେ ଏକ ଏକ ।
ଯୁଦ୍ଧ କରିବାରେ ନାହିଁ କିଛି କାର୍ଯ୍ୟ,
ପ୍ରାଣ ଥିଲେ ପୁଣି ମିଳି ପାରେ ରାଜ୍ୟ ।
ଏହେତୁ ବିଚାରି ଅସି ଧରି କରେ
ପଳାଇଲା ପ୍ରାଣଭୟେ ଗୁପତରେ ।
ପବନହୁଁ ବେଗେ ଯାଉଅଛି ଧାଇଁ,
ନିଶ୍ୱାସ ପକାଇ ପଛକୁ ନ ଚାହିଁ ।
ଉମ୍ବ୍ରିୟା * ଅଞ୍ଚଳକୁ ଯାଉଛି ପଳାଇ,
ପଛରୁଛି ଶତ୍ରୁମାନେ ଅଛନ୍ତି ଗୋଡ଼ାଇ ।

* ଇଟାଲିର ଗୋଟିଏ ପ୍ରଦେଶ ।

ବିଡାଳର ଡରେ ଯେମନ୍ତ ପଳାଏ ମୂଷିକ
ପଳାଇଛି ସେହିପରି ଦୁଷ୍ଟ ଅଧାର୍ମିକ ।
ନଗରନିବାସୀ ଲୋକେ ହୋଇ ଉନ୍ମତ୍ତ
ଖୋଜିଲେ ଯେ ରାଜପୁରେ ଯାଇ ଅବିରତ ।
ଗୃହ ପ୍ରତି ଗୁପ୍ତ ସ୍ଥାନେ ଦେଖିଲେ ଅନାଇ
ଦୁରାତ୍ମା ସେକ୍ସଟସ କେଉଁଠାରେ ନାହିଁ ।
ଜୟ ରୋମାନର ଜୟ ବୋଲି ବାରମ୍ବାର
ବୀରମାନେ କଲେ ପୁଣି ଆନନ୍ଦେ ହୁଙ୍କାର ।
କମ୍ପିଲା ଇଟାଲିଦେଶ କମ୍ପିଲା ଗଗନ,
ପୂରିଲା ଭୀଷଣରବେ ନୃପତିଭବନ ।
ଆନନ୍ଦରେ ବୀରମାନେ ଦେଇ କରତାଳି
ନୃପତିଭବନ ଆନନ୍ଦରେ ଦେଲେ ଜାଳି ।
[illegible] ଜଳିଲା ପାବକ
ଭସ୍ମ ହେଲା ଏହାବେଳେ ରୋମର କଳଙ୍କ ।
ସନ୍ଧ୍ୟାବେଳେ ଆସି ଏକ ପୁରାତନ ଦାସ,
ଦେଖିଲା ଯେ ରାଜଗୃହ ପକାଇ ନିଶ୍ୱାସ,
ଜଳୁଅଛି ରାଜାଙ୍କର ଶୟନଭବନ
କୁସୁମିତଲତାବୃକ୍ଷଯୁକ୍ତ ଉପବନ ।
ଗନ୍ତାଘର ପୋଡୁଅଛି ସମସ୍ତ ନଥର
ଝନାଶାଳ ଦେବପାଣିଘର ସରଘର ।
ଉଡୁଛି ଭୀଷଣ କୃଷ୍ଣବର୍ଣ୍ଣ ଧୂମରାଶି,
ସର୍ବସ୍ଥାନ ବୈଶ୍ୱାନର ପକାଉଛି ଗ୍ରାସି ।

ଫାଟୁଛି ଯେ ଘର ଭୟଙ୍କର ଶବ୍ଦ କରି,
ପ୍ରତିହିଂସା ଶବ୍ଦ ଯେମନ୍ତ ପୂରାଇଛି ନଗରୀ ।
ଜଳୁଅଛି ସ୍ଥାନେ ସ୍ଥାନେ ଭୀଷଣ ଅନଳ,
ସତୀତ୍ୱର ଅପମାନେ ଏହି ପ୍ରତିଫଳ ।
ପୋଡୁଅଛି ରାଜମଞ୍ଚ ରାଜସିଂହାସନ,
ଉଡ଼ାଉଛି ଧୂମରାଶି ପ୍ରବଳ ପବନ ।
ଏହିପରି ରାଜପୁରୀ ହୋଇଗଲା ଧ୍ୱଂସ,
ଚିରକାଳ ପାଇଁ ଗଲେ ଟାର୍କୁଇନ ବଂଶ ।
ମେସିସ* ଅଥବା ଦେବାପାଇଁ ପ୍ରତିଫଳ
ଜାଳି ଦେଇଛନ୍ତି ରାଜଗୃହରେ ଅନଳ ।
ଭାଳିଲା ସେ ବୃଦ୍ଧ ଦାସ ହୋଇଣ ଦୁଃଖିତ,
ଏହିପରି ହୁଏ ମହାପାପେ ପ୍ରାୟଶ୍ଚିତ୍ତ ।
ଭାଳନ୍ତୁ ଅଜ୍ଞାନ ମୂର୍ଖ ମାନବ ସକଳ
ପୃଥିବୀରେ ନାହିଁ ଧର୍ମାଧର୍ମ ପ୍ରତିଫଳ ।
ଟାର୍କୁଇନ ଅପକୀର୍ତ୍ତି ରହିଲା ମହୀରେ
ସାଧାରଣ ପ୍ରଜାତନ୍ତ୍ର ହେଲା ଇଟାଲିରେ ।
ସୀତାକୁ ହରଇ ମଲା ଲଙ୍କାର ରାବଣ,
ସତୀତ୍ୱ ହରାଇ ମଲେ ଟାର୍କୁଇନଗଣ ।
ସତୀକୁ ଯେ ଅପମାନ କରେ ଦୁରାଶୟ,
ତାହାର ଏପରି ଦଶା ଘଟଇ ନିଶ୍ଚୟ ।

ଶ୍ରୀ ଫକୀରମୋହନ ସେନାପତି ।

---

## ଓଡ଼ିଆ ସର୍ବନାମ ।

ଓଡ଼ିଆ ପ୍ରଥମ ପୁରୁଷ ଏକବଚନରେ 'ମୁଁ' 'ମୁହିଁ' ଓ 'ମୁଇଁ' ବ୍ୟବହୃତ ହୋଇଥାଏ । ଅପଭ୍ରଂଶ 'ହମୁଁ' ଶବ୍ଦର ଆଦ୍ୟ 'ହ'କାର କ୍ରମଶଃ ଲୁପ୍ତ ହୋଇ, ଓଡ଼ିଆ 'ମୁଁ' ସୃଷ୍ଟ ହୋଇଅଛି । ପ୍ରାକୃତରେ ଅନେକ ପଦର ଶେଷରେ ଗୋଟିଏ ନିରର୍ଥକ 'ହିଁ' ବ୍ୟବହୃତ ହୋଇଥାଏ, ଯଥାଃ— ବାଅତଉଅଥ ଏଥରବହିଁ**—ପିଙ୍ଗଳ । ଓଡ଼ିଆ 'ମୁଁ' ସହିତ ଏପରି ଗୋଟିଏ 'ହିଁ' ମିଶି 'ମୁହିଁ' ପଦ ସିଦ୍ଧ ହୋଇଥିବାର ଅନୁମାନ ହୁଏ । ଏହା ପ୍ରାକୃତ 'ଅହ୍ମେ'ରୁ ଆସିଅଛିଃ "ଅହ୍ମେହସା"— ପ୍ରାକୃତପାଦ ।

ଦ୍ୱିତୀୟପୁରୁଷ ଏକବଚନରେ 'ତୁ', 'ତୁହି'

---

* ମେସିସ=ଇଟାଲିର ପ୍ରତିହିଂସା-ଦେବତା ।

'ତୁଇ' ବ୍ୟବହୃତ ହୋଇଥାଏ । 'ତୁ' ପ୍ରାକୃତ 'ତୁହୁଁ'ରୁ ଜାତ:—ତେଜ ସହଜ ତୁହୁଁ ଚଂଚଳା ସୁନ୍ଦରୀ ତୁହ୍ମହିଁ ବଲନ୍ତୁ—ପିଙ୍ଗଳ । ଏହି 'ତୁହୁଁ'ର 'ହୁଁ'ଲୁପ୍ତ ହୋଇ ଓଡ଼ିଆରେ କେବଳ 'ତୁ'ରହି ଯାଇଅଛି । 'ତୁହି' ଶବ୍ଦ 'ମୁହିଁ'ର ଧରଣରେ ଗଠିତ ହୋଇଅଛି, ଅଥବା 'ତୁହୁଁ' ଶବ୍ଦରୁ ଆସିଅଛି । 'ତୁହି' ସାଧାରଣଙ୍କ ତୁଣ୍ଡରେ ପଡ଼ି କ୍ରମଶଃ 'ତୁଇ' ଆକାର ଧାରଣ କରିଅଛି । ପ୍ରାକୃତରେ 'ତୁ' ଅର୍ଥରେ 'ତଇ' ଓ 'ତୁହ' ମଧ୍ୟ ବ୍ୟବହୃତ ହେବାର ସ୍ଥାନେ ସ୍ଥାନେ ଦୃଷ୍ଟ ହୁଏ ଯଥା:—

ଅରେରେ ବାହହି କାହ୍ନ ଣାବ ଛୋଡ଼ି ଡଗମଗ କୁଗଇ ଣ ଦେହି ।

ତଇ ଇଥି ଣଦିହିଁ ସନ୍ତାର ଦେଇ ଜୋ ଗୃହସି ଣ୍ଣସାଲେହି—ପିଙ୍ଗଳ ।

ତୁହ ଯାଇ ସୁନ୍ଦର ଅପ୍ପଣା ପରକ୍ଷ ଦୁକ୍ଖଣ-ଥପ୍ପଣା—ପିଙ୍ଗଳ ।

ବହୁବଚନରେ ଯେଉଁ 'ତୁମ୍ଭେ' 'ତୁମେ' ବ୍ୟବହୃତ ହୋଇଥାଏ, ତାହା ପ୍ରାକୃତ 'ତୁହ୍ମେ'ରୁ ଜାତ, "ତୁହ୍ମେ, ଅହ୍ମେ ଜସା"—ପ୍ରାକୃତପାଦ ।

ସଂସ୍କୃତ 'ଇଦମ୍', 'ଏତଦ୍' ଶବ୍ଦ ପରବର୍ତ୍ତୀରେ ଓଡ଼ିଆରେ ଏ, ଏହା, ଏହୁ ଓ ଏହି ବ୍ୟବହୃତ ହୋଇଥାଏ । ପ୍ରାକୃତରେ ମଧ୍ୟ ଏସବୁ ଅବିକଳ ଦେଖାଯାଏ, ଯଥା:—

ଏହୁ ଛନ୍ଦ ସୁଲକ୍ଖଣ ଭଣଇ ଣଅକ୍ଖଣ ଜମ୍ପଇ ପିଙ୍ଗଳଣାଅ—ପିଙ୍ଗଳ ।

ଜହିଁ ବ ବସନ୍ତହି ଏକ୍କସର ଏହି ପମାଣେ ଣାମ—ପିଙ୍ଗଳ ।

ଚନ୍ଦା ଇନ୍ଦା ଏ ତାସା ହାର ଘ୍ରାସ ଏ ହଂସା —ପିଙ୍ଗଳ ।

ପୁଣ ତେରହ ଏଆରହଇ ହୋହାଲକ୍ଖଣ ଏହ—ପିଙ୍ଗଳ ।

ଏହି 'ଏହ'ରୁ 'ଏହା' ଆସିଥିବାର ଅନୁମିତ ହୁଏ । 'ଥ'କାରଠାରେ ଅକାର ହେବାର ଅନେକଠାରେ ଦେଖାଯାଏ; ଯଥା:—ସର୍ପ, ସାପ । ଓଡ଼ିଆରେ କୌଣସି କୌଣସି ଲୋକେ 'ଇହା' 'ଇଥି' ଯ୍ଥି ବ୍ୟବହାର କରିଥାନ୍ତି । 'ଇହା' ପ୍ରାକୃତ 'ଇହ'ରୁ ଓ 'ଇଥି' ବା 'ଯ୍ଥି' ପ୍ରାକୃତ 'ଇଥ୍ଥି'ରୁ ଜାତ । ଉଦାହରଣ ଦେଖନ୍ତୁ:—

*** ଇହ ଲୋଟଅଇନହରଂ ଇତଅଂ —ପିଙ୍ଗଳ ।

***ଇଥୁ ଚଣ୍ଡାଲଚରିତ ଗଣୋ—ପିଙ୍ଗଳ ।

'ଏହୁ' ଦୈନିକ ସମ୍ଭାଷଣରେ 'ହ'ର ଅକାର ଧାରଣ କରିଥାଏ; ଯଥା:—ନହୁଣିକା ।

'ଯଦ୍' ଶବ୍ଦ ପରବର୍ତ୍ତୀରେ ଓଡ଼ିଆରେ ଯା, ଯାହା ଯେ, ଯିଏ, ଯୋ, ଯେହି, ଯେହୁ, ଯେଉଁ ଇତ୍ୟାଦି ବ୍ୟବହୃତ ହୋଇଥାଏ । ଏ ସବୁ ପ୍ରାକୃତର ଅନୁକରଣ:—

ଜା ପିଙ୍ଗଲେଣ କହଣା ଣ ଣିବଦ୍ଧା ଅପ୍ପ ଗନ୍ଥମ୍ମି —ପିଙ୍ଗଳ ।

ଜୋଜୋ ଅଙ୍କା ଜହଂ ପଅହୃତଂ ତଅ ପଦ୍ମ ଭଣେହି—ପିଙ୍ଗଳ ।

ମତ୍ତସତ୍ତାହା ପିଙ୍ଗଳ ଣାଅ ଜୋ ପାଅଇ ସୋ ପଅହି ବୁଦ୍ଧାଅ—ପିଙ୍ଗଳ

ଜେ କର ସର ଉଅଆର ବିଚୂଜହୁଇ—ପିଙ୍ଗଳ

ପଢମଂ ଯା ହଂସପଅଂ ବୀଏ ସିହସ୍ସ ବିକ୍କମଂ ଜାଅ —ପିଙ୍ଗଳ ।

ଜେଇ ଜକ୍ଷିଅ ଧାଲା * * *—ପିଙ୍ଗଳ

"ଜେହ୍ୟାଦ ଯାଦୃଶାଦେଃସ୍ତୁାଦୋ ଜେଥି ଣାହି, ଜେଦେ ଣତ୍ତ, ଜେତ୍ଥ ଧର୍ଣ୍ଣ"—ପ୍ରାକୃତପାଦ ।

'ଯେଉଁ' ଶବ୍ଦ 'ଜେତ୍ଥ'ର ରୂପାନ୍ତର ମାତ୍ର । ପ୍ରାକୃତ ଷଷ୍ଠୀ ବିଭକ୍ତି ଏକବଚନରେ 'ଜାଏ' 'କାଏ' ଇତ୍ୟାଦି ବ୍ୟବହୃତ ହୋଇଥାଏ, ଯଥା—"ଇଦାପଦ୍ମେଭ୍ୟଃ କମାଦଭ୍ୟ ଉତ୍ତରସ୍ୟ ଙସଃ ସ୍ସା, ସେ, ଇତ୍ୟେତାବାଦେଶୌ ଭବତଃ : କସ୍ସା, କସେ, କାଅ, କାଏ, କାଅ, କାଇ, ଜସ୍ସା, ଜସେ, ଜାଅ, ଜାଏ, ଜାଅ, ଜାଇ", ଇତ୍ୟାଦି—ବରରୁଚି । ଏହି 'ଜାଏ' 'କାଏ' ଓଡ଼ିଆରେ ପ୍ରଥମା ବିଭକ୍ତିରେ ପ୍ରୟୋଗ ହୋଇଥିବାପରି ବୋଧ ହୁଏ । ଅନ୍ୟାନ୍ୟ

ବିଭକ୍ତିର ଶବ୍ଦ ପ୍ରଥମା ବିଭକ୍ତିରେ ପ୍ରୟୋଗ ହେବାର ପ୍ରାକୃତରେ ମଧ୍ୟ ଲକ୍ଷିତ ହୁଏ; ଯଥା— ଏ ମୁଇଁ ପୁହବି ଭମନ୍ତେ ଜଇ ପେଅ ଦେକ୍ଖିହମ'' (ଅହଂ ପୃଥିବୀଂ ଭ୍ରମନ୍ ଯଦି ପ୍ରିୟାଂ ଦ୍ରେକ୍ଷିଷ୍ୟେ)— ବିକ୍ରମୋର୍ବଶୀ ।

ଓଡ଼ିଆ 'ସେ' ପ୍ରାକୃତ 'ସୋ'ରୁ ଜାତ । ପ୍ରାକୃତରେ ଷଷ୍ଠୀ ଏକବଚନରେ 'ସେ' ପ୍ରୟୋଗ ହୋଇଥାଏ, ଯଥା—"ଅହୋ ସେ ରୂଅରେହା'' ( ଅହୋ ଅସ୍ୟା ରୂପରେଖା )—କର୍ପୂରମଞ୍ଜରୀ । କେହି କେହି କହନ୍ତି ଓଡ଼ିଆ 'ସେ' ଏଥିରୁ ଜାତ (ପ୍ରଥମା ସହିତ ଷଷ୍ଠୀର ଘନିଷ୍ଠ ସମ୍ବନ୍ଧ ଦେଖିଲେ ଏପରି ଅନୁମାନ କରିବା ଅସଙ୍ଗତ ବୋଧ ହୁଏ ନାହିଁ । 'ସେହି' ଶବ୍ଦ 'ମୁହିଁ' 'ତୁହି'ର ଧରଣରେ ଗଠିତ, 'ସେଇ' 'ସେହି'ର ରୂପାନ୍ତର ମାତ୍ର । ନତୁବା ପ୍ରାକୃତ 'ସୋଇ' ରୁ ଅନୁକୃତ:—"ଜୋ ଗୁରୁ ହୀଣଉ ସକଳ ସୋଇ ଣାମଗ୍‌ଗହଣ କୁଣେନ୍ତି' —ପିଙ୍ଗଳ । 'ଓ'କାର ଠାରେ 'ଏ'କାର ହେବାର ଅନେକଠାରେ ଦେଖାଯାଏ, ଯଥା:— ହୋଉ ହେଉ, ମୋତେ ମତେ ଓଡ଼ିଆ 'ସେମାନେ' ଏହି ସେହିର ଅନୁକରଣରେ ସୃଷ୍ଟ ହୋଇଅଛି । କେହି କେହି 'ସିଏ' ମଧ୍ୟ ବ୍ୟବହାର କରିଥାନ୍ତି । ଏହା ପ୍ରାକୃତ ଷଷ୍ଠୀ ଏକବଚନରେ ଯେଉଁ 'ତାଏ' ବ୍ୟବହୃତ ହୁଏ ତହିଁରୁ ଜାତ, ନତୁବା ତାଏ, ତୀଏର ଛାଞ୍ଚରେ ଗଠିତ । 'ସେମାନେ' ହୀନଙ୍କ ସମ୍ବୋଧନରେ 'ସେଉ' ଓ 'ସୁ'ର ଆକାର ଧାରଣ କରିଥାଏ, ଯଥା:—ସିଉଟା, ସୁଟା ।

ନପୁଂସକ ଲିଙ୍ଗରେ 'ତଦ୍' ଶବ୍ଦ ବଦଳରେ ଓଡ଼ିଆରେ 'ତା' 'ତାହା' 'ତାଆ' ବ୍ୟବହୃତ ହୋଇଥାଏ । 'ତା' ପ୍ରାକୃତର ଅବିକଳ ଅନୁକରଣ:—"ତା ଦହ ପଢ଼ମଂ ବେ ଅଠ୍‌ଠାଅଂ ତେହ ତଉଦହ ଣୀଅହିଂ କଅଣିଲଣଓ''— ପିଙ୍ଗଳ । ଓଡ଼ିଆ ଷଷ୍ଠୀ ଏକବଚନ ପୁଂଲିଙ୍ଗର ଯେଉଁ 'ତାହା' ବ୍ୟବହୃତ ହୋଇଥାଏ । ସେହି 'ତାହା' ନପୁଂସକ ଲିଙ୍ଗ ପ୍ରଥମା ବିଭକ୍ତିରେ ପ୍ରୟୋଗ ହୋଇଅଛି । 'ତାହା'ରୁ 'ତାଅ' ଜାତ ।

'କିମ୍' ଶବ୍ଦ ପରିବର୍ତ୍ତରେ ଓଡ଼ିଆରେ କି, କିଏ, କେ, କେହି, କେହୁ, କେଉଁ, କୋ, କିସ, କଅଣ, କଅଣ, କେଉଁଣସି, କୌଣସି, କେବଣ ଇତ୍ୟାଦି ବ୍ୟବହୃତ ହୋଇଥାଏ । ଏଥିରୁ ଅନେକ ପ୍ରାକୃତରୁ ଆସିଅଛି:—

ଜଇ ତୋପଇ କଣ୍ଣେରେନ୍ଦବସ ରଣ କୋ ହର
କୋ ହର ଦନ୍ତିବସ—ପିଙ୍ଗଳ

କିଂ କଜ୍ଜଂ; ତା କିଂ ଣ—କର୍ପୂରମଞ୍ଜରୀ । (କିଂ ରୁ କି ଜାତ)

"କିମଃ କୋଭବତ ସ୍ୟାଦୌନତ୍ରଷ୍ଟପରଯ୍ୟୋଃ :—କୋ, କେ''—ହେମଚନ୍ଦ୍ର । "କେହ୍ୟାଦର୍ଥା-ଦୃଶାଦେଃ ସ୍ତ୍ର୍ୟାଦୌ : କୀଦୃକ୍—କେହୀ; ଈଦୃକ୍ —ଏହୀ''—ପ୍ରାକୃତପାଦ । (ଓଡ଼ିଆରେ ମଧ୍ୟ 'କୀଦୃକ୍' ଅର୍ଥରେ ପଦ୍ୟକାବ୍ୟରେ 'କେହି' ବ୍ୟବହାର ହୋଇଥାଏ: "ଆହା ମୁ ବଞ୍ଚିବି କେହି ରେ'') । "କୀସୋ, କୀଣୋ, ପ୍ରଶ୍ନେ''—ପ୍ରାକୃତ-ପାଦ ।

'କଣୋ'ରୁ 'କଆଣ' 'କଅଣ' ଆସିଥିବାର ଅନୁମିତ ହୁଏ । 'ଯେତେ' 'ସେତେ' ର ଅନୁକରଣରେ 'କେତେ' ଓ 'ଯେଉଁ'ର ଅନୁକରଣରେ 'କେଉଁ', ସୃଷ୍ଟ ।

ପ୍ରାକୃତରେ 'କୋଉଣ' (କଃପୁନଃ), କାଉଣ (କାପୁନଃ), ସୋଉଣ (ସଃପୁନଃ), କଉଣ (କିଂପୁନଃ) ଇତ୍ୟାଦି ବ୍ୟବହୃତ ହୋଇଥାଏ । (ଓଡ଼ିଆରେ ମଧ୍ୟ ଏପରି ପ୍ରୟୋଗ ଅନେକଠାରେ ଦେଖାଯାଏ, ଯଥା—'ତୁ ପୁଣି ଯିବୁ ନନ୍ଦପୁର'; ମୁ ପୁଣି ଗାଁକୁ ଯିବି ଇତ୍ୟାଦି) । 'କୋଉଣ'ରୁ 'କଅଣ' 'କଉଣ'ରୁ 'କଅଣ' ଆସିଥିବାର କେହି କେହି ଅନୁମାନ କରନ୍ତି । 'କେବଣ' ଶବ୍ଦ କେଉଣରୁ ଜାତ । ବୀମସ୍ ସାହେବ କହନ୍ତି, 'କୌଣସି' ଶବ୍ଦ, 'କୋ+ଉଣ+ସେ'(who forsooth is he)ରୁ ଆସିଅଛି । ତାହାହେଲେ

'ତେ' ସହିତ 'ହିଣ + ସେ' ମିଶି 'କେହିଣସି' ଶବ୍ଦ ହୋଇଥିବ ।

ଓଡ଼ିଆ ଏତେ, କେତେ, ବା ସେତେ, ତେତେ, ଓ ଯେତେ, ପ୍ରାକୃତ ଏତ୍ତିଅଂ, କେତ୍ତିଅଂ, ତେତ୍ତିଅଂ ଓ ଜେତ୍ତିଅଂ ଅଥବା ସଂସ୍କୃତ ଇୟତ୍, ତାବତ୍, କିୟତ୍, ଯାବତ୍‌ରୁ ଆସିଅଛି । ଏତେ, କେତେ, ତେତେ, ଯେତେ, ସହିତ 'ଗୋଟି' ଅର୍ଥରେ 'ଏକ' ଶବ୍ଦ ମିଶି ଏତେକ, କେତେକ ବା ସେତେକ, ତେତେକ, ଯେତେକ ହୋଇଅଛି । ଆଦର ଅର୍ଥରେ ଏହି ଶବ୍ଦ ସବୁ 'ଇ'କାରାନ୍ତ ହୋଇଥାଏ । ପ୍ରାକୃତରେ 'ଯେତ୍ତିକା', 'ତେତ୍ତିକା' ଇତ୍ୟାଦି ପ୍ରୟୋଗ ଦେଖାଯାଏ । ପୂର୍ବ ବର୍ଣ୍ଣ (ତି) ଇକାରାନ୍ତ ଥିବାରୁ, ଶେଷବର୍ଣ୍ଣ (କା) ମଧ୍ୟ ଇକାରାନ୍ତ ହୋଇ ଓଡ଼ିଆରେ ଯେତିକି, ତେତିକି ହୋଇଥିବାର ମଧ୍ୟ ପ୍ରତୀୟମାନ ହୁଏ ।

'ଯାବତ୍' ଶବ୍ଦରୁ ଓଡ଼ିଆ 'ଯାବନ୍ତ,' ପ୍ରାକୃତ 'ଯବ୍ବ' ରୁ ଓଡ଼ିଆ 'ସବୁ' ଉତ୍ପନ୍ନ ।

'ଆପଣ' ଶବ୍ଦ ପ୍ରାକୃତର ଅନୁକରଣ:— "ଅସ୍ମାଦେରପ୍ପଣାଦୟଃ" — ପ୍ରାକୃତପାଦ । 'ଅପର' ପରିବର୍ତ୍ତରେ ଓଡ଼ିଆରେ 'ଅବର' 'ଅଉ' ଓ 'ଆଉ', 'ଅଉର' ବ୍ୟବହୃତ ହୋଇଥାଏ । 'ଆବର' ପ୍ରାକୃତ 'ଅବରୁ'ରୁ ଉତ୍ପନ୍ନ । ଯଥା:— ସିର ହୁଇ ଅବେ 'ଅବରୁ' ଭଗ୍ଗୁ ଧଣ୍ଡ ମେରୁ ଣିମଚ୍ଚ—ପିଙ୍ଗଳ । 'ଆଉର' ଅବର ଶବ୍ଦର ରୂପାନ୍ତର । 'ଅଉ' ଓ 'ଆଉ' ପ୍ରାକୃତ 'ଅରୁ'ରୁ ଜାତ:—ସମ ବାରହ ଅରୁ ଏକଦହ ସଅସେଣୁ ଭଣ ତେଥୁ—ପିଙ୍ଗଳ । 'କିଚ୍ଛୁ' ଓ 'ବହୁତ' ପ୍ରାକୃତର ଅବିକଳ ଅନୁକରଣ, ଯଥା:— ହିଅସାଣ ଜଇମିତ୍ତ ଦଣ୍ଡ କିଚ୍ଛୁ ମନ ଦିଣ୍ଣାବଇ— ପିଙ୍ଗଳ । ପୁତ୍ତ ପବିତ୍ତ ବହୁତ୍ତ ଧଣା ଭତ୍ତି କୁଟମ୍ବିଣି ସୁଦ୍ଧମଣା—ପିଙ୍ଗଳ ।

'କିଚ୍ଛୁ'ରୁ 'କିଛି' ଆସିଅଛି । ଅଥବା ପ୍ରାକୃତ 'କିଞ୍ଚି' ଶବ୍ଦରୁ 'କିଛି' ଉତ୍ପନ୍ନ ହୋଇଅଛି ।

'ହୁନ୍ଦେଁ' ଓ 'ତେନ୍ଦେଁ' ପ୍ରାକୃତ 'ହୋଣ୍ହିଂ', 'ତେଣ୍ହିଂ'ରୁ ଜାତ: "ହୋଣ୍ହିଂ, ତେଣ୍ହିଂ ତସ୍ ଷଷ୍ଠ୍ୟାଂ—ହୋଣହିଂ ଅଚ୍ଛନ୍ତି, ତେଣ୍ହିଂ ଭଣନ୍ତି ପ୍ରାକୃତପାଦ" । ଓଡ଼ିଆମାନଙ୍କ ତୁଣ୍ଡରେ ପଡ଼ି 'ଣ୍' ଠାରେ ଚନ୍ଦ୍ରବିନ୍ଦୁ, 'ହ୍'ଠାରେ ଦେ ହୋଇଯାଇ ଅଛି । 'ଇକାର'ଠାରେ ଏକାର ହେବାର ଅନେକଠାରେ ଦେଖାଯାଏ, ଯଥା:— ତିଂନ୍ତିଡୀ ତେନ୍ତୁଳୀ ।

ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ।

## ଐତିହାସିକ ଅନୁସନ୍ଧାନ—ଗଡ଼ପଦାର ଭୂୟାଁ ପରିବାର ।

ଜାତୀୟ ଜୀବନରେ ଇତିହାସର ସ୍ଥାନ ଅତି ଉଚ୍ଚ । ତାହାର ଉପକାରିତା ଓ ମୂଲ୍ୟ ନିରୂପଣ କରିବା ଏ କ୍ଷୁଦ୍ର ପ୍ରବନ୍ଧର ଉଦ୍ଦେଶ୍ୟ ନୁହେ । ସଂକ୍ଷେପରେ ଏତିକି ମାତ୍ର ନିର୍ଦ୍ଦେଶ କଲେ ଯଥେଷ୍ଟ ହେବ ଯେ ବ୍ୟକ୍ତିଗତ ମହତ୍ତ୍ୱ ଓ ସଫଳ ଜୀବନର ପବିତ୍ର ଆଖ୍ୟାୟିକା ଯେପରି କ୍ଷୁଦ୍ର ଓ ସୀମାବଦ୍ଧ ପାରିବାରିକ ବା ସାମାଜିକ ଜୀବନରେ ବିଶେଷଭାବରେ କାର୍ଯ୍ୟ କରେ, ଜାତୀୟ ଇତିହାସ ସେହିପରି ଜାତୀୟ ଜୀବନର ଅଭିବୃଦ୍ଧି ସାଧନରେ ସହାୟତା କରେ । ଅତି ପୂର୍ବ ପ୍ରାଚୀନ ପ୍ରାଚୀନାମାନେ ଅସ୍ମମାନଙ୍କ ଦେଶରେ ବାଳକବାଳିକାମାନଙ୍କୁ ଉନ୍ନତ କରିବା ନିମିତ୍ତ ସେମାନଙ୍କ ସମ୍ମୁଖରେ ନିଜ ନିଜ ବଂଶର ପ୍ରାଚୀନ ଗୌରବ, ମର୍ଯ୍ୟାଦା ଓ କୀର୍ତ୍ତିକଳାପର ଯଶୋଗାନ କରିଥାନ୍ତି । ଏହା ଶୁଭଲକ୍ଷଣ ଅଟେ । ଯେଉଁ ଜାତି ମଧ୍ୟରେ ଏହିକ ପ୍ରଥା ନାହିଁ ତାହା ମୃତ, ତାହାର ଭାବୀ ଉନ୍ନତିର ପଥ ଏକାବେଳକେ ରୁଦ୍ଧ । କେବଳ ଇତିହାସ-ଦର୍ପଣରେ ମୁଖ ଦେଖି ପୃଥିବୀର ଉନ୍ନତ ଜାତିମାନେ ଆଜି ଏଡ଼େ ଶ୍ରେଷ୍ଠ ପଦବୀରେ ଅଧିରୂଢ଼ ହୋଇଅଛନ୍ତି ।

ପାଶ୍ଚାତ୍ୟ ଭୂଖଣ୍ଡବାସୀ ଗୋଟିଏ ଗୋଟିଏ ଐତିହାସିକ ଘଟଣାକୁ ଚିରସ୍ମରଣୀୟ କରି ରଖିବା ଲାଗି ତାହାକୁ ନାନା ପ୍ରକାରେ ଜୀବନ୍ତ ରୂପ ଦେଇ ପୂଜା କରୁଅଛନ୍ତି । ଏ ବିଷୟରେ ସେମାନେ ପୌତ୍ତଳିକତାରେ ଅବକ୍ଷେପ୍ୟ ହିନ୍ଦୁ ଜାତିକୁ ବଳି ଯାଇଅଛନ୍ତି । ସେମାନଙ୍କ ଦେଶରେ କେତେ ସ୍ତମ୍ଭ, କେତେ ଅଟ୍ଟାଳିକା, କେତେ ଉପବନ, କେତେ ମନ୍ଦିର ଐତିହାସିକ ନାମରେ ନାମିତ । ବାଳକ ବାଳିକା ବିଦ୍ୟାଳୟରେ ପ୍ରବେଶ କଲାମାତ୍ରେ ବର୍ଣ୍ଣପରିଚୟ ସଙ୍ଗେ ସଙ୍ଗେ ଜାତୀୟ ଇତିବୃତ୍ତର ସହଜ ସହଜ ଗଳ୍ପ ପଢ଼ନ୍ତି, ପ୍ରାଚୀନ ଆଦର୍ଶ ସହିତ ସୁପରିଚିତ ହୁଅନ୍ତି । ସେମାନଙ୍କର ଜାତୀୟ ଉନ୍ନତି ଓ ଅବନତିର ପ୍ରତ୍ୟେକ ଘଟଣା ଲିପିବଦ୍ଧ ହୋଇ ରହିଅଛି । ତଥାପି ସେଠାରେ ଅନୁସନ୍ଧାନ ଓ ଗବେଷଣାର ବିରାମ ନାହିଁ । ପ୍ରତିଦିନ ନୂତନ ନୂତନ ତତ୍ତ୍ୱମାନ ଆବିଷ୍କୃତ ଓ ଆଲୋଚିତ ହୋଇ ଐତିହାସିକ ଭଣ୍ଡାରରେ ସଯତ୍ନରେ ସଞ୍ଚିତ ହେଉଅଛି । ଉନ୍ନତିର ମାର୍ଗ କ୍ରମଶଃ ପ୍ରଶସ୍ତତର ହେଉଅଛି । ଭାରତବର୍ଷ ଓ ଭାରତବାସୀର ଇତିହାସ ନାହିଁ । ଏହି ଅପଯଶ ବହୁ କାଳରୁ ଆମ୍ଭମାନଙ୍କ ଦେଶରେ ଘୋଷିତ ହୋଇ ଆସୁଅଛି । କଥାଟା ମଧ୍ୟରେ ସାରାସାର ଦୁଇ ଅଛି । ପ୍ରାଚ୍ୟ ପ୍ରତୀଚ୍ୟ ଉଭୟେ ଭିନ୍ନପ୍ରକୃତିକ । ସେଠାରେ ଯେଉଁ ଅର୍ଥରେ ଇତିହାସ ଅଛି, ଏଠାରେ ସେ ଅର୍ଥରେ ନାହିଁ । ମାତ୍ର ଏକାବେଳକେ ଯେ ଆମ୍ଭମାନଙ୍କର ଇତିହାସ ନାହିଁ ତାହା ବୋଲିବୁଁ କିପ୍ରକାରେ ? ସେଠାରେ ଯାହା ଲିପିବଦ୍ଧ, ଏଠାରେ ତାହା ପ୍ରସ୍ତର ଓ ପର୍ବତଗାତ୍ରରେ ଖୋଦିତ ଓ ଅଙ୍କିତ । ମାତ୍ର ତଥାପି ପ୍ରଭେଦ ଅଛି ଏବଂ ଅଭାବ ମଧ୍ୟ ଅଳ୍ପ ନୁହେ । ପାଶ୍ଚାତ୍ୟ ଜାତି ଯେପରି ପ୍ରତ୍ୟେକ ଘଟଣାକୁ ଲିପିବଦ୍ଧ କରି ରଖେ ଆମ୍ଭେମାନେ ସେପରି କରୁ ନାହୁଁ । ହିନ୍ଦୁର ଦୃଷ୍ଟି ଅନ୍ତର୍ମୁଖୀନ, ପାଶ୍ଚାତ୍ୟ ଜାତିର ଦୃଷ୍ଟି ବହିର୍ମୁଖୀନ । ମନସ୍ତତ୍ତ୍ୱର ସୂକ୍ଷ୍ମ ଇତିବୃତ୍ତ ଯେପରି ଆମ୍ଭମାନଙ୍କ ପ୍ରାଚୀନ ସାହିତ୍ୟାଦିରେ ସୁରକ୍ଷିତ ଅଛି, ଯୁଦ୍ଧବିଗ୍ରହାଦି ବା ଅନ୍ୟ ବ୍ୟବହାରାଦିର ବିବରଣ ସେପରି ଲିପିବଦ୍ଧ ନାହିଁ । ଯାହା ଅଛି ତାହା ପୁରାଣ, କାବ୍ୟ ଓ ନାଟକାଦିର ଗର୍ଭ ମଧ୍ୟରେ ଅତି ପ୍ରଚ୍ଛନ୍ନ ଭାବରେ ନିହିତ ରହିଅଛି । ରାମାୟଣ ମହାଭାରତର ଉପାଖ୍ୟାନ ଅତି ସଭ୍ୟ ଯୁଗର ବର୍ଣ୍ଣନା ଓ ଚିତ୍ରମାନଙ୍କରେ ପୂର୍ଣ୍ଣ । ମାତ୍ର ସେମାନଙ୍କର ଐତିହାସିକ ଭିତ୍ତିର ପୂର୍ଣ୍ଣାଭାବ । ଅପେକ୍ଷାକୃତ ପରବର୍ତ୍ତୀ କାଳମାନଙ୍କରେ ରଚିତ ନାଟକ, ସଂହିତା, ପୁରାଣାଦିରେ ନିହିତ ଗୀତ, ନୀତି, ଆଚାର ବ୍ୟବହାରାଦିର ଆଲୋକ ଏତେ କ୍ଷୀଣ ଯେ ତାହା ଆମ୍ଭମାନଙ୍କ ଜାତୀୟ ଜୀବନରେ ପ୍ରକୃତ ଭାବରେ କାର୍ଯ୍ୟ କରି ପାରୁ ନାହିଁ । କୀର୍ତ୍ତିସ୍ତମ୍ଭ, ମନ୍ଦିର, ଗହ୍ୱରାଦିର ଗାତ୍ରରେ ଅଙ୍କିତ ବା ଖୋଦିତ ଲିପିରାଶି କାଳର ପ୍ରଭାବରେ କ୍ରମାଗତ ଧ୍ୱଂସ ପ୍ରାପ୍ତ ହେଉଅଛି । ଏହିଠାରେ ଆମ୍ଭମାନଙ୍କର ପ୍ରଗାଢ଼ ଅନୁସନ୍ଧାନ ଓ ଆଲୋଚନାର ଏକାନ୍ତ ଆବଶ୍ୟକତା । ଆବଶ୍ୟକତାଟା ଅନେକଦିନରୁ ଅନୁଭୂତ ହେଲାଣି । କାର୍ଯ୍ୟ ମଧ୍ୟ ଆରମ୍ଭ ହୋଇଅଛି । ମାତ୍ର ଯେଉଁ ପରିମାଣରେ ହେବା ବାଞ୍ଛନୀୟ ତାହା ହୋଇ ନାହିଁ । ଶକ୍ତିଶାଳୀ ପୁରୁଷର ମଧ୍ୟ ଯଥେଷ୍ଟ ଅଭାବ ଅଛି । ପାଶ୍ଚାତ୍ୟ ଜାତିର ସୁକଲ୍ୟାଣରୁ ଆମ୍ଭମାନଙ୍କର ଦୃଷ୍ଟି ଯେ ଏଣିକି ଆକୃଷ୍ଟ ହୋଇଅଛି ଏହା ଆମ୍ଭମାନଙ୍କର ପରମ ସୌଭାଗ୍ୟର ବିଷୟ ବୋଲିବାକୁ ହେବ ।

ଭାରତର ଜାତୀୟ ଇତିହାସରେ କ୍ଷୁଦ୍ର ଓ ନଗଣ୍ୟ ଉତ୍କଳଖଣ୍ଡର ସ୍ଥାନ ଅତି ଉଚ୍ଚ । ମହା-ମହାଭାରତାଦିରେ ଉତ୍କଳଙ୍କର ନାମ ଓ କୀର୍ତ୍ତିକଳାପ ଯଥେଷ୍ଟ ପରିମାଣରେ ଲିଖିତ ହୋଇଅଛି । ପୁଣି ଖ୍ରୀଷ୍ଟୀୟ ଇତିହାସ ଓଡ଼ିଶାର ଯେପରି ଅଛି ଭାରତର ଅନ୍ୟାନ୍ୟ ଭିନ୍ନ ପ୍ରଦେଶମାନଙ୍କର ସେପରି ତାହା ନାହିଁ । ଏ ବିଷୟରେ ଉତ୍କଳବାସିଙ୍କ ଭାଗ୍ୟବାନ ମଣିବାକୁ

ହେବ । ମାତ୍ର ତାହା ବୋଲି ଅନୁସନ୍ଧାନ ଓ ଗବେଷଣାକୁ ଉପେକ୍ଷା କଲେ ଚଳିବ ନାହିଁ । ଏଥିପୂର୍ବେ ହଣ୍ଟର ଏବଂ ରାଜା ରାଜେନ୍ଦ୍ରଲାଲ ମିତ୍ର ପ୍ରଭୃତି ମନୀଷୀମାନେ ପ୍ରଗାଢ଼ ଅଧ୍ୟବସାୟ ଏବଂ ଗଭୀର ଗବେଷଣା ସହକାରେ ଓଡ଼ିଶା ସମ୍ବନ୍ଧରେ ଅନେକ ଐତିହାସିକ ତଥ୍ୟ ପ୍ରକାଶ କରି ଯାଇ ଅଛନ୍ତି । ମାତ୍ର ଦୁଃଖର ବିଷୟ ଏପର୍ଯ୍ୟନ୍ତ କୌଣସି ଶିକ୍ଷିତ ଉତ୍କଳ ସନ୍ତାନ ଏବିଷୟରେ ହସ୍ତକ୍ଷେପ ସୁଦ୍ଧା କରି ନ ଥିଲେ । ସୁଖର ବିଷୟ ଜୀବନର ପଶ୍ଚିମ ସୀମାରେ ଅବସ୍ଥିତ ବାଲେଶ୍ୱରର ସ୍ୱନାମଧନ୍ୟ ରାଜାବାହାଦୁର ଶ୍ରୀଯୁକ୍ତ ବୈକୁଣ୍ଠନାଥ ଦେ ମହୋଦୟ ଏ ବିଷୟରେ ହସ୍ତକ୍ଷେପ କରି ନିର୍ଜୀବ ଓଡ଼ିଶାବାସିଙ୍କ ସମ୍ମୁଖରେ ଗୋଟିଏ ନୂତନ ଆଦର୍ଶ ସ୍ଥାପନ କରିଅଛନ୍ତି । ଶିକ୍ଷିତ ଉତ୍କଳବାସୀ ଏବଂ ଉତ୍କଳ-ସାହିତ୍ୟ-ସମାଜ ଏଥିରୁ କିଛି ଶିକ୍ଷା କରିବେ କି ? ମାନ୍ୟବର ମୟୂରଭଞ୍ଜାଧିପତିପ୍ରମୁଖ ରାଜନ୍ୟବର ଶିକ୍ଷିତ ରାଜନ୍ୟବୃନ୍ଦ ଉପଯୁକ୍ତ ବୃତ୍ତି ସ୍ଥାପନଦ୍ୱାରା ଏ ବିଷୟରେ ଶିକ୍ଷିତ ଉତ୍କଳସନ୍ତାନମାନଙ୍କୁ ଉତ୍ସାହିତ ଓ ପ୍ରବୃତ୍ତ କରିବେ କି ? ଗତ ଅତୀତ ଜାତୀୟତାର ଯେଉଁ ଶୁଭସମ୍ବାଦମାନ ଆସି ପ୍ରାଣକୁ ପୁଲକିତ କରୁଅଛି ତହିଁରେ ଜାତୀୟ ଇତିହାସର ଅଭାବ ଓ ଅପୂର୍ଣ୍ଣତା କଥା ମନେ କଲେ ପ୍ରାଣ ଅବସନ୍ନ ହୋଇପଡ଼େ । ହେ ଉତ୍କଳସନ୍ତାନବୃନ୍ଦ ! ଉପଯୁକ୍ତ ଶକ୍ତି ପ୍ରଦାନ କରି ଏ ବିଷୟରେ ଟିକିଏ ସଜୀବତାର ଲକ୍ଷଣ ପ୍ରକାଶ କରିବ କି ? ମନେ ରଖିବ କି ଜାତୀୟ ଇତିହାସ ଜାତୀୟ ଉନ୍ନତିର ଦର୍ପଣସ୍ୱରୂପ ?

ରାଜାବାହାଦୁର ମହୋଦୟ ଅନେକ ପରିଶ୍ରମ ସ୍ୱୀକାର କରି ପ୍ରଭୂତ ଅନୁସନ୍ଧାନଦ୍ୱାରା ବାଲେଶ୍ୱରସ୍ଥ ଗଡ଼ପଦାର କଂଖାର ଭୂୟାଁପରିବାରରେ ଖଣ୍ଡିଏ ସଂକ୍ଷିପ୍ତ ଇତିହାସ ପ୍ରକାଶ କରିଅଛନ୍ତି । ଏହା ୧୮୩୨—୩୮ ସାଲର ଓଡ଼ିଶା ବନ୍ଦୋବସ୍ତର ରୁଜଦାଡ଼ କାଗଜରୁ ସଂକଳିତ ହୋଇଅଛି । ପୁସ୍ତିକାର ଶେଷରେ ଭୂୟାଁପରିବାରର ବଂଶତାଲିକା ଏବଂ ଓଡ଼ିଶାର ମହାରାଜା ଶ୍ରୀ ପୁରୁଷୋତ୍ତମ ଦେବଙ୍କ ପ୍ରଦତ୍ତ ଖଣ୍ଡିଏ ଓଡ଼ିଆ ସନନ୍ଦପତ୍ରର ନକଲ ପ୍ରଦତ୍ତ ହୋଇଅଛି । ଏହି ନକଲଟି ଏଥି ପୂର୍ବେ ସର୍ବପ୍ରଥମେ ଶ୍ରୀଯୁକ୍ତ ମଧୁସୂଦନ ଦାଶ ବି. ଏ. ମହୋଦୟ "ଉତ୍କଳ ସାହିତ୍ୟ''ରେ ପ୍ରକାଶ କରିଥିଲେ । ତାହା ଦୁଇ ଶତାବ୍ଦୀ ପୂର୍ବେ ଖୋଦିତ । ଏଥି ମଧ୍ୟରେ ଓଡ଼ିଆ ଲିପିମାନ କେତେ ପରିବର୍ତ୍ତନ ମଧ୍ୟ ଦେଇ ଅମ୍ଭମାନଙ୍କ ନିକଟରେ ଉପସ୍ଥିତ ହୋଇଅଛି ତାହା ଦାଶ ମହାଶୟ ଆପଣା ପ୍ରବନ୍ଧରେ ଦେଖାଇବାକୁ ଚେଷ୍ଟା କରିଥିଲେ । ପୁସ୍ତିକା ଖଣ୍ଡିକ ଓଡ଼ିଆ ଭାଷାରେ ଲିଖିତ ନ ହୋଇ ତାହିଁକି ଇଂରାଜୀ ଭାଷାରେ ଲିଖିତ ହେଲା ଅମ୍ଭେମାନେ ବୁଝି ପାରିଲୁଁ ନାହିଁ । ଯାହା ହେଉ, ରାଜାବାହାଦୁର ଭବିଷ୍ୟତରେ ବାଲେଶ୍ୱର ଜିଲ୍ଲାର ଏହିପରି ଆଉ କେତେକ ଇତିହାସ-ପ୍ରସିଦ୍ଧ ପରିବାରର ବିବରଣ ଅମ୍ଭମାନଙ୍କୁ ଉପହାର ଦେବେ ବୋଲି ଅଙ୍ଗୀକାର କରିଅଛନ୍ତି । ଜଗଦୀଶ୍ୱରଙ୍କ ନିକଟରେ ଅମ୍ଭମାନଙ୍କର ଐକାନ୍ତିକ ପ୍ରାର୍ଥନା ଏହି ଯେ ସେ ରାଜାବାହାଦୁରଙ୍କୁ ଅଙ୍ଗୀକାର ପାଳନ ନିମିତ୍ତ ଦୀର୍ଘଜୀବନ ଓ ଅଖଣ୍ଡ ସ୍ୱାସ୍ଥ୍ୟ ପ୍ରଦାନ କରନ୍ତୁ । ରାଜାବାହାଦୁର ମହୋଦୟଙ୍କୁ ଅମ୍ଭମାନଙ୍କର ବିନୀତ ପ୍ରାର୍ଥନା ଏହି କି ସେ ପରବର୍ତ୍ତୀ ଅଙ୍ଗୀକୃତ ବିବରଣଗୁଡ଼ିକ ଓଡ଼ିଆ ଭାଷାରେ ପ୍ରକାଶ କରିବାକୁ ଯତ୍ନବାନ୍ ହେବେ । ଜାତୀୟ ଜୀବନର ଉନ୍ମେଷ ସଙ୍ଗେ ଜାତୀୟ ସାହିତ୍ୟ ଓ ମାତୃଭାଷାର ଘନିଷ୍ଠ ସମ୍ବନ୍ଧ ରହିଅଛି । ସେମାନଙ୍କୁ ଉପେକ୍ଷା କଲେ ଚଳିବ ନାହିଁ । ବରଂ ସେମାନଙ୍କ ଭଣ୍ଡାର ସୁଶୋଭିତ କରିବା ଲାଗି ସର୍ବପ୍ରକାରେ ଚେଷ୍ଟାନ୍ୱିତ ହେବା ଏକାନ୍ତ ବାଞ୍ଛନୀୟ । ଏ ବିଷୟରେ ଶିକ୍ଷିତ ଉତ୍କଳବାସୀ ଏ ପର୍ଯ୍ୟନ୍ତ ଘୋର ଉଦାସୀନତା ପ୍ରଦର୍ଶନ କରି ଆସିଅଛନ୍ତି । ଆଉ ନିଦ୍ରାମଗ୍ନ ରହିବାର ବେଳ ନାହିଁ । ଜାଗିବାକୁ ହେବ । ସାହିତ୍ୟ-

ଲକ୍ଷ୍ମୀଙ୍କର ପୂଜାର ସର୍ବୋପକରଣର ଆୟୋଜନ କରିବାକୁ ହେବ ।

ଭୂୟାଁପରିବାରର ପ୍ରକାଶିତ ସଂକ୍ଷିପ୍ତ ବିବରଣର ସାରାଂଶ ପାଠକମାନଙ୍କୁ ଉପହାର ଦେଉଅଛୁଁ । ଏହି ପରିବାରର ସ୍ଥାପୟିତା ପଣ୍ଡିତ ସର୍ବେଶ୍ୱର ଭଟ୍ଟ । ଗଡ଼ପଦାର ପରିମାଣ ଫଳ ୧୦୮୧୫ ଏକର ଏବଂ ୧୯୦୧ ସେନ୍‌ସେ ଅନୁଯାୟୀ ଲୋକସଂଖ୍ୟା ୮୯୫୦ ଅଟେ । ପଞ୍ଚଦଶ ଶତାବ୍ଦିର ଶେଷ ଭାଗରେ ପଣ୍ଡିତ ମହାଶୟ ଦ୍ରାବିଡ଼ ଅଞ୍ଚଳରୁ ଆସି ଓଡ଼ିଶାରେ ବସତି କରିଥିଲେ । ତତ୍କାଳୀନ ଓଡ଼ିଶାର ରାଜା ଶ୍ରୀ ପୁରୁଷୋତ୍ତମ ଦେବ ଏହାଙ୍କର ଅସାଧାରଣ ପାଣ୍ଡିତ୍ୟ ଓ ଶାସ୍ତ୍ରାଦିରେ ଗଭୀର ଜ୍ଞାନ ଥିବାର ଦେଖି ତାହାଙ୍କୁ ଆପଣାର ଗୁରୁ ପଦରେ ବରଣ କରିଥିଲେ । ସେକାଳରେ ପ୍ରତ୍ୟେକ ଧର୍ମ କାର୍ଯ୍ୟ ବେଳେ ରାଜାମାନେ ବ୍ରାହ୍ମଣମାନଙ୍କୁ ଭୂମି ଦାନ କରୁଥିଲେ । ଏକ ସମୟରେ ଚନ୍ଦ୍ରଗ୍ରହଣ ବେଳେ ମହାରାଜ ଗଙ୍ଗାସ୍ନାନକୁ ବିଜେ କରିଥିଲେ । ସେଠାରେ ବ୍ରାହ୍ମଣପଣ୍ଡିତମାନଙ୍କୁ ସେ ଅକାତରେ ଅନେକ ଧନ ଦାନ କରି ସର୍ବେଶ୍ୱରଙ୍କୁ ଖଣ୍ଡିଏ ନିଷ୍କର ଭୂମି ଦେବେ ବୋଲି ପ୍ରତିଶ୍ରୁତ ହୋଇ ଥିଲେ । ଗ୍ରହଣ ପରବର୍ତ୍ତୀ ଅଷ୍ଟମ ଦିବସରେ ମହାରାଜ ଗଡ଼ପଦା ମୌଜା ଖଣ୍ଡିକ ସର୍ବେଶ୍ୱରଙ୍କୁ ଦାନ କଲେ ।

କେତେକ ପୁରୁଷ ପର୍ଯ୍ୟନ୍ତ ଏହି ପରିବାର ବୈଦିକ ଧର୍ମରେ ବିଶ୍ୱାସୀ ଥିଲେ । ଅଷ୍ଟମ ପୁରୁଷ ସର୍ବେଶ୍ୱର ଭଟ୍ଟଙ୍କ ଅମଳରେ ଏହି ବଂଶର ଧର୍ମ-ପରିବର୍ତ୍ତନ ଘଟିଲା । ସର୍ବେଶ୍ୱର ଭଟ୍ଟ କୌଣସି କାରଣରୁ ତାତ୍କାଳିକ ମୟୂରଭଞ୍ଜାଧିପତି ରାଜା ଦାମୋଦର ଭଞ୍ଜଙ୍କର ବିରାଗଭାଜନ ହେବାରୁ ସେ ତାଙ୍କ ସମ୍ପତ୍ତିକୁ ଛଡ଼ାଇ ନେଲେ । ତେଣୁ ଅନନ୍ୟୋପାୟ ହୋଇ ସର୍ବେଶ୍ୱର ଦିଲ୍ଲୀ ସମ୍ରାଟ୍ ଆରଙ୍ଗଜେବଙ୍କ ଶରଣାପନ୍ନ ହେଲେ । ସମ୍ରାଟ୍ ତାଙ୍କ ଉପରେ ପ୍ରସନ୍ନ ହୋଇ ତାଙ୍କର ବଙ୍ଗଳାର ନବାବଙ୍କୁ ରାଜା ଦାମୋଦରଙ୍କ ଶାସନ କରି ସର୍ବେଶ୍ୱରଙ୍କ ସମ୍ପତ୍ତି ତାଙ୍କୁ ପ୍ରତ୍ୟର୍ପଣ କରାଇବା ନିମିତ୍ତ ରାଜକୀୟ ଆଦେଶ ଦେଲେ । ନବାବ ଯୁଦ୍ଧଦ୍ୱାରା ମୟୂରଭଞ୍ଜାଧିପତିଙ୍କୁ ପରାଜିତ କରି ଗଡ଼ପଦା ଉଦ୍ଧାର କଲେ ଏବଂ ସର୍ବେଶ୍ୱରଙ୍କୁ ତାହା ପ୍ରତ୍ୟର୍ପଣ କରିବା ପୂର୍ବରୁ ଯୁଦ୍ଧର ବ୍ୟୟ ଦେବାକୁ କହିଲେ । ସର୍ବେଶ୍ୱରଙ୍କ ମୁଣ୍ଡରେ ବଜ୍ରପାତ ହେଲା । ସେ ପୁଣି ସମ୍ରାଟଙ୍କ ଶରଣାପନ୍ନ ହେଲେ । ମାତ୍ର ସମ୍ରାଟ୍ ଆଉ ଗୋଟିଏ ପ୍ରସ୍ତାବ ଉପସ୍ଥିତ କଲେ । ସେ ସର୍ବେଶ୍ୱରଙ୍କୁ ମୁସଲମାନଧର୍ମ ଗ୍ରହଣ କରିବାକୁ କହିଲେ । ସର୍ବେଶ୍ୱର ପାରସିକ ଓ ଆରବୀ ଭାଷାମାନଙ୍କରେ ଏବଂ ମହମ୍ମଦୀୟ ଧର୍ମରେ ସୁପଣ୍ଡିତ ଥିଲେ । ତାଙ୍କର ଧର୍ମମତ ଅତି ଉଦାର ଥିଲା । ସେ ଧର୍ମାନ୍ତର ଗ୍ରହଣ କରିବାକୁ ଲେଶମାତ୍ର ଦ୍ୱିଧା ନ କରି ଉକ୍ତ ପ୍ରସ୍ତାବରେ ସମ୍ମତ ହେଲେ । ସେହି ଦିନଠାରୁ ତାଙ୍କର ନାମ ସମରସତ୍ତ ଖାଁ ହେଲା ।

ସମରସତ୍ତଙ୍କ ପୁତ୍ରର ନାମ କମାଲ ଖାଁ । ସେ ଏକାବେଳକେ ହିନ୍ଦୁ ରୀତି ନୀତି ତ୍ୟାଗ କଲେ ନାହିଁ । କେବଳ ଜାତିଚ୍ୟୁତ ହେଲେ ମାତ୍ର । ବାସୁଦେବଜୀଙ୍କର ସେବାପୂଜା ବ୍ରାହ୍ମଣମାନଙ୍କ ଉପରେ ନ୍ୟସ୍ତ ହେଲା । ଉକ୍ତ ସେବା ଆଜିପର୍ଯ୍ୟନ୍ତ ପୂର୍ବା ଅକ୍ଷୁଣ୍ଣ ରହିଅଛି । କମାଲ ଖାଁଙ୍କ ପୁତ୍ର ଫତେ ଖାଁ ଜଣେ ଅସାଧାରଣ ବୀର-ପୁରୁଷ ଥିଲେ । ଏହି ସମୟରେ ସେ ବଙ୍ଗଳାର ନବାବଙ୍କୁ ତୁଷ୍ଟ କରିଥିଲେ । ଏଠାରୁ ଏକ ସୁଯୋଗ ଘଟିଲା । ମୟୂରଭଞ୍ଜର ଅନ୍ତର୍ଗତ ସାରଦହାର ଶାସନକର୍ତ୍ତା ରାଜାଙ୍କ ବିରୁଦ୍ଧରେ ଦଣ୍ଡାୟମାନ ହେଲେ । ରାଜା ଫତେ ଖାଁଙ୍କୁ ସାହାଯ୍ୟନିମନ୍ତେ ଆହ୍ୱାନ କଲେ । ଫତେ ଖାଁ ବିଦ୍ରୋହୀ ଶାସନକର୍ତ୍ତାଙ୍କୁ ପରାଭୂତ କରି ତାଙ୍କର ମସ୍ତକ ନେଇ ରାଜାଙ୍କୁ ଭେଟିଲେ । ରାଜା ଏଥିରେ ଅତ୍ୟନ୍ତ ପ୍ରୀତ ହୋଇ ତାଙ୍କୁ ଭୂୟାଁ ପଦବୀ ପ୍ରଦାନ କଲେ । ବିଜାର୍ଗୁପର ଫତେ ଖାଁଙ୍କ ବୀରତ୍ୱ

ତାହାଣୀ ଶୀଘ୍ର ଗୃହ ଅଡ଼େ ବ୍ୟାପି ଗଲା । ମରହଟ୍ଟାମାନେ ତାହାଙ୍କୁ ଗଡ଼ଜାତ ରାଜାମାନଙ୍କ ନିକଟରୁ ଚୌଥ ଆଦାୟ କରିବାନିମନ୍ତେ ଶାସନ-କର୍ତ୍ତାସ୍ୱରୂପ ନିଯୁକ୍ତ କଲେ । ଏହି ସମୟରେ ବଙ୍ଗଳାର ନବାବଙ୍କ ବେଗମ ସୈନ୍ୟ ସାମନ୍ତ ଘେନି ଓଡ଼ିଶା ଭ୍ରମଣ ନିମିତ୍ତ ଆସିଲେ । ମୟୂରଭଞ୍ଜ ସୀମା ନିକଟରେ ତାଙ୍କର ଅନେକ ବହୁମୂଲ୍ୟ ଦ୍ରବ୍ୟାଦି ଅପହୃତ ହେଲା । ଏହି ସମ୍ବାଦ ନବାବଙ୍କ ନିକଟରେ ପହଞ୍ଚନ୍ତେ ସେ କ୍ରୋଧରେ ଅଧୀର ହେଲେ । ଏହା ମୟୂରଭଞ୍ଜ ରାଜାଙ୍କ କାର୍ଯ୍ୟ ଏବଂ ଏଥିରେ ଫତେ ଖାଁଙ୍କ ଯୋଗ ଥିବାର ବିଶ୍ୱାସ କରି ସେମାନଙ୍କୁ ଦଣ୍ଡ ଦେବାନିମନ୍ତେ ସୈନ୍ୟ ପ୍ରେରଣ କଲେ । ଫତେ ଖାଁଙ୍କ ସମ୍ପତ୍ତି ବାଜେୟାପ୍ତ ହେଲା । ମୟୂରଭଞ୍ଜର ରାଜା ଅଧୀନତା ସ୍ୱୀକାର କଲେ । ପରେ ଫତେ ଖାଁଙ୍କ ନିର୍ଦ୍ଦୋଷତା ସପ୍ରମାଣ ହେବାରୁ ସେ ସମ୍ପତ୍ତି ଫେରି ପାଇଲେ । ମାତ୍ର ଏହି ସମୟରୁ ଉକ୍ତ ସମ୍ପତ୍ତି ଉପରେ ବହୁ କର ଧାର୍ଯ୍ୟ ହେଲା । ତାହାର କାରଣ ରାଜାବାହାଦୁର ଅବଷ୍ଟାର କରିବାକୁ ଷମ ହୋଇ ନାହାନ୍ତି ।

ତାଙ୍କ ପରେ ତାଙ୍କ ପୁତ୍ର ଭୂୟାଁ ଖୋଦାବକ୍ସ ଖାଁ ସମ୍ପତ୍ତିର ଅଧିକାରୀ ହେଲେ । ଏହି ସମୟଠାରୁ ବ୍ରିଟିଶ ଅଧିକାର ପର୍ଯ୍ୟନ୍ତ ଏହି ପରିବାରର କୌଣସି ଇତିହାସ ମିଳେ ନାହିଁ । ଏଥି ମଧ୍ୟରେ କୌଣସି ଉଲ୍ଲେଖଯୋଗ୍ୟ ଘଟନା ମଧ୍ୟ ଘଟି ନାହିଁ । ଭୂୟାଁ ସାହାଦତୁଲ୍ଲା ଖାଁ ଇଂରାଜମାନଙ୍କୁ ଓଡ଼ିଶାଜୟରେ ସାହାଯ୍ୟ କରି ଥିଲେ । ଇଂରାଜମାନେ ତାହାଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କର ଦୁଇ ପୁତ୍ର ଭୂୟାଁ ଅସମତୁଲ୍ଲା ଖାଁ ଏବଂ ଭୂୟାଁ ରହମତୁଲ୍ଲା ଖାଁଙ୍କୁ ପୋଲିସ ଦାରୋଗା ନିଯୁକ୍ତ କରିଥିଲେ । ଭୂୟାଁ ଅସମତୁଲ୍ଲା ଖାଁ ୧୮୫୩ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗାରୋହଣ କଲେ । ତାଙ୍କର ପୁତ୍ର ମୌଲବୀ ହାଫି ଭୂୟାଁ ଅବଦୁଲ ମଜିଦ ଖାଁ ଜଣେ ଉଚ୍ଚ ଦରର କବି । ସେ "କୁଲିଅତ କଦିଅ" ନାମକ ଖଣ୍ଡେ ପୁସ୍ତକ ଲେଖିଅଛନ୍ତି । ସେ ବେତନ ବିନା ଜେଲର କାର୍ଯ୍ୟ କରିଥିଲେ । ଭୂୟାଁ ସଦାତୁଲ୍ଲା ଖାଁଙ୍କ ନାତି ଭୂୟାଁ କଯବତୁଲ୍ଲା ଖାଁ ପୋଲିସ ଇନ୍‌ସ୍ପେକ୍ଟର ନିଯୁକ୍ତ ହୋଇଥିଲେ । ମାତ୍ର ଓଡ଼ିଶା ଦୁର୍ଭିକ୍ଷ ସମୟରେ ମୟୂରଭଞ୍ଜର ବିଖ୍ୟାତ ଡକାୟତ ନାଲୁ ମିରଧା ଏବଂ ତାହାର ଦଳକୁ ଧରିବା ନିମନ୍ତେ ପ୍ରେରିତ ହୋଇ ଅକାଳରେ କାଳଗ୍ରାସରେ ପତିତ ହେଲେ । ଭୂୟାଁ ରହମତୁଲ୍ଲା ଖାଁ ଓଡ଼ିଶାରେ କନେଷ୍ଟବଲ ପ୍ରଥା ପ୍ରଚଳିତ ହେବା ପର୍ଯ୍ୟନ୍ତ ପୋଲିସ ଦାରୋଗା କାର୍ଯ୍ୟ କରି ଥିଲେ । ସେ ଅନେକ ଭୂସମ୍ପତ୍ତି କରିଥିଲେ । ତାହାଙ୍କର ଗୃହ ପୁତ୍ର ଥିଲେ । ସର୍ବଜ୍ୟେଷ୍ଠ ଟଗାଲାମ ମୁସ୍ତାଫା ଖାଁ ଜଣେ ପୋଲିସ ସବ୍-ଇନ୍‌ସ୍ପେକ୍ଟର ଥିଲେ । ଦ୍ୱିତୀୟ ପୁତ୍ର ମୌଲବୀ ଭୂୟାଁ ଅବଦୁର୍ ରହେମାନ୍ ଖାଁ ଜଣେ ସବ୍-ଡେପୋଟି କଲେକ୍ଟର । ତୃତୀୟଙ୍କ ନାମ ହାଫି ମଉଲବୀ ଭୂୟାଁ ଅବଦୁସ୍ ଶୋଭାନ ଖାଁ । ସର୍ବ-କନିଷ୍ଠ ଅବଦୁଲ ସମଦ ଖାଁ ଜଣେ ନାଏବ ଦାରୋଗା ଥିଲେ । ଏମାନଙ୍କ ମଧ୍ୟରେ ସର୍ବ-ବିଖ୍ୟାତ ମଉଲବୀ ହାଜି ଭୂୟାଁ ଅବଦୁସ୍ ଶୋଭାନ ଖାଁ ବିଲାୟତି ୧୨୫୮ ଜ୍ୟୈଷ୍ଠ ୧୦ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଏହାଙ୍କ ବାଲ୍ୟ ଜୀବନରେ ଭବିଷ୍ୟତ ଉନ୍ନତିର ଲକ୍ଷଣମାନ ପ୍ରକାଶିତ ହୋଇଥିଲା । ଖ୍ରୀ ୧୮୭୩ ଓକାଲତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେହି ବର୍ଷ ସରକାରୀ ଓକିଲ ନିଯୁକ୍ତ ହେଲେ । ବ୍ୟବସାୟରେ ପ୍ରଭୂତ ଉନ୍ନତି ଏବଂ ଆପଣାର ବିଚକ୍ଷଣତାଦ୍ୱାରା ସେ ଆପଣା ଜମିଦାରୀର ଅନେକ ଉନ୍ନତି ସାଧନ କରିଅଛନ୍ତି । ସେ ୧୪ଟି ନୂତନ ମଉଜା ଏବଂ ୧୦୦ ମାଣ ଲଖରାଜ ଭୂସମ୍ପତ୍ତି କ୍ରୟ କରିଅଛନ୍ତି । ପ୍ରତ୍ୟେକ ସାଧାରଣ ହିତକର କାର୍ଯ୍ୟ ସହିତ ତାଙ୍କର ଯୋଗ ଅଛି । ସେ ଆପଣା ସମାଜର ଉନ୍ନତି ନିମିତ୍ତ ଅନେକ ପରିଶ୍ରମ ଓ ଅର୍ଥ ବ୍ୟୟ

ବହୁ ସୁନାମ ଅର୍ଜ୍ଜନ କରିଅଛନ୍ତି । ବାଲେଶ୍ୱରର ହଡ଼ନ ମାଦ୍ରାସା ଏବଂ ବ. ଦେ ମହବବ୍ ତାଙ୍କର କୀର୍ତ୍ତି ଘୋଷଣା କରୁଅଛି । ଗରିବ ଛାତ୍ରମାନଙ୍କ ପାଇଁ ସେ ଅନେକଗୁଡ଼ିଏ ଛାତ୍ରବୃତ୍ତି ସ୍ଥାପନ କରି ଅଛନ୍ତି । ଧର୍ମୋନ୍ନତି ନିମିତ୍ତ ବାଲେଶ୍ୱର ମୁକାମରେ ଗୋଟିଏ ମସଜିଦ ମଧ୍ୟ ଅନେକ ବ୍ୟୟରେ ନିର୍ମାଣ କରାଇଅଛନ୍ତି । ଗଡ଼ପଦାରେ ଗୋଟିଏ ମଧ୍ୟଇଂରାଜୀ ବିଦ୍ୟାଳୟ ସ୍ଥାପନ କରି ସ୍ଥାନୀୟ ପ୍ରଜାମଣ୍ଡଳୀର ଉନ୍ନତି ସାଧନ କରୁଅଛନ୍ତି । ତାହାଙ୍କର ସହଧର୍ମିଣୀ ଶ୍ରୀମତୀ ଭୂୟାଁଣୀ ସାହେବା ମଧ୍ୟ ଜଣେ ଅସାଧାରଣ ମହିଳା । ବର୍ତ୍ତମାନ ସଭ୍ୟଆଲୋକରୁ ଦୂରରେ ଥାଇ ମଧ୍ୟ ଆପଣାର ଚରିତ୍ର ଗୁଣରେ ସ୍ତ୍ରୀମହଲରେ ସୁନାମ ଓ ସୁଯଶ ଅର୍ଜ୍ଜନ କରିଅଛନ୍ତି । ଧର୍ମରେ ତାହାଙ୍କର ଅଟଳ ବିଶ୍ୱାସ । ସେ ଆପଣା ସ୍ୱାମିଙ୍କ ସହିତ ପବିତ୍ର ମକ୍କା ତୀର୍ଥ ଭ୍ରମଣ କରି ଆସି ଜଣେ ହାଜାନୀ ବୋଲି ପରିଚିତ ହୋଇଅଛନ୍ତି । ସେ ଲକ୍ଷ୍ମଣଖୁଣ୍ଟାଠାରେ ଗୋଟିଏ ମସଜିଦ ଏବଂ ଗୋଟିଏ ପୁଷ୍କରିଣୀ ଖୋଳାଇ ନିଜ ନାମକୁ ଚିରସ୍ମରଣୀୟ କରି ଅଛନ୍ତି । ସେ ଓଡ଼ିଆ ଏବଂ ଉର୍ଦ୍ଦୁ ଭାଷାମାନଙ୍କ ସହିତ ଉତ୍ତମରୂପେ ପରିଚିତା ଏବଂ ନିଜେ କୋରାନ ପାଠ କରି ପାରନ୍ତି । ଏହି ବଂଶର ଗୋଟିଏ ପ୍ରଧାନ ଲକ୍ଷଣ ଏହିକି ଏମାନେ ନିଷ୍ଠ ମୁସଲମାନ ହେଲେ ସୁଦ୍ଧା ହିନ୍ଦୁଭାବ ଛାଡ଼ି ପାରି ନାହାନ୍ତି । ଆପଣାର ପୂର୍ବ ବାସୁଦେବଙ୍କ ବ୍ରାହ୍ମଣ ନିଯୁକ୍ତ କରି ସେବା କରାଉଅଛନ୍ତି । ଏହି ଅସଙ୍ଗତ ପ୍ରଥାଟି ବଙ୍ଗ, ବେହାରେ ବା ଓଡ଼ିଶାରେ ଅନ୍ୟ କୁତ୍ରାପି ଦୃଷ୍ଟିଗୋଚର ହୁଏ ନାହିଁ ।

ଭୂୟାଁ ପରିବାରର ସଂକ୍ଷିପ୍ତ ଇତିହାସ ପ୍ରଦତ୍ତ ହେଲା । ପ୍ରବନ୍ଧଟି ଆଶାତୀତ ଦୀର୍ଘ ହୋଇ ପଡ଼ି-ଥିବାରୁ ଏ ବିଷୟରେ ଆମ୍ଭମାନଙ୍କର ଆଉ କେତେକ କଥା କହିବାର ଥିଲେହେଁ ଏଠାରେ ବ୍ୟକ୍ତ କରି ପାରିଲୁଁ ନାହିଁ । ରାଜା ବାହାଦୁର ମହୋଦୟଙ୍କର ଅନ୍ୟାନ୍ୟ ପରିବାରର ଇତିହାସ ଗୁଡ଼ିକୁ ଆମ୍ଭେମାନେ ସତୃଷ୍ଣ ଭାବରେ ପ୍ରତୀକ୍ଷା କରି ରହିଲୁଁ । ଉକ୍ତ ପୁସ୍ତିକାଗୁଡ଼ିକ ସମାଲୋଚନା କଲା ବେଳେ ଆମ୍ଭମାନଙ୍କର ଅବଶିଷ୍ଟ ବକ୍ତବ୍ୟ ଗୁଡ଼ିକ ପ୍ରକାଶ କରିବାକୁ ଚେଷ୍ଟା କରିବୁଁ । ଓଡ଼ିଶାର ଅନ୍ୟାନ୍ୟ ଅଂଶରେ ଏହିପରି ଐତିହାସିକ ପରିବାରର ଅଭାବ ନାହିଁ । ଆଉ କେହି ରାଜା ବାହାଦୁରଙ୍କ ପଦାଙ୍କ ଅନୁସରଣ କରି ଏ ବିଷୟରେ ହସ୍ତକ୍ଷେପ କରିବେ କି ?

ଶ୍ରୀ କୃଷ୍ଣପ୍ରସାଦ ଚୌଧୁରୀ ।

# ଜନ୍ମାନ୍ତରବାଦ ।

ଆମ୍ଭେମାନେ ସମସ୍ତେ ଜନ୍ମାନ୍ତର କଥା ଶୁଣି ଅଛୁଁ, କିନ୍ତୁ ଜନ୍ମାନ୍ତରବିଶ୍ୱାସର ଯୁକ୍ତିଯୁକ୍ତତା ଅତ୍ୟଳ୍ପ ବ୍ୟକ୍ତି ଆଲୋଚନା କରି ଦେଖିଅଛନ୍ତି । ଏହି ରହସ୍ୟମୟ ମତର ସଂକ୍ଷିପ୍ତ ଆଲୋଚନାରେ ପ୍ରବୃତ୍ତ ହେଉଁ । ମାନବ ନୈତିକ ଜୀବ, ସେ ସ୍ୱଭାବତଃ ବିଶ୍ୱାସ କରେ ଯେ ଆମ୍ଭମାନଙ୍କର ଦୁର୍ନୀତି ଏବଂ ସୁନୀତି ସହିତ ଅବଶ୍ୟମ୍ଭାବୀ ଦଣ୍ଡ ଏବଂ ପୁରସ୍କାର ଜଡ଼ିତ ଅଛି ଏବଂ ଆମ୍ଭମାନଙ୍କ ଭାଗ୍ୟାଭାଗ୍ୟ ଜଣେ ସର୍ବଦର୍ଶୀ ସର୍ବମଙ୍ଗଳମୟ ଶାସନକର୍ତ୍ତାଙ୍କଦ୍ୱାରା ପରିଚାଳିତ । ଯେତେବେଳେ ସେ କୌଣସି ଉତ୍କଟ ପାପର ଏ ସଂସାରରେ ଅବଶ୍ୟମ୍ଭାବୀ ଫଳ ଦର୍ଶନ ନ କରେ ଅଥବା କୌଣସି ସୁପବିତ୍ର ଏବଂ ସୁମହତ୍ କାର୍ଯ୍ୟର ସୁଫଳ ଦେଖିନ ଥାଇ କେବଳ କୁଫଳହିଁ ଦର୍ଶନ କରେ, ସେତେବେଳେ ହୁଏ ତାହାର ଆତ୍ମା ସମସ୍ତ ଧର୍ମ ଏବଂ ନୀତିକୁ ମାନବକଳ୍ପନାପ୍ରସୂତ ଅଳୀକ ବସ୍ତୁ ବୋଲି ପରିତ୍ୟାଗ କରେ ଅଥବା ଇହଲୋକ ଏବଂ ଇହସଂସାରକୁ ଧର୍ମ ଏବଂ ନୀତିର ଅଂଶିକ

ଏବଂ ଅପୂର୍ଣ୍ଣ ଘେନ୍ତ ମଣି ଇହଲୋକ-ବହିର୍ଭୂତ ଅନ୍ୟଲୋକ ଏବଂ ଅନ୍ୟସଂସାରର ବିଶ୍ୱାସରେ ପ୍ରବୃତ୍ତ ହୁଏ । ମାନବର ଶେଷୋକ୍ତ ଭାବହିଁ ଜନ୍ମାନ୍ତରବିଶ୍ୱାସର ପ୍ରଧାନ ହେତୁ । ଯଦ୍ୟପି କେହି କୁକର୍ମ କରି ଏ ଜନ୍ମରେ ଦଣ୍ଡରୁ ତ୍ରାହି ପାଇ ଯାଏ, ଜନ୍ମାନ୍ତରରେ ସେ ଅବଶ୍ୟ ତାହାର ଦଣ୍ଡ ଭୋଗ କରିବ, ଯଦ୍ୟପି କେହି ସୁକର୍ମ କରି ମଧ୍ୟ ଏ ସଂସାରରେ ଦୁଃଖ ଦାରିଦ୍ର୍ୟ ଏବଂ ଯନ୍ତ୍ରଣା ଭୋଗ କରେ ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ ସେ ପୂର୍ବଜନ୍ମରେ କୌଣସି କୁକର୍ମ କରିଅଛି । କର୍ମ ଏବଂ ଫଳ ଅଚ୍ଛେଦ୍ୟ ବନ୍ଧନରେ ଜଡ଼ିତ, ଏ ଜନ୍ମରେ ହେଉ ଅଥବା ଅନ୍ୟ ଜନ୍ମରେ ହେଉ, ଆମ୍ଭେମାନେ ଆମ୍ଭମାନଙ୍କର କର୍ମର ଫଳ ଅବଶ୍ୟ ଭୋଗ କରିବୁଁ ଏବଂ ଆମ୍ଭମାନଙ୍କ ଭାଗ୍ୟାଭାଗ୍ୟ ଆମ୍ଭମାନଙ୍କ କର୍ମକୁ କଦାପି ଅତିକ୍ରମ କରିବ ନାହିଁ । ଭାଗ୍ୟ ଅନ୍ଧବସ୍ତୁ ନୁହେ, ଏହା ଆମ୍ଭମାନଙ୍କ ପୂର୍ବଜନ୍ମାର୍ଜ୍ଜିତ କର୍ମର ଅବଶ୍ୟମ୍ଭାବୀ ଫଳ ମାତ୍ର । ପରମନ୍ୟାୟବାନ୍ ଈଶ୍ୱରଙ୍କ ରାଜ୍ୟରେ ପାପିର ନିଷ୍କୃତି ଏବଂ ପୁଣ୍ୟବାନର ଦୁର୍ଗତି ସମ୍ପୂର୍ଣ୍ଣରୂପେ ଅସମ୍ଭବ ।

କିନ୍ତୁ ଏକ ଜନ୍ମର ପାପ ପାଇଁ ଅନ୍ୟ ଜନ୍ମରେ ଦଣ୍ଡ ଦେବା ଈଶ୍ୱରଙ୍କର ପରମଜ୍ଞାନର ପରିଚୟ ନୁହେ । ଦଣ୍ଡ ଦୁଇ ଅର୍ଥରେ ଅର୍ପିତ ହୋଇ ପାରେ; ପାପର ପ୍ରତିଫଳ (retribution) ଅଥବା ପାପର ସଂସ୍କାର (reformation) ନିମିତ୍ତ ଦଣ୍ଡ ଅର୍ପିତ ହୋଇ ପାରେ । କିନ୍ତୁ କେବଳ ପ୍ରତିଫଳ ନିମିତ୍ତ ଯେଉଁ ଦଣ୍ଡ ଅର୍ପିତ ହୁଏ ତାହା ନିରର୍ଥକ ଦଣ୍ଡ । ଆମ୍ଭେମାନେ ବିଶ୍ୱାସ କରି ନ ପାରୁଁ ଯେ ପରମଜ୍ଞାନୀ ପରମେଶ୍ୱର ପାପୀ ପ୍ରତି ଏହି ନିରର୍ଥକ ଦଣ୍ଡବିଧାନ କରିଅଛନ୍ତି । ଯଦି ପରମେଶ୍ୱର ପାପୀ ପ୍ରତି କୌଣସି ଦଣ୍ଡବିଧାନ କରିଥାନ୍ତି ତାହା ତାହାର ମଙ୍ଗଳ କିମ୍ବା ସଂସ୍କାର ନିମିତ୍ତ; କେବଳ ପ୍ରତିଫଳ କିମ୍ବା ପ୍ରତିହିଂସା ନିମିତ୍ତ ନୁହେ । କିନ୍ତୁ ପୂର୍ବଜନ୍ମର ପାପ ପାଇଁ ଏଜନ୍ମରେ ଶାସ୍ତିବିଧାନଦ୍ୱାରା ପାପିର କୌଣସି ମଙ୍ଗଳ ସାଧିତ ହୋଇ ନ ପାରେ । ଯଦି ଏଜନ୍ମରେ ଆମ୍ଭମାନଙ୍କର ପୂର୍ବଜନ୍ମର ଜ୍ଞାନ ଥାନ୍ତା, ଯଦି ପୂର୍ବଜନ୍ମର ପାପ ପୁଣ୍ୟ ସବୁ ଆମ୍ଭମାନଙ୍କ ସ୍ମୃତି-ପଥରେ ଜାଗରୁକ ଥାନ୍ତା, ଯେଉଁ ପାପ ପାଇଁ ଆମ୍ଭେମାନେ ଏଜନ୍ମରେ ଦଣ୍ଡଭୋଗ କରୁଅଛୁଁ ତାହା ଯଦି ଆମ୍ଭେମାନେ ବୁଝି ପାରନ୍ତୁ, ତେବେ ସେ ଦଣ୍ଡସବୁ ଆମ୍ଭମାନଙ୍କ ଅନୁତାପ ଉଦ୍ରେକ କରାଇ ଆମ୍ଭମାନଙ୍କୁ ପାପରୁ ପୁଣ୍ୟ ଆଡ଼କୁ ନେଇ ଯାନ୍ତା; କିନ୍ତୁ ପୂର୍ବଜନ୍ମର ଅସ୍ତିତ୍ୱ ପର୍ଯ୍ୟନ୍ତ ଆମ୍ଭମାନଙ୍କ ସ୍ମୃତିରେ ନାହିଁ । ସେ ସ୍ଥଳରେ ପୂର୍ବଜନ୍ମ ପାଇଁ ଏ ଜନ୍ମରେ ସହସ୍ର ଦଣ୍ଡ ପାଇଲେ ମଧ୍ୟ ତାହାଦ୍ୱାରା କୌଣସି ଉଦ୍ଦେଶ୍ୟ ସାଧିତ ହେବ ନାହିଁ । ଯଦି କୌଣସି ବାଳକକୁ ତାହାର ଦୋଷ ଦର୍ଶାଇ ନ ଦେଇ କେବଳ ପ୍ରହାର ଉପରେ ପ୍ରହାର କରୁଁ, ତେବେ କି ତାହାର କୌଣସି ସଂସ୍କାର ଆଶା କରି ପାରୁଁ ? ପରମଜ୍ଞାନୀ ପରମେଶ୍ୱରଙ୍କ ପକ୍ଷରେ ଏପରି ନିରର୍ଥକ ଦଣ୍ଡ ବିଧାନ ଅସମ୍ଭବ ।

ପୁନଶ୍ଚ, ଯଦିଓ ଆମ୍ଭେ କେତେ ସମସ୍ତ ଅମଙ୍ଗଳର ପୂର୍ବଜନ୍ମାର୍ଜ୍ଜିତ କର୍ମହିଁ କାରଣ ବୋଲି ନିର୍ଦ୍ଦେଶ କରୁଁ ତଥାପି ସ୍ୱକର୍ମୋପାର୍ଜ୍ଜିତ ନୁହେ ଏପରି ଅନେକ ଅମଙ୍ଗଳ ଅଛି ଯାହାର କାରଣ ସ୍ୱାଭାବିକ ନିୟମ ସାହାଯ୍ୟରେ ସ୍ପଷ୍ଟ ବୋଧଗମ୍ୟ । ସେ ସବୁ ଅମଙ୍ଗଳ କି ଜନ୍ମାନ୍ତରବିଶ୍ୱାସର ଅନୁରୂପ ନୁହେ । ବୈଜ୍ଞାନିକ ନିୟମରେ ସନ୍ତାନମାନେ ପୂର୍ବପୁରୁଷମାନଙ୍କଠାରୁ ଶରୀର ଗ୍ରହଣ ସଙ୍ଗେ ସଙ୍ଗେ ସେମାନଙ୍କ ବ୍ୟାଧି ମଧ୍ୟ ଗ୍ରହଣ କରନ୍ତି; ଯଦି ପିତା ମାତା ଯକ୍ଷ୍ମା କୁଷ୍ଠ ଇତ୍ୟାଦିରୂପ କୌଣସି ଉତ୍କଟ ବ୍ୟାଧିଗ୍ରସ୍ତ ଥାନ୍ତି ସନ୍ତାନମାନଙ୍କଠାରେ ମଧ୍ୟ ସେହି ବ୍ୟାଧି ଦୃଷ୍ଟିଗୋଚର ହୁଏ । ନିଷ୍ପାପ ଶିଶୁର ଏପରି ବ୍ୟାଧିର ହେତୁ କଣ ? ଏଠାରେ ହେତୁ ସ୍ଥିର କରିବାପାଇଁ ପୂର୍ବଜନ୍ମ ପର୍ଯ୍ୟନ୍ତ ଯିବାର କୌଣସି ପ୍ରୟୋଜନ

ନାହିଁ, ଇହଜନ୍ମରେହିଁ ତାହାର କାରଣ ସ୍ପଷ୍ଟ ବିଦ୍ୟମାନ । ଏଠାରେ କି କର୍ମ ଏବଂ ଭାଗ୍ୟ ମଧ୍ୟରେ ବିଚ୍ଛେଦ ଦୃଷ୍ଟିଗୋଚର ହୁଏ ନାହିଁ ? ତେବେ ଅନ୍ୟାନ୍ୟ ସ୍ଥଳରେ ଭାଗ୍ୟର କାରଣ ନିର୍ଦ୍ଦେଶାର୍ଥ ପୂର୍ବଜନ୍ମାର୍ଜିତ କର୍ମର ଆଶ୍ରୟ ନେବାର ଆବଶ୍ୟକତା କଣ ? ଯଦି କହ, ପାପାତ୍ମା ବ୍ୟାଧିଗ୍ରସ୍ତ ଔରସରେ ଜନ୍ମଗ୍ରହଣ କରେ, ତାହାହେଲେ ସ୍ପଷ୍ଟ କାରଣ ବିଦ୍ୟମାନ ସତ୍ତ୍ୱେ ଅସ୍ପଷ୍ଟ କାରଣର ଆଶ୍ରୟ ନେବା କୁଯୁକ୍ତି ହେବ । ଫଳତଃ କର୍ମ ଏବଂ ଭାଗ୍ୟ ସ୍ୱତନ୍ତ୍ର ବସ୍ତୁ, ଭାଗ୍ୟ ସର୍ବଦା କର୍ମର ଅନୁଚର ନୁହେ; କେବେ କେବେ ଭାଗ୍ୟ ଆମ୍ଭମାନଙ୍କ କର୍ମର ସହାୟ ହୋଇ କର୍ମର ଫଳକୁ ଶତଗୁଣରେ ବର୍ଦ୍ଧିତ କରଏ, କେବେ ବା ପ୍ରତିକୂଳ ହୋଇ ଆମ୍ଭମାନଙ୍କ ସହସ୍ର ଉଦ୍ୟମ ଏବଂ ସାଧନାକୁ ବ୍ୟର୍ଥ କରିଦିଏ—ଯଦିଚ ସୌଭାଗ୍ୟର ଉଚିତ ବ୍ୟବହାର ଏବଂ ଦୁର୍ଭାଗ୍ୟ ସହିତ ମରଣାନ୍ତ ସଂଗ୍ରାମହିଁ ସ୍ୱାଧୀନ ମାନବର ନିତ୍ୟ କର୍ତ୍ତବ୍ୟ ।

ଜନ୍ମାନ୍ତରବିଶ୍ୱାସ କିଞ୍ଚିତ୍ ପୁରାତନ, ତାହା ଆଧୁନିକ ଆସ୍ତିକମାନଙ୍କର ପରଲୋକବିଶ୍ୱାସ ନୁହେ । ବର୍ତ୍ତମାନ ମତରେ ଇହଜୀବନରେ ଆତ୍ମାର ପ୍ରଥମ ଉଦୟ, କିନ୍ତୁ ତାହାର ମରଣ ନାହିଁ—ତାହା ଅମର; ଅର୍ଥାତ୍ ଆତ୍ମା ଅମର କିନ୍ତୁ ଅନାଦି ନୁହେ, ଏ ଜୀବନହିଁ ତାହାର ଆଦିସ୍ଥାନ । ପୂର୍ବୋକ୍ତ ମତରେ ଆତ୍ମାର ଯେପରି ପରକାଳ ଅଛି ସେହିପରି ପୂର୍ବକାଳ ମଧ୍ୟ ଅଛି, ପରେ ଯେପରି ଆତ୍ମା ଅନ୍ୟଜନ୍ମ ଲାଭ କରିବ ପୂର୍ବରେ ମଧ୍ୟ ସେହିପରି ଅନନ୍ତ ଜନ୍ମ ଅତିକ୍ରମ କରି ଆସିଅଛି । ଦୁଇଗୋଟି ମତ ତୁଳନା କଲେ ପୂର୍ବୋକ୍ତ ମତଟି ସଙ୍ଗତତର ବୋଧ ହୁଏ । ଯଦି ଆତ୍ମାକୁ ସମୟରେ ଉତ୍ପନ୍ନ କହୁଁ, ତାହାହେଲେ ଅନ୍ୟାନ୍ୟ ଯେଉଁ ସବୁ ବସ୍ତୁ ସମୟରେ ଉତ୍ପନ୍ନ ସେମାନଙ୍କଠାରୁ ଆତ୍ମାର ପାର୍ଥକ୍ୟ ରହିଲା କାହିଁ ? ଯଦି ସେସବୁ ବସ୍ତୁ ସମୟରେ ଅନ୍ତଶୀଳ ହୁଏ ତେବେ ସମଗୁଣାବଲମ୍ବୀ ଆତ୍ମା କିପାଁ ଅନନ୍ତ ଏବଂ ଅମର ହେବ ? ଯଦି ଆତ୍ମାର ଆଦି ସ୍ୱୀକାର କରୁଁ, ସ୍ୱାଭାବିକ ଯୁକ୍ତିରେ ଆତ୍ମାର ଅନ୍ତ ମଧ୍ୟ ସ୍ୱୀକାର କରିବାକୁ ହେବ । ତେବେ ଆଧୁନିକ ମତ କିପାଇଁ ପୂର୍ବଜନ୍ମ ଅସ୍ୱୀକାର କରି ଆତ୍ମାର ଆଦି ସ୍ୱୀକାର କରେ ? ଯଦି ପୂର୍ବଜନ୍ମ ଏବଂ ଇହଜନ୍ମ ଏକ ଆତ୍ମଜୀବନର ଦୁଇଗୋଟି ବିଭାଗ ମାତ୍ର, ତାହାହେଲେ ସେମାନଙ୍କ ମଧ୍ୟରେ ସମ୍ବନ୍ଧ ଆଶା କରିବା ସ୍ୱାଭାବିକ । କିନ୍ତୁ ଇହଜନ୍ମରେ ଆମ୍ଭମାନଙ୍କର ପୂର୍ବଜନ୍ମର କୌଣସି ଜ୍ଞାନ ନ ଥାଏ; ଯଦି ପୂର୍ବଜନ୍ମ ଥାଏ ତାହା ସହିତ ଏ ଜନ୍ମର କୌଣସି ସମ୍ପର୍କ ନାହିଁ । ସମ୍ପର୍କରହିତ, ସମ୍ପୂର୍ଣ୍ଣରୂପେ ଅସଂଲଗ୍ନ ଏହିପରି ଦୁଇଗୋଟି ଜୀବନକୁ କଦାପି ଏକ ଆତ୍ମଜୀବନ କହା ଯାଇ ନ ପାରେ । ଆତ୍ମାର ଏକତ୍ୱ (identity) ବସ୍ତୁର ଏକତ୍ୱରେ ( identity of substance ) ପର୍ଯ୍ୟବସିତ ନୁହେ; ତାହା ଗତ ଜୀବନର ସ୍ମୃତିର ସମ୍ଭାବନା (possibility of the memory of past consciousness) ମାତ୍ର । ଯେଉଁ ଜୀବନର ସ୍ମୃତି ନାହିଁ ଏବଂ ସ୍ମୃତିର ସମ୍ଭାବନା ମଧ୍ୟ ନାହିଁ, ସେ ଜୀବନ ଏ ଜୀବନ ସହିତ ଏକ ନୁହେ । ପୂର୍ବଜନ୍ମର ଆମ୍ଭମାନଙ୍କର କୌଣସି ଜ୍ଞାନ ନାହିଁ । ଜନ୍ମାନ୍ତରବାଦୀ କହନ୍ତି ବିସ୍ମୃତି ଯୋଗୁଁ ଏହି ଅଜ୍ଞାନ ସଂଘଟିତ ହୁଏ । କିନ୍ତୁ ଏହି ରହସ୍ୟମୟ ବିସ୍ମୃତିର କୌଣସି ବିଶ୍ୱାସ୍ୟ କାରଣ ଏପର୍ଯ୍ୟନ୍ତ କେହି ଦର୍ଶାଇ ପାରି ନାହାନ୍ତି । ତେବେ ପୂର୍ବଜନ୍ମବିଶ୍ୱାସର ହେତୁ କଣ ?

କେହି କେହି କହନ୍ତି, ପ୍ରତିଭାର ଉଦୟ ପୂର୍ବଜନ୍ମର ପ୍ରମାଣ । ପ୍ରାକୃତିକ ନିୟମ (natural law) ସାହାଯ୍ୟରେ ଅସାଧାରଣ ପ୍ରତିଭାର ଉଦୟ ବୋଧଗମ୍ୟ ନୁହେ । ଏକ ପିତାର ଔରସରୁ ଜାତ ହୋଇ ସମାନ ଅବସ୍ଥାରେ ପଡି ଏବଂ ସମାନ ଅବସ୍ଥାରେ ଥାଇ ସୁଦ୍ଧା ଦୁଇଗୋଟି ସନ୍ତାନ ମଧ୍ୟରୁ ଗୋଟିଏ ଜଗଦ୍ବିଖ୍ୟାତ ବୀର, ପଣ୍ଡିତ

ଅଥବା ଦାର୍ଶନିକ ହୋଇଅଛି ଏବଂ ଅନ୍ୟ ଜଣେ ମୂଢ଼ପିଣ୍ଡବୁଦ୍ଧି ଗଣ୍ଡମୂର୍ଖ ହୋଇଅଛି । ଏହାର କାରଣ ଅନ୍ୟ କିଛି ନୁହେଁ, ଏହା ପୂର୍ବଜନ୍ମର ସାଧନାର ଫଳ । ଯେଉଁ ଲୋକ କଠୋର ସାଧନାଦ୍ୱାରା ପୂର୍ବ ପୂର୍ବ ଜନ୍ମରେ ନିଜର ଶକ୍ତିସବୁକୁ ବର୍ଦ୍ଧିତ କରିଏ ସେ ଲୋକ ଏ ଜନ୍ମରେ ଅତ୍ୟଳ୍ପ ସାଧନାଦ୍ୱାରା ଅସାଧାରଣ ଶକ୍ତିଶାଳୀ ପୁରୁଷ ହୁଏ; ଯେଉଁ ଲୋକ ପୂର୍ବ ଜନ୍ମରେ ଅଯତ୍ନ ଯୋଗୁଁ ନିଜର ଶକ୍ତିସବୁର ଉତ୍କର୍ଷ ସାଧନ କରି ନାହିଁ ସେ ଏ ଜନ୍ମରେ ସହସ୍ର ଯତ୍ନ କଲେ ମଧ୍ୟ ଉନ୍ନତି ଶିଖରର ଅତ୍ୟଳ୍ପ ଦୂର ଅଗ୍ରସର ହେବାକୁ କ୍ଷମ । ପୂର୍ବଜନ୍ମାର୍ଜିତ ବିଦ୍ୟା ଏ ଜନ୍ମରେ କିପରି ସହାୟ ହୁଏ ତାହା କାଳିଦାସ ପାର୍ବତୀ ଦୃଷ୍ଟାନ୍ତରେ ସୁନ୍ଦରରୂପେ ଦେଖାଇଅଛନ୍ତି:—

"ତାଂ ହଂସମାଳାଃ ଶରଦୀବ ଗଙ୍ଗାଂ
ମହୌଷଧିଂ ନକ୍ତମିବାତ୍ମଭାସଃ ।
ସ୍ଥିରୋପଦେଶାମୁପଦେଶକାଲେ
ପ୍ରପେଦିରେ ପ୍ରାକ୍ତନଜନ୍ମବିଦ୍ୟାଃ ॥"

ଶରତ୍ କାଳରେ ଯେଉଁ ଦେଶରୁ ମାଳମାଳ ହଂସ ଆସି ଯେପରି ଗଙ୍ଗାବକ୍ଷରେ ବିରାଜ କରନ୍ତି, ରାତ୍ରି କାଳରେ ଔଷଧିଲତାର ସ୍ୱାଭାବିକ ଆଲୋକମଣ୍ଡଳ ଯେପରି ସ୍ୱତଃ ଉଦିତ ହୁଏ, ସେହିପରି ବିଦ୍ୟାଶିକ୍ଷାର ସମୟ ଉପସ୍ଥିତ ହେଲାରୁ ପୂର୍ବଜନ୍ମାର୍ଜିତ ବିଦ୍ୟା ମେଧାବିନୀ ପାର୍ବତୀଙ୍କ ହୃଦୟରେ ସ୍ୱତଃ ସ୍ଫୂର୍ତ୍ତି ପାଇଲା ।

ଯେ ଯାହା କହୁ, ପୂର୍ବଜନ୍ମାର୍ଜିତ କର୍ମ ପ୍ରତିଭା ଉଦୟର ନିତାନ୍ତ ସହଜ ବ୍ୟାଖ୍ୟା । ଯଦିଓ ପୂର୍ବଜନ୍ମ ସାହାଯ୍ୟରେ ପ୍ରତିଭାର ଉତ୍ପତ୍ତି ଅମ୍ଭମାନଙ୍କଠାରେ ସୁବୋଧ ହୁଏ ତଥାପି ବର୍ତ୍ତମାନର ବୈଜ୍ଞାନିକ ବୃତ୍ତି ସହଜ ଆଲୋଚିତ କାରଣରେ ଆସ୍ଥା ସ୍ଥାପନ ନ କରି ଅପେକ୍ଷାକୃତ ଜଟିଳ ସ୍ୱାଭାବିକ କାରଣର ଅନ୍ୱେଷଣ କରେ । ବିଜ୍ଞାନ ସାହାଯ୍ୟରେ ଅମ୍ଭେମାନେ ବର୍ତ୍ତମାନ ବୁଝୁଁ ଯେ ମାନବପ୍ରକୃତି ଗଠନ ନିମନ୍ତେ ଅସଂଖ୍ୟ ବସ୍ତୁ କାର୍ଯ୍ୟ କରୁଅଛନ୍ତି ଏବଂ ଗୋଟିଏ ଗୋଟିଏ କ୍ଷୁଦ୍ର କାରଣ ଅବସ୍ଥା ବଳରେ ଅସଂଖ୍ୟ ଫଳରେ ପରିଣତ ହୁଏ, କେବେ ବା ବୃହତ୍ କାରଣ ବିଦ୍ୟମାନ ସତ୍ତ୍ୱେ ଅବସ୍ଥାର ପ୍ରତିକୂଳତା ଯୋଗୁଁ ବିଶେଷ କାର୍ଯ୍ୟର ଉଦୟ ନ ହୋଇ ପାରେ । ବୈଜ୍ଞାନିକ ନିୟମ ଅମ୍ଭମାନଙ୍କ ପ୍ରଶ୍ନକୁ ଅଧିକ ଜଟିଳ କରିଅଛି । ସୁଦୂର ପୂର୍ବ ପୁରୁଷଙ୍କ କାର୍ଯ୍ୟ ମଧ୍ୟ ବୈଜ୍ଞାନିକ ନିୟମରେ ପ୍ରତ୍ୟେକ କ୍ଷୁଦ୍ର ବୃହତ୍ ଅସ୍ମାରେ କାର୍ଯ୍ୟ କରୁଅଛି । ଯେଉଁଠାରେ ଏତେ ଅସଂଖ୍ୟ କାରଣ ବିଦ୍ୟମାନ ସେଠାରେ ଗୋଟିଏ ବସ୍ତୁର ସମ୍ୟକ୍ କାରଣ ଖୋଜି ପାଇବା ସର୍ବଦା ସମ୍ଭବପର ନୁହେଁ । ସେଥିପାଇଁ କି ଇହଲୋକ ଛାଡ଼ି ଅନ୍ୟ ଲୋକରେ, ଏହି ଜନ୍ମ ଛାଡ଼ି ଅନ୍ୟ ଜନ୍ମରେ, ଅଣ୍ଡପ୍ତ ନେବୁଁ ? ଅମ୍ଭେମାନେ କେବେ କେବେ ଗୋଟିଏ ଫଳବୃକ୍ଷରେ ଦେଖୁଁ ତାହାର ସବୁ ଫଳଗୁଡ଼ିକ ସାନ ସାନ, କିନ୍ତୁ ଗୋଟିଏ ଫଳ ଏପରି ବୃଦ୍ଧି ପାଇଥାଏ ଯେ ଦେଶ କାଳରେ ସେପରି ବୃଦ୍ଧି କଦାଚିତ୍ ଦୃଷ୍ଟିଗୋଚର ହୁଏ । ଏହି ଅସାଧାରଣ ବୃଦ୍ଧିର କାରଣ ଅମ୍ଭେମାନେ ସର୍ବଦା ବୁଝିବାକୁ କ୍ଷମ ନୋହୁଁ; ସେଥିପାଇଁ କି ଅମ୍ଭେମାନେ ସେହି ଫଳଟିର ପୂର୍ବ ଜନ୍ମରେ ବିଶ୍ୱାସ କରି ବସିବୁଁ ?

ପୁରାକାଳର ପୂର୍ବଜନ୍ମ ବିଶ୍ୱାସ ଏବଂ ବର୍ତ୍ତମାନର ପରଲୋକ ବିଶ୍ୱାସ ମଧ୍ୟରେ ଗୋଟିଏ ପ୍ରଭେଦ ଦେଖିଲୁଁ । ପୂର୍ବଜନ୍ମ ସମ୍ବନ୍ଧରେ ଅନ୍ୟ ଗୋଟିଏ ପାର୍ଥକ୍ୟ ବର୍ତ୍ତମାନ ଆଲୋଚନା କରୁଁ । ବର୍ତ୍ତମାନର ଆସ୍ତିକମାନେ ବିଶ୍ୱାସ କରନ୍ତି ନାହିଁ ଯେ ଆତ୍ମା ମୃତ୍ୟୁଦ୍ୱାରା ଏହି ଶରୀର ପରିତ୍ୟାଗ କରି ଅନ୍ୟ ଶରୀର ପରିଗ୍ରହ କରିବ । କିନ୍ତୁ ଜନ୍ମାନ୍ତରବାଦୀ ବିଶ୍ୱାସ କରନ୍ତି ଆତ୍ମା ଗୋଟିଏ ଶରୀର ପରିତ୍ୟାଗ କରି ଅନ୍ୟ ଶରୀର ପରିଗ୍ରହ କରେ । ଅମ୍ଭେମାନେ ଯେପରି ଗୋଟିଏ ବସ୍ତ୍ର ପୁରାତନ ଅଥବା ଛିନ୍ନ ହେଲେ ଅନ୍ୟ ବସ୍ତ୍ର

ପରିଧାନ କରୁଁ ସେହିପରି ଆତ୍ମା ମଧ୍ୟ ଗୋଟିଏ ଶରୀର ଛିନ୍ନ ହେଲେ ଅନ୍ୟ ଶରୀର ପରିଧାନ କରେ । ଶରୀର ଆତ୍ମା ନୁହେ, ଆତ୍ମାର ଆବାସ-ଭବନ ମାତ୍ର; ଗୋଟିଏ ଗୃହ ଭଗ୍ନ ହେଲେ ଆତ୍ମା ଅନ୍ୟ ଗୋଟିଏ ଶରୀର-ଗୃହରେ ଆଶ୍ରୟ ନିଏ । ଯଦି ନିମ୍ନ ଶ୍ରେଣୀର କୌଣସି ଜୀବ ଦେହରେ ଥାଇ ଆତ୍ମା ପୁଣ୍ୟ କାର୍ଯ୍ୟ କରେ ମୃତ୍ୟୁ ପରେ ତାହା ଉନ୍ନତ ଜୀବ ଦେହକୁ ନୀତ ହୁଏ । ଯଦି ଉନ୍ନତ ଜୀବ ଦେହରେ ଥାଇ ଆତ୍ମା ଅଧର୍ମ କରେ ମୃତ୍ୟୁ ପରେ ସେ କୌଣସି ନିମ୍ନତର ଜୀବ ଦେହକୁ ଅବନୀତ ହୁଏ । ଏହିପରି ଗୋଟିଏ ଆତ୍ମା ଏଜନ୍ମରେ କୀଟ ଥାଇ ଜନ୍ମାନ୍ତରରେ ପଶୁ ପକ୍ଷୀ ଅଥବା ମନୁଷ୍ୟ ହୋଇ ପାରେ । ଏ ମତ ସମାଲୋଚନାର ଆବଶ୍ୟକତା ନାହିଁ । ଯାହା ଦୃଷ୍ଟି ଏବଂ ଅଭିଜ୍ଞତାର ସମ୍ପୂର୍ଣ୍ଣରୂପେ ଅଜ୍ଞାତ ଏବଂ ବହିର୍ଭୂତ ତହିଁ ସମ୍ବନ୍ଧରେ ଯେ କୌଣସି ଅନୁମାନ ସମ୍ଭବପର—ପ୍ରମାଣ ଏବଂ ଅପ୍ରମାଣ ଉଭୟ ସମାନ-ରୂପେ ଅସମ୍ଭବ; ସେ ସବୁ ବିଷୟରେ ନୀରବତା ହିଁ ଏକମାତ୍ର ପନ୍ଥା ।

ଯଦିଓ ପୂର୍ବୋକ୍ତ ଆଲୋଚନାଦ୍ୱାରା ଦେଖିଲୁଁ ଜନ୍ମାନ୍ତରବାଦ ନିତାନ୍ତ କ୍ଷୀଣ ଯୁକ୍ତି ଉପରେ ପ୍ରତିଷ୍ଠିତ, ତଥାପି ଏହାର ଏହି ଗୋଟିଏ ସଦ୍ଗୁଣ ଯେ ଏହା କର୍ମର ଗୁରୁତ୍ୱ ପ୍ରତିପନ୍ନ କରିବାକୁ ସଚେଷ୍ଟ; ଏ ମତ ବିଶ୍ୱାସ କଲେ ଆମ୍ଭମାନଙ୍କୁ କର୍ମକ୍ଷେତ୍ରରେ ନିରାଶ ହେବାକୁ ହୁଏ ନାହିଁ । ଏ ଜନ୍ମରେ ହେଉ ଅଥବା ପର ଜନ୍ମରେ ହେଉ, ଆମ୍ଭମାନଙ୍କର କର୍ମର ଫଳ ନିଶ୍ଚୟ ଫଳିବ; ଯେପରି ପୂର୍ବଜନ୍ମାର୍ଜିତ କର୍ମର କୁ ଅଥବା ସୁ ଫଳ ଏ ଜନ୍ମରେ ଭୋଗ କରୁଅଛୁଁ ସେହିପରି ଏ ଜନ୍ମର କର୍ମର ଫଳ ଅନ୍ୟ ଜନ୍ମରେ ଭୋଗ କରିବୁଁ । ଏ ମତ ବିଶ୍ୱାସ କଲେ ସତ୍କର୍ମୀ କଦାପି ନିରାଶ ହେବ ନାହିଁ, ଅକର୍ମୀ ସତତ ଭୟଯୁକ୍ତ ଥିବ ।

ଶ୍ରୀ ମୋହିନୀମୋହନ ସେନାପତି ।

## ମୌଳିକତାର ଏତେ ଅଭାବ କାହିଁକି ?

ଆଧୁନିକ ଉତ୍କଳସାହିତ୍ୟକ୍ଷେତ୍ରରେ ମୌଳିକତାର ଶୋଚନୀୟ ଅଭାବ ସମସ୍ତେ ଉପଲବ୍ଧି କରି ପାରୁଥିବେ । କେତେକ ଯଶୋଲିପ୍ସୁ ବ୍ୟକ୍ତି ସ୍ୱଚ୍ଛନ୍ଦରେ, ନିରାପଦରେ ସାହିତ୍ୟରାଜ୍ୟରେ ବିଚରଣ କରିବାକୁ ଉତ୍ସୁକ । ଉଦ୍ଭାବନ ଶକ୍ତିର ପରିଚାଳନ କରିବା କିମ୍ବା ତାହାର କର୍ଷଣରେ ପ୍ରବୃତ୍ତ ହେବା ଶ୍ରମସାଧ୍ୟ, ସାଧନାସାପେକ୍ଷ । ଅନୁସନ୍ଧିତ୍ସା ଓ ଗବେଷଣାପ୍ରବୃତ୍ତି ସୁଖସ୍ୱଚ୍ଛନ୍ଦତାର ପ୍ରତିବନ୍ଧକ ଅଟେ । ଏଣୁ ଅନେକେ କୌଣସି ବିଷୟର ତତ୍ତ୍ୱ ଖୋଜିବାକୁ ବସି ଟିକିଏ ଗୋଳେଇ କରି ବୁଝିବାକୁ ବ୍ୟଗ୍ରତା ପ୍ରକାଶ କରନ୍ତି ନାହିଁ । ଶ୍ରମକାତରତା ଓ ପଲ୍ଲବଗ୍ରାହିତା ଦୂର ନ ହେଲେ, ପ୍ରବଳ ଅନୁସନ୍ଧିତ୍ସା ଜାଗ୍ରତ ନ ହେଲେ, ଜ୍ଞାନାଲୋଚନାର ପ୍ରବୃତ୍ତି ଉତ୍ତେଜିତ ନ ହେଲେ ମୌଳିକତାର ବିକାଶ ଏକାବେଳକେ ଅସମ୍ଭବ । ଆତ୍ମାର ମଧ୍ୟ ସ୍ୱାଧୀନ ଚିନ୍ତାର ଗତି ଖର୍ବୀକୃତ ଓ ଉନ୍ନତ ଆଦର୍ଶର ଅଭାବ ହେଲେ ମୌଳିକତାର ସ୍ଫୁରଣ କଷ୍ଟସାଧ୍ୟ । ଅତୀତ ଗ୍ରନ୍ଥରାଶିର ଉନ୍ନତ ଭାବମାନ ସୂକ୍ଷ୍ମ ପର୍ଯ୍ୟାଲୋଚନାଦ୍ୱାରା ସ୍ୱୀୟ ମସ୍ତିଷ୍କଗତ କରି, ସେ ସବୁକୁ ସଯତ୍ନରେ ରକ୍ଷା କରି ପାରିଲେ ଶ୍ରମ ସାର୍ଥକ ହୁଏ । ଅର୍ଜ୍ଜିତ ଜ୍ଞାନର ବୃଦ୍ଧି ନିମନ୍ତେ ପ୍ରୟାସ ନ କଲେ ସେ ଜ୍ଞାନଲାଭର ପ୍ରୟୋଜନୀୟତା କିଛି ନାହିଁ । ଉନ୍ନତ ସାହିତ୍ୟର ଆଦର୍ଶକୁ ସମ୍ମୁଖରେ ଧରି ଲକ୍ଷ୍ୟ ସାଧନରେ ବ୍ରତୀ ହେଲେ ମୌଳିକତାର ସ୍ଫୁରଣର ଆଶା କରାଯାଇ ପାରେ ।

ଅନୁକରଣ ପ୍ରବୃତ୍ତି ମୌଳିକତାର ପ୍ରଧାନ ଅନ୍ତରାୟ । ଅନ୍ୟ ଲୋକଠାରେ ଅନ୍ୟ ସାହିତ୍ୟରେ ଯାହା କିଛି ଉନ୍ନତ ଓ ସଙ୍ଗତ ତାହା ଅନୁକରଣ

କରିବା ଯେ ଏକାନ୍ତ ଦୂଷ୍ୟ ତାହା କହା ଯାଉ ନାହିଁ । ଅନୁକରଣ ପ୍ରବୃତ୍ତି ଓ ସ୍ୱାଧୀନ ଚିନ୍ତା ଏ ଦୁଇଟି ଏକତ୍ର କାର୍ଯ୍ୟ କଲେ ତାହା ମଙ୍ଗଳଜନକ ଅଟେ । କିନ୍ତୁ ନିଜର ବ୍ୟକ୍ତିତ୍ୱ ନଷ୍ଟ କରି ସ୍ରୋତରେ ଭାସି ଗଲେ କିମ୍ବା ବାହ୍ୟ ଚାକଚକ୍ୟରେ ମୋହିତ ହୋଇ ତାହାକୁ ସାର ମଣି ଅନୁକରଣ କରିବାକୁ ପ୍ରବୃତ୍ତ ହେଲେ ରକ୍ଷା ନାହିଁ । ଦୁଃଖର ବିଷୟ ସାହିତ୍ୟରାଜ୍ୟରେ ଯେଉଁ ଅନୁକରଣ ପ୍ରବୃତ୍ତି ପ୍ରବେଶ ଲାଭ କରିଅଛି ତାହା ଆଜିକାଲି ପୂର୍ଣ୍ଣ ମାତ୍ରାରେ କାର୍ଯ୍ୟ କରୁଅଛି । ତାହାର ଅବସାନରେ ମୌଳିକତାର ଆବିର୍ଭାବ ହେବ ସନ୍ଦେହ ନାହିଁ ।

ପାଶ୍ଚାତ୍ୟ ଭାବର ମିଶ୍ରଣରେ ପ୍ରାଚ୍ୟ ଜାତି ପାଶ୍ଚାତ୍ୟର ଅଧ୍ୟବସାୟ ଓ ଅନୁସନ୍ଧିତ୍ସା ଅନୁକରଣ କରି ପାରି ନାହିଁ । କିନ୍ତୁ ଦୁଃଖର ବିଷୟ ଅନୁକରଣ କରିବା ମଧ୍ୟରେ ପ୍ରବଳ ଭୋଗଲିପ୍ସା ଚରିତାର୍ଥ କରିବାର ପ୍ରବୃତ୍ତିଟି ପୂର୍ଣ୍ଣ ମାତ୍ରାରେ ଅଧିକାର କରିଅଛି । ପାଶ୍ଚାତ୍ୟ ସଭ୍ୟତାର ପ୍ରାଦୁର୍ଭାବରେ, ବିଦେଶାଗତ ପଦାର୍ଥମାନଙ୍କର ପ୍ରଚୁର ବ୍ୟବହାରରେ ଓ ଦେଶୀୟ ଶିଳ୍ପଜାତ ପଦାର୍ଥମାନଙ୍କ ପ୍ରସାରର ହ୍ରାସ ହେବାଦ୍ୱାରା ଆମ୍ଭମାନଙ୍କର ସଂସାରଯାତ୍ରା ନିର୍ବାହ କଠିନତର ହୋଇ ଯାଇଅଛି । ଅର୍ଥାଗମର ପନ୍ଥା ପ୍ରଶସ୍ତ ନୁହେ, କିନ୍ତୁ ବୈଦେଶିକ ରୀତି ଅନୁସାରେ ସମାଜରେ ସମ୍ମାନ ରକ୍ଷି ଚଳିବାକୁ ଯାଇ ବହୁ ବ୍ୟୟଭାର ବହନ କରିବାକୁ ପଡ଼ୁଅଛି । ଏଣୁ ଦୂର ଅଡ଼ି ସମ୍ଭାଳି ନ ପାରି ଆମ୍ଭେମାନେ ଦାରିଦ୍ର୍ୟ-ପ୍ରପୀଡ଼ିତ ହୋଇ ଅତୃପ୍ତ ହୋଇ ସଦା ଜଡ଼ବତ୍ କାଳ ଯାପନ କରୁଅଛୁଁ । ବାସନା ପରିତୃପ୍ତ କରି କଥଞ୍ଚିତ୍ପ୍ରକାରେ ସଂସାରଯାତ୍ରା ନିର୍ବାହ କରିବା ପାଇଁ ଉପଯୁକ୍ତ ଅର୍ଥର ସନ୍ଧାନ କରିବାରେ ସଦା ବ୍ୟସ୍ତ, ସମୟ କାହିଁ ଯେ ଶୁଦ୍ଧ ଜ୍ଞାନାନୁଶୀଳନରେ ପ୍ରବୃତ୍ତ ହୋଇ ମୌଳିକ ତତ୍ତ୍ୱ ଉଦ୍ଭାବନ କରିବୁଁ କିମ୍ବା ମୌଳିକ ଗ୍ରନ୍ଥ ପ୍ରଣୟନ କରିବୁଁ ? ପ୍ରାଚୀନ ଭାରତ ଏତେ ଖ୍ୟାତି ଲାଭ କାହିଁକି କରିଥିଲା ? ତାହାର ଉତ୍ତର ଏତିକି ହୋଇ ପାରେ ଯେ ପ୍ରତିଭାଶାଳୀ ପୁରୁଷମାନେ ସମସ୍ତ ଭୋଗ ବାସନା ପରିତ୍ୟାଗ କରି ସଦା ଜ୍ଞାନାନୁଶୀଳନରେ ପ୍ରବୃତ୍ତ ହୋଇ ଶ୍ରୁତି, ସ୍ମୃତି, ଦର୍ଶନ, ଉପନିଷଦ୍ ପ୍ରଭୃତି ଉଚ୍ଚ ମୌଳିକତାପୂର୍ଣ୍ଣ ଆଧ୍ୟାତ୍ମିକ ତତ୍ତ୍ୱମାନ ଆବିଷ୍କାର କରିଥିଲେ ବୋଲି । କିନ୍ତୁ ସମୟର ଗତି ପରିବର୍ତ୍ତିତ ହୋଇଅଛି, ଅନନ୍ୟମନା ହୋଇ, ଅନନ୍ୟକର୍ମା ହୋଇ ସାଧାରଣ ଭାବରେ ଜୀବିକା ନିର୍ବାହ କରି ଜ୍ଞାନର ଉତ୍କର୍ଷ ସାଧନ ନିମନ୍ତେ କେବଳ,—ଅସାର ଯଶ ଓ ମାନ ଲାଭ ଇଚ୍ଛାରେ ନୁହେ— ସଦା ଜ୍ଞାନାନୁଶୀଳନର ସୁବିଧା ଅଳ୍ପ ବିଶେଷ ଦେଖା ନାହିଁ । ଯେ କେହି ଜ୍ଞାନୀ ମୌଳିକ ଗ୍ରନ୍ଥ ପ୍ରଣୟନୋପଯୋଗୀ ଶକ୍ତି, ସାମର୍ଥ୍ୟ ଲାଭ କରିଅଛନ୍ତି, ସେମାନେ ନାନା କାରଣରୁ ତହିଁରୁ ବିରତ ହୋଇଅଛନ୍ତି, କାରଣ ସେମାନେ ଜାଣନ୍ତି ତାଦୃଶ ଗ୍ରନ୍ଥର ସମ୍ୟକ୍ ଆଦର ନାହିଁ ବା ମୁଦ୍ରଣବ୍ୟୟ ମଧ୍ୟ ବିକ୍ରୟଲବ୍ଧ ଅର୍ଥରୁ ବହୁ କାଳରେ ହସ୍ତଗତ ହୋଇ ପାରିବ ନାହିଁ ।

ମୌଳିକ ଗ୍ରନ୍ଥ ପ୍ରତ୍ୟୟନ କରି ଭାରତୀୟସାହିତ୍ୟ-ଭଣ୍ଡାର ସୁସଜ୍ଜିତ କରିବାର ଆଶା ଏକପ୍ରକାର ସୁଦୂରପରାହତ । ଯେଉଁମାନେ ଜ୍ଞାନୀ ସେମାନେ ଅର୍ଥକାରୀ ବିଦ୍ୟା ଅର୍ଜ୍ଜନରେ ବହୁ ସମୟ ଓ ଶକ୍ତି ବ୍ୟୟ କରୁଅଛନ୍ତି । ଯେବେ କେହି ମୌଳିକ ଗ୍ରନ୍ଥ ପ୍ରଣୟନ କରିବାକୁ ମନ ବଳାଉଅଛନ୍ତି ସେ ତାହା ନାନା କାରଣରୁ ଇଂରାଜୀ ଭାଷାରେ ଲିପିବଦ୍ଧ କରିବାକୁ ପ୍ରୟାସୀ ହେଉଅଛନ୍ତି । ସମଗ୍ର ଭାରତରେ ନାନା ଭାଷା ପ୍ରଚଳିତ ଅଛି, ପ୍ରତ୍ୟେକ ଭାଷାବିତ୍ ପଣ୍ଡିତମାନେ ସ୍ୱକୀୟ ଭାଷାର ପୁଷ୍ଟିସାଧନରେ ତତ୍ପର, ସମଗ୍ର ଭାରତୀୟ ଶକ୍ତି କୌଣସି ଏକ ଭାରତୀୟ ଭାଷାର ସାହିତ୍ୟଗଠନରେ ବ୍ୟୟିତ ଓ ନିୟୋଜିତ ନୁହେ । ଭିନ୍ନ ଭିନ୍ନ ଶକ୍ତି ଭିନ୍ନ ଭିନ୍ନ ସାହିତ୍ୟଗଠନରେ ବ୍ୟାପୃତ । ଭାଷାଗତ ଏକତାର ଅଭାବ ଭାରତରେ ମୌଳିକତା

ବିଜ୍ଞାନର ଗୋଟିଏ ପ୍ରଧାନ ଅଙ୍ଗରୂପ ବୋଲି ବିବେଚିତ ହୋଇଥାଏ ।

ମୌଳିକଗ୍ରନ୍ଥ ପ୍ରଣୟନ ଓ ପ୍ରଚାର ଯେପରି ବାଞ୍ଛନୀୟ, ତଦ୍ରୂପ ସେମାନଙ୍କର ଉତ୍କୃଷ୍ଟ ସମାଲୋଚନା ମଧ୍ୟ ଏକାନ୍ତ ପ୍ରୟୋଜନୀୟ । ନିରପେକ୍ଷ ସମାଲୋଚନାଦ୍ୱାରା ସାହିତ୍ୟରାଜ୍ୟର କଣ୍ଟକ ଦୂରୀଭୂତ ହୁଏ, ଉନ୍ନତ ଆଦର୍ଶ ଆଡ଼କୁ ଦୃଷ୍ଟି ପରିଚାଳିତ ହୁଏ । କିନ୍ତୁ ସତ୍ୟନିଷ୍ଠ, ସବଳ, ସ୍ୱାଧୀନ ମତର ଅଭାବରୁ ଉତ୍କୃଷ୍ଟ ସମାଲୋଚକର ଅଭାବ ଲକ୍ଷିତ ହୁଏ । ଜ୍ଞାନର ନାନାବିଧ ଶାଖାସମ୍ବନ୍ଧୀୟ ମୌଳିକଗ୍ରନ୍ଥ ପ୍ରଣୀତ ଅବା କିପରି ହେବ ? ଆମ୍ଭମାନଙ୍କର ଜ୍ଞାନପିପାସା କାହିଁ ? ଆମ୍ଭେମାନେ କେଉଁଠି ଏକାଗ୍ର ଚିତ୍ତରେ ସାଧନାରେ ପ୍ରବୃତ୍ତ ହେଉଅଛୁଁ ? ଆମ୍ଭେମାନେ ଯତ୍କିଞ୍ଚିତ୍ ଅର୍ଥ ଉପାର୍ଜ୍ଜନ କରି ସୁଖରେ କାଳ ଯାପନ କରିବାକୁ ଭଲ ମଣୁ । ପ୍ରବଳ ଅର୍ଥଲାଳସାକୁ ହେୟ ଜ୍ଞାନ କରି ବିଳାସିତା ପ୍ରତି ବୀତଶ୍ରଦ୍ଧ ହୋଇ ଅଧ୍ୟବସାୟରେ ନିରତ ହୋଇ ମହାସାଧନାରେ ପ୍ରବୃତ୍ତ ହେଲେ ନିଶ୍ଚୟ ଭାରତୀଦେବୀଙ୍କର କୃପାକଟାକ୍ଷ ପତିତ ହେବ ଏବଂ କ୍ରମେ କ୍ରମେ ମୌଳିକ ଗ୍ରନ୍ଥମାନ ପ୍ରଣୀତ ଓ ପ୍ରଚାରିତ ହୋଇ ସାହିତ୍ୟରାଜ୍ୟ ସମୃଦ୍ଧ ହେବ ସନ୍ଦେହ ନାହିଁ ।

ଶ୍ରୀ ଚନ୍ଦ୍ରଶେଖର ନନ୍ଦ ।

## "ଆମାଦେର ଜ୍ୟୋତିଷୀ ଓ ଜ୍ୟୋତିଷ ।" (୪)

ପୃଥିବୀର ଗୋଳତ୍ୱ ଓ ନିରବଲମ୍ବତ୍ୱ ବିଷୟରେ ଋକ୍ ବେଦର ( ଋକ୍ ସଂ ୪ମଃ ୫୬ ସୂଃ ) ରୁ ଅସ୍ପଷ୍ଟ ଆଭାସ ମିଳୁଅଛି । ବରାହ ତାହାଙ୍କ ପଞ୍ଚ ସିଦ୍ଧାନ୍ତିକାରେ ଲେଖିଅଛନ୍ତି "ଯେପରି ଦୁଇ ଅୟସ୍କାନ୍ତର ମଧ୍ୟବର୍ତ୍ତୀ ଗୋଲାକାର ଲୌହ ଅବସ୍ଥିତ ଥାଏ ସେହିପରି ଏ ମୃତ୍ତିକାଦି ପଞ୍ଚ ମହାଭୂତମୟ ଭୂଗୋଳ ତାରାଗଣ ମଧ୍ୟରେ ଶୂନ୍ୟରେ ବର୍ତ୍ତୁଳାକାରରେ ଅବସ୍ଥିତ ।" ଆଚାର୍ଯ୍ୟ ଆର୍ଯ୍ୟଭଟ୍ଟ ଓ ଭାସ୍କରାଚାର୍ଯ୍ୟ ଉଭୟ ପୃଥିବୀର ଗୋଳତ୍ୱ ଓ ନିରବଲମ୍ବତ୍ୱ ସ୍ୱୀକାର କରିଅଛନ୍ତି । ସେମାନେ ପୃଥିବୀର ବ୍ୟାସ ଓ ପରିଧି ଏକ ପ୍ରକାର ସ୍ଥିର କରିଥିଲେ, କିନ୍ତୁ କେଏ ଯୋଜନ ପରିଧିକୁ ହେବେ ବୋଲି ଗ୍ରହଣ କରିଥିଲେ ତାହା ନିଶ୍ଚିତରୂପେ ଜଣା ନ ଥିବାରୁ ତାହାର ଗଣନା ଠିକ୍ ତାହା ବୋଲି ଯାଇ ନ ପାରେ ।

ଆବହର ବିସ୍ତାର କାହାର ମତରେ ଦଶ ଯୋଜନ କାହାର ମତରେ ଅବା ଦ୍ୱାଦଶ ଯୋଜନ । ଯୋଜନର ପରିମାଣ ନଅ ମାଇଲ ହେଲେ ଆଧୁନିକ ମତଠାରୁ ଏହାର ଅଧିକ ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ ନାହିଁ । ଆବହବିଦ୍ୟାର ଚର୍ଚ୍ଚା ପୂର୍ବକାଳରେ ଅତି ଅଧିକ ପରିମାଣରେ ହେଉଥିଲା ଏବଂ ଆବହବିଦ୍ୟାଭ୍ୟାସୀ ବୃଷ୍ଟିର କାଳ ଅବଧାରଣ କରି ପାରୁଥିବା ହେତୁ ବିଶେଷରେ ସମ୍ମାନାର୍ହ ହେଉଥିଲେ । ବୃଷ୍ଟିର ପରିମାଣ ସ୍ଥିର କରିବା ନିମନ୍ତେ ଏକହସ୍ତ ବ୍ୟାସଯୁକ୍ତ ସମପରିବର୍ତ୍ତୁଳ କୁଣ୍ଡକ ଗ୍ରହଣ କରା ଯାଉଥିଲା । ତହିଁରେ ଯେତେ ଜଳ ପତିତ ହେଉଥିଲା ତାହାକୁ ଏକ ଆଢ଼କ ବୋଲି ଗ୍ରହଣ କରା ଯାଉଥିଲା ।

ବିଦ୍ୟୁତର କାରଣ ସମ୍ବନ୍ଧରେ ଶ୍ରୀପତି ଲେଖିଅଛନ୍ତି "ପୁଷ୍କଳ ସମୁଦ୍ର ମଧ୍ୟରେ ବାଡ଼ବାଗ୍ନି ନାମକ ଅଗ୍ନିବଶତଃ ଧୂମମାଳା ଉତ୍ଥିତ ହୋଇ ପବନଦ୍ୱାରା ଆକାଶକୁ ନୀତ ଓ ଇତସ୍ତତଃ ବିକ୍ଷିପ୍ତ ହୁଏ । ସୂର୍ଯ୍ୟକିରଣଦ୍ୱାରା ତାହା ତପ୍ତ ହେଲେ ଯେଉଁ ସମସ୍ତ ସ୍ଫୁଲିଙ୍ଗ ନିର୍ଗତ ହୁଏ ସେଗୁଡିକହିଁ ବିଦ୍ୟୁତ୍ ।" ବିଦ୍ୟୁତ୍ପାତ ସମ୍ବନ୍ଧରେ ଏହି ମହାତ୍ମା ଲେଖିଅଛନ୍ତି "ବୈଦ୍ୟୁତ ତେଜଃ ଅକସ୍ମାତ୍ ମୃତ୍ତିକାଦି ସହିତ ମିଶ୍ରିତ ହେଲେ ପ୍ରତିକୂଳ ଓ

ଅନୁକୂଳ ପବନର ଆଘାତଦ୍ୱାରା ଆକାଶରେ ବାତ୍ୟାବତ୍ ଭ୍ରମଣ କରୁଥାଏ । ଅକାଳରେ ବୃଷ୍ଟିପାତ ସମୟରେ ତାହା ପତିତ ହୁଏ । ପ୍ରାବୃଟ କାଳରେ ପାଂଶୁ ଉତ୍ଥିତ ହୁଏ ନାହିଁ, ବିଦ୍ୟୁତ୍ପାତ ମଧ୍ୟ ହୁଏ ନାହିଁ । ବିଦ୍ୟୁତ୍ ତିନି ପ୍ରକାର; ପାର୍ଥିବ, ଜଳୀୟ ଓ ତୈଜସ ।" ଅଧ୍ୟାପକ ମହାଶୟ ଲେଖିଅଛନ୍ତି "ବିଦ୍ୟୁତର କାରଣ ସମ୍ବନ୍ଧରେ ଆଧୁନିକ ପଣ୍ଡିତମାନେ ଏକମତ ହୋଇ ପାରି ନାହାନ୍ତି । ତେବେ ଦେଖାଯାଏ ଯେ ସମୁଦ୍ର ଓ ସ୍ଥଳଭାଗର ଉପରସ୍ଥ ବାୟୁର ତଡ଼ିତ୍ ଏକଭାବାପନ୍ନ ନୁହେ । ଜଳ ବାଷ୍ପୀଭୂତ ହେବା ସଙ୍ଗେ ସଙ୍ଗେ ତଡ଼ିତ୍ ପ୍ରକାଶିତ ହୁଏ ଏବଂ ଏହା ମେଘର ଜଳକଣାରେ ବର୍ତ୍ତମାନ ଥାଏ । ବାଷ୍ପକଣା ଏକତ୍ର ଓ ଘନୀଭୂତ ହେଲେ ଜଳକଣା ହୁଏ ଏବଂ ତତ୍ସଙ୍ଗେ ଅବଦ୍ଧ ତଡ଼ିତ୍ ବିଦ୍ୟୁତ୍ ଆକାରରେ ଦୃଶ୍ୟ ହୁଏ । ବାଷ୍ପକଣା ଘନ ହେବାସକାଶେ ଧୂଳିକଣା ଆବଶ୍ୟକ । ଏହି ସମୁଦାୟ ସ୍ମରଣ କଲେ ମେଘରୁ ବିଦ୍ୟୁତ୍ ସମ୍ଭବ ସମ୍ବନ୍ଧରେ ଆଧୁନିକ ଜ୍ଞାନ ସହିତ ଫଳତଃ ଶ୍ରୀପତିଙ୍କ ଉକ୍ତିର ଅଧିକ ବିଭିନ୍ନତା ଦେଖାଯାଏ ନାହିଁ ।"

ଚନ୍ଦ୍ର ସୂର୍ଯ୍ୟର ପରିବେଶ, ପ୍ରତି ସୂର୍ଯ୍ୟ ଏବଂ ଇନ୍ଦ୍ରଧନୁର ଉତ୍ପତ୍ତି ସମ୍ବନ୍ଧରେ ବରାହଙ୍କ ମତ ଆଧୁନିକ ମତଠାରୁ ଅଧିକ ଭିନ୍ନ ନୁହେ । ପ୍ରାଚୀନ କାଳରେ ମୃଗ, ପକ୍ଷୀ, ପବନ, ପରିବେଶ, ପରିଧି, ଅଭ୍ରତରୁ ପ୍ରଭୃତି ନାନାବିଧ ପ୍ରାକୃତିକ ଦୃଶ୍ୟ ପୁରାକାଳୀନ ଜ୍ୟୋତିଷିମାନେ ବର୍ଣ୍ଣନା କରିଅଛନ୍ତି, ତନ୍ମଧ୍ୟରୁ ପରିଘ ଓ ଗନ୍ଧର୍ବନଗର ଏହି ଦୁଇ ଗୋଟି ଏଠାରେ ବିଶେଷରେ ଉଲ୍ଲେଖଯୋଗ୍ୟ । ପରିଘର ସଂଜ୍ଞା ନିମ୍ନଲିଖିତ ରୂପେ ପ୍ରଦତ୍ତ ହୋଇଅଛି ।

ପରିଘ ଇତି ମେଘରେଖା ଯା ତିର୍ଯ୍ୟଗ
ଭାସ୍କରୋଦୟେଽସ୍ତେ ବା ।

ଏଥିରୁ ବୋଧ ହେଉଅଛି ଏହା କେବଳ ସନ୍ଧ୍ୟା କାଳରେ ଦୃଷ୍ଟିଗୋଚର ହେଉଥିଲା । ପରିଘଦ୍ୱାରା ଆଧୁନିକ ଇଉରୋପୀୟ ବୈଜ୍ଞାନିକମାନେ କଣ ବୁଝନ୍ତି ତାହା ଜଣା ଯାଉ ନାହିଁ । ଅଧ୍ୟାପକ ମହାଶୟ ନାନା ପ୍ରକାର ଯୁକ୍ତିଦ୍ୱାରା ଅନୁମାନ କରନ୍ତି ତାହା zodiacal light ହୋଇଥିବ । ଗନ୍ଧର୍ବନଗରର ଅନ୍ୟ ନାମ ପୁର । ଏହାର ସଂଜ୍ଞା ନିମ୍ନଲିଖିତରୂପେ ପ୍ରଦତ୍ତ ହୋଇଅଛି:—

ଅନେକ ବର୍ଣ୍ଣାକୃତି ଖେ ପ୍ରକାଶତେ
ପୁରଂ ପତାକାଧ୍ୱଜତୋରଣାନ୍ୱିତଂ ।

ଅଧ୍ୟାପକ ମହାଶୟ ଲେଖିଅଛନ୍ତି "ମନେ ମନେ ହୁଏ ଗନ୍ଧର୍ବନଗର ଦ୍ୱାରା ପ୍ରାଚୀନମାନେ Aurora ବୁଝୁଥିଲେ ।" କାରଣ ବାୟୁପୁରାଣରେ ବର୍ଣ୍ଣନା, ଯଥା—

ଗନ୍ଧର୍ବନଗରୀ ସ୍ଫୀତା ହେମକକ୍ଷେ ନଶୋଭତେ
ଅଶୀତ୍ୟମରପୁର୍ଯ୍ୟାସ୍ତ ମହାପ୍ରାକାରତୋରଣା ।

ଏହିପରି ବର୍ଣ୍ଣନା ମଧ୍ୟ ବାୟୁପୁରାଣରେ ଦୃଷ୍ଟ ହୁଏ । ଏହା କଦାପି ମରୀଚିକାର ବର୍ଣ୍ଣନା ନୁହେ । ନିରକ୍ଷବୃତ୍ତର ଉତ୍ତର ଦକ୍ଷିଣରେ ୨୪ । ୨୫ ଅଂଶର ମଧ୍ୟବର୍ତ୍ତୀ ପ୍ରଦେଶରେ Aurora ପ୍ରାୟ ଦୃଷ୍ଟିଗୋଚର ହୁଏ ନାହିଁ, ଭିନ୍ନ ପୃଥିବୀର ସର୍ବତ୍ର ଏହା ଦେଖାଯାଏ । ତେବେ ବରାହ ଉଜ୍ଜୟିନୀରେ ବସି ଏହା କପରି ଅବଲୋକନ କରିଥିଲେ ? ଏହାର ଉତ୍ତରରେ କୁହାଯାଇ ପାରେ ପୂର୍ବାଚାର୍ଯ୍ୟମାନେ ବହୁ ଶତବର୍ଷ ପରଦର୍ଶନ କରି ଯାହା ଲିପିବଦ୍ଧ କରିଥିଲେ ବରାହ ବୃହତ୍ ସଂହିତାରେ ତାହାର ସଂକ୍ଷିପ୍ତ ଉଦ୍ଧାର ମାତ୍ର କରିଅଛନ୍ତି ।

ଚନ୍ଦ୍ର—ପୁରାଣବର୍ଣ୍ଣିତ ଚନ୍ଦ୍ର କ୍ଷୀରୋଦାର୍ଣ୍ଣବସମ୍ଭବ । ସିଦ୍ଧାନ୍ତକାରମାନଙ୍କ ମତରେ ଏହା ଜଳମୟ । ବରାହଙ୍କ ମତରେ "ଯେପରି ଦର୍ପଣରେ ପତିତ ସୂର୍ଯ୍ୟରଶ୍ମି ଦ୍ୱାରମଧ୍ୟରେ ପ୍ରବେଶ କରି ଗୃହର ଅନ୍ଧକାର ନାଶ କରେ ସେହିପରି ଜଳମୟ ଚନ୍ଦ୍ର ଦେହରେ ସୂର୍ଯ୍ୟରଶ୍ମି ମୂର୍ଚ୍ଛିତ ହୋଇ ରାତ୍ରିର ଅନ୍ଧକାର ନାଶ କରେ ।"

ସୂର୍ଯ୍ୟସିଦ୍ଧାନ୍ତ ମତରେ ଚନ୍ଦ୍ରର ପରମ ଲମ୍ବନ ୫୩ କଳା ୨୦ ବିକଳା । ସୁତରାଂ ପୂର୍ବାଚାର୍ଯ୍ୟମାନଙ୍କ ଗଣନାନୁସାରେ ଚନ୍ଦ୍ରର ଦୂରତ୍ୱ ୬୪,୪୭ ଭୂବ୍ୟାସାର୍ଦ୍ଧ ସଙ୍ଗେ ସମାନ । ଆଧୁନିକ ଜ୍ୟୋତିଷୀମାନଙ୍କ ମତରେ ଏହା ପ୍ରାୟ ୬୦ ଭୂବ୍ୟାସାର୍ଦ୍ଧ ସଙ୍ଗେ ସମାନ । ଭୂବ୍ୟାସାର୍ଦ୍ଧ ୮୦୦ ଯୋଜନ ହେଲେ ଚନ୍ଦ୍ରର ଦୂରତ୍ୱ ୫୧୫୭୦ ଯୋଜନ । ଭୂବ୍ୟାସ ୧୬୦୦ ଯୋଜନ ସହିତ ଚନ୍ଦ୍ରବ୍ୟାସର ଅନୁପାତ ୦·୩ । ଆଧୁନିକ ଜ୍ୟୋତିଷ ମତରେ ଏହା ୦·୨୭୩ ମାତ୍ର ।

ସୂର୍ଯ୍ୟ—ବରାହ ଲେଖିଅଛନ୍ତି “ସୂର୍ଯ୍ୟର ଶରୀର ନିର୍ମଳ, ବୃତ୍ତ ଅବକ୍ର ଏବଂ ସ୍ନିଗ୍ଧ ବିସ୍ତୀର୍ଣ୍ଣ ନିର୍ମଳ ଦୀର୍ଘ ରଶ୍ମିଯୁକ୍ତ । ଯେତେବେଳେ ଦିବାକରର ମୂର୍ତ୍ତିର କାନ୍ତି ଓ ଚିହ୍ନ ଅବିକୃତ ଥାଏ, ସେତେବେଳେ ସେ ଜଗତର ଶ୍ରେୟଃ କରନ୍ତି । ଏହି ବର୍ଣ୍ଣନାରୁ ସମୟ ସମୟରେ ସୂର୍ଯ୍ୟରେ କଳଙ୍କ ଦୃଷ୍ଟିଗୋଚର ହେଉଥିବାର ଅନୁମିତ ହୁଏ । ଫଳତଃ ବରାହ ଲେଖିଅଛନ୍ତି :—

ତାମସକୀଲକସଂଜ୍ଞାରାହୁସୁତାଃ କେତବସ୍ତ୍ରୟସ୍ତ୍ରିଂ
ବର୍ଣ୍ଣସ୍ଥାନାକାରୈସ୍ତାନ୍ ଦୃଷ୍ଟ୍ୱାର୍କେ ଫଳଂ ବ୍ରୂୟାତ୍ ।

ସୂର୍ଯ୍ୟବିମ୍ବରେ ଏମାନେ ଦୃଷ୍ଟିଗୋଚର ହେଲେ କିପ୍ରକାର ଫଳ ଦାନ କରନ୍ତି ତତ୍ସମ୍ବନ୍ଧରେ ବରାହ କହିଅଛନ୍ତି “ସେମାନେ ଉଦିତ ହେଲେ ପାନୀୟ ଜଳ କଳୁଷିତ ଓ ଆକାଶ ଧୂଳିବ୍ୟାପ୍ତ ହୁଏ ଏବଂ ଧୂଳିମିଶ୍ର ପବନ ଏପରି ପ୍ରଚଣ୍ଡ ବେଗରେ ବହେ ଯେ ପର୍ବତବୃକ୍ଷାଦିର ଶିଖର ଲୁଣ୍ଠିତ ହୋଇଥାଏ । ତରୁମାନେ ଋତୁ ଅନୁସାରେ ଫଳ ପୁଷ୍ପ ପ୍ରସବ କରନ୍ତି ନାହିଁ, ଅରଣ୍ୟ ପଶୁପକ୍ଷୀମାନେ ଆକାଶମଣ୍ଡଳରେ ପରୁଷରବ କରୁଥାନ୍ତି, ସୂର୍ଯ୍ୟର ଉଦୟାସ୍ତ କାଳରେ ଦିଗ୍‌ଦାହ ଅର୍ଥାତ୍ ଆକାଶ ରକ୍ତବର୍ଣ୍ଣ ହୁଏ ଏବଂ ବଜ୍ରପାତ ଭୂକମ୍ପାଦି ଉତ୍ପାତ ଘଟେ । ଏହି ବର୍ଣ୍ଣନା ସହିତ ଆଧୁନିକ ପଣ୍ଡିତମାନଙ୍କର ମତର ସୌସାଦୃଶ୍ୟ ଦ୍ରଷ୍ଟବ୍ୟ । ସୌରକଳଙ୍କର ଉଦୟ ସହିତ ବୃଷ୍ଟି, ବାତ୍ୟା, ବାଣିଜ୍ୟ, ଦେଶଦେଶରେ ମଧ୍ୟ ସମ୍ବନ୍ଧ ଅଛି ଏହା ନାନା ପଣ୍ଡିତ ନାନାମତେ ପ୍ରକାଶ କରିଅଛନ୍ତି ।

ଭାସ୍କରଙ୍କ ମତରେ ରବିର ମଧ୍ୟମ ବିମ୍ବକଳା ୩୨ । ୩୧ । ୩୩ । ଏହି ଅନୁପାତଦ୍ୱାରା ସୂର୍ଯ୍ୟର ବ୍ୟାସ ୬୫୨୨ ଯୋଜନ ଅର୍ଥାତ୍ ଭୂବ୍ୟାସର କିଞ୍ଚିଦଧିକ ଚତୁର୍ଗୁଣ । ଆଧୁନିକ ମତରେ ଏହା ଭୂବ୍ୟାସାର୍ଦ୍ଧର ୨୩୪୩୯ ଭୂବ୍ୟାସାର୍ଦ୍ଧ ସଙ୍ଗେ ସମାନ । ସୂର୍ଯ୍ୟର ଲମ୍ବନ ତାହାର ଚନ୍ଦ୍ରର ପଞ୍ଚଦଶାଂଶ ସ୍ୱୀକାର କରି ପ୍ରାଚୀନମାନେ ସୂର୍ଯ୍ୟଙ୍କୁ ପୃଥିବୀର ନିକଟକୁ ଆଣିଥିଲେ । ଲମ୍ବନ ପରିମାଣରେ କେହି ଉତ୍କର୍ଷ ଲାଭ କରି ପାରି ନାହାନ୍ତି । ଅଧ୍ୟାପକ ମହୋଦୟ ଲେଖିଅଛନ୍ତି “ତେବେ ସୁଖର ବିଷୟ ବହୁକାଳ ପରେ ହେଲେ ମଧ୍ୟ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ମହାଶୟ ରବିର ଲମ୍ବନ ପରିମାଣରେ ବହୁ ଉନ୍ନତି ପ୍ରଦର୍ଶନ କରିଅଛନ୍ତି । ସେ ଚନ୍ଦ୍ରର ଲମ୍ବନ ୬୫ । ୨୮ କଳାଦି ଏବଂ ସୂର୍ଯ୍ୟର ୨୨ ବିକଳା ନିର୍ଣ୍ଣୟ କରି ଆଧୁନିକ ପାଶ୍ଚାତ୍ୟ ଜ୍ୟୋତିଷର ଅତି ନିକଟକୁ ଆସିଅଛନ୍ତି । ତାହାଙ୍କ ମତରେ ଚନ୍ଦ୍ରର ଦୂରତ୍ୱ ଭୂବ୍ୟାସାର୍ଦ୍ଧର ୬୨ ଗୋଟି ଏବଂ ସୂର୍ଯ୍ୟର ୯୫୮୦ ସଙ୍ଗେ ସମାନ । ଏତଦନୁସାରେ ସୂର୍ଯ୍ୟର ବ୍ୟାସ ଯୋଜନ ୭୨୦୦୦ ଅର୍ଥାତ୍ ପୃଥିବୀର ଅପେକ୍ଷା ୪୫ ଗୁଣ ଅଧିକ ।”

ତଦନନ୍ତର ଅଧ୍ୟାପକ ମହାଶୟ ଗ୍ରହଣ ବିଷୟରେ ପ୍ରାଚୀନ ଋଷିମାନଙ୍କ ଜ୍ଞାନର ସମାଲୋଚନା କରିଅଛନ୍ତି । ମାତ୍ର ସେ ସମସ୍ତ ବିଷୟ ଏହି ପ୍ରବନ୍ଧର କଳେବର ଦୀର୍ଘ ହେବା ଭୟରୁ ପରିତ୍ୟକ୍ତ ହେଲା ।

ତାରାଗ୍ରହ—ସଂସ୍କୃତରେ ‘ଗ୍ରହ’ ଶବ୍ଦର ଅର୍ଥ ଯାହା ଇଂରାଜୀ ‘planet’ ଶବ୍ଦର ଅର୍ଥ ତାହା ନୁହେ । ଇଂରାଜୀ planet ଶବ୍ଦର ଅର୍ଥ ଭ୍ରମଣଶୀଳ । କିନ୍ତୁ ସଂସ୍କୃତ ‘ଗ୍ରହ’ ଶବ୍ଦ ଗ୍ରହ ଧାତୁରୁ ନିଷ୍ପନ୍ନ । ଯେ ଗ୍ରହଣ କରେ ସେ ଗ୍ରହ । କଣ ଗ୍ରହଣ କରେ ? କାହାର ମତରେ ଗତ, କାହାର ମତରେ

ଭାଗ୍ୟ । ଅଦ୍ୟ ମତରେ ସୂର୍ଯ୍ୟାଦି ଗତିଶୀଳ ବୋଲି ଗ୍ରହ । ଅନ୍ୟ ମତରେ ସୂର୍ଯ୍ୟାଦି ଆମ୍ଭମାନଙ୍କର ଶୁଭାଶୁଭର ନିୟାମକ, ଏହି ହେତୁରୁ ସେମାନେ ଗ୍ରହ ନାମ ପାଇଅଛନ୍ତି । ଧର୍ମଅଧ୍ୟାପକରେ ଗ୍ରହ ଶବ୍ଦର ଯେପରି ବ୍ୟୁତ୍ପତ୍ତି ଅଛି ବ୍ୟାକରଣ ତାହା ପାଠ କରି ମହାମହୋପାଧ୍ୟାୟ ଚନ୍ଦ୍ରଶେଖର କହନ୍ତି "ସୂର୍ଯ୍ୟ ପକ୍ଷରେ, ଦଦ୍ୟ ତେଜୋ ଗୃହ୍ଣାତି ଇତ୍ୟୁତ୍ପତ୍ତ୍ୟା ଗ୍ରହଃ । ଚନ୍ଦ୍ରାଦିପକ୍ଷେ, ପ୍ରକାଶକ-ତୟା ସ୍ୱପ୍ରବୃତ୍ତିଦର୍ଶନେନ ରବେସ୍ତେଜୋ ଗୃହ୍ଣାତି ଗ୍ରହଃ ।" ପୁରାଣ ମତରେ ଦେବତାଇ ଗ୍ରହ ବୋଲି ଚନ୍ଦ୍ରସୂର୍ଯ୍ୟାଦି ଗ୍ରହ । ଅଧ୍ୟାପକ ମହାଶୟଙ୍କ ମତରେ ତୈତ୍ତିରୀୟ ସଂହିତାରେ ଗ୍ରହ ଶବ୍ଦର ଅର୍ଥ ଯଜ୍ଞପାତ୍ର ଏବଂ ଐତରେୟ ବ୍ରାହ୍ମଣରେ ସୋମରସ ରଖିବାର ପାତ୍ର ହୋଇଥିବାରୁ "ଚନ୍ଦ୍ର ସୂର୍ଯ୍ୟ ଜ୍ୟୋତିଃ ପଦାର୍ଥ ନିମିତ୍ତ ଯେଉଁ ବିଶେଷ ବିଶେଷ ଯଜ୍ଞପାତ୍ର ବ୍ୟବହୃତ ହେଉଥିଲା, କାଳ-କ୍ରମେ ସେହି ପାତ୍ରର ନାମାନୁସାରେ ଜ୍ୟୋତିଷ-ମାନଙ୍କର ମଧ୍ୟ ସାମାନ୍ୟ ନାମ ଗ୍ରହ ହେଲା ।"

ସିଦ୍ଧାନ୍ତ ମତରେ ନକ୍ଷତ୍ରମଣ୍ଡଳର ଅଧୋ-ଭାଗରେ ଗ୍ରହମାନଙ୍କର କକ୍ଷା । ଆର୍ଯ୍ୟଭଟ୍ଟ କହିଅଛନ୍ତି :—

ଭାନାମଧଃଶନୈଶ୍ଚରସୁରଗୁରୁଭୌମାର୍କ
ଶୁକ୍ରବୁଧଶ୍ଚନ୍ଦ୍ରାଃ ।
ତେଷାମଧଶ୍ଚ ଭୂମିର୍ମେଧୀଭୂତାଖମଧ୍ୟସ୍ଥା ॥

ଅର୍ଥାତ୍ ନକ୍ଷତ୍ରସମୂହର କ୍ରମଶଃ ନିମ୍ନରେ ଶନି, ବୃହସ୍ପତି, ମଙ୍ଗଳ, ରବି, ଶୁକ୍ର, ବୁଧ ଓ ଚନ୍ଦ୍ରର କକ୍ଷା । ଏ ସମସ୍ତଙ୍କର ଅଧୋଭାଗରେ ପୃଥିବୀ ଆକାଶର ମଧ୍ୟସ୍ଥଳରେ ମେଧୀଭୂତ ବା ମେରୁ ପ୍ରାୟ ଅବସ୍ଥିତ । ବ୍ରହ୍ମଗୁପ୍ତଙ୍କର ମତ ମଧ୍ୟ ଏହିପରି । ଗ୍ରହପଂକ୍ତି ମଧ୍ୟରେ ସୂର୍ଯ୍ୟ ସ୍ଥାନରେ ପୃଥିବୀକୁ ନିବେଶ କଲେ ଅଧୁନାତନ ମତ ସହିତ ଏହାର ସାମଞ୍ଜସ୍ୟ ମେଳ ହେବ ।

ଆର୍ଯ୍ୟମାନେ ଜାଣିଥିଲେ ଚନ୍ଦ୍ର ପରି ଗ୍ରହମାନେ ମଧ୍ୟ ସ୍ୱପ୍ରକାଶ ନୁହନ୍ତି । ଯଥା ଆର୍ଯ୍ୟଭଟ୍ଟରେ—

ଭୂଗ୍ରହଭାନାଂ ଗୋଲାର୍ଦ୍ଧାନି ସ୍ୱଚ୍ଛାୟୟା ବିବର୍ଣ୍ଣାନି
ଅର୍ଦ୍ଧାନି ଯଥା ସାରଂ ସୂର୍ଯ୍ୟାଭିମୁଖାନି ଦୀପ୍ୟନ୍ତେ ॥

ଭାସ୍କର ଗ୍ରହମାନଙ୍କର ସ୍ୱ ସ୍ୱ ପୂର୍ବଗତି ସ୍ୱୀକାର କରୁଥିଲେ । ସେ ଏହି ଗତିର କାରଣ ନିର୍ଦ୍ଦେଶ କରି ନାହାନ୍ତି । ତେବେ ଗ୍ରହମାନଙ୍କର ପୂର୍ବଗତି ଥିଲେ ସୁଦ୍ଧା ସେମାନେ କାହିଁକି ପଶ୍ଚିମକୁ ଗମ-ପରି ଦେଖାଯାଏ ? ତାହାର ଉତ୍ତରରେ ସେ କହିଅଛନ୍ତି, "ଯେପରି ଭ୍ରମ୍ୟମାଣ କୁଲାଲଚକ୍ରସ୍ଥ କୀଟର ବାମଗତି ହେଲେ ମଧ୍ୟ ତାହା ସ୍ଥିର ହେଲା ପରି ବୋଧ ହୁଏ, ସେହିପରି ଭଚକ୍ରର ପଶ୍ଚିମଗତି ଦ୍ରୁତ ଏବଂ ଗ୍ରହମାନଙ୍କ ପୂର୍ବଗତି ମୃଦୁ ବୋଲି ସେମାନେ ସ୍ଥିର ଥିଲାପରି ବୋଧ ହୁଏ ।"

ତଦନନ୍ତର ଗ୍ରହମାନଙ୍କର ଶୀଘ୍ରୋଚ୍ଚ-ମନ୍ଦୋଚ୍ଚପାତ-ଗତି ବୈଷମ୍ୟର କାରଣ ସମ୍ବନ୍ଧରେ ପ୍ରାଚୀନ ମତ ସହିତ ଅଧୁନାତନ ମତର ତୁଳନା କରି ଅଧ୍ୟାପକ ମହାଶୟ ଯାହା କହିଅଛନ୍ତି ସେ ସମସ୍ତ ଏଠାରେ ବ୍ୟକ୍ତ କରିବା ଅନାବଶ୍ୟକ, କାରଣ ସେ ସମସ୍ତ ଲେଖିଲେ ଗ୍ରନ୍ଥଖଣ୍ଡିକର ପୁନରୁକ୍ତିର ମାତ୍ର ହେବ ।

ଧୂମକେତୁ ଓ ଉଲ୍କା—ବୃହତ୍‌ସଂହିତାରେ ଧୂମକେତୁର ବିବରଣ ଏହିପରି ଦିଆଯାଇଅଛି । ଯେଉଁମାନେ ହ୍ରସ୍ୱ, ଅସ୍ଥୂଳ, ନିର୍ମଳ, ସ୍ନିଗ୍ଧ, ଋଜୁ, ଅଳ୍ପକାଳସ୍ଥାୟୀ ଓ ଶୁକ୍ଳବର୍ଣ୍ଣ ସେମାନଙ୍କର ନାମ କେତୁ । ଏମାନେ ଶୁଭଫଳ ପ୍ରଦାନ କରନ୍ତି । ଯେଉଁମାନେ ଏହାର ବିପରୀତ ସେମାନେ ଧୂମକେତୁ । ସେମାନେ ଇନ୍ଦ୍ରଧନୁପରି ବକ୍ର ଏବଂ ଏମାନଙ୍କ ମଧ୍ୟରୁ କାହାର କାହାର ଦୁଇ ତିନୋଟି ଶିଖା ଥାଏ । ଏସମସ୍ତ ଧୂମକେତୁ ଶୁଭଙ୍କର ନୁହେଁ ।"

ଅଧୁନାତନ ଇଂରେଜୀ ବିଜ୍ଞାନାନୁସାରେ ଯାହାକୁ Shooting star କହାଯାଏ ତାହାକୁ ମହର୍ଷିମାନେ ଧିଷ୍ଣ୍ୟ ଏବଂ ଯେଉଁଗୁଡ଼ିକୁ Meteors କହାଯାଏ ସେଗୁଡ଼ିକୁ ଉଲ୍କା ଏହି ନାମ ଦେଇ-ଥିଲେ । ଉଲ୍କା ପଡ଼ିବା ସମୟରେ ଶବ୍ଦ କରେ,

ସୁତରାଂ ପ୍ରାଚୀନମାନେ ଏତଦ୍ଦ୍ୱାରା detonating meteors or bolides ବୁଝିଥିଲେ । ପ୍ରାଚୀନମାନଙ୍କ ମତରେ ଅନ୍ତରୀକ୍ଷ ଜ୍ୟୋତିଃପଦାର୍ଥ ମଧ୍ୟରେ ଉଲ୍କା ପ୍ରଧାନ । ସେଗୁଡ଼ିକ ଧିଷ୍ଣ୍ୟ, ଉଲ୍କା, ଅଶନି, ବିଦ୍ୟୁତ୍ ଓ ତାରା ଏହି ପଞ୍ଚନାମରେ ପରିଚିତ । ଏମାନଙ୍କର ସାଧାରଣ ନାମ ଉଲ୍କା ହେଲେହେଁ ଏମାନେ ପରସ୍ପରଠାରୁ ବିଭିନ୍ନ । "ଉଲ୍କାର ଶିର ବିଶାଳ କିନ୍ତୁ ପୁଚ୍ଛ ସୂକ୍ଷ୍ମ । ଏମାନେ ପଡ଼ୁ ପଡ଼ୁ ପୁରୁଷପ୍ରମାଣ ଦୀର୍ଘ ହୁଅନ୍ତି । ଏମାନଙ୍କ ମଧ୍ୟରୁ କେହି କେହି ମହାଶବ୍ଦରେ ପତିତ ହୁଅନ୍ତି । କେହି କେହି ଧରାତଳରେ ପଡ଼ି ଚକ୍ରବତ୍ ଭ୍ରମଣପୂର୍ବକ ତାହାକୁ ବିଦୀର୍ଣ୍ଣ କରନ୍ତି ।" ଉଲ୍କାର ଏବମ୍ବିଧ ବର୍ଣ୍ଣନା ପୁରାତନ ଗ୍ରନ୍ଥମାନଙ୍କରେ ଦେଖାଯାଏ ।

ନକ୍ଷତ୍ର—ଅଧ୍ୟାପକ ମହାଶୟ ସର୍ବପରିଚିତ ୨୭ ଗୋଟି ନକ୍ଷତ୍ରର ନାମ, ସ୍ଥାନ ଏବଂ ଅନ୍ୟାନ୍ୟ ବର୍ଣ୍ଣନା ସମ୍ବନ୍ଧରେ ଯେତେଗୁଡ଼ିଏ ଗବେଷଣାପୂର୍ଣ୍ଣ ବିଷୟର ଅବତାରଣା କରିଅଛନ୍ତି ତାହା ଏଠାରେ ପ୍ରଦାନ କରିବା ଅନାବଶ୍ୟକ । ଏତଦ୍ବ୍ୟତୀତ ଅଗସ୍ତ୍ୟ, ମୃଗବ୍ୟାଧ ବା ଲୁବ୍ଧକ, ଅପାଂବତ୍ସ୍ୟ, ଅଗ୍ନି ବା ହୁତଭୁକ୍, ପ୍ରଜାପତି ବା ବ୍ରହ୍ମା, ଓ ଆପଃ, ଧ୍ରୁବ, ସପ୍ତର୍ଷି, ଶୂଳ ଏହି କେତେଗୁଡ଼ିଏ ନକ୍ଷତ୍ର ସହିତ ପ୍ରାଚୀନମାନେ ସୁପରିଚିତ ଥିଲେ । ଅଧ୍ୟାପକ ମହାଶୟ କହିଅଛନ୍ତି "ନକ୍ଷତ୍ରସମୂହର ଦୀପ୍ତିର କାରଣ ସମ୍ବନ୍ଧରେ ବୃଦ୍ଧଗର୍ଗ ପରାଶର ଆର୍ଯ୍ୟଭଟ୍ଟ ବରାହାଦି ପ୍ରାଚୀନ ଜ୍ୟୋତିଷିମାନେ ବିଶ୍ୱାସ କରୁଥିଲେ ଯେ, ସୂର୍ଯ୍ୟକିରଣହିଁ ତାହାର କାରଣ । ତାରାମାନଙ୍କର ଅପରମେୟ ଦୂରତ୍ୱ ବିଷୟରେ ସେମାନେ ବିଶେଷ କିଛି ଜାଣି ନ ଥିଲେ । ଅବଶ୍ୟ ସେମାନେ ଜାଣୁଥିଲେ ଯେ ତାରାସମୂହ ଗ୍ରହସ୍ଥାନାଦିର ବହୁଦୂରରେ ଅବସ୍ଥିତ । ପୌରାଣିକମାନେ ଏବଂ ବୋଧହୁଏ ସିଦ୍ଧାନ୍ତମାନେ ଧ୍ରୁବତାରାକୁ ସମୁଦାୟ ଜ୍ୟୋତିଷ୍କର ଊର୍ଦ୍ଧ୍ୱରେ ଅବସ୍ଥିତ ବୋଲି ମନେ କରୁଥିଲେ ।"

ଜଗତର ଉତ୍ପତ୍ତି, ସ୍ଥିତି ଓ ଲୟ ।

ଏ ବିଷୟରେ ପ୍ରାଚୀନମାନଙ୍କର ଧାରଣା କଣ ଥିଲା ତାହା ବିବୃତ କରି ଏହି ପ୍ରବନ୍ଧ ଶେଷ କରାଯିବ । ଅସ୍ମଦ୍ଦେଶୀୟ ଜ୍ୟୋତିଷୀ, ଦାର୍ଶନିକ ଓ ପୌରାଣିକ ସମସ୍ତେ ଜଗତର ଉତ୍ପତ୍ତି ସମ୍ବନ୍ଧରେ ଏକମତ ଏବଂ ଶ୍ରୁତି ଏହି ସମସ୍ତ ମତର ମୂଳ । ସୂର୍ଯ୍ୟସିଦ୍ଧାନ୍ତରୁ ଜଗତର ଉତ୍ପତ୍ତି ସମ୍ବନ୍ଧରେ ନିମ୍ନଲିଖିତ ବିଷୟ ମିଳେ । "ଏହି ଜଗତ୍ ପ୍ରଥମେ ଅନ୍ଧକାରମୟ ଥିଲା । ସେହି ଘୋର ଅନ୍ଧକାରରେ ବାସୁଦେବ ( ଯାହାଙ୍କଠାରେ ସର୍ବଜଗତ୍ ବାସ କରେ, ସେ ବାସୁ; ଦେବନ ବା ଦୀପ୍ତି ହେତୁରୁ ଦେବ ), ପରବ୍ରହ୍ମ ( ଯାହା କିଛି ଅଛି, ତାହା ଯାହାଙ୍କ ମୂର୍ତ୍ତି), ପରମପୁରୁଷ, ଅତୀନ୍ଦ୍ରିୟ, ନିର୍ଗୁଣ, ଶାନ୍ତ, ପଞ୍ଚବିଂଶତିର (୧୬ ବିକୃତ, ୭ ପ୍ରକୃତି-ବିକୃତି, ମୂଳପ୍ରକୃତି ଓ ଜୀବ—ସାଂଖ୍ୟ) ପର, ଅବ୍ୟୟ; ଯେ ପ୍ରକୃତିର ବାହାରେ ଓ ଭିତରେ ସର୍ବତ୍ର ବ୍ୟାପି ଅଛନ୍ତି, ସେହି ପ୍ରକୃତି ଯାହାଙ୍କଠାରେ ସ୍ଥିତ, ସେହି ସଙ୍କର୍ଷଣ ( ଯେ ଆକର୍ଷଣ କରନ୍ତି ) ପ୍ରଥମେ ଅପ୍ ସୃଷ୍ଟି କରି ତହିଁରେ ଶକ୍ତି ନିକ୍ଷେପ କରିଥିଲେ । ସେହି ଅପ୍ ଶକ୍ତି ସହିତ ମିଳିତ ହୋଇ ଗୋଟିଏ ସୁବର୍ଣ୍ଣ ଅଣ୍ଡ ହେଲା । ଅଣ୍ଡର ସର୍ବତ୍ର ତେଜ ହେଲେ ସୁଦ୍ଧା ତମସାବୃତ । ସେହି ଅଣ୍ଡରେ ଅନିରୁଦ୍ଧ (ଯାହାଙ୍କର ନିରୋଧ ହୁଏ ନାହିଁ) ସନାତନ ପ୍ରଥମେ ବ୍ୟକ୍ତୀଭୂତ (ଅଭିବ୍ୟକ୍ତ) ହୋଇଥିଲେ, (ଜଳରୁ ତୈଳ ଯେପରି ଅଭିବ୍ୟକ୍ତ ହୁଏ, ପରନ୍ତୁ ଉତ୍ପନ୍ନ ହୁଏ ନାହିଁ) । ଏହି ହେତୁରୁ ବେଦରେ ଏହାଙ୍କର ନାମ ହିରଣ୍ୟଗର୍ଭ, ପ୍ରଥମେ ଅଭିବ୍ୟକ୍ତ ବୋଲି ଆଦିତ୍ୟ, ଜଗତର ପ୍ରସୂତି ବୋଲି ସୂର୍ଯ୍ୟ । ଏହି ସୂର୍ଯ୍ୟ—ଯାହାଙ୍କର ଅପର ନାମ ସବିତା, ଯେ ଅନ୍ଧକାରନାଶକ, ପ୍ରାଣିସମୂହର ଉତ୍ପତ୍ତି-ସ୍ଥିତି-ସଂହାରକର୍ତ୍ତା (ଭୂତଭାବନ), ଭୁବନସମୂହକୁ ପ୍ରକାଶ କରି ସର୍ବଦା ଭ୍ରମଣ କରୁଅଛନ୍ତି । ଜଗତ୍ ସୃଷ୍ଟି ନିମନ୍ତେ ସେ ବ୍ରହ୍ମା ସୃଷ୍ଟି କଲେ । ତାହାଙ୍କଠାରୁ

ଚନ୍ଦ୍ର, ସୂର୍ଯ୍ୟ, ପଞ୍ଚତାରଗ୍ରହ, ନକ୍ଷତ୍ର, ଭୂମି, ସକଳ ସମୁଦାୟ ଉତ୍ପନ୍ନ ହେଲା । ସର୍ବଲୋକପିତାମହ ସେହି ଅଣ୍ଡ ମଧ୍ୟରେ ପ୍ରତିଷ୍ଠିତ, ଏହି ହେତୁରୁ ସେହି ଅଣ୍ଡହିଁ ବ୍ରହ୍ମାଣ୍ଡ । ବ୍ରହ୍ମାଣ୍ଡର ଅନ୍ତର୍ଭାଗରେ ଯେଉଁ ଅବକାଶ ଅଛି, ତହିଁରେ ଭୂର୍ଭୁବାଦି ଏହି ଜଗତ ଅବସ୍ଥିତ, ବାହାର ନୁହେ । ଏହା ଗୋଲାକୃତି, ଯେପରି ଦୁଇଗୋଟି ସମାନ କଟାହସମ୍ପୁଟ (ସମ୍ମୁଖ ଅଗ୍ରେ ମିଳିତ) ହୋଇ ଅଛି । ଏତତ୍ପ୍ରସଙ୍ଗରେ ଅଧ୍ୟାପକ ମହାଶୟଙ୍କ ବ୍ୟାଖ୍ୟା ନିମ୍ନରେ ପ୍ରଦତ୍ତ ହେଲା:—

"ଅପ୍ ଅର୍ଥ ସମସ୍ତେ ଜଳ ବୁଝିଥାନ୍ତି । ଜଳ କହିଲେ ଯେ କେବଳ ଦ୍ରବଜଳ ବୁଝିବାକୁ ହେବ, ଏପରି କୌଣସି ପ୍ରମାଣ ନାହିଁ । ଜଳୀୟ ବାଷ୍ପ ବା ବାଷ୍ପମାତ୍ର ଅର୍ଥ ହୋଇ ପାରେ, କିନ୍ତୁ ଅପ୍ ଶବ୍ଦର ଅର୍ଥ ବାୟୁ ମଧ୍ୟ ହୁଏ । ଯଥାର୍ଥ ଧରିଲେ ଏହାଦ୍ୱାରା ବାଷ୍ପ ବା ବାୟୁ ବୁଝା ଯାଏ । ତେବେ ପ୍ରଥମେ ଏହି ଜଗତ ଅନ୍ଧକାରମୟ ଓ ବାଷ୍ପପୂର୍ଣ୍ଣ ଥିଲା । ତହିଁରେ ଶକ୍ତି ସଂଗୃହୀତ ହେବାରୁ ଗୋଟିଏ ସୌବର୍ଣ୍ଣ ଅଣ୍ଡ ହେଲା । ଉକ୍ତ ସୌବର୍ଣ୍ଣର ଅର୍ଥ ତେଜୋମୟ ସହସ୍ରାଂଶୁ-ସନ୍ନିଭ କରିଅଛନ୍ତି । ମନୁସଂହିତୋକ୍ତ ଜଗତ୍‌ସୃଷ୍ଟିର ବ୍ୟାଖ୍ୟା ସ୍ଥାନରେ କୁଲ୍ଲୁକ ଭଟ୍ଟ କହିଅଛନ୍ତି "ହୈମ ଇବ, ବୁଦ୍ଧିଗୁଣଯୋଗବଶତଃ", ବସ୍ତୁତଃ ହୈମ ନୁହେ । ସମସ୍ତ ସୃଷ୍ଟିର ନାମାନ୍ତର ବ୍ରହ୍ମା । ତାହା ଅଣ୍ଡାକାର, ଅର୍ଥାତ୍ ଦୃଶ୍ୟ ଜଗତ ଠିକ୍ ଗୋଲାକାର ନୁହେ । ସଙ୍କର୍ଷଣ ପ୍ରଭାବରୁ ତହିଁରୁ ନକ୍ଷତ୍ର ସୂର୍ଯ୍ୟ ପ୍ରଭୃତି ସମସ୍ତଙ୍କର ଉତ୍ପତ୍ତି । ସବୁତ ସେହି ଅଣ୍ଡ ମଧ୍ୟରେ ସର୍ବଦା ଘୂର୍ଣ୍ଣ୍ୟମାନ ରହିଅଛନ୍ତି । ଅର୍ଥାତ୍ ସେହି ଆଦ୍ୟ 'ଅପ'ର ସଙ୍କର୍ଷଣ ଶକ୍ତି ଓ ଘୂର୍ଣ୍ଣନଶକ୍ତିବଶତଃ ସମୁଦାୟ ଜଗତର ଉତ୍ପତ୍ତି ହୋଇଅଛି ।" ଏପରି ବ୍ୟାଖ୍ୟା କରି ଅଧ୍ୟାପକ ମହାଶୟ ପଚାରିଅଛନ୍ତି "ଆଧୁନିକ ନୀହାରିକାବାଦ ସହିତ ଏହାର ପ୍ରଭେଦ କେଉଁଠାରେ ?" ବସ୍ତୁତଃ ଆଧୁନିକ ନୀହାରିକାବାଦ ଠିକ୍ ଏହିପରି ।

ଜଗତର ଶେଷ ପରିଣାମ ସମ୍ବନ୍ଧରେ ଭାସ୍କର କହିଅଛନ୍ତି "ଏକ ବ୍ରହ୍ମଦିନରେ (ସହସ୍ରଚତୁର୍ଯୁଗରେ) ପୃଥିବୀର ଚତୁର୍ଦ୍ଦିଗରେ ଏକ ଯୋଜନ ବୃଦ୍ଧି ହୁଏ (ଅର୍ଥାତ୍ ଏହାର ବ୍ୟାସ ଏକ ଯୋଜନ ବଢ଼ିଯାଏ), କାରଣ ଏଥିରେ ବୃକ୍ଷ୍ୟାଦି ନାନାବିଧ ପଦାର୍ଥ ଜନ୍ମ ହୋଇ ମରୁଅଛନ୍ତି । ବ୍ରାହ୍ମ ଲୟରେ ସେହି ବୃଦ୍ଧି ଉକ୍ତର ନାଶ ଘଟେ । ପ୍ରତିଦିନ ଭୂତସମୂହର ଯେଉଁ ମୃତ୍ୟୁ ଘଟୁଅଛି ତାହା ଦୈନନ୍ଦିନ ପ୍ରଳୟ । ଏ ବ୍ରହ୍ମାଙ୍କର ଦିବାବସାନରେ ଭୂତସମୂହ ବ୍ରହ୍ମାଙ୍କ ଶରୀରରେ ପ୍ରବେଶ କରନ୍ତି । ତାହା ବ୍ରାହ୍ମପ୍ରଳୟ । ବ୍ରହ୍ମାଙ୍କ ଅତ୍ୟୟରେ ସମସ୍ତ ପ୍ରକୃତିରେ ବିଲୀନ ହୁଏ । ଏହାହିଁ ପ୍ରାକୃତିକ ପ୍ରଳୟ । ପ୍ରାକୃତିକ ପ୍ରଳୟରେ ଅଖିଳ ପୃଥିବୀର ନାଶ ହୁଏ । କିନ୍ତୁ ଜ୍ଞାନାଗ୍ନି ଦ୍ୱାରା ଯେଉଁମାନଙ୍କର ପାପପୁଣ୍ୟ ଦଗ୍ଧ ହୋଇଅଛି, ଯେଉଁମାନଙ୍କର ମନ ନିବୃତ୍ତି ପାଇଅଛି, ଯେଉଁମାନଙ୍କର ଚିତ୍ତ ପରମେଶ୍ୱରଙ୍କଠାରେ ସମାହିତ ହୋଇଅଛି, ସେହି ସମସ୍ତ ଯୋଗୀ ମୃତ୍ୟୁ ପରେ ଏପରି ଅବସ୍ଥା ପ୍ରାପ୍ତ ହୁଅନ୍ତି ଯେ ତହିଁରୁ ଆଉ ଫେରି ଆସିବାକୁ ହୁଏ ନାହିଁ । ଏହା ଆତ୍ୟନ୍ତିକ ପ୍ରଳୟ ଚାରି ପ୍ରକାର ଲୟ ଏହି ।"

ପ୍ରାକୃତିକ ପ୍ରଳୟହିଁ ମହାପ୍ରଳୟ । ସେତେବେଳେ ବ୍ରହ୍ମା ବ୍ରହ୍ମାଣ୍ଡରେ, ବ୍ରହ୍ମାଣ୍ଡ ପଞ୍ଚଭୂତରେ, ଭୂ ଜଳରେ, ଜଳ ତେଜରେ, ତେଜଃ ବାୟୁରେ, ବାୟୁ ଆକାଶରେ, ଆକାଶ ଅହଂକାରରେ, ଅହଂକାର ମହତ୍ତତ୍ତ୍ୱରେ, ମହତ୍ତତ୍ତ୍ୱ ପ୍ରକୃତିରେ, ଅର୍ଥାତ୍ ସମସ୍ତ ତ୍ରିଭୁବନଲୋକ ଅବ୍ୟକ୍ତରେ ପ୍ରବେଶ କରେ । ପୁନଶ୍ଚ ଭଗବାନ୍ ସୃଷ୍ଟି କରିବା ଲାଗି ଇଚ୍ଛା କଲେ ପ୍ରକୃତି ପୁରୁଷର ଯେଉଁ (disturbance) ଉତ୍ପନ୍ନ ହୁଏ, ପୂର୍ବେ ଉତ୍ପନ୍ନ ହୋଇଥିବା ଭୂତସମୂହର ପାପପୁଣ୍ୟର କ୍ଷୟ ହୋଇ ନ ଥିବାରୁ ସେମାନେ ପୁନଶ୍ଚ ପ୍ରକୃତିରୁ ନିଃସୃତ ହୁଅନ୍ତି । ଏ ସମସ୍ତ ଉଦ୍ଧାର କରି ଅଧ୍ୟାପକ ମହାଶୟ ନିମ୍ନଲିଖିତରୂପେ ସ୍ୱମତ ବ୍ୟକ୍ତ କରିଅଛନ୍ତି ।

"* * * * ବ୍ରହ୍ମାଙ୍କ ଦିନରେ ଅର୍ଥାତ୍ ୪୩୨୦୦୦୦୦୦୦ ସୌର ବର୍ଷରେ ସୃଷ୍ଟି ହୁଏ । ପୁନଶ୍ଚ ଏତିକି ସମୟରେ ନାଶ ହୁଏ । ସୃଷ୍ଟି ସମୟରେ ପୃଥିବୀର ବୃଦ୍ଧି ଅସମ୍ଭବ ନୁହେଁ, କାରଣ ବାୟୁ କ୍ରମଶଃ ମୃଣ୍ମୟ ଭୂଗୋଳରେ ଯୁକ୍ତ ହେଉଥାଏ । ଯାହାହେଉ ଭୂସୃଷ୍ଟି କାଳ ସମ୍ବନ୍ଧରେ ପ୍ରାଚୀନ ପୌରାଣିକମାନେ ଯାହା କହନ୍ତି, ଆଧୁନିକ ପାଶ୍ଚାତ୍ୟ ପୌରାଣିକମାନେ ମଧ୍ୟ ପ୍ରାୟ ତାହା କହୁଥାନ୍ତି । ପୃଥିବୀ ଅନାଦି ଅନନ୍ତ ଅମର ନୁହେ, ତାହାର ଶୈଶବ, କୈଶୋର ଥିଲା, ଜରାମରଣ ମଧ୍ୟ ଅଛି, ଏ ଦେଶରେ କେହି କେବେ ପୃଥିବୀକୁ ଅନାଦି ବା ଅନନ୍ତକାଳସ୍ଥାୟୀ କହି ନାହାନ୍ତି ଅଥବା ଭୂସୃଷ୍ଟି କାଳ ଗୃତ ଛଅ ସହସ୍ର ବର୍ଷ ଗଣନା କରି ନାହାନ୍ତି । ଜଗତର ଅଭିବ୍ୟକ୍ତି (Evolution), ଜୀବସମୂହର ଅଭିବ୍ୟକ୍ତି-ବାଦ ଅମ୍ଭମାନଙ୍କ ନିକଟରେ ନୂତନ ନୁହେଁ । ଦଶବିଧ ସୃଷ୍ଟି ପ୍ରକରଣ ପୁରାଣରେ ଯେପରି ବର୍ଣ୍ଣିତ ଅଛି, ସେହି ପ୍ରକାର ସିଦ୍ଧାନ୍ତରେ ଉପସ୍ଥିତ ହେବାପାଇଁ ପାଶ୍ଚାତ୍ୟ ପଣ୍ଡିତମାନଙ୍କୁ ସେମାନଙ୍କ ଶାସ୍ତ୍ରରୂପ ବିଷମ ନିଗଡ଼କ୍ଲେଶ ଭୋଗ କରିବାକୁ ହୋଇଅଛି ।"

"ଆମାଦେର ଜ୍ୟୋତିଷୀ ଓ ଜ୍ୟୋତିଷ"ର ପରିଶିଷ୍ଟ ଭାଗରେ "ଫଳିତ ଜ୍ୟୋତିଷ" ବିଷୟରେ ଯତ୍କିଞ୍ଚିତ୍ ପ୍ରଦତ୍ତ ହୋଇଅଛି । ଫଳିତ ଜ୍ୟୋତିଷ ବିଷୟ ଲେଖିବାକୁ ଯାଇ ଅଧ୍ୟାପକ ମହାଶୟ କହୁଅଛନ୍ତି "ପାଶ୍ଚାତ୍ୟ ଦେଶରେ ଗ୍ରହଗତି ଗଣନା ଓ ଗ୍ରହଫଳ ଗଣନା ପୃଥକ୍ ହୋଇ ପ୍ରାଚୀନ ଜ୍ୟୋତିଷର ଗ୍ରହଫଳ-ଗଣନା ବିଜ୍ଞାନବିଦଙ୍କ ନିକଟରୁ ବର୍ତ୍ତମାନ ନିର୍ବାସିତ ହୋଇଅଛି । କିନ୍ତୁ ଇତିହାସରେ ଉଭୟର ମୂଲ୍ୟ ସମାନ ।" ଅସ୍ମଦ୍ଦେଶୀୟ ଜ୍ୟୋତିଷ ତ୍ରିସ୍କନ୍ଧ; ଯଥା—ଗଣିତ ଜ୍ୟୋତିଷ, ସଂହିତା ଜ୍ୟୋତିଷ ଓ ହୋରା ଜ୍ୟୋତିଷ । ଯେବେ ପ୍ରାଚୀନ ଜ୍ୟୋତିଷକୁ ଗଣିତ ଓ ଫଳିତ ଏହି ଦୁଇ ଭାଗରେ ବିଭକ୍ତ କରାଯାଏ ତେବେ ସଂହିତା ଓ ହୋରା ଫଳିତ ଜ୍ୟୋତିଷର ଅନ୍ତର୍ଗତ ଅଟେ । ହୋରା ବା ଜାତକ ଗ୍ରନ୍ଥ ଯାହା କିଛି ଶୁଭାଶୁଭ ଗଣନା ହୋଇ ପାରେ, ତତ୍ସମୁଦାୟ ସଂହିତାର ବିଷୟ; କିମ୍ବା ସମାଜ ବା ଦେଶବିଶେଷରେ ଯେଉଁ ଫଳ ଘଟେ, ତାହାର ଗଣନା ସଂହିତାର ବିଷୟ, ଏବଂ ବ୍ୟକ୍ତି ବିଶେଷରେ ଯାହା ଘଟେ, ତାହାର ଗଣନା ହୋରାର ବିଷୟ । ସୁତରାଂ ଅଧ୍ୟାପକ ମହାଶୟ କହୁଅଛନ୍ତି "ପ୍ରକୃତିରେ ଯାହା କିଛି ଅଛି, ଯାହା କିଛି ଘଟେ, ତାହାର ସେହି ଫଳରୁ ଯତ୍କିଞ୍ଚିତ୍ ହେଲେହେଁ ଅମ୍ଭମାନଙ୍କୁ ଭୋଗ କରିବାକୁ ପଡ଼େ, କାରଣ ଅମ୍ଭେମାନେ ପ୍ରକୃତିର ଭିତରେ, ବାହାରେ ନୋହୁଁ । କିମ୍ବା ପ୍ରାକୃତିକ ଘଟନାରେ ବିଶେଷ ଦୃଷ୍ଟି ଥିଲେ ପ୍ରତ୍ୟେକ ଘଟନାଦ୍ୱାରା ଅମ୍ଭମାନଙ୍କର ଶୁଭାଶୁଭ ଅନୁମାନ କରାଯାଇ ପାରେ । ବୋଧ ହୁଏ, ଏହିପରି ତର୍କ କରି ଅମ୍ଭମାନଙ୍କର ପ୍ରାଚୀନ ଋଷିମାନେ ବିପୁଳ ସଂହିତାଜ୍ୟୋତିଷର ସୃଷ୍ଟି କରି ଥିଲେ ।"

ଏହି ଅଧ୍ୟାୟର ଶେଷରେ ଫଳିତ ଜ୍ୟୋତିଷର ସ୍ୱପକ୍ଷ ଓ ବିପକ୍ଷ ଏ ଦୁହିଙ୍କର କାଳ୍ପନିକ କଥୋପକଥନ ସନ୍ନିବେଶିତ ହୋଇଅଛି । ତାହା ଅତ୍ୟନ୍ତ ମନୋହର ଏବଂ ତହିଁରେ ଗ୍ରନ୍ଥକର୍ତ୍ତାଙ୍କର ଫଳିତ ଜ୍ୟୋତିଷ ବିଷୟରେ ଯାହା କହିବାର ଥିଲା ସେ ସମସ୍ତ ବ୍ୟକ୍ତ ହୋଇଅଛି । ବିପକ୍ଷଙ୍କର ସର୍ବଶେଷ ପ୍ରଶ୍ନ ଏହି "କିନ୍ତୁ ଅନେକ ଗଣନା ତ ମିଳିବାର ଦେଖାଯାଏ ନାହିଁ ?" ଏଥିର ଉତ୍ତର ସ୍ୱପକ୍ଷ ଏହିପରି ପ୍ରଦାନ କରୁଅଛନ୍ତି "ଅନେକ ଗଣନା ଯେ ମିଳେ ତାହା ଯେଉଁମାନେ ଗଣନା କରୁଅଛନ୍ତି, ସେମାନେହିଁ ସ୍ୱୀକାର କରିବେ । ଆୟୁର୍ବେଦ ଶାସ୍ତ୍ର ଅଛି । କିନ୍ତୁ ତଦ୍ୱାରା ସମସ୍ତେ କଣ ସବୁ ସମୟରେ ରୋଗର ଉପଶମ କରି ପାରନ୍ତି ? ଏଥିରେ ଶାସ୍ତ୍ରର ଦୋଷ, ଶାସ୍ତ୍ର-ବ୍ୟବସାୟିର ଦୋଷ ଥାଇ ପାରେ । ତଥାପି,

ଆୟୁର୍ବେଦ ଯେ ଶାସ୍ତ୍ର ନୁହେ, ଏହା କେହି କହନ୍ତି ନାହିଁ । ଯେବେ ଦଶ ଗୋଟି ଗଣନା ମଧ୍ୟରେ ଦୁଇ ଗୋଟି ମିଳେ, ତେବେ ହେଲେ ସୁଦ୍ଧା ତହିଁରେ କିଛି ସତ୍ୟ ଅଛି ସ୍ୱୀକାର କରିବାକୁ ହେବ ।"

ଅଧିକ ଲେଖିବାର ନାହିଁ, କେବଳ ଏତିକି ମାତ୍ର କହିଲେ ଚଳିବ ଯେ ଏହି ଗ୍ରନ୍ଥଖଣ୍ଡିକ ପ୍ରଣୟନ କରିବାଦ୍ୱାରା ଅଧ୍ୟାପକ ମହାଶୟ ଅସ୍ମଦ୍‌ଦେଶର ମହୋପକାର ସାଧନ କରିଅଛନ୍ତି । ଏହି ଗ୍ରନ୍ଥର ପ୍ରତ୍ୟେକ ପୃଷ୍ଠାରେ ତାହାଙ୍କର ସ୍ୱଦେଶପ୍ରୀତିର ଜ୍ୱଳନ୍ତ ଛବି ପ୍ରଦତ୍ତ ହୋଇଅଛି ଏବଂ ତହିଁ ସଙ୍ଗେ ଗ୍ରନ୍ଥକାରଙ୍କର ବହୁ ଅଧ୍ୟବସାୟ ବହୁ ଗବେଷଣା ଓ ଅପକ୍ଷପାତ ବିଚାରର ନିଦର୍ଶନ ମିଳୁଅଛି । ଏଥିରୁ ବୁଝିବାକୁ ହେବ ନାହିଁ ଯେ ତାହାଙ୍କର ସମସ୍ତ ତର୍କ ଓ ଯୁକ୍ତି ଅଭ୍ରାନ୍ତ ଏବଂ ଏହା ମଧ୍ୟ ସେ ସ୍ୱୟଂ ସ୍ୱୀକାର କରିଅଛନ୍ତି । ଉଚ୍ଚ ଶିକ୍ଷାପ୍ରାପ୍ତ ଅସ୍ମଦ୍‌ଦେଶୀୟ ଅତ୍ୟଳ୍ପ ବ୍ୟକ୍ତି ଏପରି ଗ୍ରନ୍ଥ ପ୍ରଣୟନ କରିଅଛନ୍ତି ଏବଂ ଯେବେ ଗ୍ରନ୍ଥଖଣ୍ଡିକ ଇଂରେଜୀ ଭାଷାରେ ଲିଖିତ ହୋଇଥାନ୍ତା, ତେବେ ପାଶ୍ଚାତ୍ୟ ଦେଶରେ ଏହାର ଯଥେଷ୍ଟ ଆଦର ହୋଇଥାନ୍ତା ଏବଂ ସଭ୍ୟ ଜଗତରେ ଗ୍ରନ୍ଥକାରଙ୍କର ନାମ ଯଶଃ ବିସ୍ତାରିତ ହୋଇଥାନ୍ତା, ମାତ୍ର ସ୍ୱଦେଶପ୍ରେମିକତା ତାହାଙ୍କୁ ବଙ୍ଗ ଭାଷାରେ ଲେଖିବା ନିମନ୍ତେ ପ୍ରଣୋଦିତ କରିଅଛି । ଗ୍ରନ୍ଥର ଭାଷା ଅଳଙ୍କାରବିହୀନ, ତଥାପି ଅତି ସରଳ, ଅତି ସୁନ୍ଦର, ମଧୁର ଏବଂ ତୃପ୍ତିପ୍ରଦ । ଜଣେ ପ୍ରକୃତ କବି ଏହି ଗ୍ରନ୍ଥରୁ ଗ୍ରନ୍ଥକର୍ତ୍ତାଙ୍କର ଅସାଧାରଣ କବିତ୍ୱର ପରିଚୟ ପାଇଅଛନ୍ତି ।

ଶ୍ରୀ ମଧୁସୂଦନ ଦାଶ ।

---

## ବୁଢ଼ୀ ଅସୁରୁଣୀ ।

ରଜାପୁଅ, ମନ୍ତ୍ରିପୁଅ, ସାଧବପୁଅ, କୋଟୁଆଳପୁଅ ଚାରିସଙ୍ଗାତ । ଚାରିହେଁଯାକ ବାହାରିଲେ ବିଦେଶ କରି । ଘୋଡ଼ାଶାଳରୁ ବାଛି ବାଛି ଚାରି ଘୋଡ଼ା ନେଲେ, ପାଗପଟୁକା ବାନ୍ଧି ଟଙ୍କାଟୋକର କିଛି ଧଇଲେ ଗଲେ । ଯାଉ ଯାଉ ଉହୁଉହିଆ ଖରବେଳେ ଏକ ନଈକୂଳେ ପହଞ୍ଚିଲେ, ସେଠେଇଁ ଗାଧୁଆ ପାଧୁଆ କଲେ, କହିଲେ ଏଠେଇଁ ରନ୍ଧାବଢ଼ା କରିବା, ଜଗର ବରଷା ପାଳିବା, ଖାଇ ଲେଉଟିଲାରୁ ଅମ ଗହା ଆମେ ଧରିବା । ରଜାପୁଅକୁ ପଠେଇଲେ, କହିଲେ ଆରପାରିରେ ଘର ଦିଶୁଛି, ସେଠଉଁ ନିଆଁ ଆଣିଲେ ଚୁଲରେ ଜୁଳିଲା ପକେଇବା । ରଜାପୁଅ ଯାଇ ପହଞ୍ଚିଲା, ସେ ଘରେ ଦେଖିଲାବେଳକୁ ଏକ ବୁଢ଼ୀ ଅସୁରୁଣୀ ଗୋଡ଼ ଦି'ଟା ଚୁଲିରେ ମୁହିଁ ଦେଇଛି, ମୁଣ୍ଡ ମୁକୁଳା, ମୁହିଁଯାକ ମାଛି ଭଣ ଭଣ ହେଉଛନ୍ତି, ଚୁଲି ଉପରେ ଏଣ୍ଡ଼ୁ ହାଣ୍ଡିଏ ବସେଇ ଦେଇଚି ବସିଚି । ରଜାପୁଅ ମାଗିଲା ବୁଢ଼ୀ ମାଉସି, ନିଆଁ ଟିକିଏ ଦେଇନାରୁ । ବୁଢ଼ୀ କହିଲା ଅରେ ପୁତ, ମୋ ବଳ ବୟସ ତ ଗଲାଣି, ମୋ ଆଖିକି ଦିଶୁ ନାହିଁ, ଚୁଲିମୁଣ୍ଡରୁ ଅସି ନିଆଁ ଟିକିଏ ନେଇ ଯା । ରଜାପୁଅ ଚୁଲିମୁଣ୍ଡରେ ନିଆଁ ଆଣିବାକୁ ଲଇଁ ପଡ଼ିଲାରୁ ବୁଢ଼ୀ କଅଣ କଲା, ତା ବେକମୁଣ୍ଡାକୁ ଧରି ପକେଇ ଅଣ୍ଡ଼େ ଗାଡ଼ ଥାଏ ଯେ ସେ ଗାଡ଼ରେ ମାଡ଼ିଦେଲା, ରଜାପୁଅ ଅଣଅସ୍ତ ହୋଇ ରହିଲା । ତିନି ସଙ୍ଗାତଯାକ ନଈକୂଳେ ଚାହିଁ ଚାହିଁ ଦି'ଦଣ୍ଡ ଘଡ଼ି ବିତେଗଲାରୁ ସାଧବପୁଅ ଗଲା, ସାଧବପୁଅ ଯାଇ ପହଞ୍ଚିଲାବେଳକୁ ବୁଢ଼ୀ ତାକୁ ସିମିତି କହିଲା; ଏ ନିଆଁ ଅଣିବାକୁ ଗଲାରୁ ତାକୁ ସେ ଗାଡ଼ରେ ମାଡ଼ ଦେଲା । ପଛରେ ଗଲା ଦି'ସଙ୍ଗାତ ନ ଲେଉଟିଲାରୁ କୋଟୁଆଳପୁଅ ଗଲା; ତାକୁ ସିମିତି ବୁଢ଼ୀ ଅସୁରୁଣୀ ସେ ଗାତରେ ପୂରେଇଲା । ସେ ଗାତ ମୁହିଁରେ ପଟା ପକେଇ ତା ଉପରେ ଶିଳ

ଚକ୍ଷୁ ମଟେଇ ଦେଉଥାଏ, ସନ୍ଧ୍ୟା ବୁଡ଼ିଲାରୁ ଅପୁରୁଣୀ ଗଲା ଚରିବାକୁ। ମନ୍ତ୍ରିପୁଅ ତିନି ସଙ୍ଗାତଙ୍କୁ ଚାହିଁ ଚାହିଁ ଅସି ବେଳ ବୁଡ଼ିଲା, ଏ ପକ୍ଷକୁ ଉଠି କରି ଗଲା ସେ ଘର ଅଡ଼କୁ, ଯାଇ ଦେଖିଲା ବେଳକୁ ଅପୁରୁଣୀ ଚରିବାକୁ ଗଲାଣି ବାହାରି। ମନ୍ତ୍ରିପୁଅ ସେ ଘର ଭିତରକୁ ପଶି ଗଲା ବେଳକୁ ସଦାରେ ମଣିଷ ମୁଣ୍ଡ ମାଳକୁ ମାଳ ଟଙ୍ଗା ହୋଇଛି। ଏ ଘର ଭିତରକୁ ପଶି ଗଲା ବେଳକୁ ସେ ମୁଣ୍ଡ-ଗୁଡ଼ାକ ଖରଖରେଇ ହସି ଉଠିଲେ। ଏ ଚାହିଁଲା ବେଳକୁ ମୁଣ୍ଡଯାକ କହିଲେ ଅରେ ପଳା ପଳା; ଆଉ ତୋ କଣ ଦଶା ହବ ଯୋଉଠି ଯେ। ଏ ପଚାରିଲା କଅଣ? ମୁଣ୍ଡଯାକ କହିଲେ ଆଜ ତିନି ଜଣ ନାଆଁ ମାଗି ଅସିଥିଲେ ଯେ ତାଙ୍କୁ ମୋତି ମାଡ଼ ଏ ଗାତରେ ପୂରେଇଛି, ଯୋଉଁ ଦିନ କିଛି ନ ମିଳିବ ସେ ଦିନ ସ୍ତ୍ରୀଙ୍କୁ ଗୋଟି ଗୋଟି କରି ଖାଇବ, ମୁଣ୍ଡଯାକ ଟାଙ୍ଗି ଦେବ। ମନ୍ତ୍ରିପୁଅ ସବୁକୁ ସଭ ଶିଳ ତଳ ଉଠେଇ ପଟାଂଶ୍ଚିକ ଝାଡ଼ି ଦେଲାରୁ ତିନି ସଙ୍ଗାତଯାକ ଝାଡ଼ିଝୁଡ଼ି ହୋଇ ଗାତରୁ ଉଠିଲେ। ଚାରିହେଁଯାକ ଯାଇ ଘୋଡ଼ାରେ ବସିଲେ, ଛଟେ ଲେଖାଏଁ କୋରଡ଼ା ଘୋଡ଼ାଙ୍କୁ ମାରିଲେ, ଘୋଡ଼ାଏ ବାଇବଲ୍ଲ ହୋଇ ଧଇଁଲେ। ଶହେ କୋଶ ଗଲାରୁ ଦମ୍ଭ ମାରିଲେ, ରହିଲେ, ଲମ୍ବା ବଡ଼ା କରି ଖାଇଲେ ପିଇଲେ ଗଲେ। ଇମିତି ଯାଉ ଥାଆନ୍ତି, ଚାହିଁ ଆଉ ଦିନ ଏକ ଠାକୁରାଣୀଙ୍କ ମଣ୍ଡପ ପାଖରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ହେଲା। ଘୋଡ଼ାଙ୍କୁ ଗଛ ମୂଳେ ବାନ୍ଧି ଦେଲେ ଶୋଇଲେ, ବିଚାର-ବିଚାର ହେଲେ, ଏ ତ ପର ଦେଶ, ରାତିରେ ନିଦଅଉରେ ଥିବା, ଏଠିଉଁ ଖଣ୍ଡି କି ଚୋର କି ଟପ୍‌କର ରାତିରେ ଆମକୁ ଲୁଟି କରି ନେବେ। ଚାରି ସଙ୍ଗାତଯାକ ରାତି ଚାରି ପହର ପାଳି କରି ଜଗି ବସିବେ, ଜଣେ ଜାଗିଲେ ଆଉ ତିନିହେଁ ଶୋଇବେ ଏକଥା ସ୍ଥିର କଲେ। ପହିଲି ପହର ରଜାପୁଅର ପାଳି ପଡ଼ିଲା, ଏ ଜଗି ଥାଏ, ଠାକୁରାଣୀ ବାହାରିଲେ, କହିଲେ ଅରେ ଅଡ଼େଇ ଯା, ମୁଁ ଖିବି। ରଜାପୁଅ କହିଲା ମୁଁ ଅଡ଼େଇ ଦେବ ନାହିଁ, ଖିବୁ ଯେବେ ତୁ ଆଉ ବାଟେ ବୁଲି କରି ଯା। ଠାକୁରାଣୀ ପାଖ ଗଛରୁ ଧଳା ଫୁଲଟିଏ ଛିଣ୍ଡେଇଲେ, ସେ ଫୁଲଟିକି ଫୁଙ୍କି ଦେଲାରୁ ସେ ମଣ୍ଡପ ଉପରେ ହାଡ଼ ଖଗଡ଼େ କି ଦ'ଶଗଡ଼ ଗଦା ହୋଇ ଗଲା। ସେ ହାଡ଼ଗୁଡ଼ାକ ମନକୁ ଖଞ୍ଜି-ଖାଞ୍ଜି ହୋଇଗଲା। ସେ ଫୁଲଟି ସେଇଠେଇଁ ପଡ଼ି ଥାଏ, ଠାକୁରାଣୀ ଉଭେଇ ଗଲେ। ରଜାପୁଅ ସେ ଧଳା ଫୁଲଟିକି ପାଇଲା, ରଖିଲା। ଅଉ ପହରକୁ ସାଧବ ପୁଅକୁ ଉଠେଇ ଦେଲା, ରଜା ପୁଅ ଶୋଇଲା। ଫେର ସିମିତି ଠାକୁରାଣୀ ବାହାରିଲେ, ସ୍ତ୍ରୀକୁ କହିଲେ ମତେ ବାଟ ଛାଡ଼ି ଦେ। ଏ କହିଲା ତୁ ଆଉ ବାଟେ ବୁଲି କରି ଯାଉ ନାହୁଁ। ଠାକୁରାଣୀ କଣ କଲେ ସେ ଗଛରୁ ନାଲି ଫୁଲଟିଏ ଛିଣ୍ଡେଇ ଦେଲେ, ଫୁଲଟି ଫୁଙ୍କି ଦେଲାରୁ ସେ ହାଡ଼ରେ ମାଉଁସ ଲାଗିଗଲା। ଫୁଲଟି ସେଇଠେଇଁ ପଡ଼ି ଥାଏ, ଠାକୁରାଣୀ ଉଭେଇ ଗଲାରୁ ସାଧବପୁଅ ଫୁଲଟିକି ଗୋଟେଇ ରଖିଲା। ତହିଁ ଆର ପହରକୁ କଟୁଆଳପୁଅକୁ ଜଗିବାକୁ ଉଠେଇ ଦେଲା, ଶୋଇଲା। କଟୁଆଳ ପୁଅ ଜଗିଛି, ସିମିତି ଠାକୁରାଣୀ ଅସି ଉଭା ହେଲାରୁ ଏ ବାଟ ଛାଡ଼ିଲା ନାହିଁ, ଠାକୁରାଣୀ ସେ ଗଛରୁ କଳା ଫୁଲଟିଏ ଆଣିଲେ, ଫୁଙ୍କି ଦେଲାରୁ ସେ ହାଡ଼ସ ମାଉଁସ ଉପରେ ଚମଡ଼ାକୁଣି ଘୋଡ଼େଇ ହୋଇ ଗଲା। ସାଧବପୁଅ ଫୁଲଟିକି ରଖିଲା, ସବା ଶେଷ ପହରକୁ ମନ୍ତ୍ରିପୁଅର ପାଳି ପଡ଼ିଲା, ମନ୍ତ୍ରି ପୁଅ ଜଗି ଥାଏ, ଠାକୁରାଣୀ ଅସି ପହଞ୍ଚିଲେ, କହିଲେ ଭଲରେ ଯେବେ ଅଛୁ ପାଖେଇ ଯା, ମୁଁ ଯାଏଁ, ମନ୍ତ୍ରିପୁଅ କହିଲା ଆଉ ବାଟେ ବୁଲି ଯା। ଠାକୁରାଣୀ କଣ କଲେ ସେ ଗଛରୁ ଧଳଧଅ ଫୁଲଟିଏ ଛିଣ୍ଡେଇଲେ। ମନ୍ତ୍ରିପୁଅ ତିନି ସଙ୍ଗାତଙ୍କୁ ଉଠେଇ ଦେଲା, ଯିମିତି ଠାକୁରାଣୀ ସେ ଫୁଲକୁ ମଡ଼ା ଉପରେ ପକେଇ ଦେଲେ, ସିମିତି ମନ୍ତ୍ରିପୁଅ

ସେ ଫୁଲକୁ ଝଟ ଗୋଟେଇ ନେଲା, ଏଣେ ସେ ମଡ଼ାଟା ଗୋଟାଏ ଶାଳଗଛ ହୋଇ ହୋଇ ଠିଆ ହୋଇଗଲା ! ଠାକୁରାଣୀ କହିଲେ ଗୋଡ଼ା ଏ ତାଙ୍କି । ସେ ଅପୂର୍ବ ଏ ଚାରି ଜଣଙ୍କୁ ଗୋଟେଇଲା, ଘୋଡ଼ା ଫୋଡ଼ା ଚଢ଼ିବାକୁ ଡର କାହିଁ ? ଜୀବନାବକାଶରେ ଛନ୍ଦକପଟ ହୋଇ ଏକାମୁହାଁରେ ସମସ୍ତେ ପଳେଇଲେ । ରଜାପୁଅ ପଳେଇଲା ଗୋଟାଏ ବାଟରେ, ଆଉ ତିନି ସଙ୍ଗାତଯାକ ଆଉ ଗୋଟାଏ ବାଟରେ ପଳେଇଲେ । ସେହି ଯିମିତି ଫସରଫାଟି ଗଲା ଏ ଅସୁର ଉଭେଇ ଗଲା, ଏ ଚାରିହେଁ ଏକା କଣ୍ଢେଇ ପରି ଦରହଡ଼ ଥାଆନ୍ତି, ପଛକୁ ଅନେଇବାକୁ ଡର କାହିଁ ? ଢେର ଦୂର ଯାଇ ଦେଖିଲା ବେଳକୁ ଅସୁର ଫସୁର କେହି କାହିଁ । ତିନି ସଙ୍ଗାତ ଚାହିଁଲା ବେଳକୁ ରଜାପୁଅ କାହିଁ, ରଜାପୁଅ ଦେଖିଲା ବେଳକୁ ତିନି ସଙ୍ଗାତ କାହାନ୍ତି । ଯେଝା କରମକୁ ଯେ ଅଦର ଗଲେ । ଏ ତିନିହେଁ କଥଣ କରନ୍ତି ଚାରି ଖଣ୍ଡି ଦାନ୍ତକାଠି ଆଣନ୍ତି, ତିନି ଖଣ୍ଡି ଘସନ୍ତି, ଖଣ୍ଡିଏ ପାଣିକି ପକେଇ ଦିଅନ୍ତି, ଚାରିଟି ମାଲପା ଆଣନ୍ତି, ତିନି ଚାରିଟି ଲଗାନ୍ତି, ଚାରିଟିକ ଉଡ଼ ଦିଅନ୍ତି, ଚାରି ପତର ଭାତ ବାଢ଼ନ୍ତି, ତିନି ପତର ଖାଆନ୍ତି, ପତରକ ଭାତ କୁଆ କୁକୁରକୁ ଦିଅନ୍ତି । ବରଷବରଷରି ହୁଅନ୍ତି, ସଙ୍ଗାତ ତ ଗଲାଣି, ଆଉ ସଙ୍ଗେ ତାକୁ ବଞ୍ଚି ଥାଉଁ ଥାଉଁ ଦେଖିବା ସେ ? ସାଧବପୁଅ କହିଲା, ସଙ୍ଗାତ ହାଡ଼ଗୋଡ଼ ମିଳନ୍ତା ତ ମୁଁ ସେଥିରେ ମାଉଁସ ଲଗେଇ ଦିଅନ୍ତି, କଟୁଆଳ ପୁଅ କହିଲା ମୁଁ ଚମ କୁଅଁଳି କରି ଦିଅନ୍ତି, ମନ୍ତ୍ରିପୁଅ କହିଲା ମୁଁ ଜୀବଦାନ ଦିଅନ୍ତି । ଏମିତି ବୁଲୁ ଥାଆନ୍ତି, ସଙ୍ଗାତ ଉପରେ ଥାଆନ୍ତି । ଏଣେ କଥଣ ହୋଇଥାଏ ରଜାପୁଅ ତ ଏକୁଟିଆ ପଡ଼ିଗଲା, ଯାଉ ଯାଉ ଏକ ବନସ୍ତ ପଡ଼ିଲା ଯେ ସେ ବନସ୍ତରେ ଏକ ଘୁଞ୍ଚ ନଗର । ଏ ସେ ନଗର ଭିତରେ ପଶିଗଲା, ନଗର ଭିତର ଶୁନ୍‌ଶାନ୍, ମାଛିଟିଏ ସୁଙ୍ଗା ଉଡ଼ିବାକୁ ନାହିଁ । ଦ'ନେ ଖଞ୍ଜା ଦେଉଳଙ୍କରୁ ଉଠେ ଶଙ୍ଖ ମଲମଲ ପଥର ପଡ଼ିଚି, ରୁପାର କାନ୍ଥ, ସୁନାର ନଳ ହୋଇଚି, ହୀରା ନୀଳା ମୋତି ମାଣିକର ପଞ୍ଝର ଲାଗିଚି, ଘର ଭିତରେ ଦିବ୍ୟ ସୁନ୍ଦର ପୋଲ ବଡ଼ଣୀ ମାଇପିଟିଏ ଶୋଇଚି । ରଜାପୁଅକୁ ଦେଖି ପକେଇଲାରୁ ଭେ କରି କାନ୍ଦି ଉଠିଲା; କହିଲା ଆହା ! କେଡ଼େ ସୁନ୍ଦର ଶିଶୁ ଦିଶିପିଟିଏ ! ତୁମେ କାହିଁ ଏଠିକି ଆଇଲ ? ମୋତେ ଏ ବୁଢ଼ୀ ଅସୁରୁଣୀ ଚୋରେଇ ଆଣିଲା, ମୁଁ ପିଲା ହୋଇ ଥିଲି, ମତେ କେ ଜାଣି କାହିଁକି ତା ମନ ହେଲା ନାହିଁ ଖାଇବାକୁ, ମତେ ଏଠି ରଖିଚି, ସେ ତ ଯାଇଚି ଚରି, ଲେଉଟି ଆଇଲା ବେଳକୁ ତ ତୁମକୁ ଟାକୁବନା ଗିଳିଦବ । ଏହା କହି ରଜାପୁଅକୁ ଘର ଭିତରକୁ ନେଲା, ଖାଇବା ପିଇବାକୁ ଦେଲା, ଘର ଅନ୍ଧାରିଆରେ ରଖିଲା ! ଯିମିତି ସନ୍ଧ୍ୟା ବୁଡ଼ିଲା ସିମିତି ରଜାପୁଅକୁ ଗାରଡ଼ ମନ୍ତ୍ର ପଢ଼ି ଫୁଙ୍କି ଦେଲା ଯେ ରଜାପୁଅ ମାଛିଟିଏ ହୋଇଗଲା, ସେ ମାଛିଟିକୁ ଓଳରେ ବସେଇ ଦେଲା, କହିଲା ଯିମିତି ଅସୁରୁଣୀ ଚରିବାକୁ ଯିବ ମୁଁ ଫେର ତୁମକୁ ମଣିଷ କରି ଦେବି ଯେ । ରଜାପୁଅ ମାଛିଟିଏ ହୋଇଥାଏ, ଅସୁରୁଣୀ ଚରିବୁଲି ଆଇଲା, ଘରଯାକ ସୁଙ୍ଘିଲା, କହିଲା ହଇଲୋ ଝିଅ, 'ମାଉଁ ମାଉଁ, ମଣିଷ ମାଉଁସ ଟିକିଏ ଖାଉଁ ।' ଝିଅ କହିଲା ଖାଇବୁ ଯେବେ ମତେ ଖା, ମୁଁ କୋଉଠୁଁ ମଣିଷ ମାଉଁସ ପାଇବି ? ଅସୁରୁଣୀ ବୁଢ଼ୀ ଜିଭ କାମୁଡ଼ି ପକେଇଲା, କହିଲା ମୁଁ ତତେ ଖାଇବି ? କଥଣ ବାସିଲା ବୋଲି ମୁଁ ସିମିତି କହିଲି ନା; ଝିଅ କହିଲା ମୁଁ ଆଜି ଦଳଦା ଚୁଆ ବୋଳି ହୋଇ ଥିଲି ଯେ ତତେ ବାସିଲା । ଟେକି ଆଣି ବୁଢ଼ୀ ଆଗରେ ପାଞ୍ଚ ସାତ ହାଣ୍ଡି ଭାତ, ଦଶ କଂସା ତିଅଣ ଲୁଚେଇ ଦେଲାରୁ ବୁଢ଼ୀ ସେତକ ସାଲୁବାଲୁ କରି ଶେଷ ଦେଲା, ଯାଇ ମଝି ଅଗଣାରେ ଗଡ଼ାଗଡ଼ି ଗଲା । ଝିଅ କହିଲା ମା ଲୋ, ତୋ ଗୋଡ଼ ଟିକିଏ ଘସି ଦିଅନ୍ତି, ଯା

କହି ତା ଗୋଡ଼ ଘଷି ଦବାକୁ ଗଲା, ଗୋଡ଼ ଘସୁଥାଏ, ତା ଆଖିରୁ ଟୋପାଏ ଲୁହ ବୁଢ଼ୀ ଅସୁରୁଣୀ ଗୋଡ଼ରେ ପଡ଼ଲାରୁ ବୁଢ଼ୀ ସେ ଟୋପାକ ଗୃହି ଦେଲା, କହଲା ହଇଲୋ ଝିଅ ତୋର କୋଉଁ କଥା ଊଣା ଅଛି ଯେ ତୁ କାନ୍ଦୁଛୁ ? ଝିଅ କହଲା ତୋ ପରି ମୁଁ ଆଉ ମା ଆଉଟିଏ କାହୁଁ ପାଇବି ? ମୁଁ କାନ୍ଦୁଥିଲି ତୁ ତ ଅସି ବୁଢ଼ୀ ହେଲୁଣି, ତୁ ଆଖି ବୁଜିଲେ ମୋ ଅବସ୍ଥା ଚାରଗଣ୍ଡା ହକଡ଼ା ହବ, ମୋ କପାଳରେ କେତେ ହନସ୍ତା ଅଛି, ମୋ ମନ ଆଉ କଏ ବୁଝିବ । ତୁ ମଲା ଦିସି ଦନ ମୁଁ ମରିବି । ବୁଢ଼ୀ ଅସୁରୁଣୀ, ଠୋ ଠୋ ହୋଇ ହସି ଉଠିଲା, କହଲା ଏଇ କଥାକୁ ତୁ ବସି ଲୁହ ଗଡ଼ାଉଛୁ ! ଆମେ ଅସୁର ଜାତି ପରା ଅମରଲତା ଖାଇଚୁଁ, ଆମ ଜୀବନନାଟିକା ନ ଚିପିଲେ କଅଣ ଆମେ ମରିବୁଁ କି ? ଝିଅ ହଉଁ ହଉଁ ହୋଇ କହଲା, ମା ଲୋ ମା ତୁ ଆଉ କାଲି-ଠାରୁ ଚରିବୁଲି ଯିବୁ ନାହିଁ । କାଲେ କଏ କେଉଁଠେଇଁ ତୋ ଜୀବନନାଟିକା ଚିପି ଦବ । ମୁଁ ଅଥାଚା ହୋଇଯିବି । ବୁଢ଼ୀ କହଲା ଅଲୋ କେଉଁଠେଇଁ କଣ ମୋ ଜୀବନନାଟିକା ଅଛି କି ? ଯା କହି ବୁଢ଼ୀ ଧଡ଼ପଡ଼ ହୋଇ ଉଠିଲା, ଭିତର ଖଞ୍ଜାକୁ ପଶିଗଲା କୁଞ୍ଜପେଣ୍ଡାକ ଅଣ୍ଟାରୁ ଫିଟେଇ ଗୋଟାଏ ଗମ୍ଭୀରଘର ଫିଟେଇଦେଲା, ସେ ଘରେ ଗଦାକୁ ଗଦା ଟଙ୍କା ଅସିରପି ! ଫେର ଗୋଟାଏ ଭିତର କୋଲପ ଫିଟେଇ ଦେଲାବେଳକୁ ଏକ କଳା ମେଣ୍ଢା ବନ୍ଧା ହୋଇଛି । ବୁଢ଼ୀ ଦେଖେଇ-ଦେଲା, କହଲା ଏଇ ପରା ମୋ ଜୀବନନାଟିକା, ଯାକୁ ଏକ ରଜାପୁଅ ଆସି ଏକମୂନା ଧରି ଏକା ଚୁଟାକେ ଯେବେ ମାରିପକେଇବ, ଏକ-ମୂନା ପିଠିରେ ଫୁଟି ପେଟରେ ବାହାରିବ, ଅନ୍ତବୁଜୁଳା ବାହାରି ପଡ଼ିବ, ତେବେ ମୁଁ ମରିବି । ନଇଲେ କଣ ମୁଁ ସହଜରେ ମରିବି କି ? ଏତେ ଭେଦ କଏ ପାଇବ ଯେ ମୁଁ ମରିବି । ଝିଅ କହଲା, ମା ତୁ ତ କୁଞ୍ଜପେଣ୍ଡାକ ଅଣ୍ଟାରେ ରଖି-ଥାଉ, ମତେ ଡର ମାଡ଼ୁଚି :—କାଲେ କେଉଁ ରଜାପୁଅ ତୋ ଅଣ୍ଟାରୁ କୁଞ୍ଜଗାଲ କାଢ଼ି ନଉ, ଯୁକ୍ତେ ଅସି ଘରେ ପଶି ଜୀବନନାଟିକା ଚିପି ଦବ । ବୁଢ଼ୀ କହଲା ଅଲୋ ଝିଅ ସତ କହଲୁ, ମୋର ତ ଆଉ ଯୁଝିବାକୁ ବଳ ନାହିଁ । କାଲେ କୋଉଁ ରଜାପୁଅ ହାତରେ ପଡ଼ିଯିବ, ସେ କୁଞ୍ଜ ପେଣ୍ଡାକ ଛଡ଼େଇ ନବ ଯେବେ, ମୋ ଜୀବନ ନାଟିକା ଚିପି ଦବାକୁ କେତେ ଅନ୍ତର । ମୁଁ କାଲି, ଠାଉଁ ଚରିବାକୁ ଗଲା ବେଳେ କୁଞ୍ଜ ତୋ ପାଖରେ ରଖିଯିବି ଯେ ଅନ୍ଧେନ୍ତା ହୋଇ ବୁଲିବ, ଚରିବି । ତହୁଁ ଆର ଦିନ ଚରି ବାହାରିଲା ବେଳକୁ କୁଞ୍ଜ ଝିଅକୁ ଦେଇଗଲା । ଘଡ଼ିଏ ଗଣ୍ଡେ ଗଲାରୁ ଏ ଝିଅ ରଜାପୁଅକୁ ମଣିଷ କରି ଦେଲା-କହଲା ଇମିତି ଇମିତି କଥା । ଏ ଦିହେଁଯାକ ବାଘର ଘରେ ମିରଗର ନାଟ କଲେ । କୁଞ୍ଜ ନେଇ ସବୁ ଘରଯାକ ଫିଟେଇ ଗମ୍ଭୀର ଘରେ ପଶିଲେ, ରଜାପୁଅ ଏକମୂନାଅଟାଏ ଧଇଲା, ସେ କଳା ଗାରଡ଼କୁ ଭାରି ଝାପଟରେ ଦେଲା ଏକ-ମୂନାରେ ଭୁଷି ଯେ ଏକମୂନା ପିଠିରେ ଫୁଟି ପେଟ କଲେ ବାହାରି ପଡ଼ିଲା, ମେଣ୍ଢାଟି ଛଟପଟ ହୋଇ ଗର୍ଜନ ରଡ଼ି ଛାଡ଼ି ବାଡ଼େଇ କଗୃଡ଼ ହେଲା ବେଳକୁ ସେ ବୁଢ଼ୀ ଅସୁରୁଣୀ ଚରୁଥିଲା ତାକୁ କଣା ପଡ଼ିଲା ଯେ ସେ କାହିଁକି ମାଉଁଳ ହୋଇ ଭୂଇଁରେ ଗଡ଼ିଲା, ଗର୍ଜନ ରଡ଼ିରେ ମେଘ ଭାଙ୍ଗି ପଡ଼ୁଥାଏ । ସେ ଉଦଲ ଜଙ୍ଗଲରେ ଗୁଣ୍ଡେ ବଳ ଗମ୍ଭୁଡ଼ି ପକେଇଲା, ଭୁଇଁ କାମୁଡ଼ି ଗଇଲ ଗୁଡ଼ାଏ ବାନ୍ତି କରି ପକେଇଲା, ଛଟର ପଟର ହୋଇ ତା ଜୀବ ଗଲା । ରଜାପୁଅ ଏ ଟୋକୀକି ବାହା ହେଲା, ଦିହେଁଯାକ ସେଠେଇଁ ଥାଆନ୍ତି । ଟୋକୀ କହଲା ଏଠି ଅସୁର ରାଇଜ ତୁମେ ପଦାକୁ ବାହାରିଲେ ଅସୁର ରଖିବେ ନାହିଁ, ତୁମେ ଘର ଭିତରେ ଥିବ ମୁଁ ଯାଇ ପଦାରୁ ସବୁ ନେ ଆଣି କରିବି । ଖଞ୍ଜ ପଡ଼ିଲେ କେଲ ଉଣ୍ଡି ଏଠାଉଁ ସବୁ ଗୋଟେଇ ପୋଟେଇ ପଳେଇବା । ଦିନେ ଏ ଟୋକୀ ଯାଇଚି ବଣକୁ କାଠ ଆଣି, ରଜାପୁଅକୁ ଘର ଭିତରେ ଶିକୁଳି ପକେଇ ଦେଇ ଯାଇଚି ।

ଏ ଯାଇ ବଣରେ କାଠ ଗୋଟାଉଛି, ସେ ନଗରର ରଜା ଆସିଥିଲେ ପାରିଧିକୁ, ଯାଙ୍କୁ ଦେଖିଲାକ୍ଷଣି ଘୋଡ଼ାରେ ବସେଇ ନେଇ ଗଲେ ଘର । ଏ ପିଲାକେତେ କାନ୍ଦିଲା ବୋବେଇଲା ବହୁତ । ରଜା କହିଲେ ମୁଁ ତୁମକୁ ବିଭା ହେବି । ଟୋକା କହିଲା ହଉ, ମୋର ବାର ବରଷ ବ୍ରତ ହୁଜୁଅଁ ସରିଲେ ମୁଁ ବିଭା ହେବି । ମତେ ଗୋଟିଏ କୋଠରି ଛାଡ଼ିଦେଇ ଦିଅ, ମୁଁ ଏ ବାର ବରଷ ଅନ୍ୟ ପୁଅ ମୁହଁ ଚାହିଁବି ନାହିଁ, ମନ ହେଲେ କେବେ କେବେ ତୁମେ ଯାଇ ମତେ ସଙ୍ଗୁଳ ଆସୁ ଥିବ । ରଜା ସେଇଥିରୁ ଗୋଟିଏ କୋଠରି ଛାଡ଼ିଦେଲେ, ନୂଆ ରାଣୀ ସେଇଠେଇଁ ରହିଲେ । ଏଣେ କଥଣ ହେଇ ଥାଏ ନା ତିନି ସଙ୍ଗାତ ଯାକ ଆସି ସେଇ ରଜା ନଗରରେ ପହଞ୍ଚିଲେ । ଚାକର ଖୋଜୁ ଥାଆନ୍ତି । ରଜାଙ୍କ ଖମ୍ବରେ ଜଣା ହେଲାରୁ ରଜା ପଚାରିଲେ ତୁମେ କି କାମ କରିବ ? ଏ କହିଲେ ଆମେ ଯେବେ ଜଗୁଆଳ ହବୁଁ ତେବେ ଠିଆ ଠିଆ ରାତି ପାହିବ, ଆମ ଆଖିରେ ପଲକ ପଡ଼ିବ ନାହିଁ । ରଜା କହିଲେ ହଉ ତେବେ ଆମ ନୂଆ କୋଠରି ଦେହୁଡ଼ିରେ ତୁମେ ଜଗୁଆଳ ହବ । କୋଠରି ଭିତରେ ପୋଖରୀ ଯେ ସେ ପୋଖରୀ କୂଳେ ଝଣ୍ଡିଏ ଘରେ ଏ ତିନିହେଁ ବସା କରି ଥାଆନ୍ତି । ରାତିଯାକ ଦେହୁଡ଼ିରେ ଜଗନ୍ତି । ଦିନ ହେଲାରୁ ବସାକୁ ଯାନ୍ତି । କେବେ ରାଣୀ ସବାଙ୍କୁ ଉଠି କୋଠା ଉପରେ ଝଗ ପୋଉଁ ତନ୍ତି, ଏ ତିନିହେଁ ପୋଖରୀରେ ଦାନ୍ତ ଘଷିଲେ, ଝଣ୍ଡିଏ ଦାନ୍ତ କାଠି ପାଣିକି ଫୋପାଡ଼ି ଦେଲେ, ଚାରି କାଠିଆ ମାଳପାରୁ ତିନି କାଠିଆ ଲଗେଇଲେ, କାଠିଆଙ୍କ ଛଡ଼ି ଦେଲେ । ଏ ସବୁ ଦେଖୁଥାଏ । ଏ ସବୁ ସନ୍ଧ୍ୟା ବେଳେ ଯିମିତି ଦେହୁଡ଼ି ଜଗିବାକୁ ଆସିଲେ ରାଣୀ ତାଙ୍କୁ ପୋଇଲୀ ହାତରେ ଡକେଇ ପଠେଇଲେ । ଯାଙ୍କୁ ଚାରି ଝଣ୍ଡି ଦାନ୍ତକାଠି ଚାରି କାଠିଆ ମାଳପା କଥା ପଚାରିଲାରୁ ଏ ତିନି ସଙ୍ଗାତଯାକ ରଜାପୁଅ ସଙ୍ଗାତ କଥା କହିଲେ । ଟୋକା ରଜାପୁଅଠାରୁ ଆଗରୁ ଏ କଥାସବୁ ଶୁଣିଥାଏ, କାନ୍ଦି କାନ୍ଦି କହିଲା ତୁମ ସଙ୍ଗାତଙ୍କୁ ତ ମୁଁ ପାଇଥିଲି ଯେ କେମିତି କେମିତି ହୋଇଯାଇ ପହେଇ ଅଇଲି ଭା'ର, ମତେ ଏ ରଜା ଧରି ଆଣିଲେ । ତିନି ସଙ୍ଗାତ କହିଲେ ତା ହାଡ଼ ଖଣ୍ଡେକ ମିଳିଲେ ଆମେ ବଞ୍ଚେଇ ଦବୁଁ, ଆମଠେଇଁ କମିଆଁ ଅଛୁ । ସେଇଥିରୁ ରାତିଏ ରାତିଏ ତିନି ସଙ୍ଗାତ ଆଉ ଏ ଟୋକା ନଅରରୁ ବାହାରି ପଳେଇ ଆସିଲେ । ଆସି ତିନି ଦିନ ଦିପହରରେ ଅସୁର ନଗର ନଅରରେ ପହଞ୍ଚି ଦେଖିଲା ବେଳକୁ ଦୁଆର ମୁହଁରେ ହୋଇପ ଛୁଇଁ ହୋଇପ ପଡ଼ିଛି । ଘର ଭିତରେ ଦେଖିଲା ବେଳକୁ ରଜାପୁଅ ଏକାକରିକେ ପଲଙ୍କରେ ଶୋଇଛି, ଦେହ ଉପରେ ଉଇ ହୁଙ୍କା ହେଲେଣି । ଏ ଟୋକା ସେ ଉଇମାଟିଗୁଡ଼ାକ ଧୂଆ ଧୋଇ କରି ଆଣିଲା, ସବୁ ଉପରେ ଛିଞ୍ଚିଛାଞ୍ଚି ଦେଲା, ଧାତବପୁଅ ନାଲି ଫୁଲଟି ପକେଇ ଫୁଙ୍କି ଦେଲାରୁ ମାଉଁସ ଲାଗି ଗଲା । କଟୁଆଳପୁଅ କଳା ଫୁଲଟି ଧୁଏଇ ଦେଲାରୁ ରକ୍ତ ଘୋଷିଉଇ ହେଇଗଲା, ମନ୍ତ୍ରିପୁଅ ଧଳାଦିଆ ଫୁଲ ଛୁଇଁ ଦେଲାରୁ ରଜାପୁଅ ଧଡ଼ପଡ଼ ହେଇ ଉଠିଲା, ଆଖି ମଳି ଦେଲା, କହିଲା ଓହୋ କେତେଗୁଡ଼ାଏ ଶୋଇ ପଡ଼ିଲିଟି ? ତିନି ସଙ୍ଗାତ ଆଉ ଏ ଟୋକା ତାଙ୍କୁ ସବୁ ସମାଚାର କହିଲେ । ଚାରି ସଙ୍ଗାତ ଆଉ ଏ ଟୋକା ଓଳ ଝଣ୍ଡି ସେ ଅସୁର ନଗରରୁ ଅସୁରୁଣୀ ଯାହାଯିମିତି ଯୋଉଠେଇଁ ରଖିଥିଲା ସବୁ ନେଇ ଆପଣା ଦେଶକୁ ଫେରିଲେ । ରଜା ନୂଆବୋହୂକୁ ଦେଖି ଭାରି ଆନନ୍ଦ ହେଲେ । ସୁଖରେ ଘର ଦ୍ୱାର କଲେ, ରହିଲେ ।

ଗୋପାଳଚନ୍ଦ୍ର ପ୍ରହରାଜ ।

ଡାକ୍ତର ମେଜର ସାହେବଙ୍କର ବିଶ୍ୱବିଖ୍ୟାତ ସେହି

# ଇଲେକ୍ଟ୍ରୋ-ସାଲସା ।

ଚିକିତ୍ସାଜଗତରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଅଛି ।




ରକ୍ତ ମାନବ ଦେହର ଜୀବନୀଶକ୍ତି । ତାଡିତଶକ୍ତି ଜୀବନୀଶକ୍ତିର ମୂଳ । ପ୍ରତିଦିନ ନାନାପ୍ରକାରରେ ବିଶେଷତଃ ଆହାର ବିହାରରେ, ଅଭ୍ୟାସର ଅନାଚାରରେ, ନିଶ୍ୱାସ ପ୍ରଶ୍ୱାସରେ ମାନବଦେହରେ ବିଷ ପ୍ରବେଶ କରୁଥାଏ । ଏହି ବିଷ କ୍ରମେ କ୍ରମେ ରକ୍ତ ସହିତ ମିଶ୍ରିତ ହୋଇ ଦେହାଭ୍ୟନ୍ତରସ୍ଥ ତାଡିତଶକ୍ତି ହ୍ରାସ କରେ ଏବଂ ପରିଣାମରେ ସାଧାରଣତଃ ଶୁକ୍ର ଓ ଶୋଣିତ ସମ୍ବନ୍ଧୀୟ ପୀଡ଼ା ଉତ୍ପନ୍ନ ହୁଏ । ଯେଉଁ ଔଷଧ ଏହି ରକ୍ତଦୁଷ୍ଟିର ବିଷ ଦେହରୁ ଦୂର କରି ହ୍ରାସପ୍ରାପ୍ତ ବୈଦ୍ୟୁତିକ ଶକ୍ତିର ସାମଞ୍ଜସ୍ୟ ସମ୍ପୂର୍ଣ୍ଣରୂପ ରକ୍ଷା କରିପାରେ, ସେହି ପ୍ରକୃତ ଔଷଧ; ଏହି—

"ଇଲେକ୍ଟ୍ରୋ-ସାଲସା" ତାହାର ଏକମାତ୍ର ଆଦର୍ଶ ।

<u>ଏହା କଣ ?</u> ଚିକିତ୍ସା-ବିଜ୍ଞାନ-ସମ୍ମତ ଶୁକ୍ର ଓ ଶୋଣିତର ଦୋଷ-ସଂଶୋଧକ ଏବଂ
ତାଡିତଶକ୍ତିପ୍ରବର୍ତ୍ତକ କେତୋଟି ଦୁଷ୍ପ୍ରାପ୍ୟ କାର୍ଯ୍ୟକାରୀ ଉଦ୍ଭିଦରୁ—
ନିଉ ୟର୍କ ନଗରବାସୀ ଖ୍ୟାତନାମା ଡାକ୍ତର :—
<u>ଜେମସ ମେଜର ଏମ୍. ଏ. ଏମ୍. ଡି</u>
ମହୋଦୟଙ୍କର ଅନୁଷ୍ଠିତ,—ନୂତନ ରସାୟନିକ ପ୍ରକ୍ରିୟାରେ ନିଃସୃତ ନିର୍ଯ୍ୟାସ ।
ମାନବଦେହରେ ଏହାର କ୍ଷମତା ଅସୀମ, ଗୁଣ ଅନନ୍ତ, କ୍ରିୟା ସ୍ଥାୟୀ ।

ଏଥିରେ ଯେ କେତୋଟି କାର୍ଯ୍ୟକାରୀ ଭେଷଜ ପଦାର୍ଥ ଅଛି, ତାହା ଅନ୍ୟ କୌଣସି ଔଷଧରେ ନାହିଁ ଏବଂ ଏହି ଗବେଷଣାଲବ୍ଧ ମହାଗୁଣଶାଳୀ ଦୁଷ୍ପ୍ରାପ୍ୟ ଭେଷଜ ଏହାର ଏରୂପ ଅସାଧାରଣ ଗୁଣାବଳୀର ମୂଳକାରଣ ।

<u>ଏଥିରେ କେଉଁ କେଉଁ ରୋଗ ଆରୋଗ୍ୟ ହୁଏ ?</u> ସର୍ବପ୍ରକାର କାରଣଜାତ ଶୁକ୍ର ଓ ଶୋଣିତର ବିକୃତି, ସ୍ନାୟୁଦୌର୍ବଲ୍ୟ, ଦେହର ବିବିଧ ଯନ୍ତ୍ରର କ୍ରିୟା-ଘଟିତ କ୍ଷୀଣତା, ଶୁକ୍ରମେହ, ଶୁକ୍ର ତାରଲ୍ୟ, ନୂତନ ପୁରାତନ ମେହ, ପ୍ରମେହ, ସପୂଜ ଧାତୁ ନିର୍ଗମ, ଅନିଚ୍ଛାରେ ବା ଅଳ୍ପ ଉତ୍ତେଜନାରେ ଶୁକ୍ରକ୍ଷରଣ, ସମ୍ପୂର୍ଣ୍ଣ ବା ଆଂଶିକ ପୁରୁଷତ୍ୱହୀନ, ପ୍ରସ୍ରାବରେ ଯନ୍ତ୍ରଣା, ଲୁଗାରେ ଦାଗଲଗା,

ସ୍ୱପ୍ନଦୋଷ, ଶୁକ୍ରରେ ସନ୍ତାନ ଉତ୍ପାଦିକା ଶକ୍ତିର ଅଭାବ, ମଳ ବା ମୂତ୍ରତ୍ୟାଗ ସମୟରେ ପ୍ରକାଶ୍ୟରେ ବା ଅଜ୍ଞାତରେ ଶୁକ୍ରକ୍ଷରଣ, ମୂତ୍ରକୃଚ୍ଛ୍ରତା, ମୁହୁର୍ମୁହୁଃ ପ୍ରସ୍ରାବ, ଜନନେନ୍ଦ୍ରିୟର ଦୁର୍ବଳତା, ସ୍ମରଣଶକ୍ତିର ବିଲୋପ, ମସ୍ତିଷ୍କ କ୍ଲାନ୍ତି, ଦୃଷ୍ଟିଶକ୍ତିର କ୍ଷୀଣତା, ଶିରଘୂର୍ଣ୍ଣନ, କର୍ମଶକ୍ତିର ବିନାଶ, ଶରୀର ଓ ମନର ଅବସାଦ, ଚଡଚଡ଼ା ସ୍ୱଭାବ, ଯୌବନୋଚିତ ସାମର୍ଥ୍ୟର ଅଭାବ, ନିର୍ଜନପ୍ରିୟତା, ହୃତ୍‌ପିଣ୍ଡର କଷ୍ଟଦାୟକ ସ୍ପନ୍ଦନ, ଅଧ୍ୟୟନରେ ବା ସାଂସାରିକ କାର୍ଯ୍ୟରେ ଅନିଚ୍ଛା ଓ ସାମର୍ଥ୍ୟହୀନତା, ଅକାରଣରେ ଉଦ୍‌ବେଗ, ଶୋଣିତରେ ସ୍ୱଳ୍ପତା, ପାରଦ ଓ ଉପଦଂଶାଦିଜନିତ ଶୋଣିତ-ବିକୃତି, ବାତରକ୍ତ, ଆମବାତ, ଗାତ୍ରକଣ୍ଡୁ, ବାଗି, ଉପଦଂଶର ଘା, ନାକ ଓ ମୁଖର ଭିତରେ ଘା, ନାଲି ଘା, ଶୋଥ ହେବା, କାଛୁ କୁଣ୍ଡିଆ, ଭଗନ୍ଦର, କୁଷ୍ଠ ପ୍ରଭୃତି ନାନାପ୍ରକାରସ୍ଥ ଚର୍ମରୋଗ, ଶୁକ୍ର ବା ଶୋଣିତ ବିକାରଜ ଘଟିତ ସର୍ବପ୍ରକାର ଦୁର୍ଦ୍ଦମନୀୟ ବାତ, ଜଙ୍ଘ, ଉରୁ, କଟି, ହସ୍ତ, ପଦ ଓ ସନ୍ଧିସ୍ଥଳର ଗୁରୁତ୍ୱ; ବେଦନା, ଧକ୍ ଧକ୍ କରିବା, ମୋଡ଼ିହେବା, ଶରୀରର ନାନା ସ୍ଥାନରେ ବିବର୍ଣ୍ଣପ୍ରକୃତିରେ ଦାଗ ବା ଉପଦଂଶାଦିର ଉପଦ୍ରବ, ହସ୍ତ ଓ ପଦ ତଳର ଚମଡ଼ା ଫାଟିବା, ଧଳା ବା ତମ୍ବାଚିତ୍ର ଦାଗ ଫୁଟିଉଠିବା, ଧବଳ କୁଷ୍ଠାଦିର ପୂର୍ବଲକ୍ଷଣ, କୁଣ୍ଡ୍ୟାଦି ବଡ଼ ବଡ଼ ଫୁଲିଉଠିବା, ଚକ୍ଷୁରୁ ଜଳ ପଡ଼ିବା, ଅକାଳବାର୍ଦ୍ଧକ୍ୟ, ମୁଣ୍ଡରୁ ବାଳ ଉପୁଡ଼ିବା, କେଶର ଅକାଳପକ୍ୱତା, ଶରୀରର ସାଧାରଣ ଦୌର୍ବଲ୍ୟ ଇତ୍ୟାଦି ଶୁକ୍ର ଓ ଶୋଣିତ ସଂକ୍ରାନ୍ତ ସର୍ବପ୍ରକାର ବ୍ୟାଧି ଓ ତାହାର ସହସ୍ରାଧିକ ଉତ୍କଟ ଉପସର୍ଗ ସମୂଳରେ ବିନଷ୍ଟ କରି କ୍ଷୁଧା ବୃଦ୍ଧି କରିବାକୁ, କୋଷ୍ଠ ପରିଷ୍କାର ରଖିବାକୁ ଏବଂ ଦୁର୍ବଳ ଓ ଜରାଜୀର୍ଣ୍ଣ ଦେହ ସବଳ ଓ କାର୍ଯ୍ୟକ୍ଷମ କରିବାକୁ ଏହା ଅତୁଳନୀୟ; ସେଥିପାଇଁ—

## ଡାକ୍ତର ମେଜରଙ୍କର ଇଲେକ୍‌ଟ୍ରୋ-ସାଲସା

ଆଜି ଭାରତର ସର୍ବତ୍ର ସମାଦୃତ ଓ ପରିବ୍ୟାପ୍ତ । ପ୍ରକୃତ ଗୁଣ ଅଛି ବୋଲି ଏହାର ବିକ୍ରୟ ଏତେ ଅଧିକ—ବିକ୍ରୟବାହୁଲ୍ୟ-ହେତୁରୁ ଆଜି ବହୁ ନକଲର ସୃଷ୍ଟି ! କ୍ରେତାଗଣ ସାବଧାନ !!

"ଇଲେକ୍‌ଟ୍ରୋ-ସାଲସା"—ସକଳ ଦେଶର ସକଳ ଋତୁରେ ଉଲ୍ଲିଖିତ ରୋଗସମୂହର ସକଳ ଅବସ୍ଥାରେ ଆବାଳ-ବୃଦ୍ଧବନିତା, ରୋଗୀ, ଅରୋଗୀ ସମସ୍ତେ ନିର୍ବିଘ୍ନରେ ସେବନ କରି ପାରନ୍ତି ।

ଇଲେକ୍‌ଟ୍ରୋ-ସାଲସାର ମୂଲ୍ୟାଦି,—ସର୍ବପ୍ରକାର ଭାଷାରେ ବ୍ୟବସ୍ଥାପତ୍ରସମ୍ବଳିତ ୮ ଦିନ ସେବନୋପଯୋଗୀ ପ୍ରତ୍ୟେକ ଶିଶିର ମୂଲ୍ୟ ଟ ୨ ୧, ୩ ଶିଶି ମୂଲ୍ୟ ଟ ୫୲, ୬ ଶିଶି ଟ ୧୦୲, ଡଜନ ଟ ୨୦ ୧, ପ୍ୟାକିଂ ଓ ଡାକମାସୁଲ ଇତ୍ୟାଦି ଯଥାକ୍ରମେ ଟ ୦ ୲, ଟ ୦ ୲୵, ଟ ୧, ଟ ୧୲ ।

ଅସଂଖ୍ୟ, ଅଯାଚିତ ପ୍ରଶଂସାପତ୍ର ଏହାର ଅବ୍ୟର୍ଥତା, ଅମୋଘତା ଓ ଅକୃତ୍ରିମତାର ଜ୍ୱଳନ୍ତ ପ୍ରମାଣ, ଜ୍ୱଳନ୍ତ ସାକ୍ଷ୍ୟ ଦେଉଅଛି ।

୧ । ପାଟଣାର ମହାରାଜା ଦଳଗଞ୍ଜନ ସିଂହ ମହୋଦୟ ଲେଖିଅଛନ୍ତି:—

"ମହାଶୟଗଣ ! ମୋହର ପରିବାରସ୍ଥ ଏକ ବ୍ୟକ୍ତିର ଅତି କଠିନ ପୀଡ଼ାରେ ଡାକ୍ତର ମେଜରଙ୍କର ଇଲେକ୍‌ଟ୍ରୋ ସାଲସାର ବିସ୍ମୟଜନକ ଶୁଭଫଳ ଦର୍ଶନ କରି ମୁଁ ଡାକ୍ତର ସାହେବଙ୍କର ଔଷଧର ଗୁଣପ୍ରତି ଏତେ ପକ୍ଷପାତୀ ହୋଇଅଛି ଯେ, ଆପଣମାନଙ୍କର ପ୍ରସ୍ତୁତ ମହୌଷଧି ରୋଗକ୍ଲିଷ୍ଟ ମାନବମଣ୍ଡଳୀର ମହୋପକାରୀ ଏ କଥା କହିବାକୁ ମୁଁ ଅଣୁମାତ୍ର ଦ୍ୱିଧା ବୋଧ କରୁ ନାହିଁ । ଆପଣମାନଙ୍କର ମହୌଷଧିର ଗୁଣର ଚିହ୍ନସ୍ୱରୂପ ମୁଁ ଆପଣମାନଙ୍କୁ ଗୋଟିଏ ସ୍ୱର୍ଣ୍ଣପଦକ ଉପହାର ପ୍ରଦାନ କଲି । ଏହି ସାମାନ୍ୟ ଉପହାର ଆପଣମାନଙ୍କର ଅତୁଳନୀୟ ଓ ଅମୂଲ୍ୟ ଇଲେକ୍‌ଟ୍ରୋ-ସାଲସାର ଗୁଣର ତୁଳନାରେ ଯେତେ ଅକିଞ୍ଚିତ୍କର ହେଲେହେଁ ଏହା ମୋହର ହୃଦୟର କୃତଜ୍ଞତାର ନିଦର୍ଶନ ବୋଲି ଗ୍ରହଣ କଲେ କୃତାର୍ଥ ହେବି । ତା ୧୬।୧୦।୧୯୦୩"

୨। ମହାମାନ୍ୟ ମହାରାଜା ସାର ସୁଢ଼ଲ ଦେଓ ବାମଣ୍ଡାରୁ ଲେଖିଅଛନ୍ତି :—
"* * * ମୁଁ ନିଃସନ୍ଦେହରୂପେ କହିପାରେଁ ଯେ "ଇଲେକ୍‌ଟ୍ରୋ-ସାଲସା" ଦୂଷିତରକ୍ତ ପରିଷ୍କାର କରିବା ଓ ରକ୍ତଦୁଷ୍ଟିହେତୁ ବିବିଧ ରୋଗ ଆରୋଗ୍ୟ କରିବାପକ୍ଷରେ ସର୍ବୋତ୍କୃଷ୍ଟ।"

୩। ମହାମାନ୍ୟ ମହାରାଜା ଗଉରଚନ୍ଦ୍ର ଦେଓ ବେଢ଼ାଖୋଲରୁ ଲେଖିଅଛନ୍ତି—
"* * * ବିଜ୍ଞାପନର ମୋହରେ ପଡ଼ି "ଡ୍ୟାନଜନ" ଔଷଧ ମଗାଇଲି; ଉପକାର ହେବା ଦୂରେ ଥାଉ ଅନୁପକାର ହେଲା, ସେଥିରେ ପାରା ଅଛି ବୋଲି ଜଣା ପଡ଼ିଲା। କିନ୍ତୁ ଆପଣମାନଙ୍କର ଇଲେକ୍‌ଟ୍ରୋ-ସାଲସା'ର ଗୁଣ ମୁଁ ବୁଝି ପାରିବି ନାହିଁ। ମୋତେ ଆହୁରି ୩ ଡଜନ ପଠାଇଦେବେ।"

୪। ମହାମାନ୍ୟ ମହାରାଜା ହରିହର ମର୍ଦ୍ଦରାଜ ଦେଓ ଖଲ୍ଲିକୋଟରୁ ଲେଖିଅଛନ୍ତି—
"ରକ୍ତ ପରିଷ୍କାର କରି ବଳବୀର୍ଯ୍ୟ ବୃଦ୍ଧି କରିବାକୁ ଇଲେକ୍‌ଟ୍ରୋ-ସାଲସାର କ୍ଷମତା ଅସୀମ ଅଟେ।"

୫। ଗୋୟାଲିୟର ପ୍ରଦେଶାଧିପତି ମହାରାଜାଧିରାଜ ରଘୁନାଥ ରାଓ ଦିନକର ମୁସିର—ଅଲ-ଖାସ ବାହାଦୁର ଲେଖିଅଛନ୍ତି :—ଅନୁଗ୍ରହପୂର୍ବକ ଆହୁରି ୩ ଶିଶି ଔଷଧ ଆମ୍ଭ ନିକଟକୁ ପଠାଇ ଦିଅନ୍ତୁ। ୨୫ ତାରିଖ ଜୁଲାଇ, ୧୯୦୩।

୬। ଡାକ୍ତର ଜ. ଓପ୍ୟାହାର (କର୍ଣ୍ଣେଲ) ଏଲ. ଏମ. ଏସ୍. ପ୍ରୋଫେସର ମେଡିକାଲ କଲେଜ, ମାନ୍ଦ୍ରାଜଠାରୁ ଲେଖିଅଛନ୍ତି :—"ପାରା ଓ ଉପଦଂଶାଦିଜନିତ ରକ୍ତଦୁଷ୍ଟି ରୋଗରେ ଆପଣମାନଙ୍କର ଇଲେକଟ୍ରୋ-ସାଲସାର କ୍ରିୟା ଦେଖି ଅସୀମ ଆନନ୍ଦ ଭୋଗ କରିଅଛି। ୧୩ ଜାନୁୟାରି, ୧୯୦୨।"

୭। କଲିକତା ମେଡିକାଲ ବୋର୍ଡର ପ୍ରେସିଡେଣ୍ଟ ରାୟବାହାଦୁର ସୂର୍ଯ୍ୟକୁମାର ସର୍ବାଧିକାରୀ ଜ. ଏମ. ସି. ଇ. ମହୋଦୟ ଲେଖିଅଛନ୍ତି :—"ରକ୍ତଦୁଷ୍ଟିଜାତ କେତୋଟି ରୋଗୀଙ୍କୁ ଆପଣମାନଙ୍କର ଇଲେକ୍‌ଟ୍ରୋ-ସାଲସା ବ୍ୟବହାର କରାଇ ସନ୍ତୋଷଜନକ ଫଳ ପ୍ରାପ୍ତ ହୋଇଅଛି।"

ଡାକ୍ତର ମେଜର ସାହେବଙ୍କର

# ହାଇଡ୍ରୋସିଲ-ଇଲିକ୍‌ସାର

ବା କୋଷବୃଦ୍ଧିର ଔଷଧ।

ପ୍ରତିବର୍ଷ ୫ ହଜାରରୁ ଅଧିକ ରୋଗୀ ଆରୋଗ୍ୟ ଲାଭ କରୁଅଛନ୍ତି। ଆମ୍ଭେମାନେ ପ୍ରତିଜ୍ଞା କରି କହିପାରୁଁ, ଏହି ପ୍ରଲେପ ନିୟମିତରୂପେ କେତେକ ସପ୍ତାହ ବ୍ୟବହାର କଲେ ଏକଶିରା ବା କୋରଣ୍ଡ ଯେତେ ବଡ଼ ହେଉ, ଯେତେ ପୁରାତନ ହେଉ ପଛକେ ନିଶ୍ଚୟ ଆରୋଗ୍ୟ ହେବ। ଯେଉଁମାନେ ଏହି କୁତ୍ସିତ ରୋଗ ଓ ତାହାର ବିବିଧ ଯନ୍ତ୍ରଣାଦାୟକ ଉପସର୍ଗାଦିରୁ ନିର୍ବିଘ୍ନରେ ବିନା ଯନ୍ତ୍ରଣାରେ ଅଥଚ ଗୋପନରେ ଆରୋଗ୍ୟ ଲାଭର ବାସନା କରନ୍ତି, ସେମାନେ ଏହି ମହୌଷଧ ପରୀକ୍ଷା କରି ଦେଖନ୍ତୁ। ପ୍ରଥମ ଦିନ ବ୍ୟବହାରରେ ଏହାର ଆଶ୍ଚର୍ଯ୍ୟ ଉପକାରିତା ବୁଝାଯାଏ। ତତ୍ପରେ କ୍ରମେ କ୍ରମେ ଆକାର ଓ ଗୁରୁତ୍ୱ କମି ଥାଏ। ଯେଉଁମାନେ ଆରୋଗ୍ୟ ହେବା ବିଷୟରେ ହତାଶ ହୋଇଅଛନ୍ତି, ସେମାନେ ଏହି ଔଷଧ ପ୍ରତି ସମ୍ପୂର୍ଣ୍ଣ ନିର୍ଭର କରନ୍ତୁ। ବ୍ୟବହାରରେ ଜ୍ୱାଳା-ଯନ୍ତ୍ରଣା ବା କଷ୍ଟକର ନିୟମ ନାହିଁ। ମୂଲ୍ୟ ପ୍ରତି ଶିଶି ଟ ୧୵, ତିନି ଶିଶି ଏକାଥରେ ଟ ୪୯। ୬ ଶିଶି ଟ ୭୵ ଡଜନକୁ ଟ ୧୪୯ ମାସୁଲ ସ୍ୱତନ୍ତ୍ର।

ଡାକ୍ତର ମେଜର ସାହେବଙ୍କର

# ହେୟାର ଲାଇନ

କେଶର ପରିପୋଷଣ, ପରିବର୍ଦ୍ଧନ ଓ ଶ୍ରୀସମ୍ପାଦନକାରୀ ସୁଗନ୍ଧି କେଶତୈଳ ।




ହେତୋଡ଼ି ଭୈଷଜଗୁଣାନ୍ୱିତ ସଦ୍ୟ ପ୍ରସ୍ଫୁଟିତ, ସୁଗନ୍ଧଯୁକ୍ତ, ଅନାଘ୍ରାତ, ପୁଷ୍ପର ସାର, ବୈଜ୍ଞାନିକ ପ୍ରଣାଳୀରେ ଏକତ୍ରିତ କରି ବିଶୁଦ୍ଧ କେଶପୋଷକ ତୈଳର ସଂଯୋଗରେ ଏହି କେଶ ତୈଳ ପ୍ରସ୍ତୁତ ହୋଇଅଛି । ଆପଣ ଏହା ଲଗାଇବାକୁ ଆରମ୍ଭ କରନ୍ତୁ, ଅପୂର୍ବ ସୌରଭରେ ଗୃହଅଙ୍ଗ ମହକି ପଡ଼ିବ । ମସ୍ତିଷ୍କ ସୁଶୀତଳ ହେବ । ନିକଟସ୍ଥ ଲୋକେ ମନୋହର ସୁଗନ୍ଧରେ ମୁଗ୍ଧ ହେବେ । ଆପଣଙ୍କର ମନେ ହେବ ଯେପରି ପ୍ରସ୍ଫୁଟିତ ଫୁଲ-ବଗିଚାକୁ ଆସିଅଛୁ ।

"ହେୟାର-ଲାଇନ" ଲଗାଇ କେଶ ବିନ୍ୟାସ କଲେ ୨୪ ଘଣ୍ଟା ପର୍ଯ୍ୟନ୍ତ ଗନ୍ଧ ସମ ଭାବରେ ଥାଏ । ସ୍ନାନ ପରେ ଦେହରେ ଯେତେ ପବନ ଲାଗେ, ହେୟାର-ଲାଇନର ଗନ୍ଧ ସେତେ ବାହାରୁ ଥାଏ, ଯେପରି ସୌରଭର ଭଣ୍ଡାର ଖୋଲିଦିଏ। ଅତି ମୂଲ୍ୟବାନ୍ ଅତର ଓ ବିଦେଶୀୟ ସ୍ୱାକେଶାର ତୈଳ ପ୍ରଭୃତି ଏହାର ସୌରଭ ଓ ଗୁଣ ନିକଟରେ ପରାଜିତ ।

"ହେୟାର-ଲାଇନର" ରଙ୍ଗ ଅତି ମନୋହର, ସ୍ୱଭାବତଃ ଉଜ୍ଜ୍ୱଳ ଓ ସ୍ୱଚ୍ଛ । ଏଥି ନିମନ୍ତେ କେଶରେ ଅଠା ଧରେ ନାହିଁ ।

"ହେୟାର-ଲାଇନ" କେବଳ ସୌଖୀନ ଜିନିସ ନୁହେ, ମୁଣ୍ଡବିଥା, ମୁଣ୍ଡବୁଲା, ହିଷ୍ଟିରିୟା ପ୍ରଭୃତି ଶିରରୋଗର ମହୌଷଧ । ହସ୍ତ ପଦର ଜାଳା, ଗାତ୍ରଦାହ, ଛାତି ଧଡ଼ପଡ଼ହେବା, ପ୍ରାଣର ଅକୁଳଭାବ, ସ୍ନାୟବୀୟ ଦୌର୍ବଲ୍ୟ, ଦୂରପଡ଼ିବା ପ୍ରାୟ ବୋଧହେବା, ଅନିଦ୍ରା, ଚିତ୍ତ-ବୈଶୃଙ୍ଖଲ୍ୟ ପ୍ରଭୃତି ଉପସର୍ଗ ନିବାରଣରେ ଏହା ତୁଲ୍ୟ କ୍ଷମତାପନ୍ନ ଔଷଧ ଆଉ ନାହିଁ ।

"ହେୟାର-ଲାଇନ" ବ୍ୟବହାରଦ୍ୱାରା କେଶ ଉପୁଡ଼ିବା ବନ୍ଦ ହୁଏ, କେଶର ମୂଳ ଶକ୍ତ ହୁଏ, କେଶ ପ୍ରଚୁର ପରିମାଣରେ ବଢ଼େ ଏବଂ କଳା ଓ ଚିକ୍କଣ ହୁଏ, ମସ୍ତିଷ୍କ ଥଣ୍ଡା ରହେ । ଅନେକ ଦିନ ବ୍ୟବହାର କଲେ ଟାଙ୍ଗର ରୋଗ ନଷ୍ଟ ହୁଏ, ମୁଣ୍ଡର ରୁପୀ ପ୍ରଭୃତି ନଷ୍ଟ ହୁଏ; କେଶ ଘନ, କୋମଳ ଓ ସୁଦୃଶ୍ୟ ହୁଏ, ଦେହର ଦୁର୍ଗନ୍ଧ ଦୂର ହୁଏ, ଚର୍ମ କୋମଳ ଓ କାନ୍ତିଯୁକ୍ତ ହୁଏ, ମନର ସ୍ଥୈର୍ଯ୍ୟ ଧୈର୍ଯ୍ୟ ବଢ଼େ, ସ୍ମରଣଶକ୍ତି ବୃଦ୍ଧି ହୁଏ ।

ମୂଲ୍ୟ ପ୍ରତି ବଡ଼ ଆଃ ଶିଶି ଟ ୨ ୯; ୩, ୬, ୧୨ ଶିଶି କ୍ରମାନ୍ୱୟରେ ଟ ୫ ୲, ଟ ୧୦ ୲, ଟ ୨୦ ୯; ପ୍ୟାକିଂ ଓ ଡାକମାସୁଲ ସ୍ୱତନ୍ତ୍ର ।

ପ୍ରାପ୍ତିସ୍ଥାନ—ଡବଲିଉ, ମେଜର ଏଣ୍ଡ କୋଂ
ହେଡ଼ ଅଫିସ୍,—୧୨ ନମ୍ବର ୱେଲିଂଟନ ଷ୍ଟ୍ରିଟ, କଲିକତା ।

## ମୂଲ୍ୟପ୍ରାପ୍ତି ।

ରାଜସଂସ୍କରଣ ।

୧୯୦୪

ଶ୍ରୀଯୁକ୍ତ ରାଜାସାହେବ [illegible]ାଲଲହଡ଼ା ଟ ୬୧

ସାଧାରଣସଂସ୍କରଣ

୧୯୦୨

ଶ୍ରୀଯୁକ୍ତ ଯଶୋବନ୍ତ ସାହୁ କେନ୍ଦ୍ରାପଡ଼ା ଟ ୨ ୧

୧୯୦୩

ଶ୍ରୀଯୁକ୍ତ ପଦ୍ମନାଭ ଶତପଥୀ କଟକ ଟ ୧ ୧
" ପାରେଶ୍ୱର ମହାନ୍ତି ମଧୁପୁର ଟ ୧ ୧

୧୯୦୪

ଶ୍ରୀଯୁକ୍ତ ପ୍ରାଣକୃଷ୍ଣ ରାୟ କଟକ ଟ ୦ ୫
" ହରିହର ରଥ " ଟ ୧ ୧
" ନାରାୟଣପ୍ରସାଦ ମହାନ୍ତି " ଟ ୧ ୧
" ସୁଦର୍ଶନ ମହାନ୍ତି " ଟ ୦ ୫
" କେଶବାନନ୍ଦ ପଢ ପୁରୀ ଟ ୨ ୧
" ମଧୁସୂଦନ ଦାଶ କଟକ ଟ ୦ ୫
" ପ୍ରାଣଧନ ଷଡ଼ଙ୍ଗୀ " ଟ ୦ ୫
" ଅନନ୍ତଚନ୍ଦ୍ର ପଣ୍ଡା କୁରୁଝାଙ୍ଗ ଟ ୧ ୧
" ରମାଧର ଦାସ କେନ୍ଦ୍ରାପଡ଼ା ଟ ୧ ୧
" ଶ୍ୟାମସୁନ୍ଦର ବୋଷ କଟକ ଟ ୨ ୧
" ବ୍ରଜବନ୍ଧୁ ମିଶ୍ର " ଟ ୦ ୫
" ଅଚ୍ୟୁତାନନ୍ଦ ଦାସ " ଟ ୧ ୧
" ରାଧାଶ୍ୟାମ ନାୟକ କେନ୍ଦ୍ରାପଡ଼ା ଟ ୦ ୫
" ବହାର [illegible]ରଡ଼ା " ଟ ୦ ୫

ଶ୍ରୀଯୁକ୍ତ ଲୋକନାଥ ମହାନ୍ତି କେନ୍ଦ୍ରାପଡ଼ା ଟ ୦ ୫
" ରାମଚନ୍ଦ୍ର ଜଗଦେବ " ଟ ୦ ୫
" ପୀତାମ୍ବର ଜଗଦେବ " ଟ ୦ ୫
" ରାମଚନ୍ଦ୍ର ମହାନ୍ତି " ଟ ୦ ୫
" କାହ୍ନୁଚରଣ ପଣ୍ଡି " ଟ ୦ ୫
" ଯଦୁମଣି ମହାନ୍ତି " ଟ ୦ ୫
" ନଦିୟାବଲ୍ଲଭ ରାୟ ଯାଜପୁର ଟ ୨ ୧
" ଗୋବିନ୍ଦ ସୀତାରାମ ଦରଭାଇ
ରାୟପୁର ଟ ୧ ୧
" ବ୍ରଜବନ୍ଧୁ କର ବାରିପଡ଼ା ଟ ୧ ୧
" ଶଙ୍କରପ୍ରସାଦ ମିଶ୍ର
ଭବାନୀପାଟଣା ଟ ୧ ୧
" ବୃନ୍ଦାବନ ଦାସ ଯାଜପୁର ଟ ୧ ୧
" ପାରେଶ୍ୱର ମହାନ୍ତି ମଧୁପୁର ଟ ୨ ୧

ଅଗ୍ରିମ ୧୯୦୫

ଶ୍ରୀଯୁକ୍ତ ଚିନ୍ତାମଣି ପଟ୍ଟନାୟକ
ଭବାନୀପାଟଣା ଟ ୨ ୧
" ଶଙ୍କରପ୍ରସାଦ ମିଶ୍ର
ଭବାନୀପାଟଣା ଟ ୧ ୧
" ବୃନ୍ଦାବନ ଦାସ ଯାଜପୁର ଟ ୧ ୧

---*---

# ବିଜ୍ଞାପନ ।

—:o:—

"ଉତ୍କଳ-ସାହିତ୍ୟ-ସମାଜ" ଅପ୍ରକାଶିତ ଓଡ଼ିଆ ପ୍ରାଚୀନ ପୋଥି ସଂଗ୍ରହ ଓ ପ୍ରକାଶ କରିବାର ନିର୍ଦ୍ଧାରଣ କରି କାର୍ଯ୍ୟାରମ୍ଭ କରିଅଛନ୍ତି । ଏଥି ନିମିତ୍ତ କେତେକ ଉପଯୁକ୍ତ ବ୍ୟକ୍ତିଙ୍କୁ ନେଇ ଗୋଟିଏ ଶାଖା-ସମିତି ଗଠିତ ହୋଇଅଛି । ପୋଥି ଲେଖାଇବା ନିମିତ୍ତ ଉପଯୁକ୍ତ ବନ୍ଦୋବସ୍ତ ମଧ୍ୟ କରାଯାଉଅଛି । ଶାଖା-ସମିତି ଉପଯୁକ୍ତ ପରିମାଣ ଅର୍ଥ ଦେଇ ପ୍ରାଚୀନ ପୋଥିମାନ କ୍ରୟ କରିବାକୁ ପ୍ରସ୍ତୁତ ଅଛନ୍ତି । ଅତଏବ ଏତଦ୍ଦ୍ୱାରା ଉତ୍କଳଭାଷୀ ପ୍ରଦେଶର ସମସ୍ତ ସ୍ୱଦେଶାନୁରାଗୀ ସାହିତ୍ୟସେବକମାନଙ୍କୁ ଅନୁରୋଧ କରାଯାଉଅଛି ଯେ ସେମାନେ ଯଥାସାଧ୍ୟ ଚେଷ୍ଟା କରି ପ୍ରାଚୀନ ପୋଥିମାନ ସଂଗ୍ରହ କରି ନିମ୍ନସ୍ୱାକ୍ଷରକାରୀଙ୍କ ନିକଟକୁ ବେରିଙ୍ଗ ରେଜେଷ୍ଟରୀ ଡାକଦ୍ୱାରା ପଠାଇବେ । କୌଣସି ବ୍ୟକ୍ତି ପୋଥି ବିକ୍ରୟ କରିବାକୁ ଇଚ୍ଛୁକ ଥିଲେ ସେଥି ପାଇଁ ଉପଯୁକ୍ତ ମୂଲ୍ୟ ମଧ୍ୟ ଦିଆଯିବ । ନଚେତ୍ କାଗଜରେ ଲେଖାଇ ଉପଯୁକ୍ତ ସମୟ ମଧ୍ୟରେ ପୋଥି ଫେରାଇ ଦିଆଯିବ । ସେଥି ସହାୟେ ପୁସ୍ତକାଧିକାରୀ କିଛି ଅର୍ଥ ପ୍ରତ୍ୟାଶୀ ହେଲେ ତାହା ମଧ୍ୟ ଦିଆଯିବ ।

ମାହୁଦାସବଜାର,
କଟକ ।

ଶ୍ରୀ କୃଷ୍ଣପ୍ରସାଦ ଚୌଧୁରୀ
ପ୍ରାଚୀନପୁସ୍ତକସଂଗ୍ରହ-ଶାଖାସମିତିର
ସମ୍ପାଦକ ।

———



——*——

୮ ମ ଭାଗ । ମାଘ, ଫାଲ୍‌ଗୁନ, ୧୩୧୨ । ୧୦ମ, ୧୧ଶ ସଂଖ୍ୟା ।

# ଉତ୍କଳ-ସାହିତ୍ୟ ।

ମାସିକପତ୍ର ଓ ସମାଲୋଚନ ।

—:0:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—:0:—

THE UTKAL SAHITYA PRESS.
CUTTACK.
1905.

ବାର୍ଷିକ ମୂଲ୍ୟ ଡାକମାସୁଲ ସମେତ ୧ ।୦ ଏହି ସଂଖ୍ୟାର ମୂଲ୍ୟ ୵୲

# ଉତ୍କଳ-ସାହିତ୍ୟ ।

## "ଉତ୍କଳସାହିତ୍ୟ-ସମାଜ"ର ଦ୍ୱିତୀୟ ବାର୍ଷିକ ଅଧିବେଶନ ।

( କରୁଣାନିଧାନ ଜଗଦୀଶ୍ୱରଙ୍କ ଅପାର କରୁଣାବଳରେ ଶିଶୁ ଉତ୍କଳସାହିତ୍ୟ-ସମାଜ ସମସ୍ତ ବାଧା ବିଘ୍ନ ଅତିକ୍ରମ କରି ତୃତୀୟ ବର୍ଷରେ ପଦାର୍ପଣ କରିଅଛି । ଦ୍ୱିତୀୟ ବର୍ଷର ଅନୁଷ୍ଠିତ କାର୍ଯ୍ୟଗୁଡିକ ସମ୍ପୂର୍ଣ୍ଣରୂପେ ସନ୍ତୋଷଜନକ ହୋଇ ନ ଥିଲେହେଁ ଏହା ଯେ ଭବିଷ୍ୟତ ଆଶାପ୍ରଦ ଏଥିରେ ବୋଧ ହୁଏ ମତଦ୍ୱୈଧ ହେବ ନାହିଁ । ଯାହା ହେଉ ଆମ୍ଭେମାନେ ଗତ ବର୍ଷର କାର୍ଯ୍ୟ-ବିବରଣ ଏବଂ ଦ୍ୱିତୀୟବାର୍ଷିକ ଉତ୍ସବର ସମସ୍ତ କାର୍ଯ୍ୟ ପ୍ରଣାଳୀ ପାଠକମାନଙ୍କ ଅବଗତ ନିମିତ୍ତ ପ୍ରକାଶ କରୁଅଛୁଁ । ଆଶା କରୁଁ ଏଥିପ୍ରତି ଉତ୍କଳର ସମସ୍ତ ରାଜା, ମହାରାଜା, ଶିକ୍ଷିତ, ସମ୍ଭ୍ରାନ୍ତ ବ୍ୟକ୍ତିଙ୍କର ସହାନୁଭୂତି ପ୍ରଦର୍ଶିତ ଏବଂ ସ୍ନେହସୂଚକ ଦୃଷ୍ଟି ଆକୃଷ୍ଟ ହେବ । ଆନନ୍ଦସହକାରେ ପ୍ରକାଶ କରୁଅଛୁଁ ଯେ 'ଉତ୍କଳସାହିତ୍ୟ' ପକ୍ଷରୁ ଆମ୍ଭମାନଙ୍କର ପ୍ରେମାସ୍ପଦ ବନ୍ଧୁ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ବି. ଏଲ ମହାଶୟ Reporter ସ୍ୱରୂପ ନିମ୍ନଲିଖିତ ବିବରଣଟି ସଂଗ୍ରହ କରି ଦେଇଅଛନ୍ତି । )

ଦ୍ୱିତୀୟବାର୍ଷିକ ଅଧିବେଶନ ଗତ ଡିସେମ୍ବର ମାସ ୨୭ ତାରିଖ ମଙ୍ଗଳବାର ସନ୍ଧ୍ୟା ୬୳ ଘଣ୍ଟା ସମୟରେ କଟକ ଟାଉନ ଭିକ୍ଟୋରିଆ ସ୍କୁଲ ଗୃହରେ ଯଥାବିଧି ଅନୁଷ୍ଠିତ ହୋଇଥିଲା । ଏତଦୁପଲକ୍ଷରେ ଉକ୍ତ ଗୃହଟି ଅତି ମନୋହରରୂପେ ସଜ୍ଜିତ ହୋଇ ଆଲୋକମାଳାରେ ବିଭୂଷିତ ହୋଇଥିଲା । ପ୍ରାୟ ୫୦୦ ଲୋକଙ୍କ ନିମନ୍ତେ ଉପଯୁକ୍ତ ଆସନର ବନ୍ଦୋବସ୍ତ କରା ହୋଇଥିଲା । ମାନନୀୟ ମୟୂରଭଞ୍ଜାଧିପତି ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ ଉକ୍ତ ଅଧିବେଶନରେ ସଭାପତି କାର୍ଯ୍ୟ ନିର୍ବାହ କରି ସମାଜକୁ ଗୌରବାନ୍ୱିତ କରିଥିଲେ । ସଭାସ୍ଥଳରେ ନିମ୍ନଲିଖିତ ରାଜା, ଜମିଦାର, ସଭ୍ୟ, ଅଭିଭାବକ ଓ ବିଶିଷ୍ଟ ବ୍ୟକ୍ତିମାନେ ଏବଂ ଉତ୍କଳର ବିଭିନ୍ନ ସ୍ଥାନର ପ୍ରାୟ ୬୦୦ ଭଦ୍ରବ୍ୟକ୍ତି ଉପସ୍ଥିତ ଥିଲେ ।

ରାଜା ଶ୍ରୀ ମଦନମୋହନ ସିଂହ ଦେବ (ଧରାକୋଟ)
ରାଜା ଶ୍ରୀ ଶ୍ୟାମଚନ୍ଦ୍ର ଭଞ୍ଜ ଦେବ (ନୀଳଗିରି)
ରାଜା ଶ୍ରୀ କିଶୋରଚନ୍ଦ୍ର ବୀରବର ହରିଚନ୍ଦନ (ତାଳଚେର)
ରାଜା ଶ୍ରୀ ନାରାୟଣଚନ୍ଦ୍ର ଧୀର (ମଧୁପୁର)
ରାଜା ଶ୍ରୀ ଗଙ୍ଗେଶ୍ୱର ପାଲ ଦେବ (ପାଲଲହଡ଼ା)
ଶ୍ରୀଯୁକ୍ତ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ } ମୟୂରଭଞ୍ଜର
,, ହରିଶ୍ଚନ୍ଦ୍ର ଭଞ୍ଜ ଦେବ } ରାଜଭ୍ରାତାଦ୍ୱୟ
ସାମନ୍ତ ଶ୍ରୀ ବଳଦେବଚନ୍ଦ୍ର ଧୀର (ମଧୁପୁର)
ରାଜା ଶ୍ରୀ ବୈକୁଣ୍ଠନାଥ ଦେ ବାହାଦୁର (ବାଲେଶ୍ୱର)
ଶ୍ରୀଯୁକ୍ତ ଚକ୍ରପାଣି ସାମନ୍ତ (ପୁରଙ୍ଗୀଚକଭଦ୍ରା)
,, ରାୟ ରାଧାନାଥ ରାୟ ବାହାଦୁର
,, ଗୌରୀଶଙ୍କର ରାୟ
ଅମୃତବଜାର ପତ୍ରିକାର ପ୍ରତିନିଧି ଶ୍ରୀଯୁକ୍ତ ଆଶୁତୋଷ ରାୟ

ସର୍ବପ୍ରଥମରେ ଅଭ୍ୟର୍ଥନା-ସମିତିର ସଭାପତି ଶ୍ରୀଯୁକ୍ତ ଫକୀରମୋହନ ସେନାପତି ମହାଶୟ ଗୋଟିଏ ସୁଦୀର୍ଘ ବକ୍ତୃତାରେ ଉତ୍କଳର ପ୍ରାଚୀନ ଗୌରବକୁ ଲକ୍ଷ କରି ଅନେକ କଥା କହି ଉପସ୍ଥିତ ଅତିଥି ଏବଂ ଭଦ୍ରମଣ୍ଡଳୀଙ୍କୁ ଉତ୍କଳ-ସାହିତ୍ୟ-ସମାଜର କାର୍ଯ୍ୟନିର୍ବାହକ ସମିତି ପକ୍ଷରୁ ସାଦର ସମ୍ଭାଷଣ କରିଥିଲେ ।

ଅନନ୍ତର ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁରଙ୍କ ପ୍ରସ୍ତାବ ଓ ଶ୍ରୀଯୁକ୍ତ ନନ୍ଦକିଶୋର ବଳ ବି. ଏ ଙ୍କ ଅନୁମୋଦନକ୍ରମେ ମୟୂରଭଞ୍ଜର ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ ମହୋଦୟ ସଭାପତିପଦରେ ବରିତ ହେଲେ ।

ତଦନନ୍ତର ମଙ୍ଗଳାଚରଣସ୍ୱରୂପ ଶ୍ରୀଯୁକ୍ତ ମଧୁସୂଦନ ରାଓଙ୍କ ରଚିତ ସଙ୍ଗୀତଟି ଗୀତ ହେବା ପରେ ଶ୍ରୀଯୁକ୍ତ ନନ୍ଦକିଶୋର ବଳ ବି. ଏ.ଙ୍କ ରଚିତ କବିତାଟି ଆବୃତ୍ତି ହେଲା । ଉକ୍ତ ସଙ୍ଗୀତ ଏବଂ କବିତା ଅଧିବେଶନର କାର୍ଯ୍ୟ-କ୍ରମ ସହିତ ମୁଦ୍ରିତ ହୋଇ ସଭା ସ୍ଥଳରେ ବିତରିତ ହୋଇଥିଲା । ନିମ୍ନରେ ସେ ଦୁଇଟି ଅବିକଳ ପ୍ରଦତ୍ତ ହେଲା ।

ରାଗ ଆଶାବରୀ—ତାଳ ଯତି ।

ବାଣୀ ବରଦେ ଗୋ, ବରଭୟବିଧାୟିନୀ
ମୃଦୁ-କ୍ୱଣ-ବୀଣା— ବାଦନୀ ଭାରତୀ
ସୁଧାଧାରବର୍ଷିଣୀ ;
ଆସ ମା ଆସ ମା ଏ ଉତ୍କଳଧାମେ
ନବପ୍ରାଣପ୍ରଦାୟିନୀ,
ସୁପ୍ତ ଅଚେତନ ନିର୍ଜୀବ ନିଷ୍ପନ୍ଦ
ଦେଖ ଉତ୍କଳମେଦିନୀ । ୧ ।
ଉତ୍କଳ ଉଦୟ— ଅଚଳେ ତପନ
ନାଶି ଅବିଦ୍ୟା-ଯାମିନୀ,
ଉଜ୍ଜ୍ୱଳ କର ମା ଉତ୍କଳ-ସଂସାର
ଜ୍ଞାନ-ଭାନୁ-ପ୍ରକାଶିନୀ । ୨ ।
ମିଥ୍ୟା ମୋହ ହାସ ଆଳସ୍ୟ ବିଳାସ
ହର ବିଷାଦକାରିଣୀ,
ଢାଳ ମା ହୃଦୟେ ସ୍ୱର୍ଗର ଚେତନା
ପୁଣ୍ୟମୟୀ ମନ୍ଦାକିନୀ । ୩ ।
ଜାଗି ଉଠୁ ପ୍ରାଣ ମହାମହୋତ୍ସବେ
ମହୋତ୍ସବପ୍ରସବିନୀ,
ବାଜି ଉଠୁ ମା ଗୋ କଣ୍ଠେ ହୃଦୟେ
ତୋର ଅମୃତରାଗିଣୀ । ୪ ।
ଆଶା ହୃଦୟର ନିତ୍ୟ ଉଦ୍ଗତ
ଭର ଉତ୍ସାହଦାୟିନୀ,
ଦିବ୍ୟଜ୍ଞାନ-ମଣ୍ଡେ ଭାସିତ ସକଳେ
କର ମା ଜ୍ଞାନରୂପିଣୀ । ୫ ।

———*———

## ଉଦ୍ବୋଧନ ।

ରାମକେଳି ( ରାଗିଣୀ )

ନିମଗ୍ନ ଅଛନ୍ତି ଉତ୍କଳ ଅବସାଦ-ନିଦ୍ରାରେ,
କିଏସେ ତା ନାମ ରଟଣ ଅସି ତାହାର ଦ୍ୱାରେ !
ସୁଧାକ୍ଷରା ବୀଣା ବାଜଇ ଶୁଭେ ମଧୁ ଗାୟନ,
ସେ ଗୀତ ଶ୍ରବଣେ ସ୍ପନ୍ଦନ ହୁଏ ଗତ ଜୀବନ ।
ଶୁଣୁଅଛି ଦୂରୁଁ ଅତୀତ-ଉଦ୍ବୋଧନ-ସଙ୍ଗୀତ;
ଶ୍ରବଣେ ବିଷାଦ-ମିଶ୍ରିତ ପୁଲକ ବିସ୍ମିତ ଚିତ୍ତ ।
"ଯାର ଦେଶଲକ୍ଷ୍ମୀ ଲଲାଟ-ଚନ୍ଦ୍ର ଏକାମ୍ରବନ—
ଅତୁଳ ତନ୍ତ୍ରର ମନ୍ଦିର କଲେ ପର ସ୍ଥାପନ;
ମର୍କତଦେଶରୁ ପାଷାଣ ବହି ବାନ୍ଧି ତଟରେ
ଗୌରବ-କେତନ ଉଡ଼ାଇ ଗଲେ ହେଳାହେଳରେ;
ନୀଳାଦ୍ରିକନ୍ଦରେ କୋଣାର୍କକୀର୍ତ୍ତି-କେତୁ ଉଡ଼ାଇ
ଅନଙ୍ଗ ନୃସିଂହ ମନ୍ଦିର ଦେଇଥିଲେ ତୋଳାଇ;
ଶ୍ରୀଭଗବତପଦେ ଏହାର ସୁଦେ କଲେ ଉନ୍ନତ,
କେମନ୍ତେ ଦଗଧ ବସିଲା ଏ ସେ ପୂର୍ବ ସମ୍ପତ୍ତି !
ଉତ୍କଳ କୋଳେ ତ ଜନମି କବି ଉପେନ୍ଦ୍ର ଭଞ୍ଜ
ଦେଖାଇ ଥିଲେ ତା ଚକ୍ଷୁରେ ଚୋର କବିତା-କଞ୍ଜ;
ଦୀନକୃଷ୍ଣ ଅଭିମନ୍ୟୁ ତ କେତେ ଏହାର କୋଳେ,
ଗାଇଥିଲେ ସୁଧା ସଙ୍ଗୀତ ପ୍ରେମରସଧାରେ ଭୋଳେ;
ଶୂଦ୍ରମୁନି କବି ସାରଳା ଜଗନ୍ନାଥାଦି ଭକ୍ତ
ହରିଭକ୍ତି-ଗୀତେ କଲେତ ସାରା ଦେଶ ଉନ୍ମତ୍ତ;
କେମନ୍ତେ ହା ବିଧି ! ଉଭେଇ ଗଲା ଗୌରବରବି,
କେମନ୍ତ ବିଷାଦ-ମଳିନ ଦିଶେ ଉତ୍କଳ ଛବି ।
ଅଛି କେହି ଦେଶ ବିଶାଳ କବି ଗୀତ କାନନ,
ଘୋର ଅବସାଦ-କଣ୍ଟକ ଦର୍ପ ଉତ୍ତଅ ମନ ।"
ଏହା ସଙ୍ଗେ ପୁଣି ଶୁଭଇ ଗୀତ ଅମୃତକ୍ଷରା
ନବ-ଆଶା-ସୁଧା-ମଧୁର ମନ-ପରାଣ-ହରା—

"ପାହୁଛି ବିଷାଦ-ରଜନୀ ଉଠ ଉଠ ଉତ୍କଳ !
ତୁଟଇ ଧରଣୀ ନବୀନ ଆଶା ନବୀନ ବଳ ।
ପାଶ୍ଚାତ୍ୟ ବିଜ୍ଞାନ-ଅମୃତ ପିଇ କୋଟି ଜନନ
ଚୋଦଶା ଯେତେବେ ଏଣିକି ଲଭ ନବ ଜୀବନ ।"
ନ ଥିଲା କେଜାଣି କେ ଦେବ ବୋଲି ଶୁଣୁଛୁ ବାଣୀ,
ସ୍ୱପନ କି ଅବା ସତ୍ୟ ଏ ନ ପାରଇ ସେ ଜାଣି !
ସତେ କି ଉତ୍କଳଜନନେ ଲଭି ନବ ଜୀବନ
ଜାତିତ୍ୱଜୀବନେ ଲଭିବେ ଧରା-ଅଭିନନ୍ଦନ ?
ପାହୁଛି କି ଦୁଃଖ-ଯାମିନୀ ଭାଙ୍ଗିଅଛି କି ଧ୍ୱାନ୍ତ,
ପଶ୍ଚିମ ଦିଗନ୍ତେ ଜ୍ୱଳିଛି କରେ ଛଯୁଗର କାନ୍ତ !
ଆଶା ମାୟାବିନୀ କିଅବା ଇନ୍ଦ୍ରଜାଲ ବିସ୍ତାରି
ଦେଖାଉଛି ମାୟା-ଚିତ୍ରକ ଅହା କି ମନୋହାରି !
ନିମଗ୍ନ ଥିଲା ଏ ଉତ୍କଳ ଅବସାଦ-ନିଦ୍ରାରେ,
କିଏସେ ତା ନାମ ଘୋଷଣ ଆସି ଡାକିଲା ଦ୍ୱାରେ !
ଜାଣିଛୁ ଜାଣିଛୁ ଭାରତ ! ଏହା ତୋହର ସ୍ୱନ,
ତୁହି ତ ମା ବାନ୍ଧି ରଖିଛୁ କୋଟି ଓଡ଼ିଆ-ମନ ।
ଭାଷା ବିନା ଆନ ଦେଶର କିବା ଅଛି ନିଜର ?
ଟାଣେ ଏକ ପାଶେ ଆନକୁ ମାତଃ ! ମାୟା
ତୋହର ।
ବୀଣାପାଣି ! କର କରୁଣା ମେଣ୍ଟୁ ଉତ୍କଳ ତୃଷା,
ପିଆଇ ଦିଅ ମା ତା ଭାଲେ ଜଗ ଗୌରବଭୂଷା ।
ମୁଗ୍ଧକରୀ ବୀଣା ବଜାଅ ବାଣି ! ଉତ୍କଳେ ଥରେ,
ସେ ସ୍ୱନ ଶ୍ରବଣେ ଏ ସୁପ୍ତ ଦେଶ ଉଠୁ ମା ଶରେ ।

———※———

ଏହି ସମୟରେ ସମ୍ପାଦକ ଶ୍ରୀ ବିଶ୍ୱନାଥ କର ମହାଶୟ ସଭାକୁ ଜଣାଇଲେ ଯେ ନିମ୍ନଲିଖିତ ବ୍ୟକ୍ତିମାନେ ଏହି ଉତ୍ସବରେ ଉପସ୍ଥିତ ହୋଇ ନ ପାରି ସଭାର କାର୍ଯ୍ୟରେ ଆନ୍ତରିକ ସହାନୁଭୂତି ଜ୍ଞାପନ କରିଅଛନ୍ତି :—

ରାଜା ଶ୍ରୀଯୁକ୍ତ ବୀରବର ମର୍ଦ୍ଦରାଜ ଦେବ (ଖଲିକୋଟ)
ରାଜା ଶ୍ରୀଯୁକ୍ତ ସୂର୍ଯ୍ୟପ୍ରତାପମହୀନ୍ଦ୍ର ଦେବ ବାହାଦୁର (ତେଢ଼ାକାଳ)
ରାଜା ଶ୍ରୀଯୁକ୍ତ କୃପାମୟଅନଙ୍ଗଭୀମକେଶରୀ ଦେବ (ବଡ଼ଖେମିଡ଼ି)
ରାଜା ଶ୍ରୀଯୁକ୍ତ ଗୌରଚନ୍ଦ୍ର ଗଜପତି ଦେବ (C. I. E.) (ପାରଳାଖେମିଡ଼ି)
ରାଜା ଶ୍ରୀଯୁକ୍ତ ସାଧୁଚରଣ ମାନସିଂହ ହରିଚନ୍ଦନ ମହାପାତ୍ର (କଇଁଫିଙ୍ଗପୁର)
ଯୁବରାଜ ଶ୍ରୀଯୁକ୍ତ ବୀରବିକ୍ରମ ଦେବ (ଖଡ଼ିଆଳ)
ରାଜକୁମାର ଶ୍ରୀଯୁକ୍ତ ବଳଭଦ୍ର ଦେବ (ବାମଣ୍ଡା)
ଶ୍ରୀଯୁକ୍ତ ବିକ୍ରମ ଦେବବର୍ମ୍ମା (ବିଶାଖାପଟନ)
ଶ୍ରୀଯୁକ୍ତ ଚୌଧୁରୀ ରାମନାରାୟଣ ପ୍ରହରାଜ ମାନଧାତା (ଗଡ଼ଠଡ଼ିଆ)
ସାମନ୍ତ ଶ୍ରୀଯୁକ୍ତ ରାଜନାରାୟଣ ଦାସ (ବାଲେଶ୍ୱର)
ସାମନ୍ତ ଶ୍ରୀଯୁକ୍ତ ରାଧାଚରଣ ଦାସ ,,
ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ନନ୍ଦ (ପାଲଲହଡ଼ା)
,, ଜାନବଲ୍ଲ ମହାନ୍ତି (ବ୍ରହ୍ମପୁର)
,, ଲୋକନାଥ ମହାପାତ୍ର (ବାଲେଶ୍ୱର)
,, ଗୋପୀନାଥ ରାଜଗୁରୁ (ପାରଳାଖେମିଡ଼ି)

ସଭାପତି ମହୋଦୟଙ୍କ ଆଦେଶକ୍ରମେ ସହକାରୀ ସମ୍ପାଦକ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ବି. ଏଲ ଉତ୍କଳସାହିତ୍ୟ-ସମାଜର ଦ୍ୱିତୀୟବାର୍ଷିକ କାର୍ଯ୍ୟ-ବିବରଣ ପାଠ କଲେ । ତାହା ଏହି:—

ଉତ୍କଳ-ସାହିତ୍ୟ ସମାଜର ଦ୍ୱିତୀୟବାର୍ଷିକ କାର୍ଯ୍ୟ-ବିବରଣ ।

ଜାତୀୟ ଜୀବନ ଓ ସଭ୍ୟତାରେ ଜାତୀୟ ସାହିତ୍ୟର କେଉଁ ସ୍ଥାନ ନିର୍ଦ୍ଦିଷ୍ଟ ହେବାର ଉଚିତ, ବର୍ତ୍ତମାନ ଏହା ଆମ୍ଭମାନଙ୍କର ଆଲୋଚ୍ୟ ନୁହେ । ଜାତୀୟ ସାହିତ୍ୟର ଉନ୍ନତି ଜାତୀୟ ସଭ୍ୟତାର ପରିମାପକ ଏହା ଆମ୍ଭେମାନେ ସମସ୍ତେ ଜାଣୁ । କିନ୍ତୁ ଆମ୍ଭମାନଙ୍କ ମଧ୍ୟରୁ କେତେ ଜଣ ଏହି ସତ୍ୟ ଉପରେ ନିର୍ଭର କରି କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ହୋଇଥାଉଁ ? ଏ ପ୍ରଶ୍ନର ଉତ୍ତର ଦେବାକୁ ହେଲେ ଆମ୍ଭମାନଙ୍କ ମଧ୍ୟରୁ ଅନେକ ବ୍ୟକ୍ତି ଲଜ୍ଜାରେ ଅବନତମସ୍ତକ ହେବେ । ଏହାର ଗୋଟିଏ ପ୍ରଧାନ କାରଣ ଉଦାସୀନତା । ବର୍ତ୍ତମାନ ଉତ୍କଳୀୟ ଜାତି ମଧ୍ୟରେ ଏହି ଗୁଣଟି ରାଜ୍ୟ ବିସ୍ତାର କରି ଆମ୍ଭମାନଙ୍କ ହୃଦୟକୁ ଅଡ଼ଙ୍କୁ ଅଗ୍ରସର

ଲାଭ କରୁ ନାହିଁ । ଜାତୀୟ ଜୀବନରେ ଅନ୍ୟାନ୍ୟ ଶାଖା ପ୍ରଶାଖାରେ ଏହି ପ୍ରଭାବ କେତେ ଦୂର ପରିସ୍ଫୁଟ, ତାହା ଆମ୍ଭମାନଙ୍କର ଆଲୋଚନା କରିବାର ଅବସର ନାହିଁ, କେବଳ ଥରେ ଉତ୍କଳ-ସାହିତ୍ୟର ବର୍ତ୍ତମାନ ଅବସ୍ଥା ସଙ୍ଗେ ସାହିତ୍ୟସେବୀମାନଙ୍କର ସଂଖ୍ୟା, ମର୍ଯ୍ୟାଦା, ଅବସ୍ଥା ଇତ୍ୟାଦି ଅନୁପାତହାରରୂପେ ତୁଳନା କରିବାକୁ ଗଲେ କୌଣସି ବିଶେଷ ଗୌରବମୟ ହେଲାପରି ବୋଧ ହେଉ ନାହିଁ । ଉତ୍କଳସାହିତ୍ୟର ବର୍ତ୍ତମାନ ଅବସ୍ଥାକୁ ମନୋଯୋଗସହକାରେ ଆଲୋଚନା କଲେ ସ୍ପଷ୍ଟପ୍ରତୀୟମାନ ହେବ ଯେ ଏହି କ୍ଷେତ୍ରରେ ଅନେକଗୁଡ଼ିଏ ଘୋର ଅଭାବ ବିଦ୍ୟମାନ ଅଛି; କିନ୍ତୁ ସେଗୁଡ଼ିକ ମୋଚନ କରିବା ବିଷୟରେ କେତେ ଜଣ ନିଃସ୍ୱାର୍ଥଭାବରେ ତ୍ୟାଗ କରିବାକୁ ପ୍ରସ୍ତୁତ, ଏ ବିଷୟର ସନ୍ତୋଷଜନକ କୈଫିୟତ ଦେବାକୁ ଆମ୍ଭମାନେ ପଶ୍ଚାତ୍ପଦ ହେବୁଁ ଏଥିରେ ସନ୍ଦେହ ନାହିଁ । ଏହି ସବୁ ଅଭାବଗୁଡ଼ିକ ଅନୁଭବ କରି ତାହା ଯଥାଶକ୍ତି ପୂରଣ କରିବା ଉଦ୍ଦେଶ୍ୟରେ ଏହି 'ଉତ୍କଳ-ସାହିତ୍ୟ-ସମାଜ'ର ପ୍ରତିଷ୍ଠା । କାର୍ଯ୍ୟଟି ଗୁରୁତର ଏଥିରେ ଆପଣମାନଙ୍କ ମଧ୍ୟରୁ କାହାରି ଭିନ୍ନମତ ହୋଇ ନ ପାରେ । କାର୍ଯ୍ୟକ୍ଷେତ୍ରର ପ୍ରସର ପ୍ରତି ଦୃଷ୍ଟିପାତ କଲେ ଆମ୍ଭମାନଙ୍କର କର୍ତ୍ତବ୍ୟର ସୀମା ମଧ୍ୟ ଅନୁମିତ ହେବ । ବର୍ତ୍ତମାନ ଉତ୍କଳସାହିତ୍ୟସମାଜରେ ଆଲୋଚିତ ହେବା ଭଳି କେବଳ ସାହିତ୍ୟିକ ବିଷୟ ଚର୍ଚ୍ଚା କରିବା ଲୋକ ଉତ୍କଳରେ ଅତି ଅଳ୍ପ । ଏପରି ବିଶୁଦ୍ଧ-ସାହିତ୍ୟ-ସେବକଙ୍କ ସଂଖ୍ୟାର ଅତ୍ୟଳ୍ପତା ଯୋଗୁଁ ସମାଜରେ ପଢ଼ିବାର ଯୋଗ୍ୟ ପ୍ରବନ୍ଧ ଅତି ଅଳ୍ପ ଆମ୍ଭମାନଙ୍କ ଭାଗ୍ୟରେ ଘଟିଅଛି । କାଳକ୍ରମେ ଆମ୍ଭମାନଙ୍କ ମଧ୍ୟରେ ବିଶୁଦ୍ଧ ସାହିତ୍ୟସେବକଙ୍କ ସଂଖ୍ୟା ବଢ଼ିବ ଏହି ଆଶା ସମାଜକୁ ବଞ୍ଚାଇ ରଖିଅଛି ।

ସମାଜର ସ୍ୱତନ୍ତ୍ର କାର୍ଯ୍ୟାଳୟ ଓ ପୁସ୍ତକାଗାର ନାହିଁ, ଏହା ଗୋଟିଏ ପ୍ରଧାନ ଅସୁବିଧା ଓ ଅଭାବ । ସ୍ୱତନ୍ତ୍ର କାର୍ଯ୍ୟାଳୟ ନ ଥିବାରୁ ଆମ୍ଭମାନଙ୍କ କାର୍ଯ୍ୟରେ କେତେକ ଅନିୟମ ଘଟୁଅଛି ଏହା କହିବା ବାହୁଲ୍ୟ ମାତ୍ର । ଉତ୍କଳ-ସାହିତ୍ୟର ଆଧୁନିକ ଓ ପୁରାତନ ପୁସ୍ତକ ଓ ପୋଥିଗୁଡ଼ିକ ଯଥାସମ୍ଭବ ସଂଗୃହୀତ ହୋଇ ଗୋଟିଏ ସ୍ଥାନରେ ରହିଲେ ଏ ସ୍ଥାନର ଗୋଟିଏ ପ୍ରଧାନ ଅଭାବ ଦୂର ହୁଅନ୍ତା ଓ ସଙ୍ଗେ ସଙ୍ଗେ ପଠନେଚ୍ଛୁ ଓ ଅନୁସନ୍ଧିତ୍ସୁମାନଙ୍କର ସ୍ୱକୀୟ ପନ୍ଥା ଅନୁସରଣ କରିବାର ଗୋଟିଏ ପ୍ରଶସ୍ତ ପଥ ଫିଟି ଯାଆନ୍ତା । ତତ୍ପରେ କଟକ ନଗର ଉତ୍କଳର କେନ୍ଦ୍ରସ୍ଥଳ କହିଲେ ଅତ୍ୟୁକ୍ତି ହେବ ନାହିଁ ଓ ଉତ୍କଳର ସବୁ ସ୍ଥାନର ଲୋକେ ସମୟବିଶେଷରେ ଏଠାକୁ ଆସିଥାନ୍ତି । ଏପରି ସ୍ଥଳରେ ଏଠାରେ ଉତ୍କଳ ଭାଷା ଓ ସାହିତ୍ୟର ବିଶିଷ୍ଟ ପୁସ୍ତକାଳୟ ରହିଲେ ତାହାର ସଦ୍ବ୍ୟବହାର ଛଡ଼ା ଅପବ୍ୟବହାର ହୁଅନ୍ତା ନାହିଁ, ଏହା ଅମ୍ଭେମାନେ ଦୃଢ଼ ଭାବରେ କହିପାରୁଁ । ଏପରି ଗୋଟିଏ ପୁସ୍ତକାଳୟ ଓ ପଠନାଗାର ପ୍ରତିଷ୍ଠା ପ୍ରତି ଅମ୍ଭେମାନେ ଅନେକ ଦିବସାବଧି ଲକ୍ଷ୍ୟ ରଖିଅଛୁଁ । କିନ୍ତୁ ଏହାଠାରୁ କ୍ଷୁଦ୍ରତର କାର୍ଯ୍ୟମାନଙ୍କରେ ହସ୍ତକ୍ଷେପ କରି ଫଳ ଲାଭ ନ ହୋଇଥିବା ସ୍ଥଳରେ ବୃହତ୍ତର ଅନୁଷ୍ଠାନରେ ହସ୍ତକ୍ଷେପ କରିବା ଯୁକ୍ତିଯୁକ୍ତ ହେବ ନାହିଁ ବୋଲି ଏହି କଳ୍ପନା କଳ୍ପନାରେ ପର୍ଯ୍ୟବସିତ ହୋଇଅଛି । ଏହି କଳ୍ପନାକୁ କାର୍ଯ୍ୟରେ ପରିଣତ କରିବା ଲାଗି ଅର୍ଥବଳର ପ୍ରୟୋଜନ, ସେ କଥା ଆପଣମାନଙ୍କୁ ବୁଝାଇ ଦେବାକୁ ହେବ ନାହିଁ ।

ଉତ୍କଳ-ସାହିତ୍ୟର ଯେଉଁ ଦିଗକୁ ଦୃଷ୍ଟିପାତ କରିବେ ସେହି ଦିଗରେ ଆମ୍ଭମାନଙ୍କର କଠୋର ସାଧନାର ଆବଶ୍ୟକତା ଉପଲବ୍ଧ ହେବ । ଓଡ଼ିଆ ଭାଷାର ଓ ସାହିତ୍ୟର ଇତିହାସ, ସାହିତ୍ୟ-ବିଜ୍ଞାନ, ଶବ୍ଦକୋଷ, ପୁରାତନ ସାହିତ୍ୟର (classics) ପ୍ରଚାର ଇତ୍ୟାଦି ନାନାବିଧ ଅନେକ କାର୍ଯ୍ୟର ଆବଶ୍ୟକତା ଅଛି । ଜଣେ

ଜଣେ ଯୋଗ୍ୟ ବ୍ୟକ୍ତି ଗୋଟିଏ ଗୋଟିଏ ଶାଖା ଅବଲମ୍ବନ କରି ତାହା ଅନୁଶୀଳନ କରିବାର ବିଶେଷ ଆବଶ୍ୟକ ଏବଂ ଏହି ଉଦ୍ଦେଶ୍ୟରେ ନୂତନ ଲେଖକମାନଙ୍କୁ ସମୁଚିତ ଉତ୍ସାହ ପ୍ରଦାନ ଏ ସମାଜର ଗୋଟିଏ ଲକ୍ଷ୍ୟ ମଧ୍ୟରେ ପରିଗଣିତ । ଅବଶ୍ୟ ଆମ୍ଭମାନଙ୍କ ମଧ୍ୟରେ କେତେକ ବ୍ୟକ୍ତି ସାହିତ୍ୟର ଗୋଟିଏ ଗୋଟିଏ ଶାଖା ଅବଲମ୍ବନ କରି ତହିଁରେ ଅଗ୍ରସର ହୋଇଅଛନ୍ତି; କିନ୍ତୁ ସେମାନଙ୍କ ସଂଖ୍ୟା ଆପଣମାନଙ୍କ ନିକଟରେ ଏତେବଡ଼ ସଭାରେ ପ୍ରକାଶ କରିବାକୁ ଲଜ୍ଜା ବୋଧ ହେଉଅଛି । ଉଦାହରଣସ୍ୱରୂପ ଉତ୍କଳ-ସାହିତ୍ୟର ଇତିହାସର ଉପକରଣ ସଂଗ୍ରହ ବିଷୟରେ ପାରଳାଖେମୁଣ୍ଡିର ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ରାଜଗୁରୁ ବି. ଏ. ମହାଶୟ ଯେଉଁ ଅଧ୍ୟବସାୟ ଓ ପରିଶ୍ରମ ଦେଖାଇଅଛନ୍ତି, ଉପଯୁକ୍ତ ସାହାଯ୍ୟ ମିଳିଲେ ଆମ୍ଭମାନଙ୍କ ଜାତୀୟ ସାହିତ୍ୟ ତଦ୍ଦ୍ୱାରା ଉନ୍ନତିର ଗୋଟିଏ ଉଚ୍ଚ ସୋପାନକୁ ଉଠିବ ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏ ଆଶା କେବେହେଲେ ଫଳବତୀ ହେବ ତାହା ଭଗବାନଙ୍କୁ ଗୋଚର ।

ଏ ସମ୍ବନ୍ଧରେ ଆପଣମାନଙ୍କ ନିକଟରେ ଓ ଉତ୍କଳର ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କ ନିକଟରେ ଏବଂ ଏହି ସମାଜର ସଭ୍ୟମାନଙ୍କ ନିକଟରେ ଆମ୍ଭମାନଙ୍କର ସବିଶେଷ ପ୍ରାର୍ଥନା ଏହି ଯେ ସମସ୍ତେ ଏହି ସମାଜ ପ୍ରତି କୃପାଦୃଷ୍ଟି ପକାନ୍ତୁ । ଆପଣମାନେ ସ୍ମରଣ ରଖିବେ ଯେ ହେଲେ ଏହି ସମାଜ ଉତ୍କଳ ସାହିତ୍ୟର ପ୍ରତିନିଧି ଓ ଅଭିଭାବକ ହୋଇ ସମଗ୍ର ଉତ୍କଳରେ ଜାତୀୟ ସାହିତ୍ୟର ଉନ୍ନତ କରିବ ଓ ସାହିତ୍ୟକ୍ଷେତ୍ରରେ ବିଚାରକ ଆସନରେ ବସି ଉତ୍କଳର ସାହିତ୍ୟ-ମାର୍ଗରେ ପଥଦର୍ଶକସ୍ୱରୂପ ହେବ । ଏହି ଆଦର୍ଶ ପ୍ରତି ଲକ୍ଷ୍ୟ ରଖି ଏଥିର ପ୍ରତିଷ୍ଠାତାମାନେ ଅଗ୍ରସର ହୋଇଅଛନ୍ତି—ଏହି ମହଦୁଦ୍ଦେଶ୍ୟକୁ କାର୍ଯ୍ୟରେ ପରିଣତ କରିବା ଲାଗି ସମ୍ମିଳିତ ଓ ସୁଶୃଙ୍ଖଳିତ ଚେଷ୍ଟାର ଆବଶ୍ୟକତା ଚିନ୍ତାଶୀଳ ବ୍ୟକ୍ତିମାତ୍ରକେ ଉପଲବ୍ଧି କରିବେ । ଆଶା ମାତ୍ର ଏହି ସମାଜକୁ ବଞ୍ଚାଇ ରଖିଅଛି, ସେଥିକି ଆପଣମାନଙ୍କର ଓ ଉତ୍କଳୀୟ ସାଧାରଣଙ୍କର କୃପାଦୃଷ୍ଟି ଏ ଦିଗକୁ ପଡ଼ିବ ଏହା ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଭରସା । ବର୍ତ୍ତମାନ ଆମ୍ଭମାନଙ୍କର ଗୋଟିଏ ବିଶେଷ ଆଶାର କଥା ଆପଣମାନଙ୍କୁ କହିବୁଁ । ଏଠାରେ ଯେଉଁ ଉତ୍କଳ-ସମ୍ମିଳନୀ ସଭା ପ୍ରତିଷ୍ଠିତ ହୋଇଅଛି ତାହା ଗୋଟିଏ ପ୍ରକାଣ୍ଡ ଅନୁଷ୍ଠାନ ଏବଂ ଉକ୍ତ ସଭାଟି ଉତ୍କଳର ମହା-ପ୍ରତିନିଧିସ୍ୱରୂପ ବର୍ତ୍ତମାନ ଦଣ୍ଡାୟମାନ । ଉତ୍କଳ ଭାଷା ଏବଂ ସାହିତ୍ୟର ଉନ୍ନତି ନିମନ୍ତେ ସମ୍ମିଳିତ ଓ ସୁଶୃଙ୍ଖଳିତ ଚେଷ୍ଟାର ଆବଶ୍ୟକତା ଉତ୍କଳ-ସମ୍ମିଳନୀ ସଭା ଉପଲବ୍ଧି କରି ଏହି ସମାଜକୁ ସମ୍ମିଳନୀର ସାହିତ୍ୟିକ ସହଯୋଗୀ ବୋଲି ବିଗତ ବର୍ଷ ନିର୍ଦ୍ଧାରଣ କରି-ଅଛନ୍ତି—ଏହା ଉତ୍କଳ ତଥା ଉତ୍କଳ-ସାହିତ୍ୟ ପକ୍ଷରେ ଗୌରବର ବିଷୟ । ବିଗତବର୍ଷ ମଧ୍ୟ ଆମ୍ଭେମାନେ ସମ୍ମିଳନୀରୁ ଆର୍ଥିକ ସାହାଯ୍ୟ ପାଇଥିବାରୁ କୃତଜ୍ଞତାସହ ସ୍ୱୀକାର କରୁଅଛୁଁ । ସମ୍ମିଳନୀ ସଙ୍ଗେ ସଂଯୁକ୍ତ ହୋଇ ଆମ୍ଭମାନଙ୍କ ଆଶା ଅନେକ ପରିମାଣରେ ବର୍ଦ୍ଧିତ ହୋଇ-ଅଛି ଏବଂ ଆମ୍ଭମାନଙ୍କ ସମାଜରେ ନବବଳର ସଞ୍ଚାର ହୋଇଅଛି ।

ପରିଶେଷରେ ବର୍ଣ୍ଣିତ ବର୍ଷ ମଧ୍ୟରେ ଉତ୍କଳରୁ ଯୋଡ଼ିଏ ଉଜ୍ଜ୍ୱଳ ନକ୍ଷତ୍ର ଖସି ପଡ଼ିଅଛନ୍ତି । ଭୁବନବିଖ୍ୟାତ ଖଣ୍ଡପଡ଼ାର ଜ୍ୟୋତିଷିଶେଖର ମହାତ୍ମା ଶ୍ରୀ ମହାମହୋପାଧ୍ୟାୟ ଚନ୍ଦ୍ରଶେଖର ସିଂହ ସାମନ୍ତ ଇହଲୀଳା ସାଙ୍ଗ କରିଅଛନ୍ତି । ନିଜର ଅଧ୍ୟବସାୟଦ୍ୱାରା ମନୁଷ୍ୟ ସମସ୍ତ ଅସୁବିଧା ଲଙ୍ଘି ଉନ୍ନତ ଜ୍ଞାନରାଜ୍ୟରେ ପ୍ରବେଶ କରି ପାରେ, ଏହାର ଜ୍ୱଳନ୍ତ ପ୍ରମାଣ ଉକ୍ତ ମହାତ୍ମାଙ୍କ ଜୀବନ । ପାରଳାଖେମୁଣ୍ଡିର ଦ୍ୱିତୀୟ ରାଜକୁମାର ସ୍ୱର୍ଗୀୟ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ଅକାଳମୃତ୍ୟୁଦ୍ୱାରା ଉତ୍କଳ-ସାହିତ୍ୟ ଗୋଟିଏ ଅଭିଭାବକ ହରାଇ

ଅଛୁ ଓ ଉତ୍କଳ ଗୋଟିଏ ସମୁଜ୍ଜ୍ୱଳ ରତ୍ନ ହରାଇ ଅଛି—ଭକ୍ତ ରାଜକୃଷ୍ଣ ମହାପାତ୍ର ମହୋଦୟ ଜଣେ ଉଚ୍ଚଶ୍ରେଣୀର ସାହିତ୍ୟସେବକ ଥିଲେ ଓ ଉତ୍କଳସାହିତ୍ୟର ଅଭିବୃଦ୍ଧି ନିମନ୍ତେ ଯଥାଶକ୍ତି ଚେଷ୍ଟା କରୁଥିଲେ ଏବଂ ସାହିତ୍ୟକ୍ଷେତ୍ରରେ ସେ ବିଶେଷଭାବରେ ପରିଚିତ ଥିଲେ ।

ଏ ଦୁଇ ମହାତ୍ମାଙ୍କ ମୃତ୍ୟୁର ଛାୟା ଆମ୍ଭମାନଙ୍କର ଏହି କ୍ଷୁଦ୍ର ସମାଜ ଉପରେ ପଡ଼ିଅଛି ଏବଂ ଏମାନଙ୍କ ମୃତ୍ୟୁରେ ଦୁଃଖ ପ୍ରକାଶ କରିବା ନିମନ୍ତେ ସମାଜର ବିଶେଷ ଅଧିବେଶନ ହୋଇଅଛି ।

ଅବତରଣିକାଟି ଅଯଥା ବଡ଼ ହୋଇଗଲା । ସେଥି ନିମନ୍ତେ ଆପଣମାନଙ୍କ ନିକଟରେ ପ୍ରାର୍ଥନା କରୁଅଛୁ—ବର୍ତ୍ତମାନ ଉତ୍କଳସାହିତ୍ୟର ଅବସ୍ଥା ଓ ତହିଁପ୍ରତି ଶିକ୍ଷିତ ସାଧାରଣଙ୍କର ଆସ୍ଥା ଦୃଷ୍ଟିରେ ଆମ୍ଭମାନଙ୍କର ଦୀନ ଦଶା ଆପଣମାନଙ୍କୁ ଜଣାଇ ଆପଣମାନଙ୍କ ଅନୁଗ୍ରହ ଓ କୃପାଦୃଷ୍ଟି ଭିକ୍ଷା କରିବା ଉଦ୍ଦେଶ୍ୟରେ ଦୁଇ ଚାରି ପଦ ବାସ୍ତବ ବିଷୟ ଆପଣମାନଙ୍କ ନିକଟରେ ସରଳଭାବରେ ପ୍ରକାଶ କରିଅଛୁଁ ଓ ଆଶା କରୁଁ ଆପଣମାନେ ସରଳ ଚିତ୍ତରେ ଆମ୍ଭମାନଙ୍କ ପ୍ରାର୍ଥନା ଗ୍ରହଣ କରିବେ ।

ଉତ୍କଳ ଭାଷା ଓ ସାହିତ୍ୟର ଅନୁଶୀଳନ ନିମିତ୍ତ ୧୮୯୩ ସାଲ ଡିସେମ୍ବର ମାସରେ କଟକଠାରେ 'ଆଲୋଚନା ସଭା' ପ୍ରତିଷ୍ଠିତ ହୋଇଥିଲା ଏବଂ ତାହା କେବଳ କଟକର କେତେକ ଜଣ ଶିକ୍ଷାବିଭାଗୀୟ ବ୍ୟକ୍ତି ଏବଂ ଟ୍ରେନିଙ୍ଗ୍ ସ୍କୁଲର ଛାତ୍ରମାନଙ୍କ ମଧ୍ୟରେ ଆବଦ୍ଧ ଥିଲା । କଟକର କେତେକ ସ୍ଥାନୀୟ ବ୍ୟକ୍ତିଙ୍କ ପରାମର୍ଶକ୍ରମେ ପୂର୍ବୋକ୍ତ ଆଲୋଚନା ସଭା ପ୍ରଶସ୍ତତର ଭିତ୍ତିରେ ସ୍ଥାପିତ ହୋଇ ୧୯୦୩ ସାଲ ମେ ମାସ ୭ ତାରିଖରେ 'ଉତ୍କଳ-ସାହିତ୍ୟ-ସମାଜ' ରୂପରେ ସମ୍ପ୍ରସାରିତ ହେଲା । ପ୍ରାଚୀନ ଏବଂ ଆଧୁନିକ ଉତ୍କଳ ସାହିତ୍ୟର ଆଲୋଚନା ଏବଂ ଉତ୍କଳ ଭାଷା ଓ ସାହିତ୍ୟର ଉନ୍ନତିଚେଷ୍ଟା ଏ ସଭାର ଉଦ୍ଦେଶ୍ୟ । ଉତ୍କଳର ସମଗ୍ର ଶିକ୍ଷିତମଣ୍ଡଳୀଙ୍କର ଏ ସଭାର ସଭ୍ୟଶ୍ରେଣୀଭୁକ୍ତ ହେବାର ଅଧିକାର ଅଛି । ଆଜି ପର୍ଯ୍ୟନ୍ତ ଏ ସଭାର ୮ ଜଣ ଅଭିଭାବକ, ୨୧ ଜଣ ବିଶିଷ୍ଟ ସଭ୍ୟ ଓ ୧୯୫ ଜଣ ସାଧାରଣ ସଭ୍ୟ ହୋଇଅଛନ୍ତି ।

ଅଭିଭାବକମାନଙ୍କର ନାମ ।

୧ । ମୟୂରଭଞ୍ଜାଧିପତି ମହାରାଜ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ

୨ । ଖଲ୍ଲିକୋଟାଧିପତି ଶ୍ରୀ ହରିହର ମର୍ଦ୍ଦରାଜ ଦେବ

୩ । ବଡ଼ଖେମୁଣ୍ଡିର ରାଜା ଶ୍ରୀ କୃପାମୟ ଅନଙ୍ଗ-ଭୀମକେଶରୀ ଦେବ

୪ । ଆଠଗଡ଼ର ରାଜା ଶ୍ରୀ ବିଶ୍ୱନାଥ ବର୍ମା

୫ । ରାଜା ଶ୍ରୀ ବୈକୁଣ୍ଠନାଥ ଦେ ବାହାଦୁର

୬ । ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର

୭ । ଶ୍ରୀଯୁକ୍ତ ମଧୁସୂଦନ ଦାସ ସି. ଆଇ. ଇ.

୮ । ଶ୍ରୀଯୁକ୍ତ ବାବୁ ଗୌରୀଶଙ୍କର ରାୟ

ଗତବର୍ଷ ନିମ୍ନଲିଖିତ ବ୍ୟକ୍ତିମାନେ କର୍ମଚାରୀ-ସ୍ୱରୂପ ସମାଜର କାର୍ଯ୍ୟ ନିର୍ବାହ କରିଥିଲେ ।

ଶ୍ରୀଯୁକ୍ତ ମଧୁସୂଦନ ରାଓ—ସଭାପତି
,, ରାମଶଙ୍କର ରାୟ } ସହକାରୀ ସଭାପତି
,, ଫକୀରମୋହନ ସେନାପତି }
,, ବିଶ୍ୱନାଥ କର—ସମ୍ପାଦକ
,, ମୃତ୍ୟୁଞ୍ଜୟ ରଥ } ସହକାରୀ ସମ୍ପାଦକ
,, ଗୋପାଳଚନ୍ଦ୍ର ପ୍ରହରାଜ }
,, ଚନ୍ଦ୍ରଶେଖର ନନ୍ଦ }
,, କୃଷ୍ଣପ୍ରସାଦ ଚୌଧୁରୀ—କୋଷାଧ୍ୟକ୍ଷ

ଉପରୋକ୍ତ କର୍ମଚାରୀମାନଙ୍କ ସହିତ ନିମ୍ନଲିଖିତ ବ୍ୟକ୍ତିମାନେ କାର୍ଯ୍ୟନିର୍ବାହକ ସମିତିର ସଭ୍ୟସ୍ୱରୂପ ସମାଜର କାର୍ଯ୍ୟ ପରିଚାଳନ କରି ଅଛନ୍ତି ।

ଶ୍ରୀଯୁକ୍ତ ଅଭିରାମ ଭଞ୍ଜ ଏମ. ଏ. ବି. ଏଲ.
,, ମଧୁସୂଦନ ଦାଶ ବି. ଏ
,, ନନ୍ଦକିଶୋର ବଳ ବି. ଏ ।

ଶ୍ରୀଯୁକ୍ତ ବ୍ରଜାନନ୍ଦ ଦାସ ବି. ଏ
,, ପୁରୁଷୋତ୍ତମ ତର୍କାଳଙ୍କାର
,, ଗଗନାନନ୍ଦ ଦାସ ବି. ଏ
,, ବ୍ରଜସୁନ୍ଦର ଦାସ ବି. ଏ
,, ଦାମୋଦର ଧର ବି. ଏଲ

ଗତବର୍ଷ ମଧ୍ୟରେ କାର୍ଯ୍ୟନିର୍ବାହକ ସମିତିର ଦଶଟି ମାତ୍ର ଅଧିବେଶନ ହୋଇଅଛି । ଏହି ଦଶଟି ଅଧିବେଶନରେ ବିଶୁଦ୍ଧ ଓଡ଼ିଆ ଶବ୍ଦକୋଷ ସଙ୍କଳନ ଏବଂ ଅପ୍ରକାଶିତ ପ୍ରାଚୀନ ଓଡ଼ିଆ ପୁସ୍ତକ ସଂଗ୍ରହ ନିମିତ୍ତ ଦୁଇ ଗୋଟି ଶାଖା-ସମିତି ଗଠିତ ହୋଇଅଛି ଏବଂ ଅନ୍ୟାନ୍ୟ କେତେକ ପ୍ରୟୋଜନୀୟ ବିଷୟ ମୀମାଂସିତ ହୋଇଅଛି ।

ଗତ ବର୍ଷ ସମାଜର ତିନି ଗୋଟି ଅଧିବେଶନ ମାତ୍ର ହୋଇଥିଲା ।

ପ୍ରଥମ ଅଧିବେଶନରେ ପାରଳାଖେମଣ୍ଡିର ସ୍ୱର୍ଗୀୟ ଦ୍ୱିତୀୟ ରାଜକୁମାର ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ଅକାଳମୃତ୍ୟୁରେ ଶୋକ ପ୍ରକାଶ କରା ଯାଇଥିଲା ଏବଂ ଓଡ଼ିଆ ଭାଷା ଓ ସାହିତ୍ୟର ଇତିହାସ ସଂକଳନ, ଓଡ଼ିଆ ଶବ୍ଦକୋଷ ସଙ୍କଳନ ଓ ଓଡ଼ିଆ ପ୍ରାଚୀନ ଗ୍ରନ୍ଥମାନଙ୍କ ସଂଗ୍ରହର ଭାର କାର୍ଯ୍ୟନିର୍ବାହକ ସମିତି ହସ୍ତରେ ନ୍ୟସ୍ତ ହେଲା । ଏତଦ୍ ବ୍ୟତୀତ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ 'ବିଶ୍ୱ ଭାଷା' ଶୀର୍ଷକ ପ୍ରବନ୍ଧ ପାଠ କରିଥିଲେ । ସମାଜର ୨ୟ ଅଧିବେଶନରେ ମହାମହୋପାଧ୍ୟାୟ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ସିଂହ ସାମନ୍ତଙ୍କ ମୃତ୍ୟୁ ହେତୁ ଶୋକ ପ୍ରକାଶାନନ୍ତର ଶ୍ରୀଯୁକ୍ତ ମଧୁସୂଦନ ରାଓ 'ଭାଷା-ଶାସ୍ତ୍ର' ବିଷୟରେ ଗୋଟିଏ ବକ୍ତୃତା ପ୍ରଦାନ କରିଥିଲେ । ସମାଜର ୩ୟ ଅଧିବେଶନରେ ଶ୍ରୀଯୁକ୍ତ ମୃତ୍ୟୁଞ୍ଜୟ ରଥ 'ଓଡ଼ିଆ ପୋଥି (ଚିତ୍ର-କାବ୍ୟ)' ସମ୍ବନ୍ଧରେ ଗୋଟିଏ ପ୍ରବନ୍ଧ ପାଠ କରିଥିଲେ ଏବଂ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ରାଜଗୁରୁ ବି. ଏ.ଙ୍କ ଦ୍ୱାରା ଲିଖିତ 'ଓଡ଼ିଆ ସର୍ବନାମ' ଶୀର୍ଷକ ପ୍ରବନ୍ଧ ପଠିତ ହୋଇଥିଲା ।

ସାଧାରଣ ସାହିତ୍ୟିକ ପ୍ରବନ୍ଧ ପାଠ ଓ ବକ୍ତୃତାଦି ବ୍ୟତୀତ ସମାଜ ବିଗତ ବର୍ଷ ମଧ୍ୟରେ ନିମ୍ନଲିଖିତ ଦୁଇ ଗୋଟି କାର୍ଯ୍ୟରେ ହସ୍ତକ୍ଷେପ କରିଅଛନ୍ତି ଏବଂ ଅବସ୍ଥାନୁସାରେ ସେ ବିଷୟଦ୍ୱୟର କ୍ରମୋନ୍ନତି ମଧ୍ୟ ଅନୁଭବ କରୁଅଛନ୍ତି ।

୧ମ—ବିଶୁଦ୍ଧ ଓଡ଼ିଆ ଶବ୍ଦକୋଷ ସଂକଳନ ନିମନ୍ତେ ନିମ୍ନଲିଖିତ ସଭ୍ୟମାନଙ୍କୁ ନେଇ ଗୋଟିଏ ଶାଖା-ସମିତି ଗଠିତ ହୋଇଅଛି—

ଶ୍ରୀଯୁକ୍ତ ମଧୁସୂଦନ ଦାଶ ବି. ଏ. (ସମ୍ପାଦକ)
,, ବ୍ରଜାନନ୍ଦ ଦାସ ବି. ଏ.
,, ନନ୍ଦକିଶୋର ବଳ ବି. ଏ.
,, ଗୋପାଳଚନ୍ଦ୍ର ପ୍ରହରାଜ ବି. ଏଲ
,, ମୃତ୍ୟୁଞ୍ଜୟ ରଥ

ଉପରୋକ୍ତ ଶାଖା-ସମିତି ଏପର୍ଯ୍ୟନ୍ତ ସ୍ୱରବର୍ଣ୍ଣ ଶବ୍ଦ ଶେଷ କରି ବ୍ୟଞ୍ଜନ ବର୍ଣ୍ଣ ମଧ୍ୟରୁ 'ଛ' ଅକ୍ଷର ପର୍ଯ୍ୟନ୍ତ ଶେଷ କରିଅଛନ୍ତି । ଉତ୍କଳଖଣ୍ଡର ବିଭିନ୍ନ ଅଞ୍ଚଳରେ ପ୍ରଚଳିତ ବିଶେଷ ଶବ୍ଦମାନ ସଂଗ୍ରହ କରିବା ନିମିତ୍ତ କାର୍ଯ୍ୟନିର୍ବାହକ ସମିତି ନିମ୍ନଲିଖିତ ବ୍ୟକ୍ତିମାନଙ୍କୁ ଉପରୋକ୍ତ ଶାଖା-ସମିତିରେ ଅତିରିକ୍ତ ସଭ୍ୟରୂପେ ମନୋନୀତ କରିଅଛନ୍ତି ଏବଂ ଇହାଙ୍କ ମଧ୍ୟରୁ କେହି କେହି ସମ୍ମତି ଜ୍ଞାପନ କରି ଶବ୍ଦସଂଗ୍ରହରେ ପ୍ରବୃତ୍ତ ହୋଇଅଛନ୍ତି ।

| | |
|---|---|
| ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ରାଜଗୁରୁ ବି. ଏ.<br>,, ସଦାଶିବ ବିଦ୍ୟାଭୂଷଣ | ଗଞ୍ଜାମ |
| ,, ଗଙ୍ଗାଧର ମେହେର<br>,, ବାଲୁକେଶ୍ୱର ମିଶ୍ର ବି. ଏ. | ସମ୍ବଲପୁର |
| ,, ଫକୀରଚରଣ ସାହାଣୀ<br>,, ଲୋକନାଥ ପଟ୍ଟନାୟକ ବି. ଏ.<br>,, ରାମପାଲ ମିଶ୍ର ବି. ଏ.<br>,, ଶ୍ୟାମସୁନ୍ଦର ନନ୍ଦ | ଓଡ଼ିଶା ଗଡ଼ଜାତ |
| ,, ଫକୀରମୋହନ ସେନାପତି<br>,, ଭୋଳାନାଥ ସାମନ୍ତରାୟ | ବାଲେଶ୍ୱର |

ଏତଦ୍ବ୍ୟତୀତ ମହାରାଷ୍ଟ୍ରୀୟାଦି ଭାଷାରୁ ଆଗତ ଓଡ଼ିଆ ଶବ୍ଦମାନ ସଂଗ୍ରହ କରିବା ନିମିତ୍ତ ଶ୍ରୀଯୁକ୍ତ ମଧୁସୂଦନ ରାଓ ମହାଶୟ ଶାଖା-ସମିତିର ଅନ୍ୟତମ

ଅନେକଙ୍କୁ ସଭ୍ୟରୂପେ ମନୋନୀତ କୋଇଅଛନ୍ତି ।

୨ୟ—ଅପ୍ରକାଶିତ ପ୍ରାଚୀନ ଓଡ଼ିଆ ପୁସ୍ତକ ସଂଗ୍ରହ । ଏଥି ନିମିତ୍ତ ଯେଉଁ ଶାଖାସମିତି ଗଠିତ ହୋଇଅଛି ତହିଁରେ ନିମ୍ନଲିଖିତ ବ୍ୟକ୍ତିମାନେ ସଭ୍ୟ ନିଯୁକ୍ତ ହୋଇଅଛନ୍ତି ।—

ଶ୍ରୀଯୁକ୍ତ କୃଷ୍ଣପ୍ରସାଦ ଚୌଧୁରୀ (ସମ୍ପାଦକ)
„ ମଧୁସୂଦନ ଦାଶ ବି. ଏ.
„ ପୁରୁଷୋତ୍ତମ ତର୍କାଲଙ୍କାର
„ ମଧୁସୂଦନ ରାଓ
„ ଅଭିରାମ ଭଞ୍ଜ ଏମ୍. ଏ. ବି. ଏଲ୍.
„ ବ୍ରଜସୁନ୍ଦର ଦାସ ବି. ଏ.
„ ଚନ୍ଦ୍ରଶେଖର ନନ୍ଦ
„ ବିଶ୍ୱନାଥ କର

ଏହି କାର୍ଯ୍ୟସାଧନ ଉଦ୍ଦେଶ୍ୟରେ କାର୍ଯ୍ୟନିର୍ବାହକ ସମିତି ଉତ୍କଳସମ୍ମିଳନୀ ନିକଟରେ ଗତ ବର୍ଷ ନିମନ୍ତେ ଟ ୧୦୦୧ ସାହାଯ୍ୟ ପ୍ରାର୍ଥନା କରିଥିଲେ । ତାହା ଅଳ୍ପ ଦିନ ହେଲା ହସ୍ତଗତ ହୋଇ ଶାଖା-ସମିତି ହସ୍ତରେ ଅର୍ପିତ ହୋଇଅଛି । ଶାଖା-ସମିତି ଇତିମଧ୍ୟରେ ୮ ଖଣ୍ଡି ଓଡ଼ିଆ ପୋଥି ସଂଗ୍ରହ କରିଅଛନ୍ତି ଏବଂ ତାଳପତ୍ର ପୋଥିମାନ ସଂଶୋଧିତ ଆକାରରେ କାଗଜରେ ଲେଖାଇବା ନିମିତ୍ତ ଜଣେ ଉପଯୁକ୍ତ ବ୍ୟକ୍ତିଙ୍କୁ ନିଯୁକ୍ତ କରିଅଛନ୍ତି । ଇତିମଧ୍ୟରେ ରଘୁନାଥବିଳାସ ଓ ଜଗନ୍ନାଥଚରିତାମୃତ ନାମରେ ଦୁଇ ଖଣ୍ଡି ପୁସ୍ତକ ଲିଖିତ ହୋଇଅଛି ଏବଂ ଭକ୍ତିରସମୃତ ନାମକ ଅପର ପୁସ୍ତକ ଖଣ୍ଡିଏ ଆରମ୍ଭ କରାଯାଇଅଛି ।

ଉପରୋକ୍ତ କାର୍ଯ୍ୟ ବ୍ୟତୀତ ଓଡ଼ିଆ ସାହିତ୍ୟର ଇତିହାସ ସଙ୍କଳନ, ନବୀନ ଲେଖକମାନଙ୍କୁ ଉତ୍ସାହ ଦାନ ଇତ୍ୟାଦି କାର୍ଯ୍ୟମାନ ସାଧନ କରିବା ଉଦ୍ଦେଶ୍ୟରେ ସମାଜର ଅଭିଭାବକ ଓ ବଶିଷ୍ଟ ସଭ୍ୟମାନଙ୍କ ନିକଟରେ ଅର୍ଥସାହାଯ୍ୟ ପ୍ରାର୍ଥନା କରାଯାଇଥିଲା । ଏକମାତ୍ର ମୟୂରଭଞ୍ଜାଧିପତି ମହୋଦୟ ଇତିହାସସଙ୍କଳନ ନିମିତ୍ତ ଟ ୧୦୦୧ ସାହାଯ୍ୟ ଅଙ୍ଗୀକାର କରିଅଛନ୍ତି ଏବଂ ଅବଶିଷ୍ଟ ଅର୍ଥ ସାଧାରଣଙ୍କଠାରୁ ସଂଗୃହୀତ ହେଲେ ଉକ୍ତ ଟ ୧୦୦୧ ପ୍ରଦାନ କରିବାକୁ ଆଦେଶ କରିଅଛନ୍ତି । ଇତିପୂର୍ବରୁ ବ୍ରହ୍ମପୁରନିବାସୀ ଶ୍ରୀଯୁକ୍ତ ପରଶୁରାମ ପାତ୍ର ବି. ଏଲ. ମହାଶୟ ଏହି ଉଦ୍ଦେଶ୍ୟରେ ସ୍ୱତଃ ପ୍ରବୃତ୍ତ ହୋଇ ଟ ୨୦୦୧ ପର୍ଯ୍ୟନ୍ତ ସାହାଯ୍ୟ ଦେବାକୁ ପ୍ରତିଶ୍ରୁତ ହୋଇଥିଲେ । ମାତ୍ର କାର୍ଯ୍ୟଟି ବହୁବ୍ୟୟସାପେକ୍ଷ ଥିବାରୁ ଏବଂ ଅଦ୍ୟାପି ଉପଯୁକ୍ତ ଅର୍ଥ ସାହାଯ୍ୟର ଆଶା ପାଇ ନ ଥିବାରୁ ସମାଜ ସେ ବିଷୟରେ ହସ୍ତକ୍ଷେପ କରି ନାହାନ୍ତି ।

ବିଗତବର୍ଷର ଆରମ୍ଭରେ ସମାଜର କୋଷରେ ଟ୪୯୫।୯ ଗଚ୍ଛିତ ଥିଲା ଓ ବିଗତ ବର୍ଷ ଟ ୧୬୦୮ ଆୟ ହୋଇ ଥିଲା । ଏପରି ମୋଟ ଟ୨୦୦।୯ ମଧ୍ୟରୁ ଟ ୯୦।/୯ ବ୍ୟୟ ହୋଇ ବାକି ଟ ୧୧୧୪।/୯ ଗଚ୍ଛିତ ଅଛି । ଏହା ଛଡ଼ା ପୁରାତନ ପୁସ୍ତକ ସଂଗ୍ରହ ପାଇଁ ସମ୍ମିଳନୀରୁ ଟ ୧୦୦୧ ମିଳି ଅଛି । ତାହା ଏଠାରେ କୃତଜ୍ଞତା ସହକାରେ ପ୍ରକାଶ କରୁଅଛୁଁ । ଏଣିକି ଭବିଷ୍ୟତରେ ଉତ୍କଳର ଶିକ୍ଷିତ ସାଧାରଣ ଓ ସଭ୍ୟମାନଙ୍କର ଏ ସମାଜ ପ୍ରତି ବିଶେଷ ଦୃଷ୍ଟି ପଡ଼ିଲେ ସମାଜର ଉଦ୍ଦେଶ୍ୟ ସାଧନ ନିମନ୍ତେ ଯଥେଷ୍ଟ ଅର୍ଥ ମିଳିବ ଏହି ଆଶା ପୋଷଣ କରୁଅଛୁଁ ।

——*——

ଉପରୋକ୍ତ ବାର୍ଷିକ ବିବରଣୀଟି ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନଙ୍କ ପ୍ରସ୍ତାବ ଓ ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା ବି. ଏ.ଙ୍କ ଅନୁମୋଦନରେ ସର୍ବ ସମ୍ମତିକ୍ରମେ ଗୃହୀତ ହେଲା ।

ଶ୍ରୀଯୁକ୍ତ ରାମଚନ୍ଦ୍ର ଦାଶଙ୍କ ପ୍ରସ୍ତାବ ଏବଂ ଶ୍ରୀଯୁକ୍ତ ସଦାଶିବ ବିଦ୍ୟାଭୂଷଣଙ୍କ ଅନୁମୋଦନରେ ଆଗାମୀ ବର୍ଷର କାର୍ଯ୍ୟ ପରିଚାଳନ ନିମିତ୍ତ ନିମ୍ନଲିଖିତ ବ୍ୟକ୍ତିମାନେ ସାହିତ୍ୟ ସମାଜର କର୍ମ୍ମଚାରୀ ଏବଂ କାର୍ଯ୍ୟନିର୍ବାହକ ସମିତିର ସଦସ୍ୟ ପଦରେ ନିର୍ବାଚିତ ହେଲେ ।

### କର୍ମଚାରିଗଣ ।

ଶ୍ରୀଯୁକ୍ତ ମଧୁସୂଦନ ରାଓ—ସଭାପତି
,, ଫକୀରମୋହନ ସେନାପତି }
,, ରାମଶଙ୍କର ରାୟ } ସହକାରୀ ସଭାପତି
,, ଗୋକୁଳାନନ୍ଦ ଚୌଧୁରୀ ବି.ଏଲ }
,, ବିଶ୍ୱନାଥ କର—ସମ୍ପାଦକ
,, ଗୋପାଲଚନ୍ଦ୍ର ପ୍ରହରାଜ ବି.ଏଲ }
,, ମୃତ୍ୟୁଞ୍ଜୟ ରଥ } ସହକାରୀ ସମ୍ପାଦକ
,, ଚନ୍ଦ୍ରଶେଖର କର }
,, କୃଷ୍ଣପ୍ରସାଦ ଚୌଧୁରୀ—କୋଷାଧ୍ୟକ୍ଷ

### କାର୍ଯ୍ୟନିର୍ବାହକ ସମିତିର ସଭ୍ୟଗଣ ।

ଶ୍ରୀଯୁକ୍ତ ମଧୁସୂଦନ ଦାସ ବି. ଏ
,, ଅଭିରାମ ଭଞ୍ଜ ଏମ. ଏ. ବି. ଏଲ
,, ନନ୍ଦକିଶୋର ବଳ ବି. ଏ
,, ପୁରୁଷୋତ୍ତମ ତର୍କାଲଙ୍କାର
,, ବ୍ରଜାନନ୍ଦ ଦାସ ବି. ଏ
,, ନୀଳମଣିଚନ୍ଦ୍ର ଦେ ବି. ଏ
,, ଅକ୍ଷୟକୁମାର ଘୋଷ
,, ବ୍ରଜସୁନ୍ଦର ଦାସ ବି. ଏ
,, ମାୟାଧର ଦାସ ବି. ଏଲ
,, ବଳରାମ ଦାସ
,, ସତ୍ୟବାଦୀ ନାୟକ

ତତ୍ପରେ ଶ୍ରୀଯୁକ୍ତ ବିଶ୍ୱନାଥ କର 'ଜାତୀୟ ଜୀବନରେ ସାହିତ୍ୟର ସ୍ଥାନ' ବିଷୟରେ ଗୋଟିଏ ବକ୍ତୃତା ପ୍ରଦାନ କଲେ । (ବକ୍ତୃତାଟି ସ୍ଥାନାନ୍ତରରେ ପ୍ରବନ୍ଧାକାରରେ ପ୍ରଦତ୍ତ ହେଲା )

ବକ୍ତୃତା ସମାପ୍ତ ହେବା ପରେ ମାନନୀୟ ସଭାପତି ମହୋଦୟ ଏହି ମର୍ମରେ ସ୍ୱୀୟ ମନ୍ତବ୍ୟ ପ୍ରକାଶ କରିଥିଲେ ।

"ଆପଣମାନଙ୍କ ସମ୍ମୁଖରେ ଉତ୍କଳସାହିତ୍ୟ ସମ୍ବନ୍ଧରେ ମତାମତ ପ୍ରକାଶ କରିବା ଗୋଟିଏ ଗୁରୁତର ଭାର । ସେ ଭାର ଗ୍ରହଣ କରିବାକୁ ଗଲେ ଅଧିକ ପରିମାଣରେ ଉତ୍କଳସାହିତ୍ୟର ଚର୍ଚ୍ଚା ଓ ଅଧ୍ୟବସାୟ ଆବଶ୍ୟକ । କିନ୍ତୁ ତାହା ମୋହର ନାହିଁ । ଅତଏବ ଉପସ୍ଥିତ କ୍ଷେତ୍ରରେ ଉତ୍କଳସାହିତ୍ୟ ସମ୍ବନ୍ଧରେ କିଛି କହିବାକୁ ଗଲେ ଅନଧିକାର ଚର୍ଚ୍ଚା ଛଡ଼ା ଆଉ କିଛି ହେବ ନାହିଁ । କିନ୍ତୁ ମୁଁ ଏତିକି କହିପାରେ ଯେ ଯେଉଁମାନେ ଉତ୍କଳସନ୍ତାନ ବୋଲି ଆପଣାକୁ ସମ୍ମାନିତ ମନେ କରନ୍ତି ସେମାନେ ଯେ ଉତ୍କଳସାହିତ୍ୟ ସମ୍ବନ୍ଧରେ ଯଥାନୁଭୂତି ପ୍ରକାଶ ନ କରିବେ ଏହା କଦାପି ନୁହେ ।

ଜାତୀୟଜୀବନ ସହିତ ସାହିତ୍ୟର ଘନିଷ୍ଠତା ବକ୍ତା ଦେଖାଇଅଛନ୍ତି । ଜାତୀୟଜୀବନଦ୍ୱାରା ସାହିତ୍ୟର ବିଶେଷ ଉନ୍ନତି ହୋଇଥାଏ । ପରସ୍ପରର ଅଭିଘାତଦ୍ୱାରା ଉନ୍ନତି ସାଧିତ ହୁଏ, ଏଥିରେ ସନ୍ଦେହ ନାହିଁ । ସେହି ସମ୍ବନ୍ଧରେ ଭିନ୍ନ ଭିନ୍ନ ଜାତି ମଧ୍ୟରେ ତାରତମ୍ୟ ଅଛି । କେଉଁ ଜାତିରେ ଅତିଶୟ ଘନିଷ୍ଠ, କେଉଁଠାରେ ବା ଟିକିଏ ଶିଥିଳ । କିନ୍ତୁ ଉତ୍କଳ ପକ୍ଷରେ ଏହା ସୌଭାଗ୍ୟର ବିଷୟ ଅଟେ ଯେ ଉତ୍କଳସାହିତ୍ୟ ସହିତ ଉତ୍କଳ ଜାତୀୟ ଜୀବନର ଘନିଷ୍ଠ ସମ୍ବନ୍ଧ ବର୍ତ୍ତମାନ ରହିଅଛି । ଉତ୍କଳରେ ଏପରି ସ୍ଥାନ ନାହିଁ ଯହିଁରେ ଲୋକେ କବି ଉପେନ୍ଦ୍ର, ଦୀନକୃଷ୍ଣ, ଜଗନ୍ନାଥ ଦାସ ଓ ସାରଳା ଦାସଙ୍କର ନାମ ଆଗ୍ରହ ସହିତ ଉଚ୍ଚାରଣ ନ କରନ୍ତି । ଏହାର କାରଣସ୍ୱରୂପ ଏହା ନିର୍ଦ୍ଦେଶ କରାଯାଇ ପାରେ ଯେ ଉତ୍କଳରେ ସାହିତ୍ୟର ଉତ୍ପତ୍ତି ଅତି ପ୍ରାଚୀନ କାଳରୁ ସଂଘଟିତ ହୋଇଅଛି । ଜାତୀୟ ଜୀବନ ଓ ସାହିତ୍ୟର ସମ୍ବନ୍ଧ ଉତ୍କଳରେ ଅତି ପ୍ରାଚୀନ ଓ ବର୍ତ୍ତମାନ ସେ ସମ୍ବନ୍ଧ ଘନିଷ୍ଠ ହେବାର କଥା ।

ଏ ଦେଶରେ ଜାତୀୟ ସାହିତ୍ୟର ଉନ୍ନତି ହେବା ବିଷୟରେ ମୁଁ ବ୍ୟାଘାତ ଦେଖୁ ନାହିଁ । ଶିକ୍ଷାର ଉନ୍ନତି ସହିତ ଲୋକମାନଙ୍କର ଉତ୍କଳସାହିତ୍ୟ ପ୍ରତି ଅନୁରାଗ ବୃଦ୍ଧି ହୋଇଅଛି, ଏହା ଅନୁଭବର ବିଷୟ । ଅଧିକନ୍ତୁ ମଧ୍ୟ ଏହା ଅତ୍ୟନ୍ତ ଆନନ୍ଦର ବିଷୟ ଅଟେ ଯେ ସାହିତ୍ୟ-କ୍ଷେତ୍ରରେ କେତେଗୁଡ଼ିଏ ଶିକ୍ଷିତ ଲୋକ ଆପଣା ଜୀବନକୁ ଉତ୍ସର୍ଗ କରିଅଛନ୍ତି ।

ସହକାରୀ ସମ୍ପାଦକଙ୍କ ପଠିତ ବିବରଣରୁ ଜଣାଯାଉଅଛି ଯେ, ସେ ଉତ୍କଳ ସାହିତ୍ୟର ହୀନ ଦଶାକୁ ଅସନ୍ତୋଷପ୍ରଦ ବୋଲି ଚିତ୍ରିତ କରଅଛନ୍ତି । କିନ୍ତୁ ମୁଁ ତାହା ଦେଖୁନାହିଁ । ୨୦ ବର୍ଷ ତଳର ସାହିତ୍ୟର ଅବସ୍ଥା ସହିତ ବର୍ତ୍ତମାନ ଉତ୍କଳ ସାହିତ୍ୟର ଅବସ୍ଥା ତୁଳନା କଲେ ଭବିଷ୍ୟତରେ ସାହିତ୍ୟର ଉନ୍ନତି ଅବଶ୍ୟମ୍ଭାବୀ ଏହା ମୁଁ ଦେଖି ପାରୁଅଛି । ଜାତୀୟ ସାହିତ୍ୟ ଓ ଜୀବନର ଉନ୍ନତି ସମୟସାପେକ୍ଷ । ଅଳ୍ପଦିନ ମଧ୍ୟରେ ଉନ୍ନତିର ଆଶା କରିବା ଉଚିତ ନୁହେ ।"

୫ । ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପ୍ରସ୍ତାବ ଓ ଶ୍ରୀଯୁକ୍ତ କୃଷ୍ଣପ୍ରସାଦ ଚୌଧୁରୀଙ୍କ ଅନୁମୋଦନାନୁସାରେ କଟକ ଟାଉନ ଭିକ୍ଟୋରିଆ ସ୍କୁଲର ଯେଉଁ ସେବକ-ଛାତ୍ରବୃନ୍ଦ ଏହି ସାମ୍ବତ୍ସରିକ ଅଧିବେଶନ ଉପଲକ୍ଷରେ ଗୃହସଜ୍ଜା ଓ କାର୍ଯ୍ୟପରିଚାଳନାଦିରେ ସୁନିପୁଣଭାବରେ ସହାୟତା କରିଥିଲେ ସେମାନଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପିତ ହୋଇଥିଲା । ଉପସ୍ଥିତ ଭଦ୍ରମଣ୍ଡଳୀ କରତାଳିଦ୍ୱାରା ଏଥିରେ ଆନନ୍ଦ ଓ ସନ୍ତୋଷ ପ୍ରକାଶ କରିଥିଲେ ।

୬ । ରାଜା ଶ୍ରୀଯୁକ୍ତ ବୈକୁଣ୍ଠନାଥ ଦେ ବାହାଦୁରଙ୍କ ପ୍ରସ୍ତାବ ଓ ଶ୍ରୀଯୁକ୍ତ ଅଭିରାମ ଭଞ୍ଜ ଏମ. ଏ. ବି. ଏଲଙ୍କ ଅନୁମୋଦନରେ ସଭାପତି ମହୋଦୟଙ୍କୁ ଧନ୍ୟବାଦ ପ୍ରଦତ୍ତ ହେବା ପରେ ସଭାଭଙ୍ଗ ହୋଇଥିଲା ।

ଆମ୍ଭେମାନେ ଆନନ୍ଦର ସହିତ ପ୍ରକାଶ କରୁଅଛୁଁ ଯେ ଏହି ବାର୍ଷିକୋତ୍ସବ ଉପଲକ୍ଷରେ କଲିକତାସ୍ଥ ମେସର୍ସ କୋମ୍ପାନୀଙ୍କ ସୁଯୋଗ୍ୟ ମ୍ୟାନେଜର ଡାକ୍ତର ଶ୍ରୀଯୁକ୍ତ ପଦ୍ମଲୋଚନ ମହାନ୍ତି ସଭାପତି ମୟୂରଭଞ୍ଜାଧିପତିଙ୍କର ସୁନ୍ଦର ହାଫ୍‌ଟୋନ ଚିତ୍ର ପ୍ରାୟ ୬ ଶତାଧିକ ଖଣ୍ଡ ସଭା ମଧ୍ୟରେ ବିତରଣ କରି ସମସ୍ତଙ୍କର ଧନ୍ୟବାଦର ପାତ୍ର ହୋଇଅଛନ୍ତି ।

ଗୋପାଳଚନ୍ଦ୍ର ପ୍ରହରାଜ ।

## ଜାତୀୟ ଜୀବନରେ ସାହିତ୍ୟର ସ୍ଥାନ ।

( ଉତ୍କଳ-ସାହିତ୍ୟ-ସମାଜର ଦ୍ୱିତୀୟବାର୍ଷିକ ଅଧିବେଶନରେ ପ୍ରଦତ୍ତ ବକ୍ତୃତା—
ଅସ୍ମାନଙ୍କ Reporterଙ୍କ ଦ୍ୱାରା ସଂଗୃହୀତ । )

ମାନନୀୟ ସଭାପତି ମହାଶୟ, ସଜ୍ଜନବର୍ଗ ଓ
ଭ୍ରାତୃବୃନ୍ଦ !

ମୁଁ ଆଜି ଅତି ସଙ୍କୁଚିତ ଭାବରେ ଏହି ସଭାରେ ଉପସ୍ଥିତ ହୋଇଅଛି । ମୋ ଉପରେ ଆଜି ଯେଉଁ ଗୁରୁ ଭାର ନ୍ୟସ୍ତ ହୋଇଅଛି ସେଥିପାଇଁ ଉପଯୁକ୍ତରୂପେ ପ୍ରସ୍ତୁତ ହେବା ନିମିତ୍ତ ମୁଁ ଆଦୌ ସମୟ ପାଇ ନାହିଁ । କିନ୍ତୁ କିଛିକାଳ ହେଲା ସାହିତ୍ୟ-କ୍ଷେତ୍ରରେ ବିଚରଣ କରୁଥିବାରୁ ମୋର ବନ୍ଧୁମାନେ ମତେ ବଳପୂର୍ବକ ଆଣି ଆପଣମାନଙ୍କ ନିକଟରେ ଉପସ୍ଥିତ କରିଅଛନ୍ତି । "ଜାତୀୟ ଜୀବନରେ ସାହିତ୍ୟର ସ୍ଥାନ" ଏପରି ଗୁରୁତର ବିଷୟ ଆଲୋଚନା କରିବାପାଇଁ ଯେଉଁ ଶକ୍ତି ଚିନ୍ତା ଓ ଅଧ୍ୟୟନ ଆବଶ୍ୟକ, ତାହା ମୋର ନାହିଁ । ବିଶେଷତଃ ବିଷୟ ନିର୍ବାଚନ କଲାବେଳଠାରୁ ଆଜି ଏହି ସଭାଗୃହରେ ପ୍ରବେଶ କରିବା ପର୍ଯ୍ୟନ୍ତ ନାନା ଝଞ୍ଜାଳ ମଧ୍ୟରେ ଆବଦ୍ଧ ରହିଥିବାରୁ ବିଷୟଟି ସୁପ୍ରଣାଳୀବଦ୍ଧ କରିବାପାଇଁ ଏକାଦିକ୍ରମେ ଦଶ ମିନିଟ ସୁଦ୍ଧା ଅବସର ପାଇ ନାହିଁ । ଆଜି ଏ ସଭାରେ ଏପରି ବିଦ୍ୱଜ୍ଜନମଣ୍ଡଳୀଙ୍କ ସମ୍ମୁଖରେ କି କଥା ଶୁଣାଇବାକୁ ଠିଆ ହୋଇଅଛି ମୁଁ ନିଜେ କିଛି ବୁଝି ପାରୁ ନାହିଁ । କେବଳ ବିଷୟ ନିର୍ବାଚନ କଲାବେଳେ ଯେଉଁ କେତୋଟି ଚିନ୍ତା ପ୍ରାଣରେ ଉଦିତ ହୋଇଥିଲା, ତାହାହିଁ ଜାଗ୍ରତ ରହିଅଛି । ସଂଲଗ୍ନ ହେଉ ବା ଅସଂଲଗ୍ନ ହେଉ, ତାହାହିଁ ବର୍ତ୍ତମାନ ଆପଣମାନଙ୍କ ନିକଟରେ ବ୍ୟକ୍ତ କରିବି । ଆପଣମାନେ ଯେବେ

ନଗଣ୍ୟ ହୋଇ ଗୃହକୁ ଫେରିଯାଆନ୍ତୁ, ସେଥିପାଇଁ ଦାୟୀ ମୁଁ ନୁହେଁ—ମୋର ବନ୍ଧୁମାନେ ।

'ଜାତୀୟ ଜୀବନ' କଣ, ଏହା କହିବା ପୂର୍ବରୁ 'ଜାତି' କଥାଟି ଉତ୍ତମରୂପେ ବୁଝିବା ଆବଶ୍ୟକ । ବର୍ତ୍ତମାନ ଏହି କଥାଟି ଘେନି ଏ ଦେଶରେ ବିଶେଷ ଆନ୍ଦୋଳନ ଉପସ୍ଥିତ । ପୂର୍ବେ ଆମ୍ଭମାନଙ୍କ ଦେଶରେ ପ୍ରାୟ ସକଳ ବିଭାଗରେ ଅଧିକାଂଶ କାର୍ଯ୍ୟ ବ୍ୟକ୍ତିଗତ ଭାବରେ ଅନୁଷ୍ଠିତ ହେଉଥିଲା । ଶକ୍ତିଶାଳୀ ବ୍ୟକ୍ତିମାନେ ନିଜ ନିଜ ରୁଚି ଓ ଇଚ୍ଛା ଅନୁସାରେ ଶକ୍ତିସାମର୍ଥ୍ୟ ନିୟୋଗ କରି ବଡ଼ ବଡ଼ କାର୍ଯ୍ୟମାନ ସାଧନ କରି ଯାଇଥିଲେ । ଏହି ବ୍ୟକ୍ତିଗତ ଜୀବନର କାର୍ଯ୍ୟ ଅବଶ୍ୟ ଜାତୀୟ ଜୀବନରେ ସ୍ୱୀୟ ପ୍ରଭାବ ବିସ୍ତାର କରୁଥିଲା, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏକଭାବରେ ଏକ ଉଦ୍ଦେଶ୍ୟରେ ସମବେତ ଭାବରେ କାର୍ଯ୍ୟ କରିବା ଆମ୍ଭମାନଙ୍କ ଦେଶରେ ନୂତନ । ପାଶ୍ଚାତ୍ୟ ସଭ୍ୟତାର ପ୍ରେରଣାରେ ଜାତୀୟଜୀବନ ବିଷୟରେ ଚିନ୍ତା କରିବାକୁ ଆମ୍ଭମାନଙ୍କର ପ୍ରବୃତ୍ତି ଜନ୍ମିଅଛି । ପୃଥିବୀରେ ସମସ୍ତ ମାନବ ଜାତି ମୂଳତଃ ଏକ । ଏକପ୍ରକାର ପ୍ରବୃତ୍ତି, ଭାବ ଓ ଶକ୍ତି ଘେନି ସମସ୍ତେ ଜନ୍ମିଅଛନ୍ତି । ଏଗୁଡ଼ିକର ପରିମାଣଭେଦ ଅଛି, ମାତ୍ର ପ୍ରକାରଭେଦ ନାହିଁ । ନାନା କାରଣରୁ ପୃଥିବୀରେ ଅନେକ ଜାତିର ସୃଷ୍ଟି ହୋଇଅଛି । ଜାତିବିଭାଗ ଓ ଜାତିଗଠନ ସମ୍ବନ୍ଧରେ ତିନୋଟି ପ୍ରଧାନ କାରଣ ଲକ୍ଷିତ ହୁଏ :—

୧ମ—ଧର୍ମଗତ ସମ୍ବନ୍ଧ— ଏକଧର୍ମାବଲମ୍ବିମାନେ ଏକ ଜାତିରୂପରେ ପରିଗଣିତ ହୁଅନ୍ତି । ୨ୟ—ଶାସନଗତ ସମ୍ବନ୍ଧ—ଏକ ଶାସନାଧୀନସ୍ଥ ଲୋକମାନେ ଏକ ଜାତୀୟ ବୋଲି ବିବେଚିତ ହୁଅନ୍ତି । ୩ୟ—ଭାଷାଗତ ସମ୍ବନ୍ଧ—ଏକ ଭାଷା-ବ୍ୟବହାରୀ ଲୋକମାନେ ଏକ ଜାତୀୟ ବୋଲି ପରିଚିତ ହୁଅନ୍ତି । ଏହି ୩ ଗୋଟି ସମ୍ବନ୍ଧଦ୍ୱାରା ଜାତି ଗଠିତ ହେବାର ଦେଖାଯାଏ । କେଉଁ ସ୍ଥଳରେ ଏଥିମଧ୍ୟରୁ ଗୋଟିଏ, କେଉଁଠାରେ ଦୁଇଗୋଟି, କେଉଁଠାରେ ବା ତିନିଗୋଟି ସମ୍ବନ୍ଧ ଦ୍ୱାରା ଜାତି ଗଠିତ ହୋଇଥାଏ, କିନ୍ତୁ ଏହି ତିନିଗୋଟି ସମ୍ବନ୍ଧ ଏକତ୍ର ବିଦ୍ୟମାନ ଥିଲେ ଜାତୀୟ ଜୀବନ ଦୃଢ଼ତମ ଭିତ୍ତି ଉପରେ ପ୍ରତିଷ୍ଠିତ ହୁଏ । ଭାଷାଗତ ଜାତି ଆଜି ଆମ୍ଭମାନଙ୍କର ଏଠାରେ ଆଲୋଚ୍ୟ ବିଷୟ । ଅବହମାନ କାଳରୁ ଆଜି-ପର୍ଯ୍ୟନ୍ତ ଏହି ଭାରତ ମହାଦେଶରେ କେତେ ଅଗଣ୍ୟ ଜାତି ଓ ସମାଜ ସୃଷ୍ଟି ହୋଇଅଛି । ଭିନ୍ନ ଭିନ୍ନ ସମାଜ ବା ଜାତି ମଧ୍ୟରେ କେତେ ବିବାଦ ବିସମ୍ବାଦ ଲାଗିଅଛି । ପ୍ରାଦେଶିକ ବିଭିନ୍ନତା ପ୍ରତ୍ୟେକ ଜାତିକୁ ସ୍ୱତନ୍ତ୍ର କରି ଆସିଅଛି । ଏମନ୍ତ କି ଦୁଇଖଣ୍ଡି କ୍ଷୁଦ୍ର ଗ୍ରାମର ଅଧିବାସୀମାନେ ପରସ୍ପରକୁ ସ୍ୱତନ୍ତ୍ର ମଣି ନାନା କଳହବିବାଦରେ ସୁଦୀର୍ଘକାଳ କଟାଇଅଛନ୍ତି । ଏହି ଭାବରେ ଭାରତର ବହୁ ଶତାବ୍ଦୀ ଅତୀତ ହୋଇଅଛି । ଈଶ୍ୱରଙ୍କ କୃପାରୁ ଆମ୍ଭେମାନେ ସମସ୍ତେ ଏକଶାସନାଧୀନ ହୋଇ ଆଜି "ଭାରତୀୟ ଜାତି"ର ଅର୍ଥ ହୃଦୟଙ୍ଗମ କରିବାକୁ ଆରମ୍ଭ କରିଅଛୁଁ । "ଆମ୍ଭେମାନେ ଏକ ଭାରତୀୟ ଜାତି" ଏହିମତ ଗୋଟିଏ ମହତ୍ ଧ୍ୱନି ବର୍ତ୍ତମାନ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ଅନୁଭୂତ ହେଉଅଛି । ଭାରତର ଏକପ୍ରାନ୍ତରୁ ଅପରପ୍ରାନ୍ତ ପର୍ଯ୍ୟନ୍ତ ବୁଲି ଆସ ଦେଖିବ, ନାନା ବିଭିନ୍ନତାସତ୍ତ୍ୱେ ଗୋଟିଏ ଜାତିରୂପରେ ପରିଣତ ହେବାର ଆକାଂକ୍ଷା ସର୍ବତ୍ର ସୁସ୍ପଷ୍ଟରୂପେ କାର୍ଯ୍ୟ କରୁଅଛି; କ୍ଷୁଦ୍ର ଭାବ ସଙ୍କୀର୍ଣ୍ଣ ପ୍ରାଦେଶିକତା କ୍ରମେ କ୍ରମେ ବିଲୁପ୍ତ ହୋଇ ଯାଉଅଛି ଓ ତାହାର ବିନାଶ ସମୟ ନିକଟବର୍ତ୍ତୀ, ଏହା ଆପଣମାନେ ବୁଝି ପାରୁଥିବେ । ଏକ ଭାରତୀୟ ଜାତି ପ୍ରତିଷ୍ଠିତ ହେବାର ଦିନ କ୍ରମେ ନିକଟତର ହୋଇ ଆସୁଅଛି । ଆଜି ଆମ୍ଭେମାନେ ମାତୃଭାଷାର ଉନ୍ନତିକାମନାରେ ଏଠାରେ ସମବେତ ହୋଇଅଛୁଁ । ଏହା କେତେ-ଦୂର ସଙ୍ଗତ ତାହା ଏଠାରେ ବିବେଚ୍ୟ । କେତେକ ଚିନ୍ତାଶୀଳ ବ୍ୟକ୍ତି କହନ୍ତି, "ବର୍ତ୍ତମାନ

ଏହି ଜାତୀୟ ଏକୀକରଣର ପଥରେ ଭାଷାଗତ ବିଭିନ୍ନତା ବଢ଼ାଇବାର ଆବଶ୍ୟକ ନାହିଁ"। ଆମ୍ଭମାନଙ୍କର ଜଣେ ବକ୍ତା ଶ୍ରଦ୍ଧେୟ ଶ୍ରୀଯୁକ୍ତ ଫକୀର ମୋହନ ସେନାପତି ମହାଶୟ ଆଜି କହିଅଛନ୍ତି ଯେ "ମାତୃଭାଷା ଆମ୍ଭମାନଙ୍କ ରକ୍ତ ମାଂସ ସଙ୍ଗେ ମିଶି ଯାଇଅଛି, ତାହା ଆମ୍ଭମାନଙ୍କଠାରୁ ପୃଥକ୍ କରିବାର ଅସମ୍ଭବ।" କଥାପ୍ରସଙ୍ଗରେ ମୋର ଜଣେ ବନ୍ଧୁ ମତେ କହିଥିଲେ:—"ଆପଣମାନେ ଭାଷାଗତ ବିଭିନ୍ନତା କାହିଁକି ବଢ଼ାଉଅଛନ୍ତି ?" ଏହି ପ୍ରଶ୍ନ ଉତ୍ଥାପିତ ହେବାରୁ ମତେ ଏ ସମ୍ବନ୍ଧରେ କେତେକ ବିଷୟ ଭାବିବା ନିମନ୍ତେ ଅବସର ମିଳିଲା। ସ୍ୱଭାବତଃ ମନରେ ପ୍ରଶ୍ନ ଉଠିଲା, ମାତୃଭାଷା ପରିତ୍ୟାଗ କରିବା କି ଆମ୍ଭମାନଙ୍କ ପକ୍ଷରେ ସମ୍ଭବ ? ହୃଦୟ ମନ ଅବସନ୍ନ ହୋଇ ଆସିଲା। ମନେ ହେଲା, ପିଣ୍ଡରୁ ପ୍ରାଣ କାଢ଼ି ନେବା ଯାହା, ଜାତିରୁ ମାତୃଭାଷାକୁ ବହିଷ୍କୃତ କରିବା ତାହା। ଯାହା ପ୍ରାଣ ସଙ୍ଗରେ ଏକୀଭୂତ, ତାହାକୁ ଅନ୍ତର କରିବା କି କଦାପି ସମ୍ଭବ ହୋଇ ପାରେ ? କୌଣସି ସଜୀବ ଜାତି ପକ୍ଷରେ ଏହା ସମ୍ଭବପର ନୁହେ। ସେ ଯାହା ହେଉ, ଭାଷାଗତ ବିଭିନ୍ନତା ସତ୍ତ୍ୱେ ଜାତୀୟ ଆଦର୍ଶ ଯେ ଖର୍ବୀକୃତ ହେବ ଏହା ମୁଁ ବିଶ୍ୱାସ କରୁ ନାହିଁ। ଯେବେ ଆମ୍ଭେମାନେ ଚରମ ଲକ୍ଷ୍ୟକୁ ହୃଦୟରେ ଜାଗ୍ରତ ରଖି ତହିଁ ଉପରେ ଲକ୍ଷ୍ୟ ଦୃଷ୍ଟି ରଖି କାର୍ଯ୍ୟରେ ପ୍ରବୃତ୍ତ ହେଉଁ ତାହା ହେଲେ ଲକ୍ଷ୍ୟ ସାଧନରେ କିଛି ବାଧା ଘଟିବ ନାହିଁ।

'ଜାତୀୟଜୀବନ' ଶବ୍ଦଟି କହିଲେ ତାହାଦ୍ୱାରା ସ୍ଥୂଳରେ ସମବେତଭାବରେ ସମଗ୍ର ଜାତିର ବୈଷୟିକ, ମାନସିକ ଓ ଆଧ୍ୟାତ୍ମିକ ଏହି ତ୍ରିବିଧ ଉନ୍ନତି ଅଭିମୁଖରେ ଗତି ବୁଝାଯାଏ। କେହି କେହି କହନ୍ତି, ଆର୍ଥିକ ଉନ୍ନତି ଜାତୀୟଜୀବନର ଲକ୍ଷ୍ୟ, ସେହିପରି କାହାର ମତରେ ଶିକ୍ଷୋନ୍ନତି ଜାତୀୟଜୀବନର ପରମ ସାଧନ, କାହାର ମତରେ ଅବା ଆଧ୍ୟାତ୍ମିକ ଜୀବନହିଁ ଏକମାତ୍ର ଲକ୍ଷ୍ୟ। ମାତ୍ର ଯଥାର୍ଥରେ ଏଥିମଧ୍ୟରୁ କୌଣସିଟି ପରିତ୍ୟାଜ୍ୟ ବା ହେୟ ନୁହେ। ଧନଦ୍ୱାରା ଯେଉଁ ସୁଖ ସ୍ୱଚ୍ଛନ୍ଦତା ଲାଭ ହୁଏ ତାହାକୁ ସୁରକ୍ଷିତ କରିବାକୁ, ବୃଦ୍ଧି କରିବାକୁ ଜ୍ଞାନର ଏକାନ୍ତ ପ୍ରୟୋଜନ ଏବଂ ଏ ଉଭୟଙ୍କୁ ସାର୍ଥକ ଓ ସଫଳ କରିବାକୁ ଆଧ୍ୟାତ୍ମିକ ଭାବ ମାନବ ଜୀବନ ପକ୍ଷରେ ଏକାନ୍ତ ପ୍ରୟୋଜନୀୟ। ଗୋଟିଏ ଗୋଟିଏ ଜାତିର ଜୀବନରେ ଏହି ତ୍ରିବିଧ ଭାବରୁ ଗୋଟିଏ ଗୋଟିଏ ଭାବ ପରିସ୍ଫୁଟ ହୁଏ ସତ୍ୟ, କିନ୍ତୁ ଅନ୍ୟ ଭାବଗୁଡ଼ିକ ଅନ୍ତର୍ନିହିତ ହୋଇ ରହିଥାଏ। ପରନ୍ତୁ ଏହି ତ୍ରିବିଧ ଭାବର ସମୁଚିତ ଉନ୍ନତି ଭିନ୍ନ ଜାତୀୟ ଜୀବନ ସର୍ବାଙ୍ଗସୁନ୍ଦର ହୋଇ ପାରେ ନାହିଁ। ଏ ସମ୍ବନ୍ଧରେ ଆଉ ଅଧିକ କିଛି ନ କହି ବର୍ତ୍ତମାନ ଏହି ଜାତୀୟ ଜୀବନ ଗଠନ ପକ୍ଷରେ ସାହିତ୍ୟ କି କାର୍ଯ୍ୟ ସାଧନ କରି ପାରେ, ତାହାହିଁ ସଂକ୍ଷେପରେ ବ୍ୟକ୍ତ କରିବି।

ପ୍ରଥମ କଥା—ସାହିତ୍ୟ ଜାତୀୟ ଜୀବନର ପ୍ରଧାନ ବନ୍ଧନ-ରଜ୍ଜୁ। ଜାତୀୟ ଜୀବନର ସୂତ୍ରପାତ ଅନେକ ଅର୍ଥରୁ ହୋଇଥାଏ। କିନ୍ତୁ ମାତୃଭାଷା ଓ ମାତୃଭାଷାର ସାହିତ୍ୟ ଜାତୀୟ ଜୀବନର ପ୍ରଧାନ ବନ୍ଧନ। କେଉଁ ଆକର୍ଷଣଦ୍ୱାରା ଆଜି ଆମ୍ଭେମାନେ ଏଠାରେ ଆସି ଉପସ୍ଥିତ ହୋଇଅଛୁଁ ? ନାନା ପ୍ରତିକୂଳ ଅବସ୍ଥା ମଧ୍ୟରେ ପଡ଼ି ମଧ୍ୟ ଆଜି ଉତ୍କଳୀୟମାନେ କାହା ବଳରେ ଏକ ଜାତି ବୋଲି ପରିଚିତ ହେଉଅଛନ୍ତି ? କେଉଁ ଅଲକ୍ଷ୍ୟ ସୂତ୍ର ଆମ୍ଭମାନଙ୍କୁ ଏତେ କାଳ ବାନ୍ଧି ରଖିଅଛି ? ଉତ୍କଳର ପ୍ରାଚୀନ ଗୌରବ, ବିଭବ ସବୁ ଲୋପ ପାଇଅଛି, ଉତ୍କଳ ଆଜି ଦୀନହୀନ, ଯଥାର୍ଥ କହିବାକୁ ଗଲେ ଗୋଟାଏ ଜାତି ବୋଲି ଗୌରବ କରିବାର ଆମ୍ଭମାନଙ୍କର ଆଜି କଣ ଅଛି ? କିନ୍ତୁ ଏହି ଅବନତ ଅବସ୍ଥାରେ ମଧ୍ୟ ଆଜି ଯେ ଆମ୍ଭେମାନେ ଏଠାରେ ଏକତ୍ର ହୋଇଅଛୁଁ, ତାହା କେବଳ ସାହିତ୍ୟର ଆକର୍ଷଣ ଯୋଗୁଁ। ସାହିତ୍ୟ କେବଳ ବର୍ତ୍ତମାନର ବନ୍ଧନ-ରଜ୍ଜୁ

ନହେ । ପ୍ରାଚୀନ ପୁରୁଷମାନଙ୍କ ସଙ୍ଗେ ଅମ୍ଭମାନଙ୍କୁ ଯେଉଁ ବନ୍ଧନ ବାନ୍ଧି ରଖିଅଛି, ତାହା କେବଳ ସାହିତ୍ୟ-ବନ୍ଧନ । ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ଜଗନ୍ନାଥ, ବଳରାମ ଇତ୍ୟାଦି ପୂର୍ବପୁରୁଷମାନେ ସାହିତ୍ୟ-ବନ୍ଧନ ଯୋଗୁଁ ଆଜି ଅମ୍ଭମାନଙ୍କ ସଙ୍ଗେ ବନ୍ଧା ହୋଇଅଛନ୍ତି । ଭୁବନେଶ୍ୱର, କୋଣାର୍କ ଇତ୍ୟାଦି ସ୍ଥଳର କୀର୍ତ୍ତିମାନଙ୍କରୁ ଅନୁମିତ ହୁଏ ଯେ ଉତ୍କଳ ପୂର୍ବେ ଉନ୍ନତ ଥିଲା । କିନ୍ତୁ କେହି କହିପାରେ, ସେ ସବୁ ଅମ୍ଭମାନଙ୍କ ପୂର୍ବ ପୁରୁଷମାନଙ୍କର କାର୍ଯ୍ୟ ନୁହେ ! ତାହା ଯେ ଅନ୍ୟ କୌଣସି ବିଦେଶୀୟ ଜାତି ଆସି ଏଠାରେ ନିର୍ମାଣ କରି ନାହାନ୍ତି, ତାହାର କି ପ୍ରମାଣ ଅଛି ? ମୁଁ ଉତ୍ତର କରୁଅଛି, ଅମ୍ଭମାନଙ୍କର ସାହିତ୍ୟ ତାହାର ଜ୍ୱଳନ୍ତ ପ୍ରମାଣସ୍ୱରୂପ ବିଦ୍ୟମାନ । ଯଦି ଭବିଷ୍ୟତ୍ ବଂଶଧରମାନଙ୍କ ସଙ୍ଗେ ଅମ୍ଭମାନଙ୍କର ସମ୍ପର୍କ ରକ୍ଷା କରିବାର ଇଚ୍ଛା ଥାଏ, ତାହା ଏହା ଉନ୍ନତ ସାହିତ୍ୟ ରକ୍ଷା କରିବାକୁ ସମର୍ଥ ହେବ । ଅତଏବ ଜାତୀୟ ଜୀବନରେ ସାହିତ୍ୟର ସ୍ଥାନ ଅତି ଉଚ୍ଚ ଅତି ପବିତ୍ର—ସାହିତ୍ୟ ଜାତୀୟ ଜୀବନର ପ୍ରଧାନ ବନ୍ଧନ-ରଜ୍ଜୁ ।

ଦ୍ୱିତୀୟ କଥା—ସାହିତ୍ୟ ଜାତୀୟ ଜୀବନର ଆଶା ଓ ଆକାଂକ୍ଷାର ବହିଃପ୍ରକାଶ । କେଉଁଠାରେ—କେଉଁ କବିର ହୃଦୟରେ କେଉଁ ଭାବ, କେଉଁ ଆଶା, କେଉଁ ଆକାଂକ୍ଷା ଉଦିତ ହେଲା, ତାହା କିଏ ଜାତି ମଧ୍ୟରେ ଗୃହଅଡ଼େ ବ୍ୟାପ୍ତ କରେ ? ଜାତୀୟ ଜୀବନରେ ବିଶେଷ ବିଶେଷ ସ୍ଥଳରେ ନବ ନବ ଆଶା ଓ ଆକାଂକ୍ଷା ଜାଗ୍ରତ ହେଲାବେଳେ ସାହିତ୍ୟ ନାନା ମୂର୍ତ୍ତି ପରିଗ୍ରହ କରି ଜନସାଧାରଣଙ୍କ ନିକଟରେ ଉପସ୍ଥିତ ହୁଏ । ଏହି ସାହିତ୍ୟ କେବେବେଳେ ବିଜୟନିର୍ଘୋଷରେ ଜାତୀୟ ଆକାଂକ୍ଷାକୁ ସମସ୍ତଙ୍କ ସମ୍ମୁଖରେ ଉପସ୍ଥାପିତ କରେ ଏବଂ ଲକ୍ଷ ଲକ୍ଷ ପ୍ରାଣର ମୋହ ଓ ଜଡ଼ତା ମୁହୂର୍ତ୍ତକେ ବିନାଶ କରି ଦିଏ । ପୁଣି କେତେବେଳେ ଏହି ସାହିତ୍ୟ ଭୀଷଣ ଆଗ୍ନେୟଗିରି ତୁଲ୍ୟ ଚତୁର୍ଦ୍ଦିଗରେ ଅଗ୍ନି ସ୍ଫୁଲିଙ୍ଗ ସଞ୍ଚାଳନ କରି ସମ୍ପ୍ରଦାୟ ଅତ୍ୟାଚାର ଅନାଚାରକୁ ଭସ୍ମୀଭୂତ କରି ପକାଏ । କେତେବେଳେ ବା ଏହି ସାହିତ୍ୟ କଲାଦେବୀରୂପରେ ସ୍ୱର୍ଗରୁ ଅବତୀର୍ଣ୍ଣ ହୋଇ ସୁଧାଧାର ବର୍ଷଣ କରି ଅଗଣ୍ୟ ସନ୍ତପ୍ତ ପ୍ରାଣକୁ ଶାନ୍ତ ଓ ସୁଶୀତଳ କରେ । ସମସ୍ତ ଉନ୍ନତ ଜାତିମାନଙ୍କର ଓ ଉନ୍ନତ ଯୁଗର ସାହିତ୍ୟ ଆଲୋଚନା କଲେ ସାହିତ୍ୟର ଏବମ୍ବିଧ ବିବିଧ ମୂର୍ତ୍ତି ଦେଖି ହୃଦୟ ମନ ବିମୋହିତ ହୋଇଯାଏ । ଅତଏବ ଜାତୀୟ ସାହିତ୍ୟ ଜାତୀୟ ଜୀବନର ଆକାଂକ୍ଷାର ବହିରାକୃତି, ଆଶାର ବହିଃପ୍ରକାଶ । ଅମ୍ଭମାନଙ୍କ ପ୍ରାଚୀନ ସାହିତ୍ୟ-ଭଣ୍ଡାର ଆମ୍ଭେମାନେ ଉତ୍ତମରୂପେ ଅନୁସନ୍ଧାନ କରି ଦେଖି ନାହୁଁ । ଗୋଟିଏ ଉନ୍ନତ ଜାତିର ସାହିତ୍ୟ ମଧ୍ୟରେ ନାନା ଭାବର ବିକାଶ ସହଜରେ ଅନୁମାନ କରାଯାଇ ପାରେ । ମାତ୍ର କାବ୍ୟକଳା ଛଡ଼ା ଆଉ ଅଧିକ କିଛି ଅମ୍ଭମାନଙ୍କ ଦୃଷ୍ଟିପଥରେ ପଡ଼ି ନାହିଁ—ତାହା ପୁଣି ପ୍ରଧାନତଃ ଆଦିରସାତ୍ମକ । ଅବଶ୍ୟ ପୁରାଣାଦିର ଅନୁବାଦ ସ୍ୱତନ୍ତ୍ର କଥା । ମାତ୍ର ପ୍ରାଚୀନ ଉତ୍କଳରେ ଶୌର୍ଯ୍ୟ, ବୀର୍ଯ୍ୟ, ଶିଳ୍ପ, ବିଜ୍ଞାନ ପ୍ରଭୃତିର ବିଶେଷ ବିକାଶ ହୋଇଥିଲା, ଏହା ସର୍ବବାଦିସମ୍ମତ । ସୁତରାଂ ଉପଯୁକ୍ତ ଅନୁସନ୍ଧାନ ଫଳରେ କାଳକ୍ରମେ ଉକ୍ତ ବିଷୟମାନଙ୍କରେ ପ୍ରାଚୀନ ରଚନାମାନ ପ୍ରକାଶିତ ହେବାର ଆଶା କରାଯାଇପାରେ ।

ତୃତୀୟ କଥା—ସାହିତ୍ୟ ଜାତୀୟ ଜୀବନର ନିର୍ମାତା । ବିଶେଷ ବିଶେଷ ଶକ୍ତିଶାଳୀ ଓ ପ୍ରତିଭାବନ୍ତ ପୁରୁଷମାନଙ୍କ ହୃଦୟରେ ଯେଉଁ ଉନ୍ନତ ନବ ଭାବମାନ ଆସି ଉପସ୍ଥିତ ହୁଏ, ତାହା ଜାତୀୟ ସାହିତ୍ୟଦ୍ୱାରା ବିକୀର୍ଣ୍ଣ ହୋଇ ଜାତୀୟ ଜୀବନରେ ପ୍ରବେଶ ଲାଭ କରେ । ଆପଣମାନେ ଦେଖନ୍ତୁ, ଗୋଟିଏ ଗୋଟିଏ ଜାତି ମଧ୍ୟରେ ମୁଷ୍ଟିମେୟ ଲୋକ ସାହିତ୍ୟକୁ ନିଜର ଇଷ୍ଟଦେବତା ମଣି

ଦୌର୍ବଲ୍ୟ ସିଦ୍ଧ, ଅସୁବିଧା ଓ ଅଭାବକୁ ଭ୍ରୂକ୍ଷେପ ନ କରି, ଧ୍ୟାନମଗ୍ନ ବେଶରେ ଆପଣାର କ୍ଷୁଦ୍ର କୁଟୀର ମଧ୍ୟରେ କାଳ ଯାପନ କରି ଦିବାନିଶି ସେହି ଅଜ୍ଞାତ ଦେବତାଙ୍କର ଅର୍ଚ୍ଚନା କରିଥାନ୍ତି; ସେହି ଧ୍ୟାନ କୁଟୀରରୁ ଯାହା ବାହାରି ଅଛି ତାହା ସମଗ୍ର ଜାତି ମଧ୍ୟରେ ମହାପ୍ରଭାବ ବିସ୍ତାର କରି ତାହାକୁ ଅଗ୍ରସର କରି ଦେଇଅଛି, ଜାତି ମଧ୍ୟରେ ନବ ପ୍ରାଣ, ନବ ଶକ୍ତି ସଞ୍ଚାର କରି ଦେଇଅଛି, ତାହାର ସମ୍ମୁଖରେ ନବ ନବ ଉନ୍ନତିର ଦ୍ୱାର ଉନ୍ମୁକ୍ତ କରି ଦେଇଅଛି । ଜଣେ ଜଣେ ନିଷ୍ଠାବାନ୍ ସାହିତ୍ୟସେବକଙ୍କ ଲେଖନୀରୁ ଯାହା ବାହାରି ଅଛି, ତାହା କୋଟି ଜୀବନର ପଥପ୍ରଦର୍ଶକ ସ୍ୱରୂପ କାର୍ଯ୍ୟ କରିଅଛି । ଫଳତଃ ଜୀବନ୍ତ ସାହିତ୍ୟ ଜାତୀୟ ଚେତନାର ଉନ୍ମେଷ ସାଧନ କରି ଜାତୀୟ ମାନସିକ ବାୟୁମଣ୍ଡଳ ରଚନା କରେ ଏବଂ ତାହାର ମଧ୍ୟରେ ଜାତୀୟ ଜୀବନ ଗଠିତ ଓ ପରିବର୍ତ୍ତିତ ହୁଏ । ଏଥିରୁ ବଳି ସାହିତ୍ୟର ଅପରିସୀମ କ୍ଷମତାର ପ୍ରମାଣ ଆଉ କଣ ହୋଇ ପାରେ ? ଯଥାର୍ଥରେ ସାହିତ୍ୟ ଜାତୀୟ ଜୀବନର ନିର୍ମାତା ।

ଚତୁର୍ଥ ସ୍ଥାନ—ସାହିତ୍ୟ ଜାତୀୟଜୀବନର ମାନମନ୍ଦିର, ଜାତୀୟ ଜୀବନର ପରିମାପକ । ଯେବେ ଜାତୀୟ ଜୀବନର ଉନ୍ନତି-ପରିମାଣ ସ୍ଥିର କରିବାକୁ ଇଚ୍ଛା କର, ଜାତୀୟ ଜୀବନର ଗତି ନିରୂପଣ କରିବାକୁ ଇଚ୍ଛା କର, ତେବେ ଜାତୀୟ ସାହିତ୍ୟ ପ୍ରତି ଦୃଷ୍ଟିପାତ କର, ଜାତୀୟ ସାହିତ୍ୟର ପୃଷ୍ଠା ଉଦ୍ଘାଟନ କର, ତୁମ୍ଭ ମନରୁ ସମସ୍ତ ସନ୍ଦେହ ଦୂର ହେବ । ଦୂରବର୍ତ୍ତୀ ହୋଇ ଜାତିର ଅବସ୍ଥା ସମ୍ବନ୍ଧରେ ଧାରଣା କରିବାକୁ ହେଲେ ତାହା ଜାତୀୟ ସାହିତ୍ୟରୁ ସ୍ପଷ୍ଟରୂପେ ମିଳିବ । କିଏ କେଉଁ ଦେଶରୁ କେଉଁ ଅମୂଲ୍ୟ ସାମଗ୍ରୀ ବହି ଆଣି ଅଛନ୍ତି, କିଏ କେଉଁ ସମୁଦ୍ରରେ ନିମଗ୍ନ ହୋଇ କି କି ରତ୍ନ ସଂଗ୍ରହ କରି ପାରିଅଛନ୍ତି, ସମସ୍ତ ଜାତୀୟ ସାହିତ୍ୟ-ମନ୍ଦିରରେ ରକ୍ଷିତ ଓ ସୁରକ୍ଷିତ ହୋଇଅଛି । ଏ ସମ୍ବନ୍ଧରେ ଅଧିକ କହିବା ଅନାବଶ୍ୟକ ।

ମୋହର ପ୍ରାଣରେ ଏହି କେତେ ଗୋଟି ଭାବ ବିଶେଷ ଭାବରେ ଉଦିତ ହୋଇଥିଲା, ତାହା ସଂକ୍ଷେପରେ ଏଠାରେ କହିଲି । କି ଭାବରେ ଜାତୀୟ ସାହିତ୍ୟର ଗଠନ ହୋଇଥାଏ ତାହା ବର୍ତ୍ତମାନ କିଞ୍ଚିତ୍ ଆଲୋଚନା କରିବି । ସମୟ-ବିଶେଷରେ ଜାତି ମଧ୍ୟରେ ପ୍ରବଳ ଆକାଙ୍କ୍ଷା, ଉଦ୍ଦୀପନା, ଆଶା ଓ ଅନୁରାଗ ଜାତୀୟ ଜୀବନରେ ପ୍ରବେଶ କରି ଜାତୀୟ ସାହିତ୍ୟ ସୃଷ୍ଟି କରେ । ଜାତି ମଧ୍ୟରେ ଏହି ପ୍ରବଳଭାବ ଜାତୀୟ ସାହିତ୍ୟ ଗଠନର ବିଶେଷ ଅନୁକୂଳ ଅବସ୍ଥା । ଇତିହାସ ଆଲୋଚନା କଲେ ଦେଖି ପାରିବେ ଯେ ଗୋଟିଏ ଗୋଟିଏ ସମୟରେ ଜାତି ମଧ୍ୟରେ ଗୋଟିଏ ଗୋଟିଏ ପ୍ରବଳ ଆକାଂକ୍ଷା ପ୍ରବେଶ କରି ଜାତୀୟ ଜୀବନ ଓ ତାହା ସଙ୍ଗେ ସଙ୍ଗେ ସାହିତ୍ୟକୁ ଗଠନ କରି ଦେଇଅଛି ! ଏହି ଶୁଭ ମୁହୂର୍ତ୍ତ ଯେଉଁ ଜାତି ମଧ୍ୟରେ ଉପସ୍ଥିତ ହୁଏ, ସେ ଜାତି ପରମ ସୌଭାଗ୍ୟବାନ୍ ବୋଲି କହିବାକୁ ହେବ । ଗୋଟିଏ ଆକାଂକ୍ଷା ଏକ ସ୍ଥାନରୁ ବାହାରି ବନାଗ୍ନି ସଦୃଶ ଦେଶଯାକ ବ୍ୟାପି ଯାଏ ଏବଂ ଭାଷା ମଧ୍ୟରେ ଜୀବନ୍ତ ମୂର୍ତ୍ତି ପରିଗ୍ରହ କରି ସାହିତ୍ୟ ରୂପେ ପ୍ରକାଶିତ ହୁଏ । ସାମୟିକ ଉଦ୍ଦୀପନାରୁ ଏହାର ଜନ୍ମ ସତ୍ୟ, ମାତ୍ର ଏହା ଯୁଗେ ଯୁଗେ ମାନବପ୍ରାଣକୁ ସଞ୍ଜୀବିତ ଓ ଉଦ୍ଦୀପିତ କରେ । ଯେତେବେଳେ ଜାତିର ଭାବ ଅବସନ୍ନ ଭାବରେ ରହିଥାଏ, ଯେତେବେଳେ ସାହିତ୍ୟ-କ୍ଷେତ୍ର ନିତାନ୍ତ ଅନୁର୍ବର ହୋଇ ପଡ଼େ, ସେତେବେଳେ ଜାତୀୟ ଜୀବନ ସମ୍ବନ୍ଧରେ ଯେଉଁମାନେ ଭାବନ୍ତି, ନୂତନ ସାହିତ୍ୟ ଗଠନ କରିବାକୁ ଯେଉଁମାନେ ବାଞ୍ଛା କରନ୍ତି, ସେମାନଙ୍କର କଠୋର ସାଧନା କରିବାର ଉଚିତ । ମହାତ୍ମା ଇମରସନ୍ ଏକ ସ୍ଥାନରେ କହିଅଛନ୍ତି "ଯେତେବେଳେ ଜାତୀୟ ଜୀବନରେ ଓ ଜାତୀୟ ସାହିତ୍ୟରେ ଅବସାଦ ଉପସ୍ଥିତ ହୋଇଥାଏ, ସେତେବେଳେ ଉନ୍ନତ ଜାତିର ଓ ଉନ୍ନତ ଯୁଗର ସାହିତ୍ୟ ଆଲୋଚନା

ତହିଁର ପ୍ରଧାନ ଔଷଧ।" ଏହା ଉପରେ ଅଧିକ କଥା କହିବା ଅନାବଶ୍ୟକ। ମୋର ଏତିକି ମାତ୍ର ନିବେଦନ ଯେ ଯେଉଁ ପ୍ରକାର ଜାତୀୟ ସାହିତ୍ୟ ଗଠିତ ହେଲେ ତାହା ଘରେ ଘରେ ପ୍ରବେଶ କରି ଜାତୀୟ ଜୀବନକୁ ଏକ ସୂତ୍ରରେ ଘାନ ପଦାରେ ଠିଆ କରେ, ସାହିତ୍ୟସେବକମାନଙ୍କର ତହିଁ ପ୍ରତି ଲକ୍ଷ୍ୟ ରଖି କାର୍ଯ୍ୟ କରିବାର ଉଚିତ ଏବଂ ସେହି ଉଦ୍ଦେଶ୍ୟ ସର୍ବଦା ସମ୍ମୁଖରେ ରଖି ଲେଖନୀ ଚାଳନ କରିବା ଶ୍ରେୟଃ।

ମୋର କ୍ଷୁଦ୍ର ବୁଦ୍ଧିରେ ଜାତୀୟ ଜୀବନରେ ସାହିତ୍ୟର ସ୍ଥାନ ନିରୂପଣ କରିବା ଯେତେଦୂର ସମ୍ଭବ, ତାହା ଆପଣମାନେ ଶୁଣିଲେ। ପ୍ରସଙ୍ଗକ୍ରମେ ସାହିତ୍ୟଗଠନ ସମ୍ବନ୍ଧରେ ଦୁଇ ଚାରି କଥା କହିଅଛି। ଆମ୍ଭମାନଙ୍କର ଜାତୀୟ ସାହିତ୍ୟର ବର୍ତ୍ତମାନ ଅବସ୍ଥା ସମ୍ବନ୍ଧରେ କିଛି କହିବା ମୋର ଅଭିପ୍ରାୟ ନୁହେଁ। ଆପଣମାନଙ୍କ ମତରେ ଯେବେ ଏ କଥାଗୁଡ଼ିକ ଆଦର୍ଶର କଷ୍ଟିରୁ ଅନୁରୂପ ହୋଇଥାଏ, ତେବେ ବର୍ତ୍ତମାନ ସହିତ ସେଗୁଡ଼ିକ ନିଜେ ନିଜେ ତୁଳନା କରି ଦେଖନ୍ତୁ। ଆପଣମାନେ ଥରେ ଭାବନ୍ତୁ, ଜାତୀୟ ସାହିତ୍ୟ ଆମ୍ଭମାନଙ୍କର ଅଛି କି ନାହିଁ। ଆମ୍ଭମାନଙ୍କ ପୂର୍ବପୁରୁଷମାନଙ୍କ ସଙ୍ଗେ ଆମ୍ଭମାନଙ୍କର ବନ୍ଧନ କେତେଦୂର ଶିଥିଳ ହୋଇଅଛି, ତାହା ଥରେ ଭାବନ୍ତୁ। ପୁଣି ଏହି ବନ୍ଧନକୁ ନିକଟତର ଓ ଦୃଢ଼ତର କରିବା ନିମନ୍ତେ କିଏ କେତେ ଚେଷ୍ଟା କରୁଅଛନ୍ତି ତାହା ମଧ୍ୟ ଥରେ ଚିନ୍ତା କରି ଦେଖନ୍ତୁ। ପୂର୍ବପୁରୁଷମାନଙ୍କ ନାମ କୀର୍ତ୍ତନ କରିବାକୁ ସମସ୍ତେ ଶତମୁଖ—ମାତ୍ର ତଦ୍ଦ୍ୱାରା ସେମାନଙ୍କ ସହିତ ସମ୍ବନ୍ଧ ଯଥାର୍ଥରେ ନିକଟବର୍ତ୍ତୀ ହୁଏ ନାହିଁ। ସେମାନଙ୍କ ଜୀବନର କାର୍ଯ୍ୟକଳାପ ସମୁଚିତରୂପେ ଆଲୋଚନା କରିବାକୁ ହେବ ଏବଂ ତହିଁରୁ ଯାହା ଗ୍ରହଣୀୟ ତାହା ଶ୍ରଦ୍ଧାସହକାରେ ଗ୍ରହଣ କରିବାକୁ ହେବ। ମୋର ଜୀବନରେ ମୁଁ ଯେବେ ଅନ୍ତତଃ ଜଣକ ସହିତ ଏହିପରି ନିଜ ସମ୍ବନ୍ଧ ଦୃଢ଼ରୂପେ ପ୍ରତିଷ୍ଠିତ କରି ନ ପାରିଲି, ତେବେ ବୃଥା ପୂର୍ବପୁରୁଷଙ୍କ ନାମ ଗ୍ରହଣ କରିବାର ମୋର କି ଅଧିକାର ଅଛି? ପୁଣି ଏ ଜୀବନରେ ଆମ୍ଭେମାନେ ଏପରି କି କାର୍ଯ୍ୟ କରୁଅଛୁଁ, ଯଦ୍ଦ୍ୱାରା ଆମ୍ଭମାନଙ୍କର ଜାତୀୟ ଜୀବନ ଦୃଢ଼ୀଭୂତ ହୋଇ ପାରିବ ଏବଂ ଭାବୀ ବଂଶଧରମାନଙ୍କ ସହିତ ଆମ୍ଭମାନଙ୍କ ସମ୍ପର୍କ ଅକ୍ଷୁଣ୍ଣ ରହିବ? ଦ୍ୱିତୀୟତଃ ଯଦି ସମସ୍ତଙ୍କ ହୃଦୟରେ ଜାଗରଣ ଉପସ୍ଥିତ ହୋଇଥାଏ, ତାହାହେଲେ ଅତି ଆନନ୍ଦର ସମାଚାର ବୋଲିବାକୁ ହେବ। ତେବେ ତ ଜାତୀୟ ସାହିତ୍ୟ ସଂଗଠିତ ଓ ଉନ୍ନତ ହେବାର ଦିନ ନିକଟ, ଏହା ନିଃସନ୍ଦେହରୂପେ ବୋଲାଯାଇ ପାରିବ। ଜାତି ମଧ୍ୟରେ ବହୁସଂଖ୍ୟକ ଲେଖକଙ୍କ ଆବିର୍ଭାବ ହେବା ଗୌରବର ବିଷୟ ନୁହେଁ। ଲେଖକମାନଙ୍କ ମଧ୍ୟରୁ କେତେଜଣ ଉନ୍ନତ ଆଦର୍ଶ ଧରି ପାରିଅଛନ୍ତି, ଜାତୀୟ ଜୀବନର ଆକାଂକ୍ଷାକୁ ପ୍ରକାଶ କରୁଅଛନ୍ତି, ଏହା ଦେଖିବା ଉଚିତ। ଆମ୍ଭମାନଙ୍କ ମଧ୍ୟରୁ କେତେଜଣ ସାହିତ୍ୟକୁ ଆପଣାର ଇଷ୍ଟଦେବତା କରି ଆପଣାର ଦୀନ କୁଟୀରରେ ବିରଳରେ ମହାତପସ୍ୟାରେ ରତ ରହିଅଛନ୍ତି, ହୃଦୟରେ ଉଚ୍ଚ ଆଶା ପୋଷଣ କରି ଉନ୍ନତ ଲକ୍ଷ୍ୟ ଆଡ଼କୁ ଚାହିଁ ବସିଅଛନ୍ତି, ଏହାହିଁ ଦେଖିବାର ବିଷୟ। ଏହିପରି ବ୍ରତଧାରୀମାନଙ୍କ ସଂଖ୍ୟାବୃଦ୍ଧି ଅନୁସାରେ ଆମ୍ଭମାନଙ୍କର ଲକ୍ଷ୍ୟ କ୍ରମଶଃ ନିକଟବର୍ତ୍ତୀ ହେଉଥିବ, ଏଥିରେ ସନ୍ଦେହ ନାହିଁ।

ଅନେକ ସମୟରେ ଆମ୍ଭେମାନେ ଗଡ୍ଡଳିକାପ୍ରବାହ ତୁଲ୍ୟ ପରର ଭାବ ଦେଖି ଗଡ଼ି ଯାଉଁ। ଯଦି ଆମ୍ଭେମାନେ ଯଥାର୍ଥ ଜାତୀୟ ଜୀବନରେ ଗୋଟାଏ ଅବସାଦ ଅନୁଭବ କରୁଥାଉଁ, ତାହାହେଲେ ସାହିତ୍ୟକ୍ଷେତ୍ରରେ ଆମ୍ଭମାନଙ୍କ ପକ୍ଷରେ କଠୋର ସାଧନା ଓ କଠୋର ତପସ୍ୟାରେ ପ୍ରବୃତ୍ତ ହେବା ଉଚିତ। ଏହି ଆଦର୍ଶ ଉପରେ ଦୃଷ୍ଟି ସ୍ଥିର ରଖି ନ ପାରିଲେ, ଜୀବନରେ

କଠୋର ସାଧନ ଅବଲମ୍ବନ ନ କଲେ ଆମ୍ଭମାନଙ୍କ ଉନ୍ନତିର ଆଶା ଦୁରାଶା ବୋଲି ବୁଝିବାକୁ ହେବ । କାର୍ଯ୍ୟକ୍ଷେତ୍ରରେ ମୁଁ ଯେବେ ଯଥାର୍ଥ ଜୀବନର ପରିଚୟ ନ ଦେଇପାରେ, ତେବେ ମୋର 'ସାହିତ୍ୟ' ନାମ ଧରି ଆସ୍ଫାଳନ କରିବାର ଅଧିକାର ନାହିଁ । ସାଧାରଣତଃ ଦେଖାଯାଏ, ଆମ୍ଭମାନଙ୍କ ମଧ୍ୟରେ ଭୟାନକ ଅନୁକରଣ ପ୍ରବୃତ୍ତି ଜାତ ହୋଇ ଆମ୍ଭମାନଙ୍କୁ ବାତୁଳ ଓ ବାଚାଳ କରି ଦେଉଅଛି । ଯେବେ ଆମ୍ଭମାନଙ୍କ ମଧ୍ୟରେ ଜଣକେତେ ଯଥାର୍ଥ ନିଷ୍ଠାବାନ୍ ସାହିତ୍ୟସେବକ ଆବିର୍ଭୂତ ହୋଇ ଉନ୍ନତ ଜାତୀୟ ସାହିତ୍ୟ ଗଠନରେ ପ୍ରାଣ ମନ ସମର୍ପଣ କରିପାରନ୍ତି ତାହାହେଲେ ଜାତୀୟ ଜୀବନ ଗଠନର ଆଶା ନିକଟବର୍ତ୍ତୀ ହୋଇ ପାରିବ ଏଥିରେ ସନ୍ଦେହ ନାହିଁ । ଜାତୀୟ ସାହିତ୍ୟ ଜାତୀୟ ଜୀବନ ଗଠନ ପକ୍ଷରେ ଉପାଦସ୍ୱରୂପ, ଏହା ସର୍ବଦା ସ୍ମରଣ ରଖିବାକୁ ହେବ ।

ପୂର୍ବେ କହିଅଛି, ବର୍ତ୍ତମାନ ସମଗ୍ର ଭାରତର ଲକ୍ଷ୍ୟ ଏକ ମହାଜାତୀୟଜୀବନ ଗଠନ ଏବଂ ସେହି କାରଣରୁ ପ୍ରାଦେଶିକ ସାହିତ୍ୟ ଗଠନ ଚେଷ୍ଟାକୁ କେହି କେହି ନିରର୍ଥକ ଓ ଅନିଷ୍ଟକର ଜ୍ଞାନ କରିଥାନ୍ତି । ମାତ୍ର ଗୋଟିଏ କଥା ବିଶେଷଭାବରେ ବିଚାର କରିବା ଉଚିତ । ଆପଣାର ଯାହା ଅଛି ତାହା ପୋପାଡି ଦେଇ ଅନ୍ୟସ୍ଥାନରୁ ଉପକରଣ ଗୋଟାଇ ଆଣି ଜାତୀୟ ଜୀବନ ଗଢ଼ିବା ସୁବୁଦ୍ଧିର କାର୍ଯ୍ୟ ନୁହେଁ ଏବଂ ତାହା ସୁଗମ ମଧ୍ୟ ନୁହେ । ଭିନ୍ନ ଭିନ୍ନ ସ୍ଥାନରେ ନାନା କ୍ଷୁଦ୍ର ଜାତି ମଧ୍ୟରେ ଯେଉଁ ଭାବଗୁଡିକ ଅଭିବ୍ୟକ୍ତ ହୋଇ ସଞ୍ଚିତ ଅଛି, ତାହା କଦାପି ଉପେକ୍ଷଣୀୟ ହୋଇ ନ ପାରେ । ଜାତିର ଯାହା ନିଜସ୍ୱ, ତାହା ସହଜରେ ସେହି ଜାତିର ଅନ୍ତସ୍ତଳକୁ ଓ ନିମ୍ନ ସୋପାନକୁ ସ୍ପର୍ଶ କରେ । ପୁଣି ବର୍ତ୍ତମାନ ଯେପରି ଭାରତର ବିଭିନ୍ନ ପ୍ରାଦେଶିକ ସାହିତ୍ୟମାନ ଗଠିତ ହେଉଅଛି, ସେଥିରେ ପରସ୍ପର ସୌସାଦୃଶ୍ୟ କ୍ରମେ ବୃଦ୍ଧି ପ୍ରାପ୍ତ ହେଉଅଛି—ଅନ୍ୟ ଜାତିମାନଙ୍କ ପକ୍ଷରେ ବୁଝିବା ଆଉ ସେତେ କଠିନ ହେଉ ନାହିଁ ।

ଯଥାର୍ଥ ସାହିତ୍ୟରଥୀମାନଙ୍କ ଲେଖନୀ ସଙ୍କୀର୍ଣ୍ଣତା ଦୋଷରେ ଦୁଷ୍ଟ ନୁହେଁ । ତାହା କଣ୍ଟକହୀନ । ସେମାନଙ୍କ ପୁସ୍ତକଗୁଡିକ ଅନ୍ୟାନ୍ୟ ଭାଷାରେ ଅନୁବାଦ କଲେ ସୁଦ୍ଧା ତାହାର ମହତ୍ତ୍ୱ ଓ ଗୁରୁତ୍ୱ ନଷ୍ଟ ହୋଇ ନ ପାରେ । ସେମାନଙ୍କ ପୁସ୍ତକରେ ସଙ୍କୀର୍ଣ୍ଣ ଭାବ ନ ଥାଏ । ନିଜର ପ୍ରାଦେଶିକ ବା ଜାତୀୟ ସାହିତ୍ୟର କିପରି ଉନ୍ନତି ହେବ, ଏହି ଭାବର ବଶବର୍ତ୍ତୀ ହୋଇ ସେମାନେ ସାହିତ୍ୟ ରଚନା କରନ୍ତି ସତ୍ୟ, ମାତ୍ର ଉନ୍ନତ ଚିନ୍ତା ଓ ଭାବ କ୍ଷୁଦ୍ର ସ୍ଥାନରେ ଆବଦ୍ଧ ରହେ ନାହିଁ । କାଳକ୍ରମେ ତାହା ପରିବ୍ୟାପ୍ତ ହୁଏ ଏବଂ ଭାଷାନ୍ତରିତ ହୋଇ ଅନ୍ୟ ଜାତି ମଧ୍ୟରେ ପ୍ରବେଶ କରେ । ଏଥିରେ ଆଶଙ୍କାର କଥା କିଛି ନାହିଁ । ଏହି କ୍ଷୁଦ୍ର ପ୍ରାଦେଶିକ ଭାବ ଭାରତୀୟ ଉନ୍ନତିର ପ୍ରଥମ ସୋପାନ । କାଳକ୍ରମେ ଏହି ପ୍ରାଦେଶିକ ଭାବଗୁଡିକ ମିଳିତ ହୋଇ ଗଲେ, ଏହି ବହୁ ଜାତୀୟ ଭାବର ସମ୍ମିଶ୍ରଣ ହେଲେ ଦିନେ ସମସ୍ତେ ଭାରତରେ ଏକତ୍ର ହୋଇ ଏକକୁ ଅନ୍ୟ ଆଲିଙ୍ଗନ କରି କୃତାର୍ଥ ହେବା ଓ 'ଭାରତୀୟ ଜାତି' ଏହି ଶବ୍ଦକୁ ସାର୍ଥକ କରିବା, ସବୁ କ୍ଷୁଦ୍ର ଜାତି ମିଳିତ ହୋଇ ଏକ ମହା ଭାରତୀୟ ଜାତିରେ ପରିଣତ ହେବା । ବିଧାତାଙ୍କ କୃପାରେ ସେ ସୁଦିନ ଶୀଘ୍ର ଅବତୀର୍ଣ୍ଣ ହେଉ ।

ମୁଁ ଏତିକିମାତ୍ର କହି ମୋର ବକ୍ତବ୍ୟ ଶେଷ କରି ଆପଣମାନଙ୍କଠାରୁ ବିଦାୟ ଗ୍ରହଣ କରୁଅଛି ।

## ଜୀବମାନଙ୍କର ଅପଗମନ ଓ ଲୋପ ।

ଭିନ୍ନ ଭିନ୍ନ ଯୁଗର ସମସ୍ତ ଜୀବମାନଙ୍କୁ ତୁଳନା କରି ଦେଖିଲେ ସ୍ପଷ୍ଟରୂପେ ପ୍ରତୀୟମାନ ହେବ ଯେ ସେମାନଙ୍କ ମଧ୍ୟରେ ଅନେକ ପ୍ରଭେଦ ଅଛି । ଗୋଟିଏ ଜୀବର ଶରୀରରେ କାଳକ୍ରମେ ବହୁ ପରିବର୍ତ୍ତନ ଘଟେ ଏବଂ ସମୟ ସମୟରେ ତାହା ଏତେଦୂର ପର୍ଯ୍ୟନ୍ତ ହୋଇଥାଏ ଯେ ପୂର୍ବତନ ଜୀବଟି କଦାପି ଚିହ୍ନି ହେବ ନାହିଁ । ଏହି ପରିବର୍ତ୍ତନ ଜୀବ ସମୁଦାୟର, ବିଶେଷ ପକ୍ଷରେ ଆକାରର ଦମନଦ୍ୱାରା ଘଟେ । ପକ୍ଷାନ୍ତରେ କେଉଁ କେଉଁଠାରେ ଆକାର ପ୍ରକୃତିର ପ୍ରସାରଣ ମଧ୍ୟ ହୋଇଥାଏ । ଅପଗମନ ଏହାର ବିପରୀତ ପ୍ରଥମୋକ୍ତ ନିୟମ ଅଟେ । ସମୟାନୁସାରେ ଜୀବମାନଙ୍କର ସ୍ଥିତି ଓ ଆହାର ବିହାର ସ୍ଥଳ ବଦଳେ ଏବଂ ଏହା ସଙ୍ଗେ ସଙ୍ଗେ ତଦୁପଯୁକ୍ତ ଆକାର ପ୍ରକୃତିର ପରିବର୍ତ୍ତନ ହେବାର ଏକାନ୍ତ ଆବଶ୍ୟକ, କାରଣ ସେହି ପରିବର୍ତ୍ତନ ବିନା ଜୀବମାନଙ୍କର ପ୍ରାଣ ଧାରଣ ଅସମ୍ଭବ ହୋଇ ପଡ଼ିବ । ନଦୀ ବା ପୁଷ୍କରିଣୀର କୌଣସି ଜୀବକୁ ହଠାତ୍ ସମୁଦ୍ର ମଧ୍ୟରେ ଛାଡ଼ିଦେଲେ ସେ କେବେହେଁ ବଞ୍ଚି ପାରିବ ନାହିଁ । ମାତ୍ର ପରୀକ୍ଷାଦ୍ୱାରା ଜଣାଯାଇଅଛି ଯେ ଗୋଟିଏ ଜୀବକୁ କ୍ରମରେ ଅଳ୍ପ ଅଳ୍ପ ମିଶ୍ରିତ ଲବଣ ଜଳରେ ରହିବାର ଅଭ୍ୟସ୍ତ କଲେ କାଳକ୍ରମେ ସେ ସମୁଦ୍ର ଜଳରେ ବଞ୍ଚିବାକୁ ସମର୍ଥ ହୁଏ । ଏହିପରି କ୍ରମିକ ଅଭ୍ୟାସଦ୍ୱାରା ଉକ୍ତ ଜୀବର ଆକାର ପ୍ରକୃତିରେ ପ୍ରୟୋଜନୀୟ ଓ ଉପଯୁକ୍ତ ପରିବର୍ତ୍ତନ ହୋଇଯାଏ । ପ୍ରକୃତିର ଏହି ତୁଲ୍ୟକରଣ (Adaptation) ବିଧିର ଗୋଟିଏ ଫଳ ଅପଗମନ । କଥିତ ବିଧି ଅନୁସାରେ ପରିବର୍ତ୍ତନ ନ୍ୟୂନ ସୋପାନକୁ ହେଲେ, ତାହାକୁ ଅପଗମନ କୁହାଯାଏ । ମାନବଶରୀରସ୍ଥ କର୍ଣ୍ଣର ମାଂସପେଶୀ ଉଦାହରଣ ସ୍ୱରୂପ ଦିଆଯାଇ ପାରିବ । ପୂର୍ବେ ଏହି ମାଂସପେଶୀ ସାହାଯ୍ୟରେ ମନୁଷ୍ୟର ନିଜ କର୍ଣ୍ଣଚାଳନା କରିବାର ଶକ୍ତି ଥିଲା । ମାତ୍ର ବର୍ତ୍ତମାନ ଅବସ୍ଥାରେ ତାହା ହରାଇଅଛି । ଘୋଟକର ପଦାଙ୍ଗୁଳି ଅନ୍ୟ ଗୋଟିଏ ଉଦାହରଣ । ଅଧିକାଂଶ ସ୍ତନ୍ୟପାୟୀ ଜନ୍ତୁମାନଙ୍କ ପରି ଘୋଟକର ପଦ ମଧ୍ୟ ପ୍ରଥମେ ପଞ୍ଚାଙ୍ଗୁଳବିଶିଷ୍ଟ ଥିଲା । କିଛି କାଳ ପରେ ଗୋଟିଏ ଅଦୃଶ୍ୟ ହେଲା ଓ ତାହା ଉତ୍ତାରେ ଦୁଇଗୋଟି ଅଦୃଶ୍ୟ ହେଲା । ପରିଶେଷରେ ବର୍ତ୍ତମାନ ଅନ୍ୟ ସମସ୍ତ ଯାଇ ଗୋଟିଏ ମାତ୍ର ରହିଅଛି । ମାନବ ଓ ଘୋଟକ ଭ୍ରୂଣମାନଙ୍କର ଉପରୋକ୍ତ ନଷ୍ଟଭାଗମାନ ବିଦ୍ୟମାନ ଥାଏ । ଭ୍ରୂଣବିଜ୍ଞାନର ଏହି ନିୟମ ଯେ ଭ୍ରୂଣମାନେ ନିଜର ପୂର୍ବପୁରୁଷମାନଙ୍କର ମାର୍ଗ ଅବଲମ୍ବନ କରି ବୃଦ୍ଧି ଲଭନ୍ତି । ଘୋଟକର ଅଧିକାଙ୍ଗୁଳବିଶିଷ୍ଟ ପଦ ପ୍ରସ୍ତରୀଭୂତ ଅବସ୍ଥାରେ ପୁଣି ରକ୍ଷିତ ହୋଇଅଛି । ଉପରୋକ୍ତ ଦୁଇଗୋଟି ଦୃଷ୍ଟାନ୍ତରେ ସମ୍ପୂର୍ଣ୍ଣ ଜୀବଶରୀରର କେବଳ କୌଣସି ଏକ ଅଙ୍ଗର ଅପଗମନ ଲକ୍ଷିତ ହୁଏ । ଏହା ଛଡ଼ା ପ୍ରାଣିମାନଙ୍କର ସାଧାରଣତଃ ସର୍ବଶରୀରର ପୁଣି ଅପଗମନ ଘଟିଥିବାର ଅନେକ ସ୍ଥଳରେ ଦେଖାଯାଏ ।

ବ୍ୟବହାର ସର୍ବପ୍ରକାର ସ୍ଥାୟିତ୍ୱର ଭିତ୍ତିମୂଳ ସ୍ୱରୂପ ଅଟେ । ବ୍ୟବହାର ଅଭାବରେ କୌଣସି ପଦାର୍ଥର ହେଉ ଅବା ନିଶ୍ଚୟ କ୍ଷୟ ହୁଏ । ଗୋଟିଏ ଗୃହ ଜନଶୂନ୍ୟ ହେଲେ ତାହା ଶୋଭାହୀନ ହୁଏ । କ୍ରମେ କ୍ରମେ ତହିଁର ବିଭିନ୍ନ ଭାଗ ଜୀର୍ଣ୍ଣ ଓ ଗଳିତ ହୋଇ ପରିଶେଷରେ ଗୃହଟି ଭଗ୍ନ ହୋଇ ପତିତ ହୁଏ । କାଳପ୍ରଭାବରେ ସେହି ଭଗ୍ନରାଶି ପୁଣି ଅଦୃଶ୍ୟ ହୋଇଯାଏ ଓ ପୂର୍ବଗୃହର ଅସ୍ତିତ୍ୱ ମଧ୍ୟ ରହେ ନାହିଁ । ବ୍ୟବହାର ବିନା ଏପ୍ରକାର ନାଶ ଘଟିବା ସାର୍ବତ୍ରିକ ନିୟମ ଅଟେ । ମନୁଷ୍ୟଙ୍କୁ ଯଦି ଗ୍ରାସାଚ୍ଛାଦନାଦି ନିମନ୍ତ

ପ୍ରତ୍ୟେକଜାତୀୟ ପଦାର୍ଥମାନ ସହଜରେ ମିଳେ ତେବେ ସେ ସ୍ୱଭାବତଃ ଅଧିକ ପରିଶ୍ରମ ଓ ନୂତନ ନୂତନ ଚେଷ୍ଟାଦ୍ୱାରା ଅନ୍ୟ କିଛି ଅଧିକ ପାଇବାର ଆକାଂକ୍ଷା କରେ ନାହିଁ । ସେ କେବଳ ସୁଲଭ ଜୀବନରେ ସନ୍ତୁଷ୍ଟ ହୋଇ ଶାରୀରିକ ବା ମାନସିକ ଶକ୍ତିର ପ୍ରୟୋଗ କରିବା ନିମନ୍ତେ କୁଣ୍ଠିତ ହୁଏ ଏବଂ ଚେଷ୍ଟାଶୂନ୍ୟ ଓ ଆଳସ୍ୟପ୍ରିୟ ହୋଇ ଜୀବନ କଟାଏ । ଏପ୍ରକାର ମନୁଷ୍ୟ ଯେଉଁ ସମାଜକୁ ଗଠନ କରନ୍ତି ସେହି ସମାଜ ଅନୁନ୍ନତ ହୋଇ ବର୍ବରଅବସ୍ଥାରେ ସର୍ବଦା ରହିଥାଏ । ଇତିହାସର ପୃଷ୍ଠା ଉଦ୍ଘାଟନ କରି ଦେଖିଲେ ଏହାର ଅନେକ ପ୍ରମାଣ ମିଳିବ । ଯେହେତୁ ଗୋଟିଏ ପ୍ରାଣୀ ତାହାର ଜୀବନାବସ୍ଥାର ପରିବର୍ତ୍ତନ ଯୋଗୁଁ ଯଦି ଶରୀରର କତିପୟ ଅବୟବ ବ୍ୟବହାର ନ କରେ ତେବେ କାଳକ୍ରମେ ସେହି ପ୍ରାଣୀର ସେହି ଅବୟବମାନ ଏକାବେଳକେ ଅଦୃଶ୍ୟ ହୋଇଯାନ୍ତି ବା ସେମାନଙ୍କ ଅବଶିଷ୍ଟ କୌଣସି ପ୍ରକାରେ ରହିଥାଏ ।

ଅପଗମନର କାରଣ ନାନାବିଧ ଓ ସେଗୁଡ଼ିକର ପ୍ରମାଣସ୍ୱରୂପ ଉଦାହରଣ ମଧ୍ୟ ଦିଆଯାଇ ପାରିବ । ଅପଗମନର ଅନେକ କାରଣ ଥିଲେହେଁ ତନ୍ମଧ୍ୟରେ କେବଳ ପରପୁଷ୍ଟକତା (Parasitism) ପ୍ରଧାନ ଅଟେ । ଏପରି କେତେକ ଜୀବ ଅଛନ୍ତି, ଯେଉଁମାନେ ସେମାନଙ୍କର ଭରଣ ପୋଷଣ, ଆଶ୍ରୟ ବା ଅଭୟ ନିମନ୍ତେ ଇତର ଜନ୍ତୁମାନଙ୍କ ଉପରେ ନିର୍ଭର କରନ୍ତି । କେଉଁ ସ୍ଥଳରେ ଦେଖାଯାଏ ଯେ ଗୋଟିଏ ଜୀବ କେବଳ ଅନ୍ୟ ଗୋଟିକର ସାହାଯ୍ୟରେ ନିଜର ପ୍ରାଣ ରକ୍ଷା କରେ । ଏପ୍ରକାର ଜୀବଗୁଡ଼ିକୁ ପରପୁଷ୍ଟ କୁହାଯାଏ । ଏମାନେ ଯେଉଁମାନଙ୍କ ଉପରେ ନିର୍ଭର କରନ୍ତି ସେଗୁଡ଼ିକ ଅତିଥିସେବକ ଭୂମିକାର୍ଯ୍ୟ କରନ୍ତି । ସାଧାରଣ ମଣ୍ଡୂକର ଅନ୍ତ୍ରରେ ଏକ ପରପୁଷ୍ଟ ଜୀବ ବାସ କରେ । ତାହା ଓପାଲିନା (Opalina ranarum) ନାମରେ ପରିଚିତ । ଓପାଲିନା ଅତ୍ୟନ୍ତ ନିମ୍ନ ଶ୍ରେଣୀର ଗୋଟିଏ ପ୍ରାଣୀ ଅଟେ ଏବଂ କେବଳ ଅଣୁବୀକ୍ଷଣ ଯନ୍ତ୍ରର ସାହାଯ୍ୟରେ ଦେଖାଯାଇ ପାରିବ । ଏହା ମଣ୍ଡୂକର ଅନ୍ତ୍ରରେ ସର୍ବଦା ଥାଇ ତାହାର ଅର୍ଦ୍ଧପକ୍ୱ ଖାଦ୍ୟପଦାର୍ଥ ନିଜ ଶରୀରଦ୍ୱାରା ଶୋଷଣ କରି ପ୍ରାଣ ଧାରଣ କରେ । ଏହା ନିମ୍ନତମ ଶ୍ରେଣୀର ପ୍ରାଣୀ ହେଲେହେଁ ସ୍ୱଶ୍ରେଣୀସ୍ଥ ଇତର ପ୍ରାଣୀମାନଙ୍କ ଶରୀରର ସମସ୍ତ ଭାଗମାନ ଏହାଠାରେ ଅନୁପସ୍ଥିତ । ପରପୁଷ୍ଟ ସ୍ୱଭାବ ଯୋଗୁଁ ଏହାର ଅନେକ ଦୂର ପର୍ଯ୍ୟନ୍ତ ଅପଗମନ ଘଟିଅଛି । ଓପାଲିନାର ପାଟି, ଗଳାନଳୀ କିମ୍ବା ପାକସ୍ଥଳୀ ନାହିଁ । ପାକକାର୍ଯ୍ୟ ଏହା ନିମନ୍ତେ ମଣ୍ଡୂକଦ୍ୱାରା ହୋଇଥାଏ । ମଣ୍ଡୂକ ଆହାରଦ୍ରବ୍ୟ ପ୍ରସ୍ତୁତ କରି ଯୋଗାଏ ଏବଂ ଓପାଲିନା ତାହା ଗ୍ରହଣ କରି ଅନାୟାସରେ ନିଜର ପୁଷ୍ଟି ସାଧନ କରେ । ଏହିପରି ପାକଯନ୍ତ୍ରର ଅପଗମନ ସଙ୍ଗେ ସଙ୍ଗେ ଶରୀରର ଅନ୍ୟାନ୍ୟ ଭାଗମାନଙ୍କର ମଧ୍ୟ ଅପଗମନ ହୋଇଅଛି । ଓପାଲିନା ମଣ୍ଡୂକର କେବଳ ପ୍ରଥମ ଜୀବନାବସ୍ଥାରେ ତାହା ଅନ୍ତ୍ରରେ ପ୍ରବେଶ ଲାଭ କରି ତାହା ସହିତ କ୍ରମେ କ୍ରମେ ବୃଦ୍ଧି ପାଏ । ଓପାଲିନାର ପୁନରୁତ୍ପତ୍ତି ବୃତ୍ତାନ୍ତ ଅତ୍ୟନ୍ତ ବିଚିତ୍ର; ମାତ୍ର ତାହାର ବର୍ଣ୍ଣନା ଏଠାରେ ଅପ୍ରାସଙ୍ଗିକ ବୋଧ ହେବ । ପ୍ରାଣିଜଗତର ନିମ୍ନଶ୍ରେଣୀମାନଙ୍କ ମଧ୍ୟରେ ଅନେକ ପରପୁଷ୍ଟ ଦେଖାଯାନ୍ତି । ସମୁଦ୍ର ମଧ୍ୟରେ ଏକପ୍ରକାର କଙ୍କଡ଼ା ବାସ କରନ୍ତି । ଏଗୁଡ଼ିକ ସର୍ବଦା କୌଣସି ଗୋଟିଏ ଶୂନ୍ୟ ସାମୁକା ବା ଖୋଳପା ଭିତରେ ଥାନ୍ତି । ଏମାନଙ୍କ ସ୍ୱଭାବାନୁସାରେ ଏମାନଙ୍କୁ ସନ୍ନ୍ୟାସ କର୍କଟ (Hermit-crabs) କହାଯାଏ । ଜନ୍ମ ଲଭିବାର କିଛି କାଳ ପରେ ଗୋଟିଏ ଖୋଳପା ଅନ୍ୱେଷଣ କରି ତହିଁରେ ସର୍ବଦା ଆଶ୍ରୟ ନିଅନ୍ତି । ଏଣୁ କ୍ରମେ କ୍ରମେ ସେମାନଙ୍କର କେତେ ଗୋଟି ପଦ ପ୍ରାୟ ଅଦୃଶ୍ୟ ହୋଇଯାଏ; ଚର୍ମ ଅତ୍ୟନ୍ତ ପାତଳ ହୁଏ; ଏବଂ ସମସ୍ତ ଶରୀର କୋମଳ ହୋଇ

ପଡ଼େ । ଭିନ୍ନ ଅଙ୍ଗମାନ ମଧ୍ୟ ସ୍ପଷ୍ଟ ଲକ୍ଷିତ ନ ହୋଇ ସମସ୍ତ ଶରୀର ନ୍ୟୂନାଧିକ ଗୋଟିଏ କ୍ଷୁଦ୍ର ମାଂସଗୋଳାପରି ଜଣା ଯାଏ । ଏହି କର୍କଟଗୁଡ଼ିକ ଉକ୍ତ ଖୋଳପା ଭିତରେ ରହିବା ଯୋଗୁଁ ସେମାନଙ୍କ ସମସ୍ତ ପଦ ଚାଳନାର ଆବଶ୍ୟକତା ରହେ ନାହିଁ ଏବଂ ସେହି ଖୋଳପା ସେମାନଙ୍କ ଶରୀରକୁ ମଧ୍ୟ ଆବୃତ କରି ରକ୍ଷା କରେ । ଏଣୁ ଏ ହେତୁ ଯେଉଁ ଶାରୀରିକ ଭାଗମାନଙ୍କର ବ୍ୟବହାର ବନ୍ଦ ହୁଏ ସେହି ଭାଗମାନଙ୍କର ଅପଗମନ ଘଟେ । ଏହି କଙ୍କଡ଼ା ସମ୍ବନ୍ଧରେ ଆଉ ଗୋଟିଏ କଥା ଉଲ୍ଲେଖଯୋଗ୍ୟ । ଏଗୁଡ଼ିକଦ୍ୱାରା ଅଧିକୃତ ଖୋଳପା ଉପରେ ସମୁଦ୍ର-ପୁଷ୍ପ (Sea-anemone ବା Sea-flower) ନାମକ ଏକ ନିମ୍ନ ଶ୍ରେଣୀର ଜୀବ ବାସ କରେ । ଏହି ଜୀବର ଆକୃତି ପୁଷ୍ପ ପ୍ରାୟ ହୋଇ ଥିବା ଯୋଗୁଁ ତଦନୁସାରେ ନାମ ଦିଆ ଯାଇଅଛି । ଏହା ଉକ୍ତ ଖୋଳପା ଉପରେ ସଂଲଗ୍ନ ରହି କଙ୍କଡ଼ା ସହିତ ଚଳପ୍ରଚଳ ହୁଏ । ଏଣୁ, ଏହାର ସ୍ୱଶ୍ରେଣୀସ୍ଥ ଅନ୍ୟାନ୍ୟ ଜୀବମାନଙ୍କ ଚଳପ୍ରଚଳ ନିମନ୍ତେ ଆବଶ୍ୟକ ଅଙ୍ଗମାନ ଏ ହରାଇଅଛି ।

ଅପଗମନର ଉକ୍ତ କାରଣମାନଙ୍କ ମଧ୍ୟରୁ ନିମ୍ନରେ କେତେ ଗୋଟି ଉଲ୍ଲେଖ କରାଗଲା:— ସଂଲଗ୍ନତା, ଉଦ୍ଭିଦପୋଷଣ ଏବଂ ଅତି କ୍ଷୁଦ୍ର ଆୟତନ । ଏହି ସମସ୍ତ କାରଣରୁ ଜୀବମାନଙ୍କ ନାନା ଅଙ୍ଗ ଓ ଯନ୍ତ୍ରମାନଙ୍କର ବ୍ୟବହାର ରହିତ ହୋଇ ତଦନୁସାରେ ସେମାନଙ୍କର ଅପଗମନ ଘଟେ । କେତେକଗୁଡ଼ିଏ ଜୀବ ପ୍ରାୟ ସମସ୍ତ ସମୟ କୌଣସି ଗୋଟିଏ ବସ୍ତୁ ସହିତ ସଂଲଗ୍ନ ରହି ଗୋଟିଏ ସ୍ଥାନରେ କାଳ ଯାପନ କରନ୍ତି । ଆସିଡ଼ିଅନ୍ (Ascidian) ନାମକ ଏକ ସାମୁଦ୍ରିକ ଜୀବ ତାହାର ଏହି ସ୍ୱଭାବ ଯୋଗୁଁ ସନ୍ତରଣୋପଯୋଗୀ ଶାରୀରିକ ଭାଗମାନ, ଇନ୍ଦ୍ରିୟ ପ୍ରଭୃତି ହରାଇଅଛି । ବାଲେନସ୍ (Balanus) ନାମକ ଜୀବ ଏହାର ଅନ୍ୟ ଗୋଟିଏ ଦୃଷ୍ଟାନ୍ତ । ସମୁଦ୍ରର କୌଣସି କୌଣସି ସ୍ଥାନରେ ଜଳର ଉପରିଭାଗରେ ସବୁଜବର୍ଣ୍ଣଯୁକ୍ତ ଗୋଟିଏ ଫେଣ ଥିବାର ଦେଖାଯାଏ । ଏହାମଧ୍ୟରେ କନ୍‌ଭଲ୍ୟୁଟା (Convoluta) ନାମକ ନିମ୍ନ ଶ୍ରେଣୀର ଓ ସେହି ବର୍ଣ୍ଣର ଜୀବଗୁଡ଼ିଏ ବାସ କରନ୍ତି । ଏଗୁଡ଼ିକ ଉଦ୍ଭିଦପୋଷଣର ଉଦାହରଣ । ଏ ଉତ୍ତରେ ଅତି କ୍ଷୁଦ୍ର ଆୟତନ ହେତୁ ରୋଟିଫର (Rotifera) ପଲିଜୋଆ (Polyzoa) ପ୍ରଭୃତି ଜାତୀୟ ଜୀବମାନଙ୍କର ଅପଗମନ ଘଟିଅଛି । ଏଗୁଡ଼ିକର ଉଚ୍ଚ ଶ୍ରେଣୀସ୍ଥ ଜୀବୋପଯୁକ୍ତ କେତେକ ସ୍ୱଭାବ ଥିଲେହେଁ ଅନ୍ୟ କେତେକ ପକ୍ଷରେ ଅପଗମନର ଚିହ୍ନ ଲକ୍ଷିତ ହୁଏ । ଏହିପରି ନାନା କାରଣରୁ ଅପଗମନ ଘଟିବାର ପ୍ରାଣିଜଗତରେ ବହୁ ପରିଚୟ ମିଳେ । ଅପଗତ ଜୀବମାନଙ୍କ ନଷ୍ଟ ଅଙ୍ଗଗୁଡ଼ିକ ସେମାନଙ୍କ ପୂର୍ବପୁରୁଷମାନଙ୍କଠାରେ ଉପସ୍ଥିତ ଥିବାର ଯଥେଷ୍ଟରୂପେ ପ୍ରମାଣିତ ହୋଇଅଛି ।

ଜୀବମାନଙ୍କର ଅପଗମନ ବିଷୟରେ ବର୍ତ୍ତମାନ କେତେକ ଦୂର ପର୍ଯ୍ୟନ୍ତ ଆଲୋଚନା କରାଯାଇଅଛି । ନିମ୍ନରେ ସେମାନଙ୍କ ଲୋପ ସମ୍ବନ୍ଧରେ କିଛି କହାଯାଇ ପ୍ରବନ୍ଧର ଉପସଂହାର କରାଯିବ । ଭିନ୍ନ ଭିନ୍ନ ସମୟରେ ଅନେକପ୍ରକାର ଜୀବଜନ୍ତୁ ଏହି ପୃଥିବୀ ମଧ୍ୟରୁ ଏହାବେଳକେ ଲୁପ୍ତ ହୋଇଯାଇଅଛନ୍ତି । ନାନା ଯୁଗର ପ୍ରସ୍ତରୀଭୂତ ଅବଶିଷ୍ଟ ଦ୍ରବ୍ୟମାନଙ୍କରୁ ଏହାର ପ୍ରମାଣ ମିଳେ । କେଉଁ କେଉଁ ଦେଶରେ ସେହି ଲୁପ୍ତ ଜୀବମାନଙ୍କର କଙ୍କାଳ ପ୍ରଭୃତି ମଧ୍ୟ ଅଦ୍ୟାପି ରକ୍ଷିତ ହୋଇଅଛି । ନିମ୍ନରେ କେତେଗୋଟି ଲୁପ୍ତ ଜୀବମାନଙ୍କର ଉଦାହରଣ ଦିଆଗଲା । ମଣ୍ଡୂକଜାତିର ଲବିରିନ୍ଥୋଡନ୍ସ (Labyrinthodonts) ନାମକ ଏକ ବୃହତ୍ ଜୀବ ଥିଲା । ତାହାର ଦନ୍ତପଂକ୍ତିର ଅତ୍ୟନ୍ତ ଜଟିଳତା ଯୋଗୁଁ ଏପରି ନାମ ଦିଆଯାଇଥିଲା । ସରୀସୃପମାନଙ୍କ ମଧ୍ୟରେ ଅନେକଗୁଡ଼ିଏ ଅତି ବୃହତ୍ ଜୀବମାନଙ୍କର ଲୋପ ହୋଇଅଛି । ଇକ୍ଥିଓସୋରସ୍ (Ichthyosaurus)

ନାମକ ଗୋଟିଏ ଜୀବର ଆକୃତି ଓ ଅବୟବ ପ୍ରାୟ ଏକ ମେଷପର ଥିଲା । ଏହା ଜଳ ମଧ୍ୟରେ ବାସ କରୁଥିଲା । ପେଥନୋମର୍ଫା (Pythonomorpha ) ନାମକ ଏକ ଶ୍ରେଣୀର ବୃହତ୍ ଓ ଲମ୍ବ ସର୍ପାକୃତିର ଜନ୍ତୁ ଥିଲେ । ଏଗୁଡ଼କର ଲମ୍ବାଇ ପଚାଶ ଫୁଟ ମଧ୍ୟ ଥିଲା । ଇକ୍ୱାନାଡ଼ନ୍ (Iquanadon) ନାମକ ଏକ ସରୀସୃପ ପୃଥିବୀର ସ୍ଥଳଭାଗରେ ବୃହତ୍ତମ ଜୀବ ଥିଲା । କେତେଗୁଡ଼ିଏ ସଦନ୍ତ ମଧ୍ୟ ପକ୍ଷୀ ପ୍ରାପ୍ତ ହେଉଥିଲେ । ପକ୍ଷୀମାନଙ୍କ ମଧ୍ୟରେ ଆର୍କେଓପ୍ଟେରିକ୍ସ ( Archaeopteryx ) ପ୍ରଧାନ ଲୁପ୍ତ ଜୀବ ଅଟେ । ଏହାର ଆକୃତି ଓ ଆକାର ଗୋଟିଏ କାକପର ଥିଲା, ଲାଞ୍ଜ ଅତି ଲମ୍ବ ଥିଲା । ଏହି ପକ୍ଷୀର ଦନ୍ତ ମଧ୍ୟ ଥିଲା । ମୋଆ ( Moa ) ନାମକ ଉଷ୍ଟ୍ରପକ୍ଷୀ ଜାତିର ଏକ ଜୀବ ଅଳ୍ପ କାଳ ହେଲା ଲୁପ୍ତ ହୋଇଅଛି । ସ୍ତନ୍ୟପାୟୀ ଶ୍ରେଣୀର ସମୁଦ୍ର-ଗାଭି ( sea-cow ) ନାମକ ପ୍ରାୟ ହସ୍ତି ଆକୃତିର ଏକ ଜୀବ ମଧ୍ୟ ଅଳ୍ପ କାଳ ମଧ୍ୟରେ ଧ୍ୱଂସପ୍ରାପ୍ତ ହୋଇଅଛି ।

ଉପରୋକ୍ତ ଦୃଷ୍ଟାନ୍ତମାନଙ୍କରୁ ଜଣାଯାଏ ଯେ ଲୁପ୍ତ ଜୀବଗୁଡ଼କର ଅଦ୍ଭୁତତ୍ୱ ଅତ୍ୟନ୍ତ ଅଧିକ ଥିଲା । ନିମ୍ନଶ୍ରେଣୀସ୍ଥ କ୍ଷୁଦ୍ର କ୍ଷୁଦ୍ର ଜୀବମାନଙ୍କଠାରୁ ପୁନଃ ପୁନଃ ଓ ଅଳ୍ପ କାଳରେ ଅସଂଖ୍ୟ ଜୀବ ଜନ୍ମଗ୍ରହଣ କରନ୍ତି । ମାତ୍ର ସାଧାରଣତଃ ଉଚ୍ଚ ଶ୍ରେଣୀର ବିଶାଳକାୟ ଜନ୍ତୁମାନଙ୍କ ମଧ୍ୟରେ ପୁନରୁତ୍ପତ୍ତି ସେପରି ସୁଲଭ ନୁହେ । ଏଣୁ କୌଣସି କାରଣରୁ ଏହି ଜୀବଗୁଡ଼କ କିଛି ସଂଖ୍ୟାରେ କମ୍ତି ହେଲେ କାଳକ୍ରମେ ସେମାନଙ୍କର ସମ୍ପୂର୍ଣ୍ଣ ଲୋପ ଘଟେ । ଆଜିକାଲି ପୃଥିବୀରେ ସ୍ଥଳଭାଗର ବୃହତ୍ତମ ଜୀବ ହସ୍ତୀ ଏବଂ ଜଳଭାଗର ବୃହତ୍ତମ ଜୀବ ତିମି ଅଟନ୍ତି । ପ୍ରତି ବର୍ଷ ଅସଂଖ୍ୟ ହସ୍ତୀ ଓ ତିମି ହତ ହୋଇ ନାନାମତେ ବ୍ୟବହୃତ ହେଉଥିବାର ସମସ୍ତଙ୍କୁ ବିଦିତ । ସଭ୍ୟ ଜଗତର ପ୍ରୟୋଜନାନୁସାରେ ଏହି ଭୀଷଣ ହତ୍ୟାକାଣ୍ଡ ଦିନକୁ ଦିନ ବୃଦ୍ଧି ହେଉଅଛି । ନିମ୍ନ ଦୁଇଟି ଜୀବର ବାର୍ଷିକ ମୃତ୍ୟୁସଂଖ୍ୟା ପ୍ରତି ଦୃଷ୍ଟିପାତ କଲେ ସ୍ତମ୍ଭୀଭୂତ ହେବାକୁ ପଡ଼େ । ବିଜ୍ଞାନବେତ୍ତାମାନଙ୍କଦ୍ୱାରା ସ୍ଥିରୀକୃତ ହୋଇଅଛି ଯେ ଏହି କାରଣରୁ ବର୍ତ୍ତମାନ ପ୍ରକାଣ୍ଡ ତିମିର ବହୁଦୂର ପର୍ଯ୍ୟନ୍ତ ଲୋପ ଘଟି ସାରଲାଣି ଏବଂ ହସ୍ତିର ମଧ୍ୟ ସେହିପର କାଳକ୍ରମେ ଘଟୁଅଛି । ଅନତିବିଳମ୍ବରେ ଏମାନଙ୍କ ଲୋପର ମଧ୍ୟ ଆଶଙ୍କା କରା ଯାଉଅଛି । ଅତଏବ ସଭ୍ୟତାର ଭୀଷଣ ପ୍ରାଦୁର୍ଭାବରୁ ପ୍ରକୃତି ପୂଜା ପରାଜିତ ହେଉଅଛି, ଏହା ବଡ଼ ବିସ୍ମୟକର କଥା ବୋଲିବାକୁ ହେବ ।

ଶ୍ରୀ ତାରିଣୀଚରଣ ରଥ

---

## ଉତ୍କଳ-ସମ୍ମିଳନୀ ।

ଭଗବାନଙ୍କ କୃପାବଳରେ ଉତ୍କଳ-ସମ୍ମିଳନୀ ଦ୍ୱିତୀୟ ବର୍ଷରେ ପଦାର୍ପଣ କଲା । ବିଗତ ଡିସେମ୍ବର ମାସ ଶେଷ ସପ୍ତାହରେ ଏହାର ଦ୍ୱିତୀୟ ବାର୍ଷିକ ଅଧିବେଶନ ସମ୍ପନ୍ନ ହୋଇ ଯାଇଅଛି । ଏହି ସମ୍ମିଳନୀ, ବିଶେଷତଃ ଏହାର ବାର୍ଷିକ ଅଧିବେଶନ ଉତ୍କଳଖଣ୍ଡରେ ଗୋଟିଏ ଅଭିନବ ବ୍ୟାପାର । ସୁଦୀର୍ଘ କାଳବ୍ୟାପୀ ଜଡ଼ତା ଓ ଅବସାଦ ପରେ ଯେବେ ଉତ୍କଳସନ୍ତାନଗଣ ମାତୃଭୂମିର କଲ୍ୟାଣକାମନାରେ—ଜାତୀୟ ଉନ୍ନତି ସାଧନ ଅଭିପ୍ରାୟରେ ସମବେତ ହୋଇଅଛନ୍ତି, ଏହା ଭାବିଲେ ପ୍ରାଣ ଆନନ୍ଦ ଓ ଆଶାରେ ଉତ୍ଫୁଲ୍ଲ ହୋଇ ଉଠେ । ଏହି ନିର୍ଜୀବ ଜାତି ମଧ୍ୟରେ ଅନ୍ତତଃ ଦୁଇ ସହସ୍ରାଧିକ ଲୋକ ଜାତି, ବର୍ଣ୍ଣ, ବଂଶଗୌରବ, ପଦମର୍ଯ୍ୟାଦା, ସମସ୍ତ ଭେଦଜ୍ଞାନ ଉପେକ୍ଷା କରି ଉନ୍ମୁକ୍ତ ବାୟୁମଣ୍ଡଳ ମଧ୍ୟରେ ଏକ ପ୍ରଶସ୍ତ ମଣ୍ଡପ ତଳେ ଏକ ଭାବ, ଏକ

ଲକ୍ଷରେ ସମ୍ମିଳନ ଦେଖିବାର ଦୃଶ୍ୟ ଯଥାର୍ଥରେ ଉନ୍ମାଦକର । କେବଳ ତାହା ନୁହେ—ଉତ୍କଳଖଣ୍ଡର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ କେତେ ସ୍ଥାନରୁ କେତେ ସହସ୍ର ସହସ୍ର ପ୍ରାଣର ଅନ୍ତସ୍ତଳରୁ ନିଃସୃତ ମଙ୍ଗଳ-କାମନା—ଆଶୀର୍ବାଣୀ ବାୟୁବେଗରେ ପ୍ରବାହିତ ହୋଇ ଆସି ଏହି ମାତୃପୂଜାମଣ୍ଡପର ବାୟୁମଣ୍ଡଳକୁ ପବିତ୍ର ଓ ସୌରଭାନ୍ୱିତ କରିଅଛି—ସେ ବାୟୁରାଶି ମଧ୍ୟରେ ଦୁଇ ଦିନ ସଞ୍ଚରଣ କରି କେତେ ପ୍ରାଣ ସଜୀବ ଓ ଶୁଦ୍ଧ ହୋଇଅଛି ।

ସମ୍ମିଳନୀ ବର୍ତ୍ତମାନ ଏକ ବର୍ଷ ବୟସ୍କ ଶିଶୁ । ଏହି ଶିଶୁର ଜନ୍ମବୃତ୍ତାନ୍ତ, ଏହାର ବର୍ତ୍ତମାନ ଅବସ୍ଥା, ଏହାର ଭବିଷ୍ୟତ୍, ସମସ୍ତ ସ୍ଥୂଳଦୃଷ୍ଟି ନିକଟରେ ପ୍ରହେଳିକାମୟ; କିନ୍ତୁ ବିଶେଷ ପକ୍ଷରେ ଗମ୍ଭୀର ଅର୍ଥପୂର୍ଣ୍ଣ । କେହି କହନ୍ତି, ଜଣେ ଅଧେ ଲୋକ ବା କେତେଜଣ ଲୋକ ଏକତ୍ର ହୋଇ ପରାମର୍ଶ କରି କଳ୍ପନା ଜଳ୍ପନା କରି ଦୁଇ ଦିନରେ ବା ଦୁଇ ମାସରେ ସମ୍ମିଳନୀର ଅନୁଷ୍ଠାନ କରି ପକାଇଲେ । ଆମ୍ଭେମାନେ କହୁଁ—ମିଥ୍ୟା କଥା—ଅସମ୍ଭବ କଥା ! ଆମ୍ଭେମାନେ ସ୍ପଷ୍ଟ ଦେଖୁଅଛୁଁ, ଏହାର ପଶ୍ଚାଦ୍ଦେଶରେ କେତେ କାତର ପ୍ରାଣର ବ୍ୟାକୁଳ ପ୍ରାର୍ଥନା କେତେ ପବିତ୍ର ହୃଦୟର କଠୋର ତପସ୍ୟା ରାଶୀକୃତ ହୋଇ ରହିଅଛି—କେତେ ସୁଦୂରବର୍ତ୍ତୀ ପ୍ରାଣର ନିଷ୍କାମ ଶୁଭାକାଂକ୍ଷା ଆସି ତାହା ସହିତ ମିଶିଅଛି ଏବଂ ଏବେବେଳେ ସୁଦ୍ଧା ମିଶୁଅଛି । ଉତ୍କଳୀୟ ପ୍ରାଣରେ ଯେଉଁ ସ୍ପଷ୍ଟ ବା ଅସ୍ପଷ୍ଟ ଅଭାବବୋଧ ଜାଗ୍ରତ ହୋଇଅଛି, ତାହାହିଁ ସମ୍ମିଳନୀର ଜନ୍ମଦାତା । ଏକଥା ସତ୍ୟ ଯେ ଉତ୍କଳ ଆଜି ସୁଦ୍ଧା ଉନ୍ନତ ଜାତୀୟ ଆଦର୍ଶଠାରୁ ବହୁଦୂରରେ ଅବସ୍ଥିତ, ସହସ୍ର ସହସ୍ର ଉତ୍କଳୀୟ ପ୍ରାଣ ନିବିଡ଼ ଅନ୍ଧକାରରେ ଅଛନ୍ତି, ଉତ୍କଳର ଶିକ୍ଷିତ ଓ ଉଚ୍ଚପଦସ୍ଥ ସନ୍ତାନମାନଙ୍କ ମଧ୍ୟରୁ ଅଧିକାଂଶ କ୍ଷୁଦ୍ର ନିଜ ସ୍ୱାର୍ଥର ମୋହରେ ଅଭିଭୂତ, କେତେ-ସ୍ଥାନୀୟ ଅନେକ ବ୍ୟକ୍ତି ଆତ୍ମଗରିମା ଓ ଆତ୍ମ-ବଡ଼ିମାର ମାଦକତାରେ ପ୍ରମତ୍ତ, ପରସ୍ପର ଈର୍ଷା ଓ ଆତ୍ମକଳହରେ ଜର୍ଜରିତ; କିନ୍ତୁ ଏସମସ୍ତର ଅନ୍ତରାଳରେ ଗୋଟିଏ ସାଧାରଣ ଅଭାବବୋଧ—ଗ୍ଲାନିଜଡ଼ିତ ସମସ୍ତଙ୍କ ପ୍ରାଣକୁ ସ୍ପନ୍ଦିତ ଏବଂ ଆଲୋଡ଼ିତ କରୁଅଛି । କେବଳ ସେତିକି ନୁହେ—ବାହାରୁ ଜାଗରଣବାର୍ତ୍ତା ଆସି କର୍ଣ୍ଣକୁହରରେ ପ୍ରବେଶ କରୁଅଛି—ଭାରତର ଅପରାପର ପ୍ରଦେଶସମୂହ ଜାଗ୍ରତ ହୋଇ ଜାତୀୟ ଜୀବନ-ପଥରେ—ଧନରେ, ଜ୍ଞାନରେ, ଧର୍ମରେ, ଶକ୍ତିରେ ଅଗ୍ରସର ହେଉଅଛନ୍ତି ଏବଂ ସେମାନେ ଉତ୍କଳକୁ ମଧ୍ୟ ସହଗାମୀ ହେବାକୁ ନାନା ଭାବରେ ଆହ୍ୱାନ କରୁଅଛନ୍ତି । ଯେ ଯାହା କହନ୍ତୁ, ଯେତେ ଅସ୍ୱୀକାର କରନ୍ତୁ, ଯେତେ ମାୟାଜାଲ ବିସ୍ତାର କରନ୍ତୁ, ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ସମଗ୍ର ଭାରତର ପ୍ରାଣ ଏକ ମହାସୂତ୍ରରେ ବନ୍ଧା । ଏକଥା ଧ୍ରୁବ ସତ୍ୟ ଯେ ସମଗ୍ର ଭାରତର ଭାଗ୍ୟ ଏକ ସୁଦୃଢ଼ ପାଷାଣଦ୍ୱାର ପିହିତ । ସମସ୍ତେ ଏକଲକ୍ଷ୍ୟ ଏକପ୍ରାଣ ହୋଇ ସମଗ୍ର ଶକ୍ତି ନିୟୋଜିତ କରି ଏହି ପାଷାଣ ଉନ୍ମୋଚନ କରି ନ ପାରିଲେ ତାହାର ଦୁର୍ଦ୍ଦଶା ଯିବ ନାହିଁ—ସୁଦିନ ଆସିବ ନାହିଁ । ବିଚ୍ଛିନ୍ନତା, ଏକଦେଶଦର୍ଶିତା ଆମ୍ଭମାନଙ୍କର ମୃତ୍ୟୁ ଘଟାଇଅଛି—କଦାପି ଜୀବନ ଦେଇ ପାରିବ ନାହିଁ । ଉତ୍କଳର ଗୋଟିଏ ନିଭୃତ ପ୍ରାଣର ମିଳନ ଆଜି ଗୃହେ ଗୃହେ ବ୍ୟାପ୍ତ ହୋଇଅଛି, ସୁଦୂର ଆହ୍ୱାନଧ୍ୱନି ଆଜି ଗୃହେ ଗୃହେ ପ୍ରସାରିତ ହୋଇଅଛି, ତେଣୁ ସମ୍ମିଳନୀର ଉତ୍ପତ୍ତି । ଏହି ସମ୍ମିଳନୀ ସହସ୍ର ସହସ୍ର ଉତ୍କଳୀୟ ପ୍ରାଣରେ ନବ ଆଶା ନବ ଆକାଂକ୍ଷା ଜାଗ୍ରତ କରିଅଛି, ଏଥିରେ ସନ୍ଦେହ ନାହିଁ । ଏହି ମିଳନ ଯେତିକି ସଂପ୍ରସାରିତ ଓ ସୁସ୍ପଷ୍ଟ ହେବ, ଉତ୍କଳୀୟ ପ୍ରାଣର ଆଶା ଓ ଆକାଂକ୍ଷା ଯେତିକି ଉନ୍ନତ ଓ ପ୍ରବଳ ହେବ, ସମ୍ମିଳନୀ ସେତିକି ସବଳ ଓ ସଫଳ ହେବ ।

ଶିଶୁ ଭୂମିଷ୍ଠ ହେଲେ ଆତ୍ମୀୟ ସ୍ୱଜନମାନଙ୍କ

ପ୍ରାଣରେ ଆନନ୍ଦ ଲାଭ ହେବା ସ୍ୱାଭାବିକ, ମାତ୍ର ସଙ୍ଗେ ସଙ୍ଗେ ପ୍ରତ୍ୟେକଙ୍କ ମସ୍ତକରେ ଯେ ଗୁରୁଦାୟିତ୍ୱ ଆସି ପଡ଼ିଲା, ତାହା ସମ୍ୟକ୍‌ରୂପେ ଅନୁଭବ କରିବା ଏବଂ ତଦନୁଯାୟୀ କାର୍ଯ୍ୟ କରିବା ସର୍ବଥା ବିଧେୟ । ଯାହା ଶିଶୁଜୀବନ-ପକ୍ଷରେ ପ୍ରୟୋଜନ—ତାହାର ରକ୍ଷଣ ଓ ପୋଷଣର ଅନୁକୂଳ, ତହିଁର ବ୍ୟବସ୍ଥା କରିବାକୁ ହେବ; ସର୍ବପ୍ରକାର ପ୍ରତିବନ୍ଧକ ଓ ପ୍ରତିକୂଳ ଅବସ୍ଥାରୁ ଯତ୍ନପୂର୍ବକ ଶିଶୁଟିକୁ ରକ୍ଷା କରିବାକୁ ହେବ । ଏଥିପାଇଁ କେତେ ଚେଷ୍ଟା, କେତେ ଆଲୋଚନା, କେତେ ଶ୍ରମ, କେତେ ସ୍ୱାର୍ଥତ୍ୟାଗ, କେତେ ଶିକ୍ଷା, ସହିଷ୍ଣୁତା ଆବଶ୍ୟକ, ତାହା ସହଜରେ ଅନୁମେୟ । ଘରେ ଶିଶୁ ଜନ୍ମିଅଛି ବୋଲି ଦ୍ୱାରରୋଧ କରି ଦେଇ ବସିଲେ ଚଳିବ ନାହିଁ—କିମ୍ବା କେବଳ ଆନନ୍ଦରେ ଅଧୀର ହୋଇ ନୃତ୍ୟ କଲେ ହେବ ନାହିଁ । ଏହା କେବଳ ଅନଭିଜ୍ଞତା ଓ ଅଦୂରଦର୍ଶିତାର ଲକ୍ଷଣ । ଉତ୍କଳ-ଗୃହରେ ସମ୍ମିଳନୀ-ଶିଶୁର ଜନ୍ମ ଜାତୀୟ ଜୀବନରେ ଗୋଟିଏ ସ୍ମରଣୀୟ ଘଟଣା । ଏ ତ ସାମାନ୍ୟ ଶିଶୁ ନୁହେ--ଜାତୀୟ ଆକାଂକ୍ଷା ନବଶିଶୁ ମୂର୍ତ୍ତି ପରିଗ୍ରହ କରି ଭୂମିଷ୍ଠ ହୋଇଅଛି—ଯଥା-କାଳରେ ଏହି ଶୁଭସମାଚାର ଚତୁର୍ଦ୍ଦିଗରେ ଘୋଷିତ ହୋଇଅଛି । ପ୍ରତିବାସିମାନେ ସୁଦ୍ଧା ଉଦ୍‌ଗ୍ରୀବ ହୋଇ ଏହା ଆଡ଼କୁ ଅନାଇ ରହିଅଛନ୍ତି ଏବଂ ଏହାର ଆକାର ପ୍ରକାର ପର୍ଯ୍ୟାଲୋଚନା କରୁଅଛନ୍ତି । କିଏ କହେ ଏହାର ଜୀବନ କେବଳ ଉତ୍କଳପାଇଁ—ଏହାର କାର୍ଯ୍ୟକ୍ଷେତ୍ର ଉତ୍କଳର ଚତୁଃସୀମାମଧ୍ୟରେ ଆବଦ୍ଧ । କାଲି ସକାଳେ ଏ ଶିଶୁ ଅନ୍ୟ ପାଞ୍ଚ ଜଣ ସମଜାତୀୟ ଓ ସମଭାବାପନ୍ନ ଶିଶୁଙ୍କ ସହିତ ବ୍ୟାୟାମରେ ପ୍ରବୃତ୍ତ ହେବ—ଭାରତବର୍ଷର କର୍ମଭୂମିପାଇଁ ସ୍ୱୀୟ ଜୀବନକୁ ପ୍ରସ୍ତୁତ କରିବ । ଏ ତତ୍ତ୍ୱ ଯେ ବୁଝି ନାହିଁ, ଜାତୀୟ ଜୀବନ କଥା ତାହା ନିକଟରେ ଅର୍ଥଶୂନ୍ୟ—ସମ୍ମିଳନୀର ଉଦ୍ଦେଶ୍ୟ ସମ୍ବନ୍ଧରେ ସେ ଅନ୍ଧ । ଉତ୍କଳ ସନ୍ତାନ ବୋଲି ଆମ୍ଭେମାନେ ନିଜକୁ ଗୌରବାନ୍ୱିତ ଜ୍ଞାନ କରୁଁ—ନିଜର କ୍ଷୁଦ୍ର ଜୀବନକୁ ଉତ୍କଳର ପଦତଳେ ସମର୍ପଣ କରିବାକୁ ଶ୍ଳାଘାର ବିଷୟ ମଣୁ, ମାତ୍ର ନିଜର ଭାରତସନ୍ତାନତ୍ୱ ଅନୁଭବ ନ କରିବା ଯାଏ ପ୍ରାଣ ତୃପ୍ତ ହୁଏ ନାହିଁ—ଜାତୀୟ ଜୀବନର ପ୍ରକୃତ ଅର୍ଥ ଅନୁଭୂତ ହୁଏ ନାହିଁ । ଭାରତରୁ ବିଚ୍ଛିନ୍ନ ହେଲେ ଉତ୍କଳର ଉତ୍କଳତ୍ୱ କେଉଁଠାରେ ? ସେ ଯାହା ହେଉ, ଏହି ନବଜ ଶିଶୁର ଜନ୍ମୋତ୍ସବ ୧୯୦୩ ଡିସେମ୍ବର ମାସ ଶେଷ ସପ୍ତାହରେ ମହାସମାରୋହରେ ଅନୁଷ୍ଠିତ ହୋଇ ଯାଇଅଛି—ରାଜା ପ୍ରଜା, ଧନୀ ଦରିଦ୍ର, ପଣ୍ଡିତ ମୂର୍ଖ, ସମସ୍ତେ ମିଳିତ ହୋଇ ପ୍ରଫୁଲ୍ଲଚିତ୍ତରେ ଉତ୍ସବ-ବିଧି ପାଳନ କରି ଶିଶୁର ବର୍ଷକର ଲାଳନ ପାଳନର ବ୍ୟବସ୍ଥା କରି ଦେଇ ସ୍ୱସ୍ୱ ଗୃହକୁ ଚାଲି ଗଲେ । ଭାରପ୍ରାପ୍ତ ବ୍ୟକ୍ତିମାନେ ସେ ବ୍ୟବସ୍ଥା କିଏ କିପରି ପାଳନ କରୁଅଛନ୍ତି, ବର୍ଷକ ମଧ୍ୟରେ କେହି ସେ ସମ୍ବାଦ ଗ୍ରହଣ କରି ଥିଲେ କି ନାହିଁ, ଆମ୍ଭମାନଙ୍କୁ ଜଣା ନାହିଁ । ଏତେ କହିପାରୁଁ, ଏ ବିଷୟରେ ଉପଯୁକ୍ତ ଉଦ୍‌ଯୋଗ, ଆକୁଳତା ଲକ୍ଷିତ ହୋଇ ନାହିଁ—ବରଂ ସର୍ବତ୍ର ଅତି ଶୋଚନୀୟ ଔଦାସୀନ୍ୟ ପ୍ରତ୍ୟକ୍ଷ ହୋଇଅଛି । ଶିଶୁ କେଉଁ ଘର କଣରେ ଲୁଚି ରହିଥିଲା, ତାହାର ଖାଦ୍ୟ ପାନୀୟର କି ବ୍ୟବସ୍ଥା ହେଉଅଛି, ସ୍ୱାସ୍ଥ୍ୟରକ୍ଷାର କି ବିଧାନ ହେଉଅଛି ଏହାର ସନ୍ଧାନ କେହି କରୁଥିଲେ କି ? ଜଣେ ଅଧେ ଲୋକଙ୍କ ଉପରେ ଏଡ଼େ ଗୁରୁ ଭାର ନ୍ୟସ୍ତ କରି ଦେଇ ନିଶ୍ଚିନ୍ତ ରହିବା ଦାୟିତ୍ୱ-ଜ୍ଞାନର ପରିଚାୟକ ନୁହେ । ଜାତୀୟ ଜୀବନ ପକ୍ଷରେ ଏହା ଆଦୌ ଶୋଭନୀୟ ନୁହେ । ଜାତୀୟ ଜୀବନ ଦୂର ଦନର କୋଳାହଳରେ ପ୍ରକାଶ ପାଏ ନାହିଁ,—ହୃଦୟର ଶୋଣିତ ଦାନରେ ପରିପୁଷ୍ଟ ଓ ବର୍ଦ୍ଧିତ ହୁଏ । ସେ ସବୁ ଅତୀତ କଥା ଥାଉ । ସେଦିନ ସମ୍ମିଳନୀର ବାର୍ଷିକ ଜନ୍ମୋତ୍ସବ ଯଥାବିଧି ଅନୁଷ୍ଠିତ

ହୋଇଗଲା—ନାନା ସ୍ଥାନର ନାନା ଶ୍ରେଣୀର ପ୍ରତିନିଧିମାନେ ସମ୍ମିଳିତ ହୋଇ ବିଧିପୂର୍ବକ ଅନୁଷ୍ଠାନ ପାଳନ କରି ଚାଲିଗଲେ । କେବଳ ଭାବ ଯେନ ଯାଇଅଛନ୍ତି, ସମ୍ମିଳନୀର ଭବିଷ୍ୟତ ସମ୍ବନ୍ଧରେ କି କି ଧାରଣା ପୋଷଣ କରୁଅଛନ୍ତି, କହି ନ ପାରୁଁ । ଅଧିବେଶନର କାର୍ଯ୍ୟାବଳୀରୁ କିମ୍ବା ପ୍ରତିନିଧିମାନଙ୍କର ଆଚାର ଇଙ୍ଗିତରୁ ଉକ୍ତ ତଥ୍ୟ ସଂଗ୍ରହ କରିବାର କିଛି ସୁଯୋଗ ମଧ୍ୟ ପାଇ ନାହୁଁ । ମାତ୍ର ଏତିକି ସୁସ୍ପଷ୍ଟ ରୂପେ କହି ପାରୁଁ ଯେ ବର୍ତ୍ତମାନ ଆଉ ଔଦାସୀନ୍ୟ ଓ ଅବହେଳା ଦ୍ୱାରା ଚଳିବ ନାହିଁ । ସମ୍ମିଳନର ବୟୋବୃଦ୍ଧି ସଙ୍ଗେ ସଙ୍ଗେ ଆମ୍ଭମାନଙ୍କ ଦାୟିତ୍ୱ ପରିମାଣ ବଢ଼ୁଅଛି । ବର୍ତ୍ତମାନ ସୁନିର୍ଦ୍ଦିଷ୍ଟ ଓ ସୁସଙ୍ଗତ ବ୍ୟବସ୍ଥା ପ୍ରଣୟନ କରି ସମ୍ମିଳନୀକୁ ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ କରିବାର ସମୟ ଉପସ୍ଥିତ ହୋଇଅଛି । ତାହା ନ ହେଲେ ତାହାର ଦାୟିତ୍ୱ-ଜ୍ଞାନ ସୁସ୍ପଷ୍ଟ ହେବ ନାହିଁ । ଆମ୍ଭେମାନେ ଯେତେଦୂର ଦୃଷ୍ଟି ପାଉଅଛୁଁ, ଏପର୍ଯ୍ୟନ୍ତ ଅଧିକାଂଶ ସ୍ଥଳରେ ଉକ୍ତ ଗୁରୁ ଦାୟିତ୍ୱ-ଜ୍ଞାନ ଜନ୍ମି ନାହିଁ—ଯେଉଁଠାରେ ଜନ୍ମିଅଛି, ସେଠାରେ ଅଳ୍ପାଧିକ ପରିମାଣରେ କୁଣ୍ଠିତାକ୍ରାନ୍ତ ହୋଇ ରହିଅଛି । ସମବେତ ଅନୁଷ୍ଠାନ ପକ୍ଷରେ ଏହା ନିତାନ୍ତ ମାରାତ୍ମକ ଅବସ୍ଥା ।

ଆମ୍ଭେମାନେ ଆଜି ସମ୍ମିଳନୀର ବିଗତ ଅଧିବେଶନର କାର୍ଯ୍ୟପ୍ରଣାଳୀ ସଂକ୍ଷେପରେ ସମାଲୋଚନା କରି ଏହାର ଭବିଷ୍ୟତ ପରିଚାଳନ ସମ୍ବନ୍ଧରେ କେତେଗୁଡ଼ିଏ ସଙ୍କେତ ମାତ୍ର ଦେବାକୁ ମନସ୍ଥ କରିଅଛୁଁ । ଏଠାରେ ଗୋଟିଏ କଥା ଉଲ୍ଲେଖ କରିବା ଆବଶ୍ୟକ । ଆମ୍ଭମାନଙ୍କ ଦେଶରେ ସମାଲୋଚନା ନାମ ଶୁଣିଲେ ଅଧିକାଂଶ ବ୍ୟକ୍ତି ଚମକି ଉଠନ୍ତି ଏବଂ କେହି କୌଣସି ବିଷୟରେ ଭିନ୍ନ ମତ ବ୍ୟକ୍ତ କଲାମାତ୍ରେ ତାହାକୁ ବିରୋଧୀ ବୋଲି ଘୋଷଣା କରି ବସନ୍ତି । ଏହା ନିତାନ୍ତ ଅସ୍ୱାଭାବିକ ଅବସ୍ଥା ଓ ମାନସିକ ଦୌର୍ବଲ୍ୟର ପରିଚାୟକ । ଯାହା ସାଧାରଣଙ୍କ ନିମିତ୍ତ ଅଭିପ୍ରେତ ଏବଂ ଯହିଁରେ ସାଧାରଣଙ୍କର ସମ୍ପର୍କ ରହିଅଛି, ତାହାର ସମାଲୋଚନା ନ ହେବା ବରଂ ଅନିଷ୍ଟକର । ଯେଉଁମାନେ ସାଧାରଣ କାର୍ଯ୍ୟ କରିବା ପାଇଁ ପଦାକୁ ବାହାରନ୍ତି, ସେମାନଙ୍କର ଯଥେଷ୍ଟ ପରିମାଣରେ ଧୈର୍ଯ୍ୟ ଓ ସହିଷ୍ଣୁତା ଶିକ୍ଷା କରିବାର ନିତାନ୍ତ ଉଚିତ । ସେମାନଙ୍କର ସର୍ବଦା ସ୍ମରଣ ରଖିବା ଉଚିତ ଯେ ସେମାନଙ୍କର ଯେପରି ସ୍ୱାଧୀନତା ଅଛି, ଅନ୍ୟର ମଧ୍ୟ ସେହିପରି ସ୍ୱାଧୀନତା ଅଛି । ବିଶେଷତଃ ସମ୍ମିଳନୀ ସମ୍ବନ୍ଧରେ ଆମ୍ଭେମାନେ ଅନେକ ବନ୍ଧୁଙ୍କର ମନର ଭାବ ଦେଖି ଅବାକ୍ ହୋଇଥିଲୁଁ । ପ୍ରସଙ୍ଗକ୍ରମେ କୌଣସି ପ୍ରକାର ପ୍ରତିକୂଳ ମତ ଉତ୍ଥାପିତ ହେବା ମାତ୍ରେ ସେମାନଙ୍କ ପ୍ରାଣରେ ନାନା ଆଶଙ୍କା ଆସି ଉପସ୍ଥିତ ହୁଏ—କେଜାଣି ପରମୁହୂର୍ତ୍ତରେ ସବୁ ଭାଙ୍ଗି ଚୂନା ହୋଇଯିବ କି ? ଆମ୍ଭେମାନେ ଜିଜ୍ଞାସା କରୁଁ, ସମ୍ମିଳନୀ କଣ ଗୋଟିଏ କ୍ଷୁଦ୍ର କାଚପିଆଲା ଯେ ଈଷତ୍ ଆଘାତ ମାତ୍ରେ ଖଣ୍ଡ ବିଖଣ୍ଡ ହୋଇଯିବ ? ଯଦି ଯଥାର୍ଥରେ କାଚପିଆଲା ହୋଇଥାଏ, ତେବେ ତାହା ଆଜି ଭାଙ୍ଗି ଚୂନା ହୋଇଯାଉ, ତାହାର କିଛି କ୍ଷତି ନାହିଁ—ତଦ୍ୱାରା ଏ ଜଗତରେ କୌଣସି କାର୍ଯ୍ୟ ସାଧିତ ହେବ ନାହିଁ ! ଆଉ ଏହା ଯେବେ ଉତ୍କଳଖଣ୍ଡର ଜାତୀୟ ଜୀବନର ଅଭିବ୍ୟକ୍ତି ହୋଇ ଥାଏ—ଜାତୀୟ ଆକାଂକ୍ଷାର ବହିଃପ୍ରକାଶ ହୋଇ ଥାଏ, ତେବେ ଘାତପ୍ରତିଘାତ ଓ ସଂଘର୍ଷଣଦ୍ୱାରା ବଳିଷ୍ଠ ଓ ଦୃଢ଼ିଷ୍ଠ ହେବ, ଏଥିରେ ବିନ୍ଦୁମାତ୍ର ସଂଶୟ ନାହିଁ । ଜାତୀୟ ଅନୁଷ୍ଠାନରେ ଜାତିର ପ୍ରତ୍ୟେକ ବ୍ୟକ୍ତିର ଷୋଳ ଅଣା ଅଧିକାର । ସୁତରାଂ ମୋର ଚକ୍ଷୁରେ ଯାହା ଅନିୟମ, ଅବିଚାର ବା ଅସଦ୍ବ୍ୟବହାର ବୋଲି ପ୍ରତୀୟମାନ ହେବ, ତାହା ମୁଁ ସରଳଭାବରେ ପ୍ରକାଶ ନ କରିବି କାହିଁକି ? ସେ ସବୁ କଥା ଥାଉ, ବର୍ତ୍ତମାନ ପ୍ରକୃତ ପ୍ରସ୍ତାବର ଅବତାରଣା କରାଯାଉ । ଆମ୍ଭେମାନେ କେବଳ ପ୍ରଧାନ ଓ

ନିତାନ୍ତ ପ୍ରୟୋଜନୀୟ ବିଷୟଗୁଡ଼ିକର ଆଲୋଚନା କରନ୍ତୁ, ଅବାନ୍ତର ବିଷୟମାନ ଆଲୋଚନା କରିବାର ସ୍ଥାନ ଆମ୍ଭମାନଙ୍କର ନାହିଁ—ପ୍ରବୃତ୍ତି ମଧ୍ୟ ନାହିଁ ।

ପ୍ରଥମ କଥା—ଅଧିବେଶନର ଆୟୋଜନ ଅତି ଅଳ୍ପ କାଳ ମଧ୍ୟରେ ହେବାରୁ ସକଳ ବିଷୟରେ ସର୍ବସାଧାରଣ ସମ୍ମିଳନରୂପେ ଚେଷ୍ଟା କରିବାକୁ ଅବସର ପାଇପାରି ନାହାନ୍ତି । ବିଶେଷତଃ ବିଷୟନିର୍ବାଚନ ସମ୍ବନ୍ଧରେ ସକଳ ଅଞ୍ଚଳର ଲୋକମାନଙ୍କର ମତାମତ ଗ୍ରହଣ କରିବା ସର୍ବଥା ବାଞ୍ଛନୀୟ । ଏ ସମ୍ବନ୍ଧରେ କାର୍ଯ୍ୟନିର୍ବାହକ ସମିତିର ଔଦାସୀନ୍ୟ ଓ ଅବହେଳା ନିତାନ୍ତ ଶୋଚନୀୟ । ସଭାପତି-ନିର୍ବାଚନ ମଧ୍ୟ ବହୁପୂର୍ବରୁ ହେବାର ଉଚିତ ଥିଲା । ଏ ସମ୍ବନ୍ଧରେ କାର୍ଯ୍ୟନିର୍ବାହକ ସମିତି ଯେପରି ଲଣ୍ଡଭଣ୍ଡ ହୋଇଥିଲେ, ସେପରି ହେବା କଦାଚ ଶୋଭନୀୟ ନୁହେ । ଅନ୍ତତଃ ଅଧିବେଶନର ଦୁଇମାସ ପୂର୍ବରୁ ସଭାପତି ସ୍ଥିର କରି କାର୍ଯ୍ୟବିବରଣ ଓ ଆଲୋଚ୍ୟ ବିଷୟ ତାଙ୍କୁ ଜଣାଇ ଦେବା ଉଚିତ । ତାହାହେଲେ ସଭାପତି ନିଜ ବକ୍ତୃତା ପ୍ରସ୍ତୁତ କରିବାର ଉପଯୁକ୍ତ ସୁଯୋଗ ଓ ଅବସର ପାଇ ପାରିବେ । ସମ୍ମିଳନୀ ଯେ କେବଳ ଭାବୁକତା ପ୍ରକାଶର ସ୍ଥଳ ନୁହେ, ଏକଥାଟି ସମସ୍ତଙ୍କର ସ୍ମରଣ ରଖିବା ଉଚିତ । ଅତିଥିସେବା ଏବଂ ସେବକଦଳ ସଂଗଠନ ବିଷୟରେ ସମିତିର କାର୍ଯ୍ୟ ସନ୍ତୋଷଜନକ ହୋଇଅଛି ବୋଲି ଆମ୍ଭେମାନେ କହି ନ ପାରୁଁ । ଅବଶ୍ୟ ଏହା ପ୍ରତ୍ୟେକ ଉତ୍କଳୀୟଙ୍କର ନିଜର କାର୍ଯ୍ୟ । ତଥାପି ଯେତେବେଳେ ଯେଉଁ ସ୍ଥାନରେ ଅଧିବେଶନ ହେବ, ସେତେବେଳେ ସେହି ସ୍ଥାନର ଲୋକମାନଙ୍କ ଉପରେ ଅତିଥିଚର୍ଯ୍ୟାର ପବିତ୍ର କର୍ତ୍ତବ୍ୟ ବିଶେଷଭାବରେ ନ୍ୟସ୍ତ ଏବଂ ସେଥିପାଇଁ ଉପଯୁକ୍ତ ବ୍ୟବସ୍ଥା କରିବାକୁ ସେମାନେ ସମ୍ପୂର୍ଣ୍ଣ ବାଧ୍ୟ । ଅଧିବେଶନର ବ୍ୟୟ ତତ୍କାଳୀନ ସ୍ଥାନୀୟ ଚାନ୍ଦାଦ୍ୱାରା ସଂଗୃହୀତ ହେବା ଏବଂ ଅତିଥିଚର୍ଯ୍ୟାର ବ୍ୟୟ ଉକ୍ତ ବ୍ୟୟର ଅନ୍ତର୍ଗତ ହେବା ଏକାନ୍ତ ବାଞ୍ଛନୀୟ । ଏଥିରେ ବିଭିନ୍ନ ସ୍ଥାନର ଅଧିବାସୀମାନଙ୍କ ମତ ପ୍ରତି ଅପେକ୍ଷା ରଖିବାର ଲେଶମାତ୍ର ପ୍ରୟୋଜନ ନାହିଁ । ସେବକଦଳ ସଂଗଠନ ବିଷୟରେ ବ୍ୟକ୍ତିଗତ ଆଗ୍ରହର ବଶବର୍ତ୍ତୀ ହୋଇ ଅନେକଗୁଡ଼ିଏ ଅନୁରାଗୀ ସେବାର୍ଥୀଙ୍କୁ ବଞ୍ଚିତ କରିବା ସମିତି ପକ୍ଷରେ ସୁବିବେଚନାର କାର୍ଯ୍ୟ ହୋଇ ନାହିଁ ।

ଦ୍ୱିତୀୟ କଥା—ବାର୍ଷିକ କାର୍ଯ୍ୟବିବରଣ ଆମ୍ଭମାନଙ୍କୁ ଆଶାନୁରୂପ ବୋଧ ହେଲା ନାହିଁ । ବିଗତ ବର୍ଷ ମଧ୍ୟରେ ନାନାସ୍ଥାନରେ ଅନେକଗୁଡ଼ିଏ ଶାଖା-ସଭା ସଂସ୍ଥାପନ ସମ୍ମିଳନୀର ସର୍ବଶ୍ରେଷ୍ଠ ଏବଂ ଅତି ପ୍ରୟୋଜନୀୟ କାର୍ଯ୍ୟ ମଧ୍ୟରେ ପରିଗଣିତ ହୋଇ ପାରେ । ତାହା ଛଡ଼ା ଅନ୍ୟ ଯାହା ହୋଇଅଛି ତାହାକୁ ଆମ୍ଭେମାନେ ବିଶେଷ ଉଚ୍ଚ ସ୍ଥାନ ଦେଇ ପାରୁ ନାହୁଁ । ତାହା ଏପର୍ଯ୍ୟନ୍ତ ନିତାନ୍ତ ସଙ୍କୀର୍ଣ୍ଣ ସୀମା ମଧ୍ୟରେ ଆବଦ୍ଧ ରହିଅଛି । କାର୍ଯ୍ୟବିବରଣର ମୂଳରୁ ଶେଷ ପର୍ଯ୍ୟନ୍ତ ପ୍ରାୟ ସର୍ବତ୍ର ଦେଖିଲୁଁ, ସମ୍ପାଦକ ମହାଶୟ ଏପରି କଲେ, ସେପରି କଲେ, ଏହା ଆଣିଲେ, ତାହା ଆଣିଲେ, ଇତ୍ୟାଦି । ତେବେ ଅନ୍ୟ ୮।୯ ଜଣ ସମ୍ପାଦକ ଏବଂ କାର୍ଯ୍ୟନିର୍ବାହକ ସମିତି କଣ କରୁଥିଲେ ? କେଉଁ ନିଗୂଢ଼ ନିବନ୍ଧନରେ ସୁଖରେ ନିଦ୍ରିତ ଥିଲେ ? ଜଣେ ଲୋକର ମସ୍ତକରେ ଏତେଗୁଡ଼ିଏ ଗୁରୁଭାର ପକାଇ ଦେଇ ସେମାନେ ବର୍ଷଯାକ ନିଶ୍ଚିନ୍ତ ମନରେ ଆହାର ବିହାର କରୁଥିଲେ କିପରି ? ସମ୍ମିଳନୀର ପ୍ରଥମ ଅଧିବେଶନରେ ଯେ ବିଭିନ୍ନ ବିଭାଗରେ ପ୍ରକାଣ୍ଡ କମିଟିମାନ ଗଠିତ ହୋଇଥିଲା, ସେଗୁଡ଼ିକ ବିଗତ ବର୍ଷ ମଧ୍ୟରେ କିପରି ଗୁରୁ-ଦାୟିତ୍ୱ-ଜ୍ଞାନ ସହିତ କର୍ତ୍ତବ୍ୟ ପାଳନ କରିଥିଲେ ତାହାର ନିଦର୍ଶନ କିଛି ପାଇଲୁଁ ନାହୁଁ । ଶାଖା-ସଭାଗୁଡ଼ିକର କାର୍ଯ୍ୟର ପରିଚୟ କିଛି କାର୍ଯ୍ୟବିବରଣ ମଧ୍ୟରେ ନାହିଁ । ସମ୍ଭବତଃ ଅଧିକାଂଶ ସଭା ବର୍ଷର ଶେଷଭାଗରେ ପ୍ରତିଷ୍ଠିତ

ହୋଇଥିବାରୁ କୌଣସି କାର୍ଯ୍ୟ କରିବାର ଅବସର ପାଇ ନାହାନ୍ତି । ତେବେ ଗୋଟିଏ କଥା ଆମ୍ଭମାନଙ୍କୁ ଅଦ୍ଭୁତ ଲାଗିଲା । ପୁରୀ ସହରର ସଭାଟି ପ୍ରାୟ ବର୍ଷ ଆରମ୍ଭରୁ ସ୍ଥାପିତ ହୋଇଥିଲା ଏବଂ ପ୍ରତି ମାସରେ ତାହାର ଗୋଟିଏ ଲେଖାଏ ଅଧିବେଶନ ହୋଇଅଛି । ଉକ୍ତ ସଭା ନିଜ କ୍ଷୁଦ୍ର ସୀମା ମଧ୍ୟରେ କେତେଗୁଡ଼ିଏ ହିତକର କାର୍ଯ୍ୟ ପ୍ରତି ମଧ୍ୟ ଦୃଷ୍ଟି ଦେଇଅଛନ୍ତି । ଆମ୍ଭେମାନେ ବିଶ୍ୱସ୍ତସୂତ୍ରରୁ ଶୁଣିଅଛୁଁ, ଉକ୍ତ ସଭାର ପ୍ରତି ମାସର ଅଧିବେଶନର ବିବରଣ ନିୟମିତରୂପେ କଟକର ମୂଳ ସଭାକୁ ଆସିଅଛି ଏବଂ ଗୋଟିଏ ସ୍ୱତନ୍ତ୍ର ବାର୍ଷିକ ବିବରଣ ମଧ୍ୟ ଯଥାସମୟରେ ଆସିଥିଲା । ସମ୍ମିଳନୀର କାର୍ଯ୍ୟବିବରଣ ମଧ୍ୟରେ ତାହାର ସ୍ଥାନ ହେଲା ନାହିଁ କାହିଁକି ? ପରିଶେଷରେ କାର୍ଯ୍ୟବିବରଣ ମଧ୍ୟରେ ଆୟ ବ୍ୟୟର ଗୋଟିଏ ସ୍ଥୂଳ ବିବରଣ ରହିବା ନିତାନ୍ତ ଉଚିତ ଥିଲା—ତଦଭାବରୁ ବିବରଣଟିର ବିଶେଷ ଅଙ୍ଗହାନି ହୋଇ ଅଛି । ସାଧାରଣତଃ ଏହାହିଁ ବିଜ୍ଞାପିତ ହୋଇଅଛି ଯେ କାର୍ଯ୍ୟନିର୍ବାହକ ସମିତି ବ୍ୟୟ-ଭାର ବହନ କରିଅଛନ୍ତି । ମାତ୍ର ଉକ୍ତ ସମିତି କେବେ ଏ ବିଷୟରେ କିଛି ଆଲୋଚନା କରିଅଛନ୍ତି କି ? ଆୟ ବ୍ୟୟର ମାତ୍ରା ସମିତିର ଅନେକ ସଭ୍ୟଙ୍କ ଅଗୋଚର ! କାର୍ଯ୍ୟନିର୍ବାହକ ସମିତି କେବେ କୌଣସି ସୀମା ବା ଉପାୟ ନିରୂପଣ କରିଅଛନ୍ତି କି ? ତେବେ ଏ ଦଣ୍ଡ କାହା ହାତରେ ? ସମ୍ମିଳନୀ ଜଣକର କାର୍ଯ୍ୟ ନୁହେ ବା ଦଳକର ବ୍ୟାପାର ନୁହେ । ତେବେ ଏହାର ପ୍ରଧାନ ସମାସ୍ୟା ସମ୍ବନ୍ଧରେ ସମସ୍ତେ ଅନ୍ଧ ଓ ମୂକ ହୋଇ ବସିଅଛନ୍ତି କିପରି ? ଅଧିବେଶନର ଏବଂ ଅନୁଷ୍ଠିତ ବା ଅନୁଷ୍ଠେୟ କାର୍ଯ୍ୟାବଳୀର ବ୍ୟୟ ସମ୍ବନ୍ଧରେ ସର୍ବସାଧାରଣଙ୍କର ସୁସ୍ପଷ୍ଟ ଧାରଣା ହେବା ଏକାନ୍ତ ପ୍ରୟୋଜନୀୟ । ଏ ପର୍ଯ୍ୟନ୍ତ ତାହାର ଆଭାସ ସୁଦ୍ଧା ସାଧାରଣଙ୍କୁ ଦିଆ ଯାଇ ନାହିଁ । ଆମ୍ଭେମାନେ ଏହାକୁ ସୁବଗ୍ର ବୋଲି କହି ନ ପାରୁଁ । ଏଥିରେ ଜାତୀୟ ଉଦାସୀନତା ଭାଙ୍ଗିବ ନାହିଁ ବା ଜାତୀୟ କର୍ତ୍ତବ୍ୟ-ଜ୍ଞାନ ଜନ୍ମିବ ନାହିଁ ।

ତୃତୀୟ କଥା— ଧରକୋଟାଧୀଶ୍ୱର ଶାନ୍ତ ସୁଶୀଳ ଉଦାରହୃଦୟ ରାଜା ଶ୍ରୀ ମଦନମୋହନ ସିଂହ ଦେବ ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ ସଭାପତି କାର୍ଯ୍ୟ ସୁଚାରୁରୂପେ ନିର୍ବାହ କରି ସମସ୍ତଙ୍କର ପ୍ରୀତି ଓ ଶ୍ରଦ୍ଧା ଲାଭ କରିଅଛନ୍ତି । ତାଙ୍କର ବକ୍ତୃତା ସଂକ୍ଷିପ୍ତ, ସାରଗର୍ଭ ଓ ନାନା ପ୍ରୟୋଜନୀୟ ବିଷୟର ସୂକ୍ଷ୍ମ ଆଲୋଚନା ଓ ସହଜ ମୀମାଂସାରେ ପରିପୂର୍ଣ୍ଣ— ସେଥିରେ ଭାବୁକତା ନାହିଁ, ଆଡ଼ମ୍ବର ନାହିଁ, ଅସ୍ଥାଲନ ନାହିଁ । ଜାତୀୟ ଏକତା, କୃଷି, ଶିଳ୍ପ, ବାଣିଜ୍ୟ, ବିଦ୍ୟାଶିକ୍ଷା, ସ୍ତ୍ରୀଶିକ୍ଷା, ସମାଜସଂସ୍କାର, ଭାଷା, ସାହିତ୍ୟ, ଇତ୍ୟାଦି ବିଷୟମାନ ଅତି ସୁସଂଯତଭାବରେ ଆଲୋଚନା କରି ରାଜା ମହୋଦୟ ସ୍ୱୀୟ ମାନସିକ ସୁଶିକ୍ଷାର ପରିଚୟ ଦେଇଅଛନ୍ତି । ଧର୍ମ ବିଷୟରେ ତାଙ୍କର ଅତି ଉଦାର ଓ ଉଚ୍ଚମତ ଦେଖି ଆମ୍ଭେମାନେ ଅତିଶୟ ପ୍ରୀତି ଲାଭ କରିଅଛୁଁ । ସଭା ସଂଗଠନ ସମ୍ପର୍କରେ ନିୟମାବଳୀ ପ୍ରଣୟନ କଥାର ଅବତାରଣାରୁ ତାଙ୍କର ଦୂର ଦୃଷ୍ଟିର ସୁନ୍ଦର ଆଭାସ ମିଳୁଅଛି । ସାଧାରଣ ଶିକ୍ଷାବିସ୍ତାର ପ୍ରତି ସର୍ବସାଧାରଣଙ୍କର ସମଧିକ ଦୃଷ୍ଟି ଆକର୍ଷଣ କରିବା ଅଭିପ୍ରାୟରେ ଉକ୍ତ ବିଷୟଟି ସ୍ୱୀୟ ବକ୍ତୃତାମଧ୍ୟରେ ଦୁଇ ଥର ଅବତାରଣା କରିଅଛନ୍ତି । ଏଥିରୁ ସ୍ପଷ୍ଟ ବୁଝା ଯାଉଅଛି, ଶିକ୍ଷାର ଗୌରବ ସେ କି ପରିମାଣରେ ଅନୁଭବ କରିଅଛନ୍ତି । ସ୍ଥୂଳରେ ସଭାପତିଙ୍କ ବକ୍ତୃତା ସମ୍ମିଳନୀର ଗୌରବ ରକ୍ଷା କରିବାକୁ ସମ୍ପୂର୍ଣ୍ଣ ସମର୍ଥ ହୋଇଅଛି ।

ଚତୁର୍ଥ କଥା—ସମ୍ମିଳନୀର ବିଗତ ଅଧିବେଶନର ନିର୍ବାଚନଗୁଡ଼ିକ ସମ୍ବନ୍ଧରେ ବିସ୍ତୃତ ଆଲୋଚନା କରିବାର ସ୍ଥାନ ଆମ୍ଭମାନଙ୍କର ନାହିଁ । ଅବାନ୍ତର କେତେଟା ପ୍ରସ୍ତାବ ଛାଡ଼ି ଦେଲେ ସ୍ଥୂଳରେ ଅଧିକାଂଶ କାର୍ଯ୍ୟକର ପ୍ରସ୍ତାବମାନ ସମ୍ୟକ୍

ଉପଯୋଗୀ ହୋଇଅଛି । ଧନ୍ୟବାଦ-ପ୍ରସ୍ତାବମାନଙ୍କ ମଧ୍ୟରୁ ଦେଶନିର୍ମାଣବିଷୟକ ପ୍ରସ୍ତାବଟିରେ ଉତ୍କଳ-ହୃଦୟର ନିଗୂଢ଼ ଯୋଗ ରହିଅଛି । ସେ ଶୁଭ ଦିନର ଆଗମନ ପାଇଁ ଉତ୍କଳ ଉଦ୍‌ଗ୍ରୀବ ହୋଇ ଅନାଇ ବସିଅଛି । ଭଗବାନ୍ ସେ ଦିନ ଶୀଘ୍ର ଆନୟନ କରନ୍ତୁ, ଏହି ହୃଦ୍‌ଗତ କାମନା । ଲିଖିତ ପ୍ରସ୍ତାବ ଉପରେ ଲର୍ଡ କର୍ଜନଙ୍କ ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ସ୍ୱର୍ଗୀୟ ଅଭିନନ୍ଦନ-ପ୍ରସ୍ତାବର ଆବଶ୍ୟକତା ଆମ୍ଭେମାନେ କିଛି ବୁଝି ପାରିଲୁଁ ନାହିଁ । ଆମ୍ଭମାନଙ୍କ ମତରେ ଏ କ୍ଷେତ୍ରରେ ନୀରବତା ସୁବିବେଚନାର କାର୍ଯ୍ୟ ହୋଇଥାନ୍ତା । କାର୍ଯ୍ୟକର ପ୍ରସ୍ତାବମାନଙ୍କ ମଧ୍ୟରୁ ମୃତ୍ତିକା-ପରୀକ୍ଷା-ବିଷୟକ ପ୍ରସ୍ତାବ ଆଦୌ ଆଲୋଚିତ ହୋଇ ନାହିଁ । ଆଶ୍ଚର୍ଯ୍ୟର ବିଷୟ, ଅତି ପ୍ରୟୋଜନୀୟ ସାଧାରଣ ଶିକ୍ଷା-ବିସ୍ତାର ପ୍ରସ୍ତାବଟି ସମ୍ମିଳନୀର ସୀମାରୁ ସମ୍ପୂର୍ଣ୍ଣରୂପେ ବହିଷ୍କୃତ ହୋଇଅଛି । ଶିକ୍ଷା ସକଳ ଉନ୍ନତିର ମୂଳ, ଅଥଚ ସମ୍ମିଳନୀ ସେ ସମ୍ବନ୍ଧରେ ବିଗତ ବର୍ଷ କିଛିମାତ୍ର କରି ନାହାନ୍ତି ଏବଂ ଏବର୍ଷ ତାହାର ନାମପର୍ଯ୍ୟନ୍ତ ଉଠାଇ ଦେଇଅଛନ୍ତି । ଏତେ ପ୍ରୟୋଜନୀୟ ବିଷୟଟାକୁ ଉପେକ୍ଷା କରି ମାଟି-ପରୀକ୍ଷାପ୍ରତି ଏପରି ଟାଣ ପଡ଼ିଲେ କାହିଁକି ? ସମ୍ମିଳନୀ ଉତ୍କଳବ୍ୟାପୀ ସ୍ତ୍ରୀ-ଶିକ୍ଷା-ବିସ୍ତାରର ପ୍ରୟୋଜନୀୟତା ଅନୁଭବ କରୁଥିବା ସ୍ଥଳରେ କେବଳ କଟକରେ ଗୋଟିଏ ଆଦର୍ଶ ବାଳିକା-ବିଦ୍ୟାଳୟ ପ୍ରତିଷ୍ଠାର ବ୍ୟବସ୍ଥା କରିବା ସମୁଚିତ ବୋଧ ହେଲା ନାହିଁ । ଅପାତତଃ ଏଥି ସଙ୍ଗେ ସଙ୍ଗେ ଉତ୍କଳବ୍ୟାପୀ ଅନ୍ତଃପୁର-ଶିକ୍ଷାର ଆୟୋଜନ କରି ପାରିଥିଲେ ପ୍ରଭୂତ ଉପକାର ସାଧିତ ହୋଇଥାନ୍ତା । ସ୍ତ୍ରୀଶିକ୍ଷା ସମ୍ବନ୍ଧରେ ଯେଉଁ କମିଟି ଗଠିତ ହୋଇଅଛି, ତାହା ଆମ୍ଭମାନଙ୍କୁ ନିତାନ୍ତ ଅଦ୍ଭୁତ ଲାଗିଲା । କେବଳ ରମଣୀ ହେଲେ ରମଣୀର ସକଳ ଅଭାବ ବୁଝିପାରିବେ ? ଏଥିପାଇଁ ଶିକ୍ଷା, ସାଧନା, ଆଲୋଚନା, ଅଭିଜ୍ଞତା କିଛି ଲୋଡ଼ା ନାହିଁ ? କମିଟି-ନିର୍ବାଚନ ବିଷୟରେ କାର୍ଯ୍ୟନିର୍ବାହକ ସମିତି ନିଜେ କିଛି ବିଚାର କରି ଦେଖିଥିଲେ କି ? ଏତଦ୍‌ବ୍ୟତୀତ କାର୍ଯ୍ୟନିର୍ବାହକ ସମିତିଙ୍କ ନିରୂପିତ କ୍ରମ ଲଙ୍ଘନ କରି ଅଧିବେଶନ-ମଣ୍ଡପରେ ଯେ ଦଶଟି ଗୋଟିଏ କାର୍ଯ୍ୟ ହୋଇଗଲା, ତାହା ମଧ୍ୟ ଆମ୍ଭମାନଙ୍କୁ ଅଦ୍ଭୁତ ଲାଗିଲା । ଏ ସମ୍ବନ୍ଧରେ କେତେକ ରହସ୍ୟ ଆମ୍ଭେମାନେ ବୁଝିପାରି ନାହୁଁ ।

ପଞ୍ଚମ କଥା—ସମ୍ମିଳନୀ-ସଂସୃଷ୍ଟ ପ୍ରଦର୍ଶନୀର ଅବସ୍ଥା ଦେଖି ଆମ୍ଭମାନଙ୍କ ପ୍ରାଣରେ ଅତ୍ୟନ୍ତ କ୍ଳେଶ ଜାତ ହୋଇଅଛି । ପ୍ରଦର୍ଶନୀକୁ ଏପରି ବିକଳାଙ୍ଗ କଲେ କିଏ ? ସମ୍ପାଦକଙ୍କ ବିବରଣରୁ ଅବଗତ ହେଲୁଁ, ସମ୍ମିଳନୀ କେବଳ ସାଧାରଣଙ୍କ ପ୍ରୟୋଜନ ପ୍ରତି ଦୃଷ୍ଟି ରଖି ଦଶଟି ଗୋଟିଏ ବ୍ୟବହାର୍ଯ୍ୟ ବିଷୟରେ ହସ୍ତକ୍ଷେପ କରିବା ଉଚିତ ମନେ କରିଅଛନ୍ତି । ସମ୍ମିଳନୀ ଏ କଥା କେବେ ସ୍ଥିର କଲେ ? କାର୍ଯ୍ୟନିର୍ବାହକ ସମିତିରେ ଏ ବିଷୟଟି କେବେ ଆଲୋଚିତ ହୋଇଥିଲା, ତାହା ଆମ୍ଭମାନଙ୍କ ସ୍ଥୂଳଦୃଷ୍ଟିର ଅଗୋଚର ! ଆମ୍ଭେମାନେ ପଚାରୁଁ, ସୁକୁମାର ଶିଳ୍ପଟା କଣ ଜାତୀୟ ଜୀବନର ବହିର୍ଭୂତ ? ଏହା କି ଜାତୀୟ ଜୀବନର ବିକାଶ-ପଥରେ ଗୋଟିଏ ପ୍ରଧାନ ସହାୟ ନୁହେଁ ? ପ୍ରକୃତ ସଭ୍ୟତାର ଚିରସହଚର ନୁହେଁ ? ଉନ୍ନତି ସଙ୍କୋଚରେ ହୁଏ, କି ପ୍ରସାରଣରେ ହୁଏ ? କଟକର ପୂର୍ବପ୍ରଦର୍ଶନୀଟି କୃଷି-ଶିଳ୍ପ-ପ୍ରଦର୍ଶନୀ ଆକାର ଧାରଣ କରି ଦିନକୁ ଦିନ ଉନ୍ନତି-ପଥରେ ଅଗ୍ରସର ହେଉଥିଲା; ସମ୍ମିଳନୀର ଆବିର୍ଭାବରେ ତାହା ରହିତ ହେଲା ! ଏବେ ସମ୍ମିଳନୀ ଫୋଟ, କପା, ଗୋଲ ଓ ସାଧାରଣ ବ୍ୟବହାର୍ଯ୍ୟ ପିତ୍ତଳ ପତ୍ରା ଗାମୁଛାରେ ପ୍ରଦର୍ଶନୀକୁ ଆବଦ୍ଧ କରି ଜାତୀୟ ଉନ୍ନତିର ଗୋଟିଏ ମାର୍ଗକୁ ସଙ୍କୁଚିତ କରିଦେଲେ—ସୁକୁମାର ଶିଳ୍ପୋନ୍ନତିର ମୂଳରେ କୁଠାରାଘାତ କରିବାକୁ ଉପକ୍ରମ କଲେ, ଏହାଠାରୁ ବଳି ଶୋଚନୀୟ ବିଷୟ କଣ ହୋଇପାରେ ? କେବଳ

ପ୍ରଦର୍ଶନୀ ନୁହେ, ଆମ୍ଭମାନଙ୍କ କ୍ଷୁଦ୍ର ମତରେ ପ୍ରଦର୍ଶନୀର ପରିସର ବୃଦ୍ଧି ସଙ୍ଗେ ସଙ୍ଗେ ଉତ୍କଳର ବିବିଧ ଦ୍ରବ୍ୟର ଯଥେଷ୍ଟ ପ୍ରଚାର ଓ ବିକ୍ରୟ ଉଦ୍ଦେଶ୍ୟରେ ସମ୍ମିଳନୀସମୟରେ ଗୋଟିଏ ବୃହତ୍ ମେଳାର ଆୟୋଜନ କରି ପାରିଲେ ପ୍ରଭୂତ ଉପକାର ସାଧିତ ହୁଅନ୍ତା । ଏହି ମେଳା ସମ୍ବନ୍ଧରେ ଆମ୍ଭମାନଙ୍କର କେତେଗୁଡ଼ିଏ କଥା କହିବାର ଥିଲା । ମାତ୍ର ମୂଳରୁ ଯେତେବେଳେ ପ୍ରଦର୍ଶନୀର ଏପରି ଦୁରବସ୍ଥା, ସେତେବେଳେ ମେଳା କଥା କହିବୁଁ କେଉଁ ସାହସରେ ?

ଠିକେ ଠିକେ ପ୍ରୟୋଜନୀୟ କଥାଗୁଡ଼ିକ କହୁ କହୁ ପ୍ରବନ୍ଧ କ୍ରମେ ଦୀର୍ଘ ହୋଇ ପଡ଼ିଲା । ଆଶା କରୁଁ ବିଷୟର ଗୁରୁତ୍ୱ ପ୍ରତି ଦୃଷ୍ଟିପାତ କରି ପାଠକବର୍ଗ ଆମ୍ଭମାନଙ୍କୁ କ୍ଷମା କରିବେ । ଅଧିବେଶନ ସମ୍ବନ୍ଧରେ ଆଉ ଅଧିକ କିଛି କହିବୁଁ ନାହିଁ । ବର୍ତ୍ତମାନ ସମ୍ମିଳନୀର ଭବିଷ୍ୟତ୍ ପରିଚାଳନା ସମ୍ବନ୍ଧରେ ଅତି ସଂକ୍ଷେପରେ କେତେଗୁଡ଼ିଏ ସଙ୍କେତମାତ୍ର ଦେଇ ଏଥର ପାଠକମାନଙ୍କ ନିକଟରୁ ବିଦାୟ ଗ୍ରହଣ କରିବୁଁ ।

ଏ ସଂସାରରେ ସକଳ କାର୍ଯ୍ୟ ନିୟମାଧୀନ— ସୁଶୃଙ୍ଖଳରୂପେ କୌଣସି କାର୍ଯ୍ୟ କରିବାକୁ ଗଲେ ସୁଚିନ୍ତିତ ଓ ସୁସମ୍ବଦ୍ଧ ନିୟମାବଳୀର ଅନୁସରଣ ଏକାନ୍ତ ଆବଶ୍ୟକ । ବିଶେଷତଃ ନିୟମତନ୍ତ୍ରର ପ୍ରତିଷ୍ଠା ଭିନ୍ନ କୌଣସି ପ୍ରକାର ସମବେତ ଅନୁଷ୍ଠାନ ସୁସିଦ୍ଧ ହୋଇ ନ ପାରେ । ସଭାପତି ଶ୍ରୀ ଖଲ୍ଲି-କୋଟାଧୀଶ୍ୱର ସ୍ୱୀୟ ବକ୍ତୃତାର ଶେଷଭାଗରେ ନିୟମାବଳୀ ପ୍ରଣୟନ ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଅଛନ୍ତି । ଆମ୍ଭମାନଙ୍କ ମତରେ ସମ୍ମିଳନୀର ପରିଚାଳନ ନିମିତ୍ତ ଯେତେ ଶୀଘ୍ର ସମ୍ଭବ ଉପଯୁକ୍ତ ନିୟମାବଳୀ ପ୍ରସ୍ତୁତ ହେବା ଏକାନ୍ତ ଆବଶ୍ୟକ । ବିଭିନ୍ନ ଅଞ୍ଚଳର ବିଜ୍ଞ ପ୍ରତିନିଧି କେତେ ଜଣ ନିର୍ବାଚନ କରି ସେମାନଙ୍କ ଉପରେ ଉକ୍ତ ନିୟମାବଳୀ ପ୍ରସ୍ତୁତ କରିବାର ଭାର ଦିଆଯାଉ ଏବଂ ତାହା ପ୍ରସ୍ତୁତ ହେବା ପରେ ସର୍ବସାଧାରଣଙ୍କ ଆଲୋଚନାର ସୁବିଧା ନିମିତ୍ତ ଶାଖା-ସଭାମାନଙ୍କୁ ପ୍ରେରିତ ହେଉ ଏବଂ ସମ୍ବାଦ-ପତ୍ରମାନଙ୍କରେ ପ୍ରକାଶିତ ହେଉ । ଭିନ୍ନ ଭିନ୍ନ ମତ ସଂଗୃହୀତ ହେବା ଉତ୍ତାରେ ବର୍ତ୍ତମାନ କାର୍ଯ୍ୟ-ନିର୍ବାହକ ସମିତି ସେଗୁଡ଼ିକ ଆଲୋଚନା କରି ବିଧିବଦ୍ଧ କରନ୍ତୁ ।

ଉକ୍ତ ନିୟମାବଳୀ ପ୍ରଣୟନ ସମୟରେ ନିମ୍ନ-ଲିଖିତ ବିଷୟମାନଙ୍କ ପ୍ରତି ବିଶେଷ ଦୃଷ୍ଟି ଦେବା ଆବଶ୍ୟକ ।

୧—କାର୍ଯ୍ୟନିର୍ବାହକ ସମିତିର ଗଠନ; ଏହା କେଉଁ ସ୍ଥାନରେ ରହିବ, ଏଥିରେ କେତେ ଜଣ କର୍ମଚାରୀ ରହିବେ, ସଭ୍ୟସଂଖ୍ୟା କେତେ ହେବ, କି ନିୟମରେ କର୍ମଚାରୀ ଓ ସଭ୍ୟମାନେ ନିର୍ବାଚିତ ହେବେ, କେଉଁ ସ୍ଥାନର କେତେ ଜଣ ସଭ୍ୟ ହେବେ, କିପରି ଓ କେଉଁ ସମୟରେ ଉକ୍ତ ସମିତିର ଅଧିବେଶନ ହେବ, କି ପ୍ରକାର କାର୍ଯ୍ୟମାନ ସମିତି କରି ପାରିବେ, ଇତ୍ୟାଦି ବିଷୟଗୁଡ଼ିକ ସ୍ପଷ୍ଟରୂପେ ସ୍ଥିରୀକୃତ ହେବା ଉଚିତ ।

୨—କର୍ମଚାରୀ, ଯଥା—ସଭାପତି, ସମ୍ପାଦକ, ସହକାରୀ ସମ୍ପାଦକ, କୋଷାଧ୍ୟକ୍ଷ, ଏମାନଙ୍କର କ୍ଷମତାର ସୀମା ନିରୂପିତ ହେବା ଉଚିତ ।

୩—ଏପର୍ଯ୍ୟନ୍ତ ସମଗ୍ର ଉତ୍କଳଖଣ୍ଡରେ ଅନେକଗୁଡ଼ିଏ ଶାଖା-ସଭା ପ୍ରତିଷ୍ଠିତ ହୋଇଅଛି । ସବୁଗୁଡ଼ିକ ଯଥାସ୍ଥାନରେ, ଯଥାନିୟମରେ ହୋଇଅଛି କି ନାହିଁ ଏବଂ ଆଉ କେଉଁ କେଉଁ ସ୍ଥାନରେ ଏପ୍ରକାର ସଭା ପ୍ରତିଷ୍ଠିତ ହେବାର ଉଚିତ, ଏଗୁଡ଼ିକ ଉତ୍ତମରୂପେ ଆଲୋଚନା କରି ଦେଖିବା ଉଚିତ । ଏହାପରେ ସଭାଗୁଡ଼ିକର ସଂଖ୍ୟା ଏବଂ ପ୍ରତ୍ୟେକ ସଭାର ସୀମା ଓ କର୍ତ୍ତବ୍ୟ, ମୂଳ ସଭା ସହିତ ପ୍ରତ୍ୟେକ ଶାଖା-ସଭାର ସମ୍ବନ୍ଧ ନିର୍ଦ୍ଦିଷ୍ଟ ହେବା ଉଚିତ ।

୪—ସମ୍ମିଳନୀର ବାର୍ଷିକ ଅଧିବେଶନରେ ବିଭିନ୍ନ ବିଭାଗର କାର୍ଯ୍ୟ ନିର୍ବାହ ନିମିତ୍ତ ଯେଉଁ

ସବୁ କମିଟିମାନ ଗଠିତ ହୋଇଅଛି ଏବଂ ପରେ ହେବ, ସେମାନଙ୍କର କ୍ଷମତା, କାର୍ଯ୍ୟକ୍ଷେତ୍ରର ସୀମା, କାର୍ଯ୍ୟନିର୍ବାହକ ସମିତି ସହିତ ସେମାନଙ୍କର ସମ୍ବନ୍ଧ ଇତ୍ୟାଦି ନିରୂପିତ ହେବା ଉଚିତ ।

୫—ସମ୍ମିଳନୀର ବାର୍ଷିକ ଅଧିବେଶନ ପ୍ରତିବର୍ଷ ବିଭିନ୍ନ ସ୍ଥାନରେ ହେବାର ଏକ ପ୍ରକାର ନିୟମିତ ହୋଇଅଛି । ଏସମ୍ବନ୍ଧରେ ସ୍ଥାନୀୟ ଦାୟିତ୍ୱ ଓ କାର୍ଯ୍ୟନିର୍ବାହକ ସମିତିର ଦାୟିତ୍ୱ କଣ, ଅଧିବେଶନର ବ୍ୟୟ କିପରି ନିର୍ବାହିତ ହେବ, ତାହାର ସୀମା କେତେଦୂର ଏଗୁଡ଼ିକ ମଧ୍ୟ ନିୟମାବଳୀର ଅନ୍ତର୍ଗତ ହେବା ଉଚିତ ।

୬—ବାର୍ଷିକ ଆୟବ୍ୟୟ-ପରୀକ୍ଷାର ମଧ୍ୟ ବିହିତ ବ୍ୟବସ୍ଥା ଥିବା ଉଚିତ । ଆୟବ୍ୟୟ-ସମସ୍ୟା ବଡ଼ ଗୁରୁତର ସମସ୍ୟା । ଏତାବତ୍ ସମ୍ମିଳନୀ ବା କାର୍ଯ୍ୟନିର୍ବାହକ ସମିତି ଏସମ୍ବନ୍ଧରେ କୌଣସି ସଦୁପାୟ ଅବଧାରଣ କରି ନାହାନ୍ତି । ଏ ସମ୍ବନ୍ଧରେ ସୁବ୍ୟବସ୍ଥା ନ ହେବା ପର୍ଯ୍ୟନ୍ତ ସମ୍ମିଳନୀ ଅତି ଚଞ୍ଚଳ ଓ ଅସ୍ଥିର ଭୂମି ଉପରେ ପ୍ରତିଷ୍ଠିତ ଅଛି ବୋଲିବାକୁ ହେବ । ବିଗତ ଅଧିବେଶନରେ ଅର୍ଥସଂଗ୍ରହ ନିମିତ୍ତ ଗୋଟିଏ କମିଟି ଗଠିତ ହୋଇଅଛି ସତ୍ୟ, ମାତ୍ର ଉକ୍ତ କମିଟି କି ନିୟମରେ ଅର୍ଥ ସଂଗ୍ରହ କରିବେ, ଅର୍ଥ କେଉଁଠାରେ ଗଚ୍ଛିତ ରହିବ ଏବଂ ଭିନ୍ନ ଭିନ୍ନ ବିଭାଗର କମିଟିମାନ କି ନିୟମରେ ସେମାନଙ୍କଠାରୁ ଅର୍ଥ ଗ୍ରହଣ କରିବେ ବା ବ୍ୟୟ କରିବେ, ଇତ୍ୟାଦି ବିଷୟରେ କୌଣସି ବିଧିବ୍ୟବସ୍ଥା ନାହିଁ । ଅବଶ୍ୟ ସ୍ୱେଚ୍ଛାପ୍ରବୃତ୍ତ ଦାନ ସର୍ବୋତ୍କୃଷ୍ଟ ଦାନ ଏବଂ ସମ୍ମିଳନୀ ସେହି ପନ୍ଥା ଅନୁସରଣ କରିବାର କଳ୍ପନା କରି ସୁବିବେଚନାର କାର୍ଯ୍ୟ କରିଅଛନ୍ତି । ମାତ୍ର ଜାତୀୟ ଅନୁଷ୍ଠାନର ସଫଳତା ନିମିତ୍ତ ଯତ୍‌କିଞ୍ଚିତ୍ ହେଲେ ଦାନ କରିବା ଜାତିର ପ୍ରତ୍ୟେକ ବ୍ୟକ୍ତିର ଅତି ପବିତ୍ର କର୍ତ୍ତବ୍ୟ, ଏହି ଭାବଟି ଜାତି ମଧ୍ୟରେ ସମ୍ୟକ୍‌ରୂପେ ଜାଗ୍ରତ ହେବା ଅତ୍ୟନ୍ତ ପ୍ରୟୋଜନ । ଧନଶାଳୀ ବ୍ୟକ୍ତିମାନେ ଅଧିକାଂଶ ଭାର ବହନ କରିବେ ଏ କଥା ସମସ୍ତଙ୍କୁ ଜଣା; ମାତ୍ର ପ୍ରତ୍ୟେକ ବ୍ୟକ୍ତିର ଦାନପ୍ରବୃତ୍ତି ଯହିଁରେ ଜାଗ୍ରତ ହେବ ତାହାର ଉପାୟ ବିଧାନ କରିବା କି ସର୍ବଥା ବିଧେୟ ନୁହେ ? ତାହା ନ ହେଲେ ସମ୍ମିଳନୀ ଜାତୀୟ ଅନୁଷ୍ଠାନ ନ ହୋଇ ମୁଷ୍ଟିମେୟ ଧନୀ ଓ କ୍ଷମତାଶାଳୀ ବ୍ୟକ୍ତିଙ୍କର କାର୍ଯ୍ୟ ମଧ୍ୟରେ ପରିଗଣିତ ହେବ ଏବଂ ଏଥି ପ୍ରତି ଆପାମର ସାଧାରଣଙ୍କର ସମୁଚିତ ମମତା ଓ ଦାୟିତ୍ୱ-ଜ୍ଞାନ ଜନ୍ମିବ ନାହିଁ । ପୁଣି ଏହିପରି ଜାତି-ସାଧାରଣରୁ ଅର୍ଥ ସଂଗୃହୀତ ହେଲେ କର୍ମଗୃହୀ ବା ଉପରସ୍ଥ ବ୍ୟକ୍ତିମାନେ ଅପ୍ରତିହତରୂପେ ହସ୍ତ ଚାଳନା କରି ପାରିବେ ନାହିଁ । ଏହି ଗୁରୁତର ସମସ୍ୟାର ପୂରଣ ନ ହେବା ପର୍ଯ୍ୟନ୍ତ ସମ୍ମିଳନୀର ଭିତ୍ତି କଦାପି ଦୃଢ଼ ହେବ ନାହିଁ ।

୭—ସମ୍ମିଳନୀର ଗୋଟିଏ ସ୍ଥାୟୀ କାର୍ଯ୍ୟାଳୟ ପ୍ରତିଷ୍ଠିତ ହେବା ଏକାନ୍ତ ଆବଶ୍ୟକ । ନିର୍ଦ୍ଦିଷ୍ଟ ସଂଖ୍ୟକ ବେତନଭୋଗୀ କର୍ମଗୃହୀ କାର୍ଯ୍ୟ-ନିର୍ବାହକ ସମିତିର ତତ୍ତ୍ୱାବଧାନରେ ସେଠାରେ ସକଳ କାର୍ଯ୍ୟ ନିର୍ବାହ କରିବେ ଏବଂ ସମ୍ମିଳନୀ ସମ୍ବନ୍ଧୀୟ ଯାବତୀୟ ପ୍ରୟୋଜନୀୟ ଦ୍ରବ୍ୟାଦି ସେହିଠାରେ ରହିବ । ଅବସ୍ଥାନୁସାରେ ବିଭିନ୍ନ ଶାଖା-ସଭାମାନ ମଧ୍ୟ ଏହିପରି ଗୋଟିଏ ଗୋଟିଏ ସ୍ୱତନ୍ତ୍ର କାର୍ଯ୍ୟାଳୟ ସ୍ଥାପନ କରି ପାରନ୍ତି । କାହାର କାହାର ମତରେ ଏ ପ୍ରସଙ୍ଗଟି ଅସଙ୍ଗତ ଓ ଅସାମୟିକ ବିବେଚିତ ହୋଇ ପାରେ । ମାତ୍ର ଅନୁଷ୍ଠାନଟିର ଗୁରୁତ୍ୱ ଓ ଭବିଷ୍ୟତ କାର୍ଯ୍ୟ-ଶୃଙ୍ଖଳା ପ୍ରତି ଦୃଷ୍ଟିପାତ କଲେ କଦାପି ସେପରି ମନେ ହେବ ନାହିଁ । ଆମ୍ଭେମାନେ ସବୁ କାର୍ଯ୍ୟକୁ ଲଘୁ-ଭାବରେ ଦେଖୁଁ ବୋଲି ଯେନତେନ ପ୍ରକାରେଣ କାର୍ଯ୍ୟ ଚଳାଇ ନେବା ସୁସଙ୍ଗତ ମନେ କରୁଁ ।

୮—ସମ୍ମିଳନୀ-ସଂସୃଷ୍ଟ ପ୍ରଦର୍ଶନୀ ସମ୍ବନ୍ଧରେ କେତେଗୁଡ଼ିଏ ନିୟମ ବିଧିବଦ୍ଧ ହେବା ଉଚିତ । ପ୍ରଦର୍ଶନୀଟିକୁ ପ୍ରଶସ୍ତ ଓ ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ କରିବା ସର୍ବଥା ବିଧେୟ । ଜାତୀୟ-

ଜୀବନରେ କାର୍ଯ୍ୟକର ଶିଳ୍ପ ଛଡ଼ା ଯେ ସୁକୁମାର ଶିଳ୍ପର ମଧ୍ୟ ଗୋଟିଏ ବଶିଷ୍ଟ ଓ ଉଚ୍ଚ ସ୍ଥାନ ଅଛି, ଏ କଥାଟି ବିସ୍ମୃତ ହେବା କଦାପି ବାଞ୍ଛନୀୟ ନୁହେ ।

ଆଉ ଅଧିକ କିଛି ଅଳ କହିବି ନାହିଁ । ସର୍ବସାଧାରଣଙ୍କ ଆଲୋଚନା ନିମିତ୍ତ ବିଷୟଟି ଅବତାରଣା କରଅଛି । ସମୁଚିତ ଆଲୋଚନା ହେଲେ ଶ୍ରମ ସାର୍ଥକ ଜ୍ଞାନ କରିବି । ଏତଦ୍ଭିନ୍ନ ଚର୍ଚ୍ଚାଦ୍ୱାରା ସମ୍ମିଳନୀ ସଫଳ ହେବାର ଆଶା ଉତ୍କଳଖଣ୍ଡରେ ଚିତ୍ରକରର ଭାବରେ ପ୍ରାପ୍ତ ହେବ ଏହା ଆମ୍ଭମାନଙ୍କର ଦୃଢ଼ ଧାରଣା ଏବଂ ସେହି ଧାରଣାର ବଶବର୍ତ୍ତୀ ହୋଇ କର୍ତ୍ତବ୍ୟ ଜ୍ଞାନରେ କେତେଗୋଟି କଥା କହିଲି ।

---

## ଓଡ଼ିଆ ପୋଥି ( ଚକ୍ରଧାବ୍ୟ ) ।

( ଉତ୍କଳସାହିତ୍ୟ-ସମାଜର ଦ୍ୱିତୀୟ ବର୍ଷର ତୃତୀୟ ଅଧିବେଶନରେ ପଠିତ । )

ଉତ୍କଳର ପ୍ରାଚୀନ କବି ଏବଂ ପୋଥିର ସଂଖ୍ୟା ଅଳ୍ପ ନୁହେ । ବଡ଼ ବଡ଼ କବିଙ୍କୁ ଛାଡ଼ି ଦେଲେ ଦେଖାଯିବ ଅନେକ କ୍ଷୁଦ୍ର କବି ଶ୍ରେଟ ବଡ଼ ଅଗଣିତ ପୁସ୍ତକ ଲେଖି ଯାଇଅଛନ୍ତି । ସମସ୍ତଙ୍କର ଯେ ପାଣ୍ଡିତ୍ୟ ଏବଂ କବିତ୍ୱ ଥିଲା ତାହା ନୁହେ । ସେମାନଙ୍କ ପୁସ୍ତକରୁ ପାଣ୍ଡିତ୍ୟ ଓ ଭାବୁକତାର କୌଣସି ପରିଚୟ ମିଳେ ନାହିଁ । ସେମାନେ ଜ୍ଞାନବଳରେ ବଳୀ ହୋଇ କବିତା-ପ୍ରବାହ ମେଲି ଦେଇ ନାହାନ୍ତି; ସେମାନଙ୍କର ବିଶ୍ୱାସ ଯେ ଗ୍ରନ୍ଥ ଖଣ୍ଡିଏ ରଚିତ କଲେ ଭବସାଗରରୁ ମୁକ୍ତି ମିଳିବ, "ସକଳ ରୋଗ ନାଶ ଯିବ" । ଅତି ପ୍ରାଚୀନ ସଂସ୍କୃତ କବିମାନଙ୍କର ମଧ୍ୟ ସେହି ବିଶ୍ୱାସ—"କାବ୍ୟଂ ଯଶସେ, ଶିବେତରକ୍ଷତୟେ"—ପୁସ୍ତକ ଖଣ୍ଡେ ରଚନା କରିବା କେଣିକ ଥାଉ ଆମ୍ଭମାନଙ୍କ ପୂର୍ବପୁରୁଷମାନେ ଖଣ୍ଡେ ପୋଥି ଲେଖିବାକୁ ବଡ଼ ପବିତ୍ର କାର୍ଯ୍ୟ ମଣୁଥିଲେ । ମୁଁ ଅନେକ ବୃଦ୍ଧଙ୍କ ମୁଖରୁ ଶୁଣି ଅଛି "ବସିଥିବା ରଙ୍କ ହେତେ ଖଣ୍ଡ ପୋଥି ଲେଖି ପକାଇଲେ ପାପକ୍ଷୟ ହୋଇ ଯିବ" । ଅନେକ ଲିପିକର ଲିଖିତ ପୋଥିର ଶେଷରେ ମଧ୍ୟ ଲେଖି ଥାନ୍ତି 'ଶ୍ରୀ ଜଗନ୍ନାଥ ଉଦ୍ଧରିବେ ଏ ଅଧମ ଅରକ୍ଷିତୁ'—ବିଦ୍ୟା ପ୍ରତି ସେମାନଙ୍କର ଏହି ଗଭୀର ଅନୁରାଗ କେବଳ ସଂସ୍କାର ମାତ୍ରାରେ ଅବଶିଷ୍ଟ ଅଛି । ସେ ଯାହାହେଉ ଏହିପରି ଅନେକ ପୋଥି ଲେଖା ( ରଚିତ ) ହୋଇ ଯାଇଅଛି । ଆଜିପର୍ଯ୍ୟନ୍ତ ସେ ସମସ୍ତର ଗଣନା ହୋଇ ନାହିଁ, ଗଣନା କରିବା ମଧ୍ୟ ସହଜସାଧ୍ୟ ନହେ । କାରଣ ବଡ଼ ବଡ଼ କବିମାନଙ୍କର ପୋଥି ଛଡ଼ା ଅନ୍ୟାନ୍ୟ ପୋଥି ସର୍ବତ୍ର ପ୍ରଚଳିତ ନୁହେ କିମ୍ବା ସୁପ୍ରଚଳିତ ନୁହେ । ଅନେକ ପୋଥିର ଅତ୍ୟଳ୍ପ ଆଦର୍ଶଲିପି ଥିବାରୁ ତାହା ବିଶେଷ ବିଶେଷ ସ୍ଥଳ ଭିନ୍ନ ଅନ୍ୟତ୍ର ମିଳିବ ନାହିଁ, ଏପରି ମଧ୍ୟ ଅନେକ ପୋଥି ଥିବା ଅସମ୍ଭବ ନୁହେ, ଯାହା ଗୋଟିଏ ସ୍ଥଳ ଛଡ଼ା ଅନ୍ୟତ୍ର ନ ଥିବ । ଏହିପରି କେତୁସଂଖ୍ୟକ ପୋଥି 'ବନର ପୁଷ୍ପ' ପରି କେଉଁ କୋଣରେ ପଡି ସଡ଼ି ଯାଉଅଛି; ତାହା ଭାବିଲେ ହୃଦୟରେ ଗଭୀର ଦୁଃଖାନୁଭବ ହୁଏ । ବର୍ତ୍ତମାନ ସେଗୁଡିକ ଉଦ୍ଧାର କରିବାର ସହଜ ଉପାୟ କଣ ? ଅଧିକାରୀମାନେ ପ୍ରଚାର କରିବାକୁ ଚେଷ୍ଟା ନ କଲେ କିଏ କେତେ ବୁଲି ସଂଗ୍ରହ କରିବ ? ଦ୍ୱାରେ ଦ୍ୱାରେ ବୁଲିଲେ ମଧ୍ୟ ସୁଫଳ ଫଳିବାର ସମ୍ଭାବନା ନାହିଁ, କାରଣ ଗୃହସ୍ୱାମିମାନେ ସାତପୁରୁଷର ପୋଥି ଘରୁ କାଢ଼ିଦେବାକୁ ଅନିଚ୍ଛୁକ । ବରଂ ପ୍ରତିଦିନ ପାଣି ଚନ୍ଦନ ଲାଗି କଳଙ୍କିତ ଏବଂ ଅପାଠ୍ୟ ହେଉ,—ଘରେ ଥାଉ । ସ୍ଥଳବିଶେଷରେ ଜଣ ଜଣଙ୍କ ଘରେ ସୁପା-

କାଉରେ ପୋଥି ରହିଅଛି,—ଅନେକ ପୋଥି କୀଟଦଷ୍ଟ ହୋଇ ଗଲାଣି । କିନ୍ତୁ ଅଦ୍ୟାପି ଏ ଅନ୍ୟର ଦୃଷ୍ଟିଗୋଚର ହୋଇ ନାହିଁ । ଏହି ପ୍ରକାରେ ବହୁତ ପୋଥି ଯେ ନଷ୍ଟ ଓ ଲୁପ୍ତ ହୋଇଥିବ, ସେଥିରେ ସନ୍ଦେହ କଣ ? ସାମାଜିକ କୁସଂସ୍କାରବଶତ ଏପରି ଗୋଟିଏ କୁସଂସ୍କାର ମଧ୍ୟ ଅଛି । ଏହାର ସଂଶୋଧନ କରିବାକୁ ହେଲେ ସେହିପରି ଯତ୍ନ ଆବଶ୍ୟକ ।

ବର୍ତ୍ତମାନ ପୋଥି ସଂଗ୍ରହ କରିବାକୁ ଗଲେ ଗୃହସ୍ୱାମିଙ୍କୁ ବିଶ୍ୱାସଯୋଗ୍ୟ ଦୁଇ ଚାରି କଥା କହିବାକୁ ପଡ଼ିବ । ସେଥିରେ ତାଙ୍କର ଯଦି ବିଶ୍ୱାସୀ ସଂଗ୍ରାହକଠାରେ ପ୍ରତ୍ୟୟ ଜନ୍ମେ, ତାହାହେଲେ ସେ ପୋଥି ଦେଖାଇ ପାରନ୍ତି, ନୋହିଲେ 'ମୋ ଘରେ ସେ ସବୁ ପୋଥି ନାହିଁ' ଉତ୍ତରଟି ଦେଇ ସଂଗ୍ରାହକଙ୍କୁ ଫେରାଇ ଦେବେ । ସେ ଯାହା ହେଉ, ଅଦ୍ୟପର୍ଯ୍ୟନ୍ତ ଅଧିକାଂଶ ପୋଥି ପ୍ରକାଶିତ ହୋଇ ଗଲାଣି, ଅପ୍ରକାଶିତ ପୋଥି-ଗୁଡ଼ିକର ସଂଗ୍ରହ ନିମିତ୍ତ ଚେଷ୍ଟା ହେବାର ମଧ୍ୟ ଆଶା ଦେଖା ଯାଉଅଛି, ଶିଶୁ ଉତ୍କଳସାହିତ୍ୟ-ସମାଜ ଏହି କାର୍ଯ୍ୟଭାର ବହନ କରିବାକୁ ସ୍ୱୀକୃତ ହୋଇଅଛନ୍ତି । ଏଣିକି ତାହା ସୁବିଧା-କ୍ରମେ କାର୍ଯ୍ୟରେ ପରିଣତ ହେବ । ଗତ ଅବକାଶରେ ମୋହର କ୍ଷୁଦ୍ର ଚେଷ୍ଟାଦ୍ୱାରା ଯେଉଁ ସବୁ ପୋଥି ହସ୍ତଗତ ହୋଇଅଛି, ସେଗୁଡ଼ିକର ନାମ ଏବଂ କବିମାନଙ୍କର ନାମ ସଂକ୍ଷିପ୍ତ ପରିଚୟ-ସହ କ୍ରମଶଃ ପ୍ରକାଶ କରିବି । ତନ୍ମଧ୍ୟରୁ ଆଜି ଯାହା ଆଲୋଚିତ ହେବ ତାହାର ନାମ 'ଚିତ୍ର-କାବ୍ୟବନ୍ଧୋଦୟ' ।

ଏଥିର କବିଙ୍କ ପରିଚୟ ଦେବା ଲାଗି ଆଲୋଚନା କରି ଆଉ ଅଧିକ କହିବାକୁ ପଡ଼ିବ ନାହିଁ । କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, କବିବର ଉପେନ୍ଦ୍ର ଭଞ୍ଜ ଏହାର ପ୍ରଣେତା । ଭଞ୍ଜକବିଙ୍କ ଅଜସ୍ରସ୍ରାବିଣୀ ଲେଖନୀରୁ ଯାହା ଯାହା ବାହାରିଛି ତାହା ସବୁ ଉତ୍କଳ-ସାହିତ୍ୟସେବୀମାନଙ୍କ ନିକଟରେ ଅବିଦିତ ନୁହେଁ । ଅଦ୍ୟାବଧି ଭଞ୍ଜକବିକୃତ ଗ୍ରନ୍ଥନିଚୟ ପ୍ରକାଶିତ ହୋଇ ପାରି ନାହିଁ । ଅପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରେ ଆଲୋଚ୍ୟ 'ଚିତ୍ରକାବ୍ୟ' ମଧ୍ୟ ଗୋଟିଏ । ଏହା ଯେ ପ୍ରକାଶିତ ଭଞ୍ଜକାବ୍ୟମାନଙ୍କସହ କବିତାରେ ସମକକ୍ଷ ହେବ, ତାହା ନୁହେଁ । ବରଂ ସେମାନଙ୍କ ସଙ୍ଗେ ଏହାର ତୁଳନା ହୋଇ ନ ପାରେ । କିନ୍ତୁ ଏଥିରେ ଯେଉଁ ବିଶେଷତ୍ୱ ଅଛି, ତାହା କାହିଁରେ ନାହିଁ । କବିଙ୍କର ଏହା କୋଡ଼ପୋଛା ସନ୍ତାନ; ସୁତରାଂ ଅପେକ୍ଷାକୃତ ଅଧିକ ସ୍ନେହାଦର ଲାଭ କରିଅଛି ।

ଅଲଙ୍କାରଶାସ୍ତ୍ରରେ କବିତାର ଦୁଇ ପ୍ରକାର ରଚନା ବର୍ଣ୍ଣିତ ଅଛି; ଛନ୍ଦଃ ଓ ବନ୍ଧ । ପ୍ରାୟ ସମସ୍ତ କବିମାନେ ପୂର୍ବୋକ୍ତ ପ୍ରକାରେ ରଚନା କରି-ଥାନ୍ତି । ସେଥିରେ କେବଳ ବର୍ଣ୍ଣସଂଖ୍ୟାର ସମତା, ଶେଷାକ୍ଷରର ମିତ୍ରତା ଏବଂ ଯତିପାତ ପ୍ରତି ଲକ୍ଷ୍ୟ ରଖିବାକୁ ହୁଏ, ମାତ୍ର ବନ୍ଧ ରଚନା ସେପରି ନୁହେଁ । ଏଥିରେ ଚିତ୍ରର ପ୍ରୟୋଜନ—ଗୋଟିଏ ନିର୍ଦ୍ଦିଷ୍ଟ ଚିତ୍ର କତିପୟ ପ୍ରକୋଷ୍ଠ ମଧ୍ୟରେ ଗୋଟିଏ କବିତାର ବର୍ଣ୍ଣନିଚୟ ଏପରି କୌଶଳରେ ସନ୍ନିବେଶିତ କରିବାକୁ ହେବ ଯେ, ତଦ୍ଦ୍ୱାରା ଚିତ୍ରର ପ୍ରକୋଷ୍ଠ ସବୁ ପୂର୍ଣ୍ଣ ହୋଇ ଲେଖକର ମନୋଗତ ଭାବ ପ୍ରକାଶ ପାଇବ । ବନ୍ଧ ରଚନାରେ ଅକ୍ଷର ସନ୍ନିବେଶପ୍ରତି ବିଶେଷ ଲକ୍ଷ୍ୟ ରଖିବାକୁ ହୁଏ । ଏପରି ରଚନା ଛନ୍ଦର ସାଧାରଣ ରଚନା ଅପେକ୍ଷା ଦୁଷ୍କର ଏବଂ ଗବେଷଣାସାଧ୍ୟ । ଅଦ୍ୟ ଆଲୋଚ୍ୟ ପୁସ୍ତକଖଣ୍ଡିକ ଉକ୍ତ ଧରଣର କବିତା ଅର୍ଥାତ୍ ବନ୍ଧକାବ୍ୟ । ସୁପଣ୍ଡିତ ଭଞ୍ଜକବି ନାନା ଛନ୍ଦକାବ୍ୟ, ଗୀତାଭିଧାନ ଓ ଅଲଙ୍କାର ଶାସ୍ତ୍ରମାନ ଲେଖି ସୁଦ୍ଧା ତାହାଙ୍କର ତୃପ୍ତି ହେଲା ନାହିଁ । ବନ୍ଧ ରଚନାରେ ହାତ ଦେଇ ନ ଥିବାରୁ ତାହାଙ୍କ ମନରେ ଟିକିଏ 'ଧୋକା' ଥିଲା । ଶେଷରେ ଏହି ଚିତ୍ରକାବ୍ୟଖଣ୍ଡି ଲେଖି ଚିତ୍ତ ଶାନ୍ତ କଲେ । କବି ନିଜେ ପୁସ୍ତକାରମ୍ଭରେ ଲେଖିଅଛନ୍ତି :—

"ଏଣୁସ୍ୟେ କବି ବର୍ଣ୍ଣରେ ଚିତ୍ତ
କଲ ଅନେକ ପରକାରେ ଗୀତ ।
ଅଶେଷ ଚିତ୍ରଶିଖା ଚିତ୍ରପଦା ।
ଛାନ୍ଦ କେତେଛି କହିବ ସମ୍ବାଦ ।
ଚାନ୍ଦା ଦୋହା ସୁଛନ୍ଦ ଛଅପୋଇ ।
ଇତ୍ୟାଦି କବିତ୍ୱ ଗଣନା ନୋହି ।
ରସକୃଷ୍ଣ ବିଷୟେ ଯେତେକ ଗ୍ରନ୍ଥ ।
କହୁ ଚତୋଇ ତହୁଁ ଲେଖେ ଏଥ ।
ପୁରାଣ ଛଇ କଳ୍ପନା ମାଧୁର୍ଯ୍ୟ ।
ଗୁରୁ ଚନ୍ଦ୍ରରେଖା ହେମମଞ୍ଜରୀ ।
ରସଲେଖା କାମକଳା ରଚିତ ।
ମନୋରମା ପ୍ରେମଲତା ସୁଗୀତ ।
ଭଗବତୀ ମୁକ୍ତାବତୀ ପ୍ରମାଣ ।
ବରଜଲୀଳା ଯେ ଛନ୍ଦ ଭୂଷଣ ।
ଷଡ଼ ଋତୁକଳା-କଳ୍ପତରୁକର ।
ଘନପ୍ରେମ ସାଦ୍ୟ ସୁଭଦ୍ରା ସାର ।
ବୈଦେହୀଶ ବିଳାସ ସେହି କାବ୍ୟ ।
ପ୍ରସିଦ୍ଧ ଅବନା ଦ୍ୱାଦଶ-ଛନ୍ଦ ।
ରାମଲୀଳାମୃତ ଶ୍ଳେଷେ ରଚିତ ।
ପ୍ରେମ ସୁଧାନିଧି ଯମକ ସ୍ଥିତ ।
ରସିକହାରାବଳୀ ନାମେ ଗୀତ ।
କୁଞ୍ଜବିହାର ଯେ ଶ୍ୟାମ ରଚିତ ।
ଅଳଙ୍କାର ମଧ୍ୟେ ରସପଞ୍ଚକ ।
ଲାବଣ୍ୟବତୀ ରସିକ ତୋଷକ ।
ପୁରୁଷୋତ୍ତମମାହାତ୍ମ୍ୟ ରଚନ ।
ନାନା କୋଷଶବ୍ଦେ ଗୀତାଭିଧାନ ।
ଛନ୍ଦ ତାର କୋଟି ଚନ୍ଦ୍ରମା ପରି ।
ଯା ନାମ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
ତ୍ରୈଲୋକ୍ୟମୋହିନୀ ଯେ ଆଦ୍ୟ ଗୀତ ।
ନିର୍ମିତ ଛନ୍ଦ ପୋଥି ପଞ୍ଚଶତ ।
ସେ ଅର୍ଥୀ ପାର୍ଥିବମାର୍ଗଣେ ଗୁଣ ।
ହୋଇଛି ଯେଣୁ କରି ବିତରଣ ।
ବାଲ୍ମୀକି ମହାନାଟକ ପ୍ରକାରେ ।
ଦତ୍ତ ହେଲା ପରି ହନୁମାନରେ ।
ସେ ଏଣୁ ଲେଖା ନୋହିଲା ଲେଖାରେ ।
ନଗ୍ର ଦାନ ଧନହିଁ ଭୂଲେଖାରେ ।
ଏତେପ୍ରକାରେ କରି ଛନ୍ଦ ଗୀତ—
ଚିତ୍ର କବିତ୍ୱେ ବଳାଇଲ ଚିତ୍ତ ।"

ଉଦ୍ଧୃତ ସନ୍ଦର୍ଭରୁ ଭଞ୍ଜକବିକୃତ କାବ୍ୟାଦିର ସ୍ଥୂଳପରିଚୟସହ ଗୋଟିଏ ସଂକ୍ଷିପ୍ତ ତାଲିକା ମିଳୁଅଛି ।

ଏହି ରଚନା ଭଞ୍ଜକବିଙ୍କ ନିଜଭାବନାଶକ୍ତି-ପ୍ରସୂତ ନୁହେଁ । ପ୍ରାଚୀନ ସଂସ୍କୃତ ସାହିତ୍ୟରେ ଏପରି ରଚନା ଉତ୍ତମରୂପେ ଥିଲା । କବି ସଂସ୍କୃତ ଛନ୍ଦଃଶାସ୍ତ୍ର ଓ ସାହିତ୍ୟ ରତ୍ନାକରାଦି ପ୍ରସିଦ୍ଧ ଅଳଙ୍କାର ଶାସ୍ତ୍ର ଅଧ୍ୟୟନ କରି ତଦନୁକରଣରେ ସ୍ୱମାତୃଭାଷାରେ ରଚନା କରିଅଛନ୍ତି । କବି ମଧ୍ୟ ଗ୍ରନ୍ଥାରମ୍ଭରେ କହିଅଛନ୍ତି—ଯେଉଁମାନେ ଉକ୍ତ ଗ୍ରନ୍ଥମାନ ପଢ଼ି ନ ଥିବେ ସେମାନେ ଏଥିରେ ପ୍ରବେଶ କରି ପାରିବେ ନାହିଁ ।

"କବି କଲ୍ପଲତାମତେ ଏ ଛବେ ।
ସାହିତ୍ୟ ରତ୍ନାକର ମାଘକାବ୍ୟେ ।
ଛନ୍ଦମଞ୍ଜରୀ ଛନ୍ଦରତ୍ନାକର ।
ଯେତେକ ବିଦଗ୍ଧ-ମଣ୍ଡନ ବାଗ୍ୟର ।
ଶକ୍ୟଥିଲା ଜନେ ଦେଖି ସେ ପୋଥି ।
ନୋହିଲେ ହେବ ସିନା ଏଥି ମତି ?
ଦ୍ୱିଜ-ହୀନ ଜନ ଯଥା ଅଭଗ୍ନ—
ପୂଗ ଚର୍ବଣେ ମୁଖ ହୁଏ ଭଗ୍ନ ।"

ଏହି ଚିତ୍ରକାବ୍ୟ ଏକାଦଶଟି ଛନ୍ଦରେ ବିଭକ୍ତ ଏବଂ ଛନ୍ଦର ଅନ୍ତର୍ଗତ ଗୋଟିଏ ଭାବସୂଚକ ପଦ୍ୟ ବନ୍ଧରେ ଲିଖିତ । କିନ୍ତୁ ଆଦ୍ୟ ଶେଷ ଛନ୍ଦରେ ବନ୍ଧର ସତ୍ତା ନାହିଁ । ପ୍ରଥମ ଛନ୍ଦରେ ଏହି ପୁସ୍ତକର ପରିଚୟ ଏବଂ କବିଙ୍କ ଅନ୍ୟାନ୍ୟ ପୁସ୍ତକମାନଙ୍କର ନାମାଦି ପ୍ରଦତ୍ତ ହୋଇଅଛି । ଦ୍ୱିତୀୟ ତୃତୀୟ ଓ ଚତୁର୍ଥ ଛନ୍ଦ କେବଳ ରସାତ୍ମକ ପଦ୍ୟ ନୁହେ; ଦତ୍ତଚ୍ୟୁତାକ୍ଷର, ଅନ୍ତର୍ଲିପି, ବହିର୍ଲିପି, ଶାର୍ଦ୍ଦୂଳପ୍ଲୁତ, ମଣ୍ଡୂକପ୍ଲୁତ, ସଗୋମୂତ୍ରକ, ନଗୋମୂତ୍ରକ, ପ୍ରଶ୍ନୋତ୍ତର, ବକ୍ରୋକ୍ତି, ଚକ୍ରଦତ୍ତସିଂହାବଲୋକନ,

ବିରୋଧାଭାସ ପ୍ରଭୃତିଦ୍ୱାରା ସବିଶେଷ ଭାବରେ ଅଳଙ୍କୃତ । କବି ଯେ ସଂସ୍କୃତ ଅଳଙ୍କାର ଶାସ୍ତ୍ର ଓ ଛନ୍ଦ ଶାସ୍ତ୍ରରେ ପ୍ରବୀଣ ଥିଲେ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଅନେକ ସ୍ଥଳରେ କବିଙ୍କର ରଚନା ସହିତ ସଂସ୍କୃତ ମାଘ, କାଦମ୍ବରୀ ରଚନା ପ୍ରଣାଳୀର ସୌସାଦୃଶ୍ୟ ଲକ୍ଷିତ ହୁଏ । ସଂସ୍କୃତ-ସାହିତ୍ୟରେ କବିଙ୍କର ପ୍ରଶଂସନୀୟ ପାଣ୍ଡିତ୍ୟ ଥିଲା, ଏହା କହିବା ଦ୍ୱିରୁକ୍ତିମାତ୍ର । ପ୍ରଗାଢ଼ ପାଣ୍ଡିତ୍ୟ ଥିବାରୁ କବି ସାହିତ୍ୟର ସେହି ସେହି ସାର ଭାଗକୁ ସ୍ୱଭାଷାରେ ଗ୍ରହଣ କରିବାପାଇଁ ଗଜ୍ୟଂଶରେ ଜଳାଞ୍ଜଳି ଦେଇ ନିରନ୍ତର ବ୍ୟାକୁଳ ଥିଲେ । ତାହାଙ୍କର କାବ୍ୟସକଳ ଅବିରସାମ୍ଭବ ହେଉ ବା ଅନ୍ୟ ଯାହା ହେଉ ତାହା ସେଠାରେ ଅଲୋଚ୍ୟ ନୁହେ; କିନ୍ତୁ ସେ ସଂସ୍କୃତ ସାହିତ୍ୟର ବିଶେଷତଃ କାବ୍ୟାଂଶର ରତ୍ନଗୁଡ଼ିକ ବାଛି ବାଛି ଉତ୍କଳସାହିତ୍ୟ ଭଣ୍ଡାରକୁ ଅଳଙ୍କୃତ କରିଅଛନ୍ତି, ଏଥିପାଇଁ କବି ଆମ୍ଭମାନଙ୍କର ଚିରସ୍ମରଣୀୟ । ଉତ୍କଳଭାଷାରେ ସଂସ୍କୃତଭାଷାର ଅଳଙ୍କାରମାନ ଓ ଉକ୍ତ ଶାସ୍ତ୍ରୀୟ ବିଷୟସବୁ ଜାଣିବାକୁ ଇଚ୍ଛା କଲେ ଉକ୍ତଗ୍ରନ୍ଥ ଭିନ୍ନ ଆଉ କାହିଁରୁ ସେତେ ମିଳିବ ନାହିଁ । ଉକ୍ତକବି ସ୍ୱକବିତାରେ ଯଥେଷ୍ଟ ପାଣ୍ଡିତ୍ୟ ଏବଂ ରଚନାବୈଚିତ୍ର ପ୍ରଦର୍ଶନ କରିଅଛନ୍ତି ।

ଅଲୋଚ୍ୟ ପୁସ୍ତକରେ ପ୍ରତିପାଦକ ବିଷୟରେ ଏପର୍ଯ୍ୟନ୍ତ କିଛି କଥିତ ହୋଇ ନାହିଁ । ରଚନାରେ ବିଶେଷତ୍ୱ ବା ନୂତନତ୍ୱ ଅଛି ବୋଲି କେହି କେହି ମନେ କରିପାରନ୍ତି ଯେ, ଏଥିରେ କିଛି ଗୋଟାଏ ନୂତନ ବିଷୟ ଥିବ, ତାହା ନୁହେ । ସେହି ଯୁବକ ଯୁବତୀ ପ୍ରେମ ଛଡ଼ା କବି ଆଉ ବିଶେଷ କିଛି ଏଥିରେ ନେଇ ନାହାନ୍ତି । ବସ୍ତୁତଃ ଏଥିରେ ଗୋଟିଏ କାବ୍ୟୋପଯୋଗୀ ପ୍ରତିପାଦ୍ୟ ବିଷୟ କିଛି ନାହିଁ । ବନ୍ଧମାନଙ୍କରେ କେବଳ ପ୍ରୋଷିତଭର୍ତ୍ତୃକା ଏବଂ ପ୍ରୋଷିତପତିର ପତ୍ର ପ୍ରତିପତ୍ରର ଆଦର୍ଶ ପ୍ରଦତ୍ତ ହୋଇଅଛି । ବନ୍ଧଲେଖାରୁ ଅନୁମିତ ହୁଏ ପୂର୍ବେ ପ୍ରବାସୀ ଶିକ୍ଷିତ ଯୁବକଯୁବତୀଗଣ ପତ୍ରଦ୍ୱାରା ସ୍ୱମନୋଭାବ ପ୍ରକାଶ୍ୟଭାବରେ ଲେଖିବାକୁ ସଙ୍କୁଚିତ ହୋଇ ବନ୍ଧଲେଖାରେ ବ୍ୟକ୍ତ କରି ସ୍ୱ ସ୍ୱ ପ୍ରଣୟୀ ନିକଟକୁ ପ୍ରେରଣ କରୁଥିଲେ । ବନ୍ଧରେ ପ୍ରଣୟୀର ଅପ୍ରକାଶ୍ୟ ମନୋଭାବ ଅକ୍ଷରଯୋଜନା କୌଶଳରେ ଗୂଢ଼ଭାବରେ ପ୍ରକାଶିତ ହୋଇ ପଡ଼ିବ, ଅଥଚ ତାହା ଉଦ୍ଦିଷ୍ଟ ବ୍ୟକ୍ତି ଭିନ୍ନ ଅନ୍ୟ କେହି ସହଜରେ ବୁଝି ପାରିବେ ନାହିଁ । ଏହି ସ୍ୱାର୍ଥସିଦ୍ଧି ଲାଗି ପ୍ରାଚୀନ ଯୁଗରେ ବନ୍ଧ ଲେଖାର ବେଶ ପ୍ରସାର ଥିଲା । କିନ୍ତୁ କେବଳ ଏହି ପ୍ରଣୟ ଲେଖାରେ ବନ୍ଧରଚନା ସୀମାବଦ୍ଧ ନ ଥିଲା—ଦେବସ୍ତୁତି, ଧ୍ୟାନାଦି ମଧ୍ୟ ବନ୍ଧବିନ୍ୟାସରେ ନ୍ୟସ୍ତ ହୋଇଥାଏ । ସଂସ୍କୃତଛନ୍ଦଶାସ୍ତ୍ରରେ ଅନେକ ବନ୍ଧ ଅଛି, ସଂସ୍କୃତର ମହାକବିମାନେ ମଧ୍ୟ ଏହାର ଖୁବ ଆଦର କରିଥିବାର କହି ଲେଖିଅଛନ୍ତି—

"ଯାହା ବାଲ୍ମୀକି କାଳିଦାସେ ଖ୍ୟାତ
କରଛନ୍ତି ତାହା ରଚନେ ଚତୁ ।"

ଏହି ବନ୍ଧକାବ୍ୟରେ କେବଳ ପ୍ରୀତିପତ୍ର ନାହିଁ, ଅନ୍ୟାନ୍ୟପ୍ରକାର ଲେଖା ମଧ୍ୟ ଅଛି । ନିମ୍ନୋଦ୍ଧୃତ ପଦ୍ୟାଂଶରୁ ତାହା ଜଣା ପଡ଼ିବ; ଯଥା—

"ସଂଯୋଗୀ ବିଯୋଗୀ ପାଶରେ ପେଳ ।
ବନ୍ଧିତ ଅଛନ୍ତି ମୁନୀନ୍ଦ୍ରଜନ ।
କେ ବନ୍ଧବିଧାନେ ପ୍ରିୟାବନିତ ।
କେ ସଖାରେ କହେ ଦେବତାସ୍ତୁତି ।
କେ ଦୂତୀ ଅଗେ ବିନତି ଭାଷଇ ।
କାହାକୁ ଦୂତୀ କରନେ ତୋଷଇ ।
ଏ ବିଧି ବନ୍ଧଦମ୍ପତୀ ରଚେ ।
ବନ୍ଧବିଧାନ ରସିକ ପଣ୍ଡିତ ।" ୧ମ ଛାନ୍ଦ

ଏଥିରେ ସର୍ବସୁଦ୍ଧା ୮୪ଟି ବନ୍ଧ ଅଛି । ନିମ୍ନରେ ତନ୍ମଧ୍ୟରୁ କେତୋଟିର ନାମୋଲ୍ଲେଖ ହେଉଅଛି । ଯଥା—ପ୍ରାସାଦବନ୍ଧ, ମଣ୍ଡପବନ୍ଧ,

ନାଗପାଶବନ୍ଧ, ଗୁଚ୍ଛବନ୍ଧ, ଲାଙ୍ଗଳବନ୍ଧ, ଛତ୍ରବନ୍ଧ, ଚୋରଚକ୍ରବନ୍ଧ, ପଲଙ୍କବନ୍ଧ, ଅଜାଯୁଦ୍ଧ, ପଦ୍ମବନ୍ଧ ଇତ୍ୟାଦି ।

ବନ୍ଧମାନଙ୍କ ନାମ ତାଲିକାରୁ ଗୋଟିଏ ଅଂଶ ଏଠାରେ ଉଦ୍ଧୃତ କରାଗଲା:—

ଅମ୍ବୁଜ ଚକ୍ରବନ୍ଧ ବଜ୍ରବନ୍ଧ ।
କମ୍ବୁ ଶମ୍ଭୁ ଶୂଳ ଗଦା ପ୍ରସିଦ୍ଧ ।
ରଥବନ୍ଧ ଅଷ୍ଟ ଦଳବିଧାନ ।
ଚନ୍ଦ୍ର ସୂର୍ଯ୍ୟ ଚତୁଷ୍କ ସ୍ୟନ୍ଦନ ।
ପରଶୁ ଖଡ଼୍ଗ କରକବାଟ ।
ସର୍ବତୋ ଭଦ୍ର ପୁଷ୍କରଣ ଅଷ୍ଟ ।
ମଣ୍ଡପ ପ୍ରାସାଦ ନାସାଗବାକ୍ଷ ।
ମୁରଜ ଲତା ବେନ ମତ୍ସ୍ୟଅକ୍ଷ ।
ବୀଣା କୁଳଶ ବହିଷ ଶକଟ ।
ଗୁଚ୍ଛ ଶର ପଣ୍ଡ ଧନୁ କୁକୁଟ ।
ଛୁରିକା କୁଟିଲ ଅସି ନାଗପାଶ ।
ସର୍ପଯୁଗଳହିଁ ବେଢ଼ି ଚଳନ୍ତି ।" ୧ମ ଛାନ୍ଦ

ଏହି ସବୁ ବନ୍ଧ ବ୍ୟତୀତ ଅନ୍ୟାନ୍ୟପ୍ରକାର ବନ୍ଧରେ ଲେଖିବା ନିମିତ୍ତ ମଧ୍ୟ କବିଙ୍କର ଇଚ୍ଛା ଥିଲା—ଗ୍ରନ୍ଥବାହୁଲ୍ୟ ଭୟରେ କବି ସେ ଉଦ୍ୟମରୁ ବିରତ ହୋଇଥିବାର ପ୍ରକାଶ କରିଅଛନ୍ତି ।

"ଆଉ ବନ୍ଧମାନେ ଅଛନ୍ତି ଯେହି ।
ଗ୍ରନ୍ଥ ବାହୁଲ୍ୟରୁ ଲେଖିଲି ନାହିଁ,
ବିଶେଷ କରଣ କହିବା କେତେ ।
ବନ୍ଧ କଥା ସେତ ଜାଣିବ ପଣ୍ଡିତେ ।"

ଶୁଣିଛୁ ଅନ୍ୟ କେହି ପରବର୍ତ୍ତୀ କବି ଚିତ୍ର-କାବ୍ୟବନ୍ଧୋଦୟ ନାମକ ଗୋଟିଏ ବନ୍ଧକାବ୍ୟ ପ୍ରଣୟନ କରିଅଛନ୍ତି । ସେଥିରେ ଏହି ପୁସ୍ତକା-ନ୍ତର୍ଗତ ବନ୍ଧମାନଙ୍କ ଭିନ୍ନ ଆଉ ଅନେକ ପ୍ରକାର ବନ୍ଧ ଅଛି । ପୁସ୍ତକଟି ହସ୍ତଗତ ହେଲେ ତାହାର ତଥ୍ୟ ସକଳ ଜଣାପଡ଼ିବ । କିନ୍ତୁ ଏକାଙ୍ଗୀୟ ପୁସ୍ତକର ତଥ୍ୟ ବା ସାରାଂଶ ଜଣାଇବାକୁ ହେଲେ କେବଳ ପଦ୍ୟାବଳୀ ଉଦ୍ଧାର କରିଦେଲେ ଚଳିବ ନାହିଁ । ଚିତ୍ରକାବ୍ୟରେ ଚିତ୍ର ପ୍ରଧାନ ଅଙ୍ଗ । ଚିତ୍ରଗୁଡ଼ିକ ପ୍ରଦର୍ଶନ କରିବା ମଧ୍ୟ ବଡ଼ ସହଜ ବ୍ୟାପାର ନୁହେ । ସୁତରାଂ ଏକାଙ୍ଗୀୟ ସଚିତ୍ର କାବ୍ୟର ମୁଦ୍ରଣ ବହୁ ବ୍ୟୟସାଧ୍ୟ । ଅନେକଗୁଡ଼ିଏ ବନ୍ଧର 'ବ୍ଲକ୍' ବା ମୁଦ୍ରଣପଟ୍ଟ ପ୍ରସ୍ତୁତ କରିବା ଅତି ଦୁଃସାଧ୍ୟ । ସେଥିପାଇଁ ଏ ପ୍ରବନ୍ଧରେ ଅତି ସରଳ ଗୋଟିଏ ଦୁଇଟି ବନ୍ଧ ଭିନ୍ନ ଅନ୍ୟ ଚିତ୍ର ଦେବାକୁ ପ୍ରବୃତ୍ତି ହେଉ ନାହିଁ । ଫଳତଃ ପୋଥିରୁ ବନ୍ଧମାନଙ୍କର ଚିତ୍ରଗୁଡ଼ିକ ନ ଦେଖିଲେ ପାଠକମାନଙ୍କର କୌତୂହଳ ଅପନୀତ ହେବ ନାହିଁ ।

ବନ୍ଧର ଉଦାହରଣ ଦେବା ପୂର୍ବରୁ ତାହାର ଲକ୍ଷଣାଦି ସମ୍ବନ୍ଧରେ କିଛି କହିବା ଅଗ୍ରେ ଆବଶ୍ୟକ । ସାଧାରଣତଃ ବନ୍ଧମାନଙ୍କରେ ଏହି ଦେଖାଯାଏ ଯେ, ଆବୃତ୍ତି ଓ ଶ୍ଳେଷରେ ବହୁ-ସଂଖ୍ୟକ ଅକ୍ଷର ଅଳ୍ପସଂଖ୍ୟକ ସ୍ଥାନରେ ବ୍ୟକ୍ତ ହୁଏ । ବିଭିନ୍ନ ଭାବରେ ପଢ଼ିଲେ ଭିନ୍ନ ଭିନ୍ନ କଥା ମିଳେ, ଏପରି କି କୌଣସି କୌଣସି ବୃହତ୍ ବନ୍ଧରେ ପଠନଭେଦରେ ଭିନ୍ନ ଭାଷାର ପଦାବଳୀ ମିଳି-ଯାଏ । ଅନେକ ସ୍ଥଳରେ ଯେପରି ଚାତୁରୀ ଅଛି, ତାହା ଦେଖିଲେ ପାଠକମାନେ ଅବଶ୍ୟ ବିଶେଷ ତୃପ୍ତି ଲାଭ କରି ପାରିବେ । କବି ମଧ୍ୟ ଏ ସମ୍ବନ୍ଧରେ କହିଅଛନ୍ତି:—

"ବର୍ଣ୍ଣ କହୁଛ ବୋଲୁଁରେ ସଂକ୍ଷେପ ।
ପ୍ରାସାଦ କଠିନ ଅର୍ଥ ସ୍ୱରୂପ ।
ଆବୃତ୍ତି ଶ୍ଳେଷ ବହୁବିଧ ରୀତି ।
ନାନା ଦେଶର ଭାଷାମାନ ସ୍ଥିତି ।
ଲେଖି ରଖି ଅର୍ଥ ହେବ କିରୂପ ।
ଦେଖି ଜାଣି ମୂର୍ଖ ପଣ୍ଡିତ ତୋଷ ।
ବନ୍ଧବୋଲଟି ଏମାନଙ୍କ କହି ।
ଏତେ ଲକ୍ଷଣମାନ ଥାଏ ଯହିଁ । ୧ମ ଛାନ୍ଦ ।

ଏହି ସବୁ ଲକ୍ଷଣଗୁଡ଼ିକ ବୁଝାଇ ଦେବା ପାଇଁ ସେହି ବନ୍ଧମାନଙ୍କର ଚିତ୍ର ପ୍ରଦର୍ଶନ କରିବା ଉଚିତ । କିନ୍ତୁ ଚିତ୍ରୋଦ୍ଧାର ସମ୍ବନ୍ଧରେ ଗୋଟିଏ ଆପତ୍ତି ପୂର୍ବରୁ ଜଣାଇଅଛି । ବର୍ତ୍ତମାନ ଦ୍ୱିତୀୟ ଆପତ୍ତି ଏହି ଯେ ତାହାର ଭାଷା ଅଦରକାସୂଚକ ।

ସୁତରାଂ ଉଲ୍ଲେଖ ଯୋଗ୍ୟ ନୁହେ । ତଥାପି ବନ୍ଧ ସମ୍ବନ୍ଧରେ କିଞ୍ଚିତ୍ ଧାରଣା ଜନ୍ମାଇବା ପାଇଁ ତଳେ ଗୋଟିଏ ଦୁଇଟି କ୍ଷୁଦ୍ର ବନ୍ଧ ପ୍ରଦତ୍ତ ହେଉଅଛି; ସେଥିର ଭାଷା ମଧ୍ୟ ଅତିରସାତ୍ମକ । ଦୃଷ୍ଟାନ୍ତ ପ୍ରଦର୍ଶନ ପୂର୍ବରୁ ପାଠକମାନଙ୍କୁ ଅନୁରୋଧ ଯେ, ସେମାନେ ବନ୍ଧଗତ ଭାଷାପ୍ରତି ଟିକିଏ ଦୃଷ୍ଟି ନ ଦେଇ ତହିଁର ନିୟମ ଓ କୌଶଳପ୍ରତି ଦୃଷ୍ଟି ଦେବେ ।

୧—ଅଷ୍ଟଦଳ ପଦ୍ମବନ୍ଧ:—



ପଦ—ତୁଷା ସାର ରସସର ।
ରତତର ରତାହାର

୨—ଷୋଡ଼ଶ ପଦ୍ମବନ୍ଧ:—



ପଦ—ରମା ସମା ରସା ଭୂଷା
ରଢ ଷଢ ରଥା ନଥା ।
ରହିଁ ଗୃହିଁ ରସ ଦାସ
ରଷ ରକ୍ଷ ରସ ଦାସ ।

ଉଲ୍ଲିଖିତ ବନ୍ଧଦ୍ୱୟରେ ୧୬ ଏବଂ ୩୨ ବର୍ଣ୍ଣ ବିଶିଷ୍ଟ ପଦଦ୍ୱୟ ଯଥାକ୍ରମେ ୯ ଏବଂ ୧୬ ଟି ପ୍ରକୋଷ୍ଠରେ ଲିଖିତ ହୋଇଅଛି । ସମ୍ପୂର୍ଣ୍ଣ ପଦ୍ମବନ୍ଧ ଠିକ ଏହିପରି । ଏଥିରେ ସ୍ଥଳେ ସ୍ଥଳେ ଗୋଟିଏ ଗୋଟିଏ ପଦ୍ୟ ଏକାଧିକ ବନ୍ଧରେ ଲିଖିତ ହୋଇଅଛି । କବାଟ, ଗୁପ୍ତ, ସିଂହାବଲୋକନ ଓ ଗଦା ବନ୍ଧରେ ନିମ୍ନଲିଖିତ ପଦଟି ନାନା ଭାବରେ ସଜ୍ଜିତ ହୋଇଅଛି । ଯଥା:—

ଧର ଗର ଧର ଶିର । ଶିର ହର ଖଳ ସାର ।
ସାର ହାର ଉର ତାର । ତାର ସୁର ଦର ହର ।

ଶମ୍ଭୁବନ୍ଧ । ପ୍ରାସାଦ ବନ୍ଧ, ଯୁଗୁଳନାଗ ବନ୍ଧ ପ୍ରଭୃତି କେତୋଟିରେ ଅତି ଦକ୍ଷତା ସହକାରେ ଅକ୍ଷର ବିନ୍ୟାସ ହୋଇଅଛି । ଅଷ୍ଟାଳତା । ବନ୍ଧ ଓ ରଥ ବନ୍ଧର ମଧ୍ୟସ୍ଥଳ ପାଠ କଲେ ଦୁଇଟି ଅଭିଧାନ ପର୍ଯ୍ୟାପ୍ତ ଏବଂ ଡମ୍ବରୁବନ୍ଧ ପାଠକଲେ ଗୋଟିଏ ଶିବସ୍ତୁତି ନିଷ୍ପାଦିତ ହୁଏ । ଅଶ୍ୱଗତିବନ୍ଧ ଲିଖିତ ପଦଦ୍ୱୟରୁ ଭିନ୍ନ ଭାବରେ ପଢ଼ିବା ଦ୍ୱାରା ବିକ୍ତ ଛନ୍ଦର ଅନ୍ତ ଦଶଟି ଭିନ୍ନାର୍ଥକ ପଦ୍ୟ ବାହାରିବ । ସପ୍ତଶାଳା ନାଗବନ୍ଧ ଏବଂ ପଞ୍ଚମ ଛନ୍ଦ ଗୋଳକଧନ୍ଦାରୁ କଠିନ । ଗୃହଧରୁ ପଦ ନିଷ୍କାଶନ କରିବା ଅତି ଦୁରୂହ ବ୍ୟାପାର । ପଞ୍ଚମ ଛନ୍ଦର ଶେଷ ବନ୍ଧରୁ ପଠନ ଭଙ୍ଗୀରେ ଛଅଟି ବସନ୍ତ ରାଗିଣୀର ଗୀତ ମିଳିବ । ଯଥା:—

"ବଙ୍ଗଳାଶ୍ରୀ ରାମକେରୀ ଭାଟିଆରୀ
ମାଳବ ନାମୋଦୀ ସାର ।
କଳାମ୍ବିଗଡ଼ା କେଦାର ଷଡ଼୍ଜ ସଙ୍ଗ
ବୁଝିବେ ଯେତେ ଚତୁର ।"

ସ୍ଥୂଳତଃ କହିବାକୁ ଗଲେ ଚିତ୍ରକାବ୍ୟର ରଚନା ଦୁର୍ବୋଧ୍ୟ ଏବଂ ଅଧୁନାତନ ପାଠକମାନଙ୍କ ଉପଯୋଗୀ ନୁହେ । ତାହାର ଭାବାବଗତି ନିମିତ୍ତ ଅଧିକ ଜ୍ଞାନ ଓ ଶ୍ରମ ଆବଶ୍ୟକ । ଅର୍ଥ ଗୌରବ ବିଷୟରେ ସମ୍ପୂର୍ଣ୍ଣତର ଭାବଗମ୍ୟ କବିତା ଏବଂ ଏହି କେନ୍ଦ୍ରାବ୍ୟ ସମାନ । ଭରତ (କେଶରୀ-ଜନ୍ମୀୟ)ର ଶେଷାଂଶ ମଧ୍ୟ ଏହିପରି ଦ୍ୱ୍ୟକ୍ଷ-ର, ଏକାକ୍ଷର, ସମୁଦ୍ରକ, ପ୍ରତିଲୋମାନୁଲୋମ, ଗୋମୂତ୍ରଛନ୍ଦ, ସର୍ବତୋଭଦ୍ର ବନ୍ଧାଦିଦ୍ୱାରା

ସମଳଙ୍କୃତ । ସେଥିଲାଗି ସୁପ୍ରସିଦ୍ଧ ଟୀକାକାର ମଲ୍ଲିନାଥ ଭାରବୀଙ୍କ କବିତାକୁ ନାରିକେଳ ଫଳ ପରି ବହିଃକଠିନ ଓ ଅନ୍ତଃସାରବାନ୍ ବୋଲି କହିଅଛନ୍ତି ।

"ନାରିକେଳ ଫଳସମ୍ମିତଂ ବଚୋ ଭାରବେଃ
ସପଦି ତଦ୍ ବିଭଜ୍ୟତେ ।
ସ୍ୱାଦୟନ୍ତୁ ରସଗର୍ଭ ନିର୍ଭରଂ ସାରମସ୍ୟ ରସିକା
ଯଥେପ୍ସିତମ୍ ।"

ଅନ୍ୟ ଏଣିକି ପୁସ୍ତକଟି ସମ୍ବନ୍ଧରେ ଅଧିକ କହିବା ଅନାବଶ୍ୟକ ବୋଧ ହେଉଅଛି । ଅତଏବ ଏହିଠାରେ ତତ୍ସମ୍ବନ୍ଧରେ ବକ୍ତବ୍ୟ ଶେଷ କରୁଅଛୁ । ଏହି ପୁସ୍ତକର ମୁଦ୍ରଣ ବିଷୟରେ ସମ୍ଭାବନା ଅତ୍ୟଳ୍ପ ଥିବାରୁ ଟିକିଏ ବିସ୍ତୃତ ଭାବରେ ପରିଚୟ ଦେବାକୁ ପଡ଼ିଲା । ଆଗାମୀ ବାରରେ ଅନ୍ୟାନ୍ୟ ପୁସ୍ତକମାନଙ୍କର ବିବରଣ ସଂକ୍ଷିପ୍ତ ଭାବରେ ପ୍ରକାଶ କରିବାର ମାନସ ରହିଲା ।

ଶ୍ରୀ ମୃତ୍ୟୁଞ୍ଜୟ ରଥ ।

---

## ଭାରତୀୟ ଜାତୀୟ-ମହାସମିତି ।

ଅତି ଶୁଭକ୍ଷଣରେ ଭାରତରେ ଜାତୀୟ ମହାସମିତିର ସୂତ୍ରପାତ ହୋଇଥିଲା । ଏହା ଭାରତବାସିଙ୍କର ଜାତୀୟ ଜୀବନରେ ଯୁଗାନ୍ତର ସଙ୍ଘଟନ କରିଅଛି ବୋଇଲେ ଅତୁକ୍ତି ହେବ ନାହିଁ । ନିର୍ଜୀବ ପ୍ରାଣରେ ସଞ୍ଜୀବନୀର ବାରି ସେଚନ କରିଅଛି । ବର୍ଷକରେ ଥରେ ଲେଖାଏଁ ଏହି ବିଶାଳ ଭାରତ ଭୂମିର ପ୍ରଧାନ ପ୍ରଧାନ କେନ୍ଦ୍ରସ୍ଥଳମାନଙ୍କରେ ଜାତୀୟ ମହାସମିତିରୂପ ମହାଦ୍ରୁମ ତଳେ ଭାରତର ବିଭିନ୍ନ ସ୍ଥାନମାନଙ୍କରୁ ବିଭିନ୍ନ ଜାତୀୟ, ବିଭିନ୍ନ ଧର୍ମାବଲମ୍ବୀ, ବିଭିନ୍ନ ସାମ୍ପ୍ରଦାୟିକ ପୁରୁଷମାନେ ସମବେତ ହୋଇ ଭାରତର ନାନା ଅଭାବ ଓ ସଦ୍ଭାବ ପ୍ରତି ଅତି ବିନୀତ ଓ ଶିଷ୍ଟ ଭାବରେ ଶାସନକର୍ତ୍ତାମାନଙ୍କର ସହାନୁଭୂତିପୂରିତ ଦୃଷ୍ଟି ଆକର୍ଷଣ କରିବାରେ ବ୍ୟାପୃତ ହୁଅନ୍ତି । କୌଣସି ପ୍ରକାରର ଉଦାସୀନତା କିମ୍ବା ଔଦ୍ଧତ୍ୟ ପ୍ରକାଶ ନ କରି ପ୍ରତ୍ୟେକ ଭାରତବାସିର ଏହାର କାର୍ଯ୍ୟ ପ୍ରଣାଳୀ ପ୍ରତି ବିଶେଷ ଲକ୍ଷ୍ୟ ରଖିବାର ବିଧେୟ । ଅଧିକନ୍ତୁ ମଧ୍ୟ ଭାରତର ବିଭିନ୍ନ ସ୍ଥାନମାନଙ୍କର ପ୍ରାଦେଶିକ ସମିତିମାନଙ୍କର ସମସ୍ତ ଶକ୍ତି ବର୍ଷକରେ ଥରେ ଲେଖାଏଁ ଏହି ମହାସମିତିରେ ପୁଞ୍ଜୀଭୂତ ହୋଇ ଭାରତର ନାନାବିଧ କଲ୍ୟାଣକର ବିଷୟମାନଙ୍କର ଆଲୋଚନାରେ ବ୍ୟାପୃତ ହେବାର ଏକାନ୍ତ ବାଞ୍ଛନୀୟ ବୋଲି ବୋଧ ହୁଏ ।

ସମ୍ପ୍ରତି ଏହି ମହାସମିତିର ବିଂଶତିତମ ଅଧିବେଶନଟି ଭାରତର ଚିର ପ୍ରସିଦ୍ଧ ଐତିହାସିକ ବୋମ୍ବାଇ ନଗରରେ ମହାସମାରୋହରେ ସୁସମ୍ପନ୍ନ ହୋଇଯାଇଅଛି । ଏହି ଅଧିବେଶନରେ ଆସାମର ଭୂତପୂର୍ବ ଚିଫ୍ କମିସନର ସର୍ ହେନେରୀ କଟନ, କେ. ସି. ଏସ. ଆଇ. ମହୋଦୟ ସଭାପତି କାର୍ଯ୍ୟ ନିର୍ବାହ କରିଥିଲେ । ଅଧିବେଶନର ବିଶେଷତ୍ୱଟି ଏହି ସ୍ଥଳରେ ବର୍ତ୍ତମାନ । ଆଜିପର୍ଯ୍ୟନ୍ତ ଯେତେ ଜଣ ଯଶସ୍ୱୀ ମହାପୁରୁଷ ଏହି ମହାସମିତିର ମଞ୍ଚରେ ବିରାଜମାନ ହୋଇ ସଭାପତିର ଗୁରୁ ଦାୟିତ୍ୱ ଅନୁଭବ କରି ଉକ୍ତ କାର୍ଯ୍ୟ ସନ୍ତୋଷଜନକରୂପେ ନିର୍ବାହ କରି ଆସିଅଛନ୍ତି ସେମାନଙ୍କ ମଧ୍ୟରେ ଭାରତର ଶାସନକର୍ତ୍ତା ସ୍ୱରୂପ ଭାରତ ବିଷୟରେ କେହି ଅଭିଜ୍ଞତା ଲାଭ କରି ପାରି ନ ଥିଲେ । କିନ୍ତୁ ମହାତ୍ମା କଟନ ଦୀର୍ଘକାଳ ପର୍ଯ୍ୟନ୍ତ ଭାରତରେ ନାନା ବିଭାଗରେ କାର୍ଯ୍ୟ କରି ପ୍ରାଦେଶିକ ଶାସନକର୍ତ୍ତା ସ୍ୱରୂପ ଭାରତବାସିଙ୍କର ପ୍ରକୃତ ଅବସ୍ଥାର ପରିମାଣ ସମ୍ୟକ୍‌ରୂପେ ହୃଦୟଙ୍ଗମ କରି ଥିଲେ । ନାନା କାର୍ଯ୍ୟରେ ନାନା ସ୍ଥାନରେ ସେ ସ୍ୱୀୟ

ଉଦାରଭାବରେ ଭାରତବାସିଙ୍କର କୃତଜ୍ଞତାଭାଜନ ହୋଇଅଛନ୍ତି ।

ମହାତ୍ମା କଟନ ୧୮୪୫ ଖ୍ରୀଷ୍ଟାବ୍ଦରେ ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଗତ 'କୁମ୍ଭକୋଣମ' ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଭାରତ ତାହାଙ୍କର ଜନ୍ମଭୂମି । ଏଭାବରେ ତାହାଙ୍କର ଭାରତ ପ୍ରୀତି ସ୍ୱାଭାବିକ ଓ ଅସାମାନ୍ୟ ଅଟେ । ଏହାଙ୍କର ପୂର୍ବପୁରୁଷମାନେ ପ୍ରାୟ ଶତାଧିକ ବର୍ଷ କାଳ ଭାରତ ପ୍ରବାସୀ ଅଟନ୍ତି । ସେମାନେ ଭାରତରେ ନାନା ବିଭାଗରେ ଶାସନଦଣ୍ଡ ଧାରଣ କରି ପ୍ରତିପତ୍ତି ଲାଭ କରି ଥିଲେ । ଏହାଙ୍କର ଭ୍ରାତା J. S Cotton ଭାରତରେ ଦୀର୍ଘ କାଳ ଯାପନ କରିଥିଲେ । ସେ ଜଣେ ସୁଲେଖକ ଓ ବିଚକ୍ଷଣ ପଣ୍ଡିତ ଥିଲେ । English Citizen ନାମକ ଗ୍ରନ୍ଥମାଳାର ଅନ୍ତର୍ଭୁକ୍ତ 'ଭାରତବର୍ଷ' ସମ୍ବନ୍ଧୀୟ ଗ୍ରନ୍ଥଟି ଏହାଙ୍କ ରଚିତ ଅଟେ । ଅନ୍ୟର ମଧ୍ୟ Rulers of India ନାମକ ଗ୍ରନ୍ଥମାଳାର ଅନ୍ତର୍ଭୁକ୍ତ 'Sir Mount Stuart Elphinstone'ଙ୍କ ଜୀବନୀ ଏହାଙ୍କଦ୍ୱାରା ଲିଖିତ ହୋଇଥିଲା । ବିଶେଷ ଏହିକି ଯେ ସୁନାମ ଧନ୍ୟ Sir. W. Hunterଙ୍କ ସଙ୍କଳିତ 'Imperial gazetteer of India' ନାମକ ବୃହତ୍ ଗ୍ରନ୍ଥର ଦ୍ୱିତୀୟ ସଂସ୍କରଣର ଭାର ଏହି Joseph Cottonଙ୍କଠାରେ ନ୍ୟସ୍ତ ଅଛି । ଏଥିରୁ କଟନ ବଂଶର ଭାରତ ପ୍ରୀତି ସହଜରେ ପାଠକବର୍ଗ ଉପଲବ୍ଧି କରି ପାରୁଥିବେ । ଦୀର୍ଘକାଳ ପର୍ଯ୍ୟନ୍ତ ଏହି କଟନ ବଂଶ ଭାରତ ସହିତ ଅଚ୍ଛେଦ୍ୟ ପ୍ରୀତି ସୂତ୍ରରେ ଅବଦ୍ଧ । ସରକାରୀ କର୍ମ ତ୍ୟାଗ କରି ସ୍ୱଦେଶ ଯାତ୍ରା କରିବା ସମୟରେ ସର ହେନେରି କଟନ ଏକ ବିଦାୟ ସଭାରେ କହିଥିଲେ । "ଭାରତ ନିକଟରେ ମୁଁ ଅପରିଶୋଧନୀୟ ଋଣରେ ଅବଦ୍ଧ । ଏହାର ମାୟାଜାଲକୁ ଛିନ୍ନ କରିବାରେ ମୁଁ ଏକାନ୍ତ ଅସମର୍ଥ । ଜୀବିତ ଥିଲେ ମୁଁ ଆଉ ଥରେ ଭାରତବର୍ଷକୁ ଆସିବାର ସୁଯୋଗ ପରିତ୍ୟାଗ କରିବି ନାହିଁ । ସ୍ୱୀୟ ଭ୍ରାତାଙ୍କ ସଦୃଶ ଏ ମହାତ୍ମା ମଧ୍ୟ ସୁବକ୍ତାରଦ, ଗବେଷଣାପ୍ରିୟ ଓ ସୁଲେଖକ ଅଟନ୍ତି । ଏହାଙ୍କ ରଚିତ 'New India' ନାମକ ଗ୍ରନ୍ଥ ଖଣ୍ଡିଏ ସୁଖପାଠ୍ୟ ଗ୍ରନ୍ଥ ଅଟେ । ଆଧୁନିକ କାଳରେ ଭାରତବାସିଙ୍କର ଅବସ୍ଥାର ପ୍ରକୃତ ତଥ୍ୟ ଜାଣିବାକୁ ଇଚ୍ଛା କଲେ ପାର୍ଲିଅମେଣ୍ଟ ମହାସଭାର ପ୍ରତ୍ୟେକ ସଦସ୍ୟଙ୍କର ଏ ପୁସ୍ତକ ଥରେ ହେଲେ ଅଧ୍ୟୟନ କରିବା ବିଧେୟ । ମହାତ୍ମା କଟନ ହୁମିଷ୍ଟର ଘୋର ବିରୋଧୀ ଓ ଉଦାର ଶାସନ ନୀତିର ପ୍ରଧାନ ପୃଷ୍ଠପୋଷକ ଅଟନ୍ତି । ପ୍ରଜାମାନଙ୍କର ସୁଖଶାନ୍ତି ଓ ଐଶ୍ୱର୍ଯ୍ୟବର୍ଦ୍ଧନ ଶାସନକର୍ତ୍ତାଙ୍କର ଏକମାତ୍ର ଲକ୍ଷ୍ୟ ବୋଲି ପ୍ରକାଶ କରି ଥାନ୍ତି । ଅସାଧାରଣ କର୍ତ୍ତବ୍ୟପରାୟଣ ହୋଇ ମନ ପ୍ରାଣ ଦେଇ ସେ ସ୍ୱକୀୟ କର୍ତ୍ତବ୍ୟ ସାଧନ କରୁଥିଲେ । ଭାରତର ଶିକ୍ଷିତ ସମ୍ପ୍ରଦାୟ ପ୍ରତି ଏହାଙ୍କର ଯଥେଷ୍ଟ ସହାନୁଭୂତି ଥିବାର ଲକ୍ଷିତ ହୁଏ । ତାହାଙ୍କର 'New India' ନାମକ ଗ୍ରନ୍ଥର Social and moral crisis ନାମକ ପ୍ରବନ୍ଧରେ ଭାରତର ସାମାଜିକ ନୀତି ପ୍ରତି ଲକ୍ଷ କରି ସେ କେତେକ କଥା ଲେଖି ଅଛନ୍ତି । ପାଶ୍ଚାତ୍ୟ ସଭ୍ୟତାର ମିଶ୍ରଣରେ ଭାରତର ପ୍ରାଚ୍ୟ ସଭ୍ୟତା ଅଧୁନା ନିଷ୍ପ୍ରଭ ହୋଇ ଥିଲେହେଁ ଅତି ସୁଦୂର ଭବିଷ୍ୟତରେ ଏହି ପ୍ରାଚ୍ୟ ସଭ୍ୟତାର ଜୟ ଅବଶ୍ୟମ୍ଭାବୀ । ଯୁଗେ ଯୁଗେ ହିନ୍ଦୁଧର୍ମ ଏହିପରି ନାନା ବହିଃଶତ୍ରୁର ଆକ୍ରମଣରୁ ସ୍ୱୀୟ ପ୍ରାଧାନ୍ୟ ଅକ୍ଷୁଣ୍ଣ ରଖିଥିବା ଏହାର ଦୃଢ଼ ଆଧ୍ୟାତ୍ମିକ ତତ୍ତ୍ୱ ଓ ନୀତି ହିଁ ଏହାର ସ୍ଥାୟିତ୍ୱର କାରଣ ବୋଲି ନିର୍ଦ୍ଦେଶ କରାଯାଇ ପାରେ । ଭାରତବର୍ଷ ପକ୍ଷରେ ଭାରତର ବର୍ଣ୍ଣାଶ୍ରମ ପ୍ରଥା ମହୋପକାରକ ବୋଲି ବିବେଚିତ ହୁଏ । ହେଲେ ସୁଦ୍ଧା କାଳୋଚିତ ସଂସ୍କାର ସମାଜର ଉନ୍ନତିର ପ୍ରଧାନ ସହାୟ ବୋଲି ସେ ପ୍ରକାଶ କରିଅଛନ୍ତି ।

ନାନା କାରଣରୁ ଉକ୍ତ ମହାତ୍ମା ଅସମୟରେ ରାଜକାର୍ଯ୍ୟରୁ ଅବସର ଗ୍ରହଣ କରିଅଛନ୍ତି । ତାହା

ହୋଇ ନ ଥିଲେ ଆଜି ଉକ୍ତ ମହାତ୍ମା ଜାତୀୟ ମହାସମିତିର ସଭାପତି ଆସନକୁ ଅଲଙ୍କୃତ କରି-ଥିବାର ଦେଖି ଆମ୍ଭମାନଙ୍କୁ ଗୌରବାନ୍ୱିତ ମନେ କରୁ ନ ଥାନ୍ତୁ । ଏହି ମହାସଭାରେ ମାନ୍ୟବର ସୁଦୀର୍ଘ ବକ୍ତୃତାଟି ଅନେକ ଚିନ୍ତାପୂର୍ଣ୍ଣ, ଉଦାର ଓ ସରସ କଥାରେ ପରିପୂର୍ଣ୍ଣ । ଏହା ଏହି ପ୍ରବନ୍ଧର ପ୍ରଧାନ ଆଲୋଚ୍ୟ ବିଷୟ । ଜାତୀୟ ମହାସମିତିର ମଞ୍ଚରେ ଯେତେ ବକ୍ତୃତା ଆଜିପର୍ଯ୍ୟନ୍ତ ପଠିତ ହୋଇଅଛି ସେମାନଙ୍କ ସହିତ ତୁଳନା କଲେ ଉପସ୍ଥିତ ବକ୍ତୃତାରେ କେତେକ ନୂତନ ସାର-ତଥ୍ୟ ଭିନ୍ନ ପ୍ରଣାଳୀରେ ଆଲୋଚିତ ହୋଇ-ଥିବାର ସ୍ପଷ୍ଟରୂପେ ପ୍ରତୀୟମାନ ହେବ । ବକ୍ତୃତାଟିର ସୂଚନାରେ ସଭାପତି ମହୋଦୟ ଅତି ସୁନ୍ଦର ରୂପେ ଭାରତରେ ଜାତୀୟ ମହାସମିତିର ଶକ୍ତି ଓ ସ୍ଥାନ ନିର୍ଦ୍ଦେଶ କରିଅଛନ୍ତି । ସେ କହିଅଛନ୍ତି, ଏହି ମହାସମିତିରେ ବିଶାଳ ଭାରତୀୟଜାତିର ମୁଖ୍ୟମାନେ, ରାଜନୈତିକ ଅଧିନାୟକମାନେ, ସମବେତ ହୋଇଅଛନ୍ତି । ଏହି ସମିତିରେ ଦେଶର କଣ୍ଠ ସ୍ୱର ସହିତ ଦେଶର ମସ୍ତିଷ୍କ ମିଳିତ ହୋଇଅଛି । ଅତଏବ ସେମାନଙ୍କର ସ୍ଥାନ ଭ୍ରଷ୍ଟ ହେବାର କୌଣସି କାରଣ ନାହିଁ । ଏହି ସୁବିସ୍ତୀର୍ଣ୍ଣ ମଣ୍ଡପରେ ଭାରତର ସକଳ ପ୍ରଦେଶର ବିଚକ୍ଷଣ ବ୍ୟକ୍ତିମାନେ ପ୍ରତିନିଧିସ୍ୱରୂପ ସମବେତ ହୋଇ ଭାରତସାମ୍ରାଜ୍ୟର ଶ୍ରୀବୃଦ୍ଧି ଓ କଲ୍ୟାଣ ନିମନ୍ତେ କେତେକ ବିଷୟର ଆଲୋଚନାରେ ମନଃପ୍ରାଣ ଢାଳି ଦିଅନ୍ତି । ଦେଶୀୟ ସର୍ବସାଧାରଣଙ୍କର ରାଜନୈତିକ ସ୍ୱାଧୀନ ମତ ସମ୍ବାଦପତ୍ର ଓ ସଭାସମିତି ଦ୍ୱାରା ବିଲକ୍ଷଣ ରୂପେ ସମୁଦାୟ ବର୍ଷଯାକ ପ୍ରକାଶିତ ହୋଇ ସଂଗଠିତ ହୋଇଥାଏ । ଆହୁରି ମଧ୍ୟ ଦେଶୀୟ ଯେଉଁ ଉଚ୍ଚପ୍ରାଣ ବ୍ୟକ୍ତିମାନେ ବ୍ୟବସ୍ଥାପକ ସଭାରେ ସ୍ଥାନ ପାଇଥାନ୍ତି ସେଠାରେ ସେମାନେ ଦେଶର ସର୍ବସାଧାରଣଙ୍କର ମତ ଓ ଅନ୍ତର୍ନିହିତ ଭାବ ସବୁ ପରିପୁଷ୍ଟ ଓ ସୁସମ୍ବଦ୍ଧ ଆକାରରେ ପ୍ରକାଶ କରିବାକୁ ଅବସର ପାଇ-ଥାନ୍ତି ଏବଂ ଅବଶେଷରେ ଦକେ ସେହି ବିଶାଳ ଭାରତୀୟ ଜାତିର ମୁଖ୍ୟ ସ୍ୱରୂପ ନେତାଗଣ ଏହି ମହାସମିତିରେ ଏକତ୍ର ହୋଇ ସେହି ପରି-ପୋଷିତ ରାଜନୈତିକ ମତ ସବୁ ସୁଶୃଙ୍ଖଳ ଭାବରେ ସର୍ବସାଧାରଣ ଓ ଶାସନକର୍ତ୍ତାଙ୍କ ଗୋଚରାର୍ଥେ ଆଲୋଚନା କରିଥାନ୍ତି । ଏହି ଉଦ୍ଦେଶ୍ୟ ସାଧନାର୍ଥ ଆମ୍ଭେମାନେ ଏଠାରେ ସମ୍ମିଳିତ ହୋଇଅଛୁଁ । ମୋର ବିଚାରରେ ଏତାଦୃଶ କାର୍ଯ୍ୟସାଧନ ନିମନ୍ତେ ଏହି ସମବେତ ଦଳ ଅପେକ୍ଷା ଅଧିକ ଯୋଗ୍ୟତର ସମ୍ମିଳନୀର ଆଶା କରିବା ଦୁରାଶା ମାତ୍ର ।

ସେ କହିଅଛନ୍ତି, ମୁଁ ଏହି ମହାସମିତିର ଜନ୍ମ-କାଳରୁ ଏହାର କାର୍ଯ୍ୟ ଆଲୋଚନା କରି ଦେଖି ଆସୁଅଛି । ଏହା ଅତି ଯୋଗ୍ୟତା ସଂଯମ ଓ ଶିଷ୍ଟାଚାର ସହିତ ସ୍ୱୀୟ କର୍ତ୍ତବ୍ୟସାଧନ କରି ଆସୁଅଛି । ଏହାର ଅତୀତ ଇତିହାସ ଭାବୀ ଆଶା ପୂର୍ଣ୍ଣ ଓ ଗୌରବମୟ । ଯଦିବା ଗବର୍ଣ୍ଣମେଣ୍ଟଙ୍କ ନୀତି ଉପରେ କୌଣସି ପ୍ରକାରେ ଏହାର ପ୍ରାଧାନ୍ୟ ବା ପ୍ରଭାବ ଲକ୍ଷିତ ହୁଏ ନାହିଁ, ତଥାପି ଏହା ଦେଶର ଲୋକମାନଙ୍କର ଇତିହାସ ଓ ଚରିତ୍ରର ଗତିକୁ ଉନ୍ନତ ପଥରେ ଚାଳିତ କରିଅଛି, ସନ୍ଦେହ ନାହିଁ । ଏହାର ଶକ୍ତି ନିତାନ୍ତ ସାମାନ୍ୟ ନୁହେ । ଏହାର ଅଧିନାୟକଗଣଙ୍କର ମତ ଭାରତର ଏକପ୍ରାନ୍ତରୁ ଅନ୍ୟ ପ୍ରାନ୍ତପର୍ଯ୍ୟନ୍ତ ଉଦ୍‌ଘୋଷିତ ହେଉଅଛି । ଏମାନେ ଅବିନଶ୍ୱର ଯଶ ଅର୍ଜନ କରିଅଛନ୍ତି । ଭାରତରେ ଭାବୀ ବଂଶଧରମାନେ ଏମାନଙ୍କର ଗୁଣ କୀର୍ତ୍ତନ କରି ଅନ୍ତରର କୃତଜ୍ଞତା ସହିତ ଏମାନଙ୍କର ନାମ ସ୍ମରଣ କରିବେ । ଏମାନଙ୍କର ପୁଣ୍ୟମୟ ନାମ ଧନୀର ପ୍ରାସାଦରୁ ଆରମ୍ଭ କରି ଦୀନହୀନର କୁଟୀର ପର୍ଯ୍ୟନ୍ତ ଘୋଷିତ ହେଉଥିବ ।

ଏହି ମହାସମିତିର ନେତା ଏବଂ ସେମାନଙ୍କର ମତାନୁଗାମୀ ଦଳପ୍ରତି ଲକ୍ଷ୍ୟ କରି ମହାମତି [illegible] ଯେଉଁ ସାର ସତ୍ୟ କଥା ଉଚ୍ଚ କଣ୍ଠରେ

ସେହି ପବିତ୍ର ମଣ୍ଡପରେ ସମଗ୍ର ଭାରତବାସୀର ଅଧିନାୟକମାନଙ୍କ ସମ୍ମୁଖରେ ଅକୁଣ୍ଠିତ ଭାବରେ ଘୋଷଣା କରିଥିଲେ ତାହା ମୋହର କ୍ଷୁଦ୍ର ବୁଦ୍ଧିରେ ଭାରତର ଓ ଭାରତର ସକଳ ପ୍ରଦେଶର ସକଳ ପ୍ରକାର ଅନୁଷ୍ଠାନର ଓ ଆନ୍ଦୋଳନର ସ୍ଥାୟିତ୍ୱ ଓ ସଫଳତା ବିଷୟରେ ସର୍ବଶ୍ରେଷ୍ଠ ପଥପ୍ରଦର୍ଶକରୂପେ କାର୍ଯ୍ୟ କରିବ ସନ୍ଦେହ ନାହିଁ । ସେହି ଉକ୍ତିଗୁଡ଼ିକୁ ହୃଦୟର ନିଭୃତ ସ୍ଥାନରେ ସଦା ସଂରକ୍ଷଣ କରି ଶିକ୍ଷିତ ସମ୍ପ୍ରଦାୟ କାର୍ଯ୍ୟାରମ୍ଭ କଲେ ନିଶ୍ଚୟ ନୈରାଶ୍ୟର ଘୋର ତମିସ୍ର ଗହ୍ୱରରେ ଆଶାର କ୍ଷୀଣାଲୋକ ଉଦ୍ଭାସିତ ହେବ । ତାହା ଏହି "Patience and perseverence, carnestness and resolution —these are the attributes of the leaders of a national movement. × × × But the victory cannot be wonby leaders only. It is for their followers to give them their loyal and undivided support. You cannot be all leaders. Captain and generals are few in number; the plan of campaign is designed by them but success is assured by the obedience and discipline of the rank and file." ଅର୍ଥାତ୍ ସର୍ବ ପ୍ରକାର ଜାତୀୟ ଅନୁଷ୍ଠାନର ନେତାମାନଙ୍କର ସର୍ବତୋଭାବେ କଷ୍ଟସହିଷ୍ଣୁ, ଧୀର, ଅଧ୍ୟବସାୟୀ, ଏକାଗ୍ର, ସୁଦୃଢ଼ ହେବା କର୍ତ୍ତବ୍ୟ । ଏହା ଏହି ସ୍ଥଳରେ ମୁଁ ସାହସ ପୂର୍ବକ କହିପାରେ ଯେ ପୂର୍ବୋକ୍ତ ଗୁଣନିଚୟ ଏହି ମହାସମିତିର ଅଧିନାୟକଗଣଙ୍କଠାରେ ବର୍ତ୍ତମାନ । କିନ୍ତୁ ଏହା ସମସ୍ତଙ୍କର ସ୍ମରଣ ରଖିବା ଉଚିତ ଯେ କେବଳ ଅଧିନାୟକଗଣଙ୍କଦ୍ୱାରା କାର୍ଯ୍ୟୋଦ୍ଧାର ହୁଏ ନାହିଁ—ସିଦ୍ଧିଲାଭ ହୁଏ ନାହିଁ, ଅନୁବର୍ତ୍ତୀ ସହକାରୀମାନଙ୍କର ଏତାଦୃଶ କାର୍ଯ୍ୟମାନଙ୍କରେ ସମ୍ପୂର୍ଣ୍ଣ ଅନୁରାଗ, ଯୋଗ, ସହାନୁଭୂତି ଓ ଏକନିଷ୍ଠତା ରହିବା ଏକାନ୍ତ ବାଞ୍ଛନୀୟ । ସମସ୍ତପକ୍ଷରେ ନେତା ହେବାକୁ ଇଚ୍ଛା କରିବା ମଧ୍ୟ ସଙ୍ଗତ ନୁହେ । ନେତାମାନଙ୍କର ସଂଖ୍ୟା ଅତ୍ୟଳ୍ପ, ସେମାନେ ଉପାୟ ଉଦ୍ଭାବନ କରନ୍ତି, ଚିନ୍ତା କରନ୍ତି ପରିଣାମ ଦେଖି କାର୍ଯ୍ୟପ୍ରଣାଳୀର ବ୍ୟବସ୍ଥା କରନ୍ତି, କିନ୍ତୁ ଅନୁଚର ଓ ସହକାରୀମାନଙ୍କର ଆଜ୍ଞାନୁବର୍ତ୍ତିତା ଓ କାର୍ଯ୍ୟଦକ୍ଷତା ଉପରେ ସମ୍ପୂର୍ଣ୍ଣରୂପେ ସବୁ ନିର୍ଭର କରେ, ଅତଏବ ଏହି ମହାସମିତିରେ ବ୍ୟକ୍ତିଗତ ମତଭେଦ, ସଙ୍କୀର୍ଣ୍ଣତା, ବିଦ୍ୱେଷବୁଦ୍ଧି ସର୍ବଥା ପରିତ୍ୟାଗ କରି କର୍ତ୍ତବ୍ୟପଥରେ ଲକ୍ଷ୍ୟଭ୍ରଷ୍ଟ ନ ହୋଇ ଧାବମାନ ହେବା ସର୍ବଥା କର୍ତ୍ତବ୍ୟ ।

ମନସ୍ୱୀ କଟନଙ୍କର ଏହି କେତେକ ଉକ୍ତି ଅତ୍ୟନ୍ତ ସାରଗର୍ଭ, ଅକ୍ଷରେ ଅକ୍ଷରେ ଜ୍ୱଳନ୍ତ ସତ୍ୟ । ଯେବେ ଆମ୍ଭେମାନେ—ଏହି ଉତ୍କଳବାସୀମାନେ—କେବେ ଆମ୍ଭମାନଙ୍କର ଏହି "ଉତ୍କଳ-ସମ୍ମିଳନୀ" ରୂପ ମହଦନୁଷ୍ଠାନଟିକୁ ସଫଳ ହେବାର ଦେଖି ଜୀବନକୁ କୃତାର୍ଥ ମଣିବାର ବାଞ୍ଛା କରୁଁ, ତାହାହେଲେ ସର୍ କଟନଙ୍କର ଏହି ଉକ୍ତିଗୁଡ଼ିକୁ ଜ୍ୱଳନ୍ତ ଅକ୍ଷରରେ ଲିପିବଦ୍ଧ କରି ଗଳାରେ ପରିଧାନ କରୁଁ । ଉତ୍କଳର ଇତିହାସରେ "ସମ୍ମିଳନୀ"ର ନାମ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବା ଉଚିତ । ଉତ୍କଳର ଜାତୀୟଜୀବନରେ ଏହା ଯୁଗାନ୍ତରର ସୂତ୍ରପାତ କରିଅଛି । ଏହାର ନାମ ସ୍ମରଣ କଲା ମାତ୍ରେ ମନରେ ସ୍ୱତଃ ଏକ ଅପୂର୍ବ ଭାବର ଉଦ୍ରେକ ହୁଏ । ମୋହର ମନରେ ଏହି ପ୍ରଶ୍ନ ଉଦିତ ହେଉଅଛି ସମଗ୍ର ଉତ୍କଳଖଣ୍ଡରେ ଏପରି କେହି ସାର୍ଥକନାମା ଧନ୍ୟ ପୁରୁଷ ଅଛନ୍ତି ଯେ କି ଆପଣାର ଗୁରୁଦାୟିତ୍ୱ ସମ୍ୟକ୍ ପରିମାଣରେ ଅନୁଭବ କରି ସମ୍ମିଳନୀର ଉଦ୍ଭାବକମାନଙ୍କ ସହାୟତା କରିବାରେ ସ୍ୱତଃ ଅଗ୍ରସର ହୋଇଅଛନ୍ତି ? ଉଦାସୀନ ହେବାର ସମୟ ନାହିଁ, ବୃଥା କାଳକ୍ଷେପ କରିବାର ସମୟ ଏ ନୁହେ, ନିରାଶାର ବାଣୀ ପ୍ରଚାର କରି ପ୍ରବୃଦ୍ଧ ମନକୁ ହତୋତ୍ସାହ କରିବା କେବେହେଁ ସୁସଙ୍ଗତ ନୁହେ । ନବୋଦ୍ୟମରେ ନାନା ଭ୍ରାନ୍ତି

ଥାଇ ପାରେ, ସେ ସବୁ ଦେଖି ଭବିଷ୍ୟ ଉଜ୍ଜ୍ୱଳତା ସୁଲକ୍ଷଣ ନୁହେଁ; କିନ୍ତୁ ନୁହେଁ, ଫଳରେ କିଛି ହେବ ନାହିଁ ବୋଲି ଉକ୍ତ ବୈରାଗ୍ୟ ବୃତ୍ତି ଅବଲମ୍ବନ କରିବା ଶୋଭନୀୟ ନୁହେଁ; ଯତ୍ନ କଲେ ସଫଳ ହେବାର ପୂର୍ଣ୍ଣ ସମ୍ଭାବନା, ତାହାର କେବଳ ଉପାୟମାନ ନିର୍ଦ୍ଧାରଣ କରି କାର୍ଯ୍ୟରେ ପରିଣତ କରିବାରେ ସଚେଷ୍ଟ ହେବା କର୍ତ୍ତବ୍ୟ; ମୋହର କ୍ଷୁଦ୍ର ବୁଦ୍ଧିରେ ସମ୍ମିଳନୀର ବର୍ତ୍ତମାନ ଅବସ୍ଥାରେ ସଭାପତି କଟନଙ୍କର ପ୍ରୋକ୍ତ ବାକ୍ୟ-ସବୁ ସମସ୍ତ ଦଳୀୟଙ୍କର ଆଦର୍ଶ ହେବା ବାଞ୍ଛନୀୟ ।

ଇଂଲଣ୍ଡ ଓ ଭାରତର ପ୍ରସଙ୍ଗରେ ସଭାପତି ମହୋଦୟ କହିଅଛନ୍ତି ଯେ ଏହି ମହାସମିତିରେ ଭାରତୀୟ ପ୍ରତିନିଧିମାନେ ବର୍ଷକୁ ବର୍ଷ ସମବେତ ହୋଇ ଯେଉଁ ରାଜନୈତିକ ସଂସ୍କାରର ପ୍ରାର୍ଥୀ ହୁଅନ୍ତି ତାହାର ପ୍ରବର୍ତ୍ତନ ଓ ସଫଳତା ଅନେକ ପରିମାଣରେ ବିଲାତର ଜନସାଧାରଣଙ୍କ ଉପରେ ନିର୍ଭର କରେ । ସେହିମାନେ କେବଳ ଗଭର୍ଣ୍ଣମେଣ୍ଟର ଶାସନନୀତିକୁ ପରିବର୍ତ୍ତିତ କରିବାରେ ସମର୍ଥ ଅଟନ୍ତି । ଏହି ମହାସମିତିର ଏହାର ବ୍ରିଟିଶ କମିଟିକୁ ବିଶେଷଭାବରେ ସାହାଯ୍ୟ କରିବା ଉଚିତ । କାରଣ ଏହା ନାନା ଉପାୟରେ ବ୍ରିଟିଶଜାତିର ହୃଦୟରେ ଭାରତପ୍ରତି ପ୍ରୀତି ଓ ସହାନୁଭୂତି ଜାତ କରାଏ । ଭାରତ ପ୍ରତି ଯେଉଁମାନଙ୍କର ଗଭୀର ମମତା ଅଛି ସେହିସବୁ ଲୋକମାନଙ୍କର ସଂଖ୍ୟା ପାର୍ଲିଅମେଣ୍ଟରେ ଦିନକୁଦିନ ବୃଦ୍ଧିପ୍ରାପ୍ତ ହେଲେ ଭାରତ ପକ୍ଷରେ ସୁଫଳ ଫଳିବାର ସମ୍ଭାବନା—ଭାରତ ପ୍ରତି ଯେଉଁମାନଙ୍କର ଆସ୍ଥା ଅଛି ସେପରି ପ୍ରତିନିଧିମାନେ ଯେଉଁ ଯେଉଁ କେନ୍ଦ୍ରରୁ ନିର୍ବାଚିତ ହୁଅନ୍ତି, ସେହି ସେହି ସ୍ଥାନମାନଙ୍କର ହିତ ସାଧନରେ ରତ ହୁଅନ୍ତି । ପାର୍ଲିଅମେଣ୍ଟ ମହାସଭାରେ ଭାରତ ସହିତ ସେମାନଙ୍କର କିଛି ସମ୍ପର୍କ ନ ଥାଏ । ଭାରତର ପ୍ରତିନିଧି ସ୍ଥାନୀୟ ବ୍ୟକ୍ତି ପାର୍ଲିଅମେଣ୍ଟରେ ନାହାନ୍ତି । ଏହା ଭାରତ ପକ୍ଷରେ ଶୁଭଜନକ ନୁହେଁ ।

ସଭାପତି ମହୋଦୟ ପାର୍ଲିଅମେଣ୍ଟ ମହାସଭା ସହିତ ଭାରତ ଗଭର୍ଣ୍ଣମେଣ୍ଟଙ୍କ ସମ୍ବନ୍ଧ ସ୍ଥଳରେ ପ୍ରମାଣ କରିଥିଲେ । ସେ କହିଥିଲେ ଏକ ସମୟରେ ମନ୍ତ୍ରିପ୍ରବର ଗ୍ଲାଡ୍‌ଷ୍ଟୋନ ମହୋଦୟ ବ୍ରିଟିଶ ଗଭର୍ଣ୍ଣମେଣ୍ଟଙ୍କ ପକ୍ଷରୁ ମହାସଭାରେ ବ୍ୟକ୍ତ କରିଥିଲେ, “ଭାରତବର୍ଷରେ ରାଜକାର୍ଯ୍ୟର ସୁଚାରୁ ସମ୍ପାଦନ ନିମନ୍ତେ ପ୍ରୟୋଜନୀୟ ସକଳପ୍ରକାର ବ୍ୟବସ୍ଥା କରିବାର ଭାର ଭାରତଗଭର୍ଣ୍ଣମେଣ୍ଟଙ୍କ ଠାରେ ନ୍ୟସ୍ତ ଅଛି, ସେ ସମ୍ବନ୍ଧରେ ପାର୍ଲିଅମେଣ୍ଟର କୌଣସି ସାକ୍ଷାତ ସମ୍ବନ୍ଧ ନାହିଁ । କେବେ କେଉଁ ନୀତି ଅବଲମ୍ବନ କରି ଭାରତ ଶାସନ କରିବାକୁ ହେବ ତାହା ସମୟ ସମୟରେ ପାର୍ଲିଅମେଣ୍ଟ ନିର୍ଦ୍ଦେଶ କରି ଦେଇଥାନ୍ତି ଏବଂ ସେହି ନୀତି ଅନୁସରଣରେ ଆବଶ୍ୟକ ବୋଧ କଲେ ଭାରତ-ଗଭର୍ଣ୍ଣମେଣ୍ଟଙ୍କୁ ଉପଯୁକ୍ତଭାବରେ ସାହାଯ୍ୟ କରି ପାରନ୍ତି ।”

ଆଗାମୀ ନିର୍ବାଚନରେ ଭାରତର ସୁଯୋଗ ସମ୍ବନ୍ଧରେ ସର କଟନ ଅନେକ ପ୍ରୀତିଜନକ କଥା ଉତ୍ସାହପୂର୍ଣ୍ଣ ଭାବରେ ବ୍ୟକ୍ତ କରିଅଛନ୍ତି । ସେ କହିଅଛନ୍ତି, ଯେ ବର୍ତ୍ତମାନ ଇଂଲଣ୍ଡର ରାଜନୈତିକ କ୍ଷେତ୍ରର ସନ୍ଧିସ୍ଥଳ ଉପସ୍ଥିତ ହୋଇଅଛି । କେତେବେଳେ ଯେ ନୂତନ ନିର୍ବାଚନଦ୍ୱାରା ପାର୍ଲିଅମେଣ୍ଟ ମହାସଭାର ନବସଂଗଠନ ସଂଘଟିତ ହେବ, ତାହା ସ୍ଥିରଭାବରେ କହାଯାଇ ପାରେ ନାହିଁ; କିନ୍ତୁ ତାହା ଯେ ଅତି ନିକଟବର୍ତ୍ତୀ ଏ କଥା ସମସ୍ତେ ଜାଣନ୍ତି । ଖୁବ ସମ୍ଭବ ଆମ୍ଭମାନଙ୍କର ଏହି ମହାସମିତିର ଅନ୍ୟ ଅଧିବେଶନ ପୂର୍ବରୁ ନିର୍ବାଚନ ଆରମ୍ଭ ହୋଇଥିବ । ଏହାର ଫଳସ୍ୱରୂପ ମନ୍ତ୍ରିସମାଜ ପରିବର୍ତ୍ତିତ ହୋଇଯିବ । ନୂତନ ଗଭର୍ଣ୍ଣମେଣ୍ଟଙ୍କ ହସ୍ତରେ ଶାସନଭାର ଅର୍ପିତ ହେବ। କୌଣସି ଉଦାରନୈତିକ ରାଜପୁରୁଷ ଭାରତ-ସଚିବ ପଦରେ ଅଭିଷିକ୍ତ ହେବାର ପୂର୍ଣ୍ଣ

ସମ୍ଭାବନା । ତାହାଙ୍କର ପ୍ରାଧାନ୍ୟ କାଳରେ ସକଳ ପ୍ରକାର ଦୁର୍ନୀତିର ଗତିରୋଧ ହୋଇ ଯିବ । ଆପଣମାନଙ୍କର ଏ ସୁଯୋଗ ପରିତ୍ୟାଗ କରିବା ଉଚିତ ନୁହେ । ବିଲାତରେ ଅଗରୁ ଉପଯୁକ୍ତ ଆନ୍ଦୋଳନ କରିବାର ଆୟୋଜନ କରନ୍ତୁ ।

ଏହି ସମୟରେ ମହାମତି କଟନ ସମଗ୍ର ଭାରତବାସିଙ୍କୁ ଗୋଟିଏ ବିଷୟରେ ଖୁବ ସତର୍କ କରି ଦେଇ କହୁଅଛନ୍ତି ଯେ ବର୍ତ୍ତମାନ ମୋଟ ବିଷୟରେ ଭାରତବାସିଙ୍କ ମଧ୍ୟରେ ଜାତୀୟ ଭାବର ଉଦ୍ରେକ ହୋଇଅଛି; କିନ୍ତୁ ସେହି ଭାବକୁ ଦୃଢ଼ତର ଓ ପ୍ରଶସ୍ତତର ଭିତ୍ତି ଉପରେ ପ୍ରତିଷ୍ଠିତ କରିବାକୁ ସଚେଷ୍ଟ ହେବା ସର୍ବାଦୌ କର୍ତ୍ତବ୍ୟ । ଏହିସ୍ଥାନରେ ଯେ ଆପଣମାନେ ସକଳ ପ୍ରକାର ବିଦ୍ୱେଷ ବୁଦ୍ଧି ପରିତ୍ୟାଗ କରି ଜାତୀୟ ସ୍ୱାର୍ଥସିଦ୍ଧି ନିମନ୍ତେ ସମବେତ ହୋଇଅଛନ୍ତି, ତାହା ଆପଣମାନଙ୍କର ଜାତୀୟଭାବର ପ୍ରଧାନ ନିଦର୍ଶନ । କିନ୍ତୁ ଏହା ସ୍ପଷ୍ଟାକ୍ଷରରେ କହାଯାଇ ପାରେ ଯେ ଏ ସବୁ କେବଳ ପାଶ୍ଚାତ୍ୟ ସଭ୍ୟତା ବିଷୟରେ ଅଭିଜ୍ଞତା ଓ ଇଂଲଣ୍ଡ ପ୍ରଦତ୍ତ ସୁଶିକ୍ଷାର ଫଳ । ଏହି ଶିକ୍ଷା ଭାରତର ବିଚ୍ଛିନ୍ନ ଶକ୍ତିଙ୍କୁ ଏହି ସ୍ଥାନରେ ସମ୍ମିଳିତ କରିଅଛି । ଏହି ଜାତୀୟଭାବ କ୍ରମଶଃ ସକଳ ଶ୍ରେଣୀର ଓ ଲୋକଙ୍କ ମଧ୍ୟରେ ବିସ୍ତାରିତ ହେଉଅଛି । ଅତଏବ ଏହି ଜାତୀୟ ଭାବର ପରିପୁଷ୍ଟି ଏକାନ୍ତ ବାଞ୍ଛନୀୟ ।

ଏହି ସ୍ଥାନରେ ସଭାପତି ମହୋଦୟ ଦେଶୀୟ ସମ୍ବାଦପତ୍ରମାନଙ୍କର ଭୂୟସୀ ପ୍ରଶଂସା କରିଥିଲେ । ସେ କହିଥିଲେ, ଅତି ହୀନ ଅବସ୍ଥାରୁ ଆରମ୍ଭ କରି ଦେଶୀୟ ସମ୍ବାଦପତ୍ରମାନ ଅବସ୍ଥାର ବିରୁଦ୍ଧରେ ଘୋରତର ସଂଗ୍ରାମ କରି ଅବଶେଷରେ ଦେଶ ମଧ୍ୟରେ ଏକ ସର୍ବଶ୍ରେଷ୍ଠ ଶକ୍ତିର ସ୍ଥାନ ଅଧିକାର କରିଅଛନ୍ତି ସେମାନେ ଅତି ନିର୍ଭୀକ ଭାବରେ ଗଭର୍ଣ୍ଣମେଣ୍ଟଙ୍କ କାର୍ଯ୍ୟର ସମାଲୋଚନା କରନ୍ତି । ଶାସନକର୍ତ୍ତାମାନଙ୍କର ଅବିଚାର ଓ ଅତ୍ୟାଚାର ସମ୍ବନ୍ଧରେ ମଧ୍ୟ ଅତି ସତର୍କଭାବରେ କର୍ତ୍ତୃପକ୍ଷଙ୍କର ଦୃଷ୍ଟି ଆକର୍ଷଣ କରନ୍ତି ।

ଅନ୍ୟତ୍ର ମଧ୍ୟ ଉକ୍ତ ମହାତ୍ମା କହିଅଛନ୍ତି, ଭାରତର ଭାବୀ ଶୁଭାଦୃଷ୍ଟର ଛାୟା ଏହି ଜାତୀୟ ମହାସମିତିରେ ଅତି ସ୍ପଷ୍ଟରୂପେ ଅନୁଭୂତ ହୁଏ । ଏଥିରେ ଅସାରତା କିମ୍ବା ବିଦ୍ରୋହୀ ଭାବର ଚିହ୍ନ ମାତ୍ର ନାହିଁ, ଏହା ନିଃସନ୍ଦେହରୂପେ କହାଯାଇ ପାରେ । ଆମ୍ଭମାନଙ୍କର ଏହା ଦୃଢ଼ ଧାରଣା ଯେ ଭାରତର ବର୍ତ୍ତମାନ ଅବସ୍ଥାରେ ବର୍ତ୍ତମାନ ପ୍ରଣାଳୀର ଶାସନ ଚିରସ୍ଥାୟୀ ହେବ ନାହିଁ । ୧୮୫୦ ଖ୍ରୀଷ୍ଟାବ୍ଦରେ ମଧ୍ୟ Sir Mount stuart Elphinstone ଏହି ପ୍ରକାର କଥା କହି ଯାଇଅଛନ୍ତି । ଭାରତ ସହିତ ଇଂଲଣ୍ଡର ସମ୍ବନ୍ଧ ଅବିଚ୍ଛିନ୍ନ । ଭାରତର ଭବିଷ୍ୟତ ଇଂଲଣ୍ଡ ସହିତ ଏକସୂତ୍ରରେ ଆବଦ୍ଧ । ଇଂଲଣ୍ଡ ନିକଟରେ ଭାରତବର୍ଷ ନିରବଧି ଉପଦେଶ ଓ ରକ୍ଷାର ପ୍ରତ୍ୟାଶା କରିବ ।

ସଭାପତି ମହୋଦୟ ଏହି ସ୍ଥାନରେ ଏକ ଜ୍ୱଳନ୍ତ ସତ୍ୟ କଥା ସୁସ୍ପଷ୍ଟଭାବରେ ପ୍ରକାଶ କରି ଯାଇଅଛନ୍ତି । ତହିଁରୁ ତାହାଙ୍କର ଦୂରଦର୍ଶିତାର ବିଲକ୍ଷଣ ପ୍ରମାଣ ମିଳୁଅଛି । ସେ କହୁଅଛନ୍ତି ଯେ ଏହି ବିରାଟସାମ୍ରାଜ୍ୟର ସକଳ ବିଧ ଲୋକଙ୍କ ମଧ୍ୟରେ ଏକ ଉନ୍ନତଜାତୀୟ ଆକାଂକ୍ଷା ତୀବ୍ର ଗତିରେ ପ୍ରସାରିତ ହେଉଅଛି । ପଚାଶ ବର୍ଷ ପୂର୍ବେ Sir Elphinstone ଏ କଥା ଉପଲବ୍ଧି କରିଥିଲେ । ବିଂଶତି ବର୍ଷ ପୂର୍ବେ Lord Cromor ମଧ୍ୟ ଏହାର ଆଭାସ ପ୍ରଦାନ କରିଥିଲେ । ନବ-ଯୁଗର ଆରମ୍ଭ ହେବାର କ୍ଷୀଣ ସୂଚନା ଦେଖାଯାଉଅଛି । ଜନସାଧାରଣଙ୍କର ମତର ଶକ୍ତି ଦିନକୁଦିନ ବୃଦ୍ଧି ପ୍ରାପ୍ତ ହେଉଅଛି । ଏପ୍ରକାର ଅବସ୍ଥାରେ ସ୍ୱେଚ୍ଛାତନ୍ତ୍ର ଗଭର୍ଣ୍ଣମେଣ୍ଟଙ୍କ ପକ୍ଷରେ କର୍ତ୍ତବ୍ୟ ନିର୍ଣ୍ଣୟ ଗୋଟିଏ ଗୁରୁତର ସମସ୍ୟା ହୋଇ ପଡିଅଛି । ବର୍ତ୍ତମାନ ଅବସ୍ଥାରେ ଗଭର୍ଣ୍ଣ-ମେଣ୍ଟଙ୍କର ଏହି କର୍ତ୍ତବ୍ୟ ହେଉଅଛି ଯେ ସେ ପ୍ରଜାବର୍ଗଙ୍କର ଏହି ଉଦୀୟମାନ ଉନ୍ନତ ଆକାଂକ୍ଷାକୁ ସୁପଥରେ ପରିଚାଳିତ କରି ରାଜ୍ୟର

ହିତସାଧନରେ ନିଯୁକ୍ତ କରିବେ । ନଚେତ୍ ଏହି ଜାତୀୟ ଆକାଙ୍କ୍ଷା ବିପଥରେ ଚାଳିତ ହୋଇ ଉଭୟଙ୍କର ରାଜନୈତିକ ବିପଦର ସୂତ୍ରପାତ କରିବ । ଏପ୍ରକାର ଉନ୍ନତ ଆକାଙ୍କ୍ଷାକୁ ଦମନ କରିବା କୌଣସି ବୁଦ୍ଧିମାନ୍ ଗଭର୍ଣ୍ଣମେଣ୍ଟର ଉଚିତ ନୁହେ ।

ଏହି ଜାତୀୟ ଭାବର ବିକାଶକୁ ମହାତ୍ମା ଲର୍ଡ ରିପନ ଅଧିକତର ପରିସ୍ଫୁଟ କରି ଦେଇ ଯାଇଅଛନ୍ତି । ଶିକ୍ଷାର ବିସ୍ତାର ବିଷୟରେ ଉତ୍ସାହଦାନ ଏବଂ ସ୍ୱାୟତ୍ତ ଶାସନର ଅଧିକାର ଦାନଦ୍ୱାରା ସେ ଭାରତର ମହଦୁପକାର ସାଧନର ସୂତ୍ରପାତ କରି ଯାଇଅଛନ୍ତି । ସେହି ଦିନଠାରୁ ଏହି ଜାତୀୟଭାବ କ୍ରମେ ପରିପୁଷ୍ଟ ହୋଇ ଖରତର ବେଗରେ ପ୍ରଧାବିତ ହେଉଅଛି । ଏହାର ଗତିରୋଧ କରିବା ମନୁଷ୍ୟର ସାଧ୍ୟ ନୁହେ । ତଥାପି ରାଜପୁରୁଷମାନେ ଭ୍ରାନ୍ତିଭାବରେ ଏହାର ପ୍ରତିକୂଳାଚରଣରେ ପ୍ରବୃତ୍ତ ହୋଇଅଛନ୍ତି । ସେମାନେ କହନ୍ତି, ରାଜନୀତି ଚର୍ଚ୍ଚା କରିବାର ସମୟ ଭାରତରେ ଉପସ୍ଥିତ ହୋଇ ନାହିଁ । ଭାରତବାସିଙ୍କର ବର୍ତ୍ତମାନ ନାନାବିଧ ସାମାଜିକ ଦୁର୍ବଳତା ବିଦ୍ୟମାନ; ତାହା ଦୂର କରିବାକୁ ହେଲେ ବର୍ତ୍ତମାନ ବହୁଯୁଗବ୍ୟାପୀ ଚେଷ୍ଟା ଆବଶ୍ୟକ । ବିରୋଧିମାନଙ୍କର ଏବଂପ୍ରକାର ଉକ୍ତି ପ୍ରତି ଲକ୍ଷ କରି ସଭାପତି ମହୋଦୟ କହିଅଛନ୍ତି ଯେ ମୋହ ବିଚାରରେ ଏପ୍ରକାର କୁଟିଳତାପୂର୍ଣ୍ଣ, ଅସାର ବାକ୍ପ୍ରପଞ୍ଚ ଏହି ଜାତୀୟ ଉନ୍ନତିର ଗତିରୋଧ କରି ପାରିବ ନାହିଁ । ଏହି ପ୍ରତିକ୍ରିୟାର ଶକ୍ତି ନିଶ୍ଚୟ ପରାସ୍ତ ହେବ ଏବଂ ଭାରତ ପକ୍ଷରେ ଏକ ସୁଦିନ ଅଚିରରେ ଉପସ୍ଥିତ ହେବ, ସନ୍ଦେହ ନାହିଁ ।

ସଭାପତି ମହୋଦୟ ଭାରତର ଭବିଷ୍ୟତ ସମ୍ବନ୍ଧରେ କେତେକ ସାର କଥା କହିଅଛନ୍ତି । ସେ କହିଅଛନ୍ତି, ଭାରତରେ ଜାତୀୟଭାବର ବୃଦ୍ଧି ଯେପରି କ୍ଷିପ୍ରଗତିରେ ହେଉଅଛି ସେଥିରେ ଦିନେ ଭାରତର ସ୍ୱେଚ୍ଛାଚାରମୂଳକ ଶାସନନୀତି ଅବଶ୍ୟ ପରିବର୍ତ୍ତିତ ହୋଇଯିବ । କେତେକ ଦିନ ତଳେ ଜଣେ ରାଜପୁରୁଷ ଏକ ପ୍ରକାଶ୍ୟ ସଭାରେ କହିଥିଲେ ଯେ ଇଂଲଣ୍ଡ ପକ୍ଷରେ ଭାରତର ଶାସନଦଣ୍ଡ ପରିତ୍ୟାଗ କରିବା ବାଞ୍ଛନୀୟ ନୁହେ । ଚିରକାଳ ଭାରତ ଇଂଲଣ୍ଡର ହାତରେ ଥିବ । କିନ୍ତୁ ଭାରତର ଭବିଷ୍ୟତ ସମ୍ବନ୍ଧରେ ମୋହର ଧାରଣା ଅନ୍ୟରୂପ । ଦିନେ ହେଲେ ଅବଶ୍ୟ ଅମ୍ଭମାନଙ୍କୁ ଭାରତ ସହିତ ବର୍ତ୍ତମାନ ସମ୍ବନ୍ଧ ଛିନ୍ନ କରିବାକୁ ହେବ । ଉପନିବେଶବାସିମାନେ ଯେଉଁ ଯେଉଁ ଅଧିକାର ପ୍ରାପ୍ତ ହୋଇଅଛନ୍ତି ଅମ୍ଭମାନଙ୍କୁ ଦିନେ ସେହି ସବୁ ଅଧିକାର ଭାରତବାସିଙ୍କୁ ଦେବାକୁ ହେବ । କାରଣ, ଭାରତବାସୀ କେବେହେଁ ତାହାର ପ୍ରାଚୀନ ଗୌରବ ବିସ୍ମୃତ ହୋଇ ପାରିବ ନାହିଁ । ପୁନର୍ବାର ଏକ ଶକ୍ତିଶାଳୀ ଜାତିରୂପେ ଦଣ୍ଡାୟମାନ ହେବାକୁ ସେ ହୃଦୟରେ ଏକ ପ୍ରବଳ ଆକାଙ୍କ୍ଷା ପୋଷଣ କରି ରହିଅଛି । ଦିନେ ହେଲେ ତାହାର ସେ ଇଚ୍ଛା ସଫଳ ହେବ । କୌଣସି ସାମ୍ରାଜ୍ୟ ଉପରେ ଅପ୍ରତିହତ ପ୍ରଭାବ ବିସ୍ତାର କରିବାର ପ୍ରବୃତ୍ତି ଆଧୁନିକ କାଳର ସଭ୍ୟଜାତିର ଅନୁମୋଦିତ ଧର୍ମ ନୁହେ । ପ୍ରାପ୍ତ ସ୍ୱାୟତ୍ତ ଶାସନର ଅଧିକାର ଆପଣମାନଙ୍କ ପକ୍ଷରେ ଯଥେଷ୍ଟ ନୁହେ । ନିରାଶ ହୁଅ ନାହିଁ । କର୍ତ୍ତବ୍ୟପଥରେ ଅଗ୍ରସର ହୁଅ । ଜନ୍ ବ୍ରାଇଟ୍ କହିଅଛନ୍ତି, "ଭାରତବର୍ଷ ଦିନେ ଇଂଲଣ୍ଡର ସାହାଯ୍ୟରେ ଏକ କ୍ଷମତାଶାଳୀ ରାଜ୍ୟରୂପେ ପରିଗଣିତ ହେବ ।" ଆମେରିକାର United States ପରି ଭାରତ ଦିନେ ସ୍ୱାୟତ୍ତ ଶାସନର ପୂର୍ଣ୍ଣ ଅଧିକାର ପ୍ରାପ୍ତ ହୋଇ ଏକ " ଭାରତୀୟ ଯୁକ୍ତସାମ୍ରାଜ୍ୟ " ( United States of India ) ସୃଷ୍ଟି କରିବ । ଏହା ପ୍ରତ୍ୟେକ ଶିକ୍ଷିତ ଭାରତବାସିର ଆକାଙ୍କ୍ଷା ଏବଂ ମୋହର ମତରେ ଭାରତର ଭାଗ୍ୟ ଚନ୍ଦ୍ର । ଭାରତର ଏ ଆଦର୍ଶ ମୁହୂର୍ତ୍ତକ ପାଇଁ ସୁଦ୍ଧା ପରିତ୍ୟାଗ କରିବା ଉଚିତ ନୁହେ ।

ଭାରତର ଅର୍ଥନୈତିକ ଅବସ୍ଥା ସମ୍ବନ୍ଧରେ ସଭାପତି ମହୋଦୟ କହୁଅଛନ୍ତି ଯେ ଦିନକୁଦିନ ଲୋକଙ୍କର ଅର୍ଥ ଶୋଷିତ ହୋଇ ବିଦେଶକୁ ଯାଉଅଛି ! ଯେଉଁ ବଡ଼ ବଡ଼ କଳ କାରଖାନା ସ୍ଥାପିତ ହୋଇଅଛି ତାହା କେବଳ ଇଂରେଜ ବ୍ୟବସାୟୀଙ୍କ ଉଦ୍ୟମରେ । କିନ୍ତୁ ମୁଁ ବଡ଼ ଆନନ୍ଦିତ ହେଉଅଛି ଯେ ଭାରତର ଶିଳ୍ପଜାତ ପଦାର୍ଥର ଉନ୍ନତି ସାଧନ ନିମନ୍ତେ ପୁନଃ ପୁନଃ ଆନ୍ଦୋଳନ ଓ ଚେଷ୍ଟା କରା ହେଉଅଛି । ଏହିପରି କ୍ରମଶଃ ଚେଷ୍ଟା ନିରନ୍ତର ହେଲେ ଶେଷରେ ସୁଫଳ ଲାଭ ହେବାର ସମ୍ଭାବନା ।

ପ୍ରାଚ୍ୟ ଓ ପାଶ୍ଚାତ୍ୟର ସମ୍ମିଶ୍ରଣରେ କି ଅପୂର୍ବ ଫଳ ଲାଭ ହୁଏ ତାହା ଦେଖିବାକୁ ହେଲେ ଜାପାନ ପ୍ରତି ଦୃଷ୍ଟିପାତ କରନ୍ତୁ । ଏକତାଶକ୍ତିର ବଳରେ ଜାପାନ ବଳୀୟାନ୍ ହୋଇଅଛି; କିନ୍ତୁ ସ୍ୱାଧୀନତା ଲାଭ ନ ହେଲେ ଏକତା ଲାଭ କରିବା ଅସମ୍ଭବ । ମାତ୍ର ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବରେ ଭାରତରେ ଏକତାର ବୀଜ ରୋପିତ ହୋଇଅଛି । ପ୍ରାଚୀନ ପ୍ରଥା ସବୁ ଲୁପ୍ତ ହେଉଅଛି । ନୂତନ ପ୍ରଥା ସବୁ ପ୍ରବର୍ତ୍ତିତ ହେଉଅଛି । କିନ୍ତୁ ନୂତନ ପ୍ରଥା ପ୍ରଚଳନ ଅର୍ଥାତ୍ ସଂସ୍କାର କରିବାକୁ ହେଲେ ଖୁବ ସତର୍କଭାବରେ କରିବା ଉଚିତ । ଅନ୍ୟାନ୍ୟ ବିଷୟ ଅପେକ୍ଷା ଭାରତ ଶିକ୍ଷା ବିଷୟରେ ଉତ୍କର୍ଷ ଲାଭ କରିଅଛି । ଏହା ଦେଖି ଗଭର୍ଣ୍ଣମେଣ୍ଟ ଶିକ୍ଷା-ନୀତି ସଙ୍କୁଚିତ କରିବାକୁ ଉଦ୍ୟତ । କିନ୍ତୁ ତାହା ଅସାଧ୍ୟ ଅଟେ । ଦିନେ ଗଭର୍ଣ୍ଣମେଣ୍ଟ ଶିକ୍ଷାବିସ୍ତାରର ଭାର ଦେଶବାସିଙ୍କ ହସ୍ତରେ ଅର୍ପଣ କରିବାକୁ ବାଧ୍ୟ ହେବେ । ପାଶ୍ଚାତ୍ୟର ପ୍ରଭାବରେ ଯେଉଁ ନୂତନ ସମସ୍ୟା ଭାରତବାସିଙ୍କୁ ପୂରଣ କରିବାକୁ ହେବ ତାହା କେବଳ ସେହି ସେହି ଲୋକମାନେ କରିବାକୁ ସମର୍ଥ ହେବେ, ଯେଉଁମାନଙ୍କ ହୃଦୟରେ ପ୍ରାଚୀନ ଗୌରବର ସ୍ମୃତି ସର୍ବଦା ଜାଗ୍ରତ, କିନ୍ତୁ ପାଶ୍ଚାତ୍ୟ ଶିକ୍ଷାରେ ଅସାଧାରଣ ପାରଦର୍ଶୀ ।

ଭାରତର ଶାସନ ସଂସ୍କାର କରିବାକୁ ହେଲେ ଏଦେଶବାସିମାନଙ୍କୁ ସ୍ୱାବଲମ୍ବନ, ସ୍ୱାୟତ୍ତଶାସନ ନୀତି ଓ ଆତ୍ମନିର୍ଭର ଶିକ୍ଷା ଦେବା ସର୍ବାଦୌ କର୍ତ୍ତବ୍ୟ । କିନ୍ତୁ ତାହା କରିବାକୁ ହେଲେ କ୍ରମେ କ୍ରମେ ଦେଶୀୟ କୃତବିଦ୍ୟମାନଙ୍କୁ ଉଚ୍ଚ ଉଚ୍ଚ କର୍ମମାନଙ୍କରେ ନିଯୁକ୍ତ କରିବା ଏକାନ୍ତ ବାଞ୍ଛନୀୟ ।

ଉପରୋକ୍ତ ଉଦ୍ଦେଶ୍ୟ ସାଧନ ନିମିତ୍ତ ସିଭିଲ୍ ସର୍ଭିସ ବିଭାଗର ପୁନର୍ଗଠନ ଆବଶ୍ୟକ । ଶାସନ କାର୍ଯ୍ୟ ବ୍ୟକ୍ତିବିଶେଷ ଉପରେ ନ୍ୟସ୍ତ ନ ଥାଇ ବରଂ ନିର୍ବାଚିତ ପ୍ରତିନିଧି ଉପରେ ନ୍ୟସ୍ତ ହେବା ବରଂ ଭଲ । ଅତି ଅପରିଣତବୟସ୍କ ବୈଦେଶିକମାନେ ଦେଶୀୟ ଭାଷାରେ ସମ୍ପୂର୍ଣ୍ଣ ଅଜ୍ଞ ଥାଇ ଶାସନଦଣ୍ଡ ଧାରଣ କରିଥାନ୍ତି । ଏହା ଅତ୍ୟନ୍ତ ଅଶୋଭନୀୟ । ବିଚାରବିଭାଗରେ ସମ୍ପୂର୍ଣ୍ଣ ପରିଣତବୟସ୍କ ଅଭିଜ୍ଞ ବ୍ୟକ୍ତିର ନିଯୋଗ ସର୍ବଦା ମଙ୍ଗଳଜନକ । ବିଚାରବିଭାଗର ଅବିଳମ୍ବେ ସଂସ୍କାର ଆବଶ୍ୟକ । ବିଚାର ଓ ଶାସନବିଭାଗର ପୃଥକ୍‌କରଣ ଏକାନ୍ତ ପ୍ରୟୋଜନୀୟ ବୋଲି ବିବେଚିତ ହୁଏ ।

ବ୍ୟବସ୍ଥାପକ ସଭାରେ ପ୍ରତିନିଧି ସଂଖ୍ୟା ଅତ୍ୟଳ୍ପ । ଲକ୍ଷାଧିକ ଲୋକଙ୍କର ମତାମତ ଅତ୍ୟଳ୍ପସଂଖ୍ୟକ ପ୍ରତିନିଧିଙ୍କଦ୍ୱାରା ସ୍ପଷ୍ଟୀକୃତ ହୋଇ ନ ପାରେ । ଭାରତୀୟ କିମ୍ବା ପ୍ରାଦେଶିକ ବ୍ୟବସ୍ଥାପକ ସଭା ସମୂହରେ ଦେଶୀୟ ସଭ୍ୟମାନଙ୍କ ସଂଖ୍ୟା ଅଧିକ ହେବା ଆବଶ୍ୟକ ଏବଂ ଅର୍ଥାଦିବିଷୟକ ଆଲୋଚନାରେ ଏହିପରି ଦେଶୀୟ ସଦସ୍ୟଙ୍କ ସଂଖ୍ୟା ଅପେକ୍ଷାକୃତ ଅଧିକ ହେବା ନିତାନ୍ତ ବାଞ୍ଛନୀୟ । ଦୃଷ୍ଟାନ୍ତ ସ୍ୱରୂପ ତିବ୍ବତର ଅଭିଯାନ ବିଷୟ ନିଆଯାଉ । ଏହି ସମ୍ବନ୍ଧରେ ମହାସଭାରେ ଏପରି କେହି ନାହାନ୍ତି, ଯେ ଏହାର ସପକ୍ଷରେ ମତ ପ୍ରଦାନ କରିବେ । କେବଳ ଇଂରେଜ ବାଣିଜ୍ୟର ପ୍ରସାର ଉଦ୍ଦେଶ୍ୟରେ ଅଭିଯାନଟି ପ୍ରେରିତ ହେଲା । କିନ୍ତୁ ବ୍ୟୟଭାର ଦୁର୍ଭିକ୍ଷପୀଡ଼ିତ ଭାରତକୁ ବହନ କରିବାକୁ

ହେଲା । ବ୍ୟବସ୍ଥାପକ ସଭାରେ ଦେଶୀୟ ସଦସ୍ୟଙ୍କ ସଂଖ୍ୟାଧିକ୍ୟ ଥିଲେ ଏପରି ହେବେନି ଘଟି ନ ପାନ୍ତା ।

ସମ୍ପ୍ରତି ମୋହର ପ୍ରାଚୀନ ବନ୍ଧୁବର୍ଗ ଯେଉଁ କଥାରେ ବିଶେଷଭାବରେ ବିଚଳିତ ହୋଇ ଅଛନ୍ତି ସେହି ବଙ୍ଗବିଭାଗ ବିଷୟ ଆଲୋଚନା କରୁଅଛୁ । ଏ ବିଷୟ ନେଇ ଅଧୁନା ବଙ୍ଗରେ ଯେ ଆତଙ୍କ ଉପସ୍ଥିତ ହୋଇଅଛି, ବୋଧ ହୁଏ ଅନ୍ୟ କୌଣସି ସମୟରେ ଅନ୍ୟ କୌଣସି ବିଷୟ ନେଇ ଏହିପରି ଘଟି ନ ଥିଲା । ମୋହର ଦୃଢ଼ ବିଶ୍ୱାସ ଜାତୀୟ ଏକତାକୁ ବିଚ୍ଛିନ୍ନ କରିବା ଏତାଦୃଶ ବିଭାଗର ଗୂଢ଼ ଅଭିପ୍ରାୟ । ସାମାଜିକ, ମାନସିକ, ଅର୍ଥିକ ପ୍ରଭୃତି ସକଳ ବିଷୟରେ ସେମାନେ ଏକ ଘନିଷ୍ଠ ସୂତ୍ରରେ ଆବଦ୍ଧ; ବର୍ତ୍ତମାନ ଏ ବିଚ୍ଛିନ୍ନତାର ପ୍ରସ୍ତାବରେ ସେମାନେ ତୀବ୍ରବେଗ ମର୍ମାହତ ହୋଇଅଛନ୍ତି । ଦେଶବ୍ୟାପୀ ମହାନ୍ଦୋଳନରେ ଗଭର୍ଣ୍ଣମେଣ୍ଟ କର୍ଣ୍ଣପାତ କରୁ ନାହାନ୍ତି ଅତ୍ୟନ୍ତ ଆଶ୍ଚର୍ଯ୍ୟର ବିଷୟ । ଲେଫ୍ଟେନେଣ୍ଟ ଗଭର୍ଣ୍ଣରଙ୍କ କାର୍ଯ୍ୟଭାର ଲଘୁ କରିବା ଉଦ୍ଦେଶ୍ୟରେ ଏପ୍ରକାର ବିଭାଗ ସଂଘଟିତ ହେଉ ଅଛି ବୋଲି କଥିତ ହୁଏ । କିନ୍ତୁ ମୋ ବିଚାରରେ ଏହା ଅନ୍ୟ ଉପାୟରେ ସାଧିତ ହୋଇ ପାରେ । ମୁଁ ଆଶା କରେ ଭାରତଗଭର୍ଣ୍ଣମେଣ୍ଟ ପୁନର୍ବିଚାରପୂର୍ବକ ଏ ସର୍ବଜନବିରୁଦ୍ଧ ପ୍ରସ୍ତାବ ପରିହାର କରିବେ ।

ଅତଃପର ସଭାପତି ମହୋଦୟ ଟ୍ରାନ୍ସଭାଲରେ ବାସ କରୁଥିବା ଭାରତୀୟମାନଙ୍କର ଦୁଃଖ କାହାଣୀ ବିଶଦରୂପେ ବର୍ଣ୍ଣନା କରିଥିଲେ ।

ଉପସଂହାର ସ୍ଥଳରେ ସଭାପତି ମହୋଦୟ ନାନା ଆଶା ଓ ଉତ୍ସାହର କଥା କହି ବକ୍ତୃତା ସମାପ୍ତ କରିଅଛନ୍ତି । ସେ କହିଅଛନ୍ତି, ଭାରତର ଭବିଷ୍ୟତ ଆଶାପ୍ରଦ ଅଟେ । ସେହି ଆଶାର ମୂଳଭିତ୍ତି ଗଠିତ ହୋଇ ଯାଇଅଛି । ଦିନକୁଦିନ ସେହି ଭିତ୍ତି ଉପରେ ଆଶାର ଉଚ୍ଚ ଅଟ୍ଟାଳିକା ନିର୍ମିତ ହେଉଅଛି । କୌଶଳ, ଉଦ୍ୟମ, ଯତ୍ନ, ଦୂରଦର୍ଶିତା, ଉଦାରତା ପ୍ରଭୃତି ଗୁଣନିଚୟଦ୍ୱାରା ଅନୁପ୍ରାଣିତ ହୋଇ ପ୍ରକୃତ କାର୍ଯ୍ୟରେ ଅଗ୍ରସର ହୁଅନ୍ତୁ; ତାହା ଅଟ୍ଟାଳିକାଟି ଦିନେ ନିଶ୍ଚୟ ସମ୍ପୂର୍ଣ୍ଣ ହୋଇଯିବ । ରାମମୋହନ, ଦୟାନନ୍ଦ, କୃଷ୍ଣଦାସ, ରାନାଡ଼େ, ରାଣାଡେ ପ୍ରଭୃତି ମୃତ ମହାତ୍ମାମାନଙ୍କ ସ୍ମୃତି ଆପଣମାନଙ୍କର ପଥପ୍ରଦର୍ଶକ ହେଉ । ଆପଣମାନଙ୍କର ଗୁରୁ ଦାୟିତ୍ୱ ସମ୍ୟକ୍‌ରୂପେ ଅନୁଭବ କରନ୍ତୁ । ସାଧୁ ଚେଷ୍ଟାଦ୍ୱାରା ଉପଯୁକ୍ତ ରୂପେ କର୍ତ୍ତବ୍ୟ ସାଧନରେ ବ୍ରତୀ ହୁଅନ୍ତୁ । ଏହି ସ୍ଥଳରେ ସଭାପତି ମହୋଦୟ ଜଣେ ପ୍ରସିଦ୍ଧ ଇଂରାଜ କବିଙ୍କ ବଚନ ଉଦ୍ଧୃତ କରିଅଛନ୍ତି:—

"We should count life by heart
throbs. He most lives,
Who thinks most, feels the noblest,
acts the best."

ଉକ୍ତିଟି ଅତ୍ୟନ୍ତ ସାରଗର୍ଭ, ଅଳସ ପ୍ରାଣକୁ ଉଦ୍ଦୀପିତ କରୁଅଛି । ସର୍ବଶେଷରେ ପରସ୍ପରଙ୍କର ପରସ୍ପର ପ୍ରତି ସହାନୁଭୂତି ଓ ଭ୍ରାତୃଭାବ ପ୍ରକାଶ କରିବାକୁ ଏବଂ ଜାତୀୟ ମହାସମିତିରୂପ ବିରାଟ ଜାତୀୟ ଆନ୍ଦୋଳନର ଚାଳକ ଓ ନେତାମାନଙ୍କ ପ୍ରତି ଉପଯୁକ୍ତ ସମ୍ମାନ ଓ କୃତଜ୍ଞତା ପ୍ରକାଶ କରିବାକୁ ସମସ୍ତଙ୍କୁ ଉତ୍ସାହିତ କରି କହିଅଛନ୍ତି ଯେ ନୈତିକ ଉନ୍ନତି କେବଳ ପ୍ରକୃତ ଏକତା ଏବଂ ସର୍ବପ୍ରକାର ସୁଖ ସମ୍ପଦ ଓ ମର୍ଯ୍ୟାଦାଲାଭର ମୂଳରେ ବିଦ୍ୟମାନ । "Remember that moral improvement is the only source of real unity, and as such of dignity as well as happiness."

ଏଥି ଉପରେ ଆମ୍ଭମାନଙ୍କ କ୍ଷୀଣ ଦୁର୍ବଳ ଭାଷାରେ ଟୀକା ଟିପ୍ପଣୀ କରିବା ନିତାନ୍ତ ବିଡ଼ମ୍ବନା ଓ ଧୃଷ୍ଟତା । ଉକ୍ତିଗୁଡ଼ିକ ଗମ୍ଭୀରରୂପେ ଚିନ୍ତା କରି ଆୟତ୍ତ କରିବାର ବିଷୟ ।

ଶ୍ରୀ ଚନ୍ଦ୍ରଶେଖର କର ।

## କବି ଭୁବନେଶ୍ୱର କବିଚନ୍ଦ୍ର ।

କବି ଭୁବନେଶ୍ୱର କବିଚନ୍ଦ୍ର ଶାଲିବାହନ ଅବ୍ଦ ୧୭୭୮ ଫାଲ୍‌ଗୁନ କୃଷ୍ଣ ଦଶମୀ ବୁଧବାର ଦିନ ବୃଷ ଲଗ୍ନରେ ଜନ୍ମଗ୍ରହଣ କରିଥିଲେ; ୧୮୧୪ ଶକାବ୍ଦ ଭାଦ୍ର କୃଷ୍ଣ ସପ୍ତମୀ ରବିବାର ଧରା ଧାମରୁ ଅନ୍ତର୍ହିତ ହୋଇ ଯାଇଅଛନ୍ତି । ସୁତରାଂ ତାହାଙ୍କ ଜୀବନକାଳ ୪୫ ବର୍ଷ ୫ ମାସ ୨୭ ଦିନ ମାତ୍ର ଅଟେ । କବି ଭୁବନେଶ୍ୱର କବିଚନ୍ଦ୍ର ଯଜୁର୍ବେଦୀୟ କାଣ୍ୱ ଶାଖାଧ୍ୟାୟୀ ବ୍ରାହ୍ମଣ । ତାହାଙ୍କର ଗୋତ୍ର ଧରଗୌତମ, ସଞ୍ଜ୍ଞା ପାଠୀ । ତାହାଙ୍କର ଜନ୍ମସ୍ଥାନ ଗଞ୍ଜାମ ଜିଲ୍ଲାର ଅନ୍ତଃପାତି ବ୍ରହ୍ମପୁରବିଭାଗ ଅନ୍ତର୍ଗତ ହିଞ୍ଜିଳି ଗ୍ରାମ । ମାତ୍ର ତାହାଙ୍କର ପୂର୍ବପୁରୁଷମାନଙ୍କ ଆଦିମ ନିବାସ ସ୍ଥାନ ଢେଗିରିଯ୍ୟା ରାଜଧାନୀ ।

କବି ଭୁବନେଶ୍ୱର କବିଚନ୍ଦ୍ରଙ୍କ ଊର୍ଦ୍ଧ୍ୱତମ ତ୍ରୟୋଦଶ ପୁରୁଷ ଦାମୋଦର ମିଶ୍ର ନାମକ ଜଣେ ସୁବିଖ୍ୟାତ ପଣ୍ଡିତ ତଦାନିନ୍ତନ ଢେଗିରିଯ୍ୟା ରାଜାଙ୍କର ବିରାଗଭାଜନ ହୋଇ ଦାମୋଦର ପାଣିଗ୍ରାହୀ ଏବଂ ଦାମୋଦର ମହାନ୍ତିଙ୍କ ସହିତ ରାଜ୍ୟରୁ ତାଡ଼ିତ ହୋଇଥିଲେ । କଥିତ ଅଛି, ରାଜବିଦ୍ରୋହିତା ଅପରାଧରେ ସେମାନଙ୍କର ସର୍ବସ୍ୱ ମଧ୍ୟ ଅପହୃତ ହୋଇଥିଲା ।

ଦାମୋଦର ମିଶ୍ର, ଦାମୋଦର ପାଣିଗ୍ରାହୀ ଏବଂ ଦାମୋଦର ମହାନ୍ତି ଢେଗିରିଯ୍ୟା ରାଜଧାନୀରୁ ବିତାଡ଼ିତ ହୋଇ ଗଞ୍ଜାମର ବୁରପଡ଼ା ଗ୍ରାମରେ ସର୍ବାଦୌ ନିବାସ କରିଥିଲେ । କ୍ରମଶଃ ସେହି ତିନି ଜଣଙ୍କର ଉତ୍ତରାଧିକାରୀମାନେ ଯଥାକ୍ରମେ ପାଠୀ, ଚୌଧୁରୀ ଏବଂ ପଟ୍ଟନାୟକ ଉପାଧିରେ ଅଭିହିତ ହେଲେ । ଅଦ୍ୟାପି ଦେଖାଯାଉଅଛି, ଯେଉଁ ଯେଉଁ ଗ୍ରାମରେ ପାଠୀମାନେ ନିବାସ କରି ରହିଅଛନ୍ତି, ସେହି ସେହିଠାରେ ମଧ୍ୟ ଚୌଧୁରୀ ଏବଂ ପଟ୍ଟନାୟକମାନଙ୍କର ବସତି ହୋଇଅଛି । ଚୌଧୁରୀ ଏବଂ ପଟ୍ଟନାୟକମାନଙ୍କର ପୌରୋହିତ୍ୟ କାର୍ଯ୍ୟରେ ଉକ୍ତ ପାଠୀମାନେ ନିଯୁକ୍ତ ଅଛନ୍ତି । ଦାମୋଦର ମିଶ୍ରଙ୍କର ଉତ୍ତରାଧିକାରୀ ଶତାଧିକ ଘର ପାଠୀ ସମ୍ପ୍ରତି ଶାଖା ପ୍ରଶାଖା ବିସ୍ତାର କରି ବୁରପଡ଼ା, ପୁଡ଼ାଙ୍ଗୀ, ହିଞ୍ଜିଳି, ଶାଆରୁ, ପୁନାନ, ଦୁର୍ବଳ ଓ କାଣନଈ ଖାଟଡ଼ା ଗ୍ରାମରେ ନିବାସ କରୁଅଛନ୍ତି । ଏମାନେ ସ୍ୱ ସ୍ୱ ଗ୍ରାମୀୟ ଭଦ୍ରବ୍ୟକ୍ତି-ମାନଙ୍କର ପୁରୋହିତ ଏବଂ ଗୋସ୍ୱାମୀ ମଧ୍ୟ ଅଟନ୍ତି ।

କବି ଭୁବନେଶ୍ୱର କବିଚନ୍ଦ୍ରଙ୍କ ପିତାଙ୍କ ନାମ ହରିକୃଷ୍ଣ ପାଠୀ । ମାତାଙ୍କ ନାମ କୃଷ୍ଣପ୍ରିୟା । ହରିକୃଷ୍ଣ ପାଠୀ ଆଜୀବନ ଶ୍ରୀ ରାଧାକୃଷ୍ଣଙ୍କ ପୂଜାରେ ନିଯୁକ୍ତ ଥାଇ ଜନସାଧାରଣଙ୍କର ପ୍ରିୟପାତ୍ର ଥିଲେ । ହରିକୃଷ୍ଣ ଯାଦୃଶ ଅସାଧାରଣ ପରମାର୍ଥୀ, କୃଷ୍ଣପ୍ରିୟା ମଧ୍ୟ ତଦୋଽଧିକ ସାଧ୍ୱୀ ଓ ପତିପରାୟଣା ଥିଲେ । କବି ଭୁବନେଶ୍ୱର କବିଚନ୍ଦ୍ର ଜନକ ଜନନୀଙ୍କର ଏକମାତ୍ର ପୁତ୍ର ଅଟନ୍ତି । ଅତଏବ ସେ ମାତା ପିତାଙ୍କର ପରମ ବାତ୍ସଲ୍ୟରସରେ ପରିପ୍ଳୁତ ଥିଲେ ।

କବି ଭୁବନେଶ୍ୱର କବିଚନ୍ଦ୍ର ପଞ୍ଚମ ବର୍ଷ ବୟସ୍କ ସମୟରେ ବର୍ଣ୍ଣଜ୍ଞାନ ଲାଭ କରି ପିତାଙ୍କଠାରୁ ସମଗ୍ର ଅମରକୋଷାଭିଧାନ ଏବଂ ବିଧୁ-ପ୍ରକ୍ରିୟା ବ୍ୟାକରଣ ଶିକ୍ଷା ଲାଭ କରିଥିଲେ । ଦ୍ୱାଦଶ ବର୍ଷ ବୟସରେ ଶରଦୁର୍ଗନିବାସୀ ଅଧୁନାତ ଗଞ୍ଜାମ ପତ୍ରିକାର ରଚୟିତାଙ୍କ ସ୍ୱର୍ଗୀୟ ପିତା ଗୋବିନ୍ଦ ପଟ୍ଟଜ୍ୟୋତିଷ ମହାପାତ୍ରଙ୍କଠାରୁ ଜ୍ୟୋତିଷ ଶିକ୍ଷା ପାଇଥିଲେ ।

କବି ଭୁବନେଶ୍ୱର କବିଚନ୍ଦ୍ରଙ୍କ ନୈସର୍ଗିକ ସ୍ମୃତିଶକ୍ତି ବଳବତୀ ଥିଲା । ସେ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । କବି ଭୁବନେଶ୍ୱର କବିଚନ୍ଦ୍ର ବୈଦିକ ଶ୍ରୀ ଗୋପାଳମନ୍ତ୍ରର ପୁରଶ୍ଚରଣପୂର୍ବକ ଲକ୍ଷପରିମିତ ଜପାନୁଷ୍ଠାନ କରି ସପ୍ତଦଶ ବର୍ଷରେ ଏକାନୁପ୍ରାସ ଯମକାଳଙ୍କାରରେ ଶ୍ରୀକୃଷ୍ଣଙ୍କ ରୂପଲକ୍ଷରେ କ ଠାରୁ କ୍ଷ ପର୍ଯ୍ୟନ୍ତ ଗୋଟିଏ

ଜଣାଣ ରଚନା କରି ତତ୍ପରେ ନବାକ୍ଷର ବୃତ୍ତରେ ସଂକ୍ଷେପରେ ରାମାୟଣ ବିଷୟ ବର୍ଣ୍ଣନ ପୂର୍ବକ ରାମଚନ୍ଦ୍ରବିଳାସ ନାମକ ଖଣ୍ଡିଏ ବୃହଦାକାର ପୁସ୍ତକ ରଚନା କରିଥିଲେ ।

କାଟୁ ଗ୍ରାମନିବାସୀ ଦାମ୍ପସର ରାଜବଂଶର ବଂଶଧର ଶ୍ରୀ ଶ୍ରୀଯୁକ୍ତବର ଦେବ ବାସୁଦେବ ଶରଣ ଭଞ୍ଜ ( ଯେ କି ଅଜୀବନ ଗଭର୍ଣ୍ଣମେଣ୍ଟଙ୍କଠାରୁ ମାସିକ ଏକଶତ ଟଙ୍କା ବୃତ୍ତିସ୍ୱରୂପ ପ୍ରାପ୍ତ ହେଉଥିଲେ ) ସେହି ସମୟରେ କବି ଭୂବନେଶ୍ୱରଙ୍କୁ କୁଣ୍ଡଳ ଏବଂ ପଟ୍ଟାମ୍ବର ସହିତ କବିଚନ୍ଦ୍ର ଉପାଧିରେ ଭୂଷିତ କରି ଯଥେଷ୍ଟ ସମ୍ମାନିତ କରିଥିଲେ ।

କବି ଭୂବନେଶ୍ୱର କବିଚନ୍ଦ୍ର ଅଷ୍ଟାଦଶ ବର୍ଷ ବୟସରେ ତ୍ରୟୋଦଶାକ୍ଷର ବୃତ୍ତରେ ରାମାୟଣ-ଚୂଡ଼ାମଣି ନାମକ ସାତ ଖଣ୍ଡ ପୁସ୍ତକ ରଚନା କରି ତଦାନୀନ୍ତନ ଖଲିକୋଟ-ଅଷ୍ଟଦୁର୍ଗାଧୀଶ୍ୱରଙ୍କ ସ୍ୱର୍ଗୀୟ ପିତା ମହୋଦୟଙ୍କୁ ଖଲିକୋଟ ରାଜଧାନୀର ଅନତି ଦୂରବର୍ତ୍ତୀ ନିର୍ମଳଝର ରାଜ ସଦନରେ ପନ୍ଦରଦିନ ମାତ୍ର ଅବସ୍ଥାନ ପୂର୍ବକ ସମଗ୍ର ରାମାୟଣ ଚୂଡ଼ାମଣି ତାଙ୍କେ ପାଠ କରି ଶୁଣାଇଲା ପରେ ଜ୍ୱର ରୋଗରେ ପୀଡ଼ିତ ହୋଇ ପ୍ରତ୍ୟାଗତ ହୋଇଥିଲେ । ତଦନନ୍ତର ଉପରୋକ୍ତ ଗ୍ରନ୍ଥ ଜୟପୁର ରାଜ୍ୟାନ୍ତର୍ଗତ ପିତାମହଲଗ୍ରାମନିବାସୀ ଜୟପୁର ରାଜାଙ୍କ ଶ୍ରୀଗୁରୁ ମହୋଦୟଙ୍କ ନାମରେ ଭଣିତ କରି ଏକଶତ ଷୋଳ ଟଙ୍କା ସହିତ ଦିବ୍ୟ ଘୋଟକ ଓ ପଟ୍ଟାମ୍ବରଦ୍ୱୟ ଲାଭ କରିଥିଲେ । ପରେ ରାଧାମାଧବବିଳାସ ନାମକ ଏକ ଖଣ୍ଡ ପୁସ୍ତକ ରଚନା କରି ସେହି ରାଜଗୁରୁଙ୍କ ପୁତ୍ର ଶ୍ରୀ ସଦାଶିବ ରାଜଗୁରୁଙ୍କୁ ସମର୍ପଣ କରି ଯଥେଷ୍ଟ ସମ୍ମାନିତ ହୋଇଥିଲେ ।

କବି ଭୂବନେଶ୍ୱର କବିଚନ୍ଦ୍ର ବିଂଶତି ବର୍ଷ ବୟସ ସମୟରେ ପିତାମାତାଙ୍କୁ ନ କହି ପାଦଗାମୀ ହୋଇ ଶ୍ରୀବୃନ୍ଦାବନାଦି ତୀର୍ଥ ପର୍ଯ୍ୟଟନପୂର୍ବକ ପ୍ରାୟ ଏକ ବର୍ଷ ପରେ ଗୃହାଗତ ହୋଇଥିଲେ । ଏହି ସମୟରେ ମାଘପ୍ରୟାଗ ତାହାଙ୍କ ଭାଗ୍ୟରେ ଘଟିଥିଲା । ଦ୍ୱାବିଂଶ ବର୍ଷ ପରେ ବୈଦେହୀଶ ବିଳାସର ଅନୁକରଣରେ ସକାର ନିୟମରେ ୫୭ ଛାନ୍ଦବିଶିଷ୍ଟ ସୀତେଶବିଳାସ, ବକାର ନିୟମରେ ୧୬ ଛାନ୍ଦବିଶିଷ୍ଟ ବାସୁଦେବବିଳାସ, ଭଞ୍ଜଙ୍କ ଚିତ୍ରକାବ୍ୟ ବନ୍ଧୋଦୟର ଅନୁକରଣରେ ୮୪ ବନ୍ଧବିଶିଷ୍ଟ ୧୬ ଛାନ୍ଦ ପ୍ରବନ୍ଧରତ୍ନମାଳା, ପ୍ରତ୍ୟେକ ପଦ ହରି ଓ ହରଙ୍କୁ ପ୍ରାର୍ଥନାପୂର୍ବକ କ ଠାରୁ କ୍ଷ ପର୍ଯ୍ୟନ୍ତ ଶିବରାମଜଣାଣ, ଛଗରତ୍ନ, ଚୌପଦୀରତ୍ନ, ଚୌପଦୀମାଳା, ଭଜନମାଳା ଏବଂ ଦଶପଦୀ ରଚନା କରିଥିଲେ ।

କବି ଭୂବନେଶ୍ୱର କବିଚନ୍ଦ୍ର ୨୬ ବର୍ଷ ବୟସରେ ପିତାମାତାଙ୍କୁ ଗୋଚର ନ କରି ପାଦଗାମୀ ହୋଇ ସିଂହବୃହସ୍ପତି ଯୋଗରେ ଶ୍ରୀ ଗୋଦାବରୀ ତୀର୍ଥରେ ଅବଗାହନ କରିଥିଲେ । ୩୦ ବର୍ଷରେ କବିଚନ୍ଦ୍ରଙ୍କ ପିତା ଏବଂ ୩୧ ବର୍ଷରେ ମାତା ମାନବଲୀଳା ସମ୍ବରଣ କରିବାରୁ କବି ଭୂବନେଶ୍ୱର କବିଚନ୍ଦ୍ର ୩୨ ବର୍ଷରେ ମାତାପିତାଙ୍କର ଅସ୍ଥି ଶ୍ରୀପତିତପାବନୀ ଗଙ୍ଗାରେ କ୍ଷେପଣ ପୂର୍ବକ ଗୟାଶ୍ରାଦ୍ଧ ସମାପନ କରି ପୁନର୍ବାର ଶ୍ରୀବୃନ୍ଦାବନ ପର୍ଯ୍ୟନ୍ତ ରେଳଗାଡ଼ିରେ ତୀର୍ଥଯାତ୍ରା କରିଥିଲେ । ଏହି ସମୟରେ ଗ୍ରହଣ କାଶୀ ଯୋଗର ଫଳ ତାହାଙ୍କୁ ଲବ୍ଧ ହୋଇଥିଲା । ତତ୍ପରେ ଶ୍ରୀରାଜଧାମରୁ ପ୍ରତ୍ୟାଗତ ହୋଇ ୩୩ ବର୍ଷରେ ଶ୍ରୀବୃନ୍ଦାବନବାସିନୀ ମୂଳ ସଂସ୍କୃତ ସଂକୀର୍ତ୍ତନୋପଯୋଗୀ ସୁଲଳିତ ମନୋହର ଗୋଷ୍ଠିହେତେ ପଦ୍ୟ ଉତ୍କଳ ଭାଷାରେ ଅନୁବାଦ ପୂର୍ବକ ତାତ୍କାଳିକ ସ୍ଥାନୀୟ ଗୁଣଗ୍ରାହୀ ଭଗବାନ ଷାରବର ମହାପାତ୍ରଙ୍କର ସାପ୍ତାହିକ ଶ୍ରୀମଦ୍ଭାଗବତ ପୁରାଣପଠନୋତ୍ସବ ସମୟରେ ମହାସମାରୋହ ସହିତ ସଂକୀର୍ତ୍ତନ-ମଣ୍ଡଳୀରେ ପଠନ କରାଇ ତିନି ଭରଣ ଧାନ୍ୟ ପ୍ରାପ୍ତ ହୋଇଥିଲେ । ପ୍ରାପ୍ତ ଧାନ୍ୟର ତାତ୍କାଳିକ ମୂଲ୍ୟ ୩୦ ଟଙ୍କା ମାତ୍ର ଥିଲା । ତତ୍ପରେ ପ୍ରାଗୁକ୍ତ ଭଗବାନ ଷାରବର ମହାପାତ୍ରଙ୍କର ସବିଶେଷ

ଅନୁରୋଧରେ "ଗୋବିନ୍ଦଚନ୍ଦ୍ରିକା" ନାମକ ଗ୍ରନ୍ଥ ପ୍ରସ୍ତୁତ ରଚନା କରି ସ୍ୱାମୀଙ୍କ ଶ୍ରୀ ଶ୍ରୀ ଗୋପୀନାଥ ମହାପ୍ରଭୁଙ୍କ ପ୍ରାଚୀରାଭ୍ୟନ୍ତରରେ ରଥଯାତ୍ରାଅବସରେ ସ୍ତବକ ଉତ୍ସବ ମହାସମାରୋହ ସହିତ ଗୋବିନ୍ଦଚନ୍ଦ୍ରିକା କରାଇଥିଲେ । ୩୪ ବର୍ଷରେ ଶ୍ରୀ ଶ୍ରୀଧରସ୍ୱାମୀ ଟୀକା ମୂଳ ସଂସ୍କୃତରୁ ଅବିକଳ ପଦ୍ୟାନୁବାଦ ପୂର୍ବକ ୪୫ ଛନ୍ଦ ରଚନା କରିଥିଲେ । ସେହି ସମୟରେ ଜାତକ-ପ୍ରକରଣ ଏବଂ କାଳିଦାସକୃତ କର୍ପୂରାସ୍ତର ପଦ୍ୟାନୁବାଦ କରିଥିଲେ । ୩୫ ବର୍ଷରେ ଆଶୈଶବ ପ୍ରିୟତମ ମିତ୍ର ଅଙ୍କୋଲି ଗ୍ରାମନିବାସୀ ଶ୍ରୀ ବୈକୁଣ୍ଠ ରାମଚନ୍ଦ୍ରନାୟକଙ୍କ ସହିତ ପୁନଶ୍ଚ ଶ୍ରୀ ବୃନ୍ଦାବନାଦି ତୀର୍ଥ ପରିଭ୍ରମଣ କରିବାକୁ ଯାଇଥିଲେ । ୩୮ ବର୍ଷରେ ଗୋଶଷ୍ଟାବେଦଣ କରି ଶ୍ରୀ ଗୋଦାବରୀ ତୀର୍ଥଯାତ୍ରା କରିଥିଲେ । ପୌରୋହିତ୍ୟ କବି ଭୁବନେଶ୍ୱର କବିଚନ୍ଦ୍ରଙ୍କର ଏକମାତ୍ର ପୌତ୍ର ଜୀବିତ ଥିଲେ । ସେ ଜ୍ୟୋତିଷ, ସ୍ମୃତି ଓ କର୍ମକାଣ୍ଡରେ ସମ୍ୟକ ନିପୁଣ ଥିଲେ । ତାହାଙ୍କର ପୁତ୍ର ପଦ୍ମଚରଣ ବାବୁ ଜନସାଧାରଣଙ୍କର ପ୍ରୀତିକର ଥିଲେ ।

କବି ଭୁବନେଶ୍ୱର କବିଚନ୍ଦ୍ର ତୀର୍ଥାଟନ ଏବଂ କବିତା ରଚନାରେ ଅନେକ ସମୟ ଅତିବାହିତ କରିଥିଲେ । ସେ ଯାହା ଯାହା ରଚନା କରନ୍ତି ତାହା ସବୁ ତାଳପତ୍ରରେ ଲିପିବଦ୍ଧ କରି ରଖନ୍ତି । ତାହାଙ୍କର ହସ୍ତାକ୍ଷରରେ ତାହାଙ୍କ ରଚିତ ସମସ୍ତ ଗ୍ରନ୍ଥ ଅମ୍ଭଠାରେ ବିଦ୍ୟମାନ । ତନ୍ମଧ୍ୟରୁ ଶ୍ରୀନିବାସ ପାଟିହାର ଗୀତ କଟକର ଶ୍ରୀ ଗୌରୀଶଙ୍କର ରାୟ ମହାଶୟ ମୁଦ୍ରିତ କରି ପ୍ରତି ଖଣ୍ଡ ୮ ୦ ୯ ମୂଲ୍ୟରେ ବିକ୍ରୟ କରୁଅଛନ୍ତି । କବି ଶ୍ରୀ ଭୁବନେଶ୍ୱର କବିଚନ୍ଦ୍ରଙ୍କ ରଚିତ ସମସ୍ତ ଗ୍ରନ୍ଥ ଅମ୍ଭଠାରେ ପ୍ରାପ୍ତବ୍ୟ ।

କବି ଭୁବନେଶ୍ୱର କବିଚନ୍ଦ୍ରଙ୍କ ବଂଶାବଳୀ ।




ଶ୍ରୀ ପଦ୍ମଚରଣ କବିଚନ୍ଦ୍ର,
ହିଞ୍ଜଳୀକାଟୁ, ଗଞ୍ଜାମ ।

## ଶ୍ରୀ ଜଗନ୍ନାଥଦେବଙ୍କ ମନ୍ଦିର ।

କରୁଣାମୟ ଜଗଦୀଶ୍ୱରଙ୍କ ଅପୂର୍ବ ସୃଷ୍ଟି-ବୈଚିତ୍ର୍ୟ ଦେଖିଲେ କଏ ମନେ କରିବ ଯେ ଜଗତର ସମସ୍ତ କାର୍ଯ୍ୟାବଳୀ କୌଣସି ଏକ ନିୟମର ବଶବର୍ତ୍ତୀ ହୋଇ ଚଳୁଅଛି ? ଯେଉଁଠାରେ ସୁରମ୍ୟ ଉଦ୍ୟାନ ଶୋଭା ପାଉଥିଲା, ସେ ସ୍ଥାନ ମରୁଭୂମିରେ ପରିଣତ ହୋଇଅଛି, ଯେଉଁଠାରେ ଦେଦୀପ୍ୟମାନ-ତୁଙ୍ଗ-ସୌଧମାଳା-ସୁଶୋଭିତ-ନଗରୀ ବିରାଜିତ ଥିଲା, ସେଠାରେ ବର୍ତ୍ତମାନ ବ୍ୟାଘ୍ର-ଭଲ୍ଲୁକ-ଭୟସଙ୍କୁଳ ନିବିଡ଼ ଅରଣ୍ୟ ରହିଅଛି, ଯେଉଁ ସ୍ଥାନରେ ଉଚ୍ଚ ଗିରି-ରାଜିସୁଶୋଭିତ ଅରଣ୍ୟ ପ୍ରଦେଶ ଓ ସୁବିସ୍ତୀର୍ଣ୍ଣ ନଗରୀ ଓ ଜନପଦ ଦୃଷ୍ଟିଗୋଚର ହେଉଥିଲା ସେ ସ୍ଥାନ କାଳସ୍ରୋତରେ ସମୁଦ୍ରଗର୍ଭରେ ନିହିତ ହୋଇଅଛି ଏବଂ ପକ୍ଷାନ୍ତରେ ସମୁଦ୍ର ଓ ନଦୀ ଗର୍ଭରୁ ନୂତନ ଭୂଖଣ୍ଡ ବାହାରି ତହିଁରେ ନୂତନ ଗ୍ରାମ, ଉଦ୍ୟାନ, ନଗର ଓ ଉର୍ବର ଶସ୍ୟଶାଳୀ କ୍ଷେତ୍ରସମୂହ ଦୃଷ୍ଟି ହେଉଅଛି । ପୁନଶ୍ଚ ଯେଉଁ ଜାତି ଏକଦା ଅଦମ୍ୟ ସାହସ, ବୁଦ୍ଧି ଓ ଅଧ୍ୟବସାୟ-ଦ୍ୱାରା ବିଜ୍ଞାନ, ଶିଳ୍ପ ଓ ସମରନୈପୁଣ୍ୟର ପରାକାଷ୍ଠା ଦେଖାଇଥିଲେ ଓ ତତ୍କାଳୀନ ସଭ୍ୟଜଗତରେ ପ୍ରଥମ ସ୍ଥାନ ଅଧିକାର କରି-ଥିଲେ, ସେ ବର୍ତ୍ତମାନ କାଳସ୍ରୋତରେ ଉପେକ୍ଷିତ, ଲାଞ୍ଛିତ ଓ ପଦଦଳିତ ହୋଇଅଛନ୍ତି ଏବଂ ଯେଉଁ ଜାତି ଏକଦା ବର୍ବର ଓ ଅସଭ୍ୟ ବୋଲି ଉପେକ୍ଷିତ ହେଉଥିଲେ, ସେ ବର୍ତ୍ତମାନ ଜଗତରେ ଗୌରବକେତନ ଉଡ଼ାଇ ପ୍ରଧାନ ଶକ୍ତିସମ୍ପନ୍ନ ବୋଲି ପରିଗଣିତ ହେଉଅଛନ୍ତି । ଅହା ! ଏହି କି ପ୍ରକୃତିର ନିୟମ !

ଏକ ସମୟରେ ଏହି ଭାରତଭୂମି ସଭ୍ୟତାର ଅତ୍ୟୁଚ୍ଚ ସୋପାନ ଆରୋହଣ କରି ତଦାନୀନ୍ତନ ସମସ୍ତ ଜଗତରେ ଶୀର୍ଷସ୍ଥାନ ଅଧିକାର କରିଥିଲା । ଭାରତୀୟ ବୀରର ହୁଙ୍କାର ଶବ୍ଦରେ ସମରକ୍ଷେତ୍ର କମ୍ପିତ ହେଉଥିଲା, ଭାରତୀୟ ବାଣିଜ୍ୟତରୀ ମହୋ-ଲ୍ଲାସରେ ଅତଳସ୍ପର୍ଶ ବାରିଧି-ବକ୍ଷରେ କ୍ରୀଡ଼ା କରୁଥିଲା, ଥାଉ ସେ ସମସ୍ତ ଗୌରବ ଅନନ୍ତ କାଳସ୍ରୋତରେ ବିଲୀନ ହୋଇ ସ୍ୱପ୍ନଦୃଷ୍ଟ ବିଷୟ ପରି ପ୍ରତୀୟମାନ ହେଉଅଛି । କିନ୍ତୁ ଯାହାହେଉ ଇତିହାସ ଏହାର ସତ୍ୟତା ପ୍ରମାଣ କରିବାକୁ ସର୍ବଦା ଦଣ୍ଡାୟମାନ । ଭାରତୀୟ ଉନ୍ନତି ସଙ୍ଗେ ସଙ୍ଗେ ଉତ୍କଳ ଉନ୍ନତ ହୋଇଥିଲା, ଏହା କହିବା ବାହୁଲ୍ୟ ମାତ୍ର । ଆର୍ଯ୍ୟମାନେ ଏହି ପୁଣ୍ୟମୟ ଭୂମିକୁ ବାସ୍ତବିକ ସ୍ୱର୍ଗରେ ପରିଣତ କରିଥିଲେ । ଯଦିଓ କେହି କେହି ଏ ପ୍ରଦେଶକୁ ଅନୁନ୍ନତ ବୋଲି ମନେ କରନ୍ତି, ତଥାପି ଏହା ଯେ ଏକଦା ଭାରତ-ଅବତଂସ ଥିଲା, ଏହା ନିଃସନ୍ଦେହ । ଯଦି କେହି ପ୍ରାଚୀନ ଉତ୍କଳବାସୀଙ୍କର ବୁଦ୍ଧିଶକ୍ତିର ପରିଚୟ ପାଇବାକୁ ଇଚ୍ଛା କରନ୍ତି, ସେ ଥରେ ହିନ୍ଦୁସମାଜର ପୂର୍ବପୁରୁଷସଞ୍ଚିତ ଗୌରବଧନ ଓ ଦୃଢ଼ତାର ପ୍ରମାଣସ୍ୱରୂପ ଶ୍ରୀକ୍ଷେତ୍ର ମନ୍ଦିର ଦେଖି ଯାଆନ୍ତୁ; ଯଦି କେହି ପ୍ରାଚୀନ ଉତ୍କଳର ଶିଳ୍ପ-କୁଶଳତା ଦେଖିବାକୁ ଇଚ୍ଛା କରନ୍ତି, ସେ ଥରେ ଏକାମ୍ରକାନନର (ଭୁବନେଶ୍ୱର) ଅଭ୍ରଙ୍କଷ ମନ୍ଦିର ଓ କୋଣାର୍କରେ ମର୍ତ୍ତ୍ୟବଟିଖର ଅମର କୀର୍ତ୍ତି ଅବଲୋକନ କରି ଯାଆନ୍ତୁ । ଏ ସମସ୍ତ ଦର୍ଶନ କଲେ କେଉଁ ନିର୍ମମ ବ୍ୟକ୍ତି କହିବାକୁ ସାହସୀ ହେବ ଯେ ଏହା ଅସଭ୍ୟ ଜାତିର ବସତି ଥିଲା ? ଅଧୁନାତନ ଉତ୍କଳ ଅତି ଦରିଦ୍ର ହେଲେ ମଧ୍ୟ ଶ୍ରୀକ୍ଷେତ୍ର, ଭୁବନେଶ୍ୱର ଓ କୋଣାର୍କର କୀର୍ତ୍ତିସ୍ତମ୍ଭ ଯେ ତାହାକୁ ସମ୍ମାନିତ କରାଉଅଛି ଏବଂ ଅନେକ ଦିନ କରାଇବ, ଏହା ଧ୍ରୁବବଚନ । ଓଡ଼ିଶାର ଧନ ଲୁପ୍ତ ହୋଇଯାଇ ପାରେ, କିନ୍ତୁ ମହାଯଶା ଅନଙ୍ଗ-ଭୀମ ଦେବଙ୍କର, ପୁଣ୍ୟଶ୍ଲୋକ ଲଲାଟେନ୍ଦ୍ର କେଶରୀଙ୍କର ଓ ମହାମନା ନରସିଂହ ଦେବଙ୍କର ଅନୁପମ କୀର୍ତ୍ତି ସର୍ବନାଶୀ କାଳବକ୍ଷରେ ଯେଉଁ

ମନୋହର ଚିତ୍ତର ସନ୍ନିବେଶ କରିଅଛୁ, ତାହା କ୍ଷଣଭଙ୍ଗୁର ନୁହେ । ଇତିହାସ ଚିରକାଳ ଏମାନଙ୍କର ଯଶୋଗୀତି ଗାନ କରୁଥିବ ।

ବର୍ତ୍ତମାନଯୁଗରେ କୃତବିଦ୍ୟ ଭାରତୀୟ ଏବଂ ଇଉରୋପଦେଶୀୟ ସକଳ ବ୍ୟକ୍ତି ପୁରୀ ମନ୍ଦିରର ଇତିହାସ ଜାଣିବାକୁ ସର୍ବଦା ଉତ୍କଣ୍ଠିତ । ହେବାର କଥା; କାରଣ ବୋଦ୍ଧବ୍ୟ ବିଷୟ ସମ୍ୟକ୍‌ରୂପେ ହୃଦୟଙ୍ଗମ ନୋହିଲେ ଜ୍ଞାନପିପାସାର ନିବୃତ୍ତି ହୁଏ ନାହିଁ । ମାତ୍ର ନାନାଚିତ୍ର ବିଷୟ ପରିପ୍ଳୁତ ଥିବା ଦୃଷ୍ଟ୍ୟନ୍ତେ ମଦୀୟ କ୍ଷୀଣ ଲେଖନୀରୁ ନିଃସୃତ ହୋଇ ଯେ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଆନନ୍ଦ ପ୍ରଦାନ କରିବ, ଏହା ଦୁରାଶା ମାତ୍ର; ତଥାପି କେତେକ ଆତ୍ମୀୟ ବନ୍ଧୁମାନଙ୍କ ଅନୁରୋଧରେ ଉକ୍ତ ବିଷୟରେ ଯତ୍କିଞ୍ଚିତ୍ ଲେଖିବାକୁ ସାହସୀ ହେଲି ।

ପୁରୀମନ୍ଦିରର ଇତିହାସ ସଙ୍ଗେ ଓଡ଼ିଶାର ତଥା ହିନ୍ଦୁଧର୍ମର ଇତିବୃତ୍ତ ଏପରି ଘନିଷ୍ଠ ଭାବରେ ସଂଶ୍ଳିଷ୍ଟ ଯେ ତତ୍ସମ୍ବନ୍ଧରେ କିଛି କହିବାକୁ ଗଲେ ଓଡ଼ିଶାର ପୁରାତତ୍ତ୍ୱ ଏବଂ ହିନ୍ଦୁଧର୍ମର ବିଭିନ୍ନ ସମ୍ପ୍ରଦାୟର ଆବିର୍ଭାବ ଓ ତିରୋଭାବର ବିଷୟ ସ୍ଥାନେ ସ୍ଥାନେ ପ୍ରସଙ୍ଗକ୍ରମେ ଉଲ୍ଲେଖ କରିବାକୁ ହେବ ।

ଓଡ଼ିଶା ଭାରତର ପୂର୍ବଭାଗରେ ଅବସ୍ଥିତ । ଏହା ଉତ୍ତର ଦକ୍ଷିଣରେ ଗଙ୍ଗାନଦୀ ମୁହାଣରୁ କୃଷ୍ଣାନଦୀ ପର୍ଯ୍ୟନ୍ତ ଏବଂ ପୂର୍ବପଶ୍ଚିମରେ ବଙ୍ଗୋପସାଗରଠାରୁ ମଧ୍ୟପ୍ରଦେଶସ୍ଥ ରଙ୍ଗପୁର ପର୍ଯ୍ୟନ୍ତ ବିସ୍ତୃତ । ମନୁସଂହିତା, ମହାଭାରତ, ସ୍କନ୍ଦପୁରାଣ ଓ ପଦ୍ମପୁରାଣ ପ୍ରଭୃତିରେ ଏହାର ନାମ ଉଲ୍ଲିଖିତ ହୋଇଅଛି । ପ୍ରମାଣମାନ ଲେଖିବାକୁ ଗଲେ ପ୍ରବନ୍ଧ ସ୍ଥୂଳାକାର ଧାରଣ କରିବ; ମାତ୍ର ସ୍କନ୍ଦପୁରାଣାନ୍ତର୍ଗତ ପୁରୁଷୋତ୍ତମକ୍ଷେତ୍ରମାହାତ୍ମ୍ୟ ନାମକ ପୁସ୍ତକରୁ ଏହି ଶ୍ରୀକ୍ଷେତ୍ରସମ୍ବନ୍ଧୀୟ କେତେକ ବିଷୟ ଉଲ୍ଲେଖ ନ କଲେ ପ୍ରବନ୍ଧ ଅଙ୍ଗହୀନ ହେବ, ଏହି ଆଶଙ୍କାରେ ସଂକ୍ଷେପତଃ ଲେଖିବାକୁ ପ୍ରବୃତ୍ତ ହେଲି ।

ଉତ୍କଳ ପ୍ରଦେଶ ମହାଭାରତାଦି ପ୍ରାଚୀନ ଗ୍ରନ୍ଥରେ ପ୍ରସିଦ୍ଧ ଥିଲେ ସୁଦ୍ଧା ପୁରୁଷୋତ୍ତମ କ୍ଷେତ୍ର ସେତେଦୂର ପ୍ରକଟିତ ହୋଇ ନ ଥିବାର ଅନୁମିତ ହୁଏ । କାରଣ ଉକ୍ତ ଗ୍ରନ୍ଥମାନଙ୍କରେ ଏ ବିଷୟ ବିଶଦରୂପେ ଯଥାଯଥରେ ଲେଖା ଥିବାର ଦେଖାଯାଉ ନାହିଁ । କେବଳ ଶ୍ରୀକ୍ଷେତ୍ର ବିଷୟ କ୍ଷେତ୍ରମାହାତ୍ମ୍ୟରେ ଯାହା ବର୍ଣ୍ଣିତ ହୋଇ ଅଛି, ତାହାର ସାର ମର୍ମ ଏଠାରେ ଲିପିବଦ୍ଧ ହେଲା—"ଏକ ଜଣ ଜଟିଳ ସତ୍ୟଯୁଗରେ ବିଷ୍ଣୁଭକ୍ତ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟରେ ଉପସ୍ଥିତ ହେଲା । ମହାରାଜ ତାହାଙ୍କୁ ଯଥାବିଧି ଅର୍ଚ୍ଚନା କରି ଭାରତାନ୍ତର୍ଗତ ବିଷ୍ଣୁକ୍ଷେତ୍ରମାନଙ୍କ ବିଷୟରେ ନାନାବିଧ ପ୍ରଶ୍ନ କଲେ । ସେ ଅନ୍ୟାନ୍ୟ ବିବରଣ ସଙ୍ଗରେ ପୁରୁଷୋତ୍ତମ କ୍ଷେତ୍ରର ସ୍ଥୂଳ ବିବରଣ ପ୍ରକାଶ କଲେ । ଓଡ଼ିଶାର "ବୈତରଣୀ ନଦୀଠାରୁ ଋଷିକୁଲ୍ୟା ପର୍ଯ୍ୟନ୍ତ ସ୍ଥାନ ଅତି ପବିତ୍ର ଅଟେ; ତନ୍ମଧ୍ୟରେ ପଞ୍ଚକ୍ରୋଶ ଅର୍ଥାତ୍ ଦକ୍ଷିଣ ସମୁଦ୍ର (ବଙ୍ଗୋପସାଗର) ଉତ୍ତର ତୀରବର୍ତ୍ତୀ ପଞ୍ଚକ୍ରୋଶ ପୁଣ୍ୟତର ଏବଂ ତହିଁ ମଧ୍ୟରୁ କୋଶଦ୍ୱୟ ପରିମିତ ଦକ୍ଷିଣାବର୍ତ୍ତ ଶଙ୍ଖାକୃତିକ ସ୍ଥାନ ପୁଣ୍ୟତମ ଓ ଦୁର୍ଗମ; ଏଣୁ ଲୋକସଙ୍ଗରହିତ ବିଶ୍ୱାବସୁ ନାମକ ଏକ ବ୍ୟାଧ ସେଠାରେ ବାସ କରେ । ଉକ୍ତ ସ୍ଥାନର ତୃତୀୟାବର୍ତ୍ତରେ ନୀଳାଦ୍ରି ନାମକ ପର୍ବତରେ ନୀଳନୀରଦକାନ୍ତି ନୀଳମଣିମୟ ମାଧବମୂର୍ତ୍ତି ଆବିର୍ଭୂତ ହୋଇଅଛନ୍ତି । ସୁରଗଣ ବର୍ଷକ ମଧ୍ୟରୁ ଅର୍ଦ୍ଧ ସମୟ ନିଜେ ତାଙ୍କୁ ଅର୍ଚ୍ଚନା କରନ୍ତି, ଅପରାର୍ଦ୍ଧ ଉକ୍ତ ବ୍ୟାଧ ପୂଜା କରେ । ଏ ଅତି ଗୋପନୀୟ ଓ ବିଶିଷ୍ଟ ପୁଣ୍ୟମୟ ସ୍ଥାନ, ଏ ମୂର୍ତ୍ତି ସାମାନ୍ୟ ଗୁଣଶାଳୀ ବ୍ୟକ୍ତିମାନଙ୍କର ଦୃଷ୍ଟିଗୋଚର ହୁଅନ୍ତି ନାହିଁ । ଏହା ଭଳି ପବିତ୍ର ବିଷ୍ଣୁମଣ୍ଡଳ ଦ୍ୱିତୀୟ ନାହିଁ । ମୁଁ ନିରନ୍ତର ଏ ସ୍ଥାନରେ ବାସ କରେ । ଯଦ୍ୟପି ତୁମ୍ଭେ ଏ ମୂର୍ତ୍ତିଙ୍କୁ ଦର୍ଶନ କରିବାକୁ ଅଭିଳାଷୀ ହୁଅ, ନିଜର କୌଣସି ବ୍ୟକ୍ତିଙ୍କୁ ଅଗ୍ରେ ସେଠାକୁ ପ୍ରେରଣ କର । ସେ ମାର୍ଗ

ନିରୂପଣସନ୍ଧାନରେ ନୀଳ ପର୍ବତ ଅବଲୋକନ କରି ପ୍ରତ୍ୟାବର୍ତ୍ତନ କଲେ ତୁମ୍ଭେ ଯାତ୍ରା କରିବ।" ସେ ଏହା କହି ଅନ୍ତର୍ହିତ ହେଲେ । ମହାରାଜ ଇନ୍ଦ୍ରଦ୍ୟୁମ୍ନ ସ୍ୱୀୟ ପୁରୋହିତଙ୍କ କନିଷ୍ଠ ଭ୍ରାତା ବିଦ୍ୟାପତିଙ୍କୁ ନୀଳାଦ୍ରି ଗମନାର୍ଥ ଆଦେଶ ଦେଲେ । ସେ ଜଟିଳଙ୍କ ବଚନାନୁସାରେ ନୀଳାଦ୍ରି ଅଭିମୁଖରେ ଯାତ୍ରା କଲେ । ଅଳ୍ପ ଅଳ୍ପ ମାର୍ଗରେ ଉକ୍ତ ବ୍ୟାଧ ସହିତ ସାକ୍ଷାତ ହେବାରୁ ଦୁର୍ଗମ ମାର୍ଗ ଅନାୟାସରେ ଅତିକ୍ରମ କରିବାକୁ ସକ୍ଷମ ହେଲେ । ପରେ ଉକ୍ତ ବ୍ୟାଧ ସହିତ ମିତ୍ରତା ସ୍ଥାପନବଶତଃ ନୀଳମାଧବଙ୍କ ଦର୍ଶନ ସୁସମ୍ପନ୍ନ ହେଲା । ବ୍ୟାଧ ସହିତ ତଦୀୟ କୁଟୀରରେ ଫଳାହାରାଦି କରି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ଗଭୀର ବିଷ୍ଣୁଭକ୍ତିବଶତଃ ପୂର୍ବରୁ ଭବିଷ୍ୟତ ବିଷୟ ଜ୍ଞାତ ଥିବାରୁ ବିଶ୍ୱାବସୁ ସେ ସମୟରେ ବିଦ୍ୟାପତିଙ୍କୁ ସରଳ ଭାବରେ କହିଲେ, "ମିତ୍ର ! ଅନ୍ୟ ଥର ଆସିଲେ ଏ ମୂର୍ତ୍ତି ଓ ଏ ପର୍ବତ ଆଉ ତୁମ୍ଭର ଦୃଷ୍ଟିଗୋଚର ହେବ ନାହିଁ । ଏ ଭୂଧର ବାଲୁକାଦ୍ୱାରା ପ୍ରୋଥିତ ହୋଇଯିବ ଏବଂ ଏ ମୂର୍ତ୍ତି ଏ ସ୍ଥାନରୁ ତିରୋହିତ ହୋଇଥିବେ; କାରଣ, ଏ ସ୍ଥାନ ଅନ୍ୟ ମନ୍ୱନ୍ତରରେ ଉପସ୍ଥିତ ପର୍ଯ୍ୟନ୍ତ ବିଦ୍ୟମାନ ।" ତଦାନୀନ୍ତନ କୌଣସି ବ୍ୟକ୍ତି ପର୍ବତର କୌଣସି ସ୍ଥାନ ଦେଖି ନ ପାରି ପାର୍ବତୀୟ ଭୂମି ବିଷୟରେ ସନ୍ଦିହାନ ହୋଇ ନୀଳାଦ୍ରି ଶବ୍ଦର ଅର୍ଥରେ ଏହିପରି ମତଭେଦ ଉତ୍ଥାପନ କରନ୍ତି ଯେ "ନୀଳମାଧବଙ୍କ ଅବସ୍ଥିତି ହେତୁ ଏ ସ୍ଥାନର ନାମ ନୀଳାଦ୍ରି ହୋଇଅଛି," ଅନ୍ୟ କେହି କେହି କହନ୍ତି ଯେ "ଏ ସ୍ଥାନ ମାଧବଙ୍କର ଲୀଳାଭୂମି ଥିବାରୁ ଏହାର ନାମ ଲୀଳାଚଳ, ନୀଳାଚଳ ନୁହେ" । ସ୍କନ୍ଦପୁରାଣ ଓ ମୁକ୍ତିସଂହିତା ଅନୁସାରେ ନୀଳ ପ୍ରସ୍ତରମାନ ବିଦ୍ୟମାନ ଥିବାରୁ ଏହାର ନାମ ନୀଳାଦ୍ରି ଏବଂ ନୀଳ ପ୍ରସ୍ତରମୟୀ ମୂର୍ତ୍ତିଯୁକ୍ତ ମାଧବଙ୍କର ନାମ ନୀଳମାଧବ । ଏହି ଅର୍ଥଦ୍ୱୟ ଉକ୍ତ ଗ୍ରନ୍ଥଦ୍ୱୟରେ ସୁସ୍ପଷ୍ଟଭାବରେ ଉଲ୍ଲେଖ ହୋଇଅଛି । ପାଠକେ ! ଉପର୍ଯ୍ୟୁକ୍ତ ଦୁଇ ମତ ମଧ୍ୟରୁ କେଉଁଟି କଷ୍ଟପ୍ରସୂତ ତାହା ସହଜରେ ବୁଝି ପାରିବେ । ବିଶେଷ ଲେଖିବା ନିଷ୍ପ୍ରୟୋଜନ । ପ୍ରୋକ୍ତ ବିଦ୍ୟାପତି ସ୍ୱଦେଶରେ ଉପସ୍ଥିତ ହେଲେ। ରାଜା ବିଦ୍ୟାପତିଙ୍କ ଆଗମନ ପ୍ରତୀକ୍ଷାରେ ଉତ୍କଣ୍ଠିତ ଥିବାରୁ ବିଦ୍ୟାପତିଙ୍କ ଦର୍ଶନମାତ୍ରକେ ସ୍ୱୀୟ ପଦମର୍ଯ୍ୟାଦା ଭୁଲି ଯାଇ ସିଂହାସନ ପରିତ୍ୟାଗ ପୂର୍ବକ ବିଦ୍ୟାପତିଙ୍କୁ ଆଲିଙ୍ଗନ କରି ଆମୂଳ ବୃତ୍ତାନ୍ତ ଜ୍ଞାପନ କରିବାକୁ ଅନୁରୋଧ କଲେ । ବିଦ୍ୟାପତି ଆଦ୍ୟୋପାନ୍ତ ସମସ୍ତ ବିଷୟ ପ୍ରକାଶ କଲେ । ରାଜା ଉକ୍ତ ବିଷୟ ଶ୍ରବଣମାତ୍ରେ ମନ୍ତ୍ରିଙ୍କ ଉପରେ ରାଜ୍ୟଭାର ନ୍ୟସ୍ତ କରି ପରିବାର ଏବଂ ପ୍ରଜାମାନଙ୍କ ସହିତ ରାଜକୋଷରୁ ସମସ୍ତ ସମ୍ପତ୍ତି ସଙ୍ଗେ ଘେନି ଅକସ୍ମାତ୍ ଆଗତ ମହର୍ଷି ଭଗବାନ୍ ନାରଦଙ୍କ ସମଭିବ୍ୟାହାରରେ ଉତ୍କଳାଭିମୁଖରେ ଯାତ୍ରା କଲେ । ଅବନ୍ତୀ ରାଜଧାନୀ ତ୍ୟାଗ କରି ଅଳ୍ପକାଳ ମଧ୍ୟରେ ଓଡ଼ିଶାର ଅନ୍ତର୍ଗତ ଚଛିଡ଼ା ଦେଶର ସନ୍ନିକଟରେ ଉପସ୍ଥିତ ହେଲେ । ସେ ସ୍ଥାନ ମହାନଦୀର ତୀରବର୍ତ୍ତୀ, ସେଠାର ପ୍ରାକୃତିକ ଶୋଭା ଅତି ରମଣୀୟ ଏବଂ ସ୍ଥାନଟି ସ୍ୱାସ୍ଥ୍ୟକର । ଏହିଠାରେ ଓଡ଼ିଶାର ରାଜାଙ୍କ ସଙ୍ଗେ ଇନ୍ଦ୍ରଦ୍ୟୁମ୍ନଙ୍କର ସାକ୍ଷାତ ହୋଇଥିବାର ଉଲ୍ଲେଖ ଅଛି । ସେଠାରୁ ଆଗମନ କରି ଏକାମ୍ରକାନନରେ ( ଭୁବନେଶ୍ୱର ) ଅବସ୍ଥାନ କଲେ । ଏପର୍ଯ୍ୟନ୍ତ ଓଡ଼ିଶାର ମାର୍ଗ ପରିଷ୍କୃତ ଥିଲା । ତତ୍ପରେ ଅରଣ୍ୟ ଓ ପର୍ବତମୟ ପ୍ରଦେଶ ଥିବାରୁ ମାର୍ଗ ଗମନାଗମନ ପକ୍ଷରେ ଅତି କ୍ଲେଶଦାୟକ ଥିଲା । ତଥାପି ଦେବଦର୍ଶନାକାଙ୍କ୍ଷାରେ ଆକୁଳହୃଦୟ ହୋଇ ମହାରାଜ ସେହି ମାର୍ଗରେ ଯାତ୍ରା କରିବାକୁ ବିମୁଖ ହୋଇ ନ ଥିଲେ । ମାର୍ଗ ମଧ୍ୟରେ ନାରଦ ମହର୍ଷିଙ୍କ ମୁଖରୁ ନୀଳମାଧବଙ୍କ ତିରୋଭାବ ଏବଂ ନୀଳପର୍ବତ ବାଲୁକାବୃତ ହୋଇଥିବାର ଶ୍ରବଣ କରି ତତ୍‌କ୍ଷଣାତ୍ ମୂର୍ଚ୍ଛିତ ହେଲେ । "ନୀଳମାଧବଙ୍କ

ପ୍ରସ୍ଥାନ କଲେ ଦାରୁବ୍ରହ୍ମ ରୂପରେ ଭଗବାନ୍ ଅବତୀର୍ଣ୍ଣ ହେବେ ଏହା କହି ନାରଦ ସାନ୍ତ୍ୱନା କରିବାରୁ ଇନ୍ଦ୍ରଦ୍ୟୁମ୍ନ ଆଶ୍ୱସ୍ତ ହେଲେ । ଅତଃପର ମହାରାଜ ଇନ୍ଦ୍ରଦ୍ୟୁମ୍ନ ଶଙ୍ଖାଗ୍ରସ୍ଥିତ ନୀଳକଣ୍ଠଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ତାହାଙ୍କ ନିକଟବର୍ତ୍ତୀ ନୃସିଂହ ଦେବଙ୍କ ସମୀପରେ ଆବାସଗୃହ ନିର୍ମାଣ କରି ନାରଦଙ୍କ ଆଦେଶାନୁସାରେ ଅଶ୍ୱମେଧଯଜ୍ଞ ଆରମ୍ଭ କଲେ । ଏହି ଯଜ୍ଞର ହୋମସାଧନ ନିମିତ୍ତ ଏତେ ଗୌ ସଂଗ୍ରହ କରିଥିଲେ ଯେ ସେମାନଙ୍କ ଖୁରଘାତରେ ଏବଂ ଦାନଜଳରେ ଇନ୍ଦ୍ରଦ୍ୟୁମ୍ନ ସରୋବର ଉତ୍ପନ୍ନ ହେଲା । ବର୍ତ୍ତମାନ ଯାହା ଗୁଣ୍ଡିଚାଗୃହ ନାମରେ ଅଭିହିତ, ସେଠାରେ ତାଙ୍କର ଯଜ୍ଞଶାଳା ନିର୍ମିତ ହୋଇଥିଲା । ମହାରାଜ ଏଠାରେ ବହୁସଂଖ୍ୟକ ଅଶ୍ୱମେଧଯଜ୍ଞ ଅନୁଷ୍ଠାନ କରିଥିଲେ । ଯଜ୍ଞର ଏକ ଦିନ ରାତ୍ରି ଶେଷ ପ୍ରହରରେ ମହାରାଜ ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନରେ ନିମ୍ନଲିଖିତ ରୂପରେ ଜଗଦୀଶ୍ୱରଙ୍କୁ ଦେଖି ପାରିଲେ:—

"କ୍ଷୀରସମୁଦ୍ରମଧ୍ୟସ୍ଥିତ ଶ୍ୱେତଦ୍ୱୀପରେ କଳ୍ପଦ୍ରୁମ ବିରାଜମାନ । ତାହାର ମୂଳପ୍ରଦେଶ ମଣିମୁକ୍ତାଦି ବହୁମୂଲ୍ୟ ରତ୍ନରେ ନିବଦ୍ଧ । ତଦୁପରି ସୁବର୍ଣ୍ଣମୟ ମଣ୍ଡପ । ତନ୍ମଧ୍ୟରେ ରତ୍ନସିଂହାସନ ବିଦ୍ୟମାନ । ତଦୁପରିଭାଗରେ ନୀଳନୀରଦଶ୍ୟାମଳରୂପ ବନମାଳାବିଭୂଷିତ ପୀତାମ୍ବରଧାରୀ ସ୍ୱୟଂ ଭଗବାନ୍ କୃଷ୍ଣ ଦେଦୀପ୍ୟମାନ । ତାହାଙ୍କ ଦକ୍ଷିଣରେ ଶ୍ରୀଦେବୀ (ସୁଭଦ୍ରା) । ତଦ୍ଦକ୍ଷିଣରେ ନୀଳାମ୍ବରଧେୟ ବଳଦେବ ବିରାଜମାନ । କୃଷ୍ଣଙ୍କ ବାମଭାଗରେ ସୁଦର୍ଶନଚକ୍ର ଅବସ୍ଥିତ ।" ସ୍ୱପ୍ନରେ ଶ୍ରୀ ଜଗନ୍ନାଥଙ୍କୁ ଏହିପରି ଦର୍ଶନ କରି ହୃଷ୍ଟାନ୍ତଃକରଣରେ ନିଦ୍ରା ତ୍ୟାଗ କରିବାମାତ୍ରେ ମହାରାଜ ନାରଦ ମହର୍ଷିଙ୍କ ନିକଟରେ ସେହି ସ୍ୱପ୍ନଦୃଷ୍ଟ ବିଷୟସକଳ ବ୍ୟକ୍ତ କଲେ । ମହର୍ଷି ସେ ସମସ୍ତ ଶ୍ରବଣ କରି କହିଲେ "ଭଗବାନ୍ ସେହି ରୂପରେ ଏସ୍ଥାନରେ ଅବତୀର୍ଣ୍ଣ ହେବେ ଏବଂ କାଲି ପ୍ରାତଃକାଳରେ ତୁମ୍ଭେ ଦାରୁରୂପୀ ଭଗବାନଙ୍କୁ ସାଗର ତୀରରେ ଦେଖି ପାରିବ" । ତତ୍ପର ଦିବସ ପ୍ରାତଃକାଳରେ ବାରିଧିସ୍ନାନ କରି ଯିବା ସମୟରେ ବିଲ୍ୱେଶ୍ୱରଙ୍କ ନିକଟରେ ଶଙ୍ଖଚକ୍ରାଙ୍କିତ ଏକ ବୃହତ୍ ବୃକ୍ଷ ସମୁଦ୍ର ତୀରରେ ସଲଗ୍ନ ଦେଖି ରାଜା ନାରଦଙ୍କୁ ଏ ଘଟଣା ସହିତ ସ୍ୱୀୟ ସ୍ୱପ୍ନର ସାମଞ୍ଜସ୍ୟ ନିରୂପଣାର୍ଥ ପ୍ରଶ୍ନ କଲେ । ନାରଦ ଅତ୍ୟନ୍ତ ଆନନ୍ଦିତ ହୋଇ କହିଲେ, "ଯାହା ସ୍ୱପ୍ନରେ ଦେଖିଥିଲ, ତାହା ଅଦ୍ୟ ସଫଳ ହେଲା । ଭଗବାନ୍ ଏ ବୃକ୍ଷ ରୂପରେ ଶ୍ୱେତଦ୍ୱୀପରୁ ଆଗମନ କରିଅଛନ୍ତି । ଶୀଘ୍ର ହସ୍ତିବଳସହକାରେ ଏହାଙ୍କ ଯାତ୍ରା କରାଅ । ନାରଦଙ୍କଦ୍ୱାରା ଆଦିଷ୍ଟ ମହାରାଜ ଅତ୍ୟନ୍ତ ସମାରୋହରେ ମୃଦଙ୍ଗାଦି ବାଦ୍ୟପୁରଃସର ସେହି ଦାରୁ ବହନ କରାଇ ଯଜ୍ଞବେଦୀ ମଧ୍ୟରେ ସ୍ଥାପନ କଲେ । ଯଜ୍ଞ ସମାପନାନନ୍ତର ନାରଦଙ୍କୁ ପ୍ରଶ୍ନ କଲେ, ଏହି ଦାରୁରେ କିପରି ପ୍ରତିମା ନିର୍ମିତ ହେବ, ଏ ବିଷୟରେ ଆଜ୍ଞା କରନ୍ତୁ । ନାରଦ ଉତ୍ତର କଲେ, ଭଗବାନଙ୍କର ବିଚିତ୍ର ମାହାତ୍ମ୍ୟ, ସେ ନିଜେ ନିର୍ମାଣକାର୍ଯ୍ୟ ବିଧାନ କରିବେ; ଏ ବିଷୟରେ ଚିନ୍ତିତ ହେବାର ପ୍ରୟୋଜନ ନାହିଁ । ଏଥିମଧ୍ୟରେ ଆକାଶବାଣୀ ହେଲା ଯେ "ମହାରାଜ ! ଚିନ୍ତିତ ହେବାର ନୁହେଁ; ଶିଳ୍ପଶାସ୍ତ୍ରନିପୁଣ ଏକ ଜଣ ବୃଦ୍ଧ ବର୍ଦ୍ଧକୀ ଆଗାମୀ କାଲି ସେ ସ୍ଥାନରେ ଉପସ୍ଥିତ ହେବ । ସେ ପ୍ରତିମା ନିର୍ମାଣ ସୁଗୁପ୍ତରୂପେ ଅନୁଷ୍ଠାନ କରିବ । ତୁମ୍ଭେ ପଞ୍ଚଦଶ ଦିବସ ପର୍ଯ୍ୟନ୍ତ ପ୍ରତିମାନିର୍ମାଣସ୍ଥାନ ଅର୍ଥାତ୍ ଯଜ୍ଞବେଦୀର ଚତୁର୍ଦ୍ଦ୍ୱାର ବନ୍ଦ କରିବ । ତାହାର ଗୃହ ଅତ୍ର ସର୍ବଦା ବାଦ୍ୟ କାହାଳାଦି ଧ୍ୱନିଦ୍ୱାରା ଏପରି ଶବ୍ଦାୟମାନ କରି ରଖିବ ଯେ, ଯେପରି କେହି ନିର୍ମାଣ ଶବ୍ଦ ଶୁଣି ପାରିବେ ନାହିଁ । କାରଣ ଏ ନିର୍ମାଣ ଶବ୍ଦ ଯେ ଶ୍ରବଣ କରିବ ସେ ବଧିରତ୍ୱ ଗୁରୁତର ଦୋଷରେ ଦୂଷିତ ହେବ ।" ଆକାଶବାଣୀର ଏହି ଆଦେଶ ପ୍ରାପ୍ତ ହୋଇ ନାରଦ ପ୍ରମୁଖ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ହୃଷ୍ଟମନରେ ପୂର୍ବୋକ୍ତ କାର୍ଯ୍ୟମାନ

ସମ୍ପାଦନ କଲେ । ପରଦିବସ ମହୋତ୍ସବ ସମୟରେ ବୃଦ୍ଧ ବର୍ଦ୍ଧକୀ ସ୍ୱୟଂ ଉପସ୍ଥିତ ହୋଇ ଉକ୍ତ କାର୍ଯ୍ୟ କରିବାକୁ ପ୍ରବୃତ୍ତ ହେଲେ । ପଞ୍ଚଦଶ ଦିନ ଅତୀତ ହେବାରୁ ଦ୍ୱାର ଉଦ୍ଘାଟିତ ହେବାରେ ପୂର୍ବୋକ୍ତ ବର୍ଦ୍ଧକୀ ଅନ୍ତର୍ହିତ ହୋଇଥିବାର ଦେଖାଗଲା ଏବଂ ଜଗନ୍ନାଥ ପ୍ରଭୃତି ଚତୁର୍ଦ୍ଧାମୂର୍ତ୍ତି ଅର୍ଥାତ୍ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ସୁଦର୍ଶନ, ଲକ୍ଷ୍ମୀ ଓ ଧରଣୀଦେବୀଙ୍କୁ ପରିଦର୍ଶନ କରି ସମସ୍ତେ ଅତି ହୃଷ୍ଟ ହେଲେ । ତଦନନ୍ତର ନାରଦ ଆଦେଶ ଦେଲେ ଯେ ଏ ମୂର୍ତ୍ତିମାନଙ୍କୁ ସ୍ଥାପନ କରିବା ନିମିତ୍ତ ପ୍ରାସାଦ ଆବଶ୍ୟକ ଏବଂ ବିଶ୍ୱକର୍ମାଙ୍କୁ ଆଦେଶ ଦିଅଯାଉ ଯେ ସେ ଶୀଘ୍ର ମନ୍ଦିର ନିର୍ମାଣ କରନ୍ତୁ । ରାଜା ଏହି ଆଦେଶ ଶିରୋଧାର୍ଯ୍ୟ କରି ବିଶ୍ୱକର୍ମାଙ୍କୁ ଆହ୍ୱାନ କରି ମନ୍ଦିର ନିର୍ମାଣର ଭାର ଅର୍ପଣ କଲେ । ବାସୁକଲାଳିତ ଅଷ୍ଟାଦଶ ଦ୍ୱୀପରୁ ପଥୁରିଆମାନଙ୍କୁ ଆଣାଇ ସେମାନଙ୍କ ସାହାଯ୍ୟରେ ମନ୍ଦିର ନିର୍ମାଣ କରାଇଲେ । ବ୍ୟୟ ନିର୍ବାହ ନିମନ୍ତେ କୋଟି କୋଟି ମୁଦ୍ରା ତାହାଙ୍କ ନିକଟରେ ପ୍ରଦାନ କଲେ ଏବଂ ମନ୍ଦିରର ଏକସହସ୍ର ହସ୍ତ ପରିମାଣରେ ଉଚ୍ଚତା ବିଧାନ କରିବାକୁ ଆଜ୍ଞା ଦେଲେ । ଏ କାର୍ଯ୍ୟର ତତ୍ତ୍ୱାବଧାରକ ପଦରେ ନିଜ ମନ୍ତ୍ରୀ ଓ ତନୟଙ୍କୁ ନିଯୁକ୍ତ କଲେ । ଏ ମନ୍ଦିର ସମ୍ବନ୍ଧରେ କେହି କେହି ଅନୁମାନ କରନ୍ତି ଯେ ଏ ମନ୍ଦିର ପର୍ବତୋପରି ନିର୍ମିତ ହୋଇ ନାହିଁ, କାରଣ ପର୍ବତର କୌଣସି ଚିହ୍ନ ଅଧୁନା ଏ ସ୍ଥାନରେ ଦୃଷ୍ଟ ହୁଏ ନାହିଁ । ଏ ଆପତ୍ତି ସମୀଚୀନ ବୋଲି ପ୍ରତୀୟମାନ ହୁଏ ନାହିଁ । ଯେହେତୁ ଶାସ୍ତ୍ରରେ ଉଲ୍ଲେଖ ଅଛି ଯେ "ନୀଳମାଧବଙ୍କ ପରେ ଏ ସ୍ଥାନ ବାଲୁକାରାଶିଦ୍ୱାରା ପ୍ରୋଥିତ ହେବ" । ଏହା ଏଥିପୂର୍ବେ କହା ଯାଇଅଛି । କାଳକ୍ରମେ ଜଳଭାଗ ସ୍ଥଳରେ ଏବଂ ସ୍ଥଳଭାଗ ମଧ୍ୟ ଜଳରେ ପରିଣତ ହୋଇ ପାରେ, ଏହା ବିଜ୍ଞାନାନୁମୋଦିତ । ବର୍ତ୍ତମାନ ମଧ୍ୟ ଦେଖା ଯାଉଅଛି ଯେ କୂପ ଖନନ ସମୟରେ ଅତି ଗଭୀରରେ ସୁଦ୍ଧା ସ୍ଥାନେ ସ୍ଥାନେ ସମାଧି ପ୍ରଭୃତି ରହିଅଛି । ତେବେ ଏ ପ୍ରାଚୀନ କାର୍ଯ୍ୟର ଅତିମ୍ପୂ ସମୟରୁ ଏ ସ୍ଥାନ ସମୁଦ୍ର ଗର୍ଭରେ ଶୈଳଦ୍ୱୀପ ଥିଲା ବୋଲି ଅନୁମାନ କରଯାଏ । ତଦନନ୍ତର ବହୁକାଳ ସ୍ଥାନଟି ଯେ "ତ୍ରିକୋଣ ଦ୍ୱୀପ" (ଚିଲ୍କା) ହୋଇଥିଲା । ବର୍ତ୍ତମାନ ଜୀବିତ ବର୍ଷୀୟାନ୍ ଲୋକେ ଅନାୟାସେ ବୁଝି ପାରିବେ ।

ମନ୍ଦିର ଶଙ୍ଖନାଭି ଦେଶରେ ସହସ୍ର ହସ୍ତ ପରିମାଣରେ ନିର୍ମିତ ଏବଂ ନାନାବିଧ ବହୁମୂଲ୍ୟ ରତ୍ନରେ ମଣ୍ଡିତ ହେଲା । ମନ୍ଦିର ଚତୁଃପାର୍ଶ୍ୱରେ ବହୁବିଧ ଦେବଦେବୀ ପ୍ରତିମୂର୍ତ୍ତି ଖୋଦିତ ଏବଂ ମନ୍ଦିର ମଧ୍ୟରେ ରତ୍ନସିଂହାସନ ନାନା ମଣିମୁକ୍ତାଦିରେ ଖଚିତ ହୋଇଅଛି ଏବଂ ତୃତୀୟାବର୍ତ୍ତ ମଧ୍ୟସ୍ଥ ଅଭ୍ୟନ୍ତର ବେଷ୍ଟନ ( ଭିତର ବେଢ଼ା ) ମଧ୍ୟରେ ଶ୍ରୀମନ୍ଦିରର ଅଗ୍ନେୟ କୋଣରେ କଳ୍ପବଟ, ନୈଋତରେ ଗଣେଶ ଓ ମଙ୍ଗଳାଦେବୀ, ଏହାଙ୍କ ପଶ୍ଚିମରେ ରୋହିଣୀକୁଣ୍ଡ, ତତ୍ପଶ୍ଚିମରେ ବିମଳା, ଏହାଙ୍କ ଉତ୍ତରରେ ସରସ୍ୱତୀ, ତଦୁତ୍ତର ଭାଗରେ ଲକ୍ଷ୍ମୀଦେବୀଙ୍କ ମନ୍ଦିର । ଶ୍ରୀମନ୍ଦିରର ଐଶାନ୍ୟ କୋଣରେ ଦ୍ୱିତୀୟ ବେଷ୍ଟନ ମଧ୍ୟରେ ଐଶାନେଶ୍ୱର, ସ୍ନାନମଣ୍ଡପ, ବୈକୁଣ୍ଠ ଓ ପାକଶାଳା ପ୍ରଭୃତି ଅବସ୍ଥିତ । ଦ୍ୱିତୀୟ ବେଷ୍ଟନ ପ୍ରାଚୀର ଏତେ ଉଚ୍ଚ ଯେ ଏହାକୁ ଏପର୍ଯ୍ୟନ୍ତ ମେଘନାଦ ପ୍ରାଚୀର ବୋଲି ଲୋକମାନେ କହୁଅଛନ୍ତି । ପ୍ରତ୍ୟେକ ବେଷ୍ଟନର ଚତୁର୍ଦ୍ଦିଗରେ ଚତୁନ୍ନତ ଦ୍ୱାର ସ୍ଥାପିତ । ବେଷ୍ଟନ ମଧ୍ୟସ୍ଥ ପ୍ରତ୍ୟେକ ବିଷୟ ଏ ପ୍ରବନ୍ଧରେ ଉଲ୍ଲିଖିତ ହୋଇ ନାହିଁ ଏବଂ ଯାହା କ ଲେଖା ଯାଇଅଛି ସେମାନଙ୍କର ଐତିହାସିକ ବିବରଣୀ ମଧ୍ୟ ଦିଆ ହୋଇ ନାହିଁ । କାରଣ ଏକ ଏକ ପଦାର୍ଥର ଗୋଟିଏ ଗୋଟିଏ ବୃହତ୍ ପ୍ରବନ୍ଧରେ ପରିଗଣିତ ହେବ । ଅତଏବ ଆଂଶିକ ବିଷୟ ଦେଇ ସମସ୍ତ ବିଷୟରୁ ନିବୃତ୍ତ ହେଲି । ବର୍ତ୍ତମାନ ଦ୍ୱିତୀୟାବର୍ତ୍ତର ବିଷୟ ଏଠାରେ ପ୍ରଦତ୍ତ ହେଲା । ଏ ଆବର୍ତ୍ତରେ କପାଳମୋଚନ,

ଯମେଶ୍ୱର, ମାର୍କଣ୍ଡେୟ, ଅନ୍ତର୍ବେଦୀର ଅର୍ଥାତ୍ ଶଙ୍ଖାକୃତି କ୍ଷେତ୍ରରୂପ ବେଦୀର ରକ୍ଷାର୍ଥ ଅଷ୍ଟଚଣ୍ଡୀ ଯଥା—ଶଙ୍ଖର ପୃଷ୍ଠଭାଗରେ ସର୍ବମଙ୍ଗଳା (ବଟମଙ୍ଗଳା), ବିମଳା, ଏମାନଙ୍କ ନାମ ଇତିପୂର୍ବରେ ଦିଆଯାଇଅଛି । ଅର୍ଦ୍ଧାଶନୀ, ଅଲମ୍ବା ଏ ଦୁଇ ଦେବୀ ଉତ୍ତର ଦିଗରେ ଅବସ୍ଥିତ । କାଳରାତ୍ରି ଅର୍ଥାତ୍ ଦକ୍ଷିଣକାଳୀ, ଦକ୍ଷିଣ ଦିଗରେ ମରୀଚିକା ଏବଂ କାଳରାତ୍ରିଙ୍କର ପୃଷ୍ଠଭାଗରେ ଚଣ୍ଡରୂପା ଏବଂ ଶଙ୍ଖ ମୂଳରେ ଲୋକନାଥ ଏବଂ ଶଙ୍ଖାଗ୍ରରେ ନୀଳକଣ୍ଠ। ଦକ୍ଷିଣାବର୍ତ୍ତ ଶଙ୍ଖ ଥିବାରୁ ବିଶେଷତଃ ଦକ୍ଷିଣାଂଶ ସମୁଦ୍ର ମଧ୍ୟବର୍ତ୍ତୀ ଏବଂ ଏହି ଶଙ୍ଖାକୃତି ସ୍ଥାନ ଏକ କ୍ରୋଶ । ଏ ଅଷ୍ଟ ଶକ୍ତିଙ୍କ ଏବଂ ପଞ୍ଚ ମହାଦେବଙ୍କ ବିବରଣ ବହୁ ଘଟନାପୂର୍ଣ୍ଣ । ସୁତରାଂ ପ୍ରବନ୍ଧର କଳେବରବୃଦ୍ଧି ଭୟରେ ତାହା ପରିତ୍ୟକ୍ତ ହେଲା । ଅନନ୍ତର ଏ ମନ୍ଦିର ଏବଂ ପ୍ରତିମାମାନଙ୍କର ପ୍ରତିଷ୍ଠା ନିମନ୍ତେ ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କ ସହିତ ସ୍ୱୟଂ ବ୍ରହ୍ମଲୋକକୁ ଗମନ କଲେ । ସେଠାରେ ଉପସ୍ଥିତ ହୋଇ ବ୍ରହ୍ମାଙ୍କ ସହିତ ସାକ୍ଷାତ୍ କରିବାକୁ ଯିବା ସମୟରେ ଦୌବାରିକ ବ୍ରହ୍ମାଙ୍କ ନିକଟକୁ ଯିବାହକାଶେ ନିଷେଧ କରିବାରୁ ରାଜା ଦ୍ୱାର ନିକଟରେ ଉପବିଷ୍ଟ ହେଲେ । ଅନୁମତି ଆଣିବାକୁ କେବଳ ନାରଦ ବ୍ରହ୍ମାଙ୍କ ନିକଟକୁ ଗଲେ । ସେ ସମୟରେ ବ୍ରହ୍ମାଙ୍କ ସଭାର ଅବସର ନ ଥିବାରୁ କିଛି କାଳ ଅପେକ୍ଷା କରିବାକୁ ହେଲା । ଅନନ୍ତର ଅବକାଶ ପାଇ ନାରଦ ପ୍ରସ୍ତାବିତ ବିଷୟ ବ୍ରହ୍ମାଙ୍କୁ ଜ୍ଞାତ କରାଇବାମାତ୍ରେ ବ୍ରହ୍ମା ରାଜାଙ୍କ ପ୍ରବେଶ ନିମନ୍ତେ ଅନୁମତି ଦେଲେ । ତତ୍ପରେ ଇନ୍ଦ୍ରଦ୍ୟୁମ୍ନ ମହାରାଜ ପ୍ରବିଷ୍ଟ ହୋଇ ବ୍ରହ୍ମାଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ଉପବେଶନ କଲେ । ସଭାଭଙ୍ଗ ହେବାରୁ ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନଙ୍କୁ ନିକଟକୁ ଡକାଇ ପ୍ରକାଶ କଲେ ଯେ ତୁମ୍ଭେ ବିଷ୍ଣୁଭକ୍ତାଗ୍ରଣୀ ଓ ଭଗବାନଙ୍କର ଅତ୍ୟନ୍ତ ପ୍ରିୟପାତ୍ର । ଏଥିନିମନ୍ତେ ମନୁଷ୍ୟଶରୀରରେ ଏ ସ୍ଥାନରେ ଉପସ୍ଥିତ ହେଲ ଏବଂ ଯେଉଁ ସମୟଟକ ଅପେକ୍ଷା କଲ, ସେଥିମଧ୍ୟରେ ଏକ ମନ୍ୱନ୍ତର ଉପସ୍ଥିତ ହୋଇଅଛି । ତୁମ୍ଭେ ଯେଉଁ ସକାଶେ ଆଗତ, ସେ ସକଳ ବିନଷ୍ଟ ହୋଇଅଛି । ଭୂଲୋକରେ ଅନ୍ୟାନ୍ୟ ରାଜା ହୋଇ ଗଲେଣି । ତଥାପି ତୁମ୍ଭ ନିର୍ମିତ ପ୍ରାସାଦ, ପ୍ରତିମାମାନ, ବିଦ୍ୟାପତିବଂଶୀୟ ଏବଂ ବିଶ୍ୱାବସୁବଂଶୀୟମାନେ ବିଦ୍ୟମାନ । ତୁମ୍ଭେ ପଦ୍ମନିଧି, ଶଙ୍ଖନିଧି ଏବଂ ନାରଦଙ୍କୁ ସଙ୍ଗେ ଘେନିଯାଅ ଏବଂ ପ୍ରତିଷ୍ଠାସମ୍ଭାର ଆୟୋଜନ କର । ଆମ୍ଭେ ସୁରଗଣ, ଦେବର୍ଷି ଓ ବ୍ରହ୍ମର୍ଷିଗଣଙ୍କ ସମଭିବ୍ୟାହାରରେ ସତ୍ୱର ଉପସ୍ଥିତ ହେବୁ । ରାଜା ବ୍ରହ୍ମାଙ୍କର ଏହି ଆଦେଶ ପ୍ରାପ୍ତ ହୋଇ ନିର୍ବାଚିତ ଦେନି ଜଣଙ୍କ ସହିତ ମର୍ତ୍ତ୍ୟରେ ଉପସ୍ଥିତ ହୋଇ ଦେଖିଲେ ଯେ ସ୍ୱକୃତ ମନ୍ଦିରରେ ମାଧବ ମୂର୍ତ୍ତି ବିରାଜମାନ । ତଥାପି ଯଜ୍ଞସମ୍ଭାର ଆୟୋଜନ କଲେ । ଏ ମଧ୍ୟରେ ଦେବଗଣ ଆସି ଉପସ୍ଥିତ ହେଲେ । ଅନନ୍ତର ମନ୍ଦିରର ପଶ୍ଚିମ ଭାଗରେ ମନ୍ଦିରସ୍ଥ ମାଧବଙ୍କୁ ଅବସ୍ଥାନ କରାଇଲେ । ଏହାଙ୍କ ସେବାରେ ଯେଉଁ ସେବକମାନେ ନିଯୁକ୍ତ ଥିଲେ, ସେମାନେ ଯାଇ ଗାଲମାଧବଙ୍କ ନିକଟରେ ପ୍ରୋକ୍ତ ଘଟନା ନିବେଦନ କଲେ । ଗାଲମାଧବଙ୍କ ରାଜଧାନୀ ସେ ସମୟରେ ବିରଜା-ମଣ୍ଡଳରେ ( ଯାଜପୁର ) ଥିଲା । ସେ ଏ ବିଷୟ ଶୁଣିବାମାତ୍ରେକ ସସୈନ୍ୟ ଯୁଦ୍ଧାର୍ଥ ଉପସ୍ଥିତ ହେଲେ ଏବଂ ଦେଖିଲେ ଯେ ନାରଦ ମହର୍ଷି, ଦେବଗଣ ଏବଂ ଇନ୍ଦ୍ରଦ୍ୟୁମ୍ନ ଏମାନେ ଉପସ୍ଥିତ ଅଛନ୍ତି; ଏହା ଦେଖି ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟାନ୍ୱିତ ହେଲେ । ପରେ ନାରଦ ପ୍ରଭୃତଙ୍କ ନିକଟରେ ଉପସ୍ଥିତ ହୋଇ ସବିଶେଷ ବିବରଣ ଜାଣିବା ନିମନ୍ତେ ସେମାନଙ୍କୁ ପ୍ରଶ୍ନ କଲେ । ନାରଦ ଯଥାଯୋଗ୍ୟ ଘଟନା ପ୍ରକାଶ କଲେ । ଅନନ୍ତର ଗାଲମାଧବ ସେମାନଙ୍କୁ ଏବଂ ଇନ୍ଦ୍ରଦ୍ୟୁମ୍ନଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି ଉକ୍ତ ରାଜାଙ୍କର ଅନୁବର୍ତ୍ତୀ ହୋଇ ସମସ୍ତ କାର୍ଯ୍ୟ ସମ୍ପାଦନରେ ଯୋଗ ଦେଲେ । ନାରଦଙ୍କ ଆଦେଶାନୁଯାୟୀ ଭୂଗ୍ର-

ମଣ୍ଡପଶାଳା ସବୁ ପ୍ରସ୍ତୁତ ହେଲା । ନନ୍ଦିଘୋଷ, ତାଳଧ୍ୱଜ ଓ ପଦ୍ମଧ୍ୱଜ ନାମରେ ସ୍ୱର୍ଣ୍ଣାଦି ବହୁମୂଲ୍ୟ ରତ୍ନମୟ ରଥତ୍ରୟ ନିର୍ମିତ ହେଲା । ତହିଁ ଉପରେ ପ୍ରତିମାମାନଙ୍କୁ ବିଜେ କରାଇ ଯଜ୍ଞଭୂମିରୁ ପ୍ରାସାଦାଭିମୁଖରେ ଯାତ୍ରା କରାଇ ମନ୍ଦିରରେ ଉପସ୍ଥିତ କରାଇଲେ । ଯେଉଁ ଦିନ ଏ ରଥରେ ପ୍ରଭୁମାନେ ଆଗମନ କଲେ, ସେହି ଦିନରୁ ଉକ୍ତ ତିଥି ରଥଯାତ୍ରା ବା ଗୁଣ୍ଡିଚାଯାତ୍ରା ଦିବସ ବୋଲି ଖ୍ୟାତ ହୋଇଅଛି । ବ୍ରହ୍ମା ଏମଧ୍ୟରେ ଉପସ୍ଥିତ ହୋଇ ପ୍ରତିଷ୍ଠାବିଧି ଦେବତାମାନଙ୍କ ସହିତ ସମ୍ପୂର୍ଣ୍ଣାକୃତରେ ସମ୍ପାଦନ କଲେ । ତ୍ରୈକାଳିକ ଷୋଡ଼ଶୋପଚାରରେ ପୂଜାବିଧି ଏବଂ ଦ୍ୱାଦଶଯାତ୍ରା ଓ ଉପଯାତ୍ରା ବିଧିମାନ ଯଥାବିଧି କରିବା ନିମିତ୍ତ ଇନ୍ଦ୍ରଦ୍ୟୁମ୍ନଙ୍କୁ ଆଦେଶ ଦେଇ ଗଲେ । ଇନ୍ଦ୍ରଦ୍ୟୁମ୍ନ ତଦନୁସାରେ ଶ୍ରୀ ଜଗନ୍ନାଥଦେବଙ୍କର ସମସ୍ତ ପୂଜାବିଧି ଦୈନନ୍ଦିନ ଅନୁଷ୍ଠାନ କରୁଥିଲେ । ଇନ୍ଦ୍ରଦ୍ୟୁମ୍ନ ଭଗବାନଙ୍କ ସେବାରେ ସ୍ୱୟଂ ଏବଂ ବିଶ୍ୱାବସୁବଂଶୀୟ ବର୍ତ୍ତମାନ ଦୟିତ (ଅର୍ଥାତ୍ ଭଗବାନଙ୍କର ପ୍ରିୟ ବୋଲି କଥିତ) ଏବଂ ବିଦ୍ୟାପତିର ବଂଶଧରମାନେ (ବର୍ତ୍ତମାନ ପତି, ମହାପାତ୍ର ଉପାଧିରେ ଭୂଷିତ) ଏମାନେ ନିଯୁକ୍ତ ଥିଲେ । ସେହି ରୀତି ଅଦ୍ୟାବଧି ପ୍ରଚଳିତ ହୋଇ ଆସୁଅଛି । ଅନ୍ନ ପ୍ରସାଦ ସମ୍ବନ୍ଧରେ ଜାତିଭେଦ ନ ରଖି ନିର୍ବିଚାରରେ ସେବା କରିବା ନିମିତ୍ତ ଭଗବାନଙ୍କର ଆଦେଶ ଏ ଗ୍ରନ୍ଥରେ ଲିଖିତ ହୋଇଅଛି । ଏସମ୍ବନ୍ଧରେ ପୌରାଣିକ କଥା କ୍ରମରେ ବିବୃତ ହେବ । ପରେ ପରେ ଆଜି ପର୍ଯ୍ୟନ୍ତ ଯେ ଯେ ଘଟଣା ଘଟିଅଛି, ତାହା ଲେଖା ଯିବ । ମୂଳଭୂତ ପୌରାଣିକ ବିଷୟ ସଂକ୍ଷେପତଃ ଯାହା ବର୍ଣ୍ଣିତ ହେଲା, ବୋଧ ହୁଏ ତାହା କତିପୟ ଶିକ୍ଷିତ ବ୍ୟକ୍ତିମାନଙ୍କ ସମକ୍ଷରେ କପୋଳକଳ୍ପିତ ଉପନ୍ୟାସ ତୁଲ୍ୟ ପ୍ରତୀୟମାନ ହେବ । କାରଣ ଏକ ଗ୍ରନ୍ଥ ସହିତ ଗ୍ରନ୍ଥାନ୍ତର ତୁଳନାରେ ବର୍ଣ୍ଣିତ ବିଷୟମାନ ଅସଂଲଗ୍ନ ପରି ବୋଧ ହେଉଅଛି । ଯେପରି, ଇନ୍ଦ୍ରଦ୍ୟୁମ୍ନ ସତ୍ୟ ଯୁଗର ରାଜା; ଦ୍ୱାପର ଯୁଗର ଅବତାର କୃଷ୍ଣ, ବଳରାମ, ସୁଭଦ୍ରାଦି । ତେବେ ସେ ସମୟରେ କୃଷ୍ଣ ବଳରାମ ମୂର୍ତ୍ତି ନିର୍ମାଣ ସମ୍ଭବ ହୋଇ ନ ପାରେ । ଦ୍ୱିତୀୟତଃ ମହାଭାରତ ଓ ରାମାୟଣ ପ୍ରଭୃତିରେ ଏ ସ୍ଥାନର ବିଶେଷ ବିବରଣ କିଛି ଦୃଷ୍ଟ ହୁଏ ନାହିଁ ସତ୍ୟ, କିନ୍ତୁ ସୁବିଚାର କରିବାକୁ ଗଲେ ଏହି ସିଦ୍ଧାନ୍ତରେ ସହଜରେ ଉପନୀତ ହେବାକୁ ହୁଏ ଯେ ଦ୍ୱାପର ଯୁଗରେ ଯେ କେବଳ କୃଷ୍ଣ ବଳରାମ ଆଦିଙ୍କର ନାମ ଅନ୍ୟ ଯୁଗମାନଙ୍କରେ ନ ଥିଲା, ଏ ବିଶ୍ୱାସ ଅମୂଳକ । କାରଣ ରାମ କୃଷ୍ଣ ପ୍ରଭୃତି ନାମ କେବଳ ନରଦେହଧାରୀ କୃଷ୍ଣ ବଳରାମଙ୍କ ନାମ ନୁହେ, କୃଷ୍ଣାବତାର ପୂର୍ବରୁ ଏହା ଭଗବାନଙ୍କ ନାମାନ୍ତର । ଏହା ମଧ୍ୟ ମହାଭାରତାଦିରେ ଦୃଷ୍ଟ ହୁଏ । କୃଷ୍ଣାବତାର ପୂର୍ବ ତ୍ରେତା ଯୁଗର ତାରକ ମନ୍ତ୍ରରେ କୃଷ୍ଣ ଶବ୍ଦ ଦୃଷ୍ଟ ହୁଏ । ଆଧ୍ୟାତ୍ମିକ ଅର୍ଥ ଦେଖିବାକୁ ଗଲେ ଏ ଶବ୍ଦ ସବୁର ଅର୍ଥ ଭଗବାନଙ୍କ ଭିନ୍ନ ଅନ୍ୟ କିଛି ନୁହେ । ଅଥବା ମୂର୍ତ୍ତିତ୍ରୟ ଦାରୁ ରୂପରେ ପୂର୍ଣ୍ଣ ବ୍ରହ୍ମଙ୍କର ଆବିର୍ଭାବ । କୃଷ୍ଣ ପୂର୍ଣ୍ଣାବତାର, ତେଣୁ କୃଷ୍ଣାବତାରର ପରେ ଦାରୁତ୍ରୟଙ୍କର ନାମ କୃଷ୍ଣ, ବଳରାମ, ସୁଭଦ୍ରା ହୋଇଥିବାର ଅନୁମାନ କଲେ ଅସଙ୍ଗତ ହେବ ନାହିଁ । ମହାଭାରତରେ ଜଗନ୍ନାଥ ଦେବଙ୍କ ମନ୍ଦିରର ଉଲ୍ଲେଖ ନ ଥିଲେହେଁ ବୈତରଣୀ ନଦୀର ପ୍ରାଶସ୍ତ୍ୟ ଏବଂ ବିରଜାମଣ୍ଡଳର ବର୍ଣ୍ଣନା, ଇନ୍ଦ୍ରଦ୍ୟୁମ୍ନ ମହାରାଜଙ୍କର ସତ୍ୟ ଯୁଗରେ ଅସ୍ତିତ୍ୱ, ତାହାଙ୍କ କୃତ ଅଶ୍ୱମେଧ ଯଜ୍ଞରେ ଇନ୍ଦ୍ରଦ୍ୟୁମ୍ନ ସରର ଓ ଭିତ୍ତି ପ୍ରଭୃତିର ଉଲ୍ଲେଖ ହୋଇଥିବାର ଦେଖାଯାଏ । ଦ୍ୱିତୀୟ ପରିଶିଷ୍ଟରେ ଏହାର ପ୍ରମାଣ ମିଳିବ ।

କ୍ରମଶଃ

ଶ୍ରୀ ସଦାଶିବ କାବ୍ୟକଣ୍ଠ ।

## ମହର୍ଷି ।

( ଶ୍ରାଦ୍ଧ ବାସରରେ ପଠିତ । )

( ବ୍ରାହ୍ମସମାଜର କୁଳପତି ତପୋନିଷ୍ଠ ବ୍ରହ୍ମପରାୟଣ ଶ୍ରୀମନ୍ମହର୍ଷି ଦେବେନ୍ଦ୍ରନାଥ ଠାକୁର ଗତ ଜାନୁଆରୀ ମାସ ୧୯ ତାରିଖ ଅପରାହ୍ଣରେ ଇହଲୀଳା ସାଙ୍ଗ କରି ଅନନ୍ତଧାମକୁ ଚାଲି ଯାଇ ଅଛନ୍ତି । ଯେଉଁ ମହାତ୍ମା ପ୍ରାଚୀନ ଓ ନବୀନ ଭାରତର ସନ୍ଧିସ୍ଥଳରେ ଦଣ୍ଡାୟମାନ ହୋଇ ଉଭୟର ସାରଭାଗ ସ୍ୱୀୟ ଜୀବନରେ ସମ୍ୟକ୍‌ରୂପେ ଗ୍ରହଣ କରିବାକୁ ସମର୍ଥ ହୋଇଥିଲେ, ଯାହାଙ୍କ ଜୀବନରେ ଭାରତର ସର୍ବଶ୍ରେଷ୍ଠ ଗୌରବସ୍ୱରୂପ ଧର୍ମପ୍ରାଣତା ଓ ଋଷିତ୍ୱର ମହୋଚ୍ଚ ଆଦର୍ଶ ଉଜ୍ଜ୍ୱଳରୂପେ ପ୍ରତିଫଳିତ ହୋଇଥିଲା, ବ୍ରହ୍ମଧ୍ୟାନ, ବ୍ରହ୍ମଜ୍ଞାନ, ବ୍ରହ୍ମସାଧନ ଯାହାଙ୍କ ଜୀବନର ନିତ୍ୟ ନୈମିତ୍ତିକ ଅନୁଷ୍ଠାନ ହୋଇଥିଲା, ଯେ ସ୍ୱୀୟ ମହନୀୟ ଚରିତ୍ରବଳରେ ସକଳ ଶ୍ରେଣୀର ଲୋକ-ମଣ୍ଡଳୀର ଭକ୍ତି ଓ ଶ୍ରଦ୍ଧା ଆକର୍ଷଣ କରିଥିଲେ, ଅତୁଳ ଐଶ୍ୱର୍ଯ୍ୟର ଅଧିକାରୀ ହୋଇ ମଧ୍ୟ ଯେ ଭୋଗବିଳାସର ମୋହରୁ ଅପସୃତ ହୋଇ ନିତ୍ୟାନନ୍ଦ-ସୁଧାପାନରେ ଜୀବନ ସାର୍ଥକ କରିଥିଲେ, ଯାହାଙ୍କ ପବିତ୍ର ଜୀବନଦ୍ୱାରା ଯଥାର୍ଥରେ "ମାନବକୁଳ ପବିତ୍ର ଏବଂ ଭାରତ ଜନନୀ କୃତାର୍ଥା" ହୋଇଅଛନ୍ତି, ଇହଧାମରୁ ସେହି ମହାପୁରୁଷଙ୍କ ତିରୋଧାନ ଭାରତର ଜାତୀୟ ଜୀବନରେ ଗୋଟିଏ ବିଶିଷ୍ଟ ଓ ସ୍ମରଣୀୟ ଘଟଣା । ଆଜି ବିଶେଷଭାବରେ ନାନା ଶ୍ରେଣୀର ଲୋକମାନଙ୍କ ଦୃଷ୍ଟି ଏହି ଉନ୍ନତ ଆଦର୍ଶ ଜୀବନ ପ୍ରତି ଆକୃଷ୍ଟ ହୋଇଅଛି—ସମସ୍ତେ ତାଙ୍କ ପ୍ରତି ହୃଦୟର ଶ୍ରଦ୍ଧା ଭକ୍ତି ଅର୍ପଣ କରୁଅଛନ୍ତି । ଦୀନ ଭାରତରେ ସେହି ଆଦର୍ଶ ସୁପ୍ରତିଷ୍ଠିତ ହେଉ, ବିଧାତାଙ୍କ ଶ୍ରୀଚରଣରେ ଏହି ଭିକ୍ଷା । ସକଳ ସ୍ଥାନର ବ୍ରାହ୍ମମଣ୍ଡଳୀ ତାଙ୍କର ଶ୍ରାଦ୍ଧକ୍ରିୟା ଯଥାବିଧି ସମାଧାନ କରିଅଛନ୍ତି । କଟକର ବ୍ରାହ୍ମମଣ୍ଡଳୀ ଯଥାବିଧି ମୃତାଶୌଚ ପାଳନ କରି ଜାନୁଆରୀ ୨୯ ତାରିଖ ରବିବାର ଶ୍ରାଦ୍ଧ ସମାଧାନ କରିଥିଲେ । ସ୍ଥାନୀୟ ବ୍ରାହ୍ମସମାଜର ଆଚାର୍ଯ୍ୟ ଭକ୍ତିଭାଜନ ଶ୍ରୀଯୁକ୍ତ ମଧୁସୂଦନ ରାଓ ମହୋଦୟ ଉପାସନା କାର୍ଯ୍ୟ ନିର୍ବାହ କରିଥିଲେ । ଉକ୍ତ ଦିବସ ଅପରାହ୍ଣରେ ଦରିଦ୍ରମାନଙ୍କୁ ପଇସା ଦିଆ ଯାଇଥିଲା । ଶ୍ରାଦ୍ଧ ବାସରରେ ପଠିତ ପ୍ରବନ୍ଧଟି ନିମ୍ନରେ ପ୍ରକାଶିତ ହେଲା । ସ୍ଥାନ ଏବଂ ଅବସର ଅଭାବରୁ ଆମ୍ଭେମାନେ ମହର୍ଷିଙ୍କ ଅମୂଲ୍ୟ ଜୀବନ ସମ୍ବନ୍ଧରେ ବର୍ତ୍ତମାନ କିଛି କହିବାକୁ ଅକ୍ଷମ । ଏଥିପାଇଁ ପାଠକମଣ୍ଡଳୀଙ୍କ ନିକଟରେ କ୍ଷମା ଭିକ୍ଷା କରୁଅଛୁଁ । ସଃ )

୧୮୩୦ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସ ୧୫ ତାରିଖରେ ରାମମୋହନଙ୍କୁ ବକ୍ଷରେ ଧାରଣ କରି "ଆଲବିୟନ" ଜାହାଜ ଯେତେବେଳେ ଅକୂଳ ସାଗରରେ ଭାସିଲା, ସେତେବେଳେ କି କେହି ମନେ କରି ପାରିଥିଲେ ଯେ ରାମମୋହନଙ୍କ ନବ-ରୋପିତ ଧର୍ମବୃକ୍ଷରେ ଜଳ ସେଚନ କରିବାପାଇଁ ଜଣେ "ମନୁଷ୍ୟ" ପଶ୍ଚାତରେ ରହିଗଲେ ? ନା, କାହାର ତାହା ମନେ କରିବାର ସୁଯୋଗ ହୋଇ ନ ଥିଲା । ସେଥିପାଇଁ "ଧର୍ମସଭା"ର ନେତାଗଣ କାର୍ଯ୍ୟସିଦ୍ଧି ମନେ କରି ନିଶ୍ଚିନ୍ତରେ ନିଦ୍ରାମଗ୍ନ ହେଲେ । ସେମାନେ ମନେ କରିଥିଲେ ଯେ ନିଆଁ ଲିଭିଅଛି । କିନ୍ତୁ ନିଆଁ ଲିଭି ନ ଥିଲା, ଏ ନିଆଁ ଲିଭେ ନାହିଁ । ସେହି ହେତୁରୁ ସମସ୍ତେ ଯେତେବେଳେ ନିଶ୍ଚିନ୍ତ ମନରେ ଗଭୀର ନିଦ୍ରାମଗ୍ନ, ଘୋର ଗର୍ଜନରେ ଅଗ୍ନି ଜଳି ଉଠିଲା । ଭୟ-ଚକିତ କଣ୍ଠରେ ସମସ୍ତେ ଚିତ୍କାର କରି ଉଠିଲେ, —"ନିଆଁ", ରାମମଣି ଠାକୁରଙ୍କ ଘରେ ନିଆଁ ! ଦ୍ୱାରକାନାଥ ଠାକୁରଙ୍କ ପୁତ୍ର ଦେବେନ୍ଦ୍ରନାଥ ହିନ୍ଦୁ ମତରେ ପିତୃଶ୍ରାଦ୍ଧ ସମ୍ପନ୍ନ କରିବେ ନାହିଁ । ନିଆଁ ଲିଭାଇବା ପାଇଁ ଚାରିଆଡ଼ୁ ସମସ୍ତେ ଧାଇଁ

ଆସିଲେ, କିନ୍ତୁ କାହିଁ ନାଭିଙ୍କାର କୁହେ । ଅନାର ଦେଖ, କାହିଁ ରାମମଣି ଠାକୁରଙ୍କ ଘରୁ ବାହାର ରାମକମଲ ସେନଙ୍କ ଘରେ ଲାଗିଲା । କାହିଁ ଦଶ ହାତ ମାଡ଼ି ଗଲା । ହା ମାନବ ! ତୁମ୍ଭେ କି ଭ୍ରାନ୍ତ ! ଯେ ରାମମୋହନଙ୍କୁ ପ୍ରେରଣ କରିଥିଲେ, ପ୍ରୟୋଜନ ହେଲେ ସେ କି ଆଉ ଏକ ରାମମୋହନ ଗଢ଼ି ପାରିବେ ନାହିଁ ? ମନ୍ତ୍ରୀ ଦେଖ, ରାମମୋହନଙ୍କ କାର୍ଯ୍ୟ ପୂର୍ତ୍ତି କରିବା ଲାଗି ବିଧାତା ଅଲକ୍ଷିତରେ ଦେବେନ୍ଦ୍ରନାଥଙ୍କୁ ଆନୟନ କଲେ । ରାମମୋହନ ଯେତେବେଳେ ବିଲାତ ଯାତ୍ରା କଲେ, ଦେବେନ୍ଦ୍ରନାଥ ସେତେବେଳେ ତ୍ରୟୋଦଶବର୍ଷୀୟ ବାଳକ । ରାମମୋହନଙ୍କୁ ବୁଝିବାର କ୍ଷମତା ସେତେବେଳେ ସୁଦ୍ଧା ତାହାଙ୍କର ହୋଇ ନାହିଁ । ତଥାପି ସେ ରାମମୋହନଙ୍କର "ସହଚର" ଥିଲେ ! ରାମମୋହନ ଦେବେନ୍ଦ୍ରନାଥଙ୍କ ଭିତରେ କଣ ଦେଖିଥିଲେ ଯାହା ସହାଶେ ତାହାଙ୍କ କର ମର୍ଦ୍ଦନ ନ କରି ବିଲାତ ଯାତ୍ରା କରିବାକୁ କ୍ଷମ ହେଲେ ନାହିଁ ! ଦେବେନ୍ଦ୍ରନାଥ ସେତେବେଳେ ସେ କରମର୍ଦ୍ଦନର ଅର୍ଥ ବୁଝି ପାରି ନ ଥିଲେ । କିନ୍ତୁ ଦେବେନ୍ଦ୍ରନାଥ ଯାହା ବୁଝି ପାରି ନ ଥିଲେ, "ମହର୍ଷି" ତାହା ବୁଝି ପାରିଲେ । ବୁଝିବାର ପ୍ରୟୋଜନ ବା କଣ ? ଯାହାଙ୍କର କର୍ମ, ସେ କରିବେ । ମନୁଷ୍ୟ କେବଳ ଅଦୃଷ୍ଟ ହାତ ସହାଶେ ଟିକିଏ କଣଭିତ୍ର ହୁଏ ମାତ୍ର ।

ରାମମଣି ଠାକୁରଙ୍କ ପୌତ୍ର ଦେବେନ୍ଦ୍ରନାଥ ହକେ ପିତାମହଙ୍କ ପ୍ରତିନିଧିରୂପେ ରାମମୋହନଙ୍କୁ ଦୁର୍ଗାପୂଜାପାଇଁ ନିମନ୍ତ୍ରଣ କରିବାକୁ ଯାଇଥିଲେ । ରାମମୋହନ ନିମନ୍ତ୍ରଣ ପାଇ ସହାସ୍ୟମୁଖରେ କହିଲେ "ମତେ ପୂଜାରେ ନିମନ୍ତ୍ରଣ ?" ମହର୍ଷି କହିଅଛନ୍ତି, ଏହି କଥା ହେଉଛି ଗୁରୁମନ୍ତ୍ରପରି ତାହାଙ୍କୁ ଆଜୀବନ ପରିଚାଳିତ କରିଅଛି । ଏହିପରି ପରୋକ୍ଷଭାବରେ ରାମମୋହନଙ୍କ ପ୍ରଭାବ ଦେବେନ୍ଦ୍ରନାଥଙ୍କ ଉପରେ କାର୍ଯ୍ୟ କରିଥିଲେ ସୁଦ୍ଧା ସେ ରାମମୋହନଙ୍କ ନିକଟରୁ ଶିକ୍ଷା ଗ୍ରହଣ କରି ନ ଥିଲେ । ଗୁରୁ ଯେପରି ଆପଣାର ସାଧନ-ଲବ୍ଧ ଧନ ଶିଷ୍ୟଙ୍କୁ ପ୍ରଦାନ କରନ୍ତି, ଦେବେନ୍ଦ୍ରନାଥ ସେହିପରି ଭାବରେ ରାମମୋହନଙ୍କ ନିକଟରୁ ବ୍ରାହ୍ମଧର୍ମ ପାଇ ନ ଥିଲେ । ସେହିପରି ପୁଣି ମହର୍ଷି ଯେଉଁବେଳେ ହିମାଳୟଗହ୍ୱରରେ ଧ୍ୟାନମଗ୍ନ, ସେତେବେଳେ କେଶବଚନ୍ଦ୍ର କଲିକତାରେ ଆପଣାର ପଥ ପ୍ରାପ୍ତ ହୋଇଥିଲେ । କର୍ମକ୍ଷେତ୍ରରେ କେଶବଚନ୍ଦ୍ର ଦେବେନ୍ଦ୍ରନାଥଙ୍କର, ଦେବେନ୍ଦ୍ରନାଥ ରାମମୋହନଙ୍କର ଅନୁବର୍ତ୍ତୀ ହେଲେ ସୁଦ୍ଧା, ବର୍ତ୍ତମାନ ବ୍ରାହ୍ମଧର୍ମ ବିଧାନରେ ଏହି ତିନି ପ୍ରଧାନ ପୁରୁଷଙ୍କର ପରସ୍ପରଙ୍କଠାରୁ ଏହି ବାହ୍ୟନିରପେକ୍ଷତା ଏବଂ ଏମାନଙ୍କର ଲକ୍ଷ୍ୟର ଏକତା ଏହାର ବିଧାନତ୍ୱର ସୁସ୍ପଷ୍ଟ ପ୍ରମାଣ । ଏହା ଅପେକ୍ଷା ଉଚ୍ଚତର ପ୍ରମାଣ ମିଳିବ କି ନାହିଁ, ସନ୍ଦେହର ସ୍ଥଳ ।

ଦେବେନ୍ଦ୍ରନାଥଙ୍କ କର୍ତ୍ତୃକ ରାମମୋହନଙ୍କ କାର୍ଯ୍ୟଭାର ଗ୍ରହଣ ମଧ୍ୟରେ କିଛି ଅଦ୍ଭୁତତ୍ୱ ଅଛି, ପୂର୍ବେ କହାଯାଇ ଅଛି, ରାମମୋହନ ଯେତେବେଳେ ଏ ଦେଶ ପରିତ୍ୟାଗ କଲେ, ସେତେବେଳେ ଦେବେନ୍ଦ୍ରନାଥଙ୍କ ବୟସ ଓ ଶିକ୍ଷା ନିଭୃତ୍ୟୁ ଏତେ ଅଳ୍ପ ଯେ ତହିଁରେ ରାମମୋହନଙ୍କ କାର୍ଯ୍ୟଭାର ଗ୍ରହଣ କରିବା ତାଙ୍କ ପକ୍ଷରେ ଏକାବେଳକେ ଅସମ୍ଭବ । ପ୍ରଥମ ଆଚାର୍ଯ୍ୟ ରାମଚନ୍ଦ୍ର ବିଦ୍ୟାବାଗୀଶ ଯେତେବେଳେ ଶ୍ମଶାନରେ ପ୍ରଦୀପ ଜାଳି ବସିଥିଲେ, ସେତେବେଳେ ବ୍ରାହ୍ମସମାଜର ବାହ୍ୟ ଆୟୋଜନ ଏପରି କିଛି ନ ଥିଲା, ଯହିଁରେ "ପ୍ରିନ୍ସ" ଦ୍ୱାରକାନାଥ ଠାକୁରଙ୍କ ଜ୍ୟେଷ୍ଠ ପୁତ୍ର ସେ ଆଡ଼କୁ ଆକୃଷ୍ଟ ହୋଇ ପାରନ୍ତି । ଅଥଚ ଅନ୍ତରାଳରୁ ଘଟନାଚକ୍ରକୁ କିଏ ଏପରି ଭାବରେ ନିୟମିତ କରୁଥିଲେ ଯେ ସେ ଅବର୍ତ୍ତନରେ ପଡ଼ି ସେ ନ ଆସି ରହି ପାରିଲେ ନାହିଁ । ଉପନିଷଦର "ଈଶା ବାସ୍ୟ ମିଦଂ ସର୍ବମ୍" ଇତ୍ୟାଦି ବଚନ ଶତ ଶତ ଲୋକ ପାଠ କରୁଅଛନ୍ତି, କିନ୍ତୁ କେତେ ଜଣ

ବିଷୟବାସନା ପରିତ୍ୟାଗ କରି ବ୍ରହ୍ମନିଷ୍ଠ ହୋଇ ଅଛନ୍ତି ? ଅଥଚ ଏହି ଶ୍ରୁତି ଦେବେନ୍ଦ୍ରନାଥଙ୍କୁ ସଂସାରରୁ ଦୂରକୁ ନେଇ ଗଲା । ଆହୁରି ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଦେବେନ୍ଦ୍ରନାଥ ସଂସ୍କୃତ ଜାଣି ନ ଥିଲେ । କେଉଁଠାରୁ ଉପନିଷଦ୍‌ର ଖଣ୍ଡେ ପତ୍ର ଉଡ଼ି ଆସି ତାହାଙ୍କ ଗୋଡ଼ରେ ବାଜିଲା, ସେ ଅକ୍ଷର ପଢ଼ି ପାରିଲେ ନାହିଁ । ଭାଗବତଖଣ୍ଡିକ ପଢେଇ ଦେଲେ ନାହିଁ, ପଣ୍ଡିତଙ୍କଦ୍ୱାରା ଅର୍ଥ ବୁଝି ନେଲେ । ଯେ ଅର୍ଥ କଲେ, ସେ ଯେଉଁଠାରେ ଥିଲେ ସେହିଠାରେ ରହିଲେ । ଦେବେନ୍ଦ୍ରନାଥଙ୍କ ହୃଦୟରେ ବ୍ରହ୍ମାଗ୍ନି ଜଳି ଉଠିଲା । ଏ ଅଗ୍ନି କେଉଁଠାରେ ଥିଲା ? ଉପନିଷଦର ପତ୍ରରେ—ନା, ପଣ୍ଡିତଙ୍କ ବ୍ୟାଖ୍ୟାରେ ? ସେସବୁ ସ୍ଥାନରେ ନୁହେ । ବ୍ରହ୍ମାଗ୍ନି ବ୍ରହ୍ମଙ୍କଠାରେ ଥିଲା—ଦେବେନ୍ଦ୍ରନାଥଙ୍କଠାରେ ପ୍ରକାଶ ପାଇଲା । ଯେ ରାମମୋହନଙ୍କୁ ଉନ୍ମତ୍ତ କରିଥିଲେ, ସେ ଦେବେନ୍ଦ୍ରନାଥଙ୍କୁ ଜାଗ୍ରତ କଲେ । ଭଗବାନ୍ ଯାହାଙ୍କୁ ଡାକନ୍ତି, ମନୁଷ୍ୟ କି ତାହାଙ୍କୁ ବାନ୍ଧି ରଖି ପାରେ? ଦେବେନ୍ଦ୍ରନାଥଙ୍କୁ ବାନ୍ଧିବାର କେତେ ଆୟୋଜନ ହୋଇ ନ ଥିଲା; ଦ୍ୱାରକାନାଥଙ୍କ ଅଗାଧ ସମ୍ପତ୍ତି ଯେତେବେଳେ ଋଣଜାଲରେ ଜଡ଼ିତ ହୋଇ ପଡ଼ିଲା, ସେତେବେଳେ ସେ ଆପଣାର ବ୍ୟବସାୟବୁଦ୍ଧି ଖଟାଇ ପରିବାରକୁ ଋଣଦାୟରୁ ଅବ୍ୟାହତି ଦେବା ପାଇଁ ଅତି ଚତୁର ଉପାୟ ଉଦ୍ଭାବନ କରି ରଖିଲେ । ପୁନ ଇଚ୍ଛା କରିଥିଲେ ଋଣଦାୟରୁ ମୁକ୍ତ ହୋଇ ପାରି ଥାନ୍ତେ । କିନ୍ତୁ ଏହାହିଁ ଦେବେନ୍ଦ୍ରନାଥଙ୍କ ଧର୍ମଜୀବନରେ ସୁପ୍ରତିଷ୍ଠିତ କରିବା ପାଇଁ ଏକ ମହାଯନ୍ତ୍ରରୂପେ ବ୍ୟବହୃତ ହୋଇଥିଲା । ଏହି ସଂଗ୍ରାମରେ ଜୟୀ ହୋଇ ଦେବେନ୍ଦ୍ରନାଥ ନିଜ ହୃଦୟରେ ଯେଉଁ ବଳ ଲାଭ କରିଥିଲେ—ଜୀବନର ପ୍ରାରମ୍ଭରେ ତାହାଙ୍କର ଇଚ୍ଛାଶକ୍ତି ଯେପରି ଦୃଢ଼ ହେଲା, ତାହାହିଁ ତାହାଙ୍କର ଭବିଷ୍ୟତ୍ ଜୀବନର ମହତ୍ତ୍ୱର ସୂଚନା କରିଥିଲା । ଉଚ୍ଛ୍ୱାସ ଧରି ବର୍ଣ୍ଣନ କଲେ ଦେବେନ୍ଦ୍ରନାଥଙ୍କ ଏହି ସଂଗ୍ରାମଜୟ କେବଳ ବୁଦ୍ଧଙ୍କ "ମାରବିଜୟ" ସଙ୍ଗେ ତୁଳନୀୟ । ଅନ୍ୟ ଅପେକ୍ଷା, ବର୍ତ୍ତମାନଯୁଗ ପକ୍ଷରେ ଏହାର ଶିକ୍ଷା ଅତୁଳନୀୟ । ଯେଉଁ ସମୟରେ ବାହ୍ୟ ଭୋଗବିଳାସପାଇଁ ଜନମଣ୍ଡଳୀ ଉନ୍ମତ୍ତ ହୋଇ ବୁଲୁଥିଲେ, ଦେବେନ୍ଦ୍ରନାଥ ପଦାଘାତରେ ସମସ୍ତ ବିଳାସ ଦୂରରେ ନିକ୍ଷେପ କରି ସନ୍ନ୍ୟାସୀ ବେଶରେ ଛିଡ଼ା ହେଲେ । ତାଙ୍କ ଜୀବନରେ ପ୍ରମାଣିତ ହେଲା, ଧର୍ମଲାଗି ଯେ ସାଂସାରିକ ଭୋଗ ବିଳାସକୁ ଦୂରରେ ପରିହାର କରନ୍ତି, ସଂସାର ଦାସ ହୋଇ ତାଙ୍କର ଅନୁବର୍ତ୍ତନ କରେ । ଦେବେନ୍ଦ୍ରନାଥ ଧର୍ମସକାଶେ ସଂସାର ଛାଡ଼ି ଫକୀର ହେଲେ । ସଂସାର କରଯୋଡ଼ି ତାହାର ସମସ୍ତ ଭୋଗବିଳାସ ତାଙ୍କ ଚରଣରେ ଅପେ ପ୍ରଦାନ କଲା । ଏହି ଭୋଗବିଳାସର ଯୁଗରେ ଏହା ଅପେକ୍ଷା ଉଚ୍ଚତର ଶିକ୍ଷା ଆଉ କଣ ହୋଇ ପାରେ ?

ଆମ୍ଭମାନଙ୍କର ଜାତୀୟ ମନରେ ମହର୍ଷିଙ୍କ ସହିତ ଚିରଦିନ ଅରଣ୍ୟବାସ ଜଡ଼ିତ ରହିଅଛି । ଯେ ଋଷି, ବିଶେଷତଃ ଯେ ଧର୍ମଋଷି—ଅଧ୍ୟାତ୍ମ ଜଗତରେ ଋଷି—ସେ ନିଶ୍ଚୟ ଅରଣ୍ୟଗୃହ ପର୍ଣ୍ଣକୁଟୀରବାସୀ ହେବେ । ପର୍ଣ୍ଣକୁଟୀର ଛଡ଼ା ଅନ୍ୟସ୍ଥାନ ଯେ ଋଷିଙ୍କର ଆଶ୍ରମ ହୋଇ ପାରେ, ଏ ବିଶ୍ୱାସ ଆମ୍ଭମାନଙ୍କର ଏହାବେଳକେ ଲୋପ ପାଇଥିଲା । ପରିଶେଷରେ ଆମ୍ଭମାନଙ୍କ ବୁଦ୍ଧି ଏପରି ବିକୃତ ହୋଇ ଉଠିଥିଲା ଯେ ଆମ୍ଭେମାନେ ଋଷିଙ୍କ ବାସସ୍ଥାନକୁ ଆଶ୍ରମ ଜ୍ଞାନ ନ କରି ଆଶ୍ରମବାସିଙ୍କୁ ଋଷି ବୋଲି ମନେ କରୁଥିଲୁଁ । କିନ୍ତୁ ଭାରତର ଶେଷ ଋଷି—ଆମ୍ଭମାନଙ୍କ ମହର୍ଷି—ଆମ୍ଭମାନଙ୍କର ଏହି ଭ୍ରାନ୍ତି ଅପନୋଦନ କରିଅଛନ୍ତି । ସେ ପ୍ରାଚୀନ ଅରଣ୍ୟବାସିର ପର୍ଣ୍ଣକୁଟୀର ଓ ଆଧୁନିକ ନଗରବାସିର ରାଜପ୍ରାସାଦ—ପ୍ରାଚୀନ ଋଷିର ଆଶ୍ରମ ଓ

ଅଧୁନାତ ବିଳାସିର ବାସଭବନ ଏହି ଦୁଇର ଏକତ୍ର ସମ୍ପାଦନ କରି ଯାଇଅଛନ୍ତି । ସେ ଦେଖାଇଅଛନ୍ତି, ହିମାଳୟ ଗହ୍ୱରରେ ଋଷିମାନେ ଯାହାଙ୍କୁ ଧ୍ୟାନରେ ଧରୁଥିଲେ, ପ୍ରାସାଦବାସିର ଧ୍ୟାନ ମଧ୍ୟ ତାଙ୍କର ଉପେକ୍ଷଣୀୟ ନୁହେ । ଯେଉଁମାନେ ମହର୍ଷିଙ୍କର ମୃତାଶୌଚ ଗ୍ରହଣ କରିଅଛନ୍ତି, ସେମାନେ ଯଦି ମହର୍ଷିଙ୍କ ଜୀବନର ଏହି ଶିକ୍ଷା ହୃଦୟଙ୍ଗମ କରିବାକୁ ଅକ୍ଷମ ହୁଅନ୍ତି, ତେବେ ମହର୍ଷିଙ୍କ ସ୍ୱର୍ଗାରୋହଣଜନିତ ଅନୁଶୋଚନା ନିତାନ୍ତ ବାହ୍ୟାଡମ୍ବର ବୋଲି ବିବେଚିତ ହେବ । ମହର୍ଷି ଧ୍ୟାନମଗ୍ନ ଯୋଗୀ ଥିଲେ । ସେ ଅନନ୍ତରେ ବୁଡି ଯାଇଥିଲେ । ସେ ଅନନ୍ତରେ ବୁଡିଥିଲେ ବୋଲି ସାନ୍ତକୁ କଦାପି ଅବଜ୍ଞା କରି ନାହାନ୍ତି । ଆମ୍ଭମାନଙ୍କ ଦେଶରେ ଗୋଟିଏ ଭ୍ରାନ୍ତ ଧାରଣା ବଂଶପରମ୍ପରାକ୍ରମେ ଚାଲି ଆସୁଅଛି ଯେ ବ୍ରହ୍ମଜ୍ଞାନୀମାନେ ବାହ୍ୟଜ୍ଞାନଶୂନ୍ୟ ହେବେ, ବିଷ୍ଣୁଚିନ୍ତନରେ ସେମାନଙ୍କର ସମଜ୍ଞାନ ହେବ । ମହର୍ଷିଙ୍କ ଜୀବନ ଏହି ଭ୍ରାନ୍ତ ଧାରଣାର ଜ୍ୱଳନ୍ତ ପ୍ରତିବାଦ । କାଳୀକୃଷ୍ଣଠାକୁର ବିଷୟକର୍ମରେ ଯାହାଙ୍କର ବିଚାରବୁଦ୍ଧିର ଶରଣାପନ୍ନ ହେଉଥିଲେ, ବାତୁଳ ଛଡ଼ା ଆଉ କେହି ତାହାଙ୍କୁ ବାହ୍ୟଜ୍ଞାନଶୂନ୍ୟ ବୋଲିବାକୁ ସାହସୀ ହେବେ ନାହିଁ । କିନ୍ତୁ ମହର୍ଷିଙ୍କ ବ୍ରହ୍ମଜ୍ଞାନ ଓ ବ୍ରହ୍ମଧାରଣାରେ ସନ୍ଦେହ କରିବାର ଅଧିକାର ବାତୁଳର ମଧ୍ୟ ନାହିଁ । ଏହା ତ ସ୍ୱାଭାବିକ । ଯେ "ସର୍ବଜ୍ଞ ସର୍ବବିଦ୍" ବ୍ରହ୍ମଙ୍କୁ ହୃଦୟରେ ଧାରଣ କରିଥିଲେ ଏବଂ ଯେ ସର୍ବଜ୍ଞ ସର୍ବବିଦ୍ ବ୍ରହ୍ମଙ୍କ ନିର ସହବାସ ଲାଭ କରିଥିଲେ, ତାଙ୍କ ନିକଟରେ ଯେ ବ୍ୟଷ୍ଟି ଓ ସମଷ୍ଟି ଉଭୟର ଜ୍ଞାନ ଉଜ୍ଜ୍ୱଳ ହେବ ଏଥିରେ ବିସ୍ମୟର ବିଷୟ କଣ ଅଛି ? କିନ୍ତୁ ମାନବ ବିକୃତ ବୁଦ୍ଧିର ବଶବର୍ତ୍ତୀ ହୋଇ ଯାହା ଅତି ସ୍ୱାଭାବିକ ତାହାକୁ ଅସ୍ୱାଭାବିକ ବୋଲି ମନେ କରେ । ମହର୍ଷି ସାଧନବଳରେ ଧର୍ମ ଓ ସଂସାରକୁ ଏକ କରି ଦେଇ ଯାଇ ଅଛନ୍ତି । ଯେଉଁ ମହର୍ଷି ଧ୍ୟାନସ୍ଥ ଅନନ୍ତ ବ୍ରହ୍ମସତ୍ତାରେ ଆତ୍ମବିସ୍ମୃତ; ଯେଉଁ ମହର୍ଷିପଦ୍ମଗନ୍ଧରେ ବ୍ରହ୍ମଗାତ୍ରଗନ୍ଧ ଅନୁଭବ କରି ଉନ୍ମତ୍ତ—ସେହି ମହର୍ଷି ସ୍ୱଗୃହର କ୍ଷୁଦ୍ର କକ୍ଷ ବା ଗବାକ୍ଷର କାଚଖଣ୍ଡର ଅନୁସନ୍ଧାନରେ ଯତ୍ନପର । ଏହି ଯେ ଅନନ୍ତ ମଧ୍ୟରେ ବିଶେଷକୁ ବୁଡ଼ାଇ ନ ଦେଇ ତାହା ପାଇଁ ସ୍ଥାନ ନିର୍ଦ୍ଦେଶ କରିବା, ଏହି ଯେ ଅନନ୍ତ ଅସୀମ ମଧ୍ୟରେ ସାନ୍ତ ସସୀମର ସ୍ଥାନ ନିର୍ଦ୍ଦେଶ—ଏହା ବର୍ତ୍ତମାନ ବ୍ରହ୍ମଯୋଗୀ ନିକଟରେ ମହର୍ଷିଙ୍କ ସାଧନଲବ୍ଧ ଅମୂଲ୍ୟ ରତ୍ନ ।

ମୋହର ବାତୁଳତାରେ ଶ୍ରାଦ୍ଧ ବାସରର ଗାମ୍ଭୀର୍ଯ୍ୟ ନଷ୍ଟ ହେବାର ଆଶଙ୍କାରେ ଆଉ ଗୋଟିଏ ମାତ୍ର କଥା କହି ମୁଁ ଆଜି ଶେଷ କରିବି । ମହର୍ଷି ଯୋଗୀ ଥିଲେ, ମହର୍ଷି ଭକ୍ତ ଥିଲେ । ଯେଉଁମାନେ ସୌଭାଗ୍ୟକ୍ରମେ ଯୋଗିଙ୍କୁ ଭକ୍ତିସହକାରେ ବ୍ରହ୍ମନାମ ଗାନ କରିବାକୁ ଶୁଣିଅଛନ୍ତି ସେମାନେ ଜାଣନ୍ତି ମହର୍ଷି ନାମଗାନରେ କିପରି ଉନ୍ମତ୍ତ ହୋଇ ଉଠୁଥିଲେ । କିନ୍ତୁ ତର୍କଯୁକ୍ତିରେ ଯାହା ପାଇ ନାହିଁ, ମହର୍ଷିଙ୍କ ମୁଖରେ ନାମଗାନ ଶୁଣି ତାହା ଦିନେ ପାଇଥିଲି । ବାହ୍ୟେନ୍ଦ୍ରିୟଜ୍ଞାନଶୂନ୍ୟ, ଜୀବନ-ମୃତ୍ୟୁର ସନ୍ଧିସ୍ଥଳରେ ଦଣ୍ଡାୟମାନ ଅଶୀତିପର ବୃଦ୍ଧ ମହର୍ଷି ଯେଉଁ ଦିନ ସିଂହଗର୍ଜ୍ଜନରେ "ଗାଓ ରେ ଆନନ୍ଦେ ସବେ ଜୟ ବ୍ରହ୍ମ ଜୟ" ନିନାଦରେ ଆକାଶକୁ ନିନାଦିତ କରିଥିଲେ, ସେଦିନ ପରକାଳରେ ବିଶ୍ୱାସ ଆପେ ଆପଣାକୁ ପ୍ରକାଶ କରିଥିଲା । ବିସ୍ମୟସ୍ତମ୍ଭିତଚିତ୍ତରେ ମହର୍ଷିଙ୍କ ସମ୍ମୁଖରେ ଛିଡ଼ା ହୋଇ ଆନତ ମସ୍ତକରେ ଭାବୁଥିଲି "ଅସମ୍ଭବ ସମ୍ଭବେ ଭବେ ବ୍ରହ୍ମକୃପାବଳେ" । ଲୀଳା ସାଙ୍ଗ କରି ମହର୍ଷି ଚାଲି ଯାଇଅଛନ୍ତି । ଯେଉଁ ମୂର୍ତ୍ତି ଦେଖି ଦିନେ ମୂର୍ଚ୍ଛିତ ହୋଇଥିଲି, ସେ ମୂର୍ତ୍ତି ଆଉ ଦେଖିବି ନାହିଁ । କିନ୍ତୁ ମହର୍ଷି କି ଆମ୍ଭମାନଙ୍କୁ ଛାଡି ଚାଲି ଯାଇଅଛନ୍ତି ? ଯଦି ତାହା ହୁଏ, ତେବେ ଏହି କେତେ ଦିନ ହେଲା ଆମ୍ଭେମାନେ କଣ ଆଲୋଚନା

କରିଅଛନ୍ତି ? ମହର୍ଷି ଚାଲି ଯାଇ ନାହାନ୍ତି, କିନ୍ତୁ ମୃତ୍ୟୁଦ୍ୱାରରେ ଆମ୍ଭମାନଙ୍କ ସକାଶେ ନବ ଜୀବନ ଯେନ ଆବିର୍ଭୂତ ହୋଇଅଛନ୍ତି । ମହର୍ଷି ଏତେ କାଳ କଣ ଦେଖିବା ପାଇଁ ବସିଥିଲେ ଏବଂ କାହିଁକି ବା ହଠାତ୍ ଚାଲି ଗଲେ ? ସ୍ୱର୍ଗରାଜ୍ୟ କି ଭୂତଳରେ ଅବତୀର୍ଣ୍ଣ ହୋଇଅଛି, ନା, ସ୍ୱର୍ଗରାଜ୍ୟର ଆଉ କୌଣସି ଆଶା ନାହିଁ ? ହେ ବ୍ରାହ୍ମସମାଜର ଆଚାର୍ଯ୍ୟଗଣ ! ଆପଣମାନେ ଧ୍ୟାନଯୋଗଦ୍ୱାରା ଏହି ତତ୍ତ୍ୱ ନିର୍ଦ୍ଧାରଣ କରନ୍ତୁ । ରାମମୋହନ କାର୍ଯ୍ୟକ୍ଷେତ୍ରରୁ ଅନ୍ତର୍ହିତ ହୋଇଥିଲେ । କେଶବଚନ୍ଦ୍ର ମଧ୍ୟ ତଦ୍ରୂପ । କେବେ ଦେବେନ୍ଦ୍ରନାଥ କାର୍ଯ୍ୟକ୍ଷେତ୍ରରୁ ଅବସର ଗ୍ରହଣ କରି ପୂର୍ବ୍ବ, ଏତେ କାଳ ଏହି ମର ଜଗତରେ ଅବସ୍ଥାନ କଲେ କାହିଁକି ? ପୁଣି ସେ ଯେ ଏହି ମାଘୋତ୍ସବ ସପ୍ତାହରେ ଜୀବନଲୀଳା ସାଙ୍ଗ କଲେ, ତାହାର କି କିଛି ଅର୍ଥ ନାହିଁ ? ଏହା ଅତି ଗଭୀର ଚିନ୍ତାର ବିଷୟ । ମହର୍ଷିଙ୍କ ତିରୋଧାନ ଆମ୍ଭମାନଙ୍କ ନିକଟରେ କି ଦାବି କରୁଅଛି ? ଏହି ପ୍ରଶ୍ନର ମୀମାଂସା ଉପରେ ବ୍ରାହ୍ମସମାଜର ଭବିଷ୍ୟତ ଆଧ୍ୟାତ୍ମିକ ଜୀବନ ନିର୍ଭର କରୁଅଛି । ଏହାର ମୀମାଂସାର ଭାର ଗୁରୁ ଓ ଆଚାର୍ଯ୍ୟମାନଙ୍କ ଉପରେ ନ୍ୟସ୍ତ କରି ମୁଁ ନିରସ୍ତ ହେଉଅଛି । ମୁଁ କେବଳ ଭାବୁଅଛି, ମହର୍ଷିଙ୍କ ଜୀବନରେ ସ୍ୱପ୍ନ ସଫଳ ହୋଇଅଛି । ତାହାଙ୍କର ପୁଣ୍ୟ ଜୀବନ ମାନବକୁଳକୁ ପବିତ୍ର ଓ ଭାରତ ଜନନୀଙ୍କୁ କୃତାର୍ଥ କରିଅଛି । ଆମ୍ଭେମାନେ ମଧ୍ୟ ଏହି ପୁଣ୍ୟକୀର୍ତ୍ତି ଶ୍ରବଣ କରି କୃତାର୍ଥ ହେଲୁଁ । ଓଁ ସ୍ୱସ୍ତି । ୨୯ । ୧ । ୦୫

ଶ୍ରୀ ଧୀରେନ୍ଦ୍ରନାଥ ଚୌଧୁରୀ ।



## କ୍ଷୁଦ୍ର କ୍ଷୁଦ୍ର କବିତା ।

### କ୍ଷୀଣ ପୁଣ୍ୟ ।

ସତ୍ୟ କି ସେ କଥା ? ଅବା ଦେଖିଛି ସ୍ୱପନେ ?
ଅବା ମାୟା ମୂର୍ତ୍ତି ଭାସି ଯାଉଛି ନୟନେ ?
କବିତ୍ୱର ଭାଷା ନୁହେ ନିଶ୍ଚୟ ! ନିଶ୍ଚୟ !
ପାରନ୍ତା କି କରି ଏତେ ବ୍ୟାକୁଳ ହୃଦୟ !
ଆସେ ଯାଏ ନିତ୍ୟ ମନେ ଅପାର ବାସନା !
ହେବ ଅବା ସେହିପରି ଏହି ବିଡ଼ମ୍ବନା !
ହେଉଛି ଛଳନା ଏହା ବୋଲିବି କିପରି ?
ମନେ ପଡ଼ୁ ନାହିଁ କେବେ ଥିଲି ହୋଇ ହରି !
କଳ୍ପନାର ମୂର୍ତ୍ତି ନୁହେ ଅଛି ଭଲ ଜଣା !
ହରିବ କି ଅପ୍ରତ୍ୟୟ ପ୍ରତ୍ୟକ୍ଷ ଘଟନା ?
ଜାଣିଲି ଯେତେକ ଥିଲା ତପସ୍ୟାର ଫଳ,
ଭୁଞ୍ଜିଛି ତେତେକ ମାତ୍ର ପୁଲକିତ କେବଳ ।
ଘଟେ ଏହା କ୍ଷୀଣପୁଣ୍ୟ ମାନବ ଭାଗ୍ୟରେ,
ନିଶ୍ଚିନ୍ତ ରହିବି ଭାଳି ଏ କଥା ମନରେ ।

ଶ୍ରୀ ଫକୀରମୋହନ ସେନାପତି ।

ପୂର୍ଣ୍ଣିମା ନିଶି ।

ଆହା ଆହା ! ନିଶା ଦେଖି କେତେ ଶୋଭା ପାଏ,
ନିର୍ମଳ ସରଳ ସାଧୁ-ହୃଦୟ ପରାଏ ।
ପ୍ରକୃତିର ପୂତ ବେଶ,
ନାହିଁ ଅନ୍ଧକାର ଲେଶ,
ଅମୃତରସରେ ପୂର୍ଣ୍ଣ ବିଶାଳ ଜଗତ;
ଦେଖି ପରା ଏକୀଭୂତ ସ୍ୱରଗ ମରତ । ୧ ।
ଆକାଶରେ ଉଉନ୍ମଦ ନ ଟଳେ ଗରବେ,
ସୁନ୍ଦର ଶଶିଙ୍କୁ ବେଢ଼ି ତାରକା ସରବେ
ଗାଆନ୍ତି ମଧୁର ଗାନ,
ଉନ୍ମତ୍ତ ମାନବ ପ୍ରାଣ,
ପଢ଼ୁଛି ଉଚ୍ଛୁଳି ଅବା ଆନନ୍ଦ ଅପାର,
ସଙ୍ଗରେ ବିକାଶ ହୃଦେ ଲହରୀ ଆଶାର । ୨ ।
ନିରାଶାର ହାହାକାର ଅଛି କହୁ ନାହିଁ,
ପ୍ରକୃତି ଦେଉଛି ବିଶ୍ୱ ଅମୃତେ ମଣ୍ଡାଇ ।
ସକଳ ଅଭାବ ଚୂର୍ଣ୍ଣ,
ତ୍ରିଭୁବନ ଶାନ୍ତିପୂର୍ଣ୍ଣ,
ଏହି ସୁଧାସିନ୍ଧୁ ଭେଦ ପବିତ୍ର ଓଁକାର
ଢାଳୁଛି ମାନବ କର୍ଣ୍ଣେ ସ୍ୱର୍ଗ ସମାଚାର । ୩ ।

ଶ୍ରୀମତୀ ନଗେନ୍ଦ୍ରବାଳା ସରସ୍ୱତୀ

———

ଜଜବାୟୁ ଗୀତ ।

ଜଜବାଇଅରେ ଜଜବାଇଅ ଭୁ
ନିକ୍ଷେ ବର୍ଷ ଚୁଙ୍କି ଦେଉ,
ନୀଳମଣି ଦୁଧ ପିଉ ନାହିଁ ବୋଲି
ଜାଉଅଟେ କି ବୋବାଉ । ୧ ।
ହଉ ହଉ ପୁଅ ପିଇ ତ ଦେଲାଣି
ଭୁହି ଯାଅ ଯାଅ ଫେରି,
ଯେତେବେଳେ ଅଣ୍ଡ ଉକା ପାଉଡରେ
ଶୁଣୁଥିବୁ ଜାନ ଭେରୀ । ୨ ।
ଦଉଡ଼ି ଅସିବୁ ଜାନ କାଟି ନବୁ
ନ ମାନିବ ଯେବେ ବୋଲ,
ଅମାନିଆ ହୋଇ ତାଙ୍କୁ ଯେବେ ରେ
ଜରିବ ନାହିଁ ମୁଁ ଗୋଲ । ୩ ।
ଚୋର ସାଙ୍ଗ ପିଲା, ମଦନଗୋପାଳ
ହୋଉଁ ତାଙ୍କୁ ଶୋଇଲାଣି,
ଜଜବାଇ ଅଟା ଉଗାଉଛୁ ସିନା
ପୁଅ ମୋର ଶୁଅନ୍ତାଣି । ୪ ।
ଜଜବାଇରେ ଜଜବାଇଅ ଭୁ
ଛାଡ଼ି ଏଡ଼େ ବଡ଼ାଇ,
ସୁନାପୁଅ ମୋର ଶୋଇ ପଡ଼ିଲାଣି,
ଯାଅ ଯାଅ ଭୁ ପଳାଇ । ୫ ।

ଶ୍ରୀ ବାଞ୍ଛାନିଧି ପଣ୍ଡା ।

———

ସ୍ୱଦେଶିନୀ ।

କଲିକତା ନଗରରେ ବଡ଼େ ସନ୍ଧ୍ୟା-ରାଣୀ,
ଗନ୍ଧ ଗନ୍ଧ ଡାକ ଦଏ ବଙ୍ଗରାଜଧାନୀ ।
ଘର୍ଘର ନିନାଦେ ଛୁଟେ ନାନାବିଧ ରଥ,
ଗହଳ ଚହଳ ମହାଭିଡ଼ ରାଜପଥ ।
ଶୁଣିଣ ବାଷ୍ପୀୟ ରଥ ଘର୍ଘର ନିନାଦ
ବାଷ୍ପୀୟ ବୋଇତ ଗର୍ଜେ କଲେ ଭର ବାଦ ।
ବିଦ୍ୟୁତ-ଆଲୋକେ ଦିଶେ ଦିଗ ଦାଉ ଦାଉ,
ଚାରଆଡ଼େ ଶୁଭୁଅଛି ଭାଲ୍ ହାଉ ହାଉ ।
ବଗି ଚଢ଼ି ବାବୁ ବନ୍ଧ ଧାଇଁଛନ୍ତି ବସି
କେହି ବା ଗମ୍ଭୀର ମୂର୍ତ୍ତି କେହୁ ହସି ହସି ।
ଫେମହଲା ଇମାରତେ ମାଣ୍ଡିଅ ପଡ଼ାଇ
କହେ କଥା ଚନା ଚୂଟି ହଲାଇ ହଲାଇ ।
ଟୁଇଁଟାଁ କଟର୍ ମଟର୍ ହୋଇ ଗୋରାମାନେ
ଯାଉଛନ୍ତି କଥା କହି ମିସି ମେମ୍ ସାଥେ ।
ହାଙ୍କି ହାଙ୍କି ଚାଲିଯାଏ ଖଜୁରା ବେପାରୀ,
'ଅସ ଅସ' ଡାକେ ମାଡ଼ୁଆରି ଦୋକାନ୍‌ଦାରୀ ।
ବିପଣୀ ବାଥିକା ଦେଖି ଦେଖି ବେନ ମିତ୍ର*
ଥପୁଁ ଥପୁଁ ଭେଟିଲୁଁ ଯେ ପଦାର୍ଥ ବିଚିତ୍ର !
ଚୁମ୍ବରଲୋହିତ ବନ ଦେଙ୍ଗୁଲସଙ୍କାଶ
ମହତାଇ ଦଗ ଜହ୍ନୁ ରହଟ୍ଟୁଛି ବାସ ।

———

* ଉତ୍କଳସାହିତ୍ୟ ସମ୍ପାଦକ ଓ ଲେଖକ ।

ସୁନ୍ଦର ସାଜନ ବୋଲି ମୁନ୍ଦଇଲୁଁ ଘାଡ଼ା,
ପଇସାକୁ ଗୋଟା, ଏହା'ହେଲେ ହେଲା ଅଡ଼ା !
ଲୋଭେ ପଡ଼ି ବସ୍ତୁଖଣ୍ଡ କେବୁଁ କଲୁଁ ସ୍ଥିର,
ଅଦୂରୁଁ ଶୁଣିଲା 'ଯାକ୍ କାକ୍' ସୁଧୀଗିର ।
ଦେଖିଲୁଁ ବସୁଛି ଟାଣ ହେଁ ନାଗମୂର୍ତ୍ତି;
ଫେରି ଗଲୁଁ; ଅଛି ମନେ ସ୍ୱଦେଶୀ ସ୍ଫୂର୍ତ୍ତି ।
ଯେବେ ହେ। ପଢ଼ିଲା ନାରୀ ତୁ ମାନବମିତ୍ର,
ପ୍ରବଞ୍ଚକ ନରଠାରୁ ଶ୍ରେଷ୍ଠ ତୋ ଚରିତ୍ର ।

ଶ୍ରୀ ନନ୍ଦକିଶୋର ବଳ ।

---

ନୂଆବୋହୂଟି ।

ନୂଆବୋହୂଟି ! ନଈକି ଗାଧୋଇ ଯିବୁ ନାହିଁଟି,
ଅଣ୍ଟିଅ ଡେମ୍ଭୀର ଜଗି ବସିଛନ୍ତି,
ଟାଣିନେବ ଗିଳି ଦେବେଟି ।୧।
ନୂଆବୋହୂଟି ! ସାଇ ପିଲାଯାକ ବଡ଼ ହଟିଅ,
ଗାଧୁଅ ତୁଠରେ ହୋଇବେ ଠିଆ,
ତାଙ୍କୁ ଚାହିଁ ହସି ନ ଦେବୁ କେବେ,
ଅଲାଜୁକ ବୋଲି ଦାଣ୍ଡେ ଘୋଷିବେ ।୨।
ନୂଆବୋହୂଟି ! ଦିଅର ନଣନ୍ଦ ଭାରି ଉଚ୍ଛଟ,
ବେଳେ ବେଳେ କରୁଥିବେ ଅକଟ,
ଅକଟ କରିବେ ଶାଶୁ ଶ୍ୱଶୁର,
ହେବେ ସିନା ଯାଇ କରିବୁ ଘର ।୩।
ନୂଆବୋହୂଟି ! ଦାଣ୍ଡକୁ ବାହାରି ପଡ଼ିବୁ ନାହିଁ,
କବାଟ କୋଣରେ ଥିବୁଟି ଚାହିଁ,
ଯାଇ ପଡ଼ିଶାଙ୍କୁ ମାଉଳ କରି
ଲଢ଼ୁଥିବୁ ଘରେ ତୁ ଅଭଡ଼ି ।୪।
ନୂଆବୋହୂଟି ! ଘର କ ପାହୁଣ ହଠି ପଳାଇ
ବାଡ଼ ପୋଖରୀକି ଯିବୁ ଗାଧୋଇ,
ବୋହୂ ଝିଅଣୀ ସଙ୍ଗରେ ଯିବୁ,
ଘଡ଼ି କ ପାହୁଣ ଘରେ ଫେରିବୁ ।୫।
ନୂଆବୋହୂଟି ! ଘର ଥାଉଁ ଥାଉଁ ପରସ୍ତ ଘରେ
ବାସି ଯାଉଛି ତୁ ସାରିବୁ ଖରେ,
ହାଣ୍ଡି ଧୋଇ ସାରି ଅଣିବୁ ଜାଆଁ,
ପଡ଼ିଶା ଦୁଆରେ ନ ହେବୁ ଠିଆ ।୬।
ନୂଆବୋହୂଟି ! ଚୁଲିରେ କୁହୁଳା ପକାଇ ଦେଇ
ପାଣି କାଢ଼ିବାକୁ ଯିବୁଟି ଧାଇଁ,
ଓଟମୁହିଁ ନାରୀ ନ ଯିବୁ ଚାଲି,
ଭାଇଭଗାରି ହସିବେ ଟାହିଲି ।୭।
ନୂଆବୋହୂଟି ! ଚଉଁ ଚଉଁ କରି ଛାଡ଼ିବୁ ମନେ,
ହାଣ୍ଡିଠାରୁ ଶିଙ୍ଘି ଠାରିବୁ ଯେବେ,
ଶୁଣିଲେ ତୋ ହସ ଯାଇ ପଡ଼ିଶା
ଶାଶୁକୁ କରିବେ ଉଗାରହସା ।୮।
ନୂଆବୋହୂଟି ! ଦେଢ଼ଶୁର ଶାଶୁ ଶଶୁର ନାଆଁ
କେବେଁ ନ ଧରିବୁ କହୁଛି ମାଆ,
ଶାଶୁ ଖୁଡ଼ଶାଶୁ ଗୋଡ଼ ଘଷିବୁ,
ପିଲାଙ୍କୁ ମାଲପା ହଲପା ଦବୁ ।୯।

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ।



୮ ମ ଭାଗ ।　　ଚୈତ୍ର, ୧୩୧୨ ।　　୧୨ଶ ସଂଖ୍ୟା ।

# ଉତ୍କଳ-ସାହିତ୍ୟ

ମାସିକପତ୍ର ଓ ସମାଲୋଚନ ।

—:o:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—:o:—



THE UTKAL SAHITYA PRESS.
CUTTACK.
1905.



ବାର୍ଷିକ ମୂଲ୍ୟ ଡାକମାସୁଲ ସମେତ ଟ ୧୯　　ଏହି ସଂଖ୍ୟାର ମୂଲ୍ୟ ଟ ୦ ୷

# ଉତ୍କଳ-ସାହିତ୍ୟ ।

## ମାସିକପତ୍ର ଓ ସମାଲୋଚନ ।

ଅଷ୍ଟମ ଭାଗ ।

୧୩୧୧—୧୩୧୨ ସାଲ ।

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।



PRINTED AT THE UTKAL SAHITYA PRESS,

Cuttack.

1904.

ବାର୍ଷିକ ମୂଲ୍ୟ ଡାକମାସୁଲ ସହିତ ୮ ୵ ୧

## ସୂଚୀପତ୍ର ।

# ଉତ୍କଳ-ସାହିତ୍ୟ ।

—:o:—

କଟକ ସାରସ୍ୱତ-ସମିତି ।

( ବାର୍ଷିକ ଅଧିବେଶନରେ ପ୍ରଦତ୍ତ ସଭାପତିଙ୍କ ବକ୍ତୃତା । )

"ତାବଚ୍ଚ ଶୋଭତେ ମୂର୍ଖୋ ଯାବତ୍ କିଞ୍ଚିତ୍
ନ ଭାଷତେ ।"

ମୂର୍ଖ ବ୍ୟକ୍ତି ସେହିପର୍ଯ୍ୟନ୍ତ ଶୋଭାର ଆସ୍ପଦତା ଲାଭ କରୁଥାଏ, ଯେ ପର୍ଯ୍ୟନ୍ତ ସେ ବାଙ୍ନିଷ୍ପତ୍ତି ଅଥବା ସ୍ୱରଚିତ ବାକ୍ୟାବଳୀ ସାଧାରଣଙ୍କଠାରେ ଉପନ୍ୟସ୍ତ ନ କରେ । ଆଜି ମୋହର ସେହି ଅବସ୍ଥା ଉପସ୍ଥିତ । ପଣ୍ଡିତ, କବି, ବ୍ୟବହାରଜ୍ଞଙ୍କ ଓ ଅକଲ୍ଲଜୀଷା ରାଜା ଭର୍ତ୍ତୃହରି ନୀତିଶତକରେ କହିଅଛନ୍ତି—

ସ୍ୱାୟତ୍ତମେକାନ୍ତଗୁଣଂ ବିଧାତ୍ରା
ବିନିର୍ମିତଂ ଛାଦନମଜ୍ଞତାୟାଃ ।
ବିଶେଷତଃ ସର୍ବବିଦାଂ ସମାଜେ
ବିଭୂଷଣଂ ମୌନମପଣ୍ଡିତାନାଂ ॥

ବିଧାତା ଅଜ୍ଞତାର ଆଚ୍ଛାଦନରୂପରେ ମୌନ-ଗୁଣର ସୃଷ୍ଟି କରିଅଛନ୍ତି । ପ୍ରକୃତପକ୍ଷରେ ମୌନାବଲମ୍ବନ କାଳରେ ମୌନୀ ଅଜ୍ଞ କି ପ୍ରାଜ୍ଞ ତାହା ସାଧାରଣର ବୁଦ୍ଧିଗୋଚର ହୁଏ ନାହିଁ । ପ୍ରାଜ୍ଞର କି ମୌନାବସ୍ଥା କି ଭାଷଣାବସ୍ଥା ଉଭୟ ଅବସ୍ଥା ପ୍ରଶଂସାର୍ହ । ପରନ୍ତୁ ଅଜ୍ଞ ପକ୍ଷରେ ମୌନାବସ୍ଥା କେବଳ ଆଶ୍ରୟଣୀୟ । ବିଶେଷତଃ ବିଦ୍ୱତ୍ସମାଜରେ ଅଜ୍ଞର "ମୌନ" ଗୋଟିଏ ବିଭୂଷଣ । ଏହି ବିଦ୍ୱଦ୍‌ଗୋଷ୍ଠୀ-ସମଳଙ୍କୃତ "ସାରସ୍ୱତ ସମିତି"ରେ ମୌନ ଅବଲମ୍ବନ କରି ଭର୍ତ୍ତୃହରିଙ୍କ ନୀତିଗର୍ଭ ଉପଦେଶ ପ୍ରତିପାଳନ କରିବା ମୋହର ଉଚିତ ଥିଲା, କିନ୍ତୁ କାର୍ଯ୍ୟ-କ୍ଷେତ୍ରରେ ବାଧ୍ୟ ହୋଇ ମୁଁ ତାହାର ଉଲ୍ଲଙ୍ଘନ କରିବାକୁ ଉଦ୍ୟତ ହେଉଅଛି । ସମବେତ ସୁଧୀବୃନ୍ଦ ମୋହର ଧୃଷ୍ଟତାକୁ ହୃଦୟରେ ସ୍ଥାନ ନ ଦେଲେ କୃତାର୍ଥ ହେବି । "ଗୁଣଗୃହ୍ୟା-ବଚନେ ବିପଶ୍ଚିତଃ" ଭାରବିଙ୍କର ଏହି ସମର୍ଥକ ବାକ୍ୟ ସ୍ମରଣ କରି ମୁଁ ଆଶା କରିପାରେ ଯେ ସଭ୍ୟବୃନ୍ଦ ମୋହର ଧୃଷ୍ଟତା କ୍ଷମା କରିବାକୁ କୁଣ୍ଠିତ ହେବେ ନାହିଁ । ପ୍ରବାଦବାକ୍ୟ ଅଛି—'ଜଗତ୍ୟାଂ ନ କିମପ୍ୟସ୍ତି ନ ନିର୍ଦୋଷଂ ନ ନିର୍ଗୁଣଂ' ଜଗତରେ ଏପରି କୌଣସି ପଦାର୍ଥ ନାହିଁ ଯାହା କି ଏକାବେଳକେ ନିର୍ଦୋଷ ବା ନିର୍ଗୁଣ ହୋଇ ପାରେ । ମୋ ପ୍ରଳାପ ତ ଜଗଦନ୍ତର୍ଗତ, ସୁତରାଂ ଏହା ଦୋଷବହୁଳ ହେଲେ ସୁଦ୍ଧା ଏକାବେଳକେ ନିର୍ଗୁଣ ହେବ ନାହିଁ, ଏହା କୁହାଯାଇ ପାରେ । ଗୁଣ ଯଦି ଅଣୁପରିମାଣରେ ଥାଏ, ସେହିଁ ମୋହର ଯଥେଷ୍ଟ । କବି କହିଅଛନ୍ତି:—

ଚୀପ୍ତେ ବାଳଶସ୍ୟାପି ସତ୍କ୍ଷେତ୍ରପତିତା କୃଷିଃ ।
ନ ଶାଳେଃ ସ୍ତମ୍ବକରିତା ବପ୍ତୁର୍ଗୁଣମପେକ୍ଷତେ ।

କୃଷକ ମୂର୍ଖ ହେଉ ବା ଜ୍ଞାନ ଅଳ୍ପ ଥାଉ, ପରନ୍ତୁ ଜମି ଉର୍ବର ଥିଲେ ଆଶାନୁରୂପ କୃଷି ମିଳିପାରେ; କୃଷିର ଉତ୍କର୍ଷ ବପ୍ତାର ଗୁଣକୁ ଅପେକ୍ଷା କରେ ନାହିଁ । ମୁଁ ଅଯୋଗ୍ୟ ହେଲେ ଅଥବା ମୋ ବାକ୍ୟରେ ଗୁଣ ଅଳ୍ପ ଥିଲେ ମଧ୍ୟ ସମବେତ ସଭ୍ୟବୃନ୍ଦଙ୍କ ସ୍ନିଗ୍ଧ ଉର୍ବର ହୃଦୟରେ ତାହା ସଂସୃଷ୍ଟ ହେଲେ ଅବଶ୍ୟ ମୋହର ଆଶାନୁରୂପ ଫଳ ଦେଇ ପାରିବ । ଏହା ଦୁଃସାହସ ନୁହେଁ ।

ଗତ ମାର୍ଗଶୀର୍ଷ ମାସର ପ୍ରଥମ ସପ୍ତାହରେ ଯେତେବେଳେ ମାନନୀୟ ବନ୍ଧୁ ପଣ୍ଡିତ ଶ୍ରୀ ପ୍ରାଣ-କୃଷ୍ଣ ଶାସ୍ତ୍ରୀ ମହୋଦୟ ଆମ୍ଭ ଅଞ୍ଚଳକୁ ଶୁଭାଗମନ

କରିଥିଲେ, ମୁଁ ତାହାଙ୍କଠାରୁ ଶୁଣିଥିଲି କି ମୋତେ ସାରସ୍ୱତ-ସମିତିର ସଭାପତିତ୍ୱରେ ବରଣ କରିବାର କଳ୍ପନା କଳ୍ପନା ଚାଲିଅଛି । ମୁଁ ମନେ କଲି ଜୀବର ମନୋବୃତ୍ତି ଅସୀମ, ସୁତରାଂ ସେହି ବୃତ୍ତିରେ ସାଧାରଣ ପ୍ରାପ୍ତ ମୁଁ ମଧ୍ୟ ପ୍ରତିଫଳିତ ହୋଇଥିବି, ପରନ୍ତୁ ସମିତିର ସଭ୍ୟମାନେ ତାହା କଳ୍ପନାରେ ପର୍ଯ୍ୟବସିତ କରିବେ, କାର୍ଯ୍ୟରେ ପରିଣତ କରିବେ ନାହିଁ । ମୋପରି ବ୍ୟକ୍ତିକୁ ସଭାପତିତ୍ୱରେ ବରଣ କରି ସଭାପତିର ପବିତ୍ର ଆସନକୁ କାହିଁକି କଳଙ୍କିତ କରିବେ ? କିନ୍ତୁ ଦିନ ପରେ ଦେଖିଲି ହଜକୁସତ ମୋତେ ସଭାପତି କରିବାର ମାନସ ସଭ୍ୟମାନଙ୍କର କଳ୍ପନାରାଜ୍ୟକୁ ଅତିକ୍ରମ କରି କାର୍ଯ୍ୟକ୍ଷେତ୍ରରେ ପରିଣତ । ପତ୍ର ପାଇଲି । କି ଉତ୍ତର ଦେବି, ଭାବି ସ୍ଥିର କରି ପାରିଲି ନାହିଁ । କିନ୍ତୁ ପରକ୍ଷଣରେ ପୁନରାୟ ପତ୍ର ପାଠ କରି ଦେଖିଲି ନିର୍ଦ୍ଦିଷ୍ଟ ଦିନଟି ମୋ ପକ୍ଷରେ ଗୋଟିଏ ଅନିବାର୍ଯ୍ୟ ପ୍ରତିବନ୍ଧକ । ପ୍ରତିବନ୍ଧକର ଉଲ୍ଲେଖ କରି ସଭ୍ୟମାନଙ୍କଠାରେ ଅବ୍ୟାହତିପ୍ରାର୍ଥୀ ହେଲି । ପ୍ରତ୍ୟୁତ୍ତରରେ ଜାଣିଲି, ସଭ୍ୟମାନେ ସଭାର ଦିନ ପରିବର୍ତ୍ତନ କରିବାକୁ ପ୍ରସ୍ତୁତ, କିନ୍ତୁ ସଭାପତିର ପରିବର୍ତ୍ତନ କରି ପାରିବେ ନାହିଁ । ସଭ୍ୟବୃନ୍ଦଙ୍କ ଆଗ୍ରହାତିଶଯ୍ୟ ଓ ମାନନୀୟ ବ୍ୟକ୍ତିବର୍ଗଙ୍କ ଆଦେଶରେ ଉପେକ୍ଷା ପ୍ରଦର୍ଶନ କରିବା ଅନ୍ୟାଯ୍ୟ ଓ ପାପର ନିଦାନ; ଅଗତ୍ୟା ଅଙ୍ଗୀକୃତ ହୋଇ ଏଠାକୁ ଆସିଲି । ଏଠାରେ ଆସି ସଭାର ଯେରୂପ ସର୍ବାଙ୍ଗସୌନ୍ଦର୍ଯ୍ୟ ପରିଦର୍ଶନ କରୁଅଛି ତହିଁରେ ସଭାପତି ଆସନ ଗ୍ରହଣ କରିବା ଦୂରେ ଥାଉ, ସଭ୍ୟମାନଙ୍କର ଆସନ ସ୍ପର୍ଶ କରିବା ମୋ ପରି ଲୋକର ଅନୁଚିତ । ତେବେ ଏ କ୍ଷେତ୍ରରେ ସଭ୍ୟମାନଙ୍କର ଗୋଟିଏ ଅନ୍ତରର ଇଚ୍ଛା ମୋ ଅନ୍ତରରେ ପ୍ରତିଫଳିତ ହୋଇଅଛି, ତାହା ସତ୍ୟ ହେଲେ ହୋଇ ପାରେ । ସାଧାରଣଙ୍କର ଏହା ଜ୍ଞାତ ଅଛି ଯେ ସମୟ ସମୟରେ ଅନେକଙ୍କର ଖେଚରାନ୍ନ (ଖେଚେଡ଼ି) ଖାଇବାର ମାନସ ପ୍ରବଳ ହୁଏ । ସେଥି ପାଇଁ ଲୋକେ ଚାଉଳ, ଡାଲି, ମସଲାଦି ମିଶାଇ ଖେଚେଡ଼ି ପ୍ରସ୍ତୁତ କରନ୍ତି । ଏତଦ୍ୱାରା ରସନାର ସାମୟିକ ତୃପ୍ତି କରିବା ସେମାନଙ୍କର ଉଦ୍ଦେଶ୍ୟ । ମୁଁ ଜଣେ ବଙ୍ଗଦେଶ ପ୍ରାନ୍ତବାସୀ ଉତ୍କଳୀୟ, ମୋହର କି ବଙ୍ଗଳା କି ଉତ୍କଳ କୌଣସି ଭାଷା ବିଶୁଦ୍ଧ ନୁହେ । ଅଧିକନ୍ତୁ ଉତ୍କଳ ଭାଷା ଏକାନ୍ତ ବିକୃତ । ବୋଧ ହୁଏ ସଭ୍ୟମାନେ ଆଜି ମୋହର ସେହି ଭାଷା-ଖେଚେଡ଼ିଦ୍ୱାରା ଶ୍ରବଣେନ୍ଦ୍ରିୟର ତୃପ୍ତିସାଧନ କରିବାକୁ ଇଚ୍ଛୁକ ହୋଇ ମୋତେ ବକ୍ତାଶ୍ରେଣୀରେ ପରିଗଣିତ କରିଅଛନ୍ତି । ସମବେତ ସଭ୍ୟବୃନ୍ଦଙ୍କ ସନ୍ତୋଷରେ ମୋହର ସନ୍ତୋଷ, ସୁତରାଂ ସଭ୍ୟମାନଙ୍କ ସମକ୍ଷରେ ଭାଷା-ଖେଚେଡ଼ି ଘେନି ଦଣ୍ଡାୟମାନ ହେଲି । କିନ୍ତୁ ଭାଇମାନେ, ତହିଁରେ ମସଲାର ଗନ୍ଧ ନାହିଁ । ମୋହର ତାଦୃଶ ପାଣ୍ଡିତ୍ୟ ନାହିଁ ଯଦ୍ୱାରା ମୁଁ ଆପଣମାନଙ୍କର ସନ୍ତୋଷ ସାଧନ କରି ପାରିବି । ମସଲା ଦୂରେ ଥାଉ, ଡାଲି, ଚାଉଳ ଭଲ ଥିଲେ ମଧ୍ୟ ଚଳିଥାନ୍ତା । ପରନ୍ତୁ ଚାଉଳ ବଗଡ଼ା, ଡାଲି ପୋକରା । କି ବଙ୍ଗଳା କି ଉତ୍କଳ କୌଣସି ଭାଷା ମୋହର ତାଦୃଶ ଅଧୀତ ନୁହେ । ଆପଣମାନଙ୍କ ନୈସର୍ଗିକ ସ୍ନେହ ମାତ୍ର ସାର । ଭୂମିକାଟା ବଢ଼ିଗଲା, ଅତଃପର ଆପଣମାନଙ୍କ ଅନ୍ତରର ସ୍ନେହକୁ ସମ୍ବଳ କରି ମୁଁ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହେଲି ।

"ସାରସ୍ୱତ ସମିତି"ର ନିୟମାବଳୀ ଓ ବିବରଣୀମାନ ପାଠ କରି ମୁଁ ନିରତିଶୟ ଆନନ୍ଦ ଲାଭ କରିଅଛି । ସମିତିର ଉଦ୍ଦେଶ୍ୟ ଅତି ମହତ୍ । ଅବନତ ସଂସ୍କୃତ ଶାସ୍ତ୍ରର ଉନ୍ନତିକଳ୍ପରେ ଯତ୍ନ କରିବାକୁ ହେଲେ ଏହିପରି ଅଧ୍ୟବସାୟ ଆବଶ୍ୟକ । ଆମ୍ଭମାନଙ୍କର ବୁଦ୍ଧିର ସଂକୀର୍ଣ୍ଣତା ଓ ଅଧ୍ୟବସାୟର ଅଭାବ ବିବେଚନା କରି ବିଦ୍ୱାନ୍ ଋଷିମାନେ କେତେ ସୁଗମ ପନ୍ଥାମାନ ଆବିଷ୍କାର କରି ଯାଇଅଛନ୍ତି । କିନ୍ତୁ ପରିତାପର ବିଷୟ

ସ୍ୱୀୟ ଆଳସ୍ୟ ବଶତଃ ହେଉ ଅଥବା କାଳବଶରୁ ରବା ଜ୍ଞାତ ମଧ୍ୟ ଆତ୍ମଜ୍ଞାନର ଉପେକ୍ଷାର ବିଷୟ ହୋଇଅଛି । ଏହି ବେଦ ପୂର୍ବରେ ଏତେଦୂର ଜଟିଳ ଥିଲା ଯେ ସଂସ୍କାରକ ଋଷି-ମାନେ ମଧ୍ୟ ତହିଁରୁ ତତ୍ତ୍ୱ ନିଷ୍କାସନ କରିବାକୁ ଅସୁବିଧା ବୋଧ କରୁଥିଲେ । ତନ୍ନିମିତ୍ତ ପରମ-କରୁଣାନିଳୟ ଭଗବାନ୍ ବ୍ୟାସ ଦ୍ୱାପରର ଶେଷ ଭାଗରେ ବେଦରାଶିକୁ ଋକ୍, ଯଜୁଃ, ସାମ ଓ ଅଥର୍ବ ଏହି ଚାରି ଭାଗରେ ବିଭକ୍ତ କରି ଜୈମିନି ପ୍ରଭୃତି ଶିଷ୍ୟମାନଙ୍କୁ ଅର୍ପଣ କରିଥିଲେ । ସେହି ପ୍ରତ୍ୟେକ ଭାଗ ବୈଦିକ କର୍ମ, ଉପାସନା ଓ ଜ୍ଞାନ ଏହି ତିନି କାଣ୍ଡରେ ବିଭକ୍ତ । ମହାମୁନି ଜୈମିନି କର୍ମୀମାନଙ୍କ ନିମନ୍ତେ କର୍ମକାଣ୍ଡାତ୍ମକ ବେଦଭାଗ ଓ ଜୈମିନିଙ୍କ ଗୁରୁ ବେଦର ବିଭାଗକର୍ତ୍ତା ବାଦରାୟଣ ବ୍ୟାସ ମୁମୁକ୍ଷୁ ଜ୍ଞାନୀମାନଙ୍କ ନିମନ୍ତେ ଉତ୍କୃଷ୍ଟ ମୀମାଂସା ପ୍ରସ୍ତୁତ କରି ଜଗତର ହିତ ସାଧନ କରି ଯାଇଅଛନ୍ତି । ଜୈମିନିକୃତ କର୍ମରହସ୍ୟ ପୂର୍ବ ମୀମାଂସା ଓ ବ୍ୟାସକୃତ ତତ୍ତ୍ୱଜ୍ଞାନରହସ୍ୟ ଉତ୍ତର ମୀମାଂସା ବା ବେଦାନ୍ତ ନାମରେ ଅଭିହିତ । ଜୈମିନିଙ୍କ ଅଭିପ୍ରାୟ, ଅଧିକାରୀ ଜୀବମାନେ ସର୍ବଦା ନିତ୍ୟ ନିୟମିତ ବୈଦିକ କର୍ମରେ ଲିପ୍ତ ରହନ୍ତୁ; ବ୍ୟାସଙ୍କ ଇଚ୍ଛା, କର୍ମୀମାନେ ନିତ୍ୟ ନୈମିତ୍ତିକ କର୍ମଦ୍ୱାରା ନିର୍ମଳଚିତ୍ତ ହୋଇ ପରମାତ୍ମଜ୍ଞାନ ଲାଭ କରନ୍ତୁ । ଭଗବଦୁକ୍ତି—

'ନହି କଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟକର୍ମକୃତ୍' ଅକର୍ମୀ ହୋଇ କେହି କ୍ଷଣମାତ୍ର ରହି ପାରିବ ନାହିଁ, ମାନସିକ ବା ବାହ୍ୟ ଯେ କୌଣସି କର୍ମ ଜୀବ ଅହରହଃ କରୁଥିବ । ସୁତରାଂ ଜୀବମାନଙ୍କ ନିମନ୍ତେ କର୍ମମାର୍ଗ ପ୍ରଶସ୍ତ କରି ଦେବା ଉଚିତ । ଏକମାତ୍ର କର୍ମ ଜୀବର ଭୋଗ ଓ ଅପବର୍ଗର ମୁଖ୍ୟ ଉପାୟ । ଏହା ମଧ୍ୟ ଜୈମିନିଙ୍କ ମତ ।

ବ୍ୟାସଙ୍କ ମତ—"ଭୁଞ୍ଜତେ କର୍ମ ଭୋଗାୟ କର୍ମ କର୍ତ୍ତୁଂ ନ ଭୁଞ୍ଜତେ" ଜୀବମାନେ ଭୋଗାର୍ଥ କର୍ମ କରନ୍ତି ଏବଂ କର୍ମାର୍ଥ ଭୋଗ କରନ୍ତି । ବୀଜାଙ୍କୁର ନ୍ୟାୟରେ କର୍ମ ଓ ଭୋଗ ଅନାଦି ଅନନ୍ତ କାଳ ଚାଲୁଅଛି ଓ ଚାଲିବ । ଯେପରି କୀଟ ନଦୀର ଆବର୍ତ୍ତରେ ପଡିଲେ ଆବର୍ତ୍ତଧକ୍କାରେ ତାହାକୁ ଏକ ଆବର୍ତ୍ତରୁ ଯାଇ ଅପର ଆବର୍ତ୍ତରେ ନିମଜ୍ଜିତ ହେବାକୁ ହୁଏ, ସେହିପରି ଜୀବମାନେ ଏକ ଜନ୍ମ ଉତ୍ତାରୁ ଅପର ଜନ୍ମ ଲାଭ କରି ଅନନ୍ତ କାଳ ଏହି ସଂସାରସମୁଦ୍ରରେ ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ ତାପରେ ଜର୍ଜରିତ ହୋଇଥିବେ, ସେମାନଙ୍କର ଆଉ ନିସ୍ତାର ନାହିଁ । ନଦୀର ଆବର୍ତ୍ତରେ ପତିତ କୀଟକୁ ଯଦି କେହି କୃପାଳୁ ବ୍ୟକ୍ତି ଦୟାର୍ଦ୍ର ଚିତ୍ତ ହୋଇ ଆବର୍ତ୍ତରୁ ଉତ୍ତୋଳନ କରି ତୀରସ୍ଥ କରି ଦିଅନ୍ତି, ତାହା-ହେଲେ ସେ କୀଟ ଯେପରି ତୀରତରୁର ଛାୟାରେ ବିଶ୍ରାମ ଲାଭ କରି କ୍ଲେଶପାରାବାରରୁ ରକ୍ଷା ପାଏ, ସେହିପରି ଜନ୍ମାବର୍ତ୍ତପ୍ରପୀଡିତ ଜୀବବୃନ୍ଦ ପରମ-କାରୁଣିକ ଗୁରୁ ସାହାଯ୍ୟରେ ଆତ୍ମଜ୍ଞାନରୂପୀ ଅବିନଶ୍ୱର ତରୁର ଶାନ୍ତିଚ୍ଛାୟାରେ ବିଶ୍ରାନ୍ତ ହୋଇ ଅବଶେଷରେ ସାଂସାରିକ କ୍ଲେଶପରମ୍ପରାରୁ ନିଷ୍କୃତି ଲାଭ କରନ୍ତି, ନତୁବା ଗତ୍ୟନ୍ତର ନାହିଁ । ଏହି ଉଦ୍ଦେଶ୍ୟରେ ଭଗବାନ୍ ବାଦରାୟଣ ବ୍ୟାସ ଆତ୍ମଜ୍ଞାନସାଧକ ଉତ୍ତରମୀମାଂସା ବା ବେଦାନ୍ତ ପ୍ରସ୍ତୁତ କରି ଜଗତର ହିତ ସାଧନ କରିଅଛନ୍ତି । ବେଦ ଯେପରି ମୂଳରେ କର୍ମକାଣ୍ଡ ଓ ଜ୍ଞାନକାଣ୍ଡ ଏହି ଦୁଇ ଭାଗରେ ବିଭକ୍ତ ହୋଇଅଛି ତାହା କଥିତ ହେଲା । ଏହି ଦୁଇ କାଣ୍ଡରୁ ଆର୍ଯ୍ୟ ଶାସ୍ତ୍ରମାନେ ଯେପରି କ୍ରମରେ ନିଷ୍କାସିତ ହୋଇ ଅଛନ୍ତି ତାହା ମଧ୍ୟ ଯଥାସାଧ୍ୟ କଥିତ କରୁଅଛୁ । କର୍ମକାଣ୍ଡୀୟ କୃତ୍ୟକଳାପ ଯଥାବିଧିରେ ଅନୁଷ୍ଠିତ ହୋଇ ଜୈମିନିଙ୍କ ଉଦ୍ଦେଶ୍ୟ ସଫଳ କରୁ ଏହି ଉଦ୍ଦେଶ୍ୟରେ ମନୁ, ଶାତାତପ, ଅଙ୍ଗିରା ପ୍ରଭୃତି ଋଷିମାନେ ସ୍ମୃତିଶାସ୍ତ୍ର ସଂକଳନ କରି ଜୈମିନିଙ୍କ ଆବିଷ୍କୃତ ପନ୍ଥାକୁ ଅଧିକ ସୁଗମ କଲେ । କୌଣସି ବିଷୟରେ ଉପଦେଶ ଦେବାଠାରୁ ଦୃଷ୍ଟାନ୍ତ ଦେଖାଇ ଉପଦେଶର ସମର୍ଥନ କଲେ

ତାହା ସାଧାରଣଙ୍କଠାରେ ଉପାଦେୟ ଓ ସର୍ବଥା ଆଦରଣୀୟ ହେବ । ମତଦମାରେ ଅଧିକ୍ ଅପେକ୍ଷା ନକୀରର ଯେ ମୂଲ୍ୟ ବେଶି, ବୋଧ ହୁଏ ଏ ବିଷୟରେ କାହାର ମତଭେଦ ହେବ ନାହିଁ । ସେହିପରି ସ୍ମୃତିଶାସ୍ତ୍ର ପ୍ରଣୟନାନନ୍ତର ବଶିଷ୍ଠ ବଶିଷ୍ଠ ଦେବମାନୁଷାଦିଙ୍କ ଚରିତ ଏକତ୍ର ସଂକଳିତ ହୋଇ ନକୀରସ୍ୱରୂପରେ ପୁରାଣମାନେ ଆବିଷ୍କୃତ ହେଲେ । ଧର୍ମମାନଙ୍କର ଧର୍ମକାଳାଦି ନିରୂପଣାର୍ଥ ଜ୍ୟୋତିଃଶାସ୍ତ୍ର, ସ୍ୱାସ୍ଥ୍ୟରକ୍ଷାର୍ଥ ଆୟୁର୍ବେଦ ଓ ଯୋଗଶାସ୍ତ୍ର, ରୁଚି, କାମନା ଓ ପ୍ରକୃତି ଅନୁରୂପ ଜୀବର ହିତକର ବିବିଧ ଶାସ୍ତ୍ରମାନେ ଆବିଷ୍କୃତ ହେଲେ । ପୁରାଣମାନଙ୍କରୁ କାବ୍ୟ, ନାଟକ, ଉଦ୍ଦୀପ, ଅଳଙ୍କାର ଇତ୍ୟାଦି ଅସଂଖ୍ୟ ସୁଖପାଠ୍ୟ ଧର୍ମପ୍ରବର୍ତ୍ତକ ଗ୍ରନ୍ଥମାନେ ପ୍ରାଚୀନ ମହାତ୍ମାମାନଙ୍କ କର୍ତ୍ତୃକ ପ୍ରଣୀତ ହେଲେ । ଶାଖୋପଶାଖ ଭାବରେ କର୍ମକାଣ୍ଡର ବିସ୍ତାର ହେଲା । ଜ୍ଞାନକାଣ୍ଡର ମଧ୍ୟ ଏହିପରି ବିସ୍ତାର ହୋଇଅଛି । ପରମାତ୍ମଜ୍ଞାନ ଲାଭନିମନ୍ତେ କେବଳ ବେଦାନ୍ତର ସୃଷ୍ଟି ହୋଇ ନାହିଁ । ଆତ୍ମଜ୍ଞାନ ବୋଲନ୍ତୁ, ଆତ୍ୟନ୍ତିକ ଦୁଃଖନିବୃତ୍ତି ବୋଲନ୍ତୁ, ଅଥବା ଦୁଃଖତ୍ରୟର ଧ୍ୱଂସ ବୋଲନ୍ତୁ, ସମସ୍ତ ସେହି ପରମାତ୍ମଜ୍ଞାନରେ ପର୍ଯ୍ୟବସିତ । ସେହି ପରମାତ୍ମବିଜ୍ଞାନାର୍ଥ ଜ୍ଞାନକାଣ୍ଡୀୟ ପନ୍ଥାକୁ ସୁଗମ ଓ ଯୁକ୍ତିସିଦ୍ଧ କରିବାନିମନ୍ତେ ଗୌତମ, କପିଳ ପ୍ରଭୃତି ଋଷିମାନେ ସାଂଖ୍ୟ, ପାତଞ୍ଜଳ, ନ୍ୟାୟ, ବୈଶେଷିକ, ବେଦାନ୍ତ, ମୀମାଂସା ଏହି ଷଟ୍ ଶାସ୍ତ୍ରର ପ୍ରଣୟନ କରି ସ୍ୱ ସ୍ୱ ପ୍ରତିଭାର ସଦ୍ବ୍ୟବହାର କଲେ । ଯେପରି କର୍ମକାଣ୍ଡୀୟ ସ୍ମୃତିମାନଙ୍କର ରହସ୍ୟରୂପରେ ପୁରାଣାଦିର ଆବିଷ୍କାର ହେବା ପୂର୍ବରେ ବିବୃତ ହୋଇଅଛି, ସେହିପରି ଜ୍ଞାନକାଣ୍ଡୀୟ ବେଦମାନଙ୍କର ରହସ୍ୟରୂପରେ ବିବିଧ ଆଖ୍ୟାୟିକାସହ ଉପନିଷଦ୍‌ମାନେ ବେଦରୁ ସଂକଳିତ ହେଲେ । କ୍ରମେ ଉତ୍ତରୋତ୍ତର ଜ୍ଞାନସାଧକ ଅନେକ ପ୍ରକରଣ ଗ୍ରନ୍ଥମାନେ ମଧ୍ୟ ଆବିଷ୍କୃତ ହେଲେ । ସେହି ସମସ୍ତ ଗ୍ରନ୍ଥମାନଙ୍କର ପ୍ରତ୍ୟେକର ଅମୂଲ ବୃତ୍ତାନ୍ତ ପ୍ରବନ୍ଧାନ୍ତରରେ ଆଲୋଚ୍ୟ । ସମ୍ପ୍ରତି ସଂକ୍ଷେପରେ କର୍ମକାଣ୍ଡ ଓ ଜ୍ଞାନକାଣ୍ଡର ବିବରଣ ଓ ତହିଁରୁ ଯେଉଁ ଶାସ୍ତ୍ରମାନ ପର୍ଯ୍ୟାୟକ୍ରମରେ ଆବିଷ୍କୃତ ହୋଇ ଅଦ୍ୟମାନ କାଳ ବିବିଧ ବିପତ୍ତିବିପ୍ଳବମାନ ଉତ୍ତୀର୍ଣ୍ଣ ହୋଇ ଅଦ୍ୟପର୍ଯ୍ୟନ୍ତ ଚଳି ଆସୁଅଛନ୍ତି ତାହା କଙ୍କାଳମାତ୍ର ପ୍ରଦର୍ଶିତ ହେଲା ।

ମୁଁ ଏଠାରେ ଆଉ ଗୋଟିଏ ବିଷୟ ବୋଲିବାକୁ ଉଦ୍ୟତ ହେଲି, ସୁଧୀବୃନ୍ଦ ଧୃଷ୍ଟତା କ୍ଷମା କରିବେ । ଯେପରି ବେଦଠାରୁ ଶାଖୋପଶାଖ ଭାବରେ ସଂସ୍କୃତ ଶାସ୍ତ୍ରମାନେ ଆବିର୍ଭୂତ ହୋଇଅଛନ୍ତି ତାହା ମୋହର ସଦ୍‌ବୁଦ୍ଧି ଅନୁସାରେ ଯଥାଶକ୍ତି ବ୍ୟାଖ୍ୟାତ ହୋଇଅଛି । ସମିତିର ଉଦ୍ଦେଶ୍ୟକୁ ଚାହିଁଲେ ଅବଶ୍ୟ ମୋ ବାକ୍ୟ ବକ୍ତବ୍ୟର ସୀମା ଅତିକ୍ରମ କରିବ ନାହିଁ । ଅନେକଙ୍କ ମତରେ ସଂସ୍କୃତ ଭାଷା ଅଧୁନାତ ଓ ବିବିଧ ଭାଷାରୁ ସଂକଳିତ ବୋଲି ଏହାର ନାମ ସଂସ୍କୃତ । ବୋଲିବା ବାହୁଲ୍ୟ ସଂସ୍କୃତ ଭାଷାକୁ ମୃତ ଭାଷା ବୋଲିବାକୁ ମଧ୍ୟ ଅନେକେ ପ୍ରସ୍ତୁତ । ଜଟିଳ ବେଦକୁ କୃପାପାରାବାର ବ୍ୟାସଦେବ ଯଥାକ୍ରମରେ ବିଭକ୍ତ କରି ଭବିଷ୍ୟତ ସଂକୁଚିତ-ବୁଦ୍ଧି ମାନବମାନଙ୍କ ନିମିତ୍ତ ସଂସ୍କୃତ କରିଅଛନ୍ତି, ଏହା କି ବୋଲି ନିଖିଳଭାଷାଜନନୀ ସଂସ୍କୃତ ଭାଷା ବିବିଧ ଭାଷାରୁ ସଂକଳିତ ହୋଇ ସଂସ୍କୃତ ଭାଷା ନାମରେ ଅଭିହିତ ହୋଇଅଛି, ଏପ୍ରକାର ବୋଲା ଗଲେ ନିରପେକ୍ଷ ଉକ୍ତି ହେବ କି ନାହିଁ ତାହା ସୁଧୀବର୍ଗଙ୍କର ବିବେଚ୍ୟ । ତେବେ ଈଶ୍ୱର-କଳ୍ପ ବ୍ୟାସାଦିମାନେ ଯଦି ଭବିଷ୍ୟତ ଅଳ୍ପଜ୍ଞ ମାନବମାନଙ୍କ ନିମନ୍ତେ "ବେଦକୁ ସଂସ୍କୃତ" ଏହିପରି ଅଭିଧା ପ୍ରଦାନ କରନ୍ତି ତାହା ସେମାନଙ୍କ-ଠାରେ ଶୋଭା ପାଇ ପାରେ, କାରଣ, ସେମାନଙ୍କର ବିଶାଳ ପ୍ରତିଭାରେ ବେଦଗତ ଜଟିଳତ୍ୱ ସ୍ଥାନ ଲାଭ କରି ପାରେ ନାହିଁ, ସୁତରାଂ

ସେମାନଙ୍କ ନିମିତ୍ତ ସଂସ୍କାରର ଅପେକ୍ଷା ନାହିଁ, ପରନ୍ତୁ ଅସ୍ମାନଙ୍କ ନିମିତ୍ତ ସଂସ୍କାର । ଅତଏବ ଅସ୍ମାନଙ୍କର ଅଧୁନାତନ ପ୍ରାଞ୍ଜଳ ଦେବବାଣୀକୁ "ବେଦ ସଂସ୍କୃତ" ନ ବୋଲି "ବିବିଧ ଭାଷା ସଂସ୍କୃତ" ବୋଲିବା ନ୍ୟାଯ୍ୟ କି ନା ସୁଧୀମାନେ ବିବେଚନା କରନ୍ତୁ । ଅନାଦିମାନବକାଳପ୍ରଚଳିତ ଅପୌରୁଷେୟ ସୁତରାଂ ନିତ୍ୟ ଅମର ଭାଷା ମୃତ, ଅଥଚ ଅଧୁନାତନ ମାନୁଷଭାଷା ଜୀବନ୍ତ—ଏହିପରି ବୋଲିବା ଅସୂୟାବଶବର୍ତ୍ତୀ ମନୁଷ୍ୟ ବ୍ୟତୀତ ଅନ୍ୟଠାରେ ସମ୍ଭବ କି ନା, ତାହା ମଧ୍ୟ ସୁଧୀବର୍ଗର ବିବେଚ୍ୟ । ତେବେ ପରିବର୍ତ୍ତନଶୀଳ କାଳବଶରୁ ସମୟ ସମୟରେ ସମସ୍ତ ବିଷୟର ଉନ୍ନତି ଅବନତି ସଂସ୍କାର ଅସଂସ୍କାର ଏପରି କି ଆବିର୍ଭାବ ତିରୋଭାବ ପର୍ଯ୍ୟନ୍ତ ହୋଇଅଛି ଓ ହେବ । ସୁତରାଂ ବର୍ତ୍ତମାନ କାଳରେ ସଂସ୍କୃତ ଭାଷାର ଅବନତି ଘଟିଅଛି ଏହା ବୋଲିବା ଅନ୍ୟାଯ୍ୟ ନୁହେ । ତାହା ନ ହେଲେ ଆଜି ଏହି "ସାରସ୍ୱତ ସମିତି"ର ପ୍ରତିଷ୍ଠା ହୋଇଥାନ୍ତା କାହିଁକି ? ପ୍ରତିଷ୍ଠା ହେଲେ ସୁଦ୍ଧା "ସଂସ୍କୃତ ଭାଷାର ଉନ୍ନତି" ସମିତିର ଉଦ୍ଦେଶ୍ୟ ମଧ୍ୟରେ ପରିଗଣିତ ହୋଇଥାନ୍ତା କାହିଁକି ? ଅତଏବ ହିନ୍ଦୁମାନଙ୍କର ବୁଦ୍ଧି ବୀର୍ଯ୍ୟ ଶୌର୍ଯ୍ୟ ସହିତ ଦେବବାଣୀର ଯେ ଅବନତି ଘଟିଅଛି, ତହିଁରେ ସନ୍ଦେହ କଣ ? ସେ ଯାହା ହେଉ, ଅଦ୍ୟତନ ସମିତିରେ ପୂର୍ବକାଳୀନ ଶାସ୍ତ୍ରଚର୍ଚ୍ଚାର ସଂକ୍ଷିପ୍ତ ଇତିବୃତ୍ତ, ମଧ୍ୟରେ ଶାସ୍ତ୍ରଗ୍ରନ୍ଥର ବିନାଶ, ମୁସଲମାନ୍ ରାଜତ୍ୱ କାଳରେ ହିନ୍ଦୁଶାସ୍ତ୍ରର ଅବସ୍ଥା, ସମ୍ରାଟ୍ ଆକବରଙ୍କ ସମୟରେ ଶାସ୍ତ୍ରୀୟ ଗ୍ରନ୍ଥର ଆଦର, ବର୍ତ୍ତମାନ ସମୟର ଅବସ୍ଥା ଏବଂ କଣ କଲେ ଅବନତ ସଂସ୍କୃତ ଶାସ୍ତ୍ରର ଉନ୍ନତି ହୋଇ ପାରେ, ସେ ସମ୍ବନ୍ଧରେ କେତେ ଗୋଟି କଥା କହିବାକୁ ପ୍ରବୃତ୍ତ ହେଲି । ଆଶା କରେ ସମବେତ ସଭ୍ୟବୃନ୍ଦ ଧୈର୍ଯ୍ୟସହକାରେ ମୋ ବାକ୍ୟରେ କର୍ଣ୍ଣପାତ କରିବେ । ପୂର୍ବକାଳରେ ଏତଦ୍ଦେଶରେ ସଂସ୍କୃତ ଶାସ୍ତ୍ରର ଯେରୂପ ଚର୍ଚ୍ଚା ଥିଲା ବର୍ତ୍ତମାନ ତାହା ନାହିଁ । ହିନ୍ଦୁ ରାଜାମାନଙ୍କର ରାଜତ୍ୱ ସମୟରେ ଶାସ୍ତ୍ରର ଅନୁଶାସନକ୍ରମେ ସମାଜ ପରିଚାଳିତ ହେଉଥିଲା । ହିନ୍ଦୁଜାତି ଧର୍ମପ୍ରଧାନ । ହିନ୍ଦୁମାନେ ବିବେଚନା କରନ୍ତି କି କେବଳ ଭୋଗାର୍ଥ ନୁହେ, ପ୍ରଧାନତଃ ଧର୍ମସାଧନାର୍ଥ ସେମାନେ ଜନ୍ମପରିଗ୍ରହ କରିଅଛନ୍ତି । ହିନ୍ଦୁମାନଙ୍କ ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ କାର୍ଯ୍ୟମାତ୍ର ଧର୍ମାନୁଗତ, ଧର୍ମନିମନ୍ତେ ହିନ୍ଦୁମାନଙ୍କର କିଛିମାତ୍ର ଅଦେୟ ବା ଅକର୍ତ୍ତବ୍ୟ ନ ଥିଲା; ଏପରି କି ଧର୍ମନିମିତ୍ତ ଜୀବନପର୍ଯ୍ୟନ୍ତ ବିସର୍ଜ୍ଜନ କରିବାକୁ ସେମାନେ କୁଣ୍ଠିତ ହେଉ ନ ଥିଲେ । ଧର୍ମର କୌଣସି କ୍ଷତିକୁ ସେମାନେ ଅତ୍ୟନ୍ତ ଭୟ କରୁଥିଲେ । ଅଧ୍ୟୟନ ସେମାନଙ୍କର ଧର୍ମକର୍ମ ମଧ୍ୟରେ ପରିଗଣିତ ଥିଲା ।

ତପୋବିଶେଷୈର୍ବିବିଧୈର୍ବ୍ରତୈଶ୍ଚବିଧିଚୋଦିତୈଃ
ବେଦଃ କୃତ୍ସ୍ନୋଽଧିଗନ୍ତବ୍ୟଃ
ସରହସ୍ୟୋଦ୍ୱିଜନ୍ମନା ।

ଅର୍ଥାତ୍ ବହୁପ୍ରକାର ତପସ୍ୟାଦ୍ୱାରା ଶାସ୍ତ୍ରୋକ୍ତ ନାନାବିଧ ବ୍ରତ ଆଚରଣପୂର୍ବକ ଦ୍ୱିଜାତିମାନେ ଉପନିଷଦ୍ ଏବଂ ବେଦାଙ୍ଗ ସହିତ ବେଦ ଅଧ୍ୟୟନ କରିବେ । ମନୁସଂହିତାର ଏହି ବାକ୍ୟକୁ ସେମାନେ ଦୃଢ଼ବିଶ୍ୱାସ କରୁଥିଲେ; 'ସ୍ୱାଧ୍ୟାୟୋଽଧ୍ୟେତବ୍ୟଃ' ଏହାହିଁ ବ୍ରାହ୍ମଣମାନଙ୍କର ମୂଳମନ୍ତ୍ର ଥିଲା । ବେଦାଧ୍ୟୟନକୁ ସେମାନେ ଉତ୍କୃଷ୍ଟ ତପସ୍ୟାରୂପରେ କୀର୍ତ୍ତିତ କରୁଥିଲେ । କାରଣ ଧର୍ମଜ୍ଞାନ ବେଦାଧ୍ୟୟନସାଧ୍ୟ । ଅଧୁନାତନ ବେଦାଧ୍ୟାୟିମାନଙ୍କ ପରି ବେଦର ଅକ୍ଷର ଗ୍ରହଣମାତ୍ରରେ ଅଧ୍ୟୟନର ପୂର୍ତ୍ତି ସ୍ୱୀକାର କରି ନାହାନ୍ତି; ଅର୍ଥଜ୍ଞାନର ସମ୍ପୂର୍ଣ୍ଣ ଅବଶ୍ୟକତା ଉପଲବ୍ଧି କରୁଥିଲେ । ନିରୁକ୍ତରେ ସ୍ପଷ୍ଟାକ୍ଷରେ ଉକ୍ତ ଅଛି 'ସ୍ଥାଣୁରୟଂ ଭାରହାରଃ କିଲାଭୂଦଧୀତ୍ୟ ବେଦଂ ନ ବିଜାନାତି ଯୋଽର୍ଥଂ । ଯୋଽର୍ଥଜ୍ଞ ଇତ୍ ସକଲଂ ଭଦ୍ରମଶ୍ନୁତେ ନାକମେତି ଜ୍ଞାନବିଧୂତପାପ୍ମା ।'' ଯେ ବେଦ ଅଧ୍ୟୟନ କରି

ତାହାର ଅର୍ଥକୁ ନ ଜାଣେ ସେ ଗର୍ଦ୍ଦଭପ୍ରାୟ ଭାରବାହୀ ମାତ୍ର; ଯେ ବ୍ୟକ୍ତି ଅର୍ଥ ଜାଣନ୍ତି ସେ ସମ୍ପୂର୍ଣ୍ଣ ମଙ୍ଗଳ ପ୍ରାପ୍ତ ହୁଅନ୍ତି । ଅର୍ଥଜ୍ଞାନଦ୍ୱାରା ପାପସମସ୍ତ ବିନଷ୍ଟ ହୁଏ ଓ ସ୍ୱର୍ଗଲାଭ ହୁଏ । ଅର୍ଥ ଜାଣିବାକୁ ହେଲେ ଆପାତତଃ ବିରୁଦ୍ଧାର୍ଥକ-ରୂପରେ ପ୍ରତୀୟମାନ ବାକ୍ୟସମୂହର ମୀମାଂସା ଆବଶ୍ୟକ । ଦର୍ଶନଶାସ୍ତ୍ର ଭିନ୍ନ ସେ ମୀମାଂସାର ଅନ୍ୟ ଉପାୟ ନାହିଁ ।

ମନୁ ବୋଲନ୍ତି—"ଆର୍ଷଂ ଧର୍ମୋପଦେଶଞ୍ଚ
ବେଦଶାସ୍ତ୍ରାବିରୋଧିନା ।
ଯସ୍ତର୍କେଣାନୁସନ୍ଧତ୍ତେ ସ ଧର୍ମଂ ବେଦ
ନେତରଃ ।"

ବେଦ ଓ ସ୍ମୃତ୍ୟାଦି ଶାସ୍ତ୍ରକୁ ବେଦଶାସ୍ତ୍ରର ଅବିରୋଧୀ ତର୍କଦ୍ୱାରା ଯେ ବିଚାର କରନ୍ତି ସେହି କେବଳ ଧର୍ମ ତତ୍ତ୍ୱକୁ ଜାଣି ପାରନ୍ତି । ତର୍କାନଭିଜ୍ଞ ବ୍ୟକ୍ତି ଧର୍ମ ଜାଣିବାକୁ ଅସମର୍ଥ । ମନୁ ପୁନଶ୍ଚ ବୋଲିଅଛନ୍ତି—"ପ୍ରତ୍ୟକ୍ଷମନୁମାନଞ୍ଚ ଶାସ୍ତ୍ରଞ୍ଚ
ବିବିଧାଗମଂ ।
ତ୍ରୟଂ ସୁବିଦିତଂ କାର୍ଯ୍ୟଂ ଧର୍ମଶୁଦ୍ଧିମଭୀପ୍ସତା ।"

ବିଶୁଦ୍ଧ ଧର୍ମ ଜାଣିବାକୁ ହେଲେ ପ୍ରତ୍ୟକ୍ଷ ଅନୁମାନ ଓ ବିବିଧଶାସ୍ତ୍ର ଉତ୍ତମରୂପେ ଜାଣିବା ଉଚିତ । ମନୁ ଏତିମାତ୍ର ବୋଲି ନୀରବ ହୋଇ ନାହାନ୍ତି, ସୂକ୍ଷ୍ମଧର୍ମତତ୍ତ୍ୱର ନିରୂପଣ ନିମନ୍ତେ ପରିଷଦର ଆବଶ୍ୟକତା ମଧ୍ୟ ଲିପିବଦ୍ଧ କରି ଅଛନ୍ତି ।—

'ତ୍ରୈବିଦ୍ୟୋ ହୈତୁକସ୍ତର୍କୀ ନୈରୁକ୍ତୋ ଧର୍ମପାଠକଃ ।
ତ୍ରୟଶ୍ଚାଶ୍ରମିଣଃ ପୂର୍ବେ ପରିଷତ୍ ସ୍ୟାଦ୍ଦଶାବରା ।'

ତ୍ରିବେଦବେତ୍ତା ଅନୁମାନାଦିକୁଶଳ ତର୍କୀ ନିରୁକ୍ତାଭିଜ୍ଞ ଧର୍ମଶାସ୍ତ୍ରାଧ୍ୟେତା ବ୍ରହ୍ମଚାରୀ ଗୃହସ୍ଥ ଓ ବାନପ୍ରସ୍ଥ ଏହି ଦଶ ବ୍ୟକ୍ତିଦ୍ୱାରା ପରିଷଦ୍ ଗଠିତ ହୁଏ । ସୁଧୀମାନେ ବିବେଚନା କରନ୍ତୁ, ସଭାସମିତି ଅତି ପ୍ରାଚୀନ କାଳରୁ ଚଳି ଆସୁ-ଅଛି, ଆଜି ଏହା ନୂତନ ନୁହେଁ; କେବଳ ଆଧୁନିକ ଓ ପ୍ରାଚୀନ ପରିଷଦର କିଛିହି ପାର୍ଥକ୍ୟ ଅଛି ସନ୍ଦେହ ନାହିଁ । ତାହାର ଆଲୋଚନା ଏଠାରେ ଅପ୍ରାସଙ୍ଗିକ । ସୁତରାଂ ଧର୍ମତତ୍ତ୍ୱ ନିଷ୍କାସନ ନିମନ୍ତେ ପୂର୍ବକାଳୀନ ପରିଷଦର ପ୍ରତିଷ୍ଠା ହୋଇଥିଲା । ପୂର୍ବକାଳୀନ ହିନ୍ଦୁମାନେ କ୍ଷଣିକ ବୈଷୟିକ ସୁଖକୁ ସୁଖ ମଧ୍ୟରେ ଗଣନା କରୁ ନ ଥିଲେ । ବୈଷୟିକ ସୁଖକୁ ସେମାନେ ଦୁଃଖର ପ୍ରକାରାନ୍ତର ବୋଲି ମନେ କରୁଥିଲେ, ଏପରି କି ପାରଲୌକିକ ସ୍ୱର୍ଗସୁଖକୁ ମଧ୍ୟ ଉପେକ୍ଷା କରୁଥିଲେ; ଭୋଗବାସନା ସେମାନଙ୍କର ତ୍ରିସୀମା ସ୍ପର୍ଶ କରୁ ନ ଥିଲା, ଦେହଧାରଣୋପଯୋଗୀ ସାମାନ୍ୟ ଭୋଗରେ ତୃପ୍ତି ଲାଭ କରୁଥିଲେ, ସେଥିପାଇଁ ସେମାନଙ୍କର ଆଜନ୍ମବ୍ୟାପୀ କ୍ରିୟା-କଳାପ ଧର୍ମାନୁଗତ ଥିଲା । ଉପନୟନାନନ୍ତର ବ୍ରାହ୍ମଣମାନଙ୍କର ଗୁରୁକୁଳରେ ବାସ ଓ ବେଦା-ଧ୍ୟୟନ ବ୍ୟବସ୍ଥିତ ଥିଲା । ବେଦାଧ୍ୟୟନ ସମ୍ପୂର୍ଣ୍ଣ ହେଲେ ମଧ୍ୟ ଶୀଘ୍ର ଗୃହକୁ ପ୍ରତ୍ୟାବର୍ତ୍ତନର ବ୍ୟବସ୍ଥା ନ ଥିଲା, ବେଦାଧ୍ୟୟନ ଉତ୍ତାରୁ ବେଦ-ବାକ୍ୟ ବିଚାରଦ୍ୱାରା ଧର୍ମତତ୍ତ୍ୱ ଅବଗତ ହେବା ନିମନ୍ତେ ଗୁରୁକୁଳରେ ବାସପୂର୍ବକ ମୀମାଂସା-ଦର୍ଶନ ପଢ଼ିବାର ବ୍ୟବସ୍ଥା ଥିଲା । ମୀମାଂସାଦର୍ଶନ ଅଧ୍ୟୟନାନନ୍ତର ଗୁରୁଙ୍କର ଅନୁମତିକ୍ରମରେ ପ୍ରତ୍ୟାବୃତ୍ତ ହୋଇ ଗୃହସ୍ଥାଶ୍ରମରେ ପ୍ରବେଶ କରିବାର ପ୍ରଥା ଥିଲା । ଗୃହସ୍ଥାଶ୍ରମରେ ପ୍ରବେଶ କରି ମଧ୍ୟ ଅଧ୍ୟୟନ ଓ ଅଧ୍ୟାପନାର ବିରାମ ନ ଥିଲା, ବିଶେଷତଃ ଦର୍ଶନଶାସ୍ତ୍ରମାନଙ୍କର ସମ୍ପୂର୍ଣ୍ଣ ଆଲୋଚନା ହେଉଥିଲା । ଆତ୍ମସାକ୍ଷାତ୍କାର ପରମ ଧର୍ମ ବୋଲି ଶାସ୍ତ୍ରରେ କୀର୍ତ୍ତିତ ଅଛି । ଦର୍ଶନଶାସ୍ତ୍ର ଆତ୍ମସାକ୍ଷାତ୍କାରର ସୋପାନ ନିର୍ଦ୍ଦେଶ କରି ଦିଏ । ପୂର୍ବକାଳୀନମାନେ ଧର୍ମାର୍ଥ ଅଧ୍ୟୟନ କରୁଥିଲେ, ପରମଧର୍ମରୂପ ଆତ୍ମସାକ୍ଷାତ୍କାରନିମନ୍ତେ ତଦୁପଯୋଗୀ ଦର୍ଶନଶାସ୍ତ୍ର ସେମାନଙ୍କର ମନୋ-ଯୋଗପୂର୍ବକ ଅଧ୍ୟୟନର ବିଷୟୀଭୂତ ହୋଇଥିଲା, ଏହା ପ୍ରମାଣ କରିବାର ଚେଷ୍ଟା ଅନାବଶ୍ୟକ । ଋଷିମାନେ ଅଧ୍ୟାତ୍ମବିଦ୍ୟାର ବିଶେଷ ଆଦର କରୁ-

ଥିଲେ ବୋଲି ସେମାନଙ୍କ ପ୍ରଣୀତ ଦର୍ଶନଶାସ୍ତ୍ରସମୂହ ଅଧ୍ୟାତ୍ମବିଦ୍ୟାପରିପୂର୍ଣ୍ଣ । କେବଳ ପ୍ରସ୍ଥାନଭେଦ ହେତୁବାଦମତ୍ରେ ଭିନ୍ନ ଭିନ୍ନ ଦର୍ଶନରେ ନ୍ୟୂନାଧିକ ପରିମାଣରେ ଭୌତିକାଦି ପଦାର୍ଥର ଆଲୋଚନା ଅଛି ମାତ୍ର । ପ୍ରକୃତପକ୍ଷରେ ଭାରତୀୟ ଦର୍ଶନଶାସ୍ତ୍ରକୁ ଅଧ୍ୟାତ୍ମଦର୍ଶନ ବୋଲିବା ଅତ୍ୟୁକ୍ତି ନୁହେ । ଲୋକମାନଙ୍କର ରୁଚି ଭିନ୍ନ ଭିନ୍ନ, ସେଥିପାଇଁ ଦୟାଳୁ ଋଷିମାନେ ଭିନ୍ନ ଭିନ୍ନ ପ୍ରସ୍ଥାନ ଅବଲମ୍ବନ କରି ଦର୍ଶନସମୂହର ପ୍ରଣୟନ କରି ଯାଇଅଛନ୍ତି । ପ୍ରସ୍ଥାନ ଭିନ୍ନ ଭିନ୍ନ ହେଲେ ସୁଦ୍ଧା କୌଣସି ପ୍ରସ୍ଥାନ ଲକ୍ଷ୍ୟଭ୍ରଷ୍ଟ ହୋଇ ନାହିଁ । ରୁଚି ଅନୁସାରେ ଯେ ଯେଉଁ ପ୍ରସ୍ଥାନ ଅବଲମ୍ବନ କରନ୍ତୁ, ଶୀଘ୍ର ବା ବିଳମ୍ବରେ ସମସ୍ତେ ସେହି ଏକମାତ୍ର ଗନ୍ତବ୍ୟ ସ୍ଥାନରେ ଉପସ୍ଥିତ ହେବେ, ନିଃସନ୍ଦେହ । ଏଥିପାଇଁ ପୁଷ୍ପଦନ୍ତ ବୋଲିଅଛନ୍ତି—

"ରୁଚୀନାଂ ବୈଚିତ୍ର୍ୟାଦୃଜୁକୁଟିଳନାନାପଥଜୁଷାଂ
ନୃଣାମେକୋଗମ୍ୟସ୍ତ୍ୱମସି ପୟସାମର୍ଣ୍ଣବଇବ ।"

ଦର୍ଶନଶାସ୍ତ୍ର ହିନ୍ଦୁମାନଙ୍କର ଧର୍ମର ଉତ୍କୃଷ୍ଟ ପୁଷ୍ପ ଓ ଫଳ । ଏକଥା ଡକ୍ଟର ମୋକ୍ଷମୂଲର ମଧ୍ୟ ସ୍ୱୀକାର କରିଅଛନ୍ତି । ମୋକ୍ଷମୂଲର ଆହୁରି ବୋଲନ୍ତି, ମାଧ୍ୟମିକ ବା ଆଧୁନିକ ଇଉରୋପୀୟ ଦର୍ଶନ ଅପେକ୍ଷା ଭାରତୀୟ ପ୍ରାଚୀନ ଦର୍ଶନଶାସ୍ତ୍ର ଅନେକ ଜ୍ଞାନଗର୍ଭ । କେବଳ ମୋକ୍ଷମୂଲର କାହିଁକି ? ଇଉରୋପୀୟ ଅନେକ ପଣ୍ଡିତ ସ୍ୱଦେଶୀୟ ଦର୍ଶନ ଅପେକ୍ଷା ଭାରତୀୟ ଦର୍ଶନର ଉତ୍କର୍ଷ ବିଷୟରେ ସ୍ପଷ୍ଟ ସାକ୍ଷ୍ୟ ଦେଇଅଛନ୍ତି । ହିନ୍ଦୁ ଦର୍ଶନର ମୁଖ୍ୟ ଉଦ୍ଦେଶ୍ୟ ଆତ୍ମଜ୍ଞାନ । ଗ୍ରୀକ୍ ଦାର୍ଶନିକ ସକ୍ରେଟିସ 'କୋଽହଂ' ଅର୍ଥାତ୍ ଆତ୍ମଜ୍ଞାନ ଜାଣିବାପାଇଁ ଉପଦେଶ ଦେଇଅଛନ୍ତି; ଏହା ମୁଁ ଅବଶ୍ୟ ସ୍ୱୀକାର କରେ ଯେ ବିଜ୍ଞାନ ସାହାଯ୍ୟରେ ଅନେକ ଦୁରଧିଗମ୍ୟ ବିଷୟର ଅଧିଗମ ହେଉଅଛି ସତ୍ୟ, କିନ୍ତୁ ଆତ୍ମଜ୍ଞାନ ବିଷୟରେ ବିଜ୍ଞାନ ଅପୋଗଣ୍ଡ ଶିଶୁ ବୋଲିଲେ ଅତ୍ୟୁକ୍ତି ହେବ ନାହିଁ । ଯେହେତୁ ଆତ୍ମଜ୍ଞାନ ବିଷୟରେ ବିଜ୍ଞାନ ସୂଚପରିମିତ ସ୍ଥାନରୁ ଅଗ୍ରସର ହୋଇ ନାହିଁ । ଜର୍ମନର ସର୍ବୋଚ୍ଚ ଦାର୍ଶନିକ ସୋପେନହାର ପ୍ରକାଶ୍ୟ ଭକ୍ତିଭାବରେ ବୋଲିଅଛନ୍ତି "ଭାରତୀୟ ନିର୍ଜନ ବନର ନିସ୍ତବ୍ଧତା ମଧ୍ୟରେ ଯେ ଆତ୍ମଜ୍ଞାନର ପ୍ରକାଶ ହୋଇଥିଲା, ଜନାକୀର୍ଣ୍ଣ କୋଳାହଳପୂର୍ଣ୍ଣ ରାଜମାର୍ଗରେ ମଧ୍ୟ ତାହା ଦୁର୍ଲଭ । ଭାରତୀୟ କାବ୍ୟ ଓ ଦର୍ଶନ ସମ୍ପ୍ରତି ଇଉରୋପରେ ପ୍ରଚଳିତ ହେବାର ଆରମ୍ଭ ହୋଇଅଛି; ଅଭିନିବିଷ୍ଟଚିତ୍ତରେ ତାହା ପାଠ କଲେ ବୁଝି ପାରିବୁଁ ଯେ ତହିଁରେ ଏତେ ଗଭୀର ତତ୍ତ୍ୱ ନିହିତ ଅଛି ଯାହାର ତୁଳନାରେ ଇଉରୋପୀୟ ଦର୍ଶନ ଅତି ସାମାନ୍ୟ ବୋଲି ପ୍ରତୀତ ହୁଏ । ସୁତରାଂ ଆମ୍ଭେମାନେ ଭାରତୀୟ ଦର୍ଶନକର୍ତ୍ତାଙ୍କ ଉଦ୍ଦେଶରେ ପ୍ରଣତ ନ ହୋଇ ରହି ପାରୁନାହୁଁ ।" ପଣ୍ଡିତପ୍ରବର ଦାର୍ଶନିକଙ୍କ ଉକ୍ତି ଏହିପରି । ଫ୍ରେଡରିକ୍ ଶ୍ଲିଗଲ୍ ବୋଲନ୍ତି, ଗ୍ରୀସୀୟ ଦର୍ଶନର ଯୁକ୍ତିତତ୍ତ୍ୱ ଭାରତୀୟ ଦର୍ଶନର ଯୁକ୍ତିତତ୍ତ୍ୱ ସମୀପରେ ପ୍ରଚଣ୍ଡ ଦିବାଲୋକରେ ନିର୍ବାଣୋନ୍ମୁଖ କ୍ଷୀଣପ୍ରଭ ପ୍ରଦୀପପ୍ରାୟ ପ୍ରତୀୟମାନ ହୁଏ । ସେ ଆହୁରି ବୋଲନ୍ତି କି ପୁରାକାଳରେ ଭାରତୀୟମାନେ ଯଥାର୍ଥ ଈଶ୍ୱରଜ୍ଞାନ ଲାଭ କରିଥିଲେ । ଏହା ହିଁ ଫ୍ରେଡରିକ୍ ଶ୍ଲିଗଲ୍ ମହୋଦୟଙ୍କ ଉକ୍ତି । ଡକ୍ଟର ହୋଜନ୍ ଦେଶୀୟ ଶାସ୍ତ୍ରର ପକ୍ଷପାତୀ ହୋଇ ସୁଦ୍ଧା ବୋଲିବାକୁ ବାଧ୍ୟ ହୋଇଥିଲେ ଯେ ଉପନିଷଦ୍ ଅଧ୍ୟୟନ ଅପେକ୍ଷା ମଙ୍ଗଳଦାୟକ ଓ ଉନ୍ନତିସାଧକ ଅଧ୍ୟୟନ ଏହି ଜଗତରେ ନାହିଁ । ଉପନିଷତ୍ ଅଧ୍ୟୟନରେ ଉକ୍ତ ମହାତ୍ମା ଜୀବଦ୍ଦଶାରେ ଯାଦୃଶ ଶାନ୍ତି ପାଇଥିଲେ, ମୃତ୍ୟୁକାଳରେ ମଧ୍ୟ ସେହିପରି ଶାନ୍ତି ପାଇବେ, ଏରୂପ ଆଶା ମଧ୍ୟ କରିଥିଲେ । ଡକ୍ଟର ମୋକ୍ଷମୂଲର ଏହି ମତ ସମର୍ଥନ କରି ବୋଲନ୍ତି କି ମନୁଷ୍ୟମାନଙ୍କୁ ସୁଖରେ ମୃତ୍ୟୁର ସମ୍ମୁଖୀନ କରିବା ଯଦି ଦର୍ଶନଶାସ୍ତ୍ରର ଉଦ୍ଦେଶ୍ୟ, ତେବେ ତାହା ଭାରତୀୟ ବେଦାନ୍ତ ଦର୍ଶନଦ୍ୱାରା ଏକମାତ୍ର ସୁସିଦ୍ଧ ହୋଇ-

ଅଛି । ସର ୱିଲିୟମ୍ ଜୋନସ୍ କହନ୍ତି, ଭାରତୀୟ ବେଦାନ୍ତାଦି ଦର୍ଶନର ସୂତ୍ରରୁ ପ୍ରଣିଧାନ-ମାନ ପାଠ କଲେ ଏହା ଜଣାଏ କଥା ସତ୍ୟରେ ବୋଧ ହେବାକୁ ହୁଏ ଯେ ଗ୍ରୀକୀୟ ପିଥାଗୋରସ ବା ପ୍ଲେଟୋ ସେମାନଙ୍କ ଉଚ୍ଚ ଯୁକ୍ତିପ୍ରମାଣକୁ ଭାରତୀୟ ଜ୍ଞାନୀମାନଙ୍କର ଉତ୍ସରୁ ପ୍ରାପ୍ତ କରିଥିଲେ । ଅତଃପର ସଭ୍ୟଜଗତ ବିବେଚନା କରନ୍ତୁ ଯେ ଯୁରୋପୀୟ ଦୂରଦର୍ଶୀ ପଣ୍ଡିତମଣ୍ଡଳୀ କେହି ଗୁପ୍ତ ଭାବରେ, କେହି ବା ପ୍ରକାଶ୍ୟରୂପେ ସ୍ୱୀକାର କରିବାକୁ ବାଧ୍ୟ ହୋଇଅଛନ୍ତି କି ଯୁରୋପୀୟ ଦର୍ଶନ ଭାରତୀୟ ଦର୍ଶନରୁ ସଂଗୃହୀତ । ଏହା ସମ୍ଭବପର ହୋଇ ପାରେ; କାରଣ ଗ୍ରୀସ୍ ଦେଶ ଯୁରୋପୀୟ ଦର୍ଶନର ଓ ସଭ୍ୟତାର ଆଦ୍ୟ ପ୍ରକାଶସ୍ଥାନ । ଗ୍ରୀସ୍ ଦେଶରୁ ଯୁରୋପର ଅନ୍ୟାନ୍ୟ ଦେଶରେ ଶିକ୍ଷା ଓ ସଭ୍ୟତାର ବିସ୍ତାର ହୋଇଅଛି, ଏ ବିଷୟରେ ଯୁରୋପୀୟମାନଙ୍କର ମତଭେଦ ନାହିଁ । ଆଧୁନିକ ଯୁରୋପୀୟମାନଙ୍କ ମତ ଅନୁରୂପ ହେଲେ ମଧ୍ୟ ଗ୍ରୀକୀୟମାନଙ୍କ ମତରେ ମିଶର ଦେଶରେ ପ୍ରଥମ ସଭ୍ୟତାର ଉତ୍ପତ୍ତି ହୁଏ । ଗ୍ରୀକୀୟମାନେ ତାହା ସ୍ୱଦେଶକୁ ନେଇଯାଇଥିଲେ ଅଥବା ମିଶର ଦେଶୀୟମାନେ ଗ୍ରୀସରେ ଯାଇ ବାସ କରିବାରୁ ଗ୍ରୀସ୍ ଦେଶରେ ସଭ୍ୟତାର ବିକାଶ ହେଲା । ଗ୍ରୀକୀୟ ସର୍ବପ୍ରଥମ ଦାର୍ଶନିକ ପିଥାଗୋରସ୍ ମିଶର ଦେଶରେ ଶିକ୍ଷା ଲାଭ କରିଥିଲେ । ସେ ମିଶର ଦେଶରେ ଶିକ୍ଷିତ ହୋଇ ଏସିଆଖଣ୍ଡର ନାନାଦେଶ ପରିଭ୍ରମଣ କରି ସ୍ୱଦେଶକୁ ପ୍ରତ୍ୟାଗମନ କଲେ ଏବଂ ଇଟାଲିର କ୍ରୋଟନ ନଗରରେ ଅଧ୍ୟାପନା କରିଥିଲେ । ତାହାଙ୍କ ଦର୍ଶନରେ ଜନ୍ମାନ୍ତର ଅଙ୍ଗୀକୃତ ଓ ଆମିଷଭୋଜନ ପାପଜନକ ବୋଲି ସ୍ଥିରୀକୃତ ହୋଇଅଛି । ପ୍ଲେଟୋ ଯୁରୋପର ସର୍ବୋତ୍କୃଷ୍ଟ ଦାର୍ଶନିକ ଏବଂ ପ୍ଲେଟୋଙ୍କ ଦର୍ଶନ ଯୁରୋପର ସର୍ବୋତ୍କୃଷ୍ଟ ଦର୍ଶନ । ପ୍ଲେଟୋ ମଧ୍ୟ ମିଶର ଦେଶରେ ବହୁଦିନ ବାସ କରି ଶିକ୍ଷାଲାଭ ସମାପ୍ତ କରିଥିଲେ; ସେ ପରଲୋକ ସ୍ୱୀକାର କରନ୍ତି ଏବଂ ଏକେଶ୍ୱରବାଦ ଥିଲେ । ଅନେକେ ଅନୁମାନ କରନ୍ତି ଯେ ସେ ମିଶର ବା ଇଜିପ୍ଟରେ ଏକେଶ୍ୱରବାଦ ଅବଗତ ହୋଇଥିଲେ । ଫଳତଃ ପୂର୍ବକାଳରେ ଇଜିପ୍ଟ ଯୁରୋପୀୟମାନଙ୍କର ଉଚ୍ଚ ଶିକ୍ଷାର ସ୍ଥାନ ଥିଲା; ଯେପରି ନବଦ୍ୱୀପ କାଶୀ ପ୍ରଭୃତି ବିଦ୍ୟାପୀଠରେ ବେଦାନ୍ତ ଅଧ୍ୟୟନ ନ କଲେ ଅସ୍ମଦ୍ଦେଶୀୟମାନଙ୍କର ଶିକ୍ଷା ଉଚ୍ଚଶିକ୍ଷା ବୋଲି ପରିଗଣିତ ହୁଏ ନାହିଁ, ସେହିପରି ଇଜିପ୍ଟରେ ଅଧ୍ୟୟନ ନ କଲେ ଯୁରୋପୀୟମାନଙ୍କର ଶିକ୍ଷା ଉଚ୍ଚତା ପ୍ରାପ୍ତ ହେଉ ନ ଥିଲା । ତତ୍କାଳୀନ ଯୁରୋପୀୟମାନଙ୍କ ପକ୍ଷରେ ମିଶର ଦେଶ ନବଦ୍ୱୀପ ଅଥବା କାଶୀ ତୁଲ୍ୟ ଥିଲା । ମିଶରଦେଶର ସଂସ୍କୃତ ନାମ ମିଶ୍ର ଦେଶ । ଇଟାଲୀୟ ବ୍ୟକ୍ତିମାନେ କହନ୍ତି, ଅତି ପୂର୍ବକାଳରେ ଏହି ମିଶର ବା ମିଶ୍ର ଦେଶ ଅତି ଉଚ୍ଚଶ୍ରେଣୀର ବାଣିଜ୍ୟସ୍ଥାନ ଥିଲା; ଭାରତୀୟ ଆର୍ଯ୍ୟମାନେ ବାଣିଜ୍ୟ ଉପଲକ୍ଷରେ ପ୍ରାୟଶଃ ସେଠାକୁ ଯାଉଥିଲେ ଏବଂ ସାମୟିକ ବାସ କରୁଥିଲେ । ପ୍ରାଚ୍ୟ ଏବଂ ପ୍ରତୀଚ୍ୟ ଦେଶୀୟ ଲୋକମାନେ ସେହିଠାରେ ମିଳିତ ହେଉଥିଲେ ବୋଲି ତାହାର ନାମ ମିଶ୍ରଦେଶ ହୋଇଥିଲା । ଆର୍ଯ୍ୟ ଅର୍ଥ ସଭ୍ୟ । ଅମର କହନ୍ତି—"ମହାକୁଳକୁଲୀନାର୍ଯ୍ୟ ସଭ୍ୟସଜ୍ଜନସାଧବଃ ।" ମହାକୁଳ, କୁଲୀନ, ଆର୍ଯ୍ୟ, ସଭ୍ୟ, ସଜ୍ଜନ ଓ ସାଧୁ ଏହି କେତେଗୋଟି ଶବ୍ଦକୁ ଏକାର୍ଥ ବୋଲନ୍ତି । ଏହି ଆର୍ଯ୍ୟମାନଙ୍କ ଦ୍ୱାରା ମିଶର ଦେଶରେ ସଭ୍ୟତାର ବିସ୍ତାର ହୋଇଥିଲା । ଅତି ପୂର୍ବକାଳରେ ଯୁରୋପୀୟମାନଙ୍କର ଏସିଆଖଣ୍ଡ ପ୍ରାୟଶଃ ପରିଜ୍ଞାତ ଥିଲା । ସେମାନଙ୍କର ପରିଜ୍ଞାତ ଦେଶସମୂହ ମଧ୍ୟରେ ସେମାନେ ମିଶର ଦେଶକୁ ସଭ୍ୟତାର ଆଦି ଜନ୍ମଭୂମିରୂପରେ ନିର୍ଦ୍ଦେଶ କରିଅଛନ୍ତି । ପିଥାଗୋରସଙ୍କ ସମୟରେ ଏସିଆଖଣ୍ଡର ଅନେକ ଦେଶ ପରିଜ୍ଞାତ ହୋଇଅଛି । ସେ ମହାତ୍ମା ମିଶର ଦେଶରେ ଶିକ୍ଷା ସମାପନ କରି ଏସିଆଖଣ୍ଡର

ଅନେକ ଦେଶ ପରିଭ୍ରମଣ କରିଥିଲେ । ଏହି ପିଥାଗୋରସ, ପ୍ଲେଟୋ ଓ ସୋପେନହାଉର ପ୍ରଭୃତି ଭାରତୀୟ ଦର୍ଶନଶାସ୍ତ୍ରକୁ ବହୁତ ଉଚ୍ଚାସନ ପ୍ରଦାନ କରିଅଛନ୍ତି, ତାହା ଇତିହାସଜ୍ଞ ବ୍ୟକ୍ତି-ମାତ୍ରେ ଅବଗତ ଅଛନ୍ତି । ସେ ଯାହାହେଉ, ଇଉରୋପୀୟ ମନୀଷିମାନେ ଯେ ଭାରତୀୟ ଦର୍ଶନରେ ସମ୍ୟକ ଅଭିଜ୍ଞ ଓ ଭକ୍ତିମାନ୍, ଏ ବିଷୟ ପ୍ରତିପନ୍ନ କରିବାକୁ ବିସ୍ତର ବାହ୍ୟବ୍ୟୟ ଅନାବଶ୍ୟକ । ଭାରତୀୟ ଦର୍ଶନର ଅମୂଲ୍ୟ ବୀଜ ଯେ ଦେଶାନ୍ତରରେ ଫଳମିତ ହୋଇଅଛି, ଏହା ମଧ୍ୟ ଇତିହାସାଭିଜ୍ଞ ବ୍ୟକ୍ତିମାନଙ୍କର ଅବିଦିତ ନାହିଁ । କିନ୍ତୁ କି ପରିତାପର ବିଷୟ, ପୁତ୍ର ଅଦ୍ୟ ପିତୃସମ୍ପତ୍ତିର ଅଧିକାରରୁ ବଞ୍ଚିତ ! ଭାରତବାସୀ ହିନ୍ଦୁ ଅଦ୍ୟ ସେହି ହିନ୍ଦୁଦର୍ଶନଶାସ୍ତ୍ରର ଅନୁଶୀଳନରେ ସମ୍ପୂର୍ଣ୍ଣ ପରାଙ୍ମୁଖ ! ଯେଉଁ ବେଦ ଦର୍ଶନରେ ଲକ୍ଷଯୋଜନସ୍ଥିତ ଭୂତଦିପୋଟଳ ଅଣ୍ଟୁ, ସେହି ବେଦ ଆମ୍ଭମାନଙ୍କ ଗୃହଗଗନକୋଣରେ ବର୍ତ୍ତ-ମାନ; କିନ୍ତୁ ହାୟ ! ତଥାପି ଆମ୍ଭେମାନେ ଜ୍ଞାନ-ତୃଷ୍ଣପିପାସିତ ! ଏହା ଅପେକ୍ଷା ପରିତାପର ବିଷୟ ଆଉ କଣ ହୋଇ ପାରେ ? ଅବଶ୍ୟ ଉନ୍ନତ ବ୍ୟକ୍ତିମାନଙ୍କର ଔଦାସୀନ୍ୟ ଅଥବା କାଳର କୁଟିଳ କଟାକ୍ଷ ଏହାର ଅନନ୍ୟ ନିଦାନ, ସନ୍ଦେହ ନାହିଁ । ମନୁ କହିଛନ୍ତି—

"ପିତା ମାତା ଗୁରୁର୍ଭ୍ରାତା ପ୍ରଜାଦାରାଃ ସମାଶ୍ରିତାଃ ।
ଅଭ୍ୟାଗତୋଽତିଥିଶ୍ଚୈବ ପୋଷ୍ୟବର୍ଗ
ଉଦାହୃତଃ ॥"

ପିତା, ମାତା, ଗୁରୁ, ଭ୍ରାତା, ପ୍ରଜା, ଦାର, ସମାଶ୍ରିତ, ଅଭ୍ୟାଗତ ଓ ଅତିଥି ପୋଷ୍ୟବର୍ଗ ମଧ୍ୟରେ ପରିଗଣିତ । ପୂର୍ବକାଳରେ ହିନ୍ଦୁରାଜା-ମାନେ ଏହି ଅନୁଶାସନର ବଶବର୍ତ୍ତୀ ହୋଇ କୁଳବିଦ୍ୟ ବ୍ରାହ୍ମଣମାନଙ୍କର ଶାସ୍ତ୍ରଜ୍ଞାନ ଓ ଧର୍ମାନୁ-ଷ୍ଠାନର ଅମୂଲ୍ୟ ସମ୍ପତ୍ତିକୁ ହୃଦୟବନ୍ଦନୀରେ ଅପ-ବ୍ୟୟିତ କରିବାକୁ ଦେଉ ନ ଥିଲେ । ବିଦ୍ୱଜ୍ଜ-ମଣ୍ଡଳୀ ଅର୍ଥ ବିଷୟରେ ନିଶ୍ଚିନ୍ତ ହୋଇ ସମସ୍ତ ଜୀବନ ଧର୍ମସାଧନା ଓ ଅଧ୍ୟାପନାରେ ନିଯୁକ୍ତ ରହୁଥିଲେ । ସେମାନେ ଆପସ୍ତମ୍ବବଚନକୁ ଅର୍ଥାତ୍—

"ଆମ୍ରେ ଫଳାର୍ଥେ ନିମିତ୍ତେ ଛାୟାଗନ୍ଧାବନୁ-
ତ୍ପଦ୍ୟେତେ ।
ଏବଂ ଧର୍ମଂ ଚର୍ଯ୍ୟମାଣମର୍ଥା ଅନୂତ୍ପଦ୍ୟନ୍ତେ ॥"

ଫଳାର୍ଥ ଆମ୍ବ ରୋପଣ କଲେ ଛାୟା ଓ ଗନ୍ଧ ଯେପରି ଆନୁଷଙ୍ଗିକ ମିଳେ, ସେହିପରି ଧର୍ମ ଆଚରଣ କଲେ ଅର୍ଥ ସ୍ୱୟଂ ଉତ୍ପନ୍ନ ହୁଏ—ଏହି ବାକ୍ୟରେ ସମ୍ପୂର୍ଣ୍ଣ ବିଶ୍ୱାସ କରୁଥିଲେ । ତତ୍-କାଳୀନ ସ୍ୱଧର୍ମନିଷ୍ଠ କର୍ତ୍ତବ୍ୟପରାୟଣ ହିନ୍ଦୁରାଜା-ମାନଙ୍କ କୃପାରୁ ତାହା ମଧ୍ୟ କାର୍ଯ୍ୟରତ ହେଉ-ଥିଲା । ଅଧ୍ୟାପକ ବ୍ରାହ୍ମଣମଣ୍ଡଳୀ ଅନାବୃତ ଅପଦ୍ କମିତ୍ତ ଅଣମାଷ ଭୀତ ବା ଚିନ୍ତିତ ହେଉ ନ ଥିଲେ । ପିତା ଯେପରି ଔରସ ପୁତ୍ରମାନଙ୍କୁ ରକ୍ଷା କରନ୍ତି, ହିନ୍ଦୁରାଜାମାନେ ବିଦ୍ୱାନ୍ ବ୍ରାହ୍ମଣ-ମାନଙ୍କୁ ସର୍ବଦା ରକ୍ଷା କରୁଥିଲେ । ପରିତାପର ସହିତ କହିବାକୁ ହେଉଅଛି ଯେ ସେ କାଳ ଆଉ ନାହିଁ । ଅଥଚ ପୂର୍ବକାଳରେ ଯେ ପରିମାଣରେ ଦୂରଦର୍ଶୀମାନଙ୍କର ଆବିର୍ଭାବ ହୋଇଥିଲା, ସେହି ପରିମାଣରେ ଶାସ୍ତ୍ରଗ୍ରନ୍ଥ ମଧ୍ୟ ସମ୍ପାଦିତ ହେବାର ନାହିଁ । ତାହାର ଅନ୍ୟତମ କାରଣ ଏହି ଯେ ବୌଦ୍ଧମାନଙ୍କ ଅଭ୍ୟୁଦୟ ସମୟରେ ଅନେକ ଶାସ୍ତ୍ରଗ୍ରନ୍ଥ ବିନଷ୍ଟ ହୋଇ ଯାଇଅଛି । ତାହାର ଇତିହାସ ଏହିପରି ମିଳେ—ଧାରେଶ୍ୱର ମହାରାଜ ଭୋଜଦେବଙ୍କ ପ୍ରଣୀତ ସ୍ମୃତିସଂଗ୍ରହ ନାମକ ଗ୍ରନ୍ଥର ଉପକ୍ରମଣୀକାରେ ଲେଖିଅଛନ୍ତି, ଭୋଜ ଦେବଙ୍କ ଦୌହିତ୍ର ଏବଂ ବିଶ୍ୱାସନାମା ବିକ୍ରମା-ଦିତ୍ୟଙ୍କ ପୁତ୍ର ଉଜ୍ଜୟିନୀର ମହାରାଜ ମହାଦିତ୍ୟ ଅକାଳରେ କାଳଗ୍ରାସରେ ପତିତ ହେବାରୁ ତାହାଙ୍କ ମୃତ ଦେହ ସତ୍କାରାର୍ଥ ଶ୍ମଶାନକୁ ନେଉଥି-ବେଳେ ନାନ ହେଲା, ତତ୍ସମୟରେ ତିନି ବୌଦ୍ଧ ଯୋଗୀ ଆତ୍ମଶ୍ରେଷ୍ଠତ୍ୱ ସ୍ଥାପନ ନିମିତ୍ତ

ଯୋଗପ୍ରଭାବରୁ ମହାରାଜ ମହାଦିତ୍ୟଙ୍କ ଦେହ ମୃତ ଦେହରେ ପ୍ରବିଷ୍ଟ ହୋଇଥିଲେ । ଶ୍ମଶାନରେ ମହାରାଜ ଜୀବିତ ହୋଇ ଉଠିଲେ, ରାଜ୍ୟମଧ୍ୟ ଆନନ୍ଦକୋଳାହଳ ପଡ଼ିଗଲା । କିଛିଦିନ ଉତ୍ତାରୁ ସେହି ମହାଦିତ୍ୟ ଗୋଟିଏ ଯଜ୍ଞର ଅନୁଷ୍ଠାନ କରିବେ ବୋଲି ସ୍ୱୀୟ ମନ୍ତ୍ରିମାନଙ୍କଠାରେ ଇଚ୍ଛା ପ୍ରକାଶ କଲେ । ମନ୍ତ୍ରିମାନେ ତାହାର ଅନୁମୋଦନ କରିବାରୁ କହିଲେ, ଭାରତବର୍ଷୀୟ ସମସ୍ତ ପଣ୍ଡିତ ସମସ୍ତ ଧର୍ମପୁସ୍ତକ ଘେନି ଉଜ୍ଜୟିନୀରେ ସମବେତ ହେଉନ୍ତୁ; ସେମାନେ ଧର୍ମପୁସ୍ତକ ଆଲୋଚନା କରି ଏକମତରେ ଯେଉଁ ଯଜ୍ଞକୁ ଉତ୍କୃଷ୍ଟ ବୋଲି ସ୍ଥିର କରିବେ, ତାହାର ଅନୁଷ୍ଠାନ କରାଯିବ । ମନ୍ତ୍ରିମାନଙ୍କ ଯତ୍ନରେ ରାଜାଜ୍ଞା ସର୍ବତ୍ର ସମ୍ପାଦିତ ହେଲା । ପଣ୍ଡିତମାନଙ୍କ ନିର୍ଦ୍ଦେଶାନୁସାରେ ଶିପ୍ରାନଦୀତଟରେ ଦୀର୍ଘାୟତନ ଯଜ୍ଞବାଟୀ ଏବଂ ବୃହତ୍ ବୃହତ୍ ଯଜ୍ଞକୁଣ୍ଡମାନ ପ୍ରସ୍ତୁତ ହେଲା; ଯଜ୍ଞଦୀକ୍ଷାର ଦିନ ମଧ୍ୟ ଅବଧାରିତ ହେଲା । ପଣ୍ଡିତମାନେ ସ୍ୱ ସ୍ୱ ଧର୍ମପୁସ୍ତକ ସହ ସମବେତ ହେଲେ । ଇତିମଧ୍ୟରେ ଦିନେ ମହାଦିତ୍ୟ କୌଣସି କୌଶଳରେ ପଣ୍ଡିତମାନଙ୍କୁ ରାଜଧାନୀରୁ କିଛି ଦୂରକୁ ପଠାଇ ଦେଲେ । ପଣ୍ଡିତବର୍ଗ ରାଜଧାନୀରୁ ସ୍ଥାନାନ୍ତରିତ ହେବାରୁ ସେହି ସୁଯୋଗରେ ମହାଦିତ୍ୟଙ୍କ ଆଜ୍ଞାକ୍ରମେ ଯଜ୍ଞକୁଣ୍ଡମାନ ପ୍ରଜ୍ୱଳିତ ହେଲା, ସେହି ପ୍ରଜ୍ୱଳିତ ଅଗ୍ନିରେ ପଣ୍ଡିତମାନଙ୍କର ଆନୀତ ପ୍ରାଣସମ ଧର୍ମପୁସ୍ତକମାନେ ନିକ୍ଷିପ୍ତ ଓ ଭସ୍ମୀଭୂତ ହେଲେ । ଯଥାସମୟରେ ପଣ୍ଡିତମାନେ ରାଜଧାନୀକୁ ପ୍ରତ୍ୟାବୃତ୍ତ ହୋଇ ଏହି ସମସ୍ତ ଶୋଚନୀୟ ବୃତ୍ତାନ୍ତ ଅବଗତ ହେଲେ ଏବଂ ଦୁଃଖସନ୍ତପ୍ତ ହୃଦୟରେ ସ୍ୱ ସ୍ୱ ଗୃହକୁ ପ୍ରତ୍ୟାଗମନ କଲେ । ସେହି ମହାଦିତ୍ୟ ବୌଦ୍ଧ-ଧର୍ମର ବହୁଳପ୍ରଚାର ମାନସରେ ରାଜ୍ୟମଧ୍ୟରେ ଅତ୍ୟାଚାର କରିବାକୁ ଆରମ୍ଭ କଲେ । କ୍ରମେ ଏହି ବୃତ୍ତାନ୍ତ ମହାରାଜ ଭୋଜଙ୍କ କର୍ଣ୍ଣଗତ ହେଲା । ମହାଦିତ୍ୟ ତାହାଙ୍କ ଦୌହିତ୍ର ଏବଂ ବିକ୍ରମାଦିତ୍ୟଙ୍କ ପୁତ୍ର । କି ନିମିତ୍ତ ତାହାଙ୍କର ଏତାଦୃଶ ଦୁର୍ମତି ହେଲା, ଏହା ଚିନ୍ତା କରି ଭୋଜରାଜ ଅତ୍ୟନ୍ତ ବ୍ୟଥିତ ହେଲେ; ଜ୍ୟୋତିଷ ଗଣନାଦ୍ୱାରା ସ୍ଥିରୀକୃତ ହେଲା ଯେ ପ୍ରକୃତ ମହାଦିତ୍ୟ ଜୀବିତ ନାହାନ୍ତି; ମହାଦିତ୍ୟଙ୍କ ମୃତ ଶରୀରରେ ଜଣେ ବୌଦ୍ଧ ପରକାୟ ପ୍ରବେଶ କରି ଅଧିଷ୍ଠିତ ଅଛି । ଅବିଳମ୍ବେ ଧାରାନଗରୀରେ ପରକାୟ ପ୍ରବେଶର ବିପକ୍ଷ ଯଜ୍ଞ ଅନୁଷ୍ଠିତ ହେଲା । ଯେଉଁ ଦିନ ଯେଉଁ ସମୟରେ ଧାରାନଗରୀରେ ଅନୁଷ୍ଠିତ ଯଜ୍ଞ ପରିସମାପ୍ତ ହେଲା, ସେହି ଦିନ ସେହି ସମୟରେ ମହାଦିତ୍ୟଙ୍କ ଦେହ ପ୍ରାଣବିମୁକ୍ତ ହେଲା । ତତ୍ପରେ ଭାରତବର୍ଷର ଯେଉଁଠାରେ ଯେଉଁ ଶାସ୍ତ୍ରଗ୍ରନ୍ଥ ଅବଶିଷ୍ଟ ଥିଲା ତତ୍ସମସ୍ତ ସଂଗ୍ରହ କରି ଏବଂ ସମବେତ ପଣ୍ଡିତ-ମଣ୍ଡଳୀଙ୍କ କଣ୍ଠସ୍ଥ ଶାସ୍ତ୍ରବାକ୍ୟସମୂହ ସଂଗ୍ରହ କରି ମହାରାଜ ଭୋଜ ନାମଧେନୁଗ୍ରନ୍ଥ ରଚନା କଲେ । ଉକ୍ତ ମହାରାଜ ଯେଉଁ ଶାସ୍ତ୍ରଗ୍ରନ୍ଥମାନ ସମ୍ପୂର୍ଣ୍ଣ ଆକାରରେ ଏବଂ ଯେଉଁ ଯେଉଁ ଗ୍ରନ୍ଥର ଯେଉଁ ଯେଉଁ ଅଂଶ ପ୍ରାପ୍ତ ହୋଇଥିଲେ ନାମଧେନୁ ପ୍ରାରମ୍ଭରେ ତାହାର ଗୋଟିଏ ବିସ୍ତୃତ ତାଲିକା ଦେଇଅଛନ୍ତି । ସୁଧୀମାନେ ବିବେଚନା କରନ୍ତୁ କି ଏହା ହିନ୍ଦୁମାନଙ୍କ ଭାଗ୍ୟବିପର୍ଯ୍ୟୟର ପ୍ରଥମ ସୂତ୍ରପାତ । ଅନ୍ୟପ୍ରକାରେ ମଧ୍ୟ ହିନ୍ଦୁ ଶାସ୍ତ୍ରମାନଙ୍କର ଯେ ବିଲୋପ ଘଟିଅଛି, ଐତିହାସିକମାନଙ୍କର ତାହା ଅପରିଜ୍ଞାତ ନାହିଁ । ମହାରାଷ୍ଟ୍ରୀୟମାନଙ୍କ ଅଭ୍ୟୁଦୟ କାଳରେ ସହ୍ୟାଦ୍ରିଖଣ୍ଡ ପୁସ୍ତକ ବିନଷ୍ଟ ହୋଇ ଯାଇଅଛି । ଗତ ହେଲେ ପ୍ରତିପାଳିତ ହେବାର ପ୍ରଥା । ବୌଦ୍ଧମାନେ ଦାର୍ଶନିକ ବିଚାରରେ ସ୍ୱପକ୍ଷ ସମର୍ଥନ କରିବାକୁ ପ୍ରୟାସୀ ହେବାରୁ ତତ୍କାଳୀନ ହିନ୍ଦୁ ଦାର୍ଶନିକମାନେ ଏହା ଖଣ୍ଡନ କରିବାକୁ ଉଦ୍ୟତ ହେଲେ । ଏହିରୂପେ ସେହି କାଳରେ ଦର୍ଶନ-ଜଗତରେ ଏକରୂପ ଯୁଗାନ୍ତର ଉପସ୍ଥିତ ହୋଇଥିଲା । ବୌଦ୍ଧମାନଙ୍କ ଦାର୍ଶନିକ ମତ ଖଣ୍ଡନ କରିବାନିମନ୍ତେ ଯେ ସମସ୍ତ ଉତ୍କୃଷ୍ଟ

ଗ୍ରନ୍ଥକରଙ୍କ ରଚିତ ହୋଇଥିଲା, ତନ୍ମଧ୍ୟରୁ ଅନେକ ଅଦ୍ୟାପି ବିଦ୍ୟମାନ ଅଛି । ସେ ସମୟ ପର୍ଯ୍ୟନ୍ତ ଦେଶ ବହିଃଶତ୍ରୁଦ୍ୱାରା ଆକ୍ରାନ୍ତ ହୋଇ ନ ଥିଲା, ଦେଶରେ ଶାନ୍ତି ବିରାଜମାନ ଥିଲା । କାଳକ୍ରମେ ଦେଶର ଅବସ୍ଥାର ପରିବର୍ତ୍ତନ ହେଲା, ଯବନର ସ୍ଥାନ କୋରାଣ ଅଧିକାର କଲା । "କୋରାଣରେ ଯାହା ନାହିଁ, ତାହା ଅପ୍ରମାଣ ଓ ଅସତ୍ୟ" ଏହି ଅଦ୍ଭୁତ ଯୁକ୍ତି ଓ ସ୍ୱକପୋଳ-କଳ୍ପିତ ସିଦ୍ଧାନ୍ତ ଯେଉଁମାନଙ୍କର ଅବଲମ୍ବନ ଏବଂ ଯେଉଁ ଜାତି ଏହି ଧାରଣାର ବଶବର୍ତ୍ତୀ ହୋଇ ସେନାପତିଙ୍କ ଆଦେଶକ୍ରମରେ ଆଲେକ୍-ଜେଣ୍ଡ୍ରିଆର ବିଖ୍ୟାତ ପୁସ୍ତକାଳୟ ଭସ୍ମୀଭୂତ କଲେ, ଦୁର୍ଭାଗ୍ୟକ୍ରମେ ସେହି ଜାତୀୟ ରାଜା ସୁଲତାନ୍ ମାମୁଦ୍ ଓ ନାଦର ସାହ ପ୍ରଭୃତି ଭାରତର ବହିଃଶତ୍ରୁରୂପରେ ଉପସ୍ଥିତ ହେଲେ । ଯେଉଁ ପ୍ରବଳ ଶତ୍ରୁମାନଙ୍କର ଅବ୍ୟର୍ଥ ଆକ୍ରମଣ-ଦ୍ୱାରା ହିନ୍ଦୁରାଜାମାନଙ୍କର ଅତୁଳ ଐଶ୍ୱର୍ଯ୍ୟ, ପରମାରାଧ୍ୟ ଦେବମୂର୍ତ୍ତି ପର୍ଯ୍ୟନ୍ତ ବିନଷ୍ଟ ହୋଇଥିଲା, କିଏ ବୋଲି ପାରିବ ଯେ ସେ ସମୟରେ ହିନ୍ଦୁ-ମାନଙ୍କର ଶାସ୍ତ୍ରଗ୍ରନ୍ଥମାନ ବିନଷ୍ଟ ହୋଇ ନାହିଁ? ପ୍ରବଳ ବହିଃଶତ୍ରୁମାନଙ୍କର ପୌନଃପୁନିକ ଆକ୍ରମଣରେ ଦେଶ ଅନ୍ତଃସାରଶୂନ୍ୟ ହୋଇ ପଡ଼ିଲା । "ଛିଦ୍ରେଷ୍ୱନର୍ଥା ବହୁଲୀଭବନ୍ତି ।" ସେହି ସଙ୍କଟ ସମୟରେ ହିନ୍ଦୁରାଜାମାନଙ୍କର ପରସ୍ପର ମନୋମାଳିନ୍ୟ ମଧ୍ୟ ଉପସ୍ଥିତ ହେଲା । ଯବନ ଦେଶର ରାଜସିଂହାସନ ଅଧିକାର କଲେ, ରାଜ-ବିପ୍ଳବରେ ଯେ ସମସ୍ତ ଅନିଷ୍ଟ ଅବଶ୍ୟମ୍ଭାବୀ ଭାରତର ଭାଗ୍ୟରେ ସେ ସମସ୍ତ ଉପସ୍ଥିତ ହେଲା, ଦେଶରେ ଘୋର ଅଶାନ୍ତିର ଆବିର୍ଭାବ ହେଲା । ଏକହସ୍ତରେ ଶାସ୍ତ୍ର ଓ ଅପର ହସ୍ତରେ ଶସ୍ତ୍ର ଘେନି ଧର୍ମ ପ୍ରଚାର କରିବା ଯେଉଁମାନଙ୍କର ରୀତି, ସେହି ଶ୍ରେଣୀ ରାଜାମାନଙ୍କର ପ୍ରଥମାଧିକାରକାଳରେ ହିନ୍ଦୁ ପ୍ରଜାମାନଙ୍କର କିରୂପ ଦୁରବସ୍ଥା ଘଟିଥିବ, ତାହା ହୃଦୟବାନ୍ ବ୍ୟକ୍ତିମାନଙ୍କର ଅନୁମେୟ । ସେ

ସମୟରେ ହିନ୍ଦୁରାଜା ଓ ପ୍ରଜା ସମସ୍ତେ ଆତ୍ମରକ୍ଷାର୍ଥ ବ୍ୟସ୍ତ ହେଲେ, ରାଜା ଆଉ ପଣ୍ଡିତମାନଙ୍କର ପଟ୍ଟବୃତ୍ତି ନିର୍ବାହ କଲେ ନାହିଁ, ଓିଲସ ପ୍ରଜ୍ଞ ପ୍ରାୟ ସେମାନଙ୍କୁ ରକ୍ଷା କରିବା ବିଷୟରେ ସମର୍ଥ ହେଲେ ନାହିଁ । ଶାସ୍ତ୍ରବ୍ୟବସାୟୀମାନେ ଯେ କୌଣସି ପ୍ରକାରରେ ପୋଷ୍ୟବର୍ଗ ଭରଣ କରିବାକୁ ବାଧ୍ୟ ହେଲେ, ତତ୍କାଳୀନ ସେମାନଙ୍କୁ ଅର୍ଥୋ-ପାର୍ଜ୍ଜନ କରିବା ବିଷୟରେ ବାଧ ହେବାକୁ ହେଲା, ଅର୍ଥଚିନ୍ତା ଶାସ୍ତ୍ରଚିନ୍ତାର ସ୍ଥାନକୁ ଅଧିକାର କଲା । ଏହିପରି ବିବିଧ ବିପ୍ଳବରେ ଅଧ୍ୟୟନ, ଅଧ୍ୟାପନା ଓ ଧର୍ମନିଷ୍ଠା ଶିଥିଳ ହୋଇ ପଡ଼ିଲା । ତାହା ହେଲେ ମଧ୍ୟ ହିନ୍ଦୁମାନଙ୍କ ମଧ୍ୟରେ ଶାସ୍ତ୍ରଚର୍ଚ୍ଚାଦି ଏକାବେଳକେ ବିଲୁପ୍ତ ହୋଇଥିଲା, ତାହା ନୁହେ । ହିନ୍ଦୁଶାସ୍ତ୍ରସମୂହ ହସ୍ତଲିଖିତ ପୋଥିରେ ରକ୍ଷିତ, ସୁତରାଂ ନିତ୍ୟନୈମିତ୍ତିକ ଅନୁଷ୍ଠାନୋପଯୋଗୀ ଧର୍ମଶାସ୍ତ୍ର-ମାନଙ୍କର ଅନୁଶୀଳନାର୍ଥ ବ୍ୟାକରଣ ଓ ଦର୍ଶନ-ଶାସ୍ତ୍ରର ବିରଳ ଅଧ୍ୟୟନ ଓ ଅଧ୍ୟାପନା ଚଳୁଥିଲା । ସେ ସମୟରେ ମଧ୍ୟ ପ୍ରବୀଣ ଦାର୍ଶନିକମାନଙ୍କର ଯେ ଆବିର୍ଭାବ ହେଉ ନ ଥିଲା, ଏରୂପ ନୁହେ; ପରନ୍ତୁ ତାହା ବିକାରଗ୍ରସ୍ତ ଅଚେତନ ରୋଗୀର କ୍ଷଣିକ ଚେତନାସମାଗମ ପ୍ରାୟ ଅଚିରସ୍ଥାୟୀ— ପୂର୍ବ ପ୍ରଭାର ଶେଷ ନିଦର୍ଶନ ମାତ୍ର । ଅପ୍ରାସଙ୍ଗିକ ହେଲେ ମଧ୍ୟ ଏଠାରେ ଆକବର ସାହା ସମ୍ରାଟଙ୍କ ବିଷୟ ଉଲ୍ଲେଖ ନ କରିବା ଅସଙ୍ଗତ ବୋଧ କରେଁ । ସେ ମହାତ୍ମା ବେଦଗୁଡ଼ିକ ଅସାଧାରଣ ସଦ୍‌ଗୁଣ-ସମ୍ପନ୍ନ ହୋଇ ଭୂମଣ୍ଡଳରେ ଅବତୀର୍ଣ୍ଣ ହୋଇ-ଥିଲେ । ହସ୍ତଲିଖିତ ଶାସ୍ତ୍ରରେ ତାହାଙ୍କର ଯଥେଷ୍ଟ ଅନୁରାଗ ଥିଲା । ଜାତିନିର୍ବିଶେଷରେ ପ୍ରଜା-ମଣ୍ଡଳୀର ରକ୍ଷଣାବେକ୍ଷଣ କରୁଥିଲେ । କଥିତ ଅଛି ଯେ ଆକବରଙ୍କ ଆଜ୍ଞାରୁ କତିପୟ ମୁସଲମାନ୍ ବ୍ରାହ୍ମଣବେଶ ଧାରଣ କରି ବ୍ରାହ୍ମଣଗୁରୁ ନିକଟରେ ହସ୍ତଲିଖିତ ଶାସ୍ତ୍ର ଅଧ୍ୟୟନ କରିଥିଲେ । ଆକବରଙ୍କ ସନ୍ତୋଷାର୍ଥ ତାହାଙ୍କର ଅନ୍ୟତମ ସଭାସଦ୍ ବଡ଼ାରୀ କୃଷ୍ଣଦାସ ପାରସିକପ୍ରକାଶ ନାମକ ଅଦ୍ଭୁତ ଗ୍ରନ୍ଥ

ରଚନା କରିଥିଲେ । ସମ୍ଭବତଃ ଭାସ୍କର ନାମକ ବିଖ୍ୟାତ ଜ୍ୟୋତିର୍ଗ୍ରନ୍ଥ ତାହାଙ୍କ ସମୟରେ ଅଥବା ତାହାଙ୍କ ଉତ୍ତରାଧିକାରୀମାନଙ୍କ ସମୟରେ ରଚିତ ହୋଇଥିଲା । ଆଜି ପର୍ଯ୍ୟନ୍ତ ଯାହା ଗୁଜରାଟ ଅଞ୍ଚଳରେ ମୁସଲମାନମାନେ ସଂସ୍କୃତ ଅଧ୍ୟୟନ କରୁଅଛନ୍ତି, ତାହା ସେହି ସମୟର ଅନୁବୃତ୍ତି ବୋଲିଲେ ଅତ୍ୟୁକ୍ତି ହେବ ନାହିଁ । ଆକବରଙ୍କ ଉତ୍ତରାଧିକାରୀ ଜାହାଙ୍ଗୀରଙ୍କ ସମୟ ପର୍ଯ୍ୟନ୍ତ ଉତ୍କୃଷ୍ଟ ସଂସ୍କୃତ ଗ୍ରନ୍ଥମାନ ରଚିତ ହେଉଥିଲା । ସାଜେହାନଙ୍କ ପ୍ରସାଦଲାଭାର୍ଥ ବେଦାଙ୍ଗ ରାୟ ପାରସୀପ୍ରକାଶ ନାମକ ଜ୍ୟୋତିର୍ଗ୍ରନ୍ଥ ରଚନା କରି ଯାଇଅଛନ୍ତି । ତାଦୃଶ ପୁସ୍ତିକା ଆଲୋଚନା କଲେ ସେ ସମସ୍ତ ବୃତ୍ତାନ୍ତ ଜାଣି ପାରୁଁ । ଅଧିକନ୍ତୁ "ଶ୍ରୀକାଶ୍ୟ ସମ୍ପ୍ରତି ଭାନୁଚନ୍ଦ୍ରଃ ଅକବ୍ବରକ୍ଷ୍ମା-ପଦେବମାନଃ" ଏହି ସମସ୍ତ ଆଲୋଚନା କଲେ ଜଣା ପଡ଼େ ଯେ ସଂସ୍କୃତଜ୍ଞ ପଣ୍ଡିତମାନେ ତାହାଙ୍କଠାରୁ ବିପୁଳ ଲାଭ କରୁଥିଲେ । କାଳକ୍ରମେ ଅନୁପଯୁକ୍ତ ରାଜାମାନେ ସିଂହାସନାଧିରୂଢ଼ ହେଲେ । ସେମାନେ ବିଳାସର ବଶବର୍ତ୍ତୀ ହୋଇ ଯଥେଚ୍ଛାଚାରୀ ହେଲେ, ଶାନ୍ତ ସ୍ଥାନରେ ଅଶାନ୍ତି ପରିଦୃଷ୍ଟ ହେଲା, ପ୍ରଜାମାନଙ୍କର ଦୁଃଖର ସୀମା ରହିଲା ନାହିଁ । ଅତ୍ୟନ୍ତ ଗରମ ହେଲେ ବୃଷ୍ଟି ହୁଏ, ବିଧାତାଙ୍କ ମଙ୍ଗଳମୟ ଇଚ୍ଛାରୁ ଭାରତଶାସନଦଣ୍ଡ ଇଂରାଜଙ୍କ ହସ୍ତରେ ନ୍ୟସ୍ତ ହେଲା । ଇଂରାଜଙ୍କ ଶାସନରୁ ସମ୍ପ୍ରତି ଦେଶ ମଧ୍ୟରେ ଶାନ୍ତି ବିରାଜମାନ, ଇଂରାଜୀବିଦ୍ୟା ପ୍ରଭାବରୁ ଦେଶରେ ଯୁଗାନ୍ତର ଉପସ୍ଥିତ ହୋଇଅଛି । ଇଂରାଜ ସ୍ୱୟଂ ବିଦ୍ୱାନ୍, ସୁତରାଂ ବିଦ୍ୟାନୁରାଗୀ । କେତେଦିନ ପୂର୍ବରେ ଯେତେ ଇଉରୋପୀୟ ଭୌତିକ ଦର୍ଶନ ସହିତ ଭାରତୀୟ ଅଧ୍ୟାତ୍ମଦର୍ଶନର ତାରତମ୍ୟ ବିବେଚନା କରି ଇଂରାଜୀଶିକ୍ଷିତ ବ୍ୟକ୍ତିମାନେ ଅସ୍ମଦ୍ଦେଶୀୟ ଶାସ୍ତ୍ରବ୍ୟବସାୟୀମାନଙ୍କୁ କୂପମଣ୍ଡୂକ ବୋଲି ଘୃଣା କରି କୌତୁକୋଦ୍ଦୀପନ କରୁଥିଲେ, ସମ୍ପ୍ରତି ସେ ମୋହଃ ଅନ୍ୟ ଅଛେ ହେଉଅଛି । ଇଂରାଜୀବିଦ୍ୟାଧ୍ୟେତାମାନେ ବୁଝି ପାରୁଅଛନ୍ତି ଯେ ଅସ୍ମଦ୍ଦେଶୀୟ ଶାସ୍ତ୍ରରେ ମନ୍ତବ୍ୟ ନିହିତ ଅଛି ଓ ଜ୍ଞାତବ୍ୟ ବିଷୟ ଅଛି । କାରଣ ଇଉରୋପୀୟ ଅନେକ ମନୀଷୀ ସଂସ୍କୃତଶାସ୍ତ୍ର ଅଧ୍ୟୟନ ନିମନ୍ତେ ଅମୂଲ୍ୟ ସମୟ ବ୍ୟୟ କରୁଅଛନ୍ତି ଏବଂ ଅଧ୍ୟୟନ କରି ଅପରିସୀମ ଆନନ୍ଦ ଲାଭ କରୁଅଛନ୍ତି । ସଂସ୍କୃତଶାସ୍ତ୍ରରେ ନୂତନ ନୂତନ ବିଷୟ ଅବଲୋକନ କରି ବିସ୍ମିତ ହେଉଅଛନ୍ତି, ସଂସ୍କୃତଶାସ୍ତ୍ରର ଉତ୍କର୍ଷ ବୁଝାଇବା ନିମନ୍ତେ ପ୍ରବନ୍ଧ ପ୍ରଚାର କରୁଅଛନ୍ତି । ରାଜା ରାଜକୀୟ ବିଦ୍ୟାଳୟରେ ସଂସ୍କୃତବିଦ୍ୟା ପ୍ରଚାର କରୁଅଛନ୍ତି, ଉଚ୍ଚ ସଂସ୍କୃତ ଶିକ୍ଷା ନିମନ୍ତେ ସଂସ୍କୃତବିଦ୍ୟାଳୟ ସ୍ଥାପନ କରିଅଛନ୍ତି, ବିଲୁପ୍ତକଳ୍ପ ଚତୁଷ୍ପାଠୀ ରକ୍ଷାର୍ଥ ନାନାବିଧ ସଦୁପାୟ ଅବଲମ୍ବନ କରିଅଛନ୍ତି, ଟୋଲର ଛାତ୍ର ଓ ଅଧ୍ୟାପକମାନଙ୍କୁ ବୃତ୍ତି ପ୍ରଦାନ କରୁଅଛନ୍ତି, ଉପାଧିପରୀକ୍ଷାର ସୃଷ୍ଟି କରି କୃତବିଦ୍ୟ ଛାତ୍ର ଓ ଅଧ୍ୟାପକମାନଙ୍କୁ ଉଚ୍ଚ ଉପାଧିଦ୍ୱାରା ସମ୍ମାନିତ କରୁଅଛନ୍ତି । ଯତ୍ନର ସହିତ ହସ୍ତଲିଖିତ ସଂସ୍କୃତ ପୁସ୍ତକମାନଙ୍କର ରକ୍ଷା କରୁଅଛନ୍ତି, ହସ୍ତଲିଖିତ ସଂସ୍କୃତ ପୁସ୍ତକମାନଙ୍କର ସୂଚୀ ପ୍ରସ୍ତୁତ କରିବା ନିମନ୍ତେ ବିସ୍ତର ଅର୍ଥ ବ୍ୟୟ କରୁଅଛନ୍ତି, ଏସିଆଟିକ୍ ସୋସାଇଟୀକୁ ସାହାଯ୍ୟ କରି ଏବଂ ଅନ୍ୟାନ୍ୟ ଉପାୟରେ ସଂସ୍କୃତ ପୁସ୍ତକର ମୁଦ୍ରଣ ଓ ପ୍ରଚାର କରୁଅଛନ୍ତି । ସମ୍ପ୍ରତି ସମସ୍ତେ ବୁଝି ପାରୁଅଛନ୍ତି ଯେ ସଂସ୍କୃତଶାସ୍ତ୍ର ଅନ୍ତଃସାରଶୂନ୍ୟ ନୁହେ । ସଂସ୍କୃତ ଶାସ୍ତ୍ରରେ ସୁଗଭୀର ସତ୍ୟ ବିଦ୍ୟମାନ ଅଛି । ସଂସ୍କୃତ ଶାସ୍ତ୍ର ଜାଣିବା ଓ ଭାବିବାର ବିଷୟ । ଆଧୁନିକ ଇଂରାଜୀବିଦ୍ୟାପାରଦର୍ଶୀ ବହୁତର ଲୋକ ସଂସ୍କୃତ ଶାସ୍ତ୍ର ଆଲୋଚନା ନିମନ୍ତେ ପ୍ରଚୁର ଆଗ୍ରହ ପ୍ରକାଶ କରୁଅଛନ୍ତି । ଏକଥା ପ୍ରମାଣ କରିବା ନିମନ୍ତେ ବେଶି ଦୂର ଯିବାକୁ ହେବ ନାହିଁ, ଅଦ୍ୟତନ "ସାରସ୍ୱତ-ସମିତି" ଏବଂ ସମିତି ଉପଲକ୍ଷରେ ସୁଶିକ୍ଷିତ ସଭ୍ୟମଣ୍ଡଳୀର ଉପସ୍ଥିତ ସମାଗମ ତାହାର ଜାଜ୍ଜ୍ୱଲ୍ୟମାନ ଦୃଷ୍ଟାନ୍ତସ୍ଥଳ । ମୁଁ ଆଶା ଯେ କାଦୃଶ

ଅନିର୍ବଚନୀୟ ଆନନ୍ଦ ଅନୁଭବ କରୁଅଛୁ, ତାହା ସେହି ଆନନ୍ଦମୟ ଅନ୍ତର୍ଯ୍ୟାମୀ ବ୍ୟତୀତ ଅନ୍ୟର ଅବୋଧ୍ୟ ।

ଉପସଂହାରରେ ସାନୁନୟ ପ୍ରାର୍ଥନା ଏହି କି ହିନ୍ଦୁ ମାତ୍ରେ ଜାତୀୟ ବିଦ୍ୟାର ଅନୁଶୀଳନାର୍ଥ ବଦ୍ଧପରିକର ହେଉନ୍ତୁ । ଦେଶୀୟ ବା ଜାତୀୟ ବିଦ୍ୟାର ଅନୁଶୀଳନ କରିବା ସମସ୍ତଙ୍କ କର୍ତ୍ତବ୍ୟ । ଜାତୀୟ ବିଦ୍ୟାର ଅନୁଶୀଳନ ଓ ଜାତୀୟ ଶାସ୍ତ୍ରର ଆଲୋଚନା ଭିନ୍ନ କୌଣସି ଜାତି ସମୁନ୍ନତ ହୋଇ ନାହାନ୍ତି । ଯେଉଁ ଦେଶର ବିଦ୍ୟା ଯେତେ ଉନ୍ନତ ସେ ଦେଶ ସେତେ ଉନ୍ନତ । ଅନ୍ୟାନ୍ୟ ସଭ୍ୟ ଦେଶ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଏହାର ପ୍ରଚୁର ପ୍ରମାଣ ପ୍ରାପ୍ତ ହେବାକୁ ହେବ । ବୋଲିବାକୁ ଗଲେ ଏ ବିଷୟରେ ମୁସଲମାନ୍ ଭ୍ରାତାମାନଙ୍କର ଆଚରଣ ସର୍ବଥା ପ୍ରଶଂସନୀୟ, ସେମାନେ ଜାତୀୟ ବିଦ୍ୟାର ଅନୁଶୀଳନ ନ କରି କେବଳ ରାଜକୀୟ ବିଦ୍ୟାର ଅନୁଶୀଳନରେ ପରିତୃପ୍ତ ହୁଅନ୍ତି ନାହିଁ । ସୌଭାଗ୍ୟକ୍ରମେ ଆମ୍ଭେମାନେ ଏପରି ରାଜା ପାଇ-ଅଛୁଁ ଯେ କି ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଆମ୍ଭମାନଙ୍କୁ ଶାସ୍ତ୍ରାଲୋଚନାର୍ଥ ଉତ୍ସାହିତ କରୁ-ଅଛନ୍ତି । ଅପକ୍ଷପାତ ଇଉରୋପୀୟ ପଣ୍ଡିତବର୍ଗଙ୍କ ଆଗ୍ରହରୁ ଅସ୍ମଦ୍ଦେଶୀୟ ସଂସ୍କୃତଶାସ୍ତ୍ର ପ୍ରତି ଅନୁରାଗ ଅଙ୍କୁରିତ ହୋଇ ବିଦ୍ୟାନୁରାଗୀ ରାଜାଙ୍କ ଅନୁଗ୍ରହରେ ତାହା ପଲ୍ଲବିତ ହୋଇଅଛି । ଅଧ୍ୟବସାୟ ଅବଲମ୍ବନ କରି କୃତବିଦ୍ୟମଣ୍ଡଳୀ ତାହାକୁ ପୁଷ୍ପଫଳରେ ଶୋଭିତ କରନ୍ତୁ । ରାଜ-ବିଦ୍ୟାରେ କୃତବିଦ୍ୟ ଦେଶୀୟ ମନୀଷିମାନେ ଯେତେବେଳେ ଦେଶୀୟ ସଂସ୍କୃତଶାସ୍ତ୍ରର ସୂକ୍ଷ୍ମତମ ବିଷୟସକଳ ଅନୁଶୀଳନ ଓ ପର୍ଯ୍ୟାଲୋଚନା କରିବେ ଏବଂ ପ୍ରତିପଦରେ ଶାସ୍ତ୍ରକାରମାନଙ୍କର ଅପରିସୀମ କ୍ଷମତା ଅବଲୋକନ କରି ସେମାନଙ୍କ ପ୍ରତି ଅକୃତ୍ରିମ ଭକ୍ତିଭାବ ପ୍ରକାଶ କରିବେ, ସେତେବେଳେ ଏ ଦେଶରେ ବିଦ୍ୟା ବିଷୟରେ ଯୁଗାନ୍ତର ପ୍ରାଦୁର୍ଭାବ ହେବା ନିଃସନ୍ଦେହ । ମୋହର କ୍ଷୁଦ୍ରବୁଦ୍ଧି ଅନୁସାରେ ଗୋଟିଏ କଥାର ଅବଧାରଣା କରୁଅଛି । ତାହା ଏହି ଯେ କୃତବିଦ୍ୟମାନେ ଶାସ୍ତ୍ରର ତତ୍ତ୍ୱ ଅବଗତ ହେବା ନିମନ୍ତେ ଇଉରୋପୀୟ ପଣ୍ଡିତମାନଙ୍କ ଅନୁବାଦ ପ୍ରତି ଏକାନ୍ତ ନିର୍ଭର କରିବେ ନାହିଁ, ସ୍ୱୟଂ ଶାସ୍ତ୍ର ପର୍ଯ୍ୟାଲୋଚନା କରି ଶାସ୍ତ୍ରତତ୍ତ୍ୱ ଅବଗତ ହେବାକୁ ଚେଷ୍ଟା କରିବେ, ଅଥବା ହିନ୍ଦୁଶାସ୍ତ୍ର ବିଷୟକ ପ୍ରବନ୍ଧ ସଭା-ସମିତିରେ ଅବା ସମ୍ବାଦପତ୍ରରେ ଯେପରି ବହୁଳଭାବରେ ପ୍ରଚାରିତ ହେବ, ତାହାର ବିଶେଷ ଚେଷ୍ଟା କରିବେ । ଏହି "ସାରସ୍ୱତ-ସମିତି" ଯାହା ଉଦ୍ଦେଶ୍ୟର (ଗ) ବିଭାଗରେ ମାତୃଭାଷାରେ ଶାସ୍ତ୍ର ବିଷୟକ ଚିନ୍ତାପୂର୍ଣ୍ଣ ପ୍ରବନ୍ଧ ପାଠ, ବକ୍ତୃତା ଓ ସମାଲୋଚନାକୁ ସମିତିର ବିଷୟୀଭୂତ କରିଅଛନ୍ତି, ତନ୍ନିମନ୍ତେ ସମିତି ଧନ୍ୟବାଦାର୍ହ । ଯେଉଁଦିନ ପ୍ରକୃତ ଏହା କାର୍ଯ୍ୟରେ ପରିଣତ ହେବ, ତତ୍କାଳୀନ ମାଧୁର୍ଯ୍ୟ ବୁଝାଇବାର ନୁହେ, ସେ ଶୁଭଦିନର ତୁଳନା ନାହିଁ । ଆଶା କରିବା ଅନୁଚିତ ନୁହେ ଯେ ଅନତିବିଳମ୍ବରେ ସେହି ଶୁଭଦିନ ସମାଗତ ହେବ । ଶୁଭକ୍ଷଣରେ କୃତବିଦ୍ୟମାନଙ୍କର ସୁବୁଦ୍ଧି ହୋଇଅଛି; ଏହା କାର୍ଯ୍ୟରେ ପରିଣତ ହେଲେ ଦେଶର ଉପକାର ଅବଶ୍ୟମ୍ଭାବୀ । ଅଧିକନ୍ତୁ କୃତବିଦ୍ୟମାନେ ଲାଭବାନ୍ ହେବେ । ନିଜର ବସ୍ତୁ ନିଜେ ଚିହ୍ନି ପାରିବେ ନାହିଁ, ପରର ପରିଚୟ ଓ ସମାଦର ଦେଖି ଚିହ୍ନିବେ ଓ ସମାଦର କରିବାକୁ ଶିକ୍ଷା କରିବେ, ଏହା କୃତବିଦ୍ୟମଣ୍ଡଳୀ ପକ୍ଷରେ ପ୍ରଶଂସାର କଥା ନୁହେ । ଏରୂପ ବୋଲିବା ଧୃଷ୍ଟତା ନୁହେ ଯେ ଇଉରୋପୀୟ ପଣ୍ଡିତମାନଙ୍କ ଆବିଷ୍କୃତ ବୋଲି ଯାହା ମହାଆଡ଼ମ୍ବରରେ ଗ୍ରହଣ କରୁ, ଅସ୍ମ-ଦ୍ଦେଶୀୟ ଶାସ୍ତ୍ର ପର୍ଯ୍ୟାଲୋଚନା କଲେ ବୁଝିପାରୁ ଯେ ତାହା ଏ ଦେଶରେ ବହୁକାଳ ପୂର୍ବରୁ ସମ୍ଭାବିତ ହୋଇଥିଲା । ସେ ଯାହାହେଉ ବଙ୍ଗଳା ବିହାର ଓ ଓଡ଼ିଶାର ଅଧ୍ୟାପକମାନଙ୍କର ଶାସ୍ତ୍ରାଲୋଚନା ବିଷୟରେ ଶୋଚନୀୟ ଦୁରବସ୍ଥା

ସଙ୍ଘଟିତ ହୋଇଥିବାର ଦେଖି ପଣ୍ଡିତବର ମହାମହୋପାଧ୍ୟାୟ ଶ୍ରୀଯୁକ୍ତ ମହେଶଚନ୍ଦ୍ର ନ୍ୟାୟରତ୍ନ ସି, ଅଇ, ଇ. ମହୋଦୟ କର୍ତ୍ତବ୍ୟପରାୟଣ ଇଂରେଜ ରାଜାଙ୍କ ନିକଟରେ ରାଜକୀୟ ସାହାଯ୍ୟ ବ୍ୟତୀତ ଅଧ୍ୟାପକମଣ୍ଡଳୀର ଓ ହସ୍ତଗତ ଶାସ୍ତ୍ରସମୂହର କ୍ରମଧ୍ୱଂସ ଅନିବାର୍ଯ୍ୟ, ଏହା ପ୍ରତିପନ୍ନ କରି ଇଂରେଜ ଗବର୍ଣ୍ଣମେଣ୍ଟଙ୍କ ବୃତ୍ତିପ୍ରଦାନରୂପ ଆର୍ଥିକ ସାହାଯ୍ୟର ବ୍ୟବସ୍ଥା କରାଇଅଛନ୍ତି ଏବଂ ସ୍ୱଦେଶୀୟ ସହୃଦୟ ବିଦ୍ୟୋତ୍ସାହୀ ବ୍ୟକ୍ତିମାନଙ୍କ କର୍ତ୍ତୃକ ସ୍ଥାନେ ସ୍ଥାନେ ସଭା ସଂସ୍ଥାପନ କରାଇଅଛନ୍ତି। ସଭାମାନଙ୍କରେ ଯଥାରୀତି ପରୀକ୍ଷାଦି ଗୃହୀତ, ବୃତ୍ତି ଓ ଉପାଧି ପ୍ରଦତ୍ତ ହୋଇ ଧ୍ୱଂସୋନ୍ମୁଖ ସଂସ୍କୃତବିଦ୍ୟାର ପୁନର୍ଜୀବନ ହୋଇଅଛି । ମହାମହୋପାଧ୍ୟାୟଙ୍କ ଯତ୍ନ ବଙ୍ଗଳା ଓ ବିହାରରେ ଅନେକାଂଶରେ ସଫଳ ହୋଇଅଛି ବୋଲିବାକୁ ହେବ । ପରିତାପର ବିଷୟ ଉତ୍କଳରେ ତାଦୃଶ ସଫଳତା ଲାଭ କରି ନାହିଁ । ରାଜାଙ୍କର କୃପାକାଦମ୍ବିନୀ ସର୍ବତ୍ର ସମଭାବରେ ବାରିପାତ କଲେ, ଫଳର ତାରତମ୍ୟ ହେଲେ ସ୍ଥାନଗତ ଉର୍ବରତା ପ୍ରତିପନ୍ନ ହେବ, ଅବଶ୍ୟ ଉତ୍କଳ ପକ୍ଷରେ ଏହା ପ୍ରଶଂସ୍ୟ ବିଷୟ ନୁହେ । "କ୍ୱ ବା ନାର୍ଥନିର୍ବନ୍ଧମେତ କଣ୍ଠଗଂ ସକାନ୍ତବାନ୍ତଂ ପତ୍ୟୁର୍ନିରସ୍ୟତି" ଆସନ୍ନା ଲକ୍ଷ୍ମୀକୁ ଉପେକ୍ଷା କରିବା ହୃଦୟବାନ୍ ବ୍ୟକ୍ତିର ପ୍ରଶଂସାର୍ହ ନୁହେ । ବିଶେଷତଃ ବିଲୁପ୍ତପ୍ରାୟ ପୈତୃକ ସଂପତ୍ତିକୁ ହାତରେ ପାଇ ଫୋପାଡ଼ିଦେବା ଅଜ୍ଞ ବ୍ୟତୀତ ଚକ୍ଷୁଷ୍ମାନ୍‌ଠାରେ ଶୋଭା ପାଏ ନାହିଁ । ଅତଏବ କି ଦେଶୀୟ ରାଜା କି ଜମିଦାର କି ତାଲୁକଦାର କି ସ୍ଥାନୀୟ ଭଦ୍ରଲୋକ କି ଶିକ୍ଷାବିଭାଗର ଉଚ୍ଚପଦସ୍ଥ କର୍ମଚାରୀମାନେ କି ବା ସମିତିର ସଭ୍ୟ ମହୋଦୟଗଣ ଏରୂପ ଅବସ୍ଥାରେ ବଦ୍ଧପରିକର ହୋଇ ଯେପରି ସମାଜର ଶୀର୍ଷସ୍ଥାନୀୟ ବ୍ରାହ୍ମଣପଣ୍ଡିତମାନେ ନିଶ୍ଚିନ୍ତ ହୋଇ ଶାସ୍ତ୍ରଚିନ୍ତା ଓ ଅଧ୍ୟାପନାରେ ଅନୁରକ୍ତ ହୁଅନ୍ତି ଏବଂ ବର୍ଣ୍ଣାଶ୍ରମଧର୍ମର ଅନୁଷ୍ଠାନରେ ତତ୍ପର ହୁଅନ୍ତି, କୃତବିଦ୍ୟମାନେ ସମ୍ମାନିତ ହୁଅନ୍ତି, ପିପଠିଷୁ ଛାତ୍ରବୃନ୍ଦ ଉତ୍ସାହିତ ହୁଅନ୍ତି, ବିଲୁପ୍ତପ୍ରାୟ ଲୁକ୍କାୟିତ ଗ୍ରନ୍ଥମାନ ପ୍ରକାଶିତ ହୁଏ, ତଦ୍ୱିଷୟରେ କି ଆର୍ଥିକ କି ପାରିଶ୍ରମିକ କୌଣସି ପ୍ରକାର ସାହାଯ୍ୟଦ୍ୱାରା ଦେଶର ମୁଖୋଜ୍ଜ୍ୱଳ କରନ୍ତୁ, ପୈତୃକ ସଂପତ୍ତିକୁ ଉଦ୍ଧାର କରନ୍ତୁ । ସମ୍ପ୍ରତି ସାଧାରଣରେ ଦେଶୀୟ ବିଦ୍ୟାର ପ୍ରଗ୍ରହ ନିକଟବର୍ତ୍ତୀ ହୋଇଅଛି । ସମ୍ପ୍ରତି ଯେଉଁମାନେ ଏହି ଉପାଦେୟ ବିଷୟର ପ୍ରବର୍ତ୍ତକ ଓ ସାହାଯ୍ୟକାରୀ, ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ସେମାନଙ୍କର ନାମ ମୁଦ୍ରିତ ହେଉ, ମଙ୍ଗଳମୟ ଭଗବାନ୍ ସେମାନଙ୍କର ମଙ୍ଗଳବିଧାନ କରନ୍ତୁ ।

ପ୍ରହରାଜ ଶ୍ରୀ କୃଷ୍ଣଚନ୍ଦ୍ର ଦାଶ ଶର୍ମା ।

---*---

## ଶ୍ରୀ ଜଗନ୍ନାଥଦେବଙ୍କ ମନ୍ଦିର । (୨)

ଇନ୍ଦ୍ରଦ୍ୟୁମ୍ନ ସରୋବର ଭାରତର ଅନ୍ୟତ୍ର ଦୃଷ୍ଟ ହୁଏ ନାହିଁ । ସୁତରାଂ ଅବଶ୍ୟ ଇନ୍ଦ୍ରଦ୍ୟୁମ୍ନ ସରୋବର ସେହି ପୁରାଣପ୍ରସିଦ୍ଧ ସରୋବର, ଏଥିରେ ସନ୍ଦେହ ନାହିଁ । ରାମାୟଣରେ ଏ ସରୋବରର ଉଲ୍ଲେଖ ଦେଖାଯାଉ ନ ଥିଲେହେଁ ମହାଭାରତ ଓ ପୁରାଣମାନଙ୍କରେ ଏହାର ନାମ ଉଲ୍ଲେଖ ହୋଇଥିବାରୁ ଏହାର ପ୍ରାଚୀନତା ସମ୍ବନ୍ଧରେ କୌଣସି ମତଦ୍ୱୈଧ ଘଟି ନ ପାରେ । କେହି କେହି ଅନୁମାନ କରନ୍ତି ଯେ ଏକ ସମୟରେ ଓଡ଼ିଶା ବୌଦ୍ଧଧର୍ମର କେନ୍ଦ୍ରସ୍ଥଳୀ ଥିଲା । ଖଣ୍ଡଗିରି, ଧଉଳଗିରି ପ୍ରଭୃତି ବୌଦ୍ଧକୀର୍ତ୍ତିଚୟ ଅଦ୍ୟାବଧି ତାହାର ପ୍ରକୃଷ୍ଟ ପରିଚୟ ପ୍ରଦାନ କରୁଅଛି । ଏଣୁ ବୋଧ ହୁଏ ସେହି ସମୟରେ ଜଗନ୍ନାଥଦେବଙ୍କ ମନ୍ଦିର ନିର୍ମିତ ହୋଇଅଛି ।

ସେହି ସ୍ଥାନରେ ପ୍ରଖ୍ୟାତ ଜାତିଭେଦାଭାବ ବୌଦ୍ଧ ମତର ଦ୍ୱିତୀୟ ପୋଷକ ଯୁକ୍ତି । ତୃତୀୟ ଯୁକ୍ତି, ପୂର୍ବେ ବୌଦ୍ଧମାନେ ଯେଉଁ ସୂତ୍ରାକାର ଯନ୍ତ୍ରର ପୂଜା କରୁଥିଲେ, ତଦନୁସାରେ ଜଗନ୍ନାଥଙ୍କ ମୂର୍ତ୍ତି ଗଠିତ ହୋଇଅଛି । ଉକ୍ତ ଯନ୍ତ୍ରର ପ୍ରତିକୃତି ଡାକ୍ତର ରାଜେନ୍ଦ୍ରଲାଲ ମିତ୍ରଙ୍କ ଲିଖିତ "Antiquities of Orissa" ନାମକ ଗ୍ରନ୍ଥରେ ପ୍ରକାଶିତ ହୋଇଅଛି ଏବଂ ଏ ସମ୍ବନ୍ଧରେ ତାଙ୍କର ଯୁକ୍ତି ମଧ୍ୟ ପ୍ରଦତ୍ତ ହୋଇଅଛି । ହିନ୍ଦୁମାନେ ବୌଦ୍ଧମାନଙ୍କୁ ପରାଜୟ କଲା ଉତ୍ତାରେ ମନ୍ଦିରରୁ ବୌଦ୍ଧଧର୍ମର ଅସ୍ତିତ୍ୱ ଲୋପ କରିବାନିମିତ୍ତ ବଳଭଦ୍ର, ସୁଭଦ୍ରାଦି ମୂର୍ତ୍ତିମାନ ଗଠନ କରି ଜଗନ୍ନାଥଙ୍କ ସହିତ ଯୋଗ କରି ହିନ୍ଦୁଧର୍ମର ମୌଳିକତା ପ୍ରତିପାଦନ କରିଅଛନ୍ତି । ପ୍ରକୃତରେ ବୁଝିବାକୁ ଗଲେ ଏହା ବୌଦ୍ଧମାନଙ୍କ ଉପାସନା ସ୍ଥାନ ଭିନ୍ନ ଅନ୍ୟ କିଛି ନୁହେ । ଏ କପୋଳକଳ୍ପିତ ଯୁକ୍ତି କୋମଳମତି ବାଳକମାନଙ୍କ ନିକଟରେ ଅସଙ୍ଗତ ବୋଲି ବୋଧ ହେବ ନାହିଁ; ବରଂ ସତ୍ୟ ବୋଲି ପ୍ରତୀତ ହେବ । ଏ ଯୁକ୍ତି ଅତି ଅସାର ବୋଲି ଆମ୍ଭମାନଙ୍କର ପୂର୍ଣ୍ଣ ବିଶ୍ୱାସ । ପ୍ରମାଣ ଅଭାବରେ କେବଳ ଯୁକ୍ତିହିଁ ଅବଲମ୍ବନୀୟ ହୋଇଥାଏ । ମାତ୍ର ପ୍ରମାଣ ବିଦ୍ୟମାନ ଥିବା ସ୍ଥଳେ କେବଳ ଯୁକ୍ତିକୁ ଏକମାତ୍ର ଆଶ୍ରୟ କରାଯାଏ ନାହିଁ, ଏହା ସମସ୍ତେ ସ୍ୱୀକାର କରିବେ । ତେବେ ଦେଖାଯାଉ, ଏସମ୍ବନ୍ଧରେ ପ୍ରମାଣ କଣ ଅଛି ।

ହିମାଳୟଠାରୁ କୁମାରିକାପର୍ଯ୍ୟନ୍ତ ଭାରତସ୍ଥ ସକଳ ହିନ୍ଦୁ ଏବଂ ଅନ୍ୟାନ୍ୟ ସମ୍ପ୍ରଦାୟ ମଧ୍ୟ ମୁକ୍ତକଣ୍ଠରେ ସ୍ୱୀକାର କରିବେ ଯେ ବେଦବ୍ୟାସ ବୁଦ୍ଧଦେବଙ୍କର ବହୁଦିନ ପୂର୍ବେ ଜନ୍ମଗ୍ରହଣ କରିଥିଲେ ଏବଂ ବ୍ୟାସଦେବ ଅଷ୍ଟାଦଶ ପୁରାଣର ରଚୟିତା, ଏ କଥା ହିନ୍ଦୁମାନେ ସ୍ୱୀକାର କରିବାକୁ ବାଧ୍ୟ । ଜଣେ ବ୍ୟକ୍ତି ଅଷ୍ଟାଦଶ ପୁରାଣର ରଚକ ହୋଇ ନ ପାରନ୍ତି, ଅତଏବ କେହି କେହି ଭିନ୍ନ ରଚନା କରି ଏହାଙ୍କ ନାମରେ ଉତ୍ସର୍ଗ କରିଅଛନ୍ତି । କାରଣ ଏ ଗ୍ରନ୍ଥମାନଙ୍କର ଭାଷା ଓ ବିଷୟମାନଙ୍କ ଉପରେ ଦୃଷ୍ଟି ଦେଲେ ବୁଝାଯିବ ଯେ ଏ ସମସ୍ତ ପୁରାଣ ନୂତନ । ଏହାର ସମୟମାନ ମଧ୍ୟ ଶିକ୍ଷିତଶିରୋମଣିମାନେ ଯାହା ନିର୍ଦ୍ଦିଷ୍ଟ କରିଅଛନ୍ତି, ତାହା ମଧ୍ୟ ଏକ ସହସ୍ର ବର୍ଷରୁ ଅଧିକ ନୁହେ । କିନ୍ତୁ ଏପରି ଅନୁମାନ ଯୁକ୍ତିଯୁକ୍ତ ନୁହେ । ଯାହାହେଉ Shakespeare ମଧ୍ୟ ବହୁସଂଖ୍ୟକ ନାଟକର ରଚୟିତା ଏବଂ ୨୭୪ ଖଣ୍ଡ ଗ୍ରନ୍ଥ ପୂଜ୍ୟପାଦ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କର ଏବଂ ୧୦୯ ଖଣ୍ଡ ଗ୍ରନ୍ଥ ଶ୍ରୀ ମାଧବାଚାର୍ଯ୍ୟଙ୍କ ଲେଖନୀନିଃସୃତ ବୋଲିବାର ମଧ୍ୟ ଯୁକ୍ତିଯୁକ୍ତ ନୁହେ । ତେବେ ଐଶୀ ବା ଅନନ୍ୟସାଧାରଣ ଶକ୍ତି ପକ୍ଷରେ କୌଣସି ବିଷୟ ଅସମ୍ଭବ ନୁହେ । ତେଣୁ ବ୍ୟାସ ଅଷ୍ଟାଦଶ ପୁରାଣର ରଚୟିତା ଏହା କଦାପି ବିଶ୍ୱାସର ଅଯୋଗ୍ୟ ନୁହେ । ଅତଏବ ବ୍ୟାସଦେବ-ବିରଚିତ ପଦ୍ମପୁରାଣାଦି ଗ୍ରନ୍ଥରେ ଏ ସ୍ଥାନର ଉଲ୍ଲେଖ ହୋଇଅଛି । ଆଧୁନିକ ଶିକ୍ଷିତ ବ୍ୟକ୍ତି ଏକମାତ୍ର ସ୍ଥିର କରନ୍ତି ଯେ ଖ୍ରୀଷ୍ଟପୂର୍ବ ୧୨୫୦ ବର୍ଷ ପୂର୍ବେ ମହାଭାରତର ସୃଷ୍ଟି ଏବଂ ପଞ୍ଚଶତ ବର୍ଷ ପୂର୍ବେ ବୁଦ୍ଧଦେବଙ୍କର ଆବିର୍ଭାବ । ତେବେ ପ୍ରିୟ ପାଠକେ, ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ ବ୍ୟାସ ବହୁଦିନ ପୂର୍ବରୁ ଏ ପୁସ୍ତକସବୁ ଲେଖିଥିଲେ । ତେଣୁ ଉଲ୍ଲିଖିତ ବିଷୟମାନ ମଧ୍ୟ ଉକ୍ତ ସମୟରେ ପ୍ରକଟିତ ହୋଇଅଛି । ମାତ୍ର ପୁରାଣାଦିର ଯାହା ଯାହା ସମୟ ସ୍ଥିର କରାଯାଇଅଛି ସେହି ସେହି ବିଷୟରେ ସମସ୍ତେ ଐକମତ୍ୟ ପ୍ରକାଶ କରି ନାହାନ୍ତି । ତେବେ ସେ ବିଷୟରେ ବିଶ୍ୱାସ ସ୍ଥାପନ କରାଯାଇ ପାରେ କି ? ଏପରି ପ୍ରଶ୍ନ ଉତ୍ଥାପିତ ହୋଇ ପାରେ ଯେ ଯେଉଁସବୁ ମତଭେଦ ଘଟିଅଛି ତାହା ଏକ ସହସ୍ର ମଧ୍ୟରେ ଦଶପଞ୍ଚାଶ ବର୍ଷ ପ୍ରଭେଦ । ମାତ୍ର ସହସ୍ର ସହସ୍ର ବର୍ଷର ପ୍ରଭେଦ ନୁହେ । ତେବେ ସେଗ୍ରନ୍ଥ ବେଦବ୍ୟାସ ବିରଚିତ ବୋଲି କିପରି ବିଶ୍ୱାସ କରିବା ? ଏ ଆପତ୍ତି ଅସଙ୍ଗତପରି ବୋଧ ହେଉ

ନାହିଁ, କାରଣ ପ୍ରଶସ୍ତ ଜ୍ଞାନସମ୍ପନ୍ନ ଜ୍ୟୋତିର୍ବିଦ୍‌ମାନଙ୍କ ମଧ୍ୟରେ ଏତାଦୃଶ ମତଭେଦ ଦୃଷ୍ଟ ହେବା ସ୍ଥଳେ ସଂକୀର୍ଣ୍ଣ ଜ୍ଞାନପ୍ରାପ୍ତ ବ୍ୟକ୍ତିଙ୍କର ମତ ଯେ ଭ୍ରମାତ୍ମକ ନ ହେବ ଏହା କଦାଚିତ୍ ସମ୍ଭବପର ହୋଇ ନ ପାରେ, ଏବଂ ଯେଉଁମାନଙ୍କର ପରସ୍ପରରେ ଦଶବର୍ଷରେ ପ୍ରଭେଦ ଲକ୍ଷିତ ହୁଏ ସେମାନଙ୍କର ଏକ ସହସ୍ର ବର୍ଷରେ ଯେ ଭ୍ରମ ନ ହେବ ଏହା କହାଯାଇ ନ ପାରେ । ଉଦାହରଣସ୍ୱରୂପ ଗୋଟିଏ ବିଷୟ ଦେଖନ୍ତୁ । ଶଙ୍କରାଚାର୍ଯ୍ୟଙ୍କ ବିଷୟ ନେଇ କେହି କେହି ଖ୍ରୀଷ୍ଟାବ୍ଦ ସପ୍ତଶତ ବର୍ଷରେ ଜନ୍ମ ବୋଲି ପ୍ରକାଶ କରନ୍ତି । ଅନ୍ୟମାନେ ପ୍ରକାଶ କରନ୍ତି ଯେ ଖ୍ରୀଷ୍ଟପ୍ରତିଲୋମ ନ୍ୟୂନଶତ ବର୍ଷ ପୂର୍ବରେ ସେ ଜନ୍ମଗ୍ରହଣ କରି ଥିଲେ । ଦେଖନ୍ତୁ ଏ ଦୁଇ ସମୟରେ ସହସ୍ର ବର୍ଷ ପ୍ରଭେଦ ନାହିଁ କି ? ଆଉ ମଧ୍ୟ ଭାରତରେ ପୁରାଣ ଉପପୁରାଣ ପ୍ରଭୃତି ଗ୍ରନ୍ଥର ଅଭାବ ନାହିଁ । ଯଦ୍ୟପି ବ୍ୟାସଙ୍କ ନାମରେ ଉତ୍ସର୍ଗ କଲେ ଗ୍ରନ୍ଥର ମାହାତ୍ମ୍ୟ ବର୍ଦ୍ଧିତ ହୁଏ, ତେବେ ଅଷ୍ଟାଦଶ ପୁରାଣ ଭିନ୍ନ ଅନ୍ୟାନ୍ୟ ପୁରାଣମାନ କାହିଁକି କେହି ତାଙ୍କ ନାମରେ ଉତ୍ସର୍ଗ କରି ନାହାନ୍ତି ? ଏହେତୁରୁ ଅଷ୍ଟାଦଶ ପୁରାଣ ରଚୟିତା ବେଦବ୍ୟାସ ଏ ଯେଉଁ ଜନଶ୍ରୁତି ହିନ୍ଦୁମଣ୍ଡଳୀରେ ପ୍ରଚଳିତ ଅଛି, ତାହା ଅମୂଳକ ନୁହେଁ ।

ଜଗନ୍ନାଥ ମୂର୍ତ୍ତି ବୌଦ୍ଧମାନଙ୍କ ମୁଦ୍ରା-ଯନ୍ତ୍ର-ମୂଳକ ବୋଲି କେହି କେହି ଯେ ମତ ପ୍ରକାଶ କରନ୍ତି, ତାହା ଆମ୍ଭମାନଙ୍କ ନିକଟରେ ସତ୍ୟ ବୋଲି ପ୍ରତୀୟମାନ ହେଉ ନାହିଁ । କାରଣ ହିନ୍ଦୁମାନଙ୍କ ମଧ୍ୟରେ ଏମାନଙ୍କ ବହୁଦିବସ ପୂର୍ବରୁ ଅର୍ଥାତ୍ ବୈଦିକଯୁଗରୁ ଯନ୍ତ୍ରପୂଜା ପ୍ରଚଳିତ ଅଛି । ଏଣେ ବ୍ରାହ୍ମଣମାନେ ଭୂସୁର ବୋଲି ପରିଚିତ । ବୌଦ୍ଧମାନଙ୍କ ମତରେ ତନ୍ତ୍ର ମତ ପ୍ରବେଶ କରିବା ବୁଦ୍ଧଦେବଙ୍କ ଜନ୍ମ ପରେ ବୋଲିବାକୁ ହେବ । ଭାରତ ଯେ ଅତି ପ୍ରାଚୀନ ଓ ନାନାବିଦ୍ୟାରେ ସୁଶିକ୍ଷିତ ଦେଶ, ଏହା ତାହାଙ୍କୁ ବୁଝାଇବାକୁ ହେବ ନାହିଁ । ତେବେ ବୁଦ୍ଧଦେବଙ୍କ ଜନ୍ମ ସମୟକୁ ଭାସ୍କରବିଦ୍ୟା ଯେ ପ୍ରଚଳିତ ହୋଇ ନ ଥିଲା ଏହା କେହି ସ୍ୱୀକାର କରିବେ ନାହିଁ । ବୁଦ୍ଧଗୟା ବୌଦ୍ଧମାନଙ୍କର ପ୍ରଧାନ ତୀର୍ଥସ୍ଥାନ । ସେସ୍ଥାନରେ ଓ ଅନ୍ୟାନ୍ୟ ସ୍ଥାନରେ ଯେଉଁ ସବୁ ମୂର୍ତ୍ତି ଅଛି, ସେ ସବୁ ଶିଳ୍ପବିଦ୍ୟାର ପରାକାଷ୍ଠାର ପରିଚୟ ଦେଉଅଛନ୍ତି । ମୁଦ୍ରା-ଯନ୍ତ୍ରନିର୍ମିତ ମୂର୍ତ୍ତିର ଅର୍ଚ୍ଚନା କୌଣସିଠାରେ ଦୃଷ୍ଟ ହୁଏ ନାହିଁ । ତେବେ ଏପରି ମତକୁ କାଳ୍ପନିକ ନ ବୋଲି ଆଉ କଣ ବୋଲାଯିବ ? ବରଂ ଭାରତର ପ୍ରାଚୀନ ପୀଠମାନଙ୍କରେ ଶିଳ୍ପବିଦ୍ୟାର ଶୈଶବସ୍ଥାର ପରିଚାୟକ କରଚରଣ ବିହୀନ ଭୂରି ଭୂରି ଦାରୁମୟ ଓ ପ୍ରସ୍ତରମୟ ମୂର୍ତ୍ତି ଦେଖାଯାଏ । ପାଠକେ ! ତେବେ ଜଗନ୍ନାଥଦେବ ଯେ ମୁଦ୍ରା-ଯନ୍ତ୍ରର ଅନୁକରଣ ମୂର୍ତ୍ତି, ଏହା ସତ୍ୟମୂଳକ ବୋଲି ଆପଣମାନଙ୍କର ବିଶ୍ୱାସ ହୁଏ କି ? ଏହାକୁ ଆମ୍ଭେମାନେ ମଧୁର କଳ୍ପନା-ବିଳାସ ବିନା ଆଉ କଣ କହି ପାରୁଁ ? ତେବେ ହିନ୍ଦୁମାନେ ତାହାକୁ ଅବଲମ୍ବନ କରି ଏ ମୂର୍ତ୍ତି ଗଠନ କରିଅଛନ୍ତି, ତାହାର ବିଚାର କରାଯାଉ । ବେଦରେ ଓଁକାର ମୂଳମନ୍ତ୍ରକୁ ଦେବତାରୂପରେ ଆବାହନ କରୁଥିଲେ । ( ୨ୟ ପରିଶିଷ୍ଟ ଦ୍ରଷ୍ଟବ୍ୟ ।) ଓଁକାର ବ୍ରହ୍ମ । ଶାସ୍ତ୍ରକର୍ତ୍ତାମାନେ ତାହାକୁ ଅକାର-ଉକାର-ମକାର ଯୋଗରେ ଯଥାକ୍ରମେ ବ୍ରହ୍ମବିଷ୍ଣୁଶିବାତ୍ମକ ବୋଲି ସ୍ଥିର କରିଅଛନ୍ତି । ସେହି ଓଁକାରକୁ ଯନ୍ତ୍ରରୂପରେ ନିର୍ମାଣ କରି ହିନ୍ଦୁମାନେ ଅର୍ଚ୍ଚନା କରନ୍ତି । ତାହା ବର୍ତ୍ତମାନ ସମୟରେ ମଧ୍ୟ ଦେଖାଯାଏ । ବେଦୋକ୍ତ ଯଜ୍ଞବିଦ୍ୟାରୁ ଜ୍ୟାମିତିବିଦ୍ୟାର ଉଦ୍ଭବ । ତାହା ନ ହେଲେ କୁଣ୍ଡମଣ୍ଡପଶାଳାର ନିର୍ମାଣ ହେବା ସମ୍ପୂର୍ଣ୍ଣ ଅସମ୍ଭବ । ସେହି ବିଦ୍ୟାନୁସାରେ ଯନ୍ତ୍ରମାନଙ୍କର ମଧ୍ୟ ସୃଷ୍ଟି ହୋଇଅଛି । ଏହା ପୂର୍ବମୀମାଂସାର କଥା । ଉତ୍ତରମୀମାଂସାରେ ବା ଉପନିଷଦରେ ( ଅର୍ଥାତ୍ ବେଦର ଅନ୍ତର୍ଭାଗ ) ଈଶ୍ୱରୋପାସନାର ବିବରଣ ପୂର୍ବ ମୀମାଂସା ପରି ପ୍ରଚୁରମାତ୍ରା

ନିରୂପଣପୂର୍ବକ ପ୍ରକାଶିତ ହୋଇଅଛି । ମୂଳରେ ଏହି ମାତ୍ର ପ୍ରଭେଦ ଯେ ପୂର୍ବମୀମାଂସାରେ ମନ୍ତ୍ରମୟ ଦେବତା, ସେ ମଧ୍ୟ ଜାନା; ଉତ୍ତର ମୀମାଂସାରେ ମନ୍ତ୍ର ଭିନ୍ନ ସର୍ବବ୍ୟାପକ ପାଦ-ପାଣ୍ୟାଦିରହିତ ତଥାପି କାର୍ଯ୍ୟକରଣନିପୁଣ ନିରାକାର ଅଦ୍ୱିତୀୟ ବ୍ରହ୍ମଙ୍କର ଉପାସନା ପ୍ରକଟିତ ହୁଏ । କାଳକ୍ରମେ ବୌଦ୍ଧ ହୁଏ ମତଦ୍ୱୟର ଏକତା-ପ୍ରତିପାଦକ ନ୍ୟାୟିତ ଶାସ୍ତ୍ରାନୁଗତ ଓଁକାର ଯନ୍ତ୍ରାନୁକାରୀ ଜଗନ୍ନାଥଦେବଙ୍କ ମୂର୍ତ୍ତି ଭାସ୍କର-ବିଦ୍ୟାର ଶୈଶବାବସ୍ଥାରେ ନିର୍ମିତ ହୋଇଅଛି । ଓଁ ମୂର୍ତ୍ତି ନିରାକାର ବ୍ରହ୍ମଙ୍କର ପୂର୍ଣ୍ଣ ସାକାରମୂର୍ତ୍ତିର ପରସ୍ପର କରଚରଣବିହୀନ ହୋଇଅଛନ୍ତି । ଓଁକାର ତ୍ରିଗୁଣାତ୍ମକ ଥିବାରୁ ତ୍ରିମୂର୍ତ୍ତିର ସଂଗଠନ ହୋଇଅଛି । ଏହାଦ୍ୱାରା ଉପନିଷଦର ସାର୍ଥକତା ପ୍ରତିପାଦିତ ହୋଇଅଛି । ଏହାଦ୍ୱାରା ପରମାତ୍ମା, ଆତ୍ମା ବା ଜୀବନ ଏବଂ ମାୟା ଅର୍ଥାତ୍ ବ୍ରହ୍ମ ତଦାଶ୍ରୟ ଓ ପ୍ରକୃତିର ଯେ ମହର୍ଷିମାନେ ପ୍ରକାଶ କରିଥିବାର ସମ୍ପୂର୍ଣ୍ଣ ଅନୁମେୟ । ପ୍ରତିମା ଯେ ବେଦାନୁମୋଦିତ ନୁହେଁ, ଏହା ନୁହେଁ । ଏହାର ପ୍ରମାଣ ୬ଷ୍ଠ ପରିଶିଷ୍ଟରେ ଦ୍ରଷ୍ଟବ୍ୟ । ଏହି ମନ୍ତ୍ରମାନଙ୍କରେ ମଧ୍ୟ ଅଳ୍ପରେ ବର୍ଣ୍ଣନା ଅଛି । ମାତ୍ର ବାହ୍ୟ ଜଗତରେ ପ୍ରକାଶିତ ହୋଇ ନ ଥିଲା । କର୍ମ-କାଣ୍ଡରେ ପୃଥିବୀ ପ୍ରଭୃତିଙ୍କୁ ମନ୍ତ୍ରରେ ଅବୟବାତ୍ମକ ଦେବତାରୂପରେ ବର୍ଣ୍ଣନା କରିଥିବାରୁ ଯଗ ଆଦି ଦେବତାମାନଙ୍କର ପ୍ରତିକୃତି ନିର୍ମିତ ହୋଇଅଛି । ଏ ମୂର୍ତ୍ତିମାନଙ୍କର ବାହାରେ ଯେଉଁ ପ୍ରକାର ଆକୃତି ଦେଖାଯାଏ, ତାହା ପଶ୍ଚାତ୍ କଳ୍ପିତ । ଗର୍ଭରେ ଯେଉଁ ଦାରୁମୟ ମୂର୍ତ୍ତି ଅଛନ୍ତି, ସେ ଏପରି ନୁହନ୍ତି; କେବଳ କର-ଚରଣବିହୀନ ଦାରୁମାତ୍ର ଏବଂ ଶିଳ୍ପବିଦ୍ୟାର ପ୍ରଥମାବସ୍ଥା ହୋଇ ନ ଥିଲେ ଏପରି ନିରବଲା ଯନ୍ତ୍ରାନୁକାରୀ ପ୍ରତିମା ହେବା କଦାପି ସମ୍ଭବପର ନୁହେ । ଭାରତର ପ୍ରାଚୀନ ପୀଠ-ମାନଙ୍କରେ ମଣିମୟ ମୂର୍ତ୍ତିମାନଙ୍କର ଏହିପରି ଅଭାବ । ତେଣୁ ମହର୍ଷି ଇନ୍ଦ୍ରଦ୍ୟୁମ୍ନ କର୍ମକାଣ୍ଡ-ଜ୍ଞାନକାଣ୍ଡାତ୍ମକ ନବଖଣ୍ଡରେ ଏ ମୂର୍ତ୍ତିଙ୍କୁ ସ୍ଥାପନ କରିଅଛନ୍ତି । କରେଚ୍ଛ ଇନ୍ଦ୍ର ମୂର୍ତ୍ତି ଆଗମ ଯୁଗର ବ୍ୟକ୍ତି, ଅନନ୍ତର ପୌରାଣିକ ଯୁଗର ଅଧିବାସୀ, ଅତଏବ ଶଙ୍କର ପ୍ରଭୃତି ବିଭିନ୍ନ ସମ୍ପ୍ରଦାୟ-ମାନଙ୍କର ନିର୍ବାଦରେ ଆଦର ପ୍ରାପ୍ତ ହୁଅନ୍ତି ନାହିଁ । ତେବେ ଏ ଶେଷ ଅତି ପ୍ରାଚୀନ, ବେଦ-ମୂଳକ ଏବଂ ହିନ୍ଦୁମାନଙ୍କଦ୍ୱାରା ସ୍ଥାପିତ, କଦାପି ବୌଦ୍ଧମାନଙ୍କଦ୍ୱାରା ସ୍ଥାପିତ ନୁହେ ।

ଆମ୍ଭେମାନେ ପୌରାଣିକ ଏବଂ ବୈଦିକ ପ୍ରମାଣଦ୍ୱାରା ପୁରୀ ମନ୍ଦିରର ପ୍ରାଚୀନତା ପ୍ରତିପାଦନ କଲୁଁ । କିନ୍ତୁ ପୁରାଣମାନଙ୍କର ଐତିହାସିକ ସତ୍ୟତା ସମ୍ବନ୍ଧରେ ପଣ୍ଡିତମାନେ ଏକମତ ନୁହନ୍ତି—"ନାନା ମୁନୀନାଂ ମତୟୋ ବିଭିନ୍ନାଃ", କିନ୍ତୁ ଯାହା ହେଉ ପୁରାଣରେ କଳ୍ପନାର ଅତି-ରଞ୍ଜନ ଲକ୍ଷିତ ହେଲେହେଁ ତହିଁରେ ଐତିହାସିକ ତତ୍ତ୍ୱ ମଧ୍ୟ ନିହିତ ଅଛି, ଏହା କେହି ଅସ୍ୱୀକାର କରିବେ ନାହିଁ । ମନୁ ମହାଭାରତାଦିରେ ଉତ୍କଳର ନାମ ଲେଖା ଅଛି । ମହାଭାରତର ସମୟ ଦତ୍ତ ସାହେବଙ୍କ ମତରେ ଖ୍ରୀଷ୍ଟପୂର୍ବ ୧୨୫୦ ଅବ୍ଦ ବୋଲି କଳ୍ପିତ ହୁଏ, କିନ୍ତୁ ଅନେକ ପଣ୍ଡିତଙ୍କର ଏଥିରେ ଐକମତ୍ୟ ଦୃଷ୍ଟିଗୋଚର ହୁଏ ନାହିଁ । "A Comprehensive History of the Religion of the Hindus" ଗ୍ରନ୍ଥର ରଚୟିତା ପଣ୍ଡିତ ଧୀରେନ୍ଦ୍ରନାଥ ପାଲଙ୍କର "Life and Teachings of Shrikrishna" ରୁ ପ୍ରକାଶ ଯେ ଭଗବାନ୍ ଶ୍ରୀକୃଷ୍ଣ ଖ୍ରୀ: ପୂ: ୧୬ଶ ବା ୧୫ଶ ଶତାବ୍ଦୀରୁ ଅଧିକ ନୁହନ୍ତି । ଶ୍ରୀମତୀ ଆନୀ ବାସନ୍ତୀ ଦେବୀ କହନ୍ତି, କୃଷ୍ଣ ଖ୍ରୀ: ପୂ: ୩୧୦୦ ବର୍ଷ ପୂର୍ବେ ଭବଲୀଳା ସାଙ୍ଗ କରିଥିବାର ସେ ପ୍ରମାଣ ପାଇଅଛନ୍ତି । ଏହିଠାରେ ଦେଖନ୍ତୁ, ୧୨୫୦, ୧୬୦୦ ଏବଂ ୩୧୦୦ ଏହି ତିନି ସମୟ ମଧ୍ୟରେ କେତେ ତାରତମ୍ୟ । ଏହିପରି ଅନ୍ୟାନ୍ୟ ପଣ୍ଡିତମାନଙ୍କର ମତ ଉଦ୍ଧାର କରି ବୈଷମ୍ୟ ଦେଖାଇବା ନିଷ୍ପ୍ରୟୋଜନ । ତେଣୁ ଆମ୍ଭେମାନେ

ନଗରର କୌଣସି ଏକ ମଠ ସ୍ଥାପନ କରିବାକୁ ପ୍ରୟାସୀ ହୋନ୍ତି, କିନ୍ତୁ ପୁରାଣକୁ ଏହାବେଳହେଁ ଅଭ୍ରାନ୍ତ ସତ୍ୟ ବୋଲି ଗ୍ରହଣ କରିବାକୁ ପ୍ରସ୍ତୁତ ହୋନ୍ତି । ଯାହା ହେଉ, ମହାଭାରତ ଓ ବ୍ୟାସ ବୌଦ୍ଧଧର୍ମର ପୂର୍ବ, ଏହା ସର୍ବବାଦିସମ୍ମତ । ଅତଏବ ଇନ୍ଦ୍ରଦ୍ୟୁମ୍ନ ସର ଏବଂ ଉତ୍କଳ ପ୍ରଦେଶର ନାମ ମହାଭାରତରେ ଲିଖିତ ଥିବାରୁ ଏବଂ ମନ୍ଦିର ଉକ୍ତ ସରର ସମୀପସ୍ଥ ଥିବା ହେତୁ ମହାଭାରତ ରଚନା ସମୟକୁ ମନ୍ଦିର ହୋଇ ସାରିଥିବାର ଅନୁମାନ କରାଯାଏ । (୨ୟ ପରିଶିଷ୍ଟ ଦ୍ରଷ୍ଟବ୍ୟ ।) ତେଣୁ ମନ୍ଦିର ବୌଦ୍ଧଧର୍ମର ପୂର୍ବ ଏହା ବୋଲିବା ବାହୁଲ୍ୟ ମାତ୍ର । ଅବଶ୍ୟ ବର୍ତ୍ତମାନ ମନ୍ଦିର ସେହି ବୌଦ୍ଧପୂର୍ବ ମନ୍ଦିର ନୁହେ । ବହୁ ପରିବର୍ତ୍ତନ ପରେ ମନ୍ଦିର ବର୍ତ୍ତମାନ ଆକାର ଧାରଣ କରିଅଛି । ସେ ସମସ୍ତ ପରିବର୍ତ୍ତନର ବିଷୟ ଯଥାସ୍ଥାନରେ ପ୍ରବନ୍ଧରେ ଲେଖାଯିବ । ମହାଭାରତ ବ୍ୟତୀତ, ଅନ୍ୟାନ୍ୟ ଅଷ୍ଟାଦଶ ପୁରାଣ ଓ ଉପପୁରାଣମାନଙ୍କରେ ପୁରୁଷୋତ୍ତମ କ୍ଷେତ୍ରର ନାମୋଲ୍ଲେଖ ଅଛି । ଅମ୍ଭେମାନେ ପୂର୍ବେ ସାଧାରଣ ହିନ୍ଦୁ ମତ ଅନୁସାରେ ଅଷ୍ଟାଦଶ-ପୁରାଣ ରଚୟିତା ବ୍ୟାସଦେବ ବୋଲି କହିଅଛୁଁ, କିନ୍ତୁ ବର୍ତ୍ତମାନ ପଣ୍ଡିତମାନେ ପୁରାଣମାନ ବ୍ୟାସରଚିତ ନୁହେ ବୋଲି ମତ ପ୍ରକାଶ କରନ୍ତି । ଉପସ୍ଥିତ ପ୍ରବନ୍ଧରେ ସେ ସବୁ ମତ ନେଇ ପର୍ଯ୍ୟାଲୋଚନା କରିବା ଆବଶ୍ୟକ ନୁହେ । ଅମ୍ଭମାନଙ୍କ ମତରେ ରାମାୟ ସ୍ୱାହା, ରାବଣାୟ ସ୍ୱାହା । ସାଧାରଣ ହିନ୍ଦୁ ସମ୍ପ୍ରଦାୟର ମତ ହେଉ, କିମ୍ବା ଆଧୁନିକ ପଣ୍ଡିତମାନଙ୍କର ମତ ହେଉ, ଯେ କୌଣସି ଦିଗରୁ ଦେଖିଲେ ଶ୍ରୀକ୍ଷେତ୍ରର ପ୍ରାଚୀନତା ଅକ୍ଷୁଣ୍ଣ ରହୁଅଛି । ମହାଭାରତଠାରୁ ସର୍ବଶେଷ ପୁରାଣ ଭାଗବତ ପର୍ଯ୍ୟନ୍ତ ସବୁଥିରେ ଏବଂ ତନ୍ତ୍ର ପ୍ରଭୃତି ଗ୍ରନ୍ଥମାନଙ୍କରେ ଏବଂ ମଧ୍ୟେ ମଧ୍ୟେ ଭିନ୍ନ ଭିନ୍ନ ପ୍ରଦେଶପ୍ରଚଳିତ ସ୍ମୃତିମାନଙ୍କରେ ପୁରୁଷୋତ୍ତମର ନାମ ଓ ମାହାତ୍ମ୍ୟ ଉଲ୍ଲେଖ ଥିବାରୁ ଏହା ପ୍ରାଚୀନ ଓ ଭାରତୀୟ ସମସ୍ତ ହିନ୍ଦୁମାନଙ୍କର ପବିତ୍ର ସ୍ଥାନ । ଏହା ଶାସ୍ତ୍ରୀୟ ପ୍ରମାଣ ଓ ନ୍ୟାୟସଙ୍ଗତ ଯୁକ୍ତିଦ୍ୱାରା ସ୍ଥିର କରାଗଲା ।

ବର୍ତ୍ତମାନ ଓଡ଼ିଶାର ପ୍ରାଚୀନ ଇତିହାସସ୍ୱରୂପ ମାଦଳାପାଞ୍ଜିରେ କଣ ଅଛି, ତାହା ବିଚାର କରାଯାଉ । ମାଦଳାପାଞ୍ଜି ଅର୍ଥାତ୍ ଲମ୍ବ ଲମ୍ବ ଭାବରେ ତାଳପତ୍ର ଲେଖା ହୋଇ ମର୍ଦ୍ଦଳାକାରରେ ବନ୍ଧା ହୋଇଥିବାରୁ ଏହାର ନାମ ମାଦଳାପାଞ୍ଜି ହୋଇଅଛି । ଏଥିରେ ଜଗନ୍ନାଥଦେବଙ୍କ ମନ୍ଦିରର ଓ ଓଡ଼ିଶାର ନରପତିମାନଙ୍କର ଇତିବୃତ୍ତ ଲିଖିତ ହୋଇଅଛି । ବୋଧ ହୁଏ, କାଶ୍ମୀରବଂଶାନୁଗତ ରାଜତରଙ୍ଗିଣୀ ନାମଧେୟ ସଂସ୍କୃତ ଗ୍ରନ୍ଥ ବ୍ୟତୀତ ଏତାଦୃଶ ଯଥାକ୍ରମରେ ଲିଖିତ ପ୍ରାଚୀନ ଇତିବୃତ୍ତ ଗ୍ରନ୍ଥ ଭାରତରେ ଅଛି କି ନାହିଁ ସନ୍ଦେହ । ଭାରତରେ ପୁରାଣ ଭିନ୍ନ ପ୍ରାଚୀନ ଇତିହାସ ଗ୍ରନ୍ଥ ନ ଥିବାରୁ ଅତିରଞ୍ଜିତାଂଶ ଅନ୍ତର କଲେ ପୁରାଣ ଭାରତୀୟ ଇତିହାସ ବୋଲି କଷ୍ଟରେ ସ୍ୱୀକାର କରିବାକୁ ହେବ । ମାଦଳାପାଞ୍ଜି ଏହାକୁ ଅବଲମ୍ବନ କରି କେତେଦୂର ପର୍ଯ୍ୟନ୍ତ ଲିଖିତ ହୋଇଅଛି, ଦେଖିବାର କଥା । କାରଣ ଏତଦ୍‌ବ୍ୟତୀତ ଅନ୍ୟ ବିଷୟାବଲମ୍ବନର ଏହାକୁ ଅଭାବ । ଏହାର ସୃଷ୍ଟି ମନ୍ଦିରକୁ ନେଇ । ତେଣୁ ଯେଉଁ ରାଜାମାନଙ୍କ ଅଧୀନରେ ମନ୍ଦିରର ତତ୍ତ୍ୱାବଧାନ ରହିଅଛି, ସେଥିରେ ସେମାନଙ୍କ ଚରିତ ମଧ୍ୟ ଲିଖିତ ହୋଇଅଛି । ଏଥିରୁ ବୋଧ ହୁଏ, ଏହା ମନ୍ଦିରର ସମକାଳୀନ । ଶୃଙ୍ଖଳାରେ ଲିଖିତ ହୋଇ ନାହିଁ ସତ୍ୟ, କିନ୍ତୁ ଯଯାତିଙ୍କ ସମୟରୁ ଯଥାକ୍ରମେ ଲେଖା ହେବାର ସମ୍ପୂର୍ଣ୍ଣ ସମ୍ଭବ; କାରଣ ବୋଧ ହୁଏ ଓଡ଼ିଶାର ସ୍ୱାଧୀନ ରାଜା ଖ୍ରୀଷ୍ଟାବ୍ଦ ଚତୁର୍ଥ ଶତାବ୍ଦିରେ ଯଯାତିକେଶରୀଙ୍କଠାରୁ ଏହାର ଉଦ୍ଭବ ବୋଲି ସ୍ଥିର କରିବାକୁ ହେବ । ଏହି ରାଜା ଅତ୍ୟନ୍ତ ବିକ୍ରମଶାଳୀ ଓ ସୁପଣ୍ଡିତ ଥିଲେ । ଏହାଙ୍କୁ ଓଡ଼ିଶାର ସ୍ୱାଧୀନତା ଓ ଅଭ୍ୟୁନ୍ନତିର ଉନ୍ନତିସମ୍ପାଦକ ବିଧାତା ବୋଲିବାକୁ ହେବ ।

ଯେଉଁ ସମୟରେ ଲେଖା ହେବାର କଥା ତ ଗଲା । ସେ ସମୟର ଭାଷା ଓ ମାଦଳାପାଞ୍ଜିଲିଖିତ ଭାଷା ଏ ଉଭୟ ପ୍ରତି ଦୃଷ୍ଟିପାତ କଲେ ଯଯାତିଙ୍କ ସମୟରୁ ଲେଖା ହୋଇଅଛି ବୋଲି ସ୍ପଷ୍ଟ ଜଣା ଯିବ ନାହିଁ; କାରଣ ଉଭୟ ଭାଷାର ଅନେକ ଅସାମଞ୍ଜସ୍ୟ ଲକ୍ଷିତ ହୁଏ । କେତେକ ଗଙ୍ଗାବଂଶ ସମୟରୁ ଏହା ଲିଖିତ ହୋଇଅଛି, ଏହା କେହି କେହି ଅନୁମାନ କରନ୍ତି; କିନ୍ତୁ ଯେଉଁ ହେତୁକୁ ଅବଲମ୍ବନ କରି ଅନୁମାନ କରନ୍ତି, ତାହା କେତେଦୂର ସତ୍ୟ ଏହା ପ୍ରମାଣ କରିବାକୁ ଗଲେ ଏହା ପରିଷ୍କାରରୂପେ ଜଣାଯାଏ ଯେ ତାହା ଅମୂଳକ । କାରଣ ଗଙ୍ଗାବଂଶୀୟମାନଙ୍କର ଏ କାର୍ଯ୍ୟ ହେଲେ ସ୍ୱବଂଶର କୀର୍ତ୍ତି ବର୍ଣ୍ଣନା ବ୍ୟତୀତ ବିଜିତ ରାଜାମାନଙ୍କର କୀର୍ତ୍ତି ବର୍ଣ୍ଣନା କରିବା ଅସମ୍ଭବ । ଯଯାତିଙ୍କ ସମୟରେ ତତ୍କାଳପ୍ରଚଳିତ ଭାଷାରେ ମାଦଳାପାଞ୍ଜି ଲେଖା ହୋଇଥିବା ସମ୍ପୂର୍ଣ୍ଣ ବିଶ୍ୱାସ, କିନ୍ତୁ ଶିକ୍ଷାର ଉନ୍ନତିସହକାରେ ଭାଷା କ୍ରମୋନ୍ନତି-ସୋପାନରେ ଅଧିରୂଢ଼ ହୋଇଅଛି । ଏହାର ରୀତି ଏପରି ପ୍ରଚଳିତ ଅଛି ଯେ ଯେଉଁ ସମୟରେ ଯେଉଁ ରାଜା ରାଜତ୍ୱ କରନ୍ତି ସେହି ସମୟରେ ଏ ମାଦଳାପାଞ୍ଜି ମୂଳରୁ ଏକପ୍ରସ୍ତ ନକଲ ଲେଖାହୁଏ । ସେହି ପ୍ରସ୍ତ ଆଗାମୀକୁ କାର୍ଯ୍ୟରେ ଲାଗେ । ପୁରାତନ ଅକର୍ମଣ୍ୟ ହୁଏ । ତହୁଁ ତତ୍କାଳୀନ ଭାଷା କାହୁଁ ଦୃଷ୍ଟ ହେବ ? ଅତଏବ ପୂର୍ବକଥିତ ହେତୁ ବ୍ୟଭିଚରିତ ।

ପ୍ରସ୍ତାବିତ ବିଷୟରୁ ପ୍ରସଙ୍ଗକ୍ରମେ ବହୁଦୂର ଆସି ଗଲି । ବୋଧହୁଏ ପାଠକମାନଙ୍କର ବିରକ୍ତି-ଭାଜନ ହେବି । ତଥାପି ଏ ବିଷୟକୁ ପ୍ରକୃଷ୍ଟ ଭାବରେ ନ ଲେଖିଲେ ଆକାଙ୍କ୍ଷାର ପୂର୍ତ୍ତି ହୁଅନ୍ତା ନାହିଁ । ଯାହା ହେଉ, ସଂକ୍ଷିପ୍ତ ବିଷୟ ଦେଖାଯାଉ । ଉକ୍ତ ପଞ୍ଜିକା ଲେଖାରୁ ବୋଧ ହୁଏ ଯେ ଇନ୍ଦ୍ରଦ୍ୟୁମ୍ନଙ୍କଠାରୁ ଭାରତର ଯେଉଁ ଯେଉଁ ରାଜା ଯେଉଁ ସମୟରେ ଚକ୍ରବର୍ତ୍ତୀ ହୋଇଥିଲେ, ସେତେବେଳେ ସେମାନଙ୍କ ଅଧୀନରେ ମନ୍ଦିର ଥିଲା । ଏହି କ୍ରମରେ ଅଶୋକ ପ୍ରଭୃତି ଯେଉଁ ଯେଉଁ ବୌଦ୍ଧ ରାଜା ଚକ୍ରବର୍ତ୍ତୀ ହୋଇଥିଲେ ସେମାନଙ୍କ ତତ୍ତ୍ୱାବଧାନରେ ବୌଦ୍ଧମତରେ ଶ୍ରୀ ଜଗନ୍ନାଥଦେବଙ୍କ ଅର୍ଚ୍ଚନାଦି ହୋଇଥିବାର ଉକ୍ତ ପଞ୍ଜିକାରୁ ପ୍ରକାଶ । ଯଦ୍ୟପି ବୌଦ୍ଧମତ ଧ୍ୱଂସରେ ହିନ୍ଦୁମାନେ ଯତ୍ନ କରିଥାନ୍ତେ, ତେବେ ଏ ମତର ଉଲ୍ଲେଖ ମାଦଳାପାଞ୍ଜିରେ ହୋଇ ନ ଥାନ୍ତା । ଏଣୁ ପଞ୍ଜିକା ପ୍ରକୃତ ସତ୍ୟ ଘଟଣା ବିବରଣରେ ଲିଖିତ ହୋଇଅଛି, ଏହା ସମ୍ପୂର୍ଣ୍ଣ ଅନୁମେୟ । ଏହି ସମୟରୁ ବୌଦ୍ଧାବତାରରୂପରେ ଜଗନ୍ନାଥ ଅଭିହିତ ହୋଇଅଛନ୍ତି ବୋଲି ଜନଶ୍ରୁତି ଏ ପ୍ରଦେଶରେ ଶୁଣାଯାଏ । ଏ ମତରେ ଜାତି-ଭେଦର ଅଭାବରୁ ସମସ୍ତ ଜାତି ଉକ୍ତ ଭେଦ ପରିତ୍ୟାଗପୂର୍ବକ ନିର୍ବିକଳ୍ପଭାବରେ ଅନ୍ନଭକ୍ଷଣ ଏଠାରେ ଦୃଷ୍ଟ ହୁଏ । ଏ ସ୍ଥାନର ବୌଦ୍ଧ ମତାବସ୍ଥିତିର ଏ ଗୋଟିଏ ମଧ୍ୟ ପ୍ରଧାନ ହେତୁ ବୋଲଯାଇ ପାରେ । ଏ ବିଷୟରେ ମତେ ବିଶେଷ କିଛି ପରିଶ୍ରମ କରିବାକୁ ହେବ ନାହିଁ, କାରଣ ଶାସ୍ତ୍ରପ୍ରମାଣସହକାରେ ବୁଦ୍ଧଦେବଙ୍କ ଜନ୍ମ ପୂର୍ବରୁ ଏ ସ୍ଥାନ ସ୍ଥାପିତ ବୋଲି ନିରୂପିତ ହୋଇଅଛି । ତେବେ ଅନ୍ନମହାପ୍ରସାଦବିଷୟକ ପ୍ରମାଣମାନ ଯେଉଁ ଯେଉଁ ଗ୍ରନ୍ଥରୁ ଉଦ୍ଧୃତ ହୋଇଅଛି, ସେହି ସେହି ଗ୍ରନ୍ଥମାନଙ୍କର ନାମ ଏ ସ୍ଥାନରେ ଲେଖା ଗଲା; ଯଥା, ପଦ୍ମପୁରାଣ, ବିଷ୍ଣୁପୁରାଣ, ଭବିଷ୍ୟ, ବ୍ରହ୍ମବୈବର୍ତ୍ତ, ବରାହପୁରାଣ, ବିଷ୍ଣୁଯାମଳତନ୍ତ୍ର, ଉତ୍ତରଯାମଳ, ବନ୍ଦ୍ରଚପରଶିଷ୍ଟ, ରୁଦ୍ରଯାମଳ, ଚତୁର୍ବର୍ଗଯୋଗୀଶ୍ୱର, ବ୍ରହ୍ମପୁରାଣ, ବାୟୁପୁରାଣ, ସ୍କନ୍ଦପୁରାଣାନ୍ତର୍ଗତ ପୁରୁଷୋତ୍ତମ ମାହାତ୍ମ୍ୟ ପ୍ରଭୃତି ଗ୍ରନ୍ଥମାନଙ୍କରେ ଲିଖିତ ଅଛି, ଜାତିଭେଦ ଏବଂ ସ୍ପୃଷ୍ଟଦୋଷ ନ ରଖି ବ୍ରାହ୍ମଣ-ଠାରୁ ଚଣ୍ଡାଳାନ୍ତ ସମସ୍ତ ବ୍ୟକ୍ତି ଅନ୍ନମହାପ୍ରସାଦ ଗ୍ରହଣ କରିବେ, ଦୂରଦେଶକୁ ନେଲେ ସୁଦ୍ଧା ଅନ୍ନମହାପ୍ରସାଦର ମାହାତ୍ମ୍ୟ ଲଘୁ ହେବ ନାହିଁ ।

ଏ ସମ୍ବନ୍ଧୀୟ ପ୍ରମାଣମାନଙ୍କ ନିମିତ୍ତ ୨ୟ ପରିଶିଷ୍ଟ ଅନୁସନ୍ଧେୟ ।

ପାଠକେ ! ଅନ୍ନମହାପ୍ରସାଦ ପ୍ରାଚୀନ କାଳରୁ ବା ବୁଦ୍ଧଙ୍କ ସମୟରୁ ପ୍ରଚଳିତ ତାହା କେତେ ଜଣ ବୁଝି ନଅନ୍ତି ! ବର୍ତ୍ତମାନ ଏ ବିଷୟରେ ସ୍କନ୍ଦପୁରାଣୋକ୍ତ କ୍ଷେତ୍ରମାହାତ୍ମ୍ୟରୁ ଗୋଟିଏ ଉପାଖ୍ୟାନ ପାଠକମାନଙ୍କର କୌତୂହଳାର୍ଥ ଉଲ୍ଲେଖ କଲି । ତୀର୍ଥଯାତ୍ରାନୁରୋଧରେ ମଧ୍ୟ-ପ୍ରଦେଶରୁ ବେଦ-ବେଦାନ୍ତପାରଗ ଅଗ୍ନିନିଷ୍ଠ ଧର୍ମପରାୟଣ ଜଣେ ସୁପଣ୍ଡିତ ବ୍ରାହ୍ମଣ ସପରିବାରରେ ଶ୍ରୀ ଜଗନ୍ନାଥ ଦେବଙ୍କ ଦର୍ଶନୋପଲକ୍ଷରେ ପୁରୁଷୋତ୍ତମ କ୍ଷେତ୍ରରେ ଉପସ୍ଥିତ ହେଲେ । ଧର୍ମଶାସ୍ତ୍ରାନୁସାରେ ଯଥାବିଧି କର୍ମମାନ ଅନୁଷ୍ଠାନ କରି କିଛିଦିନ ସେଠାରେ ଅବସ୍ଥାନ କଲେ । କିନ୍ତୁ ଯଜ୍ଞଶେଷାନ୍ନ କେବଳ ଗୃହସ୍ଥମାନଙ୍କର ଗ୍ରହଣୀୟ, ତଦ୍ଭିନ୍ନ ଅନ୍ନାନ୍ତର ଗ୍ରହଣୀୟ ହୁଏ ନାହିଁ, କେବେ ଅବଶ୍ୟ ମହାପ୍ରସାଦ ଭକ୍ଷଣୀୟ ନୁହେ, ଏହି କଥା ଭାବି ଅନ୍ନପ୍ରସାଦ ଗ୍ରହଣ କଲେ ନାହିଁ । ଅନନ୍ତର ପରିବାର ସହିତ ନିଜେ କୁଷ୍ଠରୋଗାକ୍ରାନ୍ତ ହେବାରେ ଅତ୍ୟନ୍ତ ବିପଦାପନ୍ନ ହେଲେ । ମନେ ମନେ ଚିନ୍ତା କଲେ ଯେ ମୁଁ ଏହି ସ୍ଥାନରେ କୌଣସି ଗୁରୁତର ଅପରାଧ କରିଅଛି, ନଚେତ୍ ସହସା ଏତାଦୃଶ ଅଭାବନୀୟ ବ୍ୟାଧି ମୋହର ହୁଅନ୍ତା ନାହିଁ । ଏ ଯୋଗେ ଭଗବାନଙ୍କ ସ୍ତବ-ସହକାରେ ସତତ ଚିନ୍ତା କରିବାରୁ ସ୍ୱପ୍ନରେ ଦୃଷ୍ଟ ହୋଇ ଆଦେଶ କଲେ ଯେ ତୁମ୍ଭେ ଗୁରୁତର ଅପରାଧ କରିଅଛ । ଦେଖ ଅନ୍ୟାନ୍ୟ ଧର୍ମଶାସ୍ତ୍ର ଅବଲମ୍ବନ କରି ଏ ସ୍ଥାନରେ ଯାହା ଯାହା ଅନୁଷ୍ଠାନ କରୁଅଛ, ତାହା ନିତାନ୍ତ ଭ୍ରମମୂଳକ । ଏଠାରେ ସାଧାରଣ ଧର୍ମଶାସ୍ତ୍ର ପ୍ରବଳ ହୁଏ ନାହିଁ । ଏହା ନ ବୁଝି ଅନ୍ନମହାପ୍ରସାଦ ଭକ୍ଷଣ ନ କରିବା ଗୁରୁତର ଅପରାଧ । ତୁମ୍ଭେ ଅନ୍ନପ୍ରସାଦ ସତ୍ୱର ଭକ୍ଷଣ କର, ଶୀଘ୍ର ରୋଗମୁକ୍ତ ହେବ । ଏ ଆଜ୍ଞା ଲବ୍ଧ ହେବା ମାତ୍ରକେ ପରଦିବସ ପ୍ରଭାତରେ ଅନ୍ନପ୍ରସାଦଭକ୍ଷଣ କରି ପରିବାର ସହିତ ଦୁଷ୍ଟ କୁଷ୍ଠ ରୋଗରୁ ମୁକ୍ତି ଲାଭ କଲେ । ପାଠକେ, ଏପରି ଭୂରି ଭୂରି ପ୍ରମାଣ ଗ୍ରନ୍ଥମାନଙ୍କରେ ଦୃଷ୍ଟ ହୁଏ । ପ୍ରବନ୍ଧର କଳେବରବୃଦ୍ଧି ଅନ୍ୟାନ୍ୟ ବିଷୟ ଲେଖାରୁ ଅସ୍ମାନଙ୍କୁ କ୍ଷାନ୍ତ କରାଇଲା । ନବାଗତ ରାଜାମାନଙ୍କ ସମୟରେ ଶ୍ରୀ ଜଗନ୍ନାଥ ଦେବଙ୍କର ବୌଦ୍ଧ ମତରେ ଜନ୍ମସ୍ନାନ ପୂଜାଦି ଅନୁଷ୍ଠିତ ହୋଇଅଛି । ସେହି ସମୟରେ ଅନ୍ନମହାପ୍ରସାଦର ବିଶେଷ ପ୍ରଚଳନ ଘଟିବାର ସମ୍ପୂର୍ଣ୍ଣ ସମ୍ଭବ; କିନ୍ତୁ ପୂର୍ବ ମଙ୍ଗଳ କଦାପି ବୌଦ୍ଧ ମତରେ ପ୍ରତିଷ୍ଠିତ ନୁହେ ।

କେହି କେହି କହନ୍ତି ଯେ ବୌଦ୍ଧମତରେ ମୂର୍ତ୍ତିତ୍ରୟର ଅର୍ଥାତ୍ ବୁଦ୍ଧ, ଧର୍ମ, ସଂଘଙ୍କର ପୂଜା ହେଉଥିଲା, ତାହାର ଅନୁକରଣରେ ଉକ୍ତ ଧର୍ମର ନାମ ଲୋପ କରିବା ଅଭିପ୍ରାୟରେ ମୂର୍ତ୍ତିତ୍ରୟ ସ୍ଥାପନ କରି ନିଜ ମତକୁ ଦୃଢ଼ କରିବାନିମିତ୍ତ ହିନ୍ଦୁମାନଙ୍କର ଚକ୍ରାନ୍ତ ହେବାର ସମ୍ପୂର୍ଣ୍ଣ ସମ୍ଭବ ଏବଂ ବୌଦ୍ଧମାନଙ୍କର ରଥଯାତ୍ରାକୁ ଅନୁକରଣ କରି ମଧ୍ୟ ଭୁବନେଶ୍ୱର ଏବଂ ଜଗନ୍ନାଥଦେବଙ୍କର ରଥଯାତ୍ରା ଆରମ୍ଭ ହୋଇଅଛି । ଏ ଅନୁମାନ ସଙ୍ଗତ ବୋଲି ପ୍ରତୀୟମାନ ହେଉ ନାହିଁ, କାରଣ ହିନ୍ଦୁମତ ବୌଦ୍ଧମତର ଅନେକ ସହସ୍ର ବର୍ଷ ପୂର୍ବରୁ ଭାରତବର୍ଷରେ ବିରାଜମାନ । ପରମାତ୍ମା ଅର୍ଥାତ୍ ନିରାକାରବ୍ରହ୍ମାତ୍ମକ ସାକାର ଜୀବସମଷ୍ଟି ବିରାଟ୍, ବ୍ୟଷ୍ଟି ଜୀବାତ୍ମା ଏବଂ ପ୍ରକୃତି ଏମାନଙ୍କର ଉପାସ୍ୟ । ଏ ମୂର୍ତ୍ତିତ୍ରୟର ପରିଗୃହୀତ ଯଥାକ୍ରମେ ଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରା । ଉକ୍ତ ମୂର୍ତ୍ତିତ୍ରୟଙ୍କର ଅନୁକରଣରେ ବୌଦ୍ଧମାନେ ମୂର୍ତ୍ତିତ୍ରୟର ଅର୍ଚ୍ଚନା କରୁଥିବେ ବୋଲିଲେ ଅସଙ୍ଗତ ହେବ ନାହିଁ । ରଥର ବ୍ୟବହାର ବୈଦିକ ଯୁଗରୁ ଅଛି ଏବଂ ମହାଭାରତରେ ମଧ୍ୟ ଶ୍ରୀକୃଷ୍ଣ ପ୍ରଭୃତି ଏହା ବ୍ୟବହାର କରୁଥିବାର ଦେଖା ଯାଏ । ବୌଦ୍ଧ ଧର୍ମଗ୍ରନ୍ଥରେ ଯଦି ରଥଯାତ୍ରାର ଉଲ୍ଲେଖ ଥାଏ, ତାହାହେଲେ

ବୌଦ୍ଧମାନେ ହିନ୍ଦୁଧର୍ମର ଅନୁକରଣରେ ରଥଯାତ୍ରା କରିଥିବେ, କାରଣ ପରେ କାର୍ଯ୍ୟମାନ ପୂର୍ବାନୁଗାମୀ ହୁଅନ୍ତି । ବୌଦ୍ଧମତ ହିନ୍ଦୁଧର୍ମରୁ ବିଭିନ୍ନ ମତ ନୁହେ । ତାହା ହିନ୍ଦୁଧର୍ମର ଶାଖାବିଶେଷ ଅର୍ଥାତ୍ ଉପନିଷଦର ଅନ୍ତର୍ଗତ; ସେମାନଙ୍କ ମତର ମୂଳ ଭିତ୍ତିସ୍ୱରୂପ ଲଳିତବିସ୍ତର, ମହାଶମ୍ଭୁ ପୁରାଣ ଓ ଅଷ୍ଟସାହସ୍ରିକା ପ୍ରଭୃତି ଗ୍ରନ୍ଥ ପ୍ରତି ଦୃଷ୍ଟିପାତ କଲେ ଦେଖାଯାଏ ଯେ ସେଗୁଡ଼ିକ ହିନ୍ଦୁମାନଙ୍କର ପୁରାଣର ଆଦର୍ଶରେ ରଚିତ ହୋଇଅଛି । ସେହିହେତୁରୁ ଅଶୋକ ପ୍ରଭୃତି ବୌଦ୍ଧ ରାଜାମାନଙ୍କ ମତରେ ଜଗନ୍ନାଥଙ୍କ ପୂଜା ଅନୁଷ୍ଠିତ ହେଲେ ସୁଦ୍ଧା ହିନ୍ଦୁମାନଙ୍କର ଏକାବେଳକେ ପରିତ୍ୟକ୍ତ ହୋଇ ନ ଥିଲା ।

କ୍ରମଶଃ

ଶ୍ରୀ ସଦାଶିବ କାବ୍ୟକଣ୍ଠ ।

## କବି ମାଇକେଲ ମଧୁସୂଦନ ଦତ୍ତ ଏବଂ ମେଘନାଦବଧ କାବ୍ୟ ।

କବି ମାଇକେଲ ମଧୁସୂଦନ ଦତ୍ତ ବଙ୍ଗ ଭାଷାରେ ଅନେକଗୁଡ଼ିଏ କାବ୍ୟ ଲେଖି ଯାଇଅଛନ୍ତି, ସେଥି ମଧ୍ୟରେ ମେଘନାଦବଧ ସର୍ବ ପ୍ରଧାନ । କବିଙ୍କର ଯାହା କିଛି ଗୌରବ, ମେଘନାଦ ସକାଶେ । ବଙ୍ଗଦେଶୀୟ ଥୋକେ ଶିକ୍ଷିତ ଲୋକଙ୍କ ମତରେ ମେଘନାଦବଧ ମହାକାବ୍ୟ । କାରଣ ମହାକାବ୍ୟର ବହୁଳ ଲକ୍ଷଣ ଏଥିରେ ବିଦ୍ୟମାନ । କାବ୍ୟଗତ ବିଷୟଟି କବିକଳ୍ପନାପ୍ରସୂତ ସ୍ୱତନ୍ତ୍ର ଘଟନା ନୁହେ, ରାମାୟଣ-କଳ୍ପତରୁର ଗୋଟିଏ ଶାଖାର କଲମ ବୃକ୍ଷରୂପେ ପରିଣତ । ଭୁବନବିଖ୍ୟାତ ମହାକାବ୍ୟ ରାମାୟଣ ସାହିତ୍ୟ-ଜଗତରେ ପ୍ରଦୀପ୍ତ କିରଣମାଳୀ ମହାସୂର୍ଯ୍ୟସ୍ୱରୂପ । ଉତ୍ତରଚରିତ, ଅନର୍ଘରାଘବ, ମହାନାଟକ, ଭୋଜଚମ୍ପୂ ପ୍ରଭୃତି କାବ୍ୟମାନ ଚନ୍ଦ୍ର, ବୃହସ୍ପତି, ଶୁକ୍ର ଗ୍ରହଣମଣ୍ଡଳୀ । କଥିତ ଗ୍ରହନିକର ଦିନକରକରରେ ପ୍ରଦୀପ୍ତ ହେଲେ ମଧ୍ୟ ଗଗନ ପ୍ରାଙ୍ଗଣରେ ସ୍ୱ ସ୍ୱ ତେଜରେ ସ୍ୱତନ୍ତ୍ର ରୂପରେ ଦେଦୀପ୍ୟମାନ । ଏହି ହିସାବରେ ମେଘନାଦବଧ କାବ୍ୟକୁ କେଉଁ ସ୍ଥାନୀୟ କଳ୍ପନା କରାଯାଇ ପାରେ, ବିଚାରର ବିଷୟ ଅଟେ ।

ବଙ୍ଗଦେଶର ମହାରଥୀମାନେ ମାଇକେଲଙ୍କୁ କବିଶ୍ରେଣୀର ଶୀର୍ଷସ୍ଥାନରେ ଆସନ ପ୍ରଦାନ କରି ଅଛନ୍ତି । ବାସ୍ତବିକ ମାଇକେଲ ଯେ ଜଣେ ବହୁଭାଷାବିତ୍ ସୁପଣ୍ଡିତ ଏବଂ ଅସାଧାରଣ ପ୍ରତିଭାଶାଳୀ ପୁରୁଷ ଥିଲେ, ସେ ବିଷୟ ଅସ୍ୱୀକାର କରିବାକୁ କାହାର ଅଧିକାର ନାହିଁ । ଏମନ୍ତ ସ୍ଥଳରେ ମନ୍ତବ୍ୟ ପ୍ରକାଶ କରିବାକୁ ଯିବା ଅମ୍ଭମାନଙ୍କ ପରି ସ୍ୱଳ୍ପଧୀ ଲୋକମାନଙ୍କ ପକ୍ଷରେ ଧୃଷ୍ଟତା ପ୍ରକାଶ ମାତ୍ର । ତଥାପି ଯେଉଁ ମହାକାବ୍ୟକୁ ଅମ୍ଭେମାନେ ଧର୍ମଗ୍ରନ୍ଥରୂପେ ଅର୍ଚ୍ଚନା କରୁଥାଉଁ ଏବଂ କାବ୍ୟବର୍ଣ୍ଣିତ ଯେଉଁ ବିଷୟଗୁଡ଼ିକ ଅମ୍ଭମାନଙ୍କ ନିକଟରେ ଧ୍ରୁବ ସତ୍ୟ ବୋଲି ବିଶ୍ୱାସ ଏବଂ ଯେଉଁ ଗ୍ରନ୍ଥଗତ ଚରିତ୍ରଗୁଡ଼ିକ ହିନ୍ଦୁ ଜାତିର ହୃଦୟପଟରେ ପ୍ରସ୍ତରାଙ୍କିତ ରେଖାବତ୍ ଚିତ୍ରିତ ହୋଇଅଛି, ସେହି ବର୍ଣ୍ଣିତ ବିଷୟ ବା ଚରିତ୍ରଗୁଡ଼ିକୁ କେହି ରୂପାନ୍ତରିତ ବା ବିକୃତ ଭାବରେ ଅଙ୍କିତ କଲେ ହିନ୍ଦୁ ହୃଦୟରେ ଆଘାତ ଲାଗିବାର କଥା । ଏଥିକୁ ଏ ସମ୍ବନ୍ଧରେ ମନ୍ତବ୍ୟ ପ୍ରକାଶ କରିବାକୁ ଅନଧିକାରଚର୍ଚ୍ଚା ବୋଲାଯାଇ ନ ପାରେ । ଏ କଥା ମଧ୍ୟ ବୋଲିବା ଆବଶ୍ୟକ, ପ୍ରବୀଣଲେଖକ ପରି ସାମାନ୍ୟ ଲୋକ ପକ୍ଷରେ ଭ୍ରମପ୍ରମାଦ ଘଟିବା ନିତାନ୍ତ ସ୍ୱାଭାବିକ । ପ୍ରକୃତରେ ଅମ୍ଭେମାନେ ଯେବେ ଭ୍ରମବିହ୍ୱଳ ହୋଇଥାଉଁ, କୃପା କରି କେହି ଦେଖାଇ ଦେଲେ ଅତ୍ୟନ୍ତ ଆପ୍ୟାୟିତ ହେବୁଁ ।

ସ୍ୱକୀୟ କୌଣସି ମତ ପ୍ରକାଶ କରିବା ପୂର୍ବେ

ଛନ୍ଦୋଗତ ତତ୍ତ୍ୱ ଏବଂ ବିଷୟ ସମ୍ବନ୍ଧରେ ସଂକ୍ଷେପରେ କେତେକ କଥା କହିବା ନିତାନ୍ତ ଆବଶ୍ୟକ ବୋଲି ବିବେଚନା କରୁଁ ।

ମେଘନାଦ ବର୍ଣ୍ଣିତ କାବ୍ୟର ପ୍ରଧାନ ନାୟକ । ଅଳଙ୍କାରିକମାନେ ପ୍ରଧାନ ନାୟକର ଯେସବୁ ଗୁଣ ଥିବାର ଉଚିତ ବୋଲି ନିର୍ଦ୍ଦେଶ କରନ୍ତି, ମେଘନାଦଠାରେ ସେ ସମସ୍ତ ବିଦ୍ୟମାନ । ମାତ୍ର ମେଘନାଦ ବାସବବିଜେତା ହେଉନ୍ତୁ, ଯେତେବଡ଼ ବୀର ହେଉନ୍ତୁ, କିନ୍ତୁ ଧର୍ମବୀର ନୁହନ୍ତି । ପ୍ରବୀଣ ପିତା, ରକ୍ଷୋବଂଶର ସର୍ବପ୍ରଧାନ ନେତା, ପିତା, ତ୍ରିଭୁବନବିଖ୍ୟାତ ପିତା, ଗୋଟିଏ ବନଚାରୀ ନିରାଶ୍ରୟ ଲୋକର ସର୍ବସ୍ୱ ଧର୍ମପତ୍ନୀଙ୍କୁ ଛଳବଳରେ ଅପହରଣ କରି ଆଣିଲେ; ଗୋଟିଏ ପତିଗତପ୍ରାଣା ନିରାଶ୍ରୟା ସତୀ ଯୁବତୀ ବନ୍ଦିନୀ ଅବସ୍ଥାରେ ଦିବାନିଶି ହାହାକାର କରୁଅଛି; ସେଥି ସକାଶେ ଇନ୍ଦ୍ରଜିତ ପିତାଙ୍କୁ ପଦେ ମଧ୍ୟ ହିତକଥା ବୁଝାଇ କହିଲେ ନାହିଁ, ବରଞ୍ଚ ପିତାର ଗର୍ହିତ କାର୍ଯ୍ୟରେ ପରମ ସହାୟ । କବି ଇନ୍ଦ୍ରଜିତଙ୍କୁ ସର୍ବ ବିଷୟରେ ନିର୍ଦ୍ଦୋଷ କରିବାକୁ ଯଥାସାଧ୍ୟ ଚେଷ୍ଟା କରିଅଛନ୍ତି ସତ୍ୟ, ମାତ୍ର ଗୋଟିଏ ଆଦର୍ଶ ପୁରୁଷରୂପେ ପରିଣତ କରାଇ ପାରି ନାହାନ୍ତି ।

ପ୍ରମୀଳା ।

ପ୍ରମୀଳା ପ୍ରଧାନ ନାୟକର ଧର୍ମପତ୍ନୀ, ସୁତରାଂ ପ୍ରଧାନ ନାୟିକା । ମହର୍ଷି ବାଲ୍ମୀକି ପ୍ରମୀଳାଙ୍କୁ ରାଜକୁଳବଧୂରୂପେ ବର୍ଣ୍ଣନ କରିଅଛନ୍ତି ଏବଂ କୁଳବଧୂରୂପେ ଅନ୍ତଃପୁରରେ ସ୍ଥାନ ଦେଇଅଛନ୍ତି । ମାତ୍ର ମେଘନାଦବଧରେ ପ୍ରମୀଳାର ଚରିତ୍ର ଅସାଧାରଣ ଏବଂ କବିଙ୍କର ମୌଳିକ କଳ୍ପନାର ଅନ୍ୟତମ ଜାଜ୍ୱଲ୍ୟମାନ ନିଦର୍ଶନ । କବି ଯେମନ୍ତ ଏହି ଚରିତ୍ରରେ ସମସ୍ତ ରଙ୍ଗ ଢାଳି ଦେଇଅଛନ୍ତି । ବାସ୍ତବିକ, ପ୍ରମୀଳା ଅଭାବରେ କାବ୍ୟର ଗୌରବ ବହୁ ପରିମାଣରେ ଖର୍ବ ହେବାର ସମ୍ଭାବନା । ବରଞ୍ଚ ରକ୍ଷୋବଂଶ ପାଟମହାଦେଈ ମନ୍ଦୋଦରୀ ଅଭାବରେ କାବ୍ୟର ଅଙ୍ଗହାନିର ସମ୍ଭାବନା ହରଲ, ମାତ୍ର ପ୍ରମୀଳା ହିଁ ମେଘନାଦବଧ କାବ୍ୟର ଗୌରବ-ମେରୁଦଣ୍ଡସ୍ଥାନୀୟ ଅଟେ ।

ପ୍ରଥମରେ ପ୍ରମୀଳାଙ୍କୁ ପ୍ରଥମ ସର୍ଗରେ ଭେଟିଲୁଁ । ଇନ୍ଦ୍ରଜିତ ସମର ଅନୁକୂଳ କରୁଅଛନ୍ତି, ପ୍ରମୀଳା ଉପସ୍ଥିତ, ସ୍ୱାମିଙ୍କୁ ଧରି "ତୁମ୍ଭ ବିଚ୍ଛେଦରେ ଦାସୀ କିପରି ବଞ୍ଚିବ" କହି ଖୁବ କାନ୍ଦୁଥିଲେ । ସେ ସ୍ୱାମିର ଶୌର୍ଯ୍ୟ ବୀର୍ଯ୍ୟ ପ୍ରତି ସନ୍ଦେହଚିତ୍ତା, କେଜାଣି ସଂଗ୍ରାମରୁ ବାହୁଡ଼ନ୍ତି କି ନାହିଁ ! ଏହା ତ ସ୍ୱାଭାବିକ, ପ୍ରିୟଜନର ଅମଙ୍ଗଳ ଆଶଙ୍କା ସର୍ବଦାରେ ମନ ମଧ୍ୟରେ ସମୁଦିତ ହୁଏ । ମାତ୍ର ଇନ୍ଦ୍ରବିଜୟୀ ଇନ୍ଦ୍ରଜିତ ରମଣୀଠାରୁ ଏପରି ଆଚରଣ ପ୍ରତ୍ୟାଶା କରି ଯାଏ ନାହିଁ ।

ତହିଁ ଉତ୍ତାରେ ତୃତୀୟ ସର୍ଗରେ ପ୍ରମୀଳାଙ୍କୁ ଦେଖିଲୁ । ଇନ୍ଦ୍ରଜିତ ସମରକ୍ଷେତ୍ରକୁ ଯାଇ ନାହାନ୍ତି, ମାତ୍ର ପ୍ରମୀଳା ଭୟବିହ୍ୱଳା, ରୋରୁଦ୍ୟମାନା, ଶୂନ୍ୟନାଥ କପୋତୀବତ୍ ବିଳାପପରାୟଣା । ବାସନ୍ତୀ ସଖୀ ତାହାଙ୍କ ପ୍ରବୋଧ ନିମନ୍ତେ ପୁଷ୍ପ ତୋଳିବା ସକାଶେ ଉପବନକୁ ଘେନି ଗଲେ । ପୁଷ୍ପଚୟନ ମାଳାଗ୍ରନ୍ଥନ ଉତ୍ତାରେ ପ୍ରମୀଳା ଅଧିକ ପରସ୍ତେ କାନ୍ଦିଲେ । ପୁଣି ସହସା ସାହସ ବଢ଼ିଗଲା । ଶ୍ରୀରାମଚନ୍ଦ୍ରଙ୍କ ସହିତ ଯୁଦ୍ଧ ସକାଶେ ପ୍ରସ୍ତୁତ । ପ୍ରହରଣବିମଣ୍ଡିତା ଦାନବୀ ବାହିନୀ ଧରି ବାହାରିଲେ ଏବଂ "ଦାନବ ଦାନବବାଳା ହୁହୁଙ୍କାରରବେ" ଅର୍ଥାତ୍ ଗବଣର ବନ୍ଧୁ ଭାଇ ଗୋଟାଏ ହୁହୁଙ୍କାର ରଡ଼ି ଛାଡ଼ିଲେ, ସେ କଣ ରଡ଼ି ପରି ରଡ଼ି ? "କାମ୍ପିଲ ଲଙ୍କା ଆତଙ୍କେ, କାମ୍ପିଲ ନିଷାଦୀ, ରଥୀ" ଗଜା, କୁଳବଧୂ, ବିହଙ୍ଗ, ସିଂହ, ବନରେ ହସ୍ତୀ, ଜଳରେ ଜଳଚରବୃନ୍ଦ ସମସ୍ତେ କମ୍ପିଲେ ଅର୍ଥାତ୍ ଜଗତରେ ସମସ୍ତେ କମ୍ପିଗଲେ । ସସୈନ୍ୟା ପ୍ରମୀଳା ଶ୍ରୀରାମ ଶିବିରରେ ଉପସ୍ଥିତ । ସନ୍ଧି ବା ଯୁଦ୍ଧ ପ୍ରସ୍ତାବ ଘେନି ପ୍ରମୀଳାର ଦାସୀ ନୃମୁଣ୍ଡମାଳିନୀ ଶ୍ରୀରାମଚନ୍ଦ୍ରଙ୍କ ନିକଟକୁ ଗଲେ । ଦାସୀ ରୂପ ଦେଖି ବାନର-ବାହିନୀ ଭୟବିହ୍ୱଳ । ଦାସୀହସ୍ତସ୍ଥ ଧନୁ ଦେଖି

ଶ୍ରୀରାମଚନ୍ଦ୍ର କହିଲେ "ମୁଁ ବାନର ସହିତରେ ଶାଖାମୃଗ, ମାତ୍ର ଏ ଅସୁରର ଗୁଣ ଦେଖାଇ ଅକ୍ଷମ" ସୁତରାଂ ଉନ୍ମତ୍ତ ହୋଇ ବାଟ ଛାଡ଼ି ଦେଲେ । ଏହିଁ ହସ୍ତରେ ପ୍ରମୀଳାର ସ୍ୱାମୀ ସହିତ ସମ୍ମିଳନ । ପାଠକ ମନେ ରଖିବେ, ପ୍ରମୀଳାର ଉଲ୍ଲିଖିତମାତ୍ରରେ ରାକ୍ଷସୀବାହିନୀ ପ୍ରସ୍ତୁତ, ଯେମନ୍ତ ସମସ୍ତେ ଶିକ୍ଷିତା ଓ ସମର-ଅଭ୍ୟସ୍ତା । ହିନ୍ଦୁକାବ୍ୟ ପୁରାଣରେ ନିଦର୍ଶନାଭାବ । ଏହି ଦୃଶ୍ୟରୁ ସହାରେଣ ପ୍ରଶଂସାର କଥା ଥିଲେ ତାହା ବର୍ତ୍ତମାନ କବିଙ୍କର ପ୍ରାପ୍ୟ ।

ପଞ୍ଚମ ସର୍ଗରେ ପ୍ରମୀଳା ସ୍ୱାମୀ ସହ ହିନ୍ଦୁରମଣୀ ତୁଲ୍ୟ ସହମୃତା । ଏହି ନା ରାକ୍ଷସକୁଳରେ ନୂତନ ପ୍ରଥା ।

ପ୍ରମୀଳାଚରିତ୍ରରେ ଆମ୍ଭେମାନେ ତେତେଗୋଟି ଅସମାନ ଦୃଶ୍ୟ ଦେଖୁଅଛୁଁ—

ଏକ ସମୟରେ ପ୍ରମୀଳା କୁଳବଧୂ ପରି ଭୟ-କାତରା; ଅନ୍ୟ ସମୟରେ ଉଗ୍ରଚଣ୍ଡୀ, ସମର-ପ୍ରାର୍ଥିନୀ, ଲଙ୍କାପ୍ରବେଶା, କଣ୍ଠୀଥ ସମୟରେ ଶବଶଯ୍ୟାର-ବର୍ତ୍ତିନୀ ।

ଆଉ ଗୋଟିଏ କଥା, ମହର୍ଷି ବା ସ୍ୱୟଂ କବି ଲଙ୍କାଗଡ଼ର ଯେଉଁ ମାନଚିତ୍ର ଦେଇଅଛନ୍ତି, ସେଥିରେ ପ୍ରମୀଳା ଶ୍ରୀରାମଙ୍କ ଶିବିରସମୀପବର୍ତ୍ତିନୀ ହେବା ଅସମ୍ଭବ । କବି ଯେମନ୍ତ ପ୍ରମୀଳାର ବଳ ବିକ୍ରମ ବଖାଣିବା ନିମନ୍ତେ ମାର୍ଗ ଅମାର୍ଗ, ସମୟ ଅସମୟ ପ୍ରତି ଦୃଷ୍ଟି ନିକ୍ଷେପ ନ କରି ତାହାକୁ ଅବରପନ୍ଥି ଶ୍ରୀରାମଙ୍କ ସମୀପବର୍ତ୍ତିନୀ କରାଇଅଛନ୍ତି । ପୁଣି ପ୍ରମୀଳା ନିଶୀଥରେ ଶତ୍ରୁ ସହ ସମର କରିବାକୁ ପ୍ରସ୍ତୁତା, ମେଘନାଦ କର୍ମମାତ୍ରା; ମାତ୍ର ଇନ୍ଦ୍ରଜିତ୍ ବା ରାବଣଙ୍କ କିଛି ଜଣା ନାହିଁ, ଏମନ୍ତ କି ଲଙ୍କାଗଡ଼ଦ୍ୱାରପ୍ରହରୀମାନଙ୍କୁ ମଧ୍ୟ ସମ୍ବାଦ ଜଣା ନାହିଁ ! ଆହୁରି ମଧ୍ୟ ଦେଖନ୍ତୁ, ଅସ୍ତ୍ରହସ୍ତା ପ୍ରମୀଳା ସ୍ୱାମିସମୀପବର୍ତ୍ତିନୀ ହେବା ସମୟରେ ଇନ୍ଦ୍ରଜିତ୍ ତାଙ୍କୁ ଚିହ୍ନି ପାରିଲେ ନାହିଁ । ଦାମ୍ପତ୍ୟ ପ୍ରଣୟର ପରାକାଷ୍ଠା !

ଶ୍ରୀରାମ ଲକ୍ଷ୍ମଣ ।

ହିନ୍ଦୁଙ୍କ ଶ୍ରୀରାମ, ଭୂଭାର ହରଣ ନିମନ୍ତେ ଶ୍ରୀରାମଚନ୍ଦ୍ରରୂପେ ବୈକୁଣ୍ଠବାସୀ ବିଷ୍ଣୁଙ୍କର ଅବତାର । ମହର୍ଷି ବାଲ୍ମୀକି ଶ୍ରୀରାମଚନ୍ଦ୍ରଙ୍କୁ ସେହି ଭାବରେ ଚିତ୍ରିତ କରିଅଛନ୍ତି । ମାତ୍ର ମେଘନାଦବଧରେ ଶ୍ରୀରାମଚନ୍ଦ୍ର ଜଣେ ସାଧାରଣ ମାନବରୁ ତିଳ ଅଧିକ କିଛି ନୁହନ୍ତି, ଗୋଟିଏ ତୁଚ୍ଛ ଦାସୀହସ୍ତସ୍ଥ ଯନ୍ତ୍ର ଦେଖି ଭୀତ, ଚକିତ ! ଏହା ତାହାଙ୍କ ବଳବିକ୍ରମର ଜାଜ୍ୱଲ୍ୟମାନ ନିଦର୍ଶନ । ବଳବିକ୍ରମରେ ସମ୍ମୁଖ ସମରରେ ଅଶକ୍ତ ହୋଇ ସତ୍ୟସନ୍ଧ ଶ୍ରୀରାମଚନ୍ଦ୍ର, ନ୍ୟାୟପରାୟଣ ବିଭୀଷଣ, କର୍ତ୍ତବ୍ୟନିଷ୍ଠ ସୁମିତ୍ରାନନ୍ଦନ ଅନ୍ୟାୟରୂପେ ଅସ୍ତ୍ର-ହୀନ ଇନ୍ଦ୍ରଜିତଙ୍କୁ ବଧ କରିବାନିମନ୍ତେ କୁଣ୍ଠିତ ନୁହନ୍ତି । ଲକ୍ଷ୍ମଣଙ୍କ ମହାବୀରତ୍ୱର ଏବଂ ନ୍ୟାୟ-ନିଷ୍ଠାର ନିଦର୍ଶନ ଆମ୍ଭେମାନେ ଶତ ଶତ ସ୍ଥାନରେ ଦେଖିଅଛୁଁ । ମାତ୍ର ସେହି ଲକ୍ଷ୍ମଣ ଦସ୍ୟୁଭାବରେ କଣ ଅନ୍ଧକାରରେ ପରଗୃହରେ ପ୍ରବେଶ କଲେ । ବୀରତ୍ୱର ମଧ୍ୟ ପରାକାଷ୍ଠା ଦେଖନ୍ତୁ, ଇନ୍ଦ୍ରଜିତ୍ କୌଣସି ଅସ୍ତ୍ର ନ ପାଇ ପୂଜାପାତ୍ର କୋଶା ଘୋପାଡ଼ି ମାରିଲେ, ସେହି କୋଶାଘାତରେ ଲକ୍ଷ୍ମଣ ଅଚେତନ ଓ ପତିତ ଧରଣୀତଳେ ! ଇନ୍ଦ୍ରଜିତଙ୍କୁ ଲକ୍ଷ୍ମଣ ବଧ କଲେ ନାହାନ୍ତି, ଯୁଦ୍ଧ ତ କିଛି ହୋଇ ନାହିଁ ବୋଲି-ବାକୁ ହେବ, ବଧ କଲେ ମାୟାଦେବୀ, ଲକ୍ଷ୍ମଣ ଉପଲକ୍ଷ ମାତ୍ର ।

ଇନ୍ଦ୍ରଜିତ ବଧ ଦେଖି ବିଭୀଷଣ କାନ୍ଦିଲେ, ତାହାଙ୍କୁ କାନ୍ଦିବାର ଦେଖି ଲକ୍ଷ୍ମଣ ମଧ୍ୟ କାନ୍ଦିବାକୁ ବସିଗଲେ ! ଶ୍ରୀରାମଚନ୍ଦ୍ର ଚିନ୍ତିତ ଗୃହେ ବସି-ଅଛନ୍ତି, ଏତେବଡ଼ କାର୍ଯ୍ୟବାର୍ତ୍ତା ଶୀଘ୍ର ଦେବା ଆବଶ୍ୟକ, ଲକ୍ଷ୍ମଣ ଏକଥା ମନରେ କଲେ ନାହିଁ, ଏହା କି ସ୍ୱାଭାବିକ ?

ଅନ୍ଧକାର ସଂସର୍ଗରେ ପ୍ରଦୀପର ପ୍ରଭା ପରିସ୍ଫୁଟ ହୁଏ, ମହର୍ଷି ବାଲ୍ମୀକି ତ୍ରିଭୁବନବିଦ୍ୱେଷୀ ଦେବ-ମାନବବିଦ୍ରୋହୀ ରାବଣର ସଂସର୍ଗକୁ ଆଣି ଶ୍ରୀ

ରାମଚନ୍ଦ୍ରଙ୍କ ଦେବତ୍ୱ ପ୍ରଚାରିଅଛନ୍ତି, ମାତ୍ର ବର୍ତ୍ତମାନ କବି ଯୁଗପତ୍ ରାକ୍ଷସ ରାବଣର ଅତ୍ୟାଚାରିତ୍ୱ ଓ ଶ୍ରୀରାମଚନ୍ଦ୍ରଙ୍କ ଦେବତ୍ୱ ଯଥାସାଧ୍ୟ ହ୍ରାସ କରାଇ ଦୁଇ ଜଣଙ୍କୁ ସମଧରାତଳରେ ଉଭା କରାଇବାକୁ ଚେଷ୍ଟା କରି ଅଛନ୍ତି ।

ହନୁମାନ୍ ।

ମହାବୀର ଏହି କଥାଟା ହନୁମାନ୍ ପକ୍ଷରେ ଲୁଚି ହୋଇ ପଡ଼ିଅଛି । ସାଗରଲଙ୍ଘନ, ଏକେଶ୍ୱର ଲଙ୍କାବିନାଶ ବୀରତ୍ୱର ଉଜ୍ଜ୍ୱଳ ପ୍ରମାଣ । ମାତ୍ର ବର୍ତ୍ତମାନ ସେହି ପବନନନ୍ଦନ ମହାବୀର ହନୁମାନଙ୍କୁ ଦେଖନ୍ତୁ, ନୃମୁଣ୍ଡମାଳିନୀ ଦାସୀ ହସ୍ତସ୍ଥ ଧନୁ ଦେଖି ସେ ଭୟବିହ୍ୱଳ । ଲକ୍ଷ୍ମଣ ବଧ ପାଇଁ ରାବଣ ଧାବିତ, ମାର୍ଗରୋଧୀ ହନୁମାନଙ୍କୁ ଗୋଟିଏ କାଣ୍ଡ ମାରିଲା, ସେହି କାଣ୍ଡ ଦେହରେ ବାଜିଛି କି ନାହିଁ ସନ୍ଦେହ, ମାତ୍ର ହନୁ "ପିତୃନାମ ସ୍ମରଥ—" ବାପା ଲୋ ବାପା ଲୋ କହି ପଳାଇ ଗଲେ । କେବଳ ହନୁମାନ୍ କଥା, ଶ୍ରୀରାମଚନ୍ଦ୍ରଙ୍କ ପକ୍ଷରେ ଜଣେ ମଧ୍ୟ ବୀର ନାହିଁ, ଅଳ୍ପ ଯେତେ ବେଦପାଠୀ "କେବା" ରାକ୍ଷସ ମଧ୍ୟରେ ।

ସୀତା ।

ମହର୍ଷି ବାଲ୍ମୀକିବର୍ଣ୍ଣିତା ଲକ୍ଷ୍ମୀସ୍ୱରୂପା ପରମସତୀ ଜନକତନୟା ସୀତାଙ୍କ ଚରିତ୍ର ଜଗତରେ ଅତୁଳନୀୟ । ଭାରତଭୂମିରେ ଆଜି ପର୍ଯ୍ୟନ୍ତ ଯେତେ ପୁରାଣକାର ଯେତେ କାବ୍ୟକାର ସତୀ ସାଧ୍ୱୀ ନାୟିକା ଗଠନ କରି ଯାଇଅଛନ୍ତି, ସୀତା ଛାୟା ସମସ୍ତଙ୍କ ଦେହରେ ବିଦ୍ୟମାନ । ହିନ୍ଦୁ ସୀତାଭଳି ପୁତ୍ରବଧୂ, ସୀତାଭଳି କନ୍ୟା କାମନା କରେ ।

ମହର୍ଷି ବାଲ୍ମୀକି ଅଶୋକବନବାସିନୀ ଜନକନନ୍ଦିନୀଙ୍କୁ କରୁଣଭାବରେ ଚିତ୍ରିତ କରିଅଛନ୍ତି, ଅତି ସଂକ୍ଷେପରେ ସେ ସମ୍ବନ୍ଧରେ ଦୁଇ ଚାରି ଗୋଟି କଥା କହିବାକୁ ଇଚ୍ଛା କରୁଁ । କାରଣ ମେଘନାଦବଧରେ କେବଳ ସେହି ଅବସ୍ଥାରେ ତାହାଙ୍କୁ ଦେଖି ପାରୁ ଅଛୁଁ । ରାମାୟଣର ସୀତା ଏକାକିନୀ, ଅଶୋକବନବନ୍ଦିନୀ, ଭୟଙ୍କର-ନିଶାଚରୀବେଷ୍ଟିତା । ସୀତା କେବଳ ପତିଗତ-ପ୍ରାଣା ଦାଦ୍ୟକ୍ଷୀଣକଳେବରହିତା । ସୀତାଙ୍କ ହୃଦୟ ରାମଚନ୍ଦ୍ରମୟ, ରାମନାମ ମାତ୍ର ଜପମନ୍ତ୍ର । ଦେବ-ମାନବତ୍ରାସକାରୀ ରାବଣ ସମ୍ମୁଖରେ ଉପସ୍ଥିତ, ମଧୁରବାକ୍ୟରେ ବିନୀତ ଭାବରେ ହାତ ଯୋଡ଼ି ତ୍ରିଭୁବନସ୍ଥ ସମସ୍ତ ସମ୍ପତ୍ତିର ପ୍ରଲୋଭନ ଦେଖାଇଲା, ମୈଥିଳୀ ପାଷାଣୀ । ଚେଟୀମାନେ ବିକଟମୂର୍ତ୍ତିରେ ଭକ୍ଷଣ କରିବାକୁ ଧାଇଁଲେ, ସୀତା ଦେବୀ ନିର୍ଭୀତା । ମହର୍ଷି ବାଲ୍ମୀକି ଏ ସ୍ଥାନରେ ଧର୍ମବଳର ଅସୀମ ଶକ୍ତିର ଅତି ସୁନ୍ଦର ନିଦର୍ଶନ ଦେଖାଇଅଛନ୍ତି । ସରମା ଜନକନନ୍ଦିନୀ-ହିତୈଷିଣୀମାତ୍ର ଅବକାଶକ୍ରମେ କେବଳ ସାନ୍ତ୍ୱନା-ପ୍ରଦାୟିନୀ । ଅତଃ ମେଘନାଦବଧ କାବ୍ୟସ୍ଥ ସୀତାଙ୍କ ଚିତ୍ର ଦେଖନ୍ତୁ,—ସୀତା ଦେବୀ ଅଶୋକବନରେ ବନ୍ଦିନୀ । ଦୁଃଖ ସୁଖ କଥା କହି ମନକୁ ଭୁଲାଇବା ପାଇଁ ସୌଭାଗ୍ୟକ୍ରମେ ସରମା ସଖୀକୁ ସମୀପରେ ପାଇଅଛନ୍ତି । ସୀତାଙ୍କ ଦୁଃଖର କାରଣ, ସେ ବନ୍ଦିନୀ ଅବସ୍ଥାରେ ଅଛନ୍ତି । ପଞ୍ଚବଟୀବନ ଗୋଦାବରୀ ତଟସ୍ଥ ଋଷିପତ୍ନୀମାନଙ୍କୁ ହରାଇ ଅଛନ୍ତି, ଏହି ଦୁଃଖ । କୁରଙ୍ଗୀମାନଙ୍କ ସହିତ ନାଚୁଥିଲେ, ବନରେ ଗୀତ ଗାଇ ବୁଲୁଥିଲେ, ତାହା ବର୍ତ୍ତମାନ ନାହିଁ, ଏହି ଦୁଃଖ । ଭ୍ରମରରୂପ ନାରୁଣୀନୃଅଇଁମାନଙ୍କୁ ହରାଇ ଅଛନ୍ତି, ଏହି ଦୁଃଖରେ କାତର, ଇତ୍ୟାଦି ଇତ୍ୟାଦି । ଅନ୍ୟତ୍ର ମଧ୍ୟ ଦେଖନ୍ତୁ—ସରମାକୁ ରାମାୟଣର ପାଞ୍ଚ କାଣ୍ଡ ପାଠ ଶୁଣାଇବା ନିମନ୍ତେ କବି ଜାନକୀଙ୍କୁ ଖୁବ୍ ଅବକାଶ ଓ ଧୈର୍ଯ୍ୟ ପ୍ରଦାନ କରିଅଛନ୍ତି । କବି ଖୁବ କୌଶଳପୂର୍ବକ ସୀତାଦେବୀଙ୍କଦ୍ୱାରା ରାମାୟଣର ବର୍ଣ୍ଣିତ କରାଇ କାବ୍ୟର ଅଙ୍ଗ ବେଶ ପୁଷ୍ଟ କରିଅଛନ୍ତି; ମାତ୍ର ଏହା ସ୍ୱୀକାର କରିବାକୁ ହେବ, ଏଥିରେ ସୀତାଦେବୀଙ୍କର କେତେକ ପରିମାଣରେ ସୀତାତ୍ୱ ନଷ୍ଟ ହୋଇଅଛି । ସୀତା-

ଦେବୀଙ୍କ ମହିମା ପ୍ରକାଶର କ୍ଷେତ୍ର ବନତ୍ରୟ— ଅଶୋକବନ, ପଞ୍ଚବଟୀବନ, ବାଲ୍ମୀକିତପୋବନ । ବର୍ଣ୍ଣିତ କାବ୍ୟ ମହର୍ଷି-ଆଶ୍ରମ-ସମ୍ପର୍କ-ଶୂନ୍ୟ । ଆଉ ଦୁଇ ସ୍ଥାନରେ ସୀତାଙ୍କୁ ତ ଦେଖିଲେ ? ସୀତାଦେବୀଙ୍କ ଚରିତ୍ର ହିନ୍ଦୁଲଲନାମାନଙ୍କର ଅନୁକରଣୀୟ, ଏମନ୍ତ କି ପ୍ରତ୍ୟେକ ହିନ୍ଦୁକୁଳବଣି ସତୀର ହୃଦୟପଟରେ ସୀତାଦେବୀଙ୍କ ଚିତ୍ର ଅଙ୍କିତ ରହିଅଛି । ଯେଉଁମାନେ ରାମାୟଣ ବୃତ୍ତାନ୍ତ କଦାପି ଶ୍ରବଣ କରି ନାହାନ୍ତି ସେମାନଙ୍କ ହୃଦୟରେ ମଧ୍ୟ ମାତୃପରମ୍ପରା ସୀତାଦେବୀଙ୍କ ଛାୟା ପ୍ରତିଫଳିତ ହୋଇ ରହିଅଛି । ବର୍ତ୍ତମାନ ଆମ୍ଭମାନଙ୍କୁ ଦୁଃଖର ସହିତ ବୋଲିବାକୁ ହେଉଅଛି, କବି ସୀତା ଚରିତ୍ର ଅଙ୍କନ କରିବା ହିନ୍ଦୁସାଧାରଣର ଦୁର୍ଭାଗ୍ୟର ବିଷୟ ଅଟେ ।

ଆମ୍ଭେମାନେ ଏପର୍ଯ୍ୟନ୍ତ ମେଘନାଦବଧ କାବ୍ୟର କେତେଗୋଟି ନାୟକ ନାୟିକାଙ୍କ ଚରିତ୍ରଗତ କେତେକ ବିଷୟ ବର୍ଣ୍ଣନ କଲୁଁ । ମାତ୍ର କେବଳ ନାୟକ ନାୟିକା ଘେନି କାବ୍ୟ ନୁହେ । ଭାଷା କାବ୍ୟର ଶରୀର, ନାୟକ ନାୟିକା ବୃତ୍ତଚୟ, ଭାବ ତାହାର ଜୀବନ, ଅଳଙ୍କାର ତ ଅଳଙ୍କାର । କାବ୍ୟ ସମ୍ବନ୍ଧରେ ସାଧାରଣ ଭାବରେ ମନ୍ତବ୍ୟ ପ୍ରକାଶ ପୂର୍ବେ ଅନ୍ୟାନ୍ୟ ବିଷୟ ସମ୍ବନ୍ଧରେ କେତେକ କଥା ବୋଲିବା ନିତାନ୍ତ ଆବଶ୍ୟକ ବିବେଚନା କରୁଁ ।

ଭାଷା ।

ବଙ୍ଗଭାଷା ବଙ୍ଗଯୋଷା ସମାନ ତରଳା, ସରଳା ଏବଂ ମଧୁରନାଦିନୀ ଅଟେ । ମାତ୍ର ଉପସ୍ଥିତ କାବ୍ୟକାର ଯେମନ୍ତ ତାହାଙ୍କୁ ଦଷ୍ଟ୍ର ଜଟିଳା, କୁଟିଳା ଓ ପରୁଷନାଦିନୀ କରି ପକାଇଅଛନ୍ତି ବୋଲି ବୋଧ ହୁଏ । ଏ କଥା ଧ୍ରୁବ ସତ୍ୟ, କବି ତାହାଙ୍କୁ ଗଜପୃଷ୍ଠରମଣୀ ସମାନ ତେଜସ୍ୱିନୀ କରିଅଛନ୍ତି ।

ଅଳଙ୍କାର ସମ୍ବନ୍ଧରେ ସଂକ୍ଷିପ୍ତରୂପେ ବୋଲି ଯାଇପାରେ, କବି ସ୍ୱଦେଶୀୟ ଓ ବିଦେଶୀୟ ଅତି ଅପୂର୍ବ, ଅତି ମହାର୍ଘ, ଅତି ସୁଗଠିତ ଅଳଙ୍କାରଦ୍ୱାରା କାବ୍ୟ ଅଙ୍ଗକୁ ବିମଣ୍ଡିତ କରାଇ ଅତି ସୁନ୍ଦରରୂପେ ସଜ୍ଜିତ କରିଅଛନ୍ତି ଏବଂ କର୍ତ୍ତବ୍ୟ ଅନୁରୋଧରେ ଏହା ମଧ୍ୟ ବୋଲିବାକୁ ହେଉଅଛି ଯେ ଅଳଙ୍କାର-ଭାରରେ କାବ୍ୟ ଯେମନ୍ତ ଲସରପସର ହୋଇ ଗଲୁଅଛି ।

ନିତାନ୍ତ ଦୁଃଖିତ ହୋଇ ଲେଖିବାକୁ ହେଉଅଛି, କାବ୍ୟଗତ ବିସୃଷ୍ଟିର ସମ୍ପୂର୍ଣ୍ଣ ଗୌରବ ହୃଦୟଙ୍ଗମ କରିବାକୁ ଆମ୍ଭେମାନେ ଅକ୍ଷମ । ହିସାବ ଅନୁସାରେ ଷଷ୍ଠ ସର୍ଗରେ ମେଘନାଦବଧଠାରେ କାବ୍ୟ ସମାପ୍ତ ହେବାର ଉଚିତ । କି ହେଲା, ମେଘନାଦର ଅନ୍ତ୍ୟେଷ୍ଟିକ୍ରିୟା ଅଥବା ଅନୁଷଙ୍ଗିକ ଲକ୍ଷ୍ମଣଶକ୍ତି-ଶେଲସନ୍ଧାନେ ଆଉ ଏକ ସର୍ଗ ପାଠ ଚଳି ପାରେ । ମାତ୍ର କବି ଅକାରଣ ଯେମନ୍ତ ଆଉ କେତେକ ସର୍ଗ ବଢ଼ାଇ ଦେଇଅଛନ୍ତି ।

ଆଉ ଗୋଟିଏ କଥା, ତ୍ରେତାଯୁଗରେ ରାମ-ରାବଣ ସମର ସଂଘଟନ—ତ୍ରେତା ଶେଷ କଳିର ଅବ୍ୟବହିତ ପୂର୍ବେ କୁରୁପାଣ୍ଡବଙ୍କ ଉତ୍ପତ୍ତି । ମାତ୍ର ଆମ୍ଭେମାନେ ସମାଲୋଚ୍ୟ କାବ୍ୟରେ ଶ୍ରୀକୃଷ୍ଣ, ଅର୍ଜ୍ଜୁନ, କୀଚକ, ବୃହନ୍ନଳା, ହିଡ଼ମ୍ବା ସମସ୍ତଙ୍କୁ ଦେଖୁଅଛୁଁ ।

ସପ୍ତମସର୍ଗରେ କୁମାରସମ୍ଭବୀୟ ହରଧ୍ୟାନଭଙ୍ଗର ବିକୃତରୂପେ ପୁନରଭିନୟ । ପୁଣି ମହାଦେବଙ୍କ ହସ୍ତରେ କବି ଯେ ସମସ୍ତ କାର୍ଯ୍ୟ କରାଇଅଛନ୍ତି, ବିବେକବିଶିଷ୍ଟ ସାଧାରଣ ଜଣେ ମାନବ ମଧ୍ୟ ସେପରି କାର୍ଯ୍ୟ କରିବାକୁ ସଙ୍କୁଚିତ ହେବ । ପାର୍ବତୀ, ଇନ୍ଦ୍ର, ଇନ୍ଦ୍ରାଣୀ ମହାଦେବୀଗୁଡ଼ିକ ଷଡ଼ଯନ୍ତ୍ରକାରିଣୀ, ତାରକବିଜୟୀ ଦେବସେନାପତି କାର୍ତ୍ତିକେୟ ଗୋଟିଏ କୋମଳାଙ୍ଗ ଶିଶୁମାତ୍ର । ଉପାସକ ଆପଣା ଉନ୍ନତ ଚରିତ୍ରସମସ୍ତ ଉପାସ୍ୟ ଦେବଦେବୀ ପ୍ରତି ଆରୋପ କରିଥାନ୍ତି, ଅଥବା ଦେବଦେବୀଙ୍କ ଉନ୍ନତ ଚରିତ୍ରସମସ୍ତ ଉପାସକର ଅନୁକରଣୀୟ । ଏକ ସମ୍ପ୍ରଦାୟ ହିନ୍ଦୁ ଜଘନ୍ୟ-ଚରିତ୍ର ଦେବ ଦେବୀଙ୍କ ଉପାସକ, ବିଦେଶୀୟ

ଲୋକମାନଙ୍କୁ ଏକଥା ବୁଝିବାକୁ କବି ଯଥେଷ୍ଟ ଅବକାଶ ଦେଇ ନାହାନ୍ତି କି ?

କାବ୍ୟରେ ସ୍ୱର୍ଗନରକ ବର୍ଣ୍ଣନ ଅନାବଶ୍ୟକ, ନୂତନତ୍ୱବର୍ଜ୍ଜିତ । ହିନ୍ଦୁ କାବ୍ୟକାର ପୁରାଣକାରମାନଙ୍କ ପ୍ରସାଦରୁ ଆମ୍ଭେମାନେ ଅନେକ ସ୍ୱର୍ଗ ନରକ ଦର୍ଶନ କରିଅଛୁଁ । ବର୍ଣ୍ଣିତ ସ୍ୱର୍ଗ ନରକରେ ଜ୍ଞାତବ୍ୟ ବିଷୟ ଅଧିକ କଣ ଅଛି ? ଅଧିକରେ ଖ୍ରୀଷ୍ଟାନ ସ୍ୱର୍ଗ ନରକର ଅନନ୍ତତ୍ୱର ଆଭାସ ଏଥିରେ ବିଦ୍ୟମାନ । ହିନ୍ଦୁର ବିଶ୍ୱାସ, ସ୍ୱର୍ଗ ନରକର ସ୍ଥାନ ସ୍ୱତନ୍ତ୍ର ସ୍ୱତନ୍ତ୍ର, ଅଧିକାରୀ ମଧ୍ୟ ସ୍ୱତନ୍ତ୍ର ସ୍ୱତନ୍ତ୍ର । ମେଘନାଦବଧ କାବ୍ୟ ମତରେ ଇଂରେଜ ଜେଲ ପରି ଯମପୁରୀର ଦୁଇଟା ଡିପାର୍ଟମେଣ୍ଟ—ଦେୱାନି ଏବଂ ଫୌଜଦାରୀ ।

କବି ଏହି ସୂତ୍ର ଅବଲମ୍ବନ କରି ସ୍ୱର୍ଗ ନରକର ଅବତାରଣା କରିଅଛନ୍ତି—

ଲକ୍ଷଣ ଶକ୍ତିଶେଳରେ ପତିତ, ଦଶରଥଙ୍କଠାରୁ ବଞ୍ଚିବାର ବ୍ୟବସ୍ଥା ଆଣିବାକୁ ହେବ । ଦଶରଥ ଯମପୁରୀରେ, ସୁତରାଂ ଶ୍ରୀରାମଚନ୍ଦ୍ରଙ୍କୁ ସେ ସ୍ଥାନକୁ ଯିବାକୁ ପଡ଼ିଲା । ମାତ୍ର ସେ ସଳଖେ ସଳଖେ ଦଶରଥଙ୍କ ନିକଟକୁ ଗଲେ ନାହିଁ, ନରକର ପ୍ରତ୍ୟେକ ସ୍ଥାନ ବୁଲି ବୁଲି ଦେଖିଲେ, ପ୍ରତ୍ୟେକ ପାପିର ବିଧି ବ୍ୟବସ୍ଥା ବୁଝିଲେ । ବ୍ରହ୍ମାଣ୍ଡରେ ଯେତେ ଜଣା ଶୁଣା ମହାପୁରୁଷ ସ୍ୱର୍ଗକୁ ଯାଇଅଛନ୍ତି, ସମସ୍ତଙ୍କ ସହିତ ଆଳାପ କଲେ । ଏଣେ ରାତ୍ରିମଧ୍ୟରେ ବ୍ୟବସ୍ଥା ନ ହେଲେ ଲକ୍ଷ୍ମଣ ରକ୍ଷା ପାଇବେ ନାହିଁ, ମାତ୍ର ଶ୍ରୀରାମଚନ୍ଦ୍ର ସ୍ୱର୍ଗ ନରକ ଦର୍ଶନରେ ନିଯୁକ୍ତ ।

ଅନ୍ୟତ୍ର ମଧ୍ୟ ଲକ୍ଷ୍ମଣଙ୍କ ଶକ୍ତିଶେଳ ସମୟର ଚିତ୍ରଟା ଦେଖନ୍ତୁ,—ପୁତ୍ରହନ୍ତା ଲକ୍ଷ୍ମଣଙ୍କୁ ମାରିବା ସକାଶେ ରାବଣ ଧାବିତ, ଶ୍ରୀରାମଚନ୍ଦ୍ର ବାଟ ଓଗାଳିଲେ, ଯୁଦ୍ଧ କରିବାକୁ ପ୍ରସ୍ତୁତ, କିନ୍ତୁ ରାବଣ ଜବାବ ଦେଲେ "ହେ ବୈଦେହୀନାଥ ! ତୁମ୍ଭେ ଆଉ ଦିନେ ବଞ୍ଚି ରହ ଅର୍ଥାତ୍ କାଲି ତୁମ୍ଭଙ୍କୁ ମାରି ପକାଇବି, ଆଜି ତୁମ୍ଭ ଭାଇ ବୀରର ଲକ୍ଷ୍ମଣକୁ ମାରି ଅସେଁ ।" ଏକଥା ଶ୍ରବଣ କରି ଶ୍ରୀରାମଚନ୍ଦ୍ର ମୌନଂ ସମ୍ମତିଲକ୍ଷଣଂ ପରି ବିଶ୍ରାମ ନିମନ୍ତେ ଧୀରେ ଧୀରେ ଶିବିରକୁ ଚାଲିଗଲେ । ଭ୍ରାତୃସ୍ନେହର ପରାକାଷ୍ଠା !

ଏହି ସମସ୍ତ କାରଣ ବିଦ୍ୟମାନରେ କେହି ଯେବେ ମେଘନାଦବଧକୁ ଜାତୀୟ କାବ୍ୟ ଓ ମହାକାବ୍ୟ ବୋଲିବାକୁ ପ୍ରସ୍ତୁତ ହୁଅନ୍ତି, ହେଉନ୍ତୁ ।

ଆଉ ଗୋଟିଏ ପ୍ରଶ୍ନ, ଆମ୍ଭେମାନେ କି ସକାଶେ ମେଘନାଦବଧ ପାଠ କରିବୁ ? କାବ୍ୟପାଠରେ ଆମୋଦ ଅଛି, ପୁଣି ନିର୍ଦ୍ଦୋଷରେ ସମୟ କଟେ । ଦୁଇଚାରି ପଶା ଖେଳିଲେ କିମ୍ବା ଉଦ୍ୟାନରେ ଭ୍ରମଣ କଲେ ତ ଆମୋଦ ଲାଭ ହେବ, ସେଥିରେ ସନ୍ଦେହ କରିବାର କାରଣ ନାହିଁ । କବି ଭୟ, କ୍ରୋଧ, ଖେଦ, ସାହସ, କରୁଣ ପ୍ରଭୃତି ରସର ଅବତାରଣା ଯେପରି କୌଶଳରେ ଓ ପୂର୍ଣ୍ଣମାତ୍ରାରେ କରିଅଛନ୍ତି, ତାହା ବଙ୍ଗଭାଷାର ଅନ୍ୟ କାବ୍ୟରେ ଦୁର୍ଲ୍ଲଭ । ଗ୍ରନ୍ଥ ପାଠ ସମୟରେ ପାଠକ ଯେ ସ୍ଥାନେ ସ୍ଥାନେ ଭୀତ, ସ୍ତମ୍ଭିତ, ରୋମାଞ୍ଚିତ ଓ ଚକିତ ହୋଇ ପଡ଼ିବେ, ଏ କଥା ଅତୀବ ନିଶ୍ଚୟ । ଏହି ହିସାବରେ ମେଘନାଦବଧ ମହାକାବ୍ୟ ଓ ମାଇକେଲ ଅମର କବି, ଏହା ଧ୍ରୁବସତ୍ୟ । ମାତ୍ର କାବ୍ୟପାଠର ଉଦ୍ଦେଶ୍ୟ କେବଳ ଆମୋଦ ସମ୍ଭୋଗ ନୁହେ । ଆମୋଦସମ୍ଭୋଗ ଗୌଣ, ଉପଦେଶ ମୁଖ୍ୟ ଉଦ୍ଦେଶ୍ୟ । କାବ୍ୟ ଜନସମାଜର ଗୁରୁ ଓ ଉପଦେଷ୍ଟା । କାବ୍ୟଗତ ନାୟକ ଓ ନାୟିକାଙ୍କ ଚିତ୍ର ଚରିତ୍ରଗଠନର ପରମ ସହାୟ । ଆମ୍ଭମାନଙ୍କ ଚରିତ୍ରଗଠନର ସାହାଯ୍ୟକାରୀ ମେଘନାଦରୁ ଏମନ୍ତ ଗୋଟିଏ ଚିତ୍ର ଦେଖାନ୍ତୁ ତ ? ଦୁଃଖରେ ସୁଖରେ, ସମ୍ପଦରେ ବିପଦରେ, ହର୍ଷରେ ବିଷାଦରେ କେଉଁ ଅବସ୍ଥାରେ କେଉଁ ଚିତ୍ରଟି ଆମ୍ଭମାନଙ୍କ ମନରେ ଉଦିତ ହେବ ? ଆମ୍ଭମାନଙ୍କ ସାହଚର୍ଯ୍ୟ କରିବା ଭଳି ଗୋଟିଏ ଚିତ୍ର ଅଛି କି ? ଆମ୍ଭମାନଙ୍କ ମନରେ ଉଦାର ମହତ୍ତ୍ୱ ଆଣି ଦେବ କିମ୍ବା ସ୍ୱାଭାବିକ ବିବେକଶକ୍ତିକୁ ଉତ୍ତେଜିତ କରି

ହେବ, ଏମନ୍ତ କିଛି ନୂତନ ଅଛି କି ? ଅଥବା ଏମନ୍ତ କିଛି ନୈତିକ ଉପଦେଶ ଅଛି ଯାହା କି ସମାଜର ନୈତିକ ଶୃଙ୍ଖଳାକୁ ଦୃଢ଼ କରିପାରେ ? କିମ୍ବା ମନ ମଧ୍ୟରେ ଏମନ୍ତ କିଛି ଶକ୍ତିର ଉଦ୍‌ଭବ ହେବ ଯହିଁରେ କି ଅନନ୍ତ ପରବ୍ରହ୍ମଙ୍କ ସତ୍ତା ଅନୁଭବ କରିବାକୁ କ୍ଷମ ହୋଇ ପାରିବୁଁ ? ତେବେ କି ସକାଶେ ଅମ୍ଭମାନଙ୍କ ପବିତ୍ର ଗ୍ରନ୍ଥର ବିକୃତ ଆକାର ଦର୍ଶନ କରିବୁଁ ? ହିନ୍ଦୁର ରାମାୟଣ ସମ୍ବନ୍ଧରେ ଯେଉଁ ଧାରଣା ଅଛି, ତାହା ! ଚିରକାଳ ଥାଉ, ତାହା ଯଦି ଭ୍ରାନ୍ତ ଧାରଣା ହୁଏ, ତାହା ମଧ୍ୟ ବାଞ୍ଛନୀୟ । ରାମାୟଣପାଠ ସମୟରେ ଚିତ୍ରଗୁଡ଼ିକ ଅମ୍ଭମାନଙ୍କ ନୟନରେ ନୃତ୍ୟ କରେ, ଘଟନାବଳୀ ପ୍ରତ୍ୟକ୍ଷବତ୍ ପ୍ରତୀୟମାନ ହୁଏ, ଫଟୋଗ୍ରାଫ-ଦର୍ପଣପତିତ ଛାୟା ପରି ଚିରକାଳ ସକାଶେ ହୃଦୟପଟରେ ଚିତ୍ରିତ ହୋଇଯାଏ, ଘଟନା ପଶ୍ଚାଦ୍‌ଭାଗରେ ମନ ଧାବିତ ହୁଏ, ସେ ଧାବନ ଅବିଶ୍ରାନ୍ତ । ପୁନର୍ବାର ବୋଲୁଅଛୁଁ, ଜାତୀୟ ଉଚ୍ଚତମ ଚରିତ୍ର ଆଦର୍ଶରେ କାବ୍ୟ ଚିତ୍ରିତ, ପକ୍ଷାନ୍ତରେ କାବ୍ୟଗତ ଚରିତ୍ର ଜାତୀୟ ଚରିତ୍ର ଗଠନର ପରମସହାୟ ।

କାବ୍ୟ ଓ ଧର୍ମଗ୍ରନ୍ଥର ସ୍ୱାତନ୍ତ୍ର୍ୟ ଅନୁଭବ କରିବାକୁ ସାଧାରଣ ହିନ୍ଦୁ ପକ୍ଷରେ କଠିନ ଅଛି । ପାଶ୍ଚାତ୍ୟ ଶିକ୍ଷାଲୋକପ୍ରାପ୍ତ ହିନ୍ଦୁମାନଙ୍କ କଥା ସ୍ୱତନ୍ତ୍ର, ସେମାନଙ୍କ ସଂଖ୍ୟା ମଧ୍ୟ ପରିମିତ । ହିନ୍ଦୁର ଧାରଣା, ରାମାୟଣ କାବ୍ୟ, ରାମାୟଣ ଧର୍ମଗ୍ରନ୍ଥ; ଯେଉଁ ହିନ୍ଦୁ ସନ୍ତାନ ରାମାୟଣ ଗ୍ରନ୍ଥ ସ୍ପର୍ଶ ମଧ୍ୟ କରି ନାହିଁ, ସେ ମଧ୍ୟ ରାମାୟଣୀ ମାନଙ୍କର ଅନୁଶାସନରେ ଶୁଣିଛି । ପିତୃଭକ୍ତି, ସନ୍ତାନବାତ୍ସଲ୍ୟ, ଭ୍ରାତୃସ୍ନେହ, ପତିପରାୟଣତା ପ୍ରଭୃତି ସଦ୍‌ଗୁଣସମସ୍ତ ହିନ୍ଦୁ ରାମାୟଣରୁ ଶିକ୍ଷା କରିଅଛି । ହିନ୍ଦୁ ରାମଚନ୍ଦ୍ର ପରି ପୁତ୍ର କାମନା କରେ । ହିନ୍ଦୁ ପୁତ୍ରବଧୂ ଓ କନ୍ୟାକୁ ଆଶୀର୍ବାଦ କରେ, ତୁ ସୀତା ସମାନ ସତୀ ହୋ । ଧର୍ମବଳହିଁ ପ୍ରକୃତ ବଳ, ଏଥିର ଜାଜ୍ଜ୍ୱଲ୍ୟମାନ ଦୃଷ୍ଟାନ୍ତ ରାମାୟଣରେ ବିଦ୍ୟମାନ । ଏମନ୍ତ କି ରାମାୟଣକୁ ବାହାର କରି ନେଲେ ହିନ୍ଦୁର ହିନ୍ଦୁତ୍ୱ ଅଧାରଶୂନ୍ୟ ହୋଇ ପଡ଼ିବ ।

ହିନ୍ଦୁଜାତିର ଯଦି କିଛି ଗୌରବ କରିବାର ବସ୍ତୁ ଥାଏ, ତାହା ବେଦ, ମହାଭାରତ ଓ ରାମାୟଣ । କଷ୍ଟକଳ୍ପିତ ତଥା ବିବିଧ ଅତ୍ୟାଚାରରେ ହିନ୍ଦୁ ଗତସର୍ବସ୍ୱ, ମାତ୍ର ହିନ୍ଦୁର ପ୍ରକୃତ ଗୌରବ-ସ୍ତମ୍ଭ-ଚୂଡ଼ାକୁ କେହି ସ୍ପର୍ଶ ମଧ୍ୟ କରି ପାରି ନାହିଁ, ପାରିବ ନାହିଁ । ଏହି ସ୍ତମ୍ଭର ମୂଳଦୁଆ ହିନ୍ଦୁହୃଦୟରେ ନିହିତ, ଚୂଡ଼ା ଧ୍ରୁବଲୋକ-ବିଷ୍ଣୁଲୋକସ୍ପର୍ଶୀ, ସ୍ତମ୍ଭଲଗ୍ନ ରତ୍ନରାଜିର ବିମଳ ଜ୍ୟୋତି ହିନ୍ଦୁର, ଶିରା-ଉପଶିରା-ବାହୀ ରକ୍ତ ବିନ୍ଦୁକେ ପ୍ରତିଫଳିତ । ଏହି ପରମପୂଜ୍ୟ ଦେବ-ମନ୍ଦିର କିମ୍ବା ତହିଁର ଅଧିଷ୍ଠାତ୍ରୀ ଦେବପ୍ରତିମା-ଗୁଡ଼ିକୁ କେହି ଭିନ୍ନରୂପରେ କଦର୍ଯ୍ୟ ରୂପରେ ଚିତ୍ରିତ କଲେ ହିନ୍ଦୁ ହୃଦୟରେ ଆଘାତ ଲାଗିବାର କଥା । ଏଥିସକାଶେ ଅମ୍ଭେମାନେ ମେଘନାଦବଧ କାବ୍ୟ ସମ୍ବନ୍ଧରେ ଏତେ କଥା କହିଲୁଁ ।

ଶ୍ରୀ ଫକୀରମୋହନ ସେନାପତି ।

---

## ସଫଳତାର ସଦୁପାୟ ।

ଭାରତବର୍ଷର ପାଠଶାଲାଗୁଡ଼ିକରେ ଯେଉଁ ଶିକ୍ଷା ପ୍ରଚଳିତ ଅଛି, ତାହାର ସଂସ୍କାର କରିବା ପାଇଁ ଗବର୍ଣ୍ଣମେଣ୍ଟ ପ୍ରୟାସୀ ହୋଇଅଛନ୍ତି । ସହର ଏବଂ ଭଦ୍ରପଲ୍ଲୀଗୁଡ଼ିକରେ ପ୍ରାଥମିକ ଶିକ୍ଷାର ଯେପରି ବ୍ୟବସ୍ଥା ଅଛି, କୃଷକପଲ୍ଲୀଗୁଡ଼ିକରେ ସେପରି ବ୍ୟବସ୍ଥା ଅନୁପଯୁକ୍ତ ବୋଲି ସ୍ଥିର ହୋଇଅଛି । ଏହି ସ୍ଥାନଗୁଡ଼ିକର ପାଠ୍ୟ ବିଷୟ ସରଳ କରିବାର ପ୍ରସ୍ତାବ ବିଚାର କରିବା ପାଇଁ ଗବର୍ଣ୍ଣମେଣ୍ଟ ପାଞ୍ଚ ଜଣ ରାଜକର୍ମଚାରୀ ନେଇ ଗୋଟିଏ କମିଟି ଗଠନ କରିଥିଲେ, ସେମାନଙ୍କ ମଧ୍ୟରେ ମିଃ କେ, ଜି, ଗୁପ୍ତ

ମହାଶୟ ଏକ ମାତ୍ର ଦେଶୀୟ ସଭ୍ୟ ଅଟନ୍ତି । ଏହି କମିଟିର ପ୍ରସ୍ତାବଗୁଡ଼ିକ ପାଠ କରି ମନେ ହେଉଅଛି, ଯେମନ୍ତ କି ଗବର୍ଣ୍ଣମେଣ୍ଟ ଚାଷାମାନଙ୍କ ହିତକୁ ଉପଲକ୍ଷ ମାତ୍ର କରି ସମଗ୍ର ଦେଶର ଘୋର ଅନିଷ୍ଟ କରିବାକୁ ଉଦ୍ୟତ ହୋଇଅଛନ୍ତି । ଏହି ପ୍ରସ୍ତାବଗୁଡ଼ିକ ମଧ୍ୟରେ ପ୍ରଧାନ ପ୍ରସ୍ତାବ ଏହି:—ଇଂରାଜୀଭାଷାରେ ଲିଖିତ ଆଦର୍ଶ ପାଠ୍ୟପୁସ୍ତକଗୁଡ଼ିକ ପ୍ରଚଳିତ ଭାଷାରେ ଅନୁବାଦ କରାଇ କୃଷକସନ୍ତାନମାନଙ୍କ ହସ୍ତରେ ଦେବାକୁ ହେବ । କାରଣ ପ୍ରଚଳିତ ପାଠ୍ୟପୁସ୍ତକମାନ ନ୍ୟୂନାଧିକ ସଂସ୍କୃତାୟିତ(Sanskritized)ଭାଷାରେ ଲିଖିତ ହୋଇଥାଏ—ତାହା ପଲ୍ଲୀବାସିମାନଙ୍କର ଅବୋଧ । ଏହି ବିଷୟ ଯେନ ଦେଶ ମଧ୍ୟରେ ସବଳ ଆନ୍ଦୋଳନ ଉପସ୍ଥିତ ହୋଇଅଛି ଏବଂ ନାନା ଲୋକେ ନାନା ଆଶଙ୍କା କରୁଅଛନ୍ତି । ଏହି ବିଷୟ ଉପଲକ୍ଷ କରି ବଙ୍ଗଦେଶର ସୁପ୍ରସିଦ୍ଧ ଲେଖକ ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ଠାକୁର ମହାଶୟ 'ସଫଳତାର ସଦୁପାୟ' ଶୀର୍ଷକ ଗୋଟିଏ ଅତ୍ୟନ୍ତ ସାରବାନ୍ ଓ ତେଜୋପୂର୍ଣ୍ଣ ପ୍ରବନ୍ଧ ବଙ୍ଗଦର୍ଶନ ପତ୍ରିକାରେ ପ୍ରକାଶ କରିଅଛନ୍ତି । ପ୍ରବନ୍ଧଟିର ସାରମର୍ମ ଯେତେଦୂର ସମ୍ଭବ ତାଙ୍କ ନିଜ କଥାରେ ଆଜି ଉତ୍କଳସାହିତ୍ୟର ପାଠକବର୍ଗଙ୍କ ନିକଟରେ ଉପସ୍ଥାପିତ କରୁଅଛୁଁ । ବିଷୟଟି ଏପରି ଗୁରୁତର ଯେ ପ୍ରତ୍ୟେକ ଭାରତବାସିର ଏହା ଅବଶ୍ୟ ଜ୍ଞାନୀୟ ।

ଉକ୍ତ କମିଟିର ପ୍ରସ୍ତାବଟି ସମ୍ବନ୍ଧରେ ଲେଖକ ମହାଶୟ ନିମ୍ନଲିଖିତ ପ୍ରକାର ମନ୍ତବ୍ୟ ପ୍ରକାଶ କରିଅଛନ୍ତି:—

ଗୃହଜାତ ଇଂରାଜ ଏବଂ ସେମାନଙ୍କର ଅନୁଗତ ଜଣେ ବଙ୍ଗାଳି ଦେଶୀୟ ଶିକ୍ଷାପ୍ରଣାଳୀର ଭିତ୍ତି-ପତ୍ତନରେ ଭାଷା-ବିଚ୍ଛେଦ ଘଟନାଟିକୁ matter of great importance ଗୁରୁତର ପ୍ରୟୋଜନୀୟ ବୋଲି ମନେ କରନ୍ତି ।

ପ୍ରୟୋଜନୀୟତାର ବିଚାର ଭିନ୍ନ ପକ୍ଷରୁ ଭିନ୍ନ ଆକାର ଧାରଣ କରେ । ଯେଉଁ ବ୍ୟକ୍ତି 'ମାଛଝୋଳ' ଖାଇବାକୁ ଇଚ୍ଛା କରନ୍ତି ତାଙ୍କ ପକ୍ଷରେ ମାଛଟାକୁ ଚାରି ପାଞ୍ଚ ଖଣ୍ଡ କରି କାଟି ପକାଇବା matter of great importance, କିନ୍ତୁ ମାଛ ପକ୍ଷରେ କୌଣସି ପ୍ରକାରେ ମୁଣ୍ଡଗଣ୍ଡି ଏକତ୍ର ରହିବା matter of great importance. ଏହିପରି ଭିନ୍ନ ପକ୍ଷର ଭିନ୍ନ ଲକ୍ଷ ଥିବାରୁ କମିଟି ନିକଟରେ ଯାହା ଏତେ ବେଶି ପ୍ରୟୋଜନୀୟ ବୋଧ ହେଉଅଛି, ଆମ୍ଭମାନଙ୍କର ସେଥିରେ ତିଳେମାତ୍ର ଉତ୍ସାହ ବୋଧ ହେଉ ନାହିଁ ।

ଜାତୀୟ ଐକ୍ୟର ପ୍ରଧାନ ଅବଲମ୍ବନ ଭାଷା—ପରସ୍ପର ମଧ୍ୟରେ ଅନ୍ତରର ଗତିବିଧିର ଏହାହିଁ ରାଜପଥ । ଭାରତବର୍ଷରେ ଭାଷାର ବୈଚିତ୍ର୍ୟ ଆମ୍ଭମାନଙ୍କୁ ଯେପରି ଖଣ୍ଡବିଖଣ୍ଡ କରିଅଛି, ଗିରି-ସମୁଦ୍ରର ବ୍ୟବଧାନ ମଧ୍ୟ ସେପରି କରି ପାରି ନାହିଁ । ଏହା ଉପରେ ଯେଉଁଠାରେ ଭାଷାବିଚ୍ଛେଦ ନାହିଁ, ସେଠାରେ ଯଦି ବିଚ୍ଛେଦ ସଯତ୍ନରେ ପ୍ରସ୍ତୁତ କରାହୁଏ, ଯାହା ଭଗ୍ନ ତାହାକୁ ଯଦି ଚକରେ ପକାଇ ଚୂର୍ଣ୍ଣ କରିବାର ଚେଷ୍ଟା ଦେଖି ପାରୁଁ, ତେବେ—ତେବେ କଣ ଆଉ କରିପାରୁଁ, ଅନ୍ତତଃ ଦୁଇ ହାତ ଉଠାଇ ବ୍ରିଟିଶ ସରକାରଙ୍କୁ ଆଶୀର୍ବାଦ କରନ୍ତୁଁ ନାହିଁ ।

ଶାନ୍ତପ୍ରକୃତି ଲୋକମାନେ କହିବେ, ଏଠାରୁ ଭୟରେ ଅସ୍ଥିର ହେବାର କାରଣ କଣ, କେବଳ ପ୍ରସ୍ତାବମାତ୍ର ହୋଇଅଛି, ବର୍ତ୍ତମାନ ପର୍ଯ୍ୟନ୍ତ କଥାଟା ତ ପକ୍କା ହୋଇ ନାହିଁ ।

ଭୀତ ହେବାର କାରଣ, ଏହି ବ୍ୟାପାରଟି ପୂର୍ବବର୍ତ୍ତୀ ଅନ୍ୟାନ୍ୟ ଘଟନା ସହିତରେ ଦୃଢ଼ଭାବରେ ସମ୍ବଦ୍ଧ । ଆମ୍ଭମାନଙ୍କ ଭାଗ୍ୟ-ଗଗନରେ ଧୂମକେତୁର ପୁଚ୍ଛରୁ ଆରମ୍ଭ କରି ତାହାର ମୁଣ୍ଡଟି ପର୍ଯ୍ୟନ୍ତ ସମସ୍ତ ଧୂମକେତୁଟି ଯେପରି କ୍ରମଶଃ ପରିସ୍ଫୁଟ ହୋଇ ଉଠୁଅଛି—ସୁତରାଂ ବର୍ତ୍ତମାନ ଏହାକୁ ସ୍ୱପ୍ନ ବା ମାୟା ବୋଲି ଉଡ଼ାଇଦେଲେ ଚଳିବ ନାହିଁ । ବୁଝାଯାଉଅଛି,

କର୍ତ୍ତୃପକ୍ଷଙ୍କ ତରଫରୁ ଅମ୍ଭମାନଙ୍କ ଦେଶଟାକୁ ବିଚ୍ଛିନ୍ନ କରିବାଟା ଗୋଟାଏ mather of great importance ହୋଇ ପଡ଼ିଅଛି ।

କିନ୍ତୁ ଏପରି ସନ୍ଦେହ କରିବାଟା ଯେ ଅମ୍ଭମାନଙ୍କ ଚରିତ୍ରଗତ ଦୋଷ, ତାହା ଯେନ ବହୁଦିନ ହେଲା କର୍ତ୍ତୃପକ୍ଷ ଅମ୍ଭମାନଙ୍କୁ ଭର୍ତ୍ସନା କରୁଅଛନ୍ତି । ଦୋଷ ସଂଶୋଧନ କରିବା ଅମ୍ଭମାନଙ୍କ ପକ୍ଷରେ ଉତ୍ତରୋତ୍ତର କଠିନ ହୋଇ ପଡ଼ୁଅଛି, ତାହା ଅମ୍ଭମାନଙ୍କୁ ସ୍ୱୀକାର କରିବାକୁ ହେବ । ବେଦନା ଯେଉଁଠାରେ, ଭୟ ସେଠାରେ ବେଶି, ସୁତରାଂ ସନ୍ଦେହ ସେଠାରେ ସ୍ୱାଭାବିକ । ରୁଷିଆ ଟିକିଏ ହଲଚଲ ହେଲେ ଇଂରାଜ ହଠାତ୍ ସନ୍ଦେହ କରି ବସନ୍ତି, ବୋଧହୁଏ ଭାରତବର୍ଷ ଆଡ଼କୁ ହିନ୍ଦୁକାଠିଃ ଅଗ୍ରସର ହେଉଅଛି—ଏ ସମ୍ବନ୍ଧରେ କେତେ ବିଜ୍ଞ ଲୋକ କେତେ ଆଶ୍ୱାସ ପ୍ରଦାନ କରିଅଛନ୍ତି, କିନ୍ତୁ ସ୍ୱଭାବ କୌଣସି ପ୍ରକାରେ ଯାଏ ନାହିଁ—ପତତି ପତତ୍ରେ ବିଚଲତି ପତ୍ରେ ଶଙ୍କିତଭବଦୁପଯାନଂ—କାରଣ ଏହି ସାମ୍ରାଜ୍ୟଟି ପ୍ରତି ଇଂରାଜର ଅତ୍ୟନ୍ତ ଦରଦ । ଅମ୍ଭମାନଙ୍କର ମଧ୍ୟ ଯେଉଁଠାରେ ଦରଦ, ସେଠାରେ ଅମ୍ଭେମାନେ ସତର୍କ ନ ହୋଇ ରହି ପାରୁ ନାହିଁ । ଆଜି ସମସ୍ତ ୟୁରୋପ ପରସ୍ପର ପ୍ରତି ସନ୍ଦେହ ଯୋଗୁଁ କମାଣ ବନ୍ଧୁକଦ୍ୱାରା ଆପାଦମସ୍ତକ କଣ୍ଟକିତ ହୋଇଅଛି—ଆଉ ଅମ୍ଭେମାନେ ହୀନଶକ୍ତି ଜାତି, ପ୍ରବଳ ରାଜାଙ୍କ ଇଚ୍ଛାଧୀନ ହୋଇ ରହିଅଛୁଁ, କେବଳ ଇଚ୍ଛାଧୀନ ନୁହେଁ, ସନ୍ଦେହାଧୀନ ହୋଇ ରହିଅଛୁଁ, ଅମ୍ଭେମାନେ ବେଳେ ବେଳେ ବ୍ୟସ୍ତ ହୋଇ ଉଠି କାଗଜରେ ଲେଖୁଁ ଓ ସଭା ଡାକୁଁ, ରେଜୋଲ୍ୟୁଶନ ପାସ କରୁଁ ଓ ମେମୋରିଏଲ ପଠାଉଁ ମାତ୍ର—ସେଥିରେ ଜଗତରେ କାହାର କିଛି କ୍ଷତି ହୁଏ ନାହିଁ, ଫଳ ମଧ୍ୟ ଅତି ଅଳ୍ପ ମିଳେ, ଲାଞ୍ଛନା ଯଥେଷ୍ଟ ଘଟେ—ତଥାପି ସ୍ୱଭାବ ଯାଏ ନାହିଁ—ସେ ସ୍ୱଭାବ ପ୍ରାଚ୍ୟ ସ୍ୱଭାବ ନୁହେଁ, ମନୁଷ୍ୟ ସ୍ୱଭାବ ।

ସ୍ନେହ ଅଛି ଦେଖିବାକୁ ଗଲେ ସନ୍ଦେହ କରିବାଟା କେବଳ ସ୍ୱାଭାବିକ ତାହା ନୁହେଁ, ତାହା କର୍ତ୍ତବ୍ୟ ; ମାତା ସନ୍ତାନର ଗଳାରେ ସୁନା-କଣ୍ଠି ପିନ୍ଧାଇ ବାହାରକୁ ପଠାଇଲା ବେଳେ ସନ୍ଦେହ କରେ ଯେ, ଯେଉଁ ବ୍ୟକ୍ତି ପର, ତାହା ନିକଟରେ ମୋ ସନ୍ତାନର ପ୍ରାଣଠାରୁ ସୁନା କଣ୍ଠି ବେଶି ମୂଲ୍ୟବାନ୍ ବୋଧ ହୋଇ ପାରେ । ପର ପ୍ରତି ତାହାର ଏହି ସନ୍ଦେହ ଅନ୍ୟାୟ ହେଲେ ମଧ୍ୟ ସନ୍ତାନରକ୍ଷା ପକ୍ଷରେ ଏହା ତାହାର କର୍ତ୍ତବ୍ୟ । ସରକାରଙ୍କ ସବୁ ମତଲବ ଯେତେବେଳେ ଅମ୍ଭେମାନେ ବୁଝି ପାରୁଁ ନାହିଁ ଏବଂ ବୁଝିବା ସମ୍ଭବ ମଧ୍ୟ ନୁହେଁ, ସେତେବେଳେ ଦେଶ ପ୍ରତି ମମତ୍ୱବଶତଃ ମନଟି ସନ୍ଦେହ କରି ବସିବା ଯେ ଅତ୍ୟନ୍ତ ଅନ୍ୟାୟ ତାହା ନୁହେଁ । ମନେ କର ତିବ୍ବତୀୟଗଣ ଯଦି ସେମାନଙ୍କ ଦେଶରେ ଇଂରାଜଙ୍କ ପରମବୈଷ୍ଣବଭାବାପନ୍ନ ସାତ୍ତ୍ୱିକ ଅଭିଯାନ peaceful mission କଥା ଏକାବେଳକେ ବିଶ୍ୱାସ ନ କରି ଗୋରାମାନଙ୍କ ତରଫରେ କିଛି କ୍ରୂର ମତଲବ ଥିଲା ବୋଲି ସନ୍ଦେହ କରିଥାନ୍ତି, ତେବେ ସେମାନଙ୍କ ପ୍ରାଚ୍ୟ ପୂର୍ବପୁରୁଷଙ୍କ ନାମ ଧରି କଟୁ କଥା କହିବା କଣ ସମସ୍ତଙ୍କ ମୁଖରେ ଶୋଭା ପାଇବ ? ବ୍ୟାଧ ନିଶ୍ଚିନ୍ତଭାବରେ ଗୋଡ଼ ଚିପି ଚିପି ଚାଲିବାର ଦେଖି ପୁବା ସନ୍ଦିଗ୍ଧ ପକ୍ଷୀ ଯେତେବେଳେ ଉଡ଼ି ଯାଏ, ସେତେବେଳେ ଶିକାରୀ ତାହାକୁ ଦୁଷ୍ଟ ବୋଲି ଗାଳି ଦିଏ ଶୁଣିଅଛୁଁ—କିନ୍ତୁ ସେ ବ୍ୟକ୍ତି ଯଦି ବ୍ୟାଧ ହୋଇ ନ ଥାନ୍ତା, ତେବେ ଏତେ ବିରକ୍ତ ହୁଅନ୍ତା ନାହିଁ—ସେ ସକରୁଣ ଚିତ୍ତରେ କହନ୍ତା, ସନ୍ଦିଗ୍ଧ ସତର୍କତା ବନ୍ୟ ପକ୍ଷୀ ପକ୍ଷରେ ପ୍ରାଣରକ୍ଷା କରିବାର ଗୋଟିଏ ଉପାୟ । ବିଶେଷତଃ ଏହା ମଧ୍ୟ ଭାବିବାର ବିଷୟ ଯେ ପକ୍ଷୀ ଯଦି ସନ୍ଦିଗ୍ଧ ଓ ସତର୍କ ନ ହୁଏ, ତେବେ ଆଜି ଯେଉଁ ବ୍ୟକ୍ତି ବ୍ୟାଧ ନୁହେଁ, କାଲି ତାହାର ମଧ୍ୟ ଶିକାର କରିବାର ପ୍ରଲୋଭନ ଜାଗି ଉଠିବ ।'

କର୍ତ୍ତୃପକ୍ଷ କହୁଅଛନ୍ତି, ଅମ୍ଭେମାନେ ନିତାନ୍ତ କୃଷିମାନଙ୍କ ଉପକାର କରିବାକୁ ଇଚ୍ଛା କରୁଁ । ତାହା ହୋଇ ପାରେ, କିନ୍ତୁ କମିଟି ମଧ୍ୟ ଯେ ବାସ୍ତବଭାବରେ ସେହି ଉଦ୍ଦେଶ୍ୟସାଧନ ପ୍ରତି ଦୃଷ୍ଟି ରଖିଅଛନ୍ତି ସେ କଥାଟି ବିଶ୍ୱାସ କରିବା ସହଜ ହୁଅନ୍ତା, ଯଦି ଦେଖନ୍ତୁ ଯେ କର୍ତ୍ତୃପକ୍ଷଙ୍କ ସ୍ୱଦେଶରେ ସେମାନଙ୍କର ସ୍ୱଜାତୀୟ କୃଷିମାନଙ୍କର ଏହିପ୍ରକାର ଉପାୟରେ ଉପକାର କରନ୍ତୁଏ । ସେହିମାନଙ୍କ ଶାସ୍ତ୍ର କହୁଅଛି, Charity begins at home, ଏ ସ୍ଥଳରେ ଘରଠାରୁ ପର ପ୍ରତି ବଦାନ୍ୟତାର ମାହାତ୍ମ୍ୟ ଦେଖି ଅମ୍ଭେମାନେ ଶଙ୍କିତ ହୋଇଅଛୁଁ ।

ଇଂରେଜଙ୍କ ଦେଶରେ ମଧ୍ୟ ଚଷା ଯଥେଷ୍ଟ ଅଛନ୍ତି ଏବଂ ସେଠାରେ ଯେଉଁ ଭାଷାରେ ପାଠ୍ୟ-ଗ୍ରନ୍ଥ ଲେଖା ହୁଏ, ତାହା ଚଷାମାନଙ୍କ ମଧ୍ୟରେ ପ୍ରଚଳିତ ନାହିଁ । ଏ ସମ୍ବନ୍ଧରେ ଜଣେ ଇଂରେଜଙ୍କ ବାକ୍ୟ ଉଦ୍ଧାର କରୁଁ । ଆସାମର ଭୂତପୂର୍ବ ସ୍କୁଲ ଇନ୍‌ସ୍ପେକ୍ଟର ରବିନ୍‌ସନ୍ ସାହେବ ଲେଖି-ଅଛନ୍ତି:—

Is there not some difference between this language and that used by Johnson ? The orthorgraphy appears different, the grammatical forms are different; the vocables themselves, as here given, it would be impossible to find in any dictionary of the English language ..................................... Call this a distinct language, the Vernacular dialect of the people, having more point of difference from, than of resemblance to, the language usually known as the English, and proceed to prepare School-books in it ?

ଏଥିରୁ ସ୍ପଷ୍ଟ ଦେଖା ଯାଉଅଛି, ଇଂଲଣ୍ଡରେ କୃଷିମାନଙ୍କର ଶିକ୍ଷା ସୁଗମ କରିବା ଯଦିଓ ନିଶ୍ଚୟ Matter of great importance, ତଥାପି ଇଂଲଣ୍ଡର ସର୍ବତ୍ର ଇଂରେଜୀଭାଷାର ଐକ୍ୟ ରକ୍ଷା କରିବା matter of great importance, କିନ୍ତୁ ସେ ଦେଶର କୃଷିମାନଙ୍କ ଉପକାର ଓ ଭାଷାର ଅଖଣ୍ଡତାରକ୍ଷା ଉଭୟ କାର୍ଯ୍ୟ ଏକ ସ୍ୱାର୍ଥର ଅନ୍ତର୍ଗତ, ଏ ସମ୍ବନ୍ଧରେ କୌଣସି ପକ୍ଷ-ଭେଦ ନାହିଁ—ସୁତରାଂ ସେଠାରେ ଭାଷାକୁ ଖଣ୍ଡଖଣ୍ଡ କରି କୃଷିମାନଙ୍କର କଷ୍ଟରୁ କ୍ଳେଶଲାଘବ କରିବାର କଳ୍ପନା ମାତ୍ର କୌଣସି ପାଞ୍ଚଜଣ ବୁଦ୍ଧିମାନଙ୍କ ଏକତ୍ର ସମ୍ମିଳିତ ମସ୍ତକରେ ଉଦିତ ହୋଇ ନ ପାରେ । କିନ୍ତୁ ଆମ୍ଭମାନଙ୍କ ଦୁର୍ଭାଗ୍ୟ ଦେଶରେ ରାଜପୁରୁଷ ଭାବୁଅଛନ୍ତି ଚଷାର ପରିଶ୍ରମ ଲଘୁ କରିବା କଥା, ଅମ୍ଭେମାନେ ଭାବୁଅଛୁଁ ଭାଷାର ଐକ୍ୟ ରକ୍ଷା କରିବାର ଉପାୟ;—ଯାହା ଏକ ଭାବନାର ଅନ୍ତର୍ଗତ ହେବାର କଥା, ତାହା ଦୁଇ ଭାଗରେ ବିଭକ୍ତ ହୋଇଥିବାରୁ ବିପଦ ଘଟିଅଛି ।

କର୍ତ୍ତୃପକ୍ଷ ଏବଂ ସେମାନଙ୍କ ବଙ୍ଗାଳି ପାରିଷଦ କହୁଅଛନ୍ତି, ତୁମ୍ଭମାନଙ୍କ ସାହିତ୍ୟର ଭାଷା ବଡ଼ ବେଶି Sanskritized ଅର୍ଥାତ୍ ସଂସ୍କୃତାପ୍ଳୁତ । ସେଥିପାଇଁ କୃଷିପଲ୍ଲିର ପାଠଶାଳାରୁ ଏହାକୁ ନିର୍ବାସିତ ନ କଲେ, ଚଷାପିଲାମାନଙ୍କୁ observer, thinker ଏବଂ experimenter ବୀକ୍ଷଣପର, ମନନଶୀଳ ଓ ପରୀକ୍ଷାପଟୁ କରି ଯାଇ ନ ପାରେ ।

ପୂର୍ବତନ ଯୁଗରେ ଇଉରୋପରେ ହଠାତ୍ ଯେତେବେଳେ ଏକ ସମୟରେ ଶିଳ୍ପ-ସାହିତ୍ୟର ଗୋଟିଏ ବନ୍ୟା ଆସି ଉପସ୍ଥିତ ହେଲା, ସେହି ସମୟର ଇଉରୋପୀୟ ନାମ "ରେନେସାସ୍" । ସେହି ରେନେସାସର ବନ୍ୟାମୁଖରେ ଷୋଡ଼ଶ ଶତାବ୍ଦୀରେ ବହୁତ ଲାଟିନମୂଳକ କଥା ଇଂରେଜୀ ଭାଷାରେ ପ୍ରବେଶ ଲାଭ କରିଥିଲା । ଅମ୍ଭମାନଙ୍କ ଦେଶରେ ପ୍ରାଚୀନ ଭାଷା ସହିତ ଅଧୁନାତନ ପ୍ରାକୃତ ଭାଷାଗୁଡ଼ିକର ଏହିପରି ଆକସ୍ମିକ ସମ୍ବନ୍ଧ ନୁହେଁ, ବସ୍ତୁତଃ ସଂସ୍କୃତଭାଷା ସହିତ ଏହାର ନାଡ଼ୀର ଯୋଗ ରହିଅଛି । ଅନ୍ୟ କାରଣ ଛାଡ଼ି ଦେଲେ

ମଧ୍ୟ ଏହା ଦେଖିବାକୁ ହେବ ଯେ, ଅସ୍ମମାନଙ୍କ ଦେଶର ଧର୍ମ-ସାହିତ୍ୟର ଏକମାତ୍ର ପ୍ରସ୍ରବଣ ସଂସ୍କୃତ । ପୁରାଣପାଠ, କୀର୍ତ୍ତନ, ପୌରାଣିକ ଯାତ୍ରା, ପାଲା ପ୍ରଭୃତି ଯାହା କିଛି ଅସ୍ମମାନଙ୍କ ସାଧାରଣ ଲୋକଙ୍କର ଉପଦେଶ ଓ ଆମୋଦର ଉପକରଣ, ସମସ୍ତ ସ୍ୱଭାବତଃ ସଂସ୍କୃତ କଥାକୁ ଦେଶରେ ସର୍ବତ୍ର ସଞ୍ଚାରିତ କରି ଦେଉଅଛି । ଦେଶର ପଣ୍ଡିତମଣ୍ଡଳୀ ସହିତ ଦେଶର ସାଧାରଣଙ୍କର ଏହି ଜ୍ଞାନସମ୍ବନ୍ଧ ଓ ଭାବସମ୍ବନ୍ଧର ପଥ ଚିରଦିନ ଅବାରିତ ଅଛି । ବର୍ତ୍ତମାନକାଳରେ ମଧ୍ୟ ଦେଶର ବିଦ୍ୱାନମାନେ ଯେଉଁ ଭାଷା ମଧ୍ୟରେ ସେମାନଙ୍କର ଜ୍ଞାନ ସଞ୍ଚୟ କରି ରଖୁଅଛନ୍ତି, ଯେଉଁ ଭାଷାରେ ଦେଶର ସମସ୍ତ ଭଦ୍ରସମ୍ପ୍ରଦାୟ ସେମାନଙ୍କର ଧାରଣାଶକ୍ତି, ମନନାଶକ୍ତି, ପରୀକ୍ଷଣା ଶକ୍ତିର ସମସ୍ତ ଫଳକୁ ବିସ୍ତୀର୍ଣ୍ଣ ଦେଶ ଓ ବିସ୍ତୀର୍ଣ୍ଣ କାଳ ନିମନ୍ତେ ସ୍ଥାୟୀଭୂତ କରିବାକୁ ଚେଷ୍ଟା କରୁଅଛନ୍ତି, ସେହି ଭାଷା ସହିତ ଜନସାଧାରଣଙ୍କ ଚିତ୍ତର ଯୋଗ କୃତ୍ରିମ ବାଧାଦ୍ୱାରା ବିଚ୍ଛିନ୍ନ କରି ଦେବା ସରକାରଙ୍କ ପକ୍ଷରେ ଏକାନ୍ତ ପ୍ରୟୋଜନୀୟ ହୋଇ ଉଠିଅଛି, ଏକଥା କହିଲେ ଅବଶ୍ୟ ଅସ୍ମମାନଙ୍କୁ ବିଶ୍ୱାସ କରିବାକୁ ହେବ—କିନ୍ତୁ ଛାତ୍ରମାନଙ୍କ ମଙ୍ଗଳ ପକ୍ଷରେ ଏହା ପ୍ରୟୋଜନୀୟ, ଏ କଥା ସ୍ୱୟଂ କୃଷ୍ଣଗୋବିନ୍ଦ ଗୁପ୍ତ ମହାଶୟ କହିଲେ ମଧ୍ୟ ବିଶ୍ୱାସ କରିବୁଁ ନାହିଁ । ଯଦିଚ ସେ ବଙ୍ଗାଳ ଏବଂ ବଙ୍ଗାଳ ହୋଇ ମଧ୍ୟ ବଙ୍ଗଳାଦେଶର ଭାଷାକୁ ଶତଖଣ୍ଡ କରିବା-ପାଇଁ ଛୁରି ଉଠାଇ ଅଛନ୍ତି, ଏବଂ ଯଦିଚ ସେ Brutus ଙ୍କ ପରି honourable man ତଥାପି ତାଙ୍କ ହସ୍ତରୁ ଏହି ଗୁପ୍ତ ଅଘାତ ପାଇଲା ବେଳେ ଅଜ ତାଙ୍କ ମାତୃଭାଷା କହି ଉଠିଅଛି "Et tu Brute!" ଗୁପ୍ତ ମହାଶୟ ତୁମ୍ଭେ ମଧ୍ୟ !

ଇଚ୍ଛା ଥିଲା, ଇଉରୋପର ନାନା ଇତିହାସରୁ ଉଦ୍ଧାର କରି ଦେଖାଇବୁଁ ଯେ ଜାତୀୟ ମିଳନ ଓ ସାହିତ୍ୟର ଏକଭାଷା ପରସ୍ପର ପରସ୍ପରକୁ ଆଶ୍ରୟ ଦେଇ ଦେଶର ଐକ୍ୟଚେଷ୍ଟାକୁ ସଫଳ କରେ । ଗ୍ରାମ ଆପଣାର ସଙ୍କୀର୍ଣ୍ଣ ବ୍ୟବହାର ପାଇଁ ସ୍ୱଭାବତଃ ଆପଣା ସଙ୍କୀର୍ଣ୍ଣ ଉପଭାଷାକୁ ଗଠନ କରେ, ଦେଶ ସେହିପରି ଆପଣା ବୃହତ୍ ବ୍ୟବହାର ପାଇଁ ଆପଣା ସାହିତ୍ୟ-ଭାଷାକୁ ସ୍ୱଭାବତଃ ଗଠନ କରିଥାଏ । ଏକ କୁଟୀରରୁ ଅନ୍ୟ କୁଟୀରକୁ, ଏମନ୍ତକି ଏକ ପଲ୍ଲୀରୁ ଅନ୍ୟ ପଲ୍ଲୀକୁ ଯିବାପାଇଁ ରାଜପଥର ପ୍ରୟୋଜନ ନ ହୋଇ ପାରେ—ପଦଚିହ୍ନିତ ପଥହିଁ ଯଥେଷ୍ଟ;—କିନ୍ତୁ ଯେଉଁଠାରେ ବ୍ୟାପକ ବାଣିଜ୍ୟର ବିସ୍ତାର ଆରମ୍ଭ ହୋଇଅଛି, ଯେଉଁ-ଠାରେ ଏକଦେଶରୁ ଦେଶାନ୍ତରକୁ, ଗ୍ରାମରୁ ନଗରକୁ ଯିବାର ପ୍ରୟୋଜନ ଘଟିଅଛି, ସେଠାରେ ପକ୍କା-ରାସ୍ତା, ବଡ଼ରାସ୍ତା ପ୍ରସ୍ତୁତ ନ ହୋଇ ରହି ପାରେ ନାହିଁ । ଚଷାପଡ଼ାରେ ବାଡ଼ ଘେରାଇ ଦେଇ ପଲ୍ଲୀବାସିମାନଙ୍କୁ ଏହି ପକ୍କାରାସ୍ତାର ବ୍ୟବହାରରୁ ନିରସ୍ତ କଲେ ସେମାନଙ୍କର ଦୈନିକ ଘରୋଇ କାର୍ଯ୍ୟ, ଗୃହକାର୍ଯ୍ୟ ଯେ ଏକପ୍ରକାର ଚଳିବ ନାହିଁ ତାହା ନୁହେଁ, କିନ୍ତୁ ଦିନକୁଦିନ ପଥ ବିଷମ ଚଷା ଏବଂ ପଲ୍ଲି ଘୋରତର ପଙ୍କି ହୋଇ ପଡ଼ିବ । ବାସ୍ତବରେ ଦେଖାଯାଏ ମୂଲିଅ-ମାନଙ୍କୁ ଶିକ୍ଷିତ ସାଧାରଣଙ୍କ ସହିତ ସମାନ ଉନ୍ନତିର ଅଧିକାରୀ କରିବା ପାଇଁ ନାନାପ୍ରକାର ଶିକ୍ଷାର ଆୟୋଜନ ଚାଲିଅଛି । ଯଦି ସେମାନଙ୍କୁ ଉପ-ଭାଷା ଓ ଅପଭାଷାର ସୀମା ମଧ୍ୟରେ ବଦ୍ଧ କରି ରଖାଯାଆନ୍ତା, ତେବେ ସୁବିଧା ନାମରେ କି ଗୋଟିଏ ପ୍ରକାଣ୍ଡ ଅସୁବିଧାର ସୃଷ୍ଟି ହୁଅନ୍ତା ନାହିଁ ? ଇତ୍ୟାଦି ଇତ୍ୟାଦି ।

କିନ୍ତୁ ପର କ୍ଷଣରେ ମନେ ହେଲା, କମିଟିରେ ଯେଉଁ ପାଞ୍ଚ ଦଶ ଜଣ ଯୋଗ୍ୟଲୋକ ବସିଥିଲେ, ଅସ୍ମେମାନେ ଏପରି ସ୍କୁଲମାଷ୍ଟର କରି ସେମାନଙ୍କ ବୁଦ୍ଧି ବିଦ୍ୟାକୁ ଅପମାନିତ କରିବୁଁ କେଉଁ ସାହସରେ ? ସେଡଲର ସାହେବ ଶିକ୍ଷାବିଭାଗର କର୍ତ୍ତା, ତାହାଙ୍କୁ ବିଦ୍ୟାଳୟର ଛାତ୍ରପରି ଉପଦେଶ ଦେବା ଆବଶ୍ୟକ ହେଲେହେଁ ତାହା ଅଶିଷ୍ଟତା ହେବ । ※ ※ ※ ※ ※ ※ ※ ※

ଅନରେବୁଲ କୃଷ୍ଣଗୋବିନ୍ଦ ଗୁପ୍ତ ମହାଶୟଙ୍କ ମଧ୍ୟ ଏକଥା ସ୍ୱୀକାର କରିବାକୁ ଗଲେ ଧୃଷ୍ଟତା ହେବ ଯେ, ଚଷାକୁ thinker, observer ଓ experimenter କରିବାକୁ ଗଲେ ଉପଭାଷାରେ କେବଳ ଗ୍ରାମର ଗୋଟାକେତେ ବିଷୟରେ ତାହାର ଜ୍ଞାନକୁ ଆବଦ୍ଧ ରଖିଲେ ଚଳିବ ନାହିଁ । ଏକଥା ଶୁଣିବାକୁ ସ୍ୱତୋବିରୁଦ୍ଧ, କିନ୍ତୁ ଏହା ସତ୍ୟ ଯେ, ମନୁଷ୍ୟର ଯେତେଟିକଏ ଅବଶ୍ୟକ, ତାହାଠାରୁ ତାହାର ଆବଶ୍ୟକ ଅଳ୍ପରି ଅନେକ ବେଶି ଏବଂ ସେ ଯେତେଟିକଏ ପାଏ, ତାହାଠାରୁ ବେଶି ପାଇବାର ପଥ ତାହା ନିକଟରେ ନିୟତ ଅବାରିତ ରଖିବା ପ୍ରୟୋଜନ ।

ବର୍ତ୍ତମାନ ଏହି କଥା ଉଠିପାରେ ଆମ୍ଭମାନଙ୍କ ଦେଶର ଚଷାକୁ ମନୁଷ୍ୟତ୍ୱର ସମସ୍ତ ସୁବିଧା ଦେବାପାଇଁ ଏତେ ବ୍ୟସ୍ତତା କାହିଁକି ? ଅପାତତଃ ଚଷାଙ୍କର ଯେଉଁକି ସୁବିଧା ତାହାକୁ ଦିଆଯାଇପାରେ, ତାହାର ଚେଷ୍ଟା କରାଯାଉ । ତହିଁରୁ ବେଶି ଲୋଡ଼ା ନାହିଁ । ଯେଉଁକି ବିଦ୍ୟାରେ ସେମାନେ କେବଳ ଜମିଦାର ଓ ମହାଜନ ହାତରୁ ଆତ୍ମରକ୍ଷା କରି ପାରନ୍ତି, ସେହି ପର୍ଯ୍ୟନ୍ତ ଭଲ, ବିଦ୍ୟା ଯେତେ ଦୂର ବଢ଼ିଲେ ସେମାନେ ଦଳେ ପୁଲିସ୍ ଓ ମାଜିଷ୍ଟ୍ରେଟଙ୍କ ହାତରୁ ନିଜକୁ ବଞ୍ଚାଇବାକୁ ଚେଷ୍ଟା କରି ପାରନ୍ତି, ସେତେଦୂର ନ ଗଲା ବା । କିନ୍ତୁ ଜମିଦାର କେଉଁ ଭାଷାରେ କାଗଜପତ୍ର ରଖନ୍ତି ? ପଞ୍ଜୀ କବୁଲିୟତ ଲେଖା ହୁଏ କେଉଁ ଭାଷାରେ ? ନଗରବାସୀ ଜମିଦାରଙ୍କଠାରୁ ଦରଖାସ୍ତ ଲେଖିଲାବେଳେ କେଉଁ ଭାଷାରେ ଲେଖିଲେ ଚଷାର ସୁବିଧା ହୋଇ ପାରେ ? ତାହାଛଡ଼ା ଚଷାର ଭୂଟମ୍ମିତା ଯେ ତାହାର ଗ୍ରାମସୀମା ମଧ୍ୟରେ ଆବଦ୍ଧ ରହିବ, ଏପରି କୌଣସି କଥା ନାହିଁ । * * * ସାହିତ୍ୟ-ଭାଷା ଶିଖିବାର ଯେ ସାମାନ୍ୟ ଅତିରିକ୍ତ ପରିଶ୍ରମ, ତାହା ତୁଳନାରେ ଏହି ସମସ୍ତ ଦେଶବ୍ୟାପୀ ନାନାପ୍ରକାର ଛୋଟ ବଡ଼ ଯନ୍ତ୍ରଜାଳର ଉଚ୍ଛେଦସାଧନ ଯେ କେତେବଡ଼ ଗୁରୁତର ଅସୁବିଧା ଓ ଅନିଷ୍ଟକର ତାହା କି ବାସ୍ତବିକ ଚମିଟିର ପାଞ୍ଚଜଣ ବୁଦ୍ଧିମାନ୍ ସଭ୍ୟ ବୁଝନ୍ତି ନାହିଁ । ବୁଝନ୍ତି ନାହିଁ କହିଲେ ସେମାନଙ୍କ ପ୍ରତି ଅବଜ୍ଞା ହେବ ଏବଂ ବୁଝନ୍ତି କହିଲେ କଟୁତର ସମସ୍ୟାରେ ପଡ଼ିବାକୁ ହେବ, ଅମ୍ଭେମାନେ ସେତେଦୂର ପର୍ଯ୍ୟନ୍ତ ଯିବାକୁ ପ୍ରସ୍ତୁତ ନୋହୁଁ ।

ବର୍ତ୍ତମାନ ଗଭର୍ଣ୍ଣମେଣ୍ଟ ସମ୍ବନ୍ଧରେ ଲେଖକ ମହାଶୟ କହୁଅଛନ୍ତି—

ଭାରତବର୍ଷରେ ଏକଚ୍ଛତ୍ର ଇଂରାଜ ରାଜତ୍ୱର ପ୍ରଧାନ କଲ୍ୟାଣ ଏହି ଯେ, ତାହା ଭାରତବର୍ଷର ନାନା ଜାତିକୁ ଏକ କରୁଅଛି । ଇଂରାଜ ଇଚ୍ଛା ନ କଲେ ମଧ୍ୟ ଏହି ଐକ୍ୟସାଧନ-ପ୍ରକ୍ରିୟା ନିଜେ ନିଜେ କାର୍ଯ୍ୟ କରୁଅଛି । ନଦୀ ଯଦି ମନରେ ପାଞ୍ଚେ, ସେ ଦେଶକୁ ବିଭକ୍ତ କରିବ, ତଥାପି ସେ ଏକ ଦେଶ ସହିତ ଅନ୍ୟ ଦେଶର ଯୋଗସାଧନ କରି ଦିଏ, ବାଣିଜ୍ୟ ବହନ କରେ, ଯାତାୟାତର ପଥ ଉନ୍ମୁକ୍ତ ନ କରି ରହି ପାରେ ନାହିଁ । ଐକ୍ୟହୀନ ଦେଶରେ ଏକ ବିଦେଶୀ ରାଜଶାସନ ସେହିପରି ଯୋଗର ବନ୍ଧନ । ବିଧାତାଙ୍କର ଏହି ମଙ୍ଗଳ ଅଭିପ୍ରାୟ ଭାରତବର୍ଷରେ ବ୍ରିଟିଶଶାସନକୁ ମହିମାଯୁକ୍ତ କରିଅଛି ।

ଜଗତର ଇତିହାସରେ ସର୍ବତ୍ର ଦେଖା ଯାଏ, ଏକ ପକ୍ଷକୁ ବଞ୍ଚିତ କରି ଅନ୍ୟ ପକ୍ଷର ମଙ୍ଗଳ କଦାପି ଦୀର୍ଘକାଳ ସ୍ଥାୟୀ ହୋଇ ପାରେ ନାହିଁ, ଧର୍ମ ସାମଞ୍ଜସ୍ୟ ଉପରେ ପ୍ରତିଷ୍ଠିତ—ସେହି ସେହି ସାମଞ୍ଜସ୍ୟ ନଷ୍ଟ ହେଲେ ଧର୍ମ ମଧ୍ୟ ନଷ୍ଟ ହୁଏ—ଏବଂ

ଧର୍ମଏବ ହତୋହନ୍ତି ଧର୍ମୋ ରକ୍ଷତି ରକ୍ଷିତଃ ।

ଭାରତ ସାମ୍ରାଜ୍ୟଦ୍ୱାରା ଇଂରାଜ ବଳୀ ହୋଇଅଛନ୍ତି, କିନ୍ତୁ ଭାରତକୁ ଯଦି ଇଂରାଜ ବଳହୀନ କରିବାକୁ ଚେଷ୍ଟା କରନ୍ତି, ତେବେ ଏହି ଏକପକ୍ଷର ସୁବିଧା କୌଣସି ପ୍ରକାରେ ଦୀର୍ଘକାଳ ସ୍ଥାୟୀ ହୋଇ ପାରିବ ନାହିଁ, ତାହା ନିଜର ଜଡ଼ୀୟଙ୍କ ନିଜେ

ଘଟାଇବ; ନିରସ୍ତ୍ର, ନିଃସତ୍ତ୍ୱ, ନିରନ୍ନ ଭାରତର ଦୁର୍ବଳତାହିଁ ଇଂରେଜ ସାମ୍ରାଜ୍ୟକୁ ବିନାଶ କରିବ । କିନ୍ତୁ ରାଷ୍ଟ୍ରନୀତିକୁ ବଡ଼ କରି ଦେଖିବାର ଶକ୍ତି ଅତି ଅଳ୍ପ ଲୋକଙ୍କର ଅଛି । ବିଶେଷତଃ ଲୋଭ ଯେତେବେଳେ ବେଶି ହୁଏ, ସେତେବେଳେ ଦେଖିବା ଶକ୍ତି ଅନେକାଂଶ କମି ଯାଏ । ଭାରତବର୍ଷକୁ ଚିରକାଳ ଆମ୍ଭମାନଙ୍କ ଅଧୀନ କରି ରଖିବୁଁ, ଅତ୍ୟନ୍ତ ଲୁବ୍ଧଭାବରେ ଯଦି କୌଣସି ରାଷ୍ଟ୍ରନୀତିକ ଏପରି ଅସ୍ୱାଭାବିକ କଥା ଧ୍ୟାନ କରୁଥାନ୍ତି, ତେବେ ଭାରତବର୍ଷକୁ ଦୀର୍ଘକାଳ ରଖିବାର ଉପାୟଗୁଡ଼ିକ ସେ ନିଶ୍ଚୟ ଭୁଲି ଯାଉଥିବେ । ଚିରକାଳ ରଖିବା ସମ୍ଭବ ନୁହେଁ, ତାହା ଜଗତର ନିୟମବିରୁଦ୍ଧ—ଫଳକୁ ମଧ୍ୟ ବୃକ୍ଷ ପରିତ୍ୟାଗ କରିବାକୁ ବାଧ୍ୟ ହୁଏ—ଚିରଦିନ ବାନ୍ଧିଛନ୍ଦି ରଖିବାର ଆୟୋଜନ କଲେ ବସ୍ତୁତଃ ଯେତେଦିନ ରଖିବା ସମ୍ଭବ, ତାହା ମଧ୍ୟ କମି ଯାଏ ।

ଅଧୀନ ଦେଶକୁ ଦୁର୍ବଳ କରିବା, ତାହାକୁ ଅନୈକ୍ୟଦ୍ୱାରା ଛିନ୍ନବିଚ୍ଛିନ୍ନ କରିବା, ଦେଶର କୌଣସି ସ୍ଥାନରେ ଶକ୍ତିକୁ ସଞ୍ଚିତ ହେବାକୁ ନ ଦେବା, ସମସ୍ତ ଶକ୍ତିକୁ ନିଜର ଶାସନାଧୀନରେ ନିର୍ଜୀବ କରି ରଖିବା—ଏହା ବିଶେଷଭାବରେ କେଉଁ ସମୟର ନୀତି ? ଯେଉଁ ସମୟରେ ଓ୍ୱାର୍ଡ୍‌ସ୍ୱାର୍ଥ, ଶେଲି, କୀଟସ୍, ଟେନିସନ୍, ବ୍ରାଉନିଂ ଅନ୍ତର୍ହିତ ଏବଂ କିପ୍‌ଲିଂ ହୋଇଛନ୍ତି କବି, ଯେଉଁ ସମୟରେ କାର୍ଲାଇଲ, ରସ୍କିନ, ମ୍ୟାଥ୍ୟୁ ଆର୍ଣ୍ଣଲ୍ଡ ଆଉ ନାହାନ୍ତି, ଏକମାତ୍ର ଜନ୍ ମର୍ଲି ଅରଣ୍ୟରେ ରୋଦନ କରିବାର ଭାର ଗ୍ରହଣ କରିଅଛନ୍ତି, ଯେଉଁ ସମୟରେ ଗ୍ଲାଡ୍‌ଷ୍ଟୋନଙ୍କ ବଜ୍ରଗମ୍ଭୀର ବାଣୀ ନୀରବ ଏବଂ ଚେମ୍ବାର୍ଲେନଙ୍କ ମୁଖର ଚଟୁଳତାରେ ସମସ୍ତ ଇଂଲଣ୍ଡ ଉଦ୍‌ଭ୍ରାନ୍ତ, ଯେଉଁ ସମୟରେ ସାହିତ୍ୟର କୁଞ୍ଜବନରେ ଆଉ ସେ ଭୁବନମୋହନ ଫୁଲ ଫୁଟୁ ନାହିଁ,—ଏକମାତ୍ର ପଲିଟିକ୍ସର କଣ୍ଟାଗଛ ଅସମ୍ଭବ ତେଜ ବିସ୍ତାର କରି ଉଠୁଅଛି; ଯେଉଁ ସମୟରେ ପୀଡ଼ିତ ପାଇଁ, ଦୁର୍ବଳ ପାଇଁ, ଦୁର୍ଭାଗ୍ୟ ପାଇଁ ଦେଶର କରୁଣା ଉଚ୍ଛ୍ୱସିତ ହେଉ ନାହିଁ, ଘୃଣିତ ଇମ୍ପିରିୟଲିଜମର ସ୍ୱାର୍ଥଜାଲ ବିସ୍ତାର କରିବାକୁ ଲୋକେ ମହତ୍ତ୍ୱ ବୋଲି ଗଣ୍ୟ କରୁଅଛନ୍ତି, ଯେଉଁ ସମୟରେ ଶୌର୍ଯ୍ୟର ସ୍ଥାନ ବାଣିଜ୍ୟ ଅଧିକାର କରିଅଛି ଏବଂ ଧର୍ମର ସ୍ଥାନ ସ୍ୱାଦେଶିକତା ଅଧିକାର କରିଅଛି, ଏହା ସେହି ସମୟର ରାଷ୍ଟ୍ରନୀତି ।

କିନ୍ତୁ ଏହି ସମୟକୁ ଆମ୍ଭେମାନେ ଦୁଃସମୟ କହିବୁଁ କି ନ କହିବୁଁ, ତାହା ସମ୍ପୂର୍ଣ୍ଣ ଆମ୍ଭମାନଙ୍କ ଉପରେ ନିର୍ଭର କରୁଅଛି । ସତ୍ୟର ପରିଚୟ ଦୁଃଖର ଦିନରେ ଭଲ କରି ଘଟେ, ଏହି ସତ୍ୟର ପରିଚୟ ବ୍ୟତୀତ କୌଣସି ଜାତିର କୌଣସି କାଳେ ଉଦ୍ଧାର ନାହିଁ । ଯାହା ନିଜେ କରିବାକୁ ହେବ ତାହା ଦରଖାସ୍ତଦ୍ୱାରା ହେବ ନାହିଁ, ଯାହା ପାଇଁ ସ୍ୱାର୍ଥତ୍ୟାଗ କରିବା ଆବଶ୍ୟକ, ତାହା ପାଇଁ ବାକ୍ୟବ୍ୟୟ କଲେ କୌଣସି ଫଳ ନାହିଁ, ଏହି ସବୁ କଥା ଭଲ କରି ବୁଝାଇବା ପାଇଁ ବିଧାତା ଦୁଃଖ ଦେଇଥାନ୍ତି । ଯେତେଦିନ ପର୍ଯ୍ୟନ୍ତ ଆମ୍ଭେମାନେ ଏହା ନ ବୁଝିବୁଁ, ସେତେଦିନ ପର୍ଯ୍ୟନ୍ତ ଦୁଃଖ ଏବଂ ଅପମାନରେ ନିଶ୍ଚୟ ଅଭିହତ ହେବାକୁ ପଡ଼ିବ ।

ପ୍ରଥମତଃ ଏହି କଥା ଭଲ କରି ବୁଝିବାକୁ ହେବ, କର୍ତ୍ତୃପକ୍ଷ ଯଦି କୌଣସି ଆଶଙ୍କା କରି ଆମ୍ଭମାନଙ୍କ ଐକ୍ୟର ପଥଗୁଡ଼ିକ ଯଥାସମ୍ଭବ ରୋଧ କରିବାକୁ ଉଦ୍ୟତ ହୋଇଥାନ୍ତି, ସେ ଆଶଙ୍କା କରୁଣ ପ୍ରତିବାଦଦ୍ୱାରା ଆମ୍ଭେମାନେ ଦୂର କରି ପାରୁଁ, ସଭାସ୍ଥଳରେ କି ଏପରି ବାକ୍ୟର ଇନ୍ଦ୍ରଜାଲ ଆମ୍ଭେମାନେ ସୃଷ୍ଟି କରିବୁଁ—ଯାହାଦ୍ୱାରା ସେମାନେ ମୁହୂର୍ତ୍ତ ମଧ୍ୟରେ ଆଶ୍ୱସ୍ତ ହୋଇଯିବେ । ଆମ୍ଭେମାନେ କଣ ଏପରି କଥା କହି ପାରୁଁ ଯେ ଇଂରେଜ ଅନନ୍ତକାଳ ଆମ୍ଭମାନଙ୍କୁ ଶାସନାଧୀନ ରଖିବେ, ଏହାହିଁ ଆମ୍ଭମାନଙ୍କର ଏକମାତ୍ର ଶ୍ରେୟଃ । ଯଦିବା କହୁଁ, ତେବେ ଇଂରେଜ କଣ ଅପୋଗଣ୍ଡ ଅର୍ବାଚୀନ ଯେ, ଏପରି କଥାରେ ମୁହୂର୍ତ୍ତକ ପାଇଁ ହେଲେ ଶ୍ରଦ୍ଧା ସ୍ଥାପନ କରିବେ ? ଆମ୍ଭମାନଙ୍କ

ଏକଥା କହିବାକୁ ହେବ, ଏବଂ ନ କହିଲେ ମଧ୍ୟ ଏହା ସୁସ୍ପଷ୍ଟ ଯେ, ଯେପର୍ଯ୍ୟନ୍ତ ଅମ୍ଭମାନଙ୍କର ନାନା ଜାତି ମଧ୍ୟରେ ଐକ୍ୟସାଧନଶକ୍ତି ଯଥାର୍ଥ ଭାବରେ, ସ୍ଥାୟୀ ଭାବରେ ଉଦ୍‌ଭୂତ ନ ହେବ, ସେ ପର୍ଯ୍ୟନ୍ତ ଇଂରାଜରାଜତ୍ୱ ଅମ୍ଭମାନଙ୍କ ପକ୍ଷରେ ପ୍ରୟୋଜନୀୟ, ଏଥି ପର ସତ୍ୟ ଅନ୍ୟ ନୁହେ ।

ଏପରି ଅବସ୍ଥାରେ ଇଂରାଜ ଯଦି ଉତ୍ତରୋତ୍ତର ବ୍ୟାପ୍ୟମାନ ସାହିତ୍ୟର ଐକ୍ୟସ୍ରୋତକୁ ଛେଦେ-ଗୁଡ଼ାଏ ବନ୍ଧ ବାନ୍ଧି ନିଶ୍ଚଳ ଓ ନିସ୍ତେଜ କରିବାକୁ ଇଚ୍ଛା କରନ୍ତି, ତେବେ ଅମ୍ଭେମାନେ କଣ କହିପାରୁଁ ? ଅମ୍ଭେମାନେ ଏହା କହିପାରୁଁ ଯେ, ଏପରି କଲେ କ୍ରମଶଃ ଅମ୍ଭମାନଙ୍କ ଭାଷାର ଉନ୍ନତି ପ୍ରତିହତ ଏବଂ ଅମ୍ଭମାନଙ୍କ ସାହିତ୍ୟ ନିର୍ଜୀବ ହୋଇ ପଡ଼ିବ । କାଠୁରିଆ ଯେତେବେଳେ ବନସ୍ପତିର ଡାଳ କାଟେ, ସେତେବେଳେ ଯଦି ବନସ୍ପତି କହେ, ଆହା, କଣ କରୁଛ, ଏପରି କଲେ ଯେ ମୋର ଡାଳଗୁଡ଼ିକ ଯିବ, ତେବେ ତାହାର ଜବାବ ଏହି ଯେ, ଡାଳ କାଟିଲେ ଯେ ତାହା ଛିନ୍ନ ହେବ ତାହା କଣ ମୁଁ ଜାଣେ ନାହିଁ, ମୁଁ କଣ ଶିଶୁ ? ତଥାପି କଣ ଅମ୍ଭେମାନଙ୍କୁ ତାଙ୍କ ଉପରେ ନିର୍ଭର କରିବାକୁ ହେବ ?

ଗବର୍ଣ୍ଣମେଣ୍ଟଙ୍କୁ ତର୍କଦ୍ୱାରା ପରାସ୍ତ କଲେ ଯେ ଅମ୍ଭେମାନେ ତାଙ୍କୁ ଅମ୍ଭମାନଙ୍କର ଅନିଷ୍ଟସାଧନରୁ ପ୍ରତିହତ, କିମ୍ବା ତାଙ୍କଠାରୁ ଅମ୍ଭମାନଙ୍କର ନ୍ୟାଯ୍ୟ ଅଧିକାର ଆଦାୟ କରି ପାରିବୁଁ ନାହିଁ, ସେ ସମ୍ବନ୍ଧରେ ଲେଖକ ମହାଶୟ କହିଅଛନ୍ତି:—ଅମ୍ଭେମାନେ ଜାଣୁ ପାର୍ଲିମେଣ୍ଟରେ ତର୍କ ହୁଏ, ସେଠାରେ ଏକ ପକ୍ଷ ଅନ୍ୟ ପକ୍ଷକୁ ପରାଜୟ ଦିଅନ୍ତି, ସେଠାରେ ଏକ ପକ୍ଷ ଅନ୍ୟ ପକ୍ଷକୁ ପରାସ୍ତ କରି ପାରିଲେ ଫଳଲାଭ କଲେ ବୋଲି ଅନୁଭବ କରନ୍ତି । ଅମ୍ଭମାନଙ୍କର ମଧ୍ୟ କଣ ସେହି ଉପାୟ ? ଉପାୟ ଏକ ହୋଇ ନ ପାରେ । ସେଠାରେ ଦୁଇ ପକ୍ଷ ଯେ ବାମହସ୍ତ ଦକ୍ଷିଣହସ୍ତ ପରି ଏକ ଶରୀରର ଅଙ୍ଗ । ସେମାନଙ୍କର ଦୁହିଁଙ୍କ ଶକ୍ତିର ଆଧାର ଯେ ଏକ । ଅମ୍ଭେମାନେ କଣ ସେହିପରି ଏକ ? ଗବର୍ଣ୍ଣମେଣ୍ଟଙ୍କ ଶକ୍ତିର ପ୍ରତିଷ୍ଠା ଯେଉଁଠାରେ, ଅମ୍ଭମାନଙ୍କ ପ୍ରତିଷ୍ଠା କଣ ଠିକ ସେହିଠାରେ ? ସେମାନେ ଯେଉଁ ଡାଳ ହଲାଇଲେ ଯେଉଁ ଫଳ ପାନ୍ତି, ଅମ୍ଭେମାନେ କଣ ସେହି ଡାଳ ହଲାଇଲେ ସେହି ଫଳ ପାଇବୁଁ ? କଦାପି ନୁହେ । ଅମ୍ଭମାନଙ୍କ ଦେଶ ପକ୍ଷରେ ସେ କଥା ଖାଟିବ ନାହିଁ । କାରଣ, କର୍ତ୍ତାର ଇଚ୍ଛା କର୍ମ ଏବଂ ଅମ୍ଭେମାନେ କର୍ତ୍ତା ନୋହୁଁ । ତାର୍କିକମାନେ କହନ୍ତି—"ସେ କିପରି କଥା ! ଅମ୍ଭେମାନେ ଯେ କୋଟି କୋଟି ଟଙ୍କା ସରକାରଙ୍କୁ ଦେଉଁ, ଏହି ଟଙ୍କା ଉପରେ ଯେ ସରକାରଙ୍କ ନିର୍ଭର, ଅମ୍ଭମାନଙ୍କ କର୍ତ୍ତୃତ୍ୱ ରହିବ ନାହିଁ କାହିଁକି ? ଅମ୍ଭେମାନେ ଏହି ଟଙ୍କାର ହିସାବ ତଲବ କରିବୁଁ ।" ଗୋରୁ ଯେ ନନ୍ଦନନ୍ଦନଙ୍କୁ ଦୁଇ ଓଳ ଦୁଗ୍ଧ ଦିଏ, ସେହି ଦୁଗ୍ଧ ଖାଇ ନନ୍ଦନନ୍ଦନ ଯେ ବେଶ ପରିପୁଷ୍ଟ ହୋଇଅଛନ୍ତି, ଗୋରୁ କାହିଁକି ଶିଙ୍ଗ ହଲାଇ ନନ୍ଦନନ୍ଦନ ନିକଟରୁ ହିସାବ ତଲବ କରେ ନାହିଁ ? କାହିଁକି କରେ ନାହିଁ, ତାହା ଗୋରୁର ଅନ୍ତରାତ୍ମା ଜାଣେ ଏବଂ ତାହାର ଅନ୍ତର୍ଯ୍ୟାମୀ ଜାଣନ୍ତି ।

ସଫା କଥା ଏହି ଯେ, ଅବସ୍ଥାଭେଦରେ ଉପାୟର ଭିନ୍ନତା ଘଟିଥାଏ । ଅମ୍ଭମାନଙ୍କ ପରି ଦୁର୍ବଳ ଜାତି କି ଆନ୍ଦୋଳନଦ୍ୱାରା ଗବର୍ଣ୍ଣମେଣ୍ଟଙ୍କଠାରୁ କୌଣସି ସୁଯୋଗ ଲାଭ କରି ପାରୁଁ ? ଦୁଗ୍ଧ ମନ୍ଥିଲେ ଲହୁଣି ବାହାରେ, ଦୁଗ୍ଧ ରହିଲା ଗଉଡ଼ଘରେ, ମୁଁ ଘରେ ବସି ଅହରହ ପାଣି ମନ୍ଥିଲେ କଣ ଲହୁଣି ବାହାରିବ ?

ଗୋଟିଏ କଥା ଅମ୍ଭମାନଙ୍କର ମନେ ରଖିବା ଉଚିତ, ଇଂରାଜ ନିକଟରେ ଅମ୍ଭେମାନେ ହେଉଁ ଛୋଟ । ସୁଦୂର ୟୁରୋପର ନାଟ୍ୟଲୀଳାମୟ ସୁବୃହତ୍ ପୋଲିଟିକାଲ ରଙ୍ଗମଞ୍ଚର ପ୍ରାନ୍ତରୁ ଇଂରାଜ ଅମ୍ଭମାନଙ୍କୁ ଶାସନ କରୁଅଛନ୍ତି—ଯଦ୍ୟପି,

ଜର୍ମାନ, ରୁଷ, ଇଟାଲିୟାନ, ମାର୍କିନ ଏବଂ ନାନା ସ୍ଥାନର ନାନା ଔପନିବେଶିକମାନଙ୍କ ସହିତ ଗଭର୍ଣ୍ଣମେଣ୍ଟର ସମ୍ବନ୍ଧ ଅତ୍ୟନ୍ତ ଜଟିଳ । ସେଠାରେ ଇଂରେଜଙ୍କୁ ଅତି ସତର୍କ ଭାବରେ ଚଳିବାକୁ ହୁଏ, ଆମ୍ଭେମାନେ ଏହି ବିପୁଳ ପୋଲିଟିକାଲ୍ କ୍ଷେତ୍ରର ସୀମାନ୍ତରେ ପଡିଅଛୁଁ, ଆମ୍ଭମାନଙ୍କ ଇଚ୍ଛା-ଅନିଚ୍ଛା, ରାଗ-ବିଦ୍ୱେଷ ପ୍ରତି ତାଙ୍କୁ ଅନାଇବାକୁ ହୁଏ ନାହିଁ, ସୁତରାଂ ତାଙ୍କ ଚିତ୍ତ ଆମ୍ଭମାନଙ୍କ ସମ୍ବନ୍ଧରେ ଅନେକ ପରିମାଣରେ ନିର୍ଲିପ୍ତ ଥାଏ, ଏଥିପାଇଁ ଭାରତବର୍ଷର ପ୍ରସଙ୍ଗ ପାର୍ଲିମେଣ୍ଟର ଏପରି ତନ୍ଦ୍ରାକର୍ଷକ,—ଇଂରେଜ ସ୍ରୋତ ଜଳ ପରି ନିପ୍ତ ଏଦେଶର ଉପରେ ଚାଲି ଯାଉଅଛନ୍ତି, ଏଠାରେ ତାଙ୍କର କିଛି ସଞ୍ଚିତ ହୁଏ ନାହିଁ, ତାଙ୍କ ହୃଦୟ ଏଠାରେ ମୂଳ ବିସ୍ତାର କରେ ନାହିଁ, ଛୁଟି ଆଡ଼କୁ ଅନାଇ ସେ କାମ କରୁଥାନ୍ତି, ଯେଉଁ ଆମୋଦ ଆହ୍ଲାଦଟିକ ସମ୍ଭୋଗ କରନ୍ତି, ତାହା ମଧ୍ୟ ସ୍ୱଜାତି ସଙ୍ଗରେ—ଏଦେଶର ଇତିବୃତ୍ତ-ଚର୍ଚ୍ଚାର ଭାର ଜର୍ମାନମାନଙ୍କ ଉପରେ ଓ ଦେଶର ଭାଷା ସହିତ ପରିଚୟ ସାକ୍ଷୀ ଜବାନବନ୍ଦିସୂତ୍ରରେ, ଏ ଦେଶର ସାହିତ୍ୟ ସହିତ ପରିଚୟ ଗେଜେଟର ଗଭର୍ଣ୍ଣମେଣ୍ଟ-ଅନୁବାଦକଙ୍କ ତାଲିକା ପାଠରେ—ଏପରି ଅବସ୍ଥାରେ ଯେ ଆମ୍ଭେମାନେ ଏମାନଙ୍କ ନିକଟରେ କେତେ ଛୋଟ, ତାହା ନିଜ ପ୍ରତି ମମତ୍ୱବଶତଃ ଆମ୍ଭେମାନେ ଭୁଲି ଯାଉଁ, ସେଥିପାଇଁ ଆମ୍ଭମାନଙ୍କ ପ୍ରତି ଇଂରେଜଙ୍କ ବ୍ୟବହାରରେ ଆମ୍ଭେମାନେ କ୍ଷଣେ କ୍ଷଣେ ବିସ୍ମିତ ହେଉଁ, କ୍ଷୁବ୍ଧ ହୋଇ ଉଠୁଁ ଏବଂ ଆମ୍ଭମାନଙ୍କର କ୍ଷୋଭ ବିସ୍ମୟକୁ ଅତ୍ୟୁକ୍ତି ଜ୍ଞାନ କରି କର୍ତ୍ତୃପକ୍ଷଗଣ କେତେବେଳେ କ୍ରୁଦ୍ଧ ହୁଅନ୍ତି, କେତେବେଳେ ବା ହାସ୍ୟ ସମ୍ବରଣ କରି ପାରନ୍ତି ନାହିଁ ।

ଆମ୍ଭେମାନେ ଏଡ଼େ ଛୋଟ ଦିଶୁଅଛୁଁ ବୋଲି ସେଦିନ କର୍ଜନ ସାହେବ ଏଡ଼େ ସହଜରେ କହି ପକାଇଲେ ତୁମ୍ଭେମାନେ ନିଜକୁ ଇମ୍ପୀରିୟାଲ୍ ତନ୍ତ୍ର ମଧ୍ୟରେ ବିସର୍ଜନ ଦେବାକୁ ଗୌରବଜନକ ମନେ କରି ପାରୁ ନାହିଁ କାହିଁକି ? ସର୍ବନାଶ ! ଆମ୍ଭ-ମାନଙ୍କ ପ୍ରତି ଏହା କିପରି ବ୍ୟବହାର ! ଏହା ଯେ ପ୍ରଣୟସମ୍ଭାଷଣ ପରି ଶୁଭୁଅଛି । ଅଷ୍ଟ୍ରେଲିୟା ବୋଲ, କାନାଡ଼ା ବୋଲ, ଯେଉଁମାନଙ୍କୁ ଇଂରେଜ ଇମ୍ପୀରିୟାଲ-ଆଲିଙ୍ଗନ ମଧ୍ୟରେ ଆବଦ୍ଧ କରିବାକୁ ଚାହାନ୍ତି, ସେମାନଙ୍କ ଶୟନଗୃହର ବାତାୟନ ତଳେ ଛିଡ଼ା ହୋଇ ଅପର୍ଯ୍ୟାପ୍ତ ପ୍ରେମ-ସଙ୍ଗୀତଦ୍ୱାରା ସେ ଆକାଶ ମୁଖରିତ କରୁଅଛନ୍ତି, କ୍ଷୁଧା ତୃଷ୍ଣା ଭୁଲି ନିଜ କେତେ ପର୍ଯ୍ୟନ୍ତ ଦୁର୍ମୂଲ୍ୟ କରିବାକୁ ରାଜି ହୋଇଅଛନ୍ତି—ସେମାନଙ୍କ ସହିତ ଆମ୍ଭମାନଙ୍କର ତୁଳନା ! ଏଡ଼େ ବଡ଼ ଅତ୍ୟୁକ୍ତିରେ ଲର୍ଡ଼ ମହାଶୟଙ୍କ ଲଜ୍ଜା ନ ହୋଇ ପାରେ, ଆମ୍ଭମାନଙ୍କୁ ଯେ ଲଜ୍ଜା ବୋଧ ହେଉଅଛି । ଆମ୍ଭେ-ମାନେ ଅଷ୍ଟ୍ରେଲିୟାରେ ତାଡ଼ିତ, ନାଟାଲରେ ଲାଞ୍ଛିତ, ସ୍ୱଦେଶରେ ମଧ୍ୟ କର୍ତ୍ତୃତ୍ୱବିରହିତ, ଏପରି ସ୍ଥଳରେ ଇମ୍ପୀରିୟାଲ-ମଧୁଶଯ୍ୟାଗୃହକୁ କାହିଁକି ନିମନ୍ତ୍ରଣ କର ହେଉଅଛି ? କର୍ଜନ ସାହେବ ଆମ୍ଭମାନଙ୍କ ସୁଖ ଦୁଃଖର ସୀମାରୁ ବହୁ ଊର୍ଦ୍ଧ୍ୱରେ ବସି ଭାବୁଅଛନ୍ତି, ଏମାନେ ଏଡ଼େ କ୍ଷୁଦ୍ର, ତେବେ ଏମାନେ କାହିଁକି ଇମ୍ପୀରିୟାଲ ତନ୍ତ୍ର ମଧ୍ୟରେ ଏକାବେଳକେ ବିଲୁପ୍ତ ହେବାକୁ ରାଜି ହେଉ ନାହାନ୍ତି, ନିଜର ଏତେ ଟିକିଏ ସ୍ୱାତନ୍ତ୍ର୍ୟ, ଏତେ ଟିକିଏ ଖତ ଲଭ ଘେନି ଏତେ ଛଟପଟ ହେଉଛନ୍ତି କାହିଁକି ? ଏହା କିପରି କଥା ହେଲା ? ଯେପରି ଗୋଟିଏ ଯଜ୍ଞରେ ଅନେକ ବନ୍ଧୁବାନ୍ଧବଙ୍କୁ ନିମନ୍ତ୍ରଣ କରା ହୋଇଅଛି, ସେଠାକୁ ଗୋଟିଏ ଛାଗଶିଶୁକୁ ସାଦରରେ ଆହ୍ୱାନ କରିବା ପାଇଁ ମାଳ-ସିନ୍ଦୂର ହସ୍ତରେ ଲୋକ ଆସିଲା, ଏହି ସାଦର ବ୍ୟବହାରରେ ଛାଗର ଏକାନ୍ତ ସଙ୍କୋଚ ଦେଖି ତାହାକୁ କହା ଯାଉଅଛି "କି ଆଶ୍ଚର୍ଯ୍ୟ, ଏତେବଡ଼ ମହତ୍ ଯଜ୍ଞରେ ଯୋଗ ଦେବାକୁ ତୁମ୍ଭର ଆପତ୍ତି!" ଆହା ! ଅନ୍ୟର ଯୋଗ ଦେବା ଏବଂ ତାହାର ଯୋଗ ଦେବାରେ ଯେ କେତେ ପ୍ରଭେଦ, ତାହା ସେ ମୂଢ଼ ଦୁର୍ବଳ ପାଇଁ ଭୁଲି ପାରେ ନାହିଁ । ଯଜ୍ଞରେ

ଅସ୍ତିବର୍ଜ୍ଜନ କରିବାର ଅଧିକାର ଛଡ଼ା ଆଉ କୌଣସି ଅଧିକାର ଯେ ତାହାର ନାହିଁ । କିନ୍ତୁ ଭାରତଶିଶୁର ଏହି ବେଦନା ଯନ୍ତ୍ରକର୍ତ୍ତାଙ୍କ ପକ୍ଷରେ ବୁଝିବା କଠିନ, ଭାରତ ଏତେ ଅଙ୍କସ୍ଥିତକର । କେମୀରଯ୍ୟୁଲଶନ୍ତ ନସୀଦ କେ ବଙ୍କୁ ଯୁଦ୍ଧ କରିବାକୁ ଯିବେ, ଆମ୍ଭମାନଙ୍କର ଅଧିକାର ସେମାନଙ୍କ ଖରଚ ଯୋଗାଇବା, ସୋମାଲିଲାଣ୍ଡରେ ବିପ୍ଳବ ନିବାରଣ କରିବେ, ଆମ୍ଭମାନଙ୍କ ଅଧିକାର ପ୍ରାଣଦାନ କରିବା, ଉଷ୍ଣପ୍ରଧାନ ଉପନିବେଶରେ ଶସ୍ୟ ଉତ୍ପାଦନ କରିବେ, ଆମ୍ଭମାନଙ୍କର ଅଧିକାର ସସ୍ତାରେ ମୂଲିଆ ଯୋଗାଇବା । ବଡ଼ ସାନ ମିଳି ଯଜ୍ଞ କରିବାର ନିୟମ ଏହି ।

ଏପରି ଅବସ୍ଥାରେ ଆମ୍ଭମାନଙ୍କର କର୍ତ୍ତବ୍ୟ କଣ ? ଏ ସମ୍ବନ୍ଧରେ ଲେଖକ ମହାଶୟ କହୁଅଛନ୍ତି:—

ଭାରତବାସିଙ୍କ ପ୍ରତି ଗବର୍ଣ୍ଣମେଣ୍ଟ ଯେପରି ବ୍ୟବହାର କରିବାକୁ ଆରମ୍ଭ କରିଅଛନ୍ତି, ଏପରି ଅବସ୍ଥାରେ ଘଡ଼ ଘଡ଼ ହେଲେ ଦୌଡ଼ାଦୌଡ଼ି କରିବାକୁ ହେବ ? ଆଜି ଯାହାଙ୍କ ଦ୍ୱାରରେ ମୁଣ୍ଡ କୋଡ଼ିଲି, ସେ ଉତ୍ତର ଦେଲେ ନାହିଁ—ଅପେକ୍ଷା କରି ବସି ରହିଲି, ଏହାଙ୍କ ମିଆଦ ଶେଷ ହେଲେ ଯେ ଆସିବେ ତାଙ୍କର ଯଦି ଦୟାମାୟା ହୁଏ । ସେ ଯଦି ଦୟା କରନ୍ତି ତଥାପି ଆଶ୍ୱସ୍ତ ହେବାର କାରଣ ନାହିଁ, ଆଉ ଜଣେ ଆସି ଦୟାଳୁର ଦାନ କାନ ଧରି ସୁଦ ସହିତ ଆଦାୟ କରି ନେଇପାରେ ! ଏତେବଡ଼ ଅନିଶ୍ଚିତ ଉପରେ ଆମ୍ଭମାନଙ୍କର ସମସ୍ତ ଆଶା ଭରସା ସ୍ଥାପନ କରିବା କି ଉଚିତ ? ଧର ସ୍ୱାୟତ୍ତଶାସନ । ଆମ୍ଭେମାନେ ମୁଣ୍ଡରେ ହାତ ଦେଇ କାନ୍ଦୁଅଛୁଁ, ରିପନ ଆମ୍ଭମାନଙ୍କୁ ସ୍ୱାୟତ୍ତଶାସନ ଦେଇଥିଲେ, ତାଙ୍କ ପରବର୍ତ୍ତୀ କର୍ତ୍ତା ଆସି ଛଡ଼ାଇ ନେଲେ । କିନ୍ତୁ ଧିକ୍ ଏହି କ୍ରନ୍ଦନ ! ଯାହା ଜଣେ ଦେଇ ପାରେ, ତାହା ଆଉ ଜଣେ ଛଡ଼ାଇ ନେଇ ପାରେ, ଏହା କିଏ ନ ଜାଣେ ? ଏହାକୁ ସ୍ୱାୟତ୍ତଶାସନ ନାମ ଦେଲେ କଣ ଏହା ସ୍ୱାୟତ୍ତଶାସନ ହେବ ?

ଆମ୍ଭେମାନେ ଶୁଣିଅଛୁଁ, ଆମ୍ଭମାନଙ୍କ ଦେଶର କୌଣସି ରାଜାଙ୍କୁ ଜଣେ ଉଚ୍ଚପଦସ୍ଥ ରାଜକର୍ମଚାରୀ ବନ୍ଧୁଭାବରେ କହିଥିଲେ ଯେ, ଗବର୍ଣ୍ଣମେଣ୍ଟଙ୍କୁ କହି ଆପଣଙ୍କପାଇଁ କିଛି ଉପାଧି ବ୍ୟବସ୍ଥା କରିଦେବି —ତାହା ଶୁଣି ତେଜସ୍ୱୀ ରାଜା ଉତ୍ତର କରିଥିଲେ, "ଦ୍ୱାହି ଆପଣଙ୍କର, ଆପଣ ମତେ ରାଜା ବୋଲନ୍ତୁ, ଚାହୁଁ ବୋଲନ୍ତୁ, ଯାହା ଇଚ୍ଛା ତାହା କହନ୍ତୁ, କିନ୍ତୁ ମତେ ଏପରି ଉପାଧି ଦେବେ ନାହିଁ, ଯାହା ଆଜି ଇଚ୍ଛା କଲେ ଦେଇ ପାରନ୍ତି, କାଲି ପୁଣି ହରଣ କରି ପାରନ୍ତି । ମୋ ପ୍ରଜାମାନେ ମତେ ମହାରାଜାଧିରାଜ ବୋଲି ଜାଣନ୍ତି, ସେ ଉପାଧିରୁ ମତେ କେହି ବଞ୍ଚିତ କରି ପାରିବେ ନାହିଁ ।" ସେହିପରି ଆମ୍ଭମାନଙ୍କର ମଧ୍ୟ କହିବା ଉଚିତ, ଦ୍ୱାହି ସରକାର ! ଆମ୍ଭମାନଙ୍କର ଏପରି ସ୍ୱାୟତ୍ତଶାସନର ପ୍ରୟୋଜନ ନାହିଁ, ଯାହା ଦେବାକୁ ଯେତେବେଳେ, ନେବାକୁ ସେତେବେଳେ— ଯେଉଁ ସ୍ୱାୟତ୍ତଶାସନ ଆମ୍ଭମାନଙ୍କର ଅଛି, ଦେଶର ମଙ୍ଗଳ ସାଧନ କରିବାର ଯେଉଁ ଅଧିକାର ବିଧାତା ଆମ୍ଭମାନଙ୍କ ହସ୍ତରେ ଦେଇଅଛନ୍ତି, ମୋହନିଦ୍ରା ତ୍ୟାଗ କରି, ଦୃଢ଼ନିଷ୍ଠା ସହିତ ତାହା ଯେପରି ଆମ୍ଭେମାନେ ଅଙ୍ଗୀକାର କରିପାରୁଁ— ଭଗବାନଙ୍କର ଜୟ ହେଉ ଏବଂ କର୍ଜ୍ଜନ ଚିରଜୀବୀ ହେଉନ୍ତୁ ।

ପ୍ରକୃତ ସ୍ୱାୟତ୍ତଶାସନର ଅଧିକାର ଆମ୍ଭମାନଙ୍କ ଘର ନିକଟରେ ପଡ଼ି ରହିଅଛି— କେହି ତାହା ଛଡ଼ାଇ ନେଇ ନାହିଁ, କେହି ଛଡ଼ାଇ ନେଇ ପାରିବ ନାହିଁ । ଆମ୍ଭମାନଙ୍କ ଗ୍ରାମର, ଆମ୍ଭମାନଙ୍କ ପଲ୍ଲୀର ଶିକ୍ଷା, ସ୍ୱାସ୍ଥ୍ୟ, ବାଟଘାଟର ଉନ୍ନତି, ଏସମସ୍ତ ଆମ୍ଭେମାନେ କରି ପାରୁଁ,—ଯଦି ଇଚ୍ଛା ଥାଏ, ଯଦି ଏକ ହେଉଁ, ଏଥିପାଇଁ ଗବର୍ଣ୍ଣମେଣ୍ଟଙ୍କ ଦ୍ୱାର ବନ୍ଧରେ ଡାକିବାର କିଛି ପ୍ରୟୋଜନ ନାହିଁ । କିନ୍ତୁ ଇଚ୍ଛା ଯଦି ନ ଥାଏ, ଏକ ଯଦି ନ

ହେଉଁ, ତେବେ ପୋଡ଼ ଯାଉ ସ୍ୱାୟତ୍ତଶାସନ ! ତେବେ ଦଉଡ଼ ଓ ମାଠିଆ ଛଡ଼ା ଅମ୍ଭମାନଙ୍କର ବନ୍ଧୁ ଆଉ କେହି ନାହିଁ !

ଯେଉଁମାନେ ଦରଖାସ୍ତ କାଗଜର ନୌକା ପ୍ରସ୍ତୁତ କରି ସାତସମୁଦ୍ର ପାର ହୋଇ ସାତରଜାଙ୍କ ଧନ ମାଣିକ୍ୟର ବ୍ୟବସାୟ ଚଳାଇବାର ପ୍ରସ୍ତାବ କରନ୍ତି, ସେମାନଙ୍କ ପରି ଭ୍ରାନ୍ତ ଆଉ କିଏ ଥାଇ ପାରେ ? ଦେଶର ବିଦ୍ୟାଶିକ୍ଷାର ଭାର ଅମ୍ଭମାନଙ୍କୁ ଗ୍ରହଣ କରିବାକୁ ହେବ । ସଂଶୟୀ କହନ୍ତେ, ଅଚ୍ଛା ଶିକ୍ଷାଭାର ଅମ୍ଭେମାନେ ଗ୍ରହଣ କଲୁଁ, କିନ୍ତୁ କର୍ମ ଦେବ କିଏ ? କର୍ମ ମଧ୍ୟ ଅମ୍ଭମାନଙ୍କୁ ଦେବାକୁ ହେବ । ଗୋଟିଏ ବୃହତ୍ ସ୍ୱଦେଶୀ କର୍ମକ୍ଷେତ୍ର ଅମ୍ଭମାନଙ୍କର ଆୟତ୍ତ ନ ଥିଲେ ଅମ୍ଭମାନଙ୍କୁ ଚିରଦିନ ଦୁର୍ବଳ ରହିବାକୁ ହେବ । କୌଣସି କୌଶଳରେ ଏହି ନିର୍ଜୀବ ଦୁର୍ବଳତା ବସ୍ତୁରୁ ନିଷ୍କୃତି ପାଇ ପାରିବୁଁ ନାହିଁ । ଯେ ଅମ୍ଭମାନଙ୍କୁ କର୍ମ ଦେବ, ସେ ଅମ୍ଭମାନଙ୍କ ଉପରେ କର୍ତ୍ତୃତ୍ୱ କରିବ ଏବଂ ସେ ଚାଳନା କଲାବେଳେ ନିଜର ସ୍ୱାର୍ଥ ବିସ୍ମୃତ ହେବ ନାହିଁ, ଏହା ମଧ୍ୟ ସ୍ୱାଭାବିକ । ଅତଏବ ସର୍ବପ୍ରଯତ୍ନରେ ଅମ୍ଭମାନଙ୍କୁ ଏପରି ଗୋଟିଏ ସ୍ୱଦେଶୀ କର୍ମକ୍ଷେତ୍ର ପ୍ରସ୍ତୁତ କରିବାକୁ ହେବ, ଯେଉଁଠାରେ ସ୍ୱଦେଶୀ ବିଦ୍ୟାଳୟର ଶିକ୍ଷିତଗଣ ଶିକ୍ଷକତା, ପୂର୍ତ୍ତକାର୍ଯ୍ୟ, ଚିକିତ୍ସା ପ୍ରଭୃତି ଦେଶର ବିଚିତ୍ର ମଙ୍ଗଳକର୍ମର ବ୍ୟବସ୍ଥାରେ ନିଯୁକ୍ତ ହେବେ । ଅମ୍ଭେମାନେ ଆକ୍ଷେପ କରୁଥାଉଁ ଯେ ଅମ୍ଭେମାନେ କାର୍ଯ୍ୟ ଶିଖିବାର ଓ କାର୍ଯ୍ୟ ଦେଖାଇବାର ଅବକାଶ ନ ପାଇ ମନୁଷ୍ୟ ହୋଇ ପାରୁ ନାହୁଁ । ସେ ଅବକାଶ ପରଦ୍ୱାରା କଦାପି ସନ୍ତୋଷଜନକରୂପେ ହୋଇ ପାରିବ ନାହିଁ, ତାହାର ପ୍ରମାଣ ପାଇବାକୁ କିଛି ବାକି ନାହିଁ ।

ଦେଶର ବିଚ୍ଛିନ୍ନ ଶକ୍ତିକୁ ଏକସ୍ଥାନରେ ସଂହତ କରିବା ପାଇଁ କର୍ତ୍ତବ୍ୟବୁଦ୍ଧିକୁ ଏକସ୍ଥାନରୁ ଆକୃଷ୍ଟ କରିବା ପାଇଁ ଗୋଟିଏ ଗୋଟିଏ ସ୍ୱଦେଶୀ ସଂସଦ୍ ଗଠନ କରିବା ଆବଶ୍ୟକ । ତାହା ଦଳକରେ ଯେ ଗଠିତ ହେବ, ଏପରି ଆଶା କରି ଯାଇ ନ ପାରେ । ସ୍ୱାତନ୍ତ୍ର୍ୟ ପ୍ରବୃତ୍ତିକୁ ଖର୍ବ କରିବା, ଉଦ୍ଧତ ଅଭିମାନକୁ ଦମନ କରିବା, ନିଷ୍ଠାସହକାରେ ନିୟମର ଶାସନକୁ ଗ୍ରହଣ କରିବା, ଏହିଗୁଡ଼ିକ କାର୍ଯ୍ୟତତ୍ପର ଲୋକର ଗୁଣ—କାର୍ଯ୍ୟ କରୁ କରୁ ଏହି ସବୁ ଗୁଣ ବୃଦ୍ଧିପ୍ରାପ୍ତ ହୁଏ, ଚିରଦିନ ପୋଥି ପଢ଼ିବାକୁ ଓ ତର୍କ କରିବାକୁ ବସିଲେ ଠିକ୍ ତାହାର ବିପରୀତ ହୁଏ—ଏହି ସମସ୍ତ ଗୁଣର ପରିଚୟ ଯେ ଅମ୍ଭେମାନେ ପ୍ରଥମରୁ ଦେଖାଇ ପାରିବା, ତାହା ମଧ୍ୟ ମୁଁ ଆଶା କରେ ନାହିଁ । କିନ୍ତୁ ଗୋଟିଏ ସ୍ଥାନରେ ଏକ ହେବା, ଚେଷ୍ଟା ଅତି କ୍ଷୁଦ୍ର ଆକାରରେ ହେଉ ପଛକେ, ଆରମ୍ଭ କରିବାକୁ ହେବ । ଅମ୍ଭମାନଙ୍କ ଦେଶର ଯୁବକମାନଙ୍କ ମଧ୍ୟରେ ଯେଉଁମାନେ ସରଳ, ପବିତ୍ର ଓ ଦୃଢ଼ଚିତ୍ତ, ଯେଉଁମାନେ ଦେଶର କଲ୍ୟାଣକର୍ମକୁ ଦୁଃସାଧ୍ୟ ଜାଣି ଦ୍ୱିଗୁଣ ଉତ୍ସାହ ଅନୁଭବ କରନ୍ତି ଏବଂ ସେହି କର୍ମର ଆରମ୍ଭକୁ ଅତି କ୍ଷୁଦ୍ର ଜାଣି ମଧ୍ୟ ହତୋତ୍ସାହ ହୁଅନ୍ତି ନାହିଁ, ସେମାନେ ଜଣେ ଅଧିନେତାଙ୍କ ଚତୁର୍ଦ୍ଦିଗରେ ଏକତ୍ର ହେଉନ୍ତୁ । ଦେଶର ଭିନ୍ନ ଭିନ୍ନ ସ୍ଥାନରେ ଏହିପରି ସମ୍ମିଳନୀମାନ ଯଦି ସ୍ଥାପିତ ହୁଏ ଏବଂ ସେମାନେ ଯଦି ଗୋଟିଏ ମଧ୍ୟବର୍ତ୍ତୀ ସଂସଦକୁ ଓ ସେହି ସଂସଦର ଅଧିନାୟକଙ୍କୁ ସମ୍ପୂର୍ଣ୍ଣଭାବରେ କର୍ତ୍ତୃତ୍ୱପଦରେ ବରଣ କରି ପାରନ୍ତି, ତାହା ହେଲେ ଦିନେ ଏହି ସଂସଦ୍ ସମସ୍ତ ଦେଶର ଐକ୍ୟକ୍ଷେତ୍ର ଓ ସମ୍ପଦର ଭଣ୍ଡାର ହୋଇ ପାରେ । ସୁବିସ୍ତୀର୍ଣ୍ଣ ଆରମ୍ଭକୁ ଅପେକ୍ଷା କରି ରହିବା, ସୁବିପୁଳ ଆୟୋଜନ ଓ ସମାରୋହ ପ୍ରତ୍ୟାଶା କରିବା କେବଳ କର୍ତ୍ତବ୍ୟକୁ ପ୍ରତାରଣା କରିବା ଛଡ଼ା ଆଉ କିଛି ନୁହେ । ବର୍ତ୍ତମାନ ଆରମ୍ଭ କରିବାକୁ ହେବ । ଯେତେ ଶୀଘ୍ର ପାରୁଁ ଅମ୍ଭେମାନେ ଯଦି ସମସ୍ତ ଦେଶକୁ କର୍ମଜାଲରେ ବେଷ୍ଟିତ କରି ଆୟତ୍ତ କରି ନ ପାରୁଁ, ତେବେ ଅମ୍ଭମାନଙ୍କଠାରୁ ଯେଉଁମାନଙ୍କର ଉଦ୍ୟମ ବେଶି, ସାମର୍ଥ୍ୟ ଅଧିକ, ସେମାନେ ଅମ୍-

ମାନଙ୍କନିମିତ୍ତ କୌଣସିଠାରେ ସ୍ଥାନ ରହିବ ନାହିଁ । ଏପରି କି, ଶୀଘ୍ର ଆମ୍ଭମାନଙ୍କର ଶେଷ ସମ୍ବଳ କୃଷିକ୍ଷେତ୍ରକୁ ମଧ୍ୟ ଅଧିକାର କରି ବସିବେ । ସେଥିପାଇଁ ଆମ୍ଭମାନଙ୍କର ଚିନ୍ତା କରିବା ଉଚିତ । ପୃଥିବୀରେ କୌଣସି ସ୍ଥାନ ଶୂନ୍ୟ ପଡ଼ି ରହେ ନାହିଁ, ମୁଁ ଯାହା ବ୍ୟବହାର ନ କରିବି, ଅନ୍ୟ ତାହା ନିଜ ବ୍ୟବହାରରେ ଲଗାଇବ, ମୁଁ ଯଦି ନିଜର ପ୍ରଭୁ ନ ହୋଇ ପାରେ, ଅନ୍ୟ କେହି ମୋର ପ୍ରଭୁ ହୋଇ ବସିବ, ମୁଁ ଯଦି ଶକ୍ତି ଅର୍ଜନ ନ କରେ, ଅନ୍ୟ ମୋର ପ୍ରାପ୍ୟଗୁଡ଼ିକ ଅଧିକାର କରି ବସିବ, ମୁଁ ଯଦି ପରୀକ୍ଷାରେ କେବଳ ପ୍ରତାରଣା କରେ, ତାହା ହେଲେ ସଫଳତା ଅନ୍ୟର ଭାଗ୍ୟରେ ଘଟିବ—ଏହା ବିଶ୍ୱର ଅନିବାର୍ଯ୍ୟ ନିୟମ ।

ରବୀନ୍ଦ୍ର ବାବୁଙ୍କ ସୁଦୀର୍ଘ, ସରସ ଓ ଉପାଦେୟ ପ୍ରବନ୍ଧଟିର କଙ୍କାଳମାତ୍ର ଆମ୍ଭେମାନେ ସଂଗ୍ରହ କରି ଦେଲୁଁ । ଏହାଦ୍ୱାରା ପ୍ରବନ୍ଧର ଯଥାର୍ଥ ଗୌରବ ଯେ ତାହାରି ହୃଦୟଙ୍ଗମ ହୋଇ ପାରିବ, ସେ ଆଶା ଆମ୍ଭମାନଙ୍କର ନାହିଁ । ତେବେ ଏହା ପାଠ କରି ଉତ୍କଳ-ସାହିତ୍ୟର ପାଠକସାଧାରଣଙ୍କ ଚିନ୍ତାର ଗତି ଯଦି କିଞ୍ଚିତ୍ ପରିବର୍ତ୍ତିତ ହୁଏ, ତେବେ ଶ୍ରମ ସାର୍ଥକ ଜ୍ଞାନ କରିବୁଁ ।

ଲେଖକ ମହାଶୟ ଉପସଂହାରରେ ଆବେଗପୂର୍ଣ୍ଣ ଅନ୍ତରରେ ସ୍ୱଦେଶୀୟ ଯୁବକମାନଙ୍କୁ ଲକ୍ଷ୍ୟ କରି କହିଅଛନ୍ତି :—

ହେ ବଙ୍ଗୀୟ ଯୁବକ, ତୁମ୍ଭର ଦୁର୍ଭାଗ୍ୟ ଏହି ଯେ ତୁମ୍ଭେ ଆପଣା ସମ୍ମୁଖରେ କର୍ମକ୍ଷେତ୍ର ପ୍ରସ୍ତୁତ ପାଇ ନାହଁ । କିନ୍ତୁ ତୁମ୍ଭେ ଯେବେ ଏହାକୁ ଅପରାଜିତ-ଚିତ୍ତରେ ନିଜର ସୌଭାଗ୍ୟ ବୋଲି ଗଣ୍ୟ କରି ପାର, ଯଦି କହି ପାର—ନିଜର କ୍ଷେତ୍ର ମୁଁ ନିଜେ ପ୍ରସ୍ତୁତ କରି ନେବି, ତେବେ ତୁମ୍ଭେ ଧନ୍ୟ ହେବ । ବିଚ୍ଛିନ୍ନତା ମଧ୍ୟରେ ଶୃଙ୍ଖଳା ସ୍ଥାପନ କରିବା, ଜଡ଼ତ୍ୱ ଭିତରେ ଜୀବନ ସଞ୍ଚାର କରିବା ସଙ୍କୀର୍ଣ୍ଣତା ଭିତରେ ଉଦାର ମନୁଷ୍ୟତ୍ୱକୁ ଆବାହନ କରିବା, ଏହି ମହତ ସୃଷ୍ଟିକାର୍ଯ୍ୟ ତୁମ୍ଭ ସମ୍ମୁଖରେ ପଡ଼ି ରହିଅଛି—ଏଥିପାଇଁ ଆନନ୍ଦିତ ହୁଅ । ନିଜର ଶକ୍ତି ପ୍ରତି ଆସ୍ଥା ସ୍ଥାପନ କରି, ନିଜର ଦେଶ ପ୍ରତି ଶ୍ରଦ୍ଧା ରକ୍ଷା କରି ଏବଂ ଧର୍ମ ପ୍ରତି ବିଶ୍ୱାସ ଛାଡ଼ି ନାହିଁ । ଆଜି କର୍ତ୍ତୃପକ୍ଷ ବଙ୍ଗଦେଶର ମାନଚିତ୍ରର ମଧ୍ୟଭାଗରେ ଗୋଟିଏ ରେଖା ଟାଣି ଦେବାକୁ ଉଦ୍ୟତ ହେଉଅଛନ୍ତି, କାଲି ପ୍ରାଥମିକ ଶିକ୍ଷାକୁ ଗୃହଶଣ୍ଡ କରିବାକୁ ସଙ୍କଳ୍ପ କରୁଅଛନ୍ତି, ଅବଶ୍ୟ ଏହା ଦୁଃଖର ବିଷୟ—କିନ୍ତୁ କେବଳ କି ନିରାଶାପୂର୍ଣ୍ଣ ଦୁଃଖ ଭୋଗରେ ଏହି ଦୁଃଖର ପର୍ଯ୍ୟବସାନ ? ଏହାର ପଶ୍ଚାତରେ କି କିଛି କର୍ମ ନାହିଁ ? ଆମ୍ଭମାନଙ୍କର କିଛିମାତ୍ର ଶକ୍ତି ନାହିଁ ? କେବଳ ଅରଣ୍ୟରେ ରୋଦନ ? * *

* * * *

ସଙ୍କଟକୁ ସ୍ୱୀକାର କରି, ଦୁଃସାଧ୍ୟତା ସମ୍ବନ୍ଧରେ ଅନ୍ଧ ନ ହୋଇ, ନିଜକୁ ଆସନ୍ନ ଫଳଲାଭର ପ୍ରତ୍ୟାଶାରେ ନ ଭୁଲାଇ, ଏହି ଦୁର୍ଭାଗ୍ୟ ଦେଶରେ ପୁରସ୍କାରବିହୀନ କର୍ମର ଦୁର୍ଗମ ପଥରେ ଯାତ୍ରା ଆରମ୍ଭ କରିବାକୁ ଯେଉଁମାନେ ପ୍ରସ୍ତୁତ ଅଛ, ମୁଁ ସେହି ବୀରପୁରୁଷମାନଙ୍କୁ ଆହ୍ୱାନ କରୁଅଛି—ରାଜଦ୍ୱାର ଅଭିମୁଖରେ ନୁହେ, ପୁରାତନଯୁଗର ତପଃସଞ୍ଚିତ ଭାରତର ସ୍ୱକୀୟ ଶକ୍ତି ଯେଉଁ ଖଣି ମଧ୍ୟରେ ନିହିତ ଅଛି, ସେହି ଖଣିର ସନ୍ଧାନ ନିମିତ୍ତ । ଖଣି ଆମ୍ଭମାନଙ୍କ ଦେଶର ମର୍ମସ୍ଥାନରେ ଅଛି—ଯେଉଁ ଜନସାଧାରଣଙ୍କୁ ଆମ୍ଭେମାନେ ଅବଜ୍ଞା କରୁଁ, ସେହିମାନଙ୍କ ନିର୍ବାକ୍ ହୃଦୟର ଗୁପ୍ତ ସ୍ତର ମଧ୍ୟରେ ଅଛି । ପ୍ରବଳର ମନ ପାଇବାର ଚେଷ୍ଟା ଛାଡ଼ି ଦେଇ ସେହି ନିମ୍ନତମ ଗୁହାର ଗଭୀରତମ ଐଶ୍ୱର୍ଯ୍ୟ ଲାଭର ସାଧନାରେ କିଏ ପ୍ରବୃତ୍ତ ହେବ ?

## ସହିଷ୍ଣୁତା ।

ମାନବର ଶ୍ରେଷ୍ଠ ଗୁଣସମୂହ ମଧ୍ୟରେ ସହିଷ୍ଣୁତା ଅନ୍ୟତମ । ସହିଷ୍ଣୁତା ମନୁଷ୍ୟଙ୍କୁ ଶାନ୍ତ, ସଂଯତ, ପବିତ୍ର ଓ ନିୟମିତ କରେ । ଗୃହସ୍ଥର ଗାର୍ହସ୍ଥ୍ୟ, ଅଧିକାରୀର ଅଧିକାର, କବିର କାବ୍ୟ, ସଂସ୍କାରକର ସଂସ୍କାର, ସମ୍ପାଦକର ସମ୍ପାଦନା, ସହିଷ୍ଣୁତା ବିନା ଅନ୍ଧକାରମୟ ଏବଂ ଅମଙ୍ଗଳଜନକ । ଯେଉଁ ଜାତି ବା ସମ୍ପ୍ରଦାୟ ସହିଷ୍ଣୁ ହୋଇ ଶାନ୍ତଭାବରେ କାର୍ଯ୍ୟ କରିବାକୁ ଶିଖିଅଛି ସେହି ଜାତି ବା ସମ୍ପ୍ରଦାୟର ଉତ୍ତରୋତ୍ତର ଉନ୍ନତି ହେବାର ଦେଖାଯାଏ ଏବଂ ଯେଉଁ ଜାତି ସାମାନ୍ୟ ବିଷୟରେ ସୁଦ୍ଧା ଚଞ୍ଚଳ ଓ ଅସହିଷ୍ଣୁ ହୁଏ, ତାହାର କ୍ରମଶଃ ଅଧୋଗତି ହେଉଥିବାର ପ୍ରତ୍ୟକ୍ଷ ହେଉଅଛି ।

ଜୀବନସ୍ରୋତର ବନ୍ଧୁର ମାର୍ଗରେ ଯାତ୍ରା କଲାବେଳେ ଅନେକ ଥର କ୍ରୋଧରୂପୀ ପ୍ରଜ୍ୱଳିତାଗ୍ନିରେ ପଡ଼ିବାକୁ ହୁଏ, ସେହି ଅବସ୍ଥାରେ ସହିଷ୍ଣୁତାରୂପ ମହୌଷଧ ନ ଥିଲେ କ୍ଷୁଦ୍ର ମାନବର କି ଗତି ହେବ ? ଅସହିଷ୍ଣୁ ଜନ ନିଜ ଜୀବନକୁ ନଷ୍ଟ ଭ୍ରଷ୍ଟ କରେ କେବଳ ଏହା ନୁହେ, ସେହି ଗୁଣଦ୍ୱାରା ପରର ସୁଦ୍ଧା ଘୋର ଅନିଷ୍ଟ ସମ୍ପାଦନ କରିଥାଏ । ସଂସାରରେ ଯେଉଁମାନଙ୍କ ସହିତ ବାସ କରିବାକୁ ପଡ଼େ ସେ ସମସ୍ତେ ସମାନଭାବରେ ନିର୍ଦ୍ଦୋଷ, କର୍ତ୍ତବ୍ୟପରାୟଣ, ସରଳ ଓ ପବିତ୍ର ହେବା ଅସମ୍ଭବ । ସାଧାରଣ ବିଷୟରେ ସୁଦ୍ଧା ମତ ମମତା, ଅସାର ସ୍ୱାର୍ଥ, କୁତ୍ସିତ ଅହଂକାର ପ୍ରଭାବରୁ ଚିତ୍ତର ଶାନ୍ତି ଏକାବେଳକେ ଅନ୍ତର୍ହିତ ହୁଏ, କେବଳ ଅସହିଷ୍ଣୁତାରୁ କେତେକେ ଗୃହସ୍ଥ ଚିରକାଳ ନିରୟ-ଯନ୍ତ୍ରଣା ଭୋଗ କରୁଥିବାର ଲକ୍ଷିତ ହେଉଅଛି ।

"ଅମୁକ ବ୍ୟକ୍ତି ସହିବା ଲୋକ ନୁହେ, ସେ ନାକ ଅଗରେ ମଶାକୁ ବସାଇ ଦିଏ ନାହିଁ" ବୋଲି ଅନେକ ଦ୍ୱପଣ୍ଡିତ ଜ୍ଞାନୀ ଲୋକେ ମିଛ ଅସହିଷ୍ଣୁ ଜନଙ୍କୁ ଶୂର ଓ ବୀର ଆଖ୍ୟା ଦେଇ ପ୍ରଶଂସା କରିଥାନ୍ତି, କିନ୍ତୁ ସେମାନଙ୍କ ବିବେକଶୂନ୍ୟ ହୃଦୟରେ ଥରେ ସୁଦ୍ଧା ଏହା ଉଦିତ ହୁଏ ନାହିଁ ଯେ ଯେଉଁ ବ୍ୟକ୍ତି ସଂସାରର ଉତ୍କଟ ବିଷୟ-ବାସନାରେ ଅସ୍ଥିର ଓ ଅଶାନ୍ତ ନ ହୋଇ ସବୁ ସହି ପାରେ, ସେହି ଯଥାର୍ଥ ଶୂର ଓ ବୀର, ଏବଂ ଯେ କଥାକଥାକେ କାମକ୍ରୋଧର ଅଧୀନ ହୋଇ ଅସହିଷ୍ଣୁ ଏବଂ ଚଞ୍ଚଳ ହୁଏ ସେ ଦୁର୍ବଳ, କାପୁରୁଷ ଓ ସ୍ତ୍ରୀସ୍ୱଭାବବିଶିଷ୍ଟ ।

ମାନବ ଜୀବନରେ ଦୋଷାଚରଣ ନ କରି କାଳ କାଟି ଦେବାଟା ହୋଇ ନ ପାରେ, ନିର୍ଦ୍ଦୋଷ ରହିବାକୁ ଶକ୍ତ୍ୟନୁସାରେ ଯତ୍ନ କରୁ କରୁ ଯଦି ଦୋଷାଚରଣ ହୋଇଯାଏ ତେବେ କୋମଳଭାବରେ ତହିଁର ନିବାରଣର ଚେଷ୍ଟା କରିବ, ନିବାରିତ ନ ହେଲେ ତାହା ସହନ କରିନେବ, ଯେଉଁମାନେ ଏପରି କରିବାରେ ଅସମର୍ଥ ସେମାନେ ବରଂ ଜନ୍ମଗ୍ରହଣ ନ କରିବା ଭଲ । ଅଗଣିତ ଅସୁବିଧା ଓ ଅସନ୍ତୋଷ ହେତୁରୁ ଅତି କ୍ଳେଶରେ ଜୀବନପଥରେ ଚାଲିବାକୁ ହୁଏ, ଏକା ସହନଶୀଳତାହିଁ ସେହି ପଥକୁ ସରଳ ଏବଂ ନିଷ୍କଣ୍ଟକ କରିଦିଏ ।

ସମୟ ସମୟରେ ଆମ୍ଭମାନଙ୍କୁ ଅବିବେଚନା ମାତା, କଳହଶୀଳା ପତ୍ନୀ, ଉଗ୍ରପ୍ରକୃତି ଭ୍ରାତା, ଭଗିନୀ ଓ ପୁତ୍ରଙ୍କ ସହିତ କାଳଯାପନ କରିବାକୁ ହୁଏ, ଯଦି ସେତେବେଳେ ଆମ୍ଭମାନଙ୍କ ହୃଦୟ-ମନ୍ଦିରରେ ସହିଷ୍ଣୁତାଦେବୀଙ୍କର ଆବିର୍ଭାବ ନ ହୁଏ, ତେବେ ସଂସାରଟା କେବଳ ପିଶାଚ ଓ ପ୍ରେତମାନଙ୍କ କ୍ରୀଡ଼ାକାନନ ହୋଇ ଉଠେ । କର୍ମଚାରୀକୁ ଷଡ଼ଯନ୍ତ୍ରକାରୀମାନଙ୍କ କୁଚକ୍ରରେ କ୍ଷଣେ କ୍ଷଣେ ପ୍ରାଣଦାହକ ବିଷ ଗିଳି ହୃଦୟରେ ଅସହ୍ୟ ଯନ୍ତ୍ରଣା ଭୋଗ କରିବାକୁ ହୁଏ, ଯେବେ ସେହି ମୁହୂର୍ତ୍ତର ଉତ୍ତେଜନାରେ ସେ କର୍ମତ୍ୟାଗ କରି ବସେ, ତେବେ ସେହି କର୍ମଚାରୀର ଏବଂ ତଦାଶ୍ରୟ ପ୍ରାଣପ୍ରିୟ ପରିବାରର କି ଦୁର୍ଗତି ହେବ ?

କର୍ମତ୍ୟାଗ କରି ସ୍ୱଚ୍ଛନ୍ଦ ବ୍ୟବସାୟ କଲେ ପୁଣି ଯହିଁରେ ବିଭିନ୍ନସ୍ୱଭାବବିଶିଷ୍ଟ ଜନଙ୍କ ସହିତ ଅଧିକାଂଶ ସମ୍ବନ୍ଧ ରହିବାରୁ ପଦେ ପଦେ କଷ୍ଟ ହୁଏ, ବିଶେଷତଃ ଶ୍ରମଜୀବୀ ଶ୍ରେଣୀରେ ସର୍ବଦା ନ୍ୟାୟପରତା ଓ କର୍ତ୍ତବ୍ୟପରାୟଣତାର ଏକାନ୍ତ ଅଭାବ, ଯେତେବେଳେ ସହିଷ୍ଣୁ ନ ହୋଇ ପ୍ରତି ବିଷୟରେ ବିବାଦ କରି ବସିଲେ ସୁଖ ଓ ଶାନ୍ତି କାହୁଁ ମିଳିବ ?

ଦାମ୍ପଜୀବନରେ ସହିଷ୍ଣୁତାର ଅହୁରି ଅବଶ୍ୟକତା, କୁଳବଧୂକୁ ଶାଶୁ, ଶ୍ୱଶୁର, ଦେବର ପ୍ରଭୃତିଙ୍କ ମଧ୍ୟରେ ରହିବାକୁ ହୁଏ, ପ୍ରାୟ ସେ ସମସ୍ତେ ବଧୂ ସହିତ ସଦ୍ବ୍ୟବହାର କରନ୍ତି ନାହିଁ. ଅନେକ ସମୟରେ ଏ କାରଣରେ ଅନର୍ଥ ଘଟାନ୍ତି, ଯଦି ବଧୂ ସେ ସକଳ ସହି ନ ପାରି ଭ୍ରୂକୁଟୀ ଦେଖାଏ, ତେବେ ତାହାର କି ପରିଣାମ ହେବ ? ଦମ୍ପତି ମଧ୍ୟରେ ପରସ୍ପର ସହିଷ୍ଣୁତାର ପରମ ଅବଶ୍ୟକତା, ପରେ ଅଜ୍ଞା ଅନଭିଜ୍ଞତା କିମ୍ବା ବୁଦ୍ଧିହୀନତା ହେତୁରେ ପତ୍ନୀ ପାଳି ପାରେ ନାହିଁ, ଯେବେ ସ୍ୱାମୀ ସେହି ତ୍ରୁଟି କ୍ଷମା ନ କରି ଅଗ୍ନିଶର୍ମା ହୁଏ ତେବେ ସଂସାର ଶ୍ମଶାନ ହେବ । ଅନେକ ସ୍ଥଳରେ ବ୍ୟଭିଚାରୀ, ମଦ୍ୟପାୟୀ, ଦ୍ୟୂତନିରତ ସ୍ୱାମିର ଚରଣଯୁଗଳକୁ ନୟନାଶ୍ରୁରେ ଧୌତ କରି ନାନାବିଧ ମୃଦୁବାକ୍ୟ ଶୁଣାଇ ଅତିକଷ୍ଟରେ ସାଧ୍ୱୀ ସ୍ତ୍ରୀ ସେହି ନରପଶୁକୁ ବଶୀଭୂତ କରେ, ତାହାର ସେହି ସହିଷ୍ଣୁତା ପ୍ରଭାବରୁ ପତି ସତ୍ପଥ ଅବଲମ୍ବନ କରେ, ଏହାହିଁ ସୁଧାମୟୀ ସହିଷ୍ଣୁତାର ଅଦ୍ଭୁତ ଫଳ । ଯେଉଁମାନେ ଦାମ୍ପତ୍ୟ ଜୀବନକୁ ସହିଷ୍ଣୁତା-ଦ୍ୱାରା ଭୂଷିତ ନ କରନ୍ତି, ସେମାନେ କେବଳ ନିଜ ସଂସାରକୁ ବିଷମୟ କରନ୍ତି ଏତିକି ନୁହେଁ, ନିଜ ସନ୍ତାନମାନଙ୍କ ଜୀବନକୁ ମଧ୍ୟ ବିଷଜ୍ୱାଳାରେ ଦଗ୍ଧ କରନ୍ତି । ଯେଉଁ ଦମ୍ପତି ମଧ୍ୟରେ ସୁପବିତ୍ର ଓ ସୁଦୃଢ଼ ପ୍ରେମ, ଅପରିସୀମ ବିଶ୍ୱାସ ନାହିଁ ଏବଂ ସହିଷ୍ଣୁତା ଗୁଣର ଅଭାବରୁ ସର୍ବଦା ଅସନ୍ତୋଷାଗ୍ନି ପ୍ରଜ୍ୱଳିତ, ସେହି ଦମ୍ପତିଙ୍କ ସନ୍ତାନଗଣ ସେହିପରି ବିବାଦଶୀଳ ଓ ଅସନ୍ତୁଷ୍ଟ ହୁଅନ୍ତି, ଦାମ୍ପତ୍ୟଜୀବନ ଉପରେ ଭବିଷ୍ୟଦ୍ବଂଶର ଚରିତ୍ର ନିର୍ଭର କରେ ।

ସୁଖ ଓ ଶାନ୍ତି ଅନୁଭବ କରିବାହିଁ ଜୀବନର ମୁଖ୍ୟ ଲକ୍ଷ୍ୟ, ଯେ ଅଜ୍ଞାନତାରୁ ଅସହିଷ୍ଣୁ ହୁଏ, ସେ ସେହି ସୁଖତରୁ ମୂଳରେ କୁଠାରଘାତ କରେ କହିବାକୁ ହେବ । ସମସ୍ତଙ୍କ ସ୍ୱଭାବ ଏକ ହୋଇ ନ ପାରେ, ଯେତେବେଳେ କ୍ରୋଧୀ ଓ ଅବିବେକୀ ସହିତ କାର୍ଯ୍ୟ ପଡ଼େ, ସେତେବେଳେ ମୃଦୁ-ବାକ୍ୟରେ ତାହାକୁ ନ ବୁଝାଇ ନିଜ କର୍ତ୍ତବ୍ୟର ଅବହେଳା କରିବା ନିତାନ୍ତ ଅନୁଚିତ । ଜୀବନର ଚିରସଙ୍ଗୀ ଓ ଚିରସଙ୍ଗିନୀଗଣଙ୍କ ସହିତ ସୁଖରେ ବାସ କରିବାକୁ ହେଲେ ସହିଷ୍ଣୁତାବଲମ୍ବନ ଛଡ଼ା ଅନ୍ୟ କୌଣସି ସାଧୁ ମାର୍ଗ ନାହିଁ ।

ଅତଏବ ପାଠକବୃନ୍ଦ ! ପ୍ରତ୍ୟେକ ବିଷୟରେ ସହିଷ୍ଣୁ ହେବାରେ ତତ୍ପର ହୁଅ, ସହିଷ୍ଣୁତା ଅଭାବରୁ ମନୁଷ୍ୟର ମନୁଷ୍ୟତ୍ୱ ରହେ ନାହିଁ, ଏହି ଦିବ୍ୟଭାବନାରେ ଅସହିଷ୍ଣୁତାରୁ ଉତ୍ପନ୍ନ କ୍ଳେଶ ଏବଂ ସହିଷ୍ଣୁତାରୁ ପରମାନନ୍ଦ ପ୍ରାପ୍ତ ହୁଏ ଏହି ମହାମନ୍ତ୍ର ସର୍ବଦା ଅନ୍ତଃକରଣରେ ଜାଗରୂକ ରଖିବାକୁ ଚେଷ୍ଟା କର ।

ଶ୍ରୀ ସଦାଶିବ ବିଦ୍ୟାଭୂଷଣ ।

## ମୂଲ୍ୟପ୍ରାପ୍ତି ।

### ରାଜସଂସ୍କରଣ ।

**୧୯୦୩**

| | | |
|---|---|---|
| ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ | କଟକ | ଟ ୫ ( |
| „ ବଳଭଦ୍ର ମହାପାତ୍ର | ଖଲ୍ଲିକୋଟ | ଟ ୫ ( |
| „ ମଧୁସୂଦନ ଦାସ ସି. ଆଇ. ଇ. | କଟକ | ଟ ୫ ( |
| „ ମହାରାଜା | ମୟୂରଭଞ୍ଜ | ଟ ୫ ( |
| „ ରାଜା ସାହେବ | ମଞ୍ଜୁଷା | ଟ ୫ ( |

**୧୯୦୪**

| | | |
|---|---|---|
| ଶ୍ରୀଯୁକ୍ତ ମହେଶ୍ୱରୀପ୍ରସାଦ ଦେଓ | ଭବାନୀପାଟଣା | ଟ ୫ ( |
| „ ମୃତ୍ୟୁଞ୍ଜୟ ଶାସ୍ତ୍ରୀ | ବ୍ରହ୍ମପୁର | ଟ ୫ ( |
| „ ବଳଭଦ୍ର ମହାପାତ୍ର | ଖଲ୍ଲିକୋଟ | ଟ ୫ ( |
| „ ମଧୁସୂଦନ ଦାସ ସି. ଆଇ. ଇ. | କଟକ | ଟ ୫ ( |
| „ ମହାରାଜା | ମୟୂରଭଞ୍ଜ | ଟ ୫ ( |
| „ ରାଜା ସାହେବ | ମଞ୍ଜୁଷା | ଟ ୫ ( |
| „ ଯୁବରାଜ ସାହେବ | ମଞ୍ଜୁଷା | ଟ ୫ ( |

### ସାଧାରଣ ସଂସ୍କରଣ ।

**୧୯୦୩**

ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ରାଜ ପାଲଲହଡ଼ା ଟ ୨ (
„ ଶ୍ରୀଶଚନ୍ଦ୍ରଭଞ୍ଜ ଦେଓ ମୟୂରଭଞ୍ଜ ଟ ୨ (
„ ପରମାନନ୍ଦ ମିଶ୍ର ପୁରୀ ଟ ୧ (

**୧୯୦୪**

ଶ୍ରୀଯୁକ୍ତ ପଦ୍ମନାଭ ମହାନ୍ତି କଟକ ଟ ୦ ୳
„ ବୈଦ୍ୟନାଥ ବ୍ରହ୍ମା ଖଲ୍ଲିକୋଟ ଟ ୨ (
„ ଚନ୍ଦ୍ରମଣି ପଣ୍ଡା କଟକ ଟ ୧ (
„ ଜାନକୀନାଥ ବୋଷ „ ଟ ୨ (
„ ମଧୁସୂଦନ ଦାସ (ଛାତ୍ର) „ ଟ ୦ ୳
„ ପ୍ରାଣଧର ବେହେରା „ ଟ ୦ ୳
„ ସଦାଶିବ ବିଦ୍ୟାରତ୍ନ ପୁରୀ ଟ ୨ (
„ ଗୋପୀନାଥ ନନ୍ଦ ଶର୍ମା
ପାରଳାଖେମୁଣ୍ଡି ଟ ୨ (
„ ଚନ୍ଦ୍ରଶେଖର ବାବୁ ସମ୍ବଲପୁର ଟ ୨ (
„ ଭଗବତଚନ୍ଦ୍ର ନାୟକ କଟକ ଟ ୧ (
„ ରାଜା ସାହେବ ଖଇଲା ଟ ୨ (
„ ରାଧାଚରଣ ମହାନ୍ତି କେନ୍ଦ୍ରାପଡ଼ା ଟ ୦ ୳
„ ଦୁଃଖେନ୍ଦ୍ର ମହାନ୍ତି „ ଟ ୦ ୳
„ ମଧୁସୂଦନ ମିଶ୍ର ଆଠମଲ୍ଲିକ ଟ ୨ (
„ ଶ୍ରୀଶଚନ୍ଦ୍ରଭଞ୍ଜ ଦେଓ ମୟୂରଭଞ୍ଜ ଟ ୨ (
„ ବାସୁଦେବ ମିଶ୍ର ରସୁଲକୁଣ୍ଡା ଟ ୧ (
„ ବାବୁ କେଦାର ରସୁଲକୁଣ୍ଡା ଟ ୧ (
„ କୃତ୍ତିବାସ ସାମନ୍ତରାୟ କେନ୍ଦ୍ରାପଡ଼ା ଟ ୧ (
„ ଗୌରାଙ୍ଗ ଘୋଷ ସମ୍ବଲପୁର ଟ ୧ (
„ ହେଡପଣ୍ଡିତ ମି: ଇ: ସ୍କୁଲ
ଜଗଦେବପୁର ଟ ୨ (
„ ଲକ୍ଷ୍ମୀ ନାରାୟଣ ବ୍ରହ୍ମପୁର ଟ ୧ (
„ ସୋମନାଥ ବେହେରା ଅନନ୍ତପୁର ଟ ୧ (
„ ଦୀନବନ୍ଧୁ ପଟ୍ଟନାୟକ ରସୁଲକୁଣ୍ଡା ଟ ୨ (
„ ବ୍ରଜବନ୍ଧୁ ପାଢ଼ୀ ବୋଦ ଟ ୨ (
„ ହରପ୍ରସାଦ ଦେ ବର୍ମା ଟ ୨ (
„ ମଧୁସୂଦନ ମହାନ୍ତି ମୂଳବସନ୍ତ ଟ ୧ (
„ ଭୁବନମଣି ଦାସ କଟକ ଟ ୧ (
„ ମହାନ୍ତ ରାମାନୁଜ ଦାସ ବସ୍ତା ଟ ୧ (
„ ଜଗନ୍ନାଥ ବଡ଼ଜେନା ଜଗତସିଂହପୁର ଟ ୧ (

**୧୯୦୫ ଏପ୍ରିଲ**

ଶ୍ରୀଯୁକ୍ତ ବୈଦ୍ୟନାଥ ରାଓ ଫକୀରବାଦ ଟ ୧ (
„ ରାଜ୍ୟଧର ଦାସ ଅଲଣାହାଟ ଟ ୧ (
„ କରୁଣାକର ମିଶ୍ର ଅନନ୍ତପୁର ଟ ୧ (
„ ମହାନ୍ତ ଭଗବାନ ଦାସ ବାବାଜି
ପାରଳାଖେମୁଣ୍ଡି ଟ ୨ (
„ ରାଧାକୃଷ୍ଣ ଦାସ ଅନୁଗୁଳ ଟ ୧ (

Reg. N. C. 101.

# ବିଜ୍ଞାପନ ।

—:o:—

“ଉତ୍କଳ-ସାହିତ୍ୟ-ସମାଜ” ଅପ୍ରକାଶିତ ଓଡ଼ିଆ ପ୍ରାଚୀନ ପୋଥି ସଂଗ୍ରହ ଓ ପ୍ରକାଶ କରିବାର ନିର୍ଦ୍ଧାରଣ କରି କାର୍ଯ୍ୟାରମ୍ଭ କରିଅଛନ୍ତି । ଏଥି ନିମିତ୍ତ ଦେଶରେ ଉପଯୁକ୍ତ ବ୍ୟକ୍ତିଙ୍କୁ ନେଇ ଗୋଟିଏ ଶାଖା-ସମିତି ଗଠିତ ହୋଇଅଛି । ପୋଥି ଲେଖାଇବା ନିମିତ୍ତ ଉପଯୁକ୍ତ ବନ୍ଦୋବସ୍ତ ମଧ୍ୟ କରି ଯାଉଅଛି । ଶାଖା-ସମିତି ଉପଯୁକ୍ତ ପରିମାଣ ଅର୍ଥ ଦେଇ ପ୍ରାଚୀନ ପୋଥିମାନ କ୍ରୟ କରିବାକୁ ପ୍ରସ୍ତୁତ ଅଛନ୍ତି । ଅତଏବ ଏତଦ୍ଦ୍ୱାରା ଉତ୍କଳଭାଷୀ ପ୍ରଦେଶର ସମସ୍ତ ସ୍ୱଦେଶାନୁରାଗୀ ସାହିତ୍ୟସେବୀମାନଙ୍କୁ ଅନୁରୋଧ କରାଯାଉଅଛି ଯେ ସେମାନେ ଯଥାସାଧ୍ୟ ଚେଷ୍ଟା କରି ପ୍ରାଚୀନ ପୋଥିମାନ ସଂଗ୍ରହ କରି ନିମ୍ନସ୍ୱାକ୍ଷରକାରୀଙ୍କ ନିକଟକୁ ବେରଙ୍ଗ ବା ରେଜେଷ୍ଟ୍ରି ଡାକଦ୍ୱାରା ପଠାଇବେ । କୌଣସି ବ୍ୟକ୍ତି ପୋଥି ବିକ୍ରୟ କରିବାକୁ ଇଚ୍ଛୁକ ଥିଲେ ସେଥି ପାଇଁ ଉପଯୁକ୍ତ ମୂଲ୍ୟ ଦିଆଯିବ । ନଚେତ୍ କାଗଜରେ ଲେଖାଇ ଉପଯୁକ୍ତ ସମୟ ମଧ୍ୟରେ ପୋଥି ଫେରତ ଦିଆଯିବ । ସେଥି ସକାଶେ ପୁସ୍ତକାଧିକାରୀ କିଛି ଅର୍ଥ ପ୍ରତ୍ୟାଶୀ ହେଲେ ତାହା ମଧ୍ୟ ଦିଆଯିବ ।

ମାଛୁଆବଜାର,
କଟକ ।

ଶ୍ରୀ କୃଷ୍ଣପ୍ରସାଦ ଚୌଧୁରୀ
ପ୍ରାଚୀନପୁସ୍ତକସଂଗ୍ରହ-ଶାଖାସମିତିର
ସମ୍ପାଦକ ।

---

ପୂଜ୍ୟପାଦ କୃଷ୍ଣଦାସ କବିରାଜକୃତ
ଶ୍ରୀ ଶ୍ରୀମତ୍‌ଚୈତନ୍ୟଗୀତା ।

ଅବିକଳ ବଙ୍ଗଳା ଗ୍ରନ୍ଥ ଉତ୍କଳାକ୍ଷରରେ ମୁଦ୍ରିତ ହୋଇ ୮ ୦ ୵ ମୂଲ୍ୟରେ ବିକ୍ରି ହେଉ-ଅଛି । ସ୍ୱୟଂ ଶ୍ରୀ ଶ୍ରୀ ଚୈତନ୍ୟ ଦେବ ଶ୍ରୀ ସନାତନଙ୍କୁ ଉପଦେଶଦାନଛଳରେ ବୈଷ୍ଣବ ଧର୍ମର ନିଗୂଢ଼ ତତ୍ତ୍ୱମାନ ଏହି ଗ୍ରନ୍ଥରେ ବର୍ଣ୍ଣିତ ଓ ବ୍ୟାଖ୍ୟାତ ହୋଇଅଛି । ଧର୍ମପିପାସୁମାନଙ୍କ ପକ୍ଷରେ ଏହା ଖଣ୍ଡିଏ ଅତି ଅମୂଲ୍ୟ ଗ୍ରନ୍ଥ । କଟକର ସମସ୍ତ ପୁସ୍ତକ ଦୋକାନମାନଙ୍କରେ ମିଳେ ।

---

ନୂତନ କାବ୍ୟ ।
ପଦ୍ମାବତୀ-ପରିଣୟ ବା କାଞ୍ଚୀ-ବିଜୟ ।

ଉତ୍କଳର ପ୍ରସିଦ୍ଧ ଐତିହାସିକ ଘଟଣା ସେହି କାଞ୍ଚୀବିଜୟ ବୃତ୍ତାନ୍ତ ଏହି କାବ୍ୟରେ ବିଶଦ-ରୂପେ ବର୍ଣ୍ଣିତ ହୋଇଅଛି । ମୂଲ୍ୟ ପାଞ୍ଚ ଅଣା ମାତ୍ର । କଟକର ସମସ୍ତ ପୁସ୍ତକଦୋକାନମାନଙ୍କରେ ମିଳେ ।

---

ଉପନିଷତ୍ସଂଗ୍ରହ ।

ଅର୍ଥାତ୍ ଈଶ, ପ୍ରଶ୍ନ, କଠ, ଶ୍ୱେତାଶ୍ୱତର, ଐତରେୟ, ମୁକ୍ତିକ, କେନ, ତୈତ୍ତିରୀୟ, ମାଣ୍ଡୁକ, ମୁଣ୍ଡକ, କୈବଲ୍ୟ ଏହି ୧୧ ଖଣ୍ଡି ମୂଳଗ୍ରନ୍ଥର ଅବିକଳ ସରଳ ଭାଷାରେ ଉତ୍କଳ ପଦ୍ୟାନୁବାଦ । ମୂଲ୍ୟ ୮ ୦ ୵ ମାତ୍ର । କଟକସ୍ଥ ସମସ୍ତ ପୁସ୍ତକାଳୟରେ ବିକ୍ରୟ ହୁଏ ।

---